**ଭାରତ ହରିବଂଶ**


ରଚନା : ସାରୋଳା ଚଣ୍ଡି ଦାସ

ସଂପାଦନା : **ଡ. ଲକ୍ଷ୍ମୀକାନ୍ତ ତ୍ରିପାଠୀ**

ସମୀକ୍ଷକ :

ପ୍ରକାଶକ :
ପ୍ରଥମ ପ୍ରକାଶ :

ମୁଦ୍ରଣ :

ପ୍ରଚ୍ଛଦ :

ମୂଲ୍ୟ :


. . . . . . . . . . . . . . . . . . . . . .

**BHARATA HARIBANSA**


Composed by : **Sarola Chandi Das**

Edited by : **Dr. LaxmiKantha Tripathy**

Reviewer :

Published by :
First Publication :

Printed by :

Cover Design :

Price :

# ଭୂମିକା

## ।। ଏକ ।।

'ଭାରତ ହରିବଂଶ' ନାମରେ ସଂସ୍କୃତରେ କୌଣସି ପୁରାଣ ନାହିଁ । ତେବେ ସାରଳା ଦାସ ଭାରତ ସହିତ ହରିବଂଶକୁ କାହିଁକି ଯୋଡ଼ିଥିଲେ ତାହାର ଏକ ନିର୍ଦ୍ଦିଷ୍ଟ ଉତ୍ତର ନ ମିଳିଲେ ମଧ୍ୟ ଆମେ ଅନୁମାନ ମାଧ୍ୟମରେ କିଛି ସିଦ୍ଧାନ୍ତରେ ଉପନୀତ ହୋଇପାରିବା । ସଂସ୍କୃତରେ ଭାରତ ହରିବଂଶ ନଥିଲେ ମଧ୍ୟ ଖିଳ ହରିବଂଶ ନାମରେ ତିନିଗୋଟି ପର୍ବ ରଚିତ ହୋଇଛି । ମହାଭାରତକୁ ଶହେଗୋଟି ପର୍ବର ସମାହାର ବୋଲି କୁହାଯାଉଥିଲେ ମଧ୍ୟ ତନ୍ମଧ୍ୟରୁ ସତାନବେ ଗୋଟି ପର୍ବ ମହାଭାରତର କାହାଣୀକୁ ଉପଜୀବ୍ୟ କରି ରଚିତ । ଶେଷ ତିନିଗୋଟି ପର୍ବକୁ ଖିଳ ହରିବଂଶ ବୋଲି କୁହାଯାଇଥାଏ । ଯେଉଁଥିରେ ହରିବଂଶ ପର୍ବ, ବିଷ୍ଣୁପର୍ବ ଓ ଭବିଷ୍ୟ ପର୍ବ ନାମରେ ତିନିଗୋଟି ପର୍ବ ସନ୍ନିବେଶିତ ହୋଇଛି । ପୁଣି ଏହି ତିନିଗୋଟି ପର୍ବ ମଧ୍ୟରୁ କେବଳ ବିଷ୍ଣୁପର୍ବରେ କୃଷ୍ଣଙ୍କ ସମ୍ପର୍କିତ ତଥ୍ୟ ପ୍ରଦାନ କରାଯାଇଛି । କୃଷ୍ଣଙ୍କର କଥାକୁ ସମଗ୍ର ପର୍ବରେ ଆଲୋଚନା କରାନଯାଇ ତନ୍ମଧ୍ୟରୁ କେତେକ ଅଧ୍ୟାୟରେ କୃଷ୍ଣକଥାକୁ ବିଷୟବସ୍ତୁ ଭାବରେ ଗ୍ରହଣ କରାଯାଇଛି । ଖିଳହରିବଂଶର ବିଷୟବସ୍ତୁ ସମ୍ପର୍କରେ ଭବିଷ୍ୟପର୍ବର ୧୩୪ତମ ଅଧ୍ୟାୟରେ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇ କୁହାଯାଇଛି ଯେ ହରିବଂଶ ପର୍ବରେ ପୃଥୁଙ୍କର ଆଖ୍ୟାନ, ମନୁଙ୍କର ଗୁଣ କୀର୍ତ୍ତନ, ବୈବସ୍ୱତ କୁଳ ଉତ୍ପତ୍ତି, ଧୁନ୍ଦୁମାର କଥା,ଗାଲବ ଉତ୍ପତ୍ତି, ଇକ୍ଷ୍ୱାକୁ ବଂଶ କଥା, ସୋମ ଓ ବୁଧଙ୍କର ଉତ୍ପତ୍ତି,ଅମାବସୋ ଓ ଅନେନସୋଙ୍କର ବଂଶକଥା, ଦିବୋଦାସ ଚରିତ, ତ୍ରିଶଙ୍କୁର ପ୍ରତିଷ୍ଠା, ଯଯାତି ଚରିତ, ପୁରୁବଂଶ କୀର୍ତ୍ତନ, ସ୍ୟମନ୍ତକମଣି କଥା, ତାରକାମୟ ଯୁଦ୍ଧ, ବ୍ରହ୍ମଲୋକ ବର୍ଣ୍ଣନା, ଯୋଗନିଦ୍ରାରୁ ଉଠାଇ ବ୍ରହ୍ମାଙ୍କର ବିଷ୍ଣୁଙ୍କ ପ୍ରତି ଉକ୍ତି, ପୃଥିବୀର ଉକ୍ତି ଓ ଅଂଶାବତରଣ ଆଦି ପ୍ରସଙ୍ଗମାନ ଉତ୍‌ଥାପିତ ହୋଇଛି ।

କୃଷ୍ଣଙ୍କ ସମ୍ପର୍କରେ ବିବୃତ ହୋଇଥିବା ବିଷ୍ଣୁପର୍ବର ବିଷୟବସ୍ତୁ ହେଲା ନାରଦବାକ୍ୟ, ସ୍ୱପ୍ନଗର୍ଭ ବିଧି, ଆର୍ଯ୍ୟସ୍ତବ, କୃଷ୍ଣଙ୍କର ଜନ୍ମ, ଗୋ ବ୍ରଜଗମନ, ଶକଟ, ପୂତନା ଓ ଯାମଳାର୍ଜ୍ଜୁନ ବଧ, ଗୋପାଳମାନଙ୍କୁ ଭୟଭୀତ କରାଇବା ପାଇଁ କୃଷ୍ଣଙ୍କ ଦେହରୁ ବୃକ ଉତ୍ପତ୍ତି, ବୃନ୍ଦାବନ ବର୍ଣ୍ଣନା, ବର୍ଷାବର୍ଣ୍ଣନା, ଯମୁନା ହ୍ରଦ ଦର୍ଶନ, କାଳୀୟ ଦଳନ, ଧେନୁକ ଭଂଜନ, ପ୍ରଳମ୍ବନିଧନ, ଶରତରତୁ ବର୍ଣ୍ଣନା, ଗିରି ଯଜ୍ଞ ଓ ଗୋବର୍ଦ୍ଧନ ଧାରଣ, ଶ୍ରୀକୃଷ୍ଣଙ୍କର ଅଭିଷେକ, ଗୋପୀକ୍ରୀଡ଼ା, ରିଷ୍ଟିସୁର ନିଧନ, ଅକ୍ରୂର ପ୍ରେରଣ, ଅନ୍ଧକ କଥା, କେଶୀ ନିଧନ, ଅକ୍ରୂର ଆଗମନ, ନାଗଲୋକ ଦର୍ଶନ, ଧନୁର୍ଭଙ୍ଗ କଥନ, କଂସବାକ୍ୟ, କୁବଳୟା ପୀଡ଼ନ ଓ ଚାଣୁର ବଧ, କଂସ ନିଧନ, ରାଣୀମାନଙ୍କର କ୍ରନ୍ଦନ, ଉଗ୍ରସେନଙ୍କ ଅଭିଷେକ ଓ ଯାଦବଙ୍କୁ ଆଶ୍ୱାସନା, ରାମକୃଷ୍ଣଙ୍କର ଗୁରୁକୁଳ ଗମନ, ଜରାସନ୍ଧର ମଥୁରା ଆକ୍ରମଣ, ବିକଦ୍ରୁ କଥା, ଗୋମନ୍ତ ଆରୋହଣ ଓ ସେଠାବକୁ ଜରାସନ୍ଧର ଗତି, ଗୋମନ୍ତ ଗିରି ଦହନ, କରବୀର ପୁର ଗମନ, ଶୃଗାଳ ବଧ, ମଥୁରା ଆଗମନ, କାଳଯବନ ବଧ, ଦ୍ୱାରକା ନିର୍ମାଣ, ରୁକ୍ମିଣୀ ହରଣ, ରୁକ୍ମଣ ନିଧନ, ବଳଦେବଙ୍କର ଆହ୍ନିକ, ନାରକାସୁର ବଧ, ପାରିଜାତ ହରଣ, ନିକୁମ୍ଭ ବଧ, ପ୍ରଭାବତୀ ହରଣ, ବଜ୍ରନାଭ ବଧ, ଦ୍ୱାରାବତୀର ପୁନର୍ନିର୍ମାଣ, ନାରଦଙ୍କର ପ୍ରବେଶ, ବୃଷ୍ଣିବଂଶ ଅନୁକୀର୍ତ୍ତନ, ଷଟ୍‌ପୁର ଓ ଅନ୍ଧକ ବଧ, କୃଷ୍ଣଙ୍କର ସମୁଦ୍ର ଯାତ୍ରା ଓ ଜଳକ୍ରୀଡ଼ା, ଭୈମବୀର ମାନଙ୍କର ମଧୁପାନ ପ୍ରବୃତ୍ତି, ଛାଳିକ୍ୟ ଗାନ୍ଧର୍ବ ଉଦାହରଣ, ଭାନୁମତି ହରଣ, ଶମ୍ବର ବଧ, ଧନ୍ୟ ଉପାଖ୍ୟାନଂ, ବାସୁଦେବଙ୍କର ମାହାତ୍ମ୍ୟ, ବାଣ ସହ ଯୁଦ୍ଧ ଇତ୍ୟାଦି । ଭବିଷ୍ୟ ପର୍ବରେ ପାଣ୍ଡବବଂଶ ପ୍ରତିଷ୍ଠା, ବ୍ୟାସଙ୍କର ଭବିଷ୍ୟ ବୃତାନ୍ତ କଥନ, ପୁଷ୍କର ପ୍ରାଦୁର୍ଭାବ କଥନ, ବରାହ, ନରସିଂହ ଓ ବାମନ ଅବତାର ବର୍ଣ୍ଣନ, କୃଷ୍ଣଙ୍କର କୈଳାସ ଯାତ୍ରା, ପୌଣ୍ଡକ ବଧ, ହଂସ ଓ ଡିମ୍ଭକ ବଧ, ତ୍ରିପୁର ବଧ ଇତ୍ୟାଦିର ବର୍ଣ୍ଣନା କରାଯାଇଛି ।

ଓଡ଼ିଆ ସାହିତ୍ୟରେ ହରିବଂଶ ବୋଲି କହିଲେ ଆମେ ସାଧାରଣତଃ ଦୁଇଗୋଟି ହରିବଂଶର କଥା ବୁଝିଥାଉ । ଗୋଟିଏ ହେଲା ଅଚ୍ୟୁତାନନ୍ଦ ଦାସଙ୍କ ରଚିତ ସପ୍ତଖଣ୍ଡ ହରିବଂଶ ଓ ଅନ୍ୟଟି ନାରାୟଣ ଦାସଙ୍କ ରଚିତ ଖଣ୍ଡିକିଆ ହରିବଂଶ । ଖଣ୍ଡିକିଆ ହରିବଂଶ ସାତଖଣ୍ଡିଆ ହରିବଂଶର ସଂକ୍ଷିପ୍ତ ରୂପ । ହୁଏତ ସାତଗୋଟି ଖଣ୍ଡରେ ସମାପ୍ତ ହେଉଥିବାରୁ ଅଚ୍ୟୁତାନନ୍ଦ ଦାସଙ୍କ ରଚିତ ହରିବଂଶକୁ ସପ୍ତଖଣ୍ଡ ବୋଲି କୁହାଯାଉଛି । ସେହିପରି ଭାବରେ ଗୋଟିଏ ଖଣ୍ଡରେ ଶେଷ ହୋଇଯାଉଥିବାରୁ ନାରାୟଣ ଦାସଙ୍କ ହରିବଂଶକୁ ଖଣ୍ଡିକିଆ ବୋଲି କୁହାଯାଉଛି ।

ଅଚ୍ୟୁତାନନ୍ଦ ଦାସ ଓ ନାରାୟଣ ଦାସଙ୍କ ହରିବଂଶକୁ ନିଜେ କବି ଭାଗବତ ହରିବଂଶ ବୋଲି ସୂଚନା ଦେଇଛନ୍ତି । ଏ ଦୁଇଟି ଯାକ ହରିବଂଶର ସଂସ୍କୃତ ଖିଳ ହରିବଂଶ ସହିତ କୌଣସି ସମ୍ପର୍କ ନାହିଁ । ଖିଳ ହରିବଂଶର ବିଷ୍ଣୁପର୍ବର କିଛି ଅଂଶକୁ ଏହି ହରିବଂଶଦ୍ୱୟର ବିଷୟବସ୍ତୁ କରାଯାଇଛି । ଏହି ହରିବଂଶଦ୍ୱୟ ଭାଗବତର ମଧ୍ୟ ଅଂଶବିଶେଷ । କୃଷ୍ଣଙ୍କର ଜୀବନ କାହାଣୀକୁ ଭାଗବତରୁ ସଂଗ୍ରହ କରି ଏଥିରେ ସ୍ଥାନିତ କରାଯାଇଛି । ସଂସ୍କୃତ ସାହିତ୍ୟରେ ହରିବଂଶ କହିଲେ ହରିଙ୍କର ବିଭିନ୍ନ ଜନ୍ମର କାହାଣୀକୁ ବର୍ଣ୍ଣନା କରାଯାଇଥିବା ବେଳେ ଓଡ଼ିଆ ଅଚ୍ୟୁତାନନ୍ଦ ଓ ନାରାୟଣଙ୍କ ହରିବଂଶରେ କେବଳ କୃଷ୍ଣଙ୍କର କାହାଣୀକୁ ଉପସ୍ଥାପନା କରାଯାଇଛି ।

ଓଡ଼ିଆରେ ତିନି ପ୍ରକାରରର ହରିବଂଶ ଦେଖିବାକୁ ମିଳିଥାଏ । ତନ୍ମଧ୍ୟରୁ ଗୋଟିଏ ହେଲା ଭାଗବତ ହରିବଂଶ, ଗୋଟିଏ ହେଲା ରାମାୟଣ ହରିବଂଶ ଓ ଆଉ ଗୋଟିଏ ହେଲା ଭାରତ ବା ଭାରଥ ହରିବଂଶ । ନାରାୟଣ ଦାସ ତାଙ୍କ ରଚିତ ହରିବଂଶକୁ ଭାଗବତ ହରିବଂଶ ବୋଲି ସ୍ୱୀକାର କରିଛନ୍ତି ଓ ବାରମ୍ବାର ତାହାର ଉଲ୍ଲେଖ ମଧ୍ୟ କରିଛନ୍ତି । କେତେକ ଖଣ୍ଡିକିଆ ହରିବଂଶ ପୋଥିର ପ୍ରାରମ୍ଭରେ ମଧ୍ୟ 'ଭାଗବତ ହରିବଂଶ ଲେଖ୍ୟ' ବୋଲି ସୂଚିତ କରାଯାଇଛି । ଏହା ବ୍ୟତୀତ ଗ୍ରନ୍ଥର ବହୁ ସ୍ଥାନରେ ଏହା ଭାଗବତର ଅଂଶବିଶେଷ ବୋଲି କୁହାଯାଇଛି । ଯେମିତି-

ହରିବଂଶ ଚରିତ ଏ ଅଟେ ମହାରସ
ଶୁଣ ତୁହି ପରୀକ୍ଷିତ ଗ୍ରନ୍ଥ ହରିବଂଶ
ଭାଗବତ ସଂକ୍ଷେପିଣ କରି ହରିବଂଶ
ଶ୍ରୀହରି ଚରଣେ ନମେ ନାରାୟଣ ଦାସ ।
(୨୦୧୮ ମସିହାରେ ଧର୍ମଗ୍ରନ୍ଥ ଷ୍ଟୋରଦ୍ୱାରା ମୁଦ୍ରିତ ଖଣ୍ଡିକିଆ ହରିବଂଶ ପୃ-୪)

କିମ୍ବା

ଏହି ଭାଗବତ ହରିବଂଶର ପୁରାଣ
ଶୁଣିଲେ ଯେ ଅପୁତ୍ରିକ ପୁତ୍ର ପାଏ ପୁଣ
ଏହି ଯେଉଁ ଭାଗବତ ଶ୍ରୀହରିଙ୍କ ରସ
ସେ ହରି ପାଦେ ଶରଣ ନାରାୟଣ ଦାସ
(ସେହି ଗ୍ରନ୍ଥର ୭୯ ପୃଷ୍ଠା ଦ୍ରଷ୍ଟବ୍ୟ)

ଅଚ୍ୟୁତାନନ୍ଦଙ୍କର ସପ୍ତଖଣ୍ଡ ହରିବଂଶର ବିଷୟବସ୍ତୁରେ ଭାଗବତର ଦଶମ ଓ ଏକାଦଶ ସ୍କନ୍ଧର ବିଷୟବସ୍ତୁକୁ ଗ୍ରହଣ କରାଯାଇଛି । ଅଧିକନ୍ତୁ ଏଥିରେ ସୋମ ଏବଂ ବୁଧଙ୍କର ଜନ୍ମବୃତ୍ତାନ୍ତ ରହିଛି ଯାହା ଭାଗବତର ଦଶମ ଓ ଏକାଦଶ ସ୍କନ୍ଧରେ ନାହିଁ । 'ଖିଳ ହରିବଂଶ'ର ହରିବଂଶ ପର୍ବର ପଞ୍ଚବିଂଶ ଅଧ୍ୟାୟରେ ସୋମ ଏବଂ ବୁଧଙ୍କର ଜନ୍ମ ବୃତ୍ତାନ୍ତ ରହିଛି । ଭାଗବତର ନବମସ୍କନ୍ଧ ଚତୁର୍ଦ୍ଦଶ ଅଧ୍ୟାୟରେ ମଧ୍ୟ ସୋମ ଏବଂ ବୁଧଙ୍କର କାହାଣୀ ରହିଛି । ତେଣୁ ଅଚ୍ୟୁତାନନ୍ଦଙ୍କ ହରିବଂଶକୁ ଭାଗବତ ନବମସ୍କନ୍ଧର କିଛି ଅଂଶ ତଥା ଦଶମ ଓ ଏକାଦଶ ସ୍କନ୍ଧର ବିଷୟବସ୍ତୁ ରୂପେ ଗ୍ରହଣ କରିବାକୁ ପଡ଼ିବ । ଅଚ୍ୟୁତାନନ୍ଦ ମଧ୍ୟ ତାଙ୍କ ହରିବଂଶକୁ ଭାଗବତର ଅଂଶ ବିଶେଷ ବୋଲି ବାରମ୍ବାର ଉଲ୍ଲେଖ କରିଛନ୍ତି । ଯେମିତି-

ଶ୍ରୀ ଜଗନ୍ନାଥଙ୍କର ଚରଣେ ମୋ ସେବା
ବିଶେଷ ଜନେ ଏ ଭାଗବତକୁ ଶୁଣିବା
(୨୦୧୬ ମସିହାରେ ଧର୍ମଗନ୍ଥ ଷ୍ଟୋର ଦ୍ୱାରା ପ୍ରକାଶିତ ସପ୍ତଖଣ୍ଡ ହରିବଂଶ, ଦ୍ୱିତୀୟ ଖଣ୍ଡ - ପୃ - ୨)

ଦଶମ ସ୍କନ୍ଧର ଏହୁ ଅଟଇ ଚରିତ
ଇଦଂ ଅଷ୍ଟାବିଂଶ ଅଧ୍ୟା ହେଲା ସମାପତ
(ସେହିଗ୍ରନ୍ଥର ତୃତୀୟ ଖଣ୍ଡ-ପୃ-୭୯)
ଶୁଣ ପରୀକ୍ଷ କହନ୍ତି ଶୁକ ମହାମୁନି
ଇତି ଶିରୀ ଭାଗବତ ପୁରାଣର ଧ୍ୱନି ।
(ସେହି ଗ୍ରନ୍ଥର ପଞ୍ଚମ ଖଣ୍ଡ - ପୃ-୧୬୦) ଇତ୍ୟାଦି ।

ସେହି ଦୃଷ୍ଟିରୁ ଅଚ୍ୟୁତାନନ୍ଦ ଓ ନାରାୟଣଙ୍କ ହରିବଂଶକୁ ଭାଗବତ ହରିବଂଶ କହିବା ଅଧିକ ଯୁକ୍ତିଯୁକ୍ତ । ରାମାୟଣ ହରିବଂଶରେ ରାମଙ୍କର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ କାହାଣୀକୁ ଗୁମ୍ଫନ କରାଯାଇଛି । ରାମଚନ୍ଦ୍ର ହରିଙ୍କର ଅନ୍ୟ ଏକ ଅବତାର ହୋଇଥିବାରୁ ତାଙ୍କର ଜୀବନକାହାଣୀକୁ ହରିବଂଶ ବୋଲି ପୁରୁଷୋତ୍ତମ ଦାସଙ୍କ ରଚିତ ରାମାୟଣ ହରିବଂଶରେ କୁହାଯାଇଛି । ଭାଗବତ ହରିବଂଶରେ ଖିଳହରିବଂଶ ବିଷ୍ଣୁ ପର୍ବର କିଛି ବିଷୟବସ୍ତୁ ରହିଥିବାରୁ ତାହାକୁ ହରିବଂଶ ବୋଲି କହିବାରେ କିଛି ଅସଙ୍ଗତି ନାହିଁ । ମାତ୍ର ରାମାୟଣ ହରିବଂଶର ମୂଳହରିବଂଶ ସହିତ କୌଣସି ସାମଞ୍ଜସ୍ୟ ନାହିଁ । କେବଳ ହରି ସ୍ୱରୂପ ରାମଙ୍କର ଜୀବନ କାହାଣୀ ବର୍ଣ୍ଣିତ ହୋଇଥିବାରୁ ତାହାକୁ ହରିବଂଶ ବୋଲି କୁହାଯାଇଛି ।

ଭାଗବତ ହରିବଂଶରେ କଂସର ଜନ୍ମ ପୂର୍ବରୁ ସଂସାର ସର୍ଜନା ଓ ସମୁଦ୍ର ମନ୍ଥନ ସମ୍ପର୍କରେ ସୂଚନା ଦିଆଯାଇଛି । କଂସ ଜନ୍ମ ହୋଇସାରିବା ପରେ ତାର ସାମ୍ରାଜ୍ୟ ପାଳନ, ଦେବକୀ ଓ ଦୈବକୀଙ୍କର ବିବାହ, ହରିଙ୍କ ନିକଟରେ ଦେବଙ୍କର ଗୁହାରି ପରେ ବଳଦେବ ଓ କୃଷ୍ଣ ଜନ୍ମ ହୋଇଛନ୍ତି । ଶ୍ରୀକୃଷ୍ଣଙ୍କୁ ଗୋପପୁରରେ ରଖିଦେଇ ଆସିବା ପରେ କଂସଦ୍ୱାରା ପ୍ରେରିତ ହୋଇଥିବା ବିଭିନ୍ନ ରାକ୍ଷସ ଓ ରାକ୍ଷସୀଙ୍କର ମୃତ୍ୟୁ ଘଟିଛି । ପୂତନା, ତୃଣାବର୍ତ୍ତ, ଶକଟାସୁର ଓ ଯାମଳାର୍ଜ୍ଜୁନ ଇତ୍ୟାଦି ରାକ୍ଷସ ଶ୍ରୀକୃଷ୍ଣଙ୍କୁ ମାରିବାକୁ ଯାଇ ଜଣକ ପରେ ଜଣେ ମୃତ୍ୟୁ ମୁଖରେ ପଡ଼ିଛନ୍ତି । ଭାଗବତର ରାସପଞ୍ଚାଧ୍ୟାୟୀ ପରି ଶ୍ରୀକୃଷ୍ଣଙ୍କର ଗୋପୀମାନଙ୍କ ସହିତ ରାସକ୍ରୀଡ଼ାକୁ ବିଭିନ୍ନ ଅଧ୍ୟାୟରେ ରସାଳକରି ବର୍ଣ୍ଣନା କରାଯାଇଛି । କୃଷ୍ଣଙ୍କର ରାଧାଙ୍କ ସହିତ ମିଳନ, ଗୋପାଳଙ୍କ ସହିତ କ୍ରୀଡ଼ା, ନଟୁ ଚୋରୀ, ଘାଟ ସଧା ଓ ରାସକ୍ରୀଡ଼ା, ଶରତ ରାସୋତ୍ସବ ଆଦି ବର୍ଣ୍ଣନା କରିବାର ମଝିରେ ନାରଦଙ୍କୁ ମାୟାପ୍ରଦର୍ଶନ, ଗଜକୁମ୍ଭୀର ଉପାଖ୍ୟାନ, ଅଘାସୁର ବଧ, ବ୍ରହ୍ମଦୈତ୍ୟର ବନ୍ଦୀ, ଷଣ୍ଢାସୁର, ବକାସୁର, କେଶୀଦୈତ୍ୟ, ଧେନୁକାସୁର, ପ୍ରଳମ୍ବାସୁର, ବ୍ୟୋମାସୁର ଓ ଧୂମ୍ରକେତୁ ଇତ୍ୟାଦିଙ୍କ ମୃତ୍ୟୁକୁ ମଧ୍ୟ ବର୍ଣ୍ଣନା କରାଯାଇଛି । କଂସ ଅକ୍ରୂର ସହିତ ମନ୍ତ୍ରଣାକରି ଧେନୁ ଉତ୍ସବ ଦେଖିବାପାଇଁ ମଥୁରାକୁ କୃଷ୍ଣବଳରାମଙ୍କୁ ଡକାଇ ପଠାଇଛି । କଂସରାଜାର ଚିଟାଉଧରି ଅକ୍ରୂର ଗୋପପୁରକୁ ଯାତ୍ରାକରି କୃଷ୍ଣ ବଳରାମଙ୍କୁ ରଥରେ ବସାଇ ଘେନି ଆସିଛି । ମଥୁରାରେ ରଜକର ବଧ, ଧନୁ ଭଙ୍ଗ, ମଲ୍ଲମାନଙ୍କର ମୃତ୍ୟୁ ହେବାପରେ କଂସର ମଧ୍ୟ ମୃତ୍ୟୁ ଘଟିଛି ।

କଂସର ମୃତ୍ୟୁ ହେବାପରେ ନାରାୟଣ ଦାସଙ୍କ ଖଣ୍ଡିକିଆ ହରିବଂଶରେ ଆଉକିଛି ଅଧ୍ୟାୟ ସଂଯୋଜିତ ହୋଇଛି । ସେଥିରେ ଉଗ୍ରସେନର ରାଜ୍ୟାଭିଷେକ, ଶ୍ରୀକୃଷ୍ଣଙ୍କର ବିଦ୍ୟାପାଠ ଓ ଅସ୍ତ୍ରଶିକ୍ଷା, କାଳଯବନର ମୃତ୍ୟୁ, ଜରାସନ୍ଧ ଭୟରେ ଶ୍ରୀକୃଷ୍ଣଙ୍କର ଦ୍ୱାରକା ଗମନ, ସାତ୍ୟକି ଓ ସୁଭଦ୍ରାଙ୍କର ଜନ୍ମ, ବଳଦେବଙ୍କର ବିବାହ, ରୁକ୍ମିଣୀ ହରଣ, ଶ୍ରୀକୃଷ୍ଣଙ୍କର ଅଷ୍ଟସଖୀ ବିବାହ, ଯଦୁବଂଶ ଧ୍ୱଂସ ଓ ପାଣ୍ଡବଙ୍କର ମହାଯାତ୍ରା ଆଦି ଅଧିକ ପାଠ ରହିଛି । ସପ୍ତଖଣ୍ଡ ହରିବଂଶର ତୃତୀୟ ଖଣ୍ଡରେ କଂସ ବଧ ହୋଇ ସାରିଛି । ମାତ୍ର କଂସ ବଧପରେ ନାରାୟଣ ଦାସଙ୍କ ହରିବଂଶରେ ପ୍ରଦାନ କରାଯାଇଥିବା ଆଉ କେତେକ ଅଧ୍ୟାୟକୁ ବିସ୍ତୃତ ଭାବରେ ପରବର୍ତ୍ତୀ ଚାରିଖଣ୍ଡ ଗ୍ରନ୍ଥରେ ପ୍ରକାଶ କରାଯାଇଛି । ଭାରତ ହରିବଂଶରେ ଏହି ସବୁ ବିଷୟ ମଧ୍ୟ ବର୍ଣ୍ଣନା କରାଯାଇଛି, ଯାହା ନିର୍ଦ୍ଦିଷ୍ଟ ସ୍ଥାନରେ ବର୍ଣ୍ଣନା କରାଯିବ ।

ପୁରୁଷୋତ୍ତମ ଦାସଙ୍କର ରାମାୟଣ ହରିବଂଶରେ ଆଦ୍ୟ କାଣ୍ଡ, ଅଯୋଧ୍ୟା କାଣ୍ଡ, ଆରଣ୍ୟକ କାଣ୍ଡ, କିସ୍କିନ୍ଧ୍ୟା କାଣ୍ଡ, ସୁନ୍ଦରା କାଣ୍ଡ, ଲଙ୍କା କାଣ୍ଡ, ବିଲଙ୍କାକାଣ୍ଡ ଓ ଉତ୍ତରା କାଣ୍ଡ ନାମରେ ଆଠଗୋଟି କାଣ୍ଡ ସନ୍ନିବେଶିତ ହୋଇଛି । ସାଧାରଣତଃ ରାମାୟଣର କାହାଣୀ ଯାହା ରାମାୟଣ ହରିବଂଶର ବିଷୟବସ୍ତୁ ତାହା ହୋଇଥିଲେ ମଧ୍ୟ ଏଥିରେ କିଛି ନୂତନ ବିଷୟବସ୍ତୁକୁ ସଂଯୋଜିତ କରାଯାଇଛି ।

ଆଦ୍ୟକାଣ୍ଡରେ ବେଙ୍ଗବତୀର ଚରିତ ବର୍ଣ୍ଣନା କରାଯାଇଛି । ଜଣେ ଋଷିଙ୍କୁ ରକ୍ଷା କରିବାକୁ ଯାଇ ବେଙ୍ଗଟିଏ ଜୀବନ ତ୍ୟାଗକରି ପରେ ସୁନ୍ଦରୀ କନ୍ୟାଟିଏରେ ରୂପାନ୍ତରିତ ହୋଇଛି ଓ ସେହି କନ୍ୟା ବାଳୀଦ୍ୱାରା ଧର୍ଷିତା ହୋଇ ଗର୍ଭରେ ଅଙ୍ଗଦକୁ ଧାରଣ କରିଛି । ପୁନଶ୍ଚ ରାବଣ ତାହାକୁ ବିବାହ କରିବାକୁ ଯାଉଥିବା ବେଳେ ବାଳୀ ଓ ରାବଣ ମିଶି କନ୍ୟାକୁ ଦୁଇ ପାଖକୁ ଓଟାରିବାରୁ ବେଙ୍ଗବତୀ ଦୁଇଖଣ୍ଡ ହୋଇଯାଇଛି । ବ୍ରହ୍ମା ସେହି କନ୍ୟାକୁ ପୁନର୍ଜୀବନ ଦାନକରି ରାବଣକୁ ଅର୍ପଣ କରିଛନ୍ତି ଓ ଅଙ୍ଗଦକୁ ବାଳୀକୁ ପ୍ରଦାନ କରିଛନ୍ତି ।

ଏହିପରି ଏକ ସୁନ୍ଦର କାହାଣୀରୁ ଆରମ୍ଭ ହୋଇଥିବା ରାମାୟଣ ହରିବଂଶରେ ବହୁ ନବସୃଷ୍ଟ କାହାଣୀ ରହିଛି ଯାହା ମୂଳ ସଂସ୍କୃତ ରାମାୟଣ ବା ଅନ୍ୟ କୌଣସି ରାମାୟଣରେ ନାହିଁ । ଆଦ୍ୟ କାଣ୍ଡରେ ଗଙ୍ଗାଙ୍କର ମାହାତ୍ମ୍ୟ ବର୍ଣ୍ଣନା ମଧ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଅଯୋଧ୍ୟାକାଣ୍ଡରେ ଗୁହ ଶବର ସହିତ ଶ୍ରୀରାମଙ୍କର ମିତ୍ରତା, ପର୍ଶୁରାମଙ୍କର ବଂଶ ପରମ୍ପରା, ରାମଚନ୍ଦ୍ରଙ୍କୁ ସିଂହାସନରେ ବସାଇବାପାଇଁ ଆୟୋଜନ ଓ କୈକେୟୀଙ୍କର ଭରତଙ୍କୁ ରାଜା ତଥା ରାମଚନ୍ଦ୍ରଙ୍କୁ ଚଉଦବର୍ଷ ବନବାସକୁ ପଠାଇବା ପାଇଁ ବରଭିକ୍ଷା, ଦଶରଥଙ୍କର ମୃତ୍ୟୁ, ଭରତଙ୍କୁ ରତ୍ନକଠଉ ସମର୍ପଣ କରିବା ଆଦି ବିଷୟବସ୍ତୁ ବର୍ଣ୍ଣିତ ହୋଇଛି । ଆରଣ୍ୟକ କାଣ୍ଡରେ ରାମଚନ୍ଦ୍ରଙ୍କର ଅତ୍ରିମୁନି ଓ ଶରଭଙ୍ଗଙ୍କ ଆଶ୍ରମରେ ପ୍ରବେଶ, ଫଲଗୁ ନଦୀରେ ପିଣ୍ଡଦାନ, ଚାମରୀ ମୃଗ ଉପାଖ୍ୟାନ, ପଞ୍ଚୁବଟୀରେ ମଢ଼ିଆ ନିର୍ମାଣ, ସୂର୍ପଣଖାର ନାସାକର୍ଣ୍ଣ ଛେଦନ, ଖର, ଦୂଷଣଙ୍କର ନିଧନ, ସୁବର୍ଣ୍ଣ ମୃଗରୂପରେ ମାରିଚିର ପଞ୍ଚୁବଟୀ ପ୍ରବେଶ, ତପସ୍ୱୀ ରୂପଧାରଣ କରି ରାବଣର ସୀତା ହରଣ, ପକ୍ଷୀଜଟା ସହ ଯୁଦ୍ଧ, ସୀତାଙ୍କୁ ନେଇ ଅଶୋକ ବନରେ ରଖିବା, ରାମ ଲକ୍ଷ୍ମଣଙ୍କର ଶୋକ, ବକପକ୍ଷୀକୁ ବରପ୍ରଦାନ ଓ ଚକୁଆ ଚକୋଇକୁ ଅଭିଶାପ ଇତ୍ୟାଦି ସନ୍ନିବିଷ୍ଟ ।

କିଷ୍କିନ୍ଧ୍ୟା କାଣ୍ଡରେ ବହୁ ନୂତନ କଥାବସ୍ତୁର ସଂଯୋଜନା ହୋଇଛି । ସାଧାରଣ ଭାବରେ ସୁଗ୍ରୀବଙ୍କ ସହିତ ମିତ୍ରତା, ବାଳୀବଧ, ହନୁମାନ ଓ ଅଙ୍ଗଦ ଇତ୍ୟାଦିଙ୍କ ସହ ସାକ୍ଷାତ ପରେ ରାମଚନ୍ଦ୍ର କୁକ୍କୁଟ ଓ ସୁବୁଧି ଗୋପାଳକୁ ବରପ୍ରଦାନ କରିଛନ୍ତି । ସୀତାଙ୍କ ଅନ୍ୱେଷଣରେ ଚାରିଦିଗକୁ ଯେଉଁ ଦୂତମାନେ ଯାଇଛନ୍ତି ସେହି ସ୍ଥାନରେ ପୁରୁଷୋତ୍ତମ ଦାସ ନିଜର କବିତ୍ୱକୁ ପରିସ୍ଫୁଟ କରାଇଛନ୍ତି । ପୂର୍ବଦିଗର ଦୂତମାନଙ୍କର କପିଳ ମୁନି, ମାଧବ ସୁଲୋଚନା ଓ ଟିଟୋରୀପକ୍ଷୀ ସହ ସାକ୍ଷାତ ହୋଇଛି । ପଶ୍ଚିମ ଦିଗର ଦୂତମାନେ ବିଭାଣ୍ଡକ ଋଷିଙ୍କ ସହ ସାକ୍ଷାତ କରି ତାଙ୍କ ମୁଖରୁ ରାମ, ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନଙ୍କର ଉତ୍ପତ୍ତି ଶ୍ରବଣ କରିଛନ୍ତି । ଦକ୍ଷିଣ ଦିଗର ଦୂତମାନେ ଶାଖାଦ୍ୱୀପରେ ପ୍ରବେଶ କରି ସେଠାରେ ଗୋଟିଏ ପୋଖରୀରୁ ପଦ୍ମ ତୋଳିବାକୁ ଯାଇ ପଦ୍ମିନୀ କନ୍ୟାଙ୍କର ସାକ୍ଷାତ ପାଇଛନ୍ତି ଓ ତାହାଙ୍କଠାରୁ ସାହାଯ୍ୟ ପ୍ରାପ୍ତ ହୋଇଛନ୍ତି । ଦକ୍ଷିଣ ଦିଗର ଦୂତମାନେ ଗୋଟିଏ ବିବର ମଧ୍ୟରେ ପ୍ରବେଶ କରି ସୀତାଙ୍କର ଭଗ୍ନୀ ଚନ୍ଦ୍ରରେଖା ସହିତ ସାକ୍ଷାତ କରି ତାଙ୍କଠାରୁ ଅମୃତପାନ କରିଛନ୍ତି । ସମୁଦ୍ରକୂଳରେ ସେମାନଙ୍କର ସମ୍ପାତି ସହିତ ସାକ୍ଷାତ ହୋଇଛି । ସମ୍ପାତିର ପୁତ୍ର ହନୁମାନକୁ କାନ୍ଧରେ ବସାଇ ଲଙ୍କାପୁର ପ୍ରଦର୍ଶନ କରାଇଛି । ଚନ୍ଦ୍ରରେଖାର ପୂର୍ବଜନ୍ମ କଥା ମଧ୍ୟ ଏହି କାଣ୍ଡରେ ବର୍ଣ୍ଣିତ ହୋଇଛି ।

ସୁନ୍ଦରାକାଣ୍ଡରେ ଆଉ ଏକ ନୂଆ ଘଟଣାର ଉଲ୍ଲେଖ କରାଯାଇଛି । ହନୁମାନ ଡେଇଁକରି ଲଙ୍କାକୁ ଯାଉଥିବା ବେଳେ ମଣିନାଗ ପର୍ବତ ତାହାକୁ ଆଶ୍ରୟ ଦେଇ ତାର କ୍ଷୁଧାନିବାରଣ କରିଛି । ଇନ୍ଦ୍ରଦ୍ୱାରା ପ୍ରେରିତ ଉଗ୍ରତାରା ହନୁମାନର ପଥରୋଧ କରିବାରୁ ସେ ହନୁମାନଦ୍ୱାରା ନିହତ ହୋଇଛି । ତାପରେ ହନୁମାନ ଲଙ୍କାକୁ ଯିବା ପରିବର୍ତ୍ତେ ବିଲଙ୍କାରେ ଯାଇ ପ୍ରବେଶ କରି କପିଳ ମୁନିଙ୍କର ଆଶ୍ରମରେ ଉପସ୍ଥିତ ହୋଇଛି । ସେଠାରେ ହନୁମାନର ଦର୍ପଭଗ୍ନ ହୋଇଛି ଓ ସେ ମୁନିଙ୍କର କୁଶବଟୁରେ ବସି ଲଙ୍କାକୁ ଯାତ୍ରା କରିଛି । ଲଙ୍କାରେ ପ୍ରବେଶ କରି ହନୁମାନ ଲଙ୍କିନୀକୁ ହତ୍ୟାକରିବା, ଲଙ୍କିନୀର ପୂର୍ବ ଜନ୍ମ କଥନ, ହନୁମାନର ବିଭୀଷଣଙ୍କ ଗୃହରେ ପ୍ରବେଶ, ସୀତାଙ୍କ ସହ ସାକ୍ଷାତ, ଇନ୍ଦ୍ରଜିତଦ୍ୱାରା ନାଗପାଶରେ ବନ୍ଧନ, ଅସୁରୁଣୀମାନଙ୍କର ହନୁମାନଙ୍କୁ ଭର୍ତ୍ସନା, ହନୁମାନଦ୍ୱାରା ଲଙ୍କା ଦହନ, ଲଙ୍କାପୋଡ଼ା ନାମ ଗ୍ରହଣ କରି ପ୍ରତ୍ୟାବର୍ତ୍ତନ, ଦକ୍ଷିଣ ଦିଗ ଦୂତମାନଙ୍କର ରାମଙ୍କୁ ସମ୍ବାଦପ୍ରଦାନ, ଋକ୍ଷବାନରଙ୍କ ସହ ରାମଚନ୍ଦ୍ରଙ୍କର ସମୁଦ୍ର ତଟରେ ପ୍ରବେଶ, ସେତୁବନ୍ଧ ଆରମ୍ଭ, ଗିଳିଗିଳା, ମହାଗିଳା ଇତ୍ୟାଦି ପାଞ୍ଚଭାଇଙ୍କର ଉପାଖ୍ୟାନ, ସେମାନଙ୍କର ପୂର୍ବଜନ୍ମ, ଶଙ୍ଖାସୁର ପୁତ୍ରର ମୃତ୍ୟୁ, ନଳନୀଳଙ୍କର ପୂର୍ବ ଚରିତ, ଅହଲ୍ୟାଚରିତ, ସେତୁବନ୍ଧରେ ଧୂଳି ଝାଡ଼ିଥିବାରୁ ଇନ୍ଦୁରକୁ ରାମଙ୍କର ପ୍ରଶଂସା, ଇନ୍ଦୁରର ପୂର୍ବଜନ୍ମ ବୃତ୍ତାନ୍ତ ଇତ୍ୟାଦିକୁ ଏହି କାଣ୍ଡର ବିଷୟବସ୍ତୁ କରାଯାଇଛି ।

ଲଙ୍କାକାଣ୍ଡରେ ଅଙ୍ଗଦ ଦୂତ ହୋଇ ରାବଣଙ୍କ ନିକଟକୁ ଯାଇଥିବା ବେଳେ ରାବଣ ଓ ଅଙ୍ଗଦର ଉକ୍ତିପ୍ରତ୍ୟୁକ୍ତି ଅତ୍ୟନ୍ତ ମାର୍ମିକ ହୋଇଛି । ରାବଣ ଏଗାରଗୋଟି ରାମଙ୍କର କଥା କହି ଅଙ୍ଗଦକୁ ତାର ପ୍ରଭୁ କେଉଁ ରାମବୋଲି ଜିଜ୍ଞାସା କରିଥିବା ବେଳେ ପ୍ରତ୍ୟୁତ୍ତରରେ ଅଙ୍ଗଦ ଅଠର ଗୋଟି ରାବଣର କଥା ଉଲ୍ଲେଖ କରିଛି । ଅଙ୍ଗଦ ରାବଣର ମୁକୁଟ ନେଇ ରାମଙ୍କ ନିକଟକୁ ଚାଲିଆସିବାରୁ ରାମଚନ୍ଦ୍ର ଆନନ୍ଦିତ ହୋଇଛନ୍ତି ତଥା ତାର ପିତା ବାଳୀଙ୍କୁ ହତ୍ୟା କରିଥିବା ଯୋଗୁଁ ଦୁଃଖପ୍ରକାଶ କରି ଦ୍ୱାପର ଯୁଗରେ ଶବର ବେଶରେ ସେ ମଧ୍ୟ ତାଙ୍କୁ ହତ୍ୟାକରିବ ବୋଲି ବରପ୍ରଦାନ କରିଛନ୍ତି । ବରପ୍ରାପ୍ତ ହୋଇ ଅଙ୍ଗଦ ଦୁଃଖରେ ଅଧୀର ହୋଇପଡ଼ିଛି ଏବଂ ଏଭଳି ବରପ୍ରାପ୍ତ ହୋଇଥିବାରୁ ହନୁମାନ କ୍ରୋଧାନ୍ୱିତ ହୋଇ ଅଙ୍ଗଦକୁ ବିନାଶ କରିବାକୁ ଉଦ୍ୟମ କରିଛି । ଏହାପରେ ଶ୍ରୀରାମଙ୍କ ସୈନ୍ୟ କଳନା କରିବାପାଇଁ ରାବଣର ଶୂନ୍ୟମାର୍ଗରେ ଆଗମନ, ଶ୍ରୀରାମଙ୍କ କତୁରିବାଣଦ୍ୱାରା ରାବଣର ଛତ୍ରଚିରାଳ ଛେଦନ, ବିଭୀଷଣଙ୍କର ଶ୍ରୀରାମଙ୍କ ନିକଟରେ

ଶରଣ ଭିକ୍ଷା, ଯଦି ଛଳନା କରୁଥାଆନ୍ତି ତେବେ କଳିଯୁଗରେ ରାଜା, ବ୍ରାହ୍ମଣ ଓ ବେଶ୍ୟା ହୋଇ ଜନ୍ମ ନେବେ ବୋଲି ଜଳ ଅଞ୍ଜଳି ଧରି ବିଭୀଷଣଙ୍କର ନିୟମ, ଛଦ୍ମବେଶରେ ଶୁକ ଓ ସାରଣଙ୍କର ରାମଙ୍କ ସୈନ୍ୟ ମଧ୍ୟରେ ପ୍ରବେଶ ଓ ଧରା ପଡ଼ିବାପରେ ଶ୍ରୀରାମଙ୍କଦ୍ୱାରା ମୁକ୍ତି, କଙ୍କ, ଧଙ୍କଙ୍କର ମୃତ୍ୟୁ, ଇନ୍ଦ୍ରଜିତ ବଧ, କୁମ୍ଭକର୍ଣ୍ଣର ମୃତ୍ୟୁ, ମହୀରାବଣର ଶ୍ରୀରାମଙ୍କୁ ପାତାଳପୁରକୁ ଅପହରଣ, ରାମଚଣ୍ଡୀଙ୍କର ଆଖ୍ୟାନ, ମହୀରାବଣ ଓ ସ୍ଥୂଳଜଙ୍ଘଙ୍କର ମୃତ୍ୟୁ, ରାବଣର ଶକ୍ତି ଘାତରେ ଲକ୍ଷ୍ମଣ ଚେତାଶୂନ୍ୟ, ହନୁମାନର ଗନ୍ଧମାର୍ଦ୍ଦନ ଆନୟନ, ଜଟାସୁର ଓ କୁମ୍ଭୀରାସୁର ବଧ, ଭରତର ବାଟୁଳିରେ ହନୁମାନର ଚେତନା ନାଶ, ଏକସ୍ତନୀ ତାରାକନ୍ୟାଦ୍ୱାରା ଲକ୍ଷ୍ମଣର ଶରୀରରେ ଔଷଧ ପ୍ରଲେପ, ରାବଣର ମାୟାସୀତାଙ୍କୁ ହତ୍ୟା, ସୀତାଙ୍କୁ ଖୋଜିବା ପାଇଁ ହନୁମାନର ପୁନଶ୍ଚ ଲଙ୍କାପ୍ରବେଶ, ଅସୁରୁଣୀମାନେ ଜଳ ଆଣିବାକୁ ଯିବାବେଳେ ପାରସ୍ପରିକ କଥାବର୍ତ୍ତା ମାଧ୍ୟମରେ ସୀତାଙ୍କୁ ପାତାଳପୁରରେ ରଖାଯାଇଥିବାର ପ୍ରକାଶ, ରାମଙ୍କଦ୍ୱାରା ରାବଣ ବଧ, ମନ୍ଦୋଦରୀକୁ ହାଡ଼ି ହାତରେ ସମର୍ପଣ କରିବାପାଇଁ ରାମଚନ୍ଦ୍ରଙ୍କର ନିର୍ଦ୍ଦେଶ, ବିଭୀଷଣ ରାମଙ୍କ ସମ୍ମୁଖରେ ହାଡ଼ି ସଦୃଶ ଛେରା ପହଁରା କରୁଥିବା ବେଳେ ଜମ୍ବେବଙ୍କ ମାଧ୍ୟମରେ ମନ୍ଦୋଦରୀଙ୍କୁ ଲାଭ, ବିଭୀଷଣଙ୍କୁ ଲଙ୍କାରେ ଅଭିଷିକ୍ତ କରି ରାମଚନ୍ଦ୍ରଙ୍କର ଅଯୋଧ୍ୟା ପ୍ରତ୍ୟାର୍ତ୍ତନ, ଲକ୍ଷ୍ମଣଙ୍କଦ୍ୱାରା ନିଦ୍ରାବତୀର କାହାଣୀ ଇତ୍ୟାଦି ବିଷୟବସ୍ତୁ ଲଙ୍କାକାଣ୍ଡର ଶୋଭାବର୍ଦ୍ଧନ କରିଛି ।

ଲଙ୍କାକାଣ୍ଡ ପରେ ବିଲଙ୍କା କାଣ୍ଡର ରଚନା ରାମାୟଣ ହରିବଂଶର ଏକ ବିଶେଷତ୍ୱ । ଅଯୋଧ୍ୟା ସିଂହାସନରେ ବସିବାପରେ ରାବଣକୁ ବଧ କରିଥିବା ହେତୁ ରାମଚନ୍ଦ୍ର ତାଙ୍କ ଧନୁଶରକୁ ପ୍ରଶଂସା କରିବାରୁ ସୀତା ରାମଙ୍କୁ ବ୍ୟଙ୍ଗ କରି କହିଛନ୍ତି, ଯଦି ପ୍ରକୃତରେ ତୁମର ବୀରତ୍ୱଥାଏ, ତେବେ ବିଲଙ୍କାରେ ସହସ୍ରଶିରା ରାବଣକୁ ବଧ କର । ଶ୍ରୀରାମ କ୍ରୋଧଚିତ୍ତ ହୋଇ ବିଲଙ୍କା ଗମନ କରିଛନ୍ତି । ବିଲଙ୍କାରେ ସହସ୍ରଶିରା ସହିତ ସାକ୍ଷାତ ହେବାପରେ ତାର ତାଳିମାଡ଼ରେ ଉଡ଼ିଯାଇ ବୃଦ୍ଧ ଗଣ୍ଡୁକୀ ତୀରରେ ପଡ଼ିଛନ୍ତି । ହନୁମାନ ମଧ୍ୟ ବିଲଙ୍କାରେ ପହଞ୍ଚି ଶ୍ରୀରାମଙ୍କୁ ଖୋଜିବାରେ ଲାଗିଛି । ଶ୍ରୀରାମ ସପ୍ତଶିରା ନାମକ ରାକ୍ଷସକୁ ବଧ କରିଛନ୍ତି । ତା ସ୍ତ୍ରୀର ଗର୍ଭରେ ଥିବା ନାଭିଦୈତ୍ୟ ଜନ୍ମହୋଇ ଯୁଦ୍ଧ ଆରମ୍ଭ କରିଦେଇଛି ଓ ଶ୍ରୀରାମଙ୍କଦ୍ୱାରା ତାର ମୃତ୍ୟୁ ହୋଇଛି । ସୂର୍ପଣଖା ପରି ମାୟା ଅସୁରୀଟିଏ ଶ୍ରୀରାମଙ୍କଠାରେ ପହଞ୍ଚି ତାଙ୍କୁ ବିବାହ କରିବାକୁ ପ୍ରସ୍ତାବ ଦେଇଛି । ରାମଚନ୍ଦ୍ର ତାହାକୁ ହନୁମାନଙ୍କ ନିକଟକୁ ପଠାଇଦେବାରୁ ହନୁମାନ ତା ସହ ରାତ୍ରିଯାପନ କରିଛି । କମ୍ବୁରାକ୍ଷସ ଶ୍ରୀରାମଙ୍କୁ ଅପହରଣ କରିବାପରେ ହନୁମାନ ଶ୍ରୀରାମଙ୍କୁ ଉଦ୍ଧାର କରିଛନ୍ତି । ତ୍ରିଶିରା ଓ କମ୍ବୁ ଯୁଦ୍ଧକରି ନିହତ ହୋଇଛନ୍ତି । ସହସ୍ରଶିରାକୁ ରାମଚନ୍ଦ୍ର ମାରିପାରି ନାହାନ୍ତି । ସୀତାଙ୍କୁ ନ ଆଣିଲେ ସହସ୍ରଶିରା ମରିବ ନାହିଁ ବୋଲି ଦୈବବାଣୀ ହୋଇଛି । ପୁଷ୍ପକ ବିମାନରେ ସୀତା ଓ ଲକ୍ଷ୍ମଣ ବିଲଙ୍କା ଆସିଛନ୍ତି । ସୀତା କନ୍ଦର୍ପବାଣ ପ୍ରେରଣ କରିବା ପରେ ସହସ୍ରଶିରାର ମୃତ୍ୟୁ ହୋଇଛି । ଏଥିରେ ସହସ୍ରମନୁ ଓ ମଦନିକାଙ୍କର ଚରିତ ମଧ୍ୟ ଉଲ୍ଲେଖ କରାଯାଇଛି । ବିଲଙ୍କାରେ ଲୁହାମଇ ବୁଲାଇ ସମସ୍ତେ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ।

ଉତ୍ତରାକାଣ୍ଡ ପୁରୁଷୋତ୍ତମ ଦାସଙ୍କର ଉତ୍ତମ ଚିନ୍ତାଧାରାର ପରିପ୍ରକାଶ ଘଟାଇଥାଏ । ଏହି କାଣ୍ଡରେ ଶ୍ରୀରାମ ପଣ୍ଡା ନାମକ ଜଣେ ଓଡ଼ିଆ ବ୍ରାହ୍ମଣ ଶ୍ରୀରାମଙ୍କ ନିକଟକୁ ଭିକ୍ଷା ମାଗିଯିବା କଥା ଉଲ୍ଲିଖିତ ହୋଇଛି । ରାମଚନ୍ଦ୍ର ସୀତାଙ୍କୁ ତ୍ୟାଗ କରିବାପରେ ସୀତା ବାଲ୍ମୀକି ଆଶ୍ରମକୁ ନଯାଇ ଜନକଙ୍କ ଆଶ୍ରମକୁ ଯିବା ଏହି କାଣ୍ଡର ବିଶେଷତ୍ୱ । ଭାଇମାନଙ୍କୁ ଧରି ରାମଚନ୍ଦ୍ର ପାରିଧି କିରବାକୁ ଯିବାବେଳେ ଜନକଋଷିଙ୍କର ଆଶ୍ରମରେ ପହଞ୍ଚି ସେଠାରେ ରାତ୍ରିଯାପନ କରିଛନ୍ତି । ବଳରାମ ଦାସଙ୍କ ଲକ୍ଷ୍ମୀପୁରାଣରେ ଲକ୍ଷ୍ମୀଙ୍କୁ ତ୍ୟାଗକରି ହୀନସ୍ତା ହେଉଥିବା ଜଗନ୍ନାଥ ଓ ବଳଭଦ୍ର ଲକ୍ଷ୍ମୀଙ୍କ ପ୍ରାସାଦରେ ପହଞ୍ଚି ପୋଡ଼ପିଠାଖାଇ ତାହା ଲକ୍ଷ୍ମୀଙ୍କର ହାତରନ୍ଧା ବୋଲି ଯେମିତି ଜାଣିପାରିଥିଲେ ଏଠାରେ ମଧ୍ୟ ସୀତାଙ୍କର ହାତରନ୍ଧା ଖାଇ ତାହା ଜାନକୀଙ୍କର ହାତରନ୍ଧା ବୋଲି ଚାରିଭାଇ ଜାଣିପାରିଛନ୍ତି । ଜନକଙ୍କ ଅନୁରୋଧରେ ରାମଚନ୍ଦ୍ର ସୀତାଙ୍କୁ ଫେରାଇଆଣି ତାଙ୍କ ସହ ଦୀର୍ଘଦିନ ଶାସନ ଗାଦିରେ ବସିଛନ୍ତି । କାଣ୍ଡର ଶେଷରେ ସୀତା ପାତାଳକୁ ଗମନ କରିଛନ୍ତି, ହନୁମାନ ତ୍ରିଜଟାକୁ ଧରି ବିଲଙ୍କାକୁ ଯାଇଛି, ତାରାକନ୍ୟା ବିଲାତ ଦେଶକୁ ଶାସକ କରିବାକୁ ନିଯୁକ୍ତ ହୋଇଛି, ରାମଚନ୍ଦ୍ର ହିମାଚଳକୁ ଯାଇ ସେଠାରୁ ନନ୍ଦିଘୋଷରେ ନୀଳାଚଳ ପ୍ରବେଶ କରିଛନ୍ତି ।

ରାମାୟଣ ହରିବଂଶରେ ରାମଚନ୍ଦ୍ରଙ୍କର ଜୀବନକାହାଣୀ ସଂପୂର୍ଣ୍ଣ ଭାବରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ କୃଷ୍ଣଙ୍କ ସମ୍ପର୍କରେ କୌଣସି ସ୍ଥାନରେ ଉଲ୍ଲେଖ କରାଯାଇନାହିଁ । ଏହା ସତ୍ତ୍ୱେ ବି ଏହାକୁ ହରିବଂଶ ନାମରେ ଆଖ୍ୟାୟିତ କରାଯାଇଛି । ସାରଳାଙ୍କ ପ୍ରଭାବରେ ଏହିପରି ଭାବନା ସୃଷ୍ଟିହୋଇଥିବାର ଅନୁମାନ କରାଯାଇପାରେ । ସାରଳାଦାସ ଭାଗବତର କିଛି ଅଂଶ ଓ ମହାଭାରତର କିଛି ଅଂଶକୁ ନେଇ ଭାରତ ହରିବଂଶ ରଚନା କରିଥିଲେ । ସେହି ହରିବଂଶର ମୂଳ ହରିବଂଶ ସହିତ କୌଣସି ସାମଞ୍ଜସ୍ୟ ନଥିଲା । ପରବର୍ତ୍ତୀ ସମୟରେ ଅଚ୍ୟୁତାନନ୍ଦ

ଦାସ ଓ ବିପ୍ର ନାରାୟଣ ଦାସ ଯେଉଁ ହରିବଂଶ ରଚନା କଲେ ତାହାକୁ ହରିବଂଶ କୁହାଯାଉଥିଲେ ମଧ୍ୟ ମୂଳ ହରିବଂଶ ସହିତ ତାହାର କୌଣସି ସାମଞ୍ଜସ୍ୟ ନାହିଁ, ବରଂ ତାହା ଭାଗବତର ଅଂଶବିଶେଷ । ସାରଳାଦାସ, ଅଚ୍ୟୁତାନନ୍ଦ ଦାସ ଓ ବିପ୍ର ନାରାୟଣ ଦାସଙ୍କ ହରିବଂଶରେ ସଂସ୍କୃତ ଖିଳ ହରିବଂଶର କିଛି ଅଂଶ ଉପସ୍ଥାପିତ ହୋଇଥିଲେ ମଧ୍ୟ ରାମାୟଣ ହରିବଂଶର ମୂଳ ହରିବଂଶ ସହିତ କୌଣସି ସମ୍ପର୍କ ନାହିଁ ।

ସାରଳା ଦାସ ସମସ୍ତ ଦେବତାଙ୍କୁ ହରି ରୂପରେ କଳ୍ପନା କରୁଥିଲେ । କୃଷ୍ଣ ହୁଅନ୍ତୁ ବା ଦୁର୍ଗା ହୁଅନ୍ତୁ, ସମସ୍ତେ ତାଙ୍କ ନିକଟରେ ନାରାୟଣ ସ୍ୱରୂପ । ତାଙ୍କ ରଚିତ ଚଣ୍ଡୀପୁରାଣକୁ ସେ ଶ୍ରୀଭାଗବତ ନାମରେ ଅଭିହିତ କରିଛନ୍ତି ଓ ତଥ୍ୟମାନ ବିଷ୍ଣୁ ପୁରାଣରୁ ଆନୀତ ବୋଲି ସୂଚନା ଦେଇଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ ବିଷ୍ଣୁ ପୁରାଣରୁ ଚଣ୍ଡୀଙ୍କର କଥା ଆସିନାହିଁ କିମ୍ବା ଚଣ୍ଡୀ ପୁରାଣ ଦେବୀଭାଗବତ ପୁରାଣର ଅଂଶ ବିଶେଷ ନୁହେଁ, ବରଂ ଏହା ମାର୍କେଣ୍ଡୟ ପୁରାଣରୁ ଆନୀତ ହୋଇଛି । ସାରଳା ଦାସ ଓଡ଼ିଆ ସାହିତ୍ୟରେ ହରିବଂଶ ସମ୍ପର୍କରେ ଯେଉଁ ଧାରଣାଟି ସୃଷ୍ଟି କରିଦେଇଗଲେ ତାହାକୁ ଅଚ୍ୟୁତାନନ୍ଦ, ନାରାୟଣ ଓ ପୁରୁଷୋତ୍ତମ ନିର୍ବିବାଦରେ ଗ୍ରହଣ କରିନେଇଛନ୍ତି ।

ଆଲୋଚନା ଦୃଷ୍ଟିରୁ ଆମେ ଭାରତ ହରିବଂଶକୁ ଦୁଇଭାଗରେ ବିଭକ୍ତ କରିବା । ପ୍ରଥମ ଭାଗଟି ହେଲା ଭାଗବତ ଆଶ୍ରୟୀ ଓ ଦ୍ୱିତୀୟ ଭାଗଟି ମହାଭାରତ ଆଶ୍ରୟୀ । ଭାଗବତ ହରିବଂଶରେ ବିଷୟବସ୍ତୁ ଯାହା ଯାହା ରହିଛି ଭାରଥ ହରିବଂଶର ଭାଗବତ ବିଷୟକ ଅଂଶରେ ପ୍ରାୟ ସମାନ ବିଷୟବସ୍ତୁ ଦୃଷ୍ଟି ଗୋଚର ହୋଇଥାଏ । ଏପରିକି ମହାପ୍ରଳୟ ବର୍ଣ୍ଣନା,ସୃଷ୍ଟି ପ୍ରକରଣ ଓ ସମୁଦ୍ର ମନ୍ଥନ ମଧ୍ୟ ଭାରତ ହରିବଂଶର ଆଦ୍ୟରେ ପ୍ରଦାନ କରାଯାଇଛି । ଉଗ୍ରସେନର ଜନ୍ମ, କଂସର ଜନ୍ମ, କଂସର ଦିଗ୍‌ବିଜୟ, ଦେବକୀର ବିବାହ, ଶୂନ୍ୟବାଣୀ, ବଳରାମ ଓ କୃଷ୍ଣଙ୍କର ଜନ୍ମ, ପୂତନା, ତୃଣାବର୍ତ୍ତ, ଶକଟାସୁର, ଯାମଳାର୍ଜ୍ଜୁନ, ଅଘାସୁର, କେଶୀଦୈତ୍ୟ, ଧେନୁକା ଇତ୍ୟାଦିଙ୍କ ମୃତ୍ୟୁ ପର୍ଯ୍ୟାୟକ୍ରମେ ବିଷୟବସ୍ତୁର ପରିସରକୁ ଆସିଯାଇଛି । ରାଧାଙ୍କ ସହିତ କୃଷ୍ଣଙ୍କର ମିଳନ ଅଧ୍ୟାୟ ଗୁଡ଼ିକ ପ୍ରଣିଧାନଯୋଗ୍ୟ । ଏହା କବିଙ୍କ ନୂତନ ଚିନ୍ତାର ଯେପରି ସ୍ଫୁରଣ ଘଟାଇଛି ପରବର୍ତ୍ତୀ କବିମାନଙ୍କୁ ମଧ୍ୟ ସେହିପରି ପ୍ରଭାବିତ କରିଛି । ଏଥିରେ ଥିବା ଭୂତକେଳି, ନଟୁଚୋରୀ, ନାବକେଳି ଇତ୍ୟାଦି ପ୍ରସଙ୍ଗକୁ ନେଇ ଦୀନକୃଷ୍ଣ ଆଦି କବିମାନେ ସ୍ୱତନ୍ତ୍ର ଭାବରେ କାବ୍ୟସୃଷ୍ଟି କରିଛନ୍ତି ।

କୃଷ୍ଣଙ୍କର ମଥୁରାପୁରକୁ ଯାତ୍ରା, ସୁଦାମା ମାଳୀ ଓ କୁବ୍‌ଜାଠାରୁ ପୁଷ୍ପମାଲ୍ୟ ଓ ଗନ୍ଧଚନ୍ଦନ ଗ୍ରହଣ, ଧନୁଭଗ୍ନ, ରଜକ, ଚାଣୂର ଓ ମୁଷ୍ଟିକ ବଧ ତଥା କଂସର ମୃତ୍ୟୁକୁ ଭାଗବତର ବିଷୟବସ୍ତୁ ଭାବରେ ଏଥିରେ ପ୍ରଦାନ କରାଯାଇଛି । ଭାଗବତ ହରିବଂଶ ପରି ଏଥିରେ ଜରାସନ୍ଧ ସହ ଯୁଦ୍ଧ, କାଳଯବନର ମୃତ୍ୟୁ ଓ ରୁକ୍ମଣୀ ହରଣ ପରି ପ୍ରସଙ୍ଗ ମଧ୍ୟ ଲିପିବଦ୍ଧ ହୋଇଛି ।

କଂସ ବଧ ହୋଇସାରିବା ପରେ ଉଗ୍ରସେନଙ୍କୁ ରାଜ୍ୟାଭିଷିକ୍ତ କରାଇ ଶ୍ରୀକୃଷ୍ଣ ଅକ୍ରୂରଙ୍କୁ ହସ୍ତିନା ଭୁବନ ପଠାଇଛନ୍ତି । ସମ୍ଭବତଃ ଏହିଠାରେ ହିଁ ଭାଗବତ ଓ ଭାରତ ମଧ୍ୟରେ ଏକ ଯୋଗସୂତ୍ର ସ୍ଥାପିତ ହୋଇଛି । ଶ୍ରୀକୃଷ୍ଣ ଅକ୍ରୂରଙ୍କୁ ହସ୍ତିନା ଭୁବନକୁ ପଠାଇ କହିଲେ- କଇନ୍ତା ଦେବୀ ଆମ ମାଆଙ୍କର ଭଉଣୀ ମାଉସୀ । ବିଧବା ହୋଇ ଯାଇଥିବାରୁ ସେ ଅତି ଦୁଃଖରେ ଅଛନ୍ତି । ଧୃତରାଷ୍ଟ୍ର ମଧ୍ୟ ଅନ୍ଧ । ସେମାନେ କିପରି ଅଛନ୍ତି, ସେମାନଙ୍କର ଭଲମନ୍ଦର କଥାଯାଇ ବୁଝିଆସ ।

ଅକ୍ରୂର ହସ୍ତିନାପୁରରେ ପ୍ରବେଶ କରି ସମସ୍ତଙ୍କୁ ଯଥାମାନ୍ୟ ପ୍ରଦାନ କଲେ । ସେଠାରେ ଧୃତରାଷ୍ଟ୍ର ଓ ତାଙ୍କର ପୁତ୍ରମାନେ ଥିଲେ ମଧ୍ୟ ପାଣ୍ଡବଙ୍କୁ ପାଇଲେନାହିଁ । ଧୃତରାଷ୍ଟ୍ର କହିଲେ, ମୁଁ ସେମାନଙ୍କୁ ବାରୁଣାବନ୍ତ ନାମରେ ଆଉ ଗୋଟିଏ ପୁର ତୋଳାଇ ରଖିଦେଇ ଆସିଛି । ଧୃତରାଷ୍ଟ୍ର ପାଣ୍ଡବଙ୍କୁ ଅଲଗା ରଖିବା ପାଇଁ ନିଜପୁତ୍ରକୁ ହିଁ ଦୋଷ ଦେଇ କହିଛି-

ଦୃଷ୍ଟ ଦୁର୍ଯୋଧନ କଳହ ଲଗାଇଲା
ତେଣୁ ବାରୁଣାରେ ରଖିଲଇଂ ଭଲା ।

ଅକ୍ରୂର ପାଣ୍ଡବମାନଙ୍କ ନିକଟରେ ପହଞ୍ଚି ଯଥାବିଧି ସମ୍ମାନ ପ୍ରଦାନ କରି ଆସନରେ ବସିଲାପରେ ଯୁଧିଷ୍ଠିରଙ୍କର ପ୍ରଶ୍ନରେ ଶ୍ରୀକୃଷ୍ଣଙ୍କର ସମସ୍ତ କାହାଣୀ ଅବତାରଣା କରିଛନ୍ତି । ଯୁଧିଷ୍ଠିରଙ୍କର ଆଜ୍ଞାରେ ଅର୍ଜ୍ଜୁନ ମଥୁରାପୁର ଯାତ୍ରା କରିଛି । ସେଠାରେ କୃଷ୍ଣ ଓ ଅର୍ଜ୍ଜୁନ ଅଭିନ୍ନରୂପେ ଦେଖାଯାଉଥିବାରୁ ପୁରନାରୀମାନେ ସନ୍ଦେହରେ ପଡ଼ିଛନ୍ତି ।

ଭାରତ ହରିବଂଶରେ ଦୁଇଗୋଟି ଅଧ୍ୟାୟରେ ପାଣ୍ଡବମାନଙ୍କ ସହ ସମ୍ପର୍କ ଯୋଡ଼ି ହୋଇଗଲା ପରେ ସାରଳା ଦାସ ମହାଭାରତର ବିଷୟବସ୍ତୁକୁ ପ୍ରବେଶ କରିଛନ୍ତି । ସତ୍ୟବତୀଙ୍କର ଜନ୍ମଠାରୁ ଆରମ୍ଭକରି ତାଙ୍କର ବିବାହ, ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟଙ୍କର ଜନ୍ମ, ଭୀଷ୍ମଙ୍କର ଜନ୍ମ, ଧୃତରାଷ୍ଟ୍ର, ପଣ୍ଡୁ ଓ ବିଦୁରଙ୍କର ଜନ୍ମଠାରୁ ଆରମ୍ଭ କରି ପାଣ୍ଡବମାନଙ୍କର ବନଗମନ, ବିବାହ, ବିଭିନ୍ନ ରାକ୍ଷସଙ୍କ ସହ ଯୁଦ୍ଧ, ରାଜସୂୟ ଯଜ୍ଞ, କୌରବ ଓ ପାଣ୍ଡବଙ୍କର ଯୁଦ୍ଧ ଇତ୍ୟାଦିକୁ ଭାରତ ହରିବଂଶରେ ସଂକ୍ଷିପ୍ତ ଭାବରେ ବର୍ଣ୍ଣନା କରାଯାଇଛି । ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ

ପର୍ଯ୍ୟନ୍ତ ବିଷୟବସ୍ତୁକୁ ଏଥିରେ ସ୍ଥାନିତ କରାଯାଇଛି ।

ଭାରତ ହରିବଂଶର ବିଷୟବସ୍ତୁରେ ଥିବା ସଂସ୍କୃତ ମହାଭାରତ ଓ ସାରଳା ମହାଭାରତ ସହ ବୈଷମ୍ୟକୁ ବିସ୍ତୃତ ଭାବରେ ଏଠାରେ ଆଲୋଚନା କରାଯିବ । ତେଣୁ ଏଠାରେ ସଂକ୍ଷିପ୍ତ ଭାବରେ ଭାରତ ହରିବଂଶର ବିଷୟ ବସ୍ତୁକୁ ସୂଚାଇ ଦିଆଗଲା । ଭାଗବତ ହରିବଂଶ, ରାମାୟଣ ହରିବଂଶ ଓ ଭାରତ ହରିବଂଶ ସମ୍ପର୍କରେ ଆଲୋଚନା କରାଯାଇ ହରିବଂଶକୁ ଓଡ଼ିଆ କବିମାନେ କେଉଁ ଅର୍ଥରେ ଗ୍ରହଣ କରିଥାଆନ୍ତି, ତାହାର ମଧ୍ୟ ସୂଚନା ପ୍ରଦାନ କରାଗଲା ।

## ।। ଦୁଇ ।।

**କବି ପରିଚୟ :**

ଭାରତ ହରିବଂଶକୁ ଯେ ଦାଣ୍ଡି ମହାଭାରତ ବା ସାରଳା ମହାଭାରତର ରଚୟିତା ସାରଳା ଦାସ ରଚନା କରିଛନ୍ତି, ଏଥିରେ ଦ୍ୱିମତ ନାହିଁ । କେହି କେହି ପଣ୍ଡିତମନ୍ୟ ବ୍ୟକ୍ତି ଏକଥାକୁ ହସରେ ଉଡ଼େଇ ଦେଇପାରନ୍ତି । ଆଉ କେହି କାବ୍ୟ ରଚନା କରି ସାରଳାଙ୍କ ନାମରେ ଭଣିତା କରିଦେଇଛି ବୋଲି ପ୍ରଳାପ କରିପାରନ୍ତି । ଭାରତ ହରିବଂଶ ଯାକ ସାରଳା ଦାସଙ୍କର ଭଣିତା ଥିବାରୁ ସେ ଲେଖିଛନ୍ତି ବୋଲି ଅନ୍ୟ କୌଣସି ପ୍ରମାଣ ଦେବାର ଆବଶ୍ୟକତା ନାହିଁ । ଯଦି ଏହାକୁ କେହି ଅବିଶ୍ୱାସ କରନ୍ତି ତେବେ ସାରଳା ଦାସ ଏହାକୁ ଲେଖି ନାହାନ୍ତି ବୋଲି ପ୍ରମାଣ ଯୋଗାଡ଼ କରିବା ଦାୟିତ୍ୱ ସେମାନଙ୍କର । ଅନ୍ତତଃ ନୂଆ ଲେଖକଟିଏ ଏହି ଗ୍ରନ୍ଥକୁ ରଚନା କରିଛି ବୋଲି ପ୍ରମାଣ ଯୋଗାଡ଼ ହେବା ପର୍ଯ୍ୟନ୍ତ ଏହାକୁ ସାରଳା ଦାସ ରଚନା କରିଛନ୍ତି ବୋଲି ଗ୍ରହଣ କରିନେବା ଉଚିତ ହେବ ।

ଦାଣ୍ଡି ମହାଭାରତକୁ ଯେପରି ସାରଳା ଦାସ, ସାରୋଳା ଚଣ୍ଡୀ ଦାସଙ୍କ ନାମରେ ଭଣିତା କରାଯାଇଛି, ଭାରତ ହରିବଂଶରେ ମଧ୍ୟ ସେହିପ୍ରକାରର ଭଣିତା ରହିଛି । ଦାଣ୍ଡି ମହାଭାରତରେ ଯେପରି ସାରଳା ଦାସ ନିଜକୁ ଶୂଦ୍ରମୁନି ରୂପେ ପରିଚିତ କରାଇଛନ୍ତି, ଭାରତ ହରିବଂଶର କେତେକ ସ୍ଥଳରେ ମଧ୍ୟ ସେ ନିଜକୁ ଶୂଦ୍ରମୁନିରୂପେ ଅବିହିତ କରିଛନ୍ତି । ଭାରତ ହରିବଂଶରୁ କେତେକ ଉଦାହରଣ ଏଠରେ ପ୍ରଦତ୍ତ ହେଲା–

(୧) ଶୁଣିଣ ଉମାଦେବୀ ହୋଇଲେ ହରଷ
ହରପାର୍ବତୀ ଚରଣେ ଶରଣ ସାରୋଳା ଚଣ୍ଡୀଦାସ ।

(୨) ମୁଂ ହୀନ ପାପୀର ବହୁତ ଅଛି ଦୋଷ
ଶ୍ରୀହରି ଚରଣେ ଶରଣ ସାରୋଳା ଚଣ୍ଡୀଦାସ ।

(୩) ଯେଥକୁ ସାହା ମୋତେ ହୋଇବ ମହାମାଇ
ଯାହା କହିଦେବୁ ତାହା ପତ୍ରେ ଲେଖିବଇଂ
ତୋହର ଚରଣେ ମୁଂ କରଇ ଦଇନୀ
ଶରଣ ପଶିଲା ମାଗୋ ସାରୋଳା ଦାସ ଶୂଦ୍ରମୁନି ।

(୪) ହରିଙ୍କି ଭଜ ନରେ ଫିଟିବ କାଳଫାଶ
ହରି ରକ୍ଷା କରିବେ ଶୂଦ୍ରମୁନି ସାରୋଳ ଚଣ୍ଡୀଦାସ ।

(୫) ପବିତ୍ର ଆଖ୍ୟାନ ଯେ ପୁରାଣ ହରିବଂଶ
ହରିପାଦ ଆଶ୍ରେ କରିଛି ସାରୋଳ ଚଣ୍ଡୀଦାସ ।

(୬) ମୁହିଂଯେ ଅଟଇ ଅଜ୍ଞାନ ମାନବ ମୂଢ଼ ଛାର
ତୁମ୍ଭେ ଦୟାକଲେ ସର୍ବ ଶୁଭଯେ ମୋହର
ସେ ରାଧାକାନ୍ତ ଚରଣ ପଙ୍କଜରେ
ସାରୋଳା ଚଣ୍ଡୀଦାସ ଶରଣ ବାରେ ବାରେ ।

(୭) ଦଇତ୍ୟ ନାଶନ ଦଇତାରିଙ୍କ ଶ୍ରୀଚରଣେ
ତରିବ ଯେବେ ଚିତ୍ତ ଦିଅ ହେ ସାଧୁଜନେ
ଶ୍ରୀହରି ପଦ୍ମପାଦ କରିଥିବ ନାବ
ବସିଣ ପାରିହେବ ଯେହୁ ସେ ଭବାର୍ଣ୍ଣବ
ଶ୍ରୀହରି ଚରଣରେ ଶରଣ ନରେ ପଶ
କହୁଛି ବିନୋୟି ଶୂଦ୍ରମୁନି ସାରୋଳା ଚଣ୍ଡୀ ଦାସ ।

(୮) ପରମବ୍ରହ୍ମ ପୁରୁଷ ଅଟଇ ଆଦିମୂଳ
ପରମ ଦେବତା ସଜୀବ ନିରାକାର
ସେ ପରମ ବ୍ରହ୍ମ ପୁରୁଷ ଚରଣେ ଦଇନି
ଶରଣ ପଶଇ ସାରୋଳା ଦାସ ଶୂଦ୍ରମୁନି ।

(୯) ଅର୍ଜୁନ ସ୍ତୁତିରେ ହଳୀ ହୋଇଲେ ହରଷ
ସେ ନୀଳାମ୍ବର ଚରଣେ ଶରଣ ସାରୋଳା ଚଣ୍ଡୀ ଦାସ ।

(୧୦) ହରି ସେ ହରତା କରତା ପୁଣ୍ୟରସ
ହରିପାଦେ ଶରଣ ସାରୋଳ ଚଣ୍ଡୀଦାସ ।

ଏବେ ଆମେ ଦାଣ୍ଡି ମହାଭାରତ ଓ ଭାରତ ହରିବଂଶ ମଧ୍ୟରେ କିଛି ସାମଞ୍ଜସ୍ୟ ଲକ୍ଷ୍ୟ କରିବା । ତାହା ଦେଖିଲେ ଭାରତ ହରିବଂଶ ସାରଳା ଦାସଙ୍କ ରଚନା ବୋଲି ନିଶ୍ଚିତ ଭାବରେ ହୃଦବୋଧ ହେବ ।

(୧) **ଭଣିତା :** ସାରଳା ମହାଭାରତରେ ଯେପରି ଭଣିତାରେ ଶୂଦ୍ରମୁନି ସାରୋଳା ଦାସ ବୋଲି ଉଲ୍ଲେଖ କରାଯାଇଛି, ଭାରତ ହରିବଂଶରେ ମଧ୍ୟ ଠିକ୍ ସେହିପରି ଉଲ୍ଲେଖ କରାଯାଇଛି । ବହୁ ସ୍ଥାନରେ ଭଣିତାରେ ଏହିପରି ସାମଞ୍ଜସ୍ୟ ଦେଖାଯାଉଥିଲେ ମଧ୍ୟ ଏଠାରେ କେବଳ ଗୋଟିଏ ଉଦାହାରଣ ପ୍ରଦତ୍ତ ହେଲା ।

ସଂସାର ଜନହିତେଂ ପ୍ରକାଶିଲି ଗ୍ରନ୍ଥ ମୁହିଂ
ଶୂଦ୍ରମୁନି ସାରୋଳ ଦାସ ମୁକତି ଗତିପାଇଁ
(ସାରଳା ମହାଭାରତ, ଆଦିପର୍ବ, ୨ୟଖଣ୍ଡ)
କି ଅବା କହିବି ମୁଂ ଗୋବିନ୍ଦଙ୍କ ହରଷ
ସେ ହରି ଚରଣେ ଶରଣ ସାରୋଳା ଚଣ୍ଡୀ ଦାସ ।

(୨) **'ଦଇନି' ଶବ୍ଦର ପ୍ରୟୋଗ :** ଭଣିତା ସମୟରେ ଉଭୟ ସାରଳା ମହାଭାରତ ଓ ଭାରତ ହରିବଂଶରେ ଦଇନି ଶବ୍ଦ ପ୍ରଯୁକ୍ତ ହୋଇଥିବାର ଦେଖିବାକୁ ମିଳେ ।

ଶ୍ରୀକୃଷ୍ଣ ପଦ୍ମପାଦେ ମୋହର ବିନୟେ ଦଇନି
ମୁକତି ଗତି ଇଚ୍ଛଇ ସାରୋଳ ଦାସ ମୁନି ।
(ସାରଳା ମହାଭାରତ : ଆଶ୍ରମିକପର୍ବ)
ସେ ପରମ ବ୍ରହ୍ମପୁରୁଷ ଚରଣେ ଦଇନି
ଶରଣ ପଶଇ ସାରୋଳା ଦାସ ଶୂଦ୍ରମୁନି ।
(ଭାରତ ହରିବଂଶ)

(୩) **ଅଗସ୍ତି ଓ ବୈବସ୍ୱତ ମନୁ :** ସାରଳା ମହାଭାରତରେ ଅଗସ୍ତି ଋଷି ବୈବସ୍ୱତ ମନୁଙ୍କୁ ମହାଭାରତର କାହାଣୀ ବର୍ଣ୍ଣନା କରିଛନ୍ତି । ଭାରତ ହରିବଂଶରେ ମଧ୍ୟ ଅଗସ୍ତି ମୁନି ବୈବସ୍ୱତ ମନୁଙ୍କୁ ଭାରଥ ହରିବଂଶର କାହାଣୀ ବର୍ଣ୍ଣନା କରିଛନ୍ତି ।

ଯେଥୁ ଅନନ୍ତରେ ବଇବସୁତ ମନୁ ରାଜା
ଅଗସ୍ତିଙ୍କ ପାଦ ପଦ୍ମେ କଲା ଦିବ୍ୟ ପୂଜା ।
(ସାରଳା ମହାଭାରତ- ଆଦିପର୍ବ, ୨ୟଖଣ୍ଡ)
ଯେଥୁ ଅନ୍ୟନ୍ତରେ ସେ ବିଲଙ୍କ ଦେଶ ରାଜା
ଅଗସ୍ତିଙ୍କ ପାଦତଳେ କଲା ଦିବ୍ୟପୂଜା
(ଭାରତ ହରିବଂଶ)

ଏହି ପଦ ଦୁଇଟି ପ୍ରାୟ ସମାନ ବୋଲି କହିଲେ ଚଳିବ । କେବଳ ସାରଳା ମହାଭାରତରେ ବଇବସୁତ ମନୁ ସ୍ଥାନରେ ଭାରତ ହରିବଂଶରେ ବିଲଙ୍କ ଦେଶ ବୋଲି ଉଲ୍ଲିଖିତ ହୋଇଛି । ଭାରତ ହରିବଂଶରେ ଯେ ବିଲଙ୍କ ଦେଶ ରାଜା ବୋଲି ବୈବସ୍ୱତ ମନୁଙ୍କୁ କୁହାଯାଇଛି, ଆଉ ଗୋଟିଏ ପଦରୁ ତାହାର ଉଚିତ ପ୍ରମାଣ ଉପଲବ୍ଧ ହୋଇପାରିବ ।

ବୈବସୁତ ମନୁ ଅଗସ୍ତିକି କଲେ ପୁଚ୍ଛା
ଅସମ୍ଭବ କହିଲ ମୁନି କଂସର ବାରତା ।
(ଭାରତ ହରିବଂଶ)

(୪) **କିରାତ ବର୍ଣ୍ଣନା :** ସାରଳା ମହାଭାରତରେ ଅନେକସ୍ଥାନରେ କିରାତମାନଙ୍କର ବର୍ଣ୍ଣନା ରହିଛି । ବିଶେଷକରି ଜାରା ଶବର, ଏକଲବ୍ୟ ଓ ଅନ୍ୟ କେତେକ ସ୍ଥାନରେ ମଧ୍ୟ କିରାତମାନଙ୍କ ସମ୍ପର୍କରେ ସୂଚନା ଦିଆଯାଇଛି । ସାରଳା ମହାଭାରତ ପରି ଭାରତ ହରିବଂଶରେ ମଧ୍ୟ କିରାତମାନଙ୍କର କଥା ବର୍ଣ୍ଣନା କରାଯାଇଛି । ଅର୍ଜ୍ଜୁନ ନିଜେ କିରାତ ବେଶରେ ଯାଇ ନାଗାର୍ଜୁନ ସହିତ ଯୁଦ୍ଧ କରିବାର ପ୍ରସଙ୍ଗ ଅତ୍ୟନ୍ତ କୌତୁହଳୋଦ୍ଦୀପକ । ମାତ୍ର ଏହି କିରାତ ବର୍ଣ୍ଣନା କାଳରେ କବି ଉଭୟତ୍ର କିରାତର ହାତରେ ଧାମଣାକାଠର ଧନୁ ଧରାଇ ଦେଇ ସେଥିରେ କଣ୍ଟା ବାଏଁଶର ଗୁଣ ସଂଯୋଗ କରିଛନ୍ତି । ଉଭୟ ଗ୍ରନ୍ଥରେ କିସ ଗୋ କିସ ତଥା ସେହିପରି ଶବ୍ଦ ସମୂହର ପ୍ରୟୋଗ ଜଣେ କବିର ଲେଖନୀରୁ ତାହା ସୃଷ୍ଟି ବୋଲି ପ୍ରମାଣିତ କରାଇ ଦେଇପାରୁଛି । ଉଭୟ ଗ୍ରନ୍ଥରୁ ଉଦାହରଣ ଦେଲେ କଥାଟି ସ୍ପଷ୍ଟ ହୋଇପାରିବ ।

ମଥାରେ ମଞ୍ଜୁର ଝାଲି କଣ୍ଠେ ଗୁଞ୍ଜରାମାଳି
ଲୋହିତ ବର୍ଣ୍ଣ ନେତ୍ର ଶରୀରେ ରଙ୍ଗଧୂଳି
ଧାମଣା କାଠର ଧନୁ କଣ୍ଟା ବାଏଁଶର ଗୁଣ
ଡାଳି ଆଭରଣ ଫିରିକି ନାରାଜ ଡ୍ରୋଣ
(ସାରଳା ମହାଭାରତ : ଆଦିପର୍ବ : ଜାରା ଶବର ଉପାଖ୍ୟାନ)
ହସ୍ତେ ଧାମଣା କାଠର ଧନୁ କଣ୍ଟା ବାଏଁଶର ଗୁଣ
କଟି ମେଖଳେ କୋଠାର ଫିରିକି ନାରାଜଡ୍ରୋଣ
(ସାରଳା ମହାଭାରତ : ଆଦିପର୍ବ : ଏକଲବ୍ୟ ଉପାଖ୍ୟାନ)
ଧାବଣା କାଷ୍ଠର ଧନୁ କଣ୍ଟା ବାଏଁଶର ଗୁଣ
ରକ୍ତ ଚନ୍ଦନର ଚିତା ଗୁଞ୍ଜରା ମାଳି ମାଥ
(ଭାରତ ହରିବଂଶ : ପ୍ରସଙ୍ଗ : ଅର୍ଜ୍ଜୁନ ଓ ନାଗାର୍ଜୁନ ଯୁଦ୍ଧ)
ଗଦଗଦ ବାକ୍ୟେ କିସ କିସ ବୋଲି
ଅର୍ଜୁନ ଉପରକୁ ସେ ଆସୁଅଛି ପେଲି ।
(ସାରଳା ମହାଭାରତ : ଆଦିପର୍ବ)

ରୋଧିର ଝରଝର ଯାଉଅଛି ବହିଂ
କିସ କିସ ବୋଲିଣ ପଚାରନ୍ତି ଭାବଗ୍ରାହୀ
(ଭାରତ ହରିବଂଶ : ପ୍ରସଙ୍ଗ : ମଣିକୁଣ୍ଡଳ ଶିବ କଥା)
କିସ କିସ ଶବଦ ବୋଲି ଧାଉଁଛନ୍ତି ଲୋକେ
ଯାମଳା ଭାଙ୍ଗିଲା ବୋଲି କହିଲେକ ଥୋକେ ।
(ଭାରତ ହରିବଂଶ : ପ୍ରସଙ୍ଗ : ଯାମଳାର୍ଜୁନ ବଧ)
ଚୌରାଶିକାଠି ସନ୍ୟ ଘେନି ଆସୁଅଛି ପେଲିଂ
(ଭାରତ ହରିବଂଶ : ପ୍ରସଙ୍ଗ ମେରୁଶୁଳ ଦୈତ୍ୟର କୃଷ୍ଣଙ୍କ ସହ ଯୁଦ୍ଧ ଓ ମୃତ୍ୟୁ)

କିସ କିସ ଓ ଆସୁଅଛି ପେଲି ଶଦ୍ଦ ସମୂହ ସାରଳା ମହାଭାରତରେ କିରାତ ପ୍ରସଙ୍ଗରେ ଏବଂ ଭାରତ ହରିବଂଶରେ ଅନ୍ୟ ପ୍ରସଙ୍ଗରେ ପ୍ରଦାନ କରାଯାଇଛି ।

(୫) **ସାରଳାଙ୍କର ବନ୍ଦନା :** ସାରଳା ମହାଭାରତର ପ୍ରାରମ୍ଭରେ ସାରଳାଙ୍କୁ ବନ୍ଦନା କରିବା ପରି ଭାରତ ହରିବଂଶର ଆରମ୍ଭରେ ମଧ୍ୟ ସାରଳାଙ୍କୁ ବନ୍ଦନା କରାଯାଇଛି । ସାରଳା ଚଣ୍ଡୀ ହୋଇଥିଲେ ମଧ୍ୟ ବାଗ୍‌ଦେବୀ ଭାବରେ ତାଙ୍କୁ ଆରାଧନା କରାଯାଇ ପଦ କହିଦେବା ପାଇଁ ଅନୁରୋଧ କରାଯାଇଛି । ମହାଭାରତ ଆଦିପର୍ବରେ ସାରଳାଙ୍କର ବନ୍ଦନାରେ କୁହାଯାଇଛି –

ମହା ଯୋଗେଶ୍ୱରୀ ସେ ପରମ ବଇଷ୍ଣବୀ
ପ୍ରତକ୍ଷେ ବରଦିଅଇ ସେ ପରମ ସାଧବୀ
ବାଞ୍ଛା ସାର୍ଥକ ସେ ଦେବିର ଅଟଇ
ପାଷାଣ ହୋଇକରି ବାଞ୍ଛା ତାହାର ଫୁଟଇ ।

ମହାଭାରତର ଗୋଟିଏ ସ୍ଥାନରେ ସାରଳାଦାସ ସାରଳାଙ୍କର ଚାରିଗୋଟି ଅବତାରର ବର୍ଣ୍ଣନା କରିଛନ୍ତି ଓ ଅନ୍ୟ ଏକ ସ୍ଥାନରେ ଦଶଗୋଟି ଅବତାରର ବର୍ଣ୍ଣନା କରିଛନ୍ତି । ମାତ୍ର ଭାରତ ହରିବଂଶର ପ୍ରାରମ୍ଭରେ ସାରଳାଙ୍କର ଏକୋଇଶି ଗୋଟି ଅବତାରର ବର୍ଣ୍ଣନା କରାଯାଇଛି । ଏକୋଇଶି ଅବତାରରେ ସେ ଶ୍ରୀଚଣ୍ଡୀ ସାରଳା ଓ ଜଙ୍ଖେରପୁର ବାସୀଙ୍କୁ ଅଲଗା ଭାବରେ ଚିତ୍ରଣ କରିଛନ୍ତି । ସାରଳାଙ୍କ ଜନ୍ମସ୍ଥାନ ସମ୍ପର୍କରେ ଗବେଷଣା କରୁଥିବା ଗବେଷକମାନଙ୍କୁ ଦୁଇଜଣ ସାରଳା ନିଶ୍ଚିତ ଭାବରେ ଖୋରାକ ଯୋଗାଇବ । ଭାରତ ହରିବଂଶର ସାରଳା ବନ୍ଦନାରେ କୁହାଯାଇଛି–

ଜୟତୁ ସାରଦା ଦେବୀ ମହିମା କିଶୋରୀ
ଜଗତ ତାରିଣୀ ମାଗୋ ଅଟୁ ଶାକାମ୍ଭେରୀ
ଜୟତୁ ବାଗ୍‌ଦେବୀ ଜୟତୁ ମହାମାଇ
ତୋହର ସୁଦୟାରେ ପଦଅର୍ଥ ଦିଶଇ ।

(୬) **ନିଜକୁ ଅଜ୍ଞାନ ରୂପେ ବର୍ଣ୍ଣନା :** ସାରଳା ଦାସ ନିଜର ପୂର୍ବଜନ୍ମର ବିବରଣୀ ଯେପରି ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି ଆଉ କୌରସି ଓଡ଼ିଆ କବି ସେପରି କରିଥିବାର ଦୃଷ୍ଟିଗୋଚର ହୁଏନାହିଁ । ପୂର୍ବଜନ୍ମରେ ସେ କପିଳାସରେ ବା ବୈକୁଣ୍ଠପୁରରେ ଦ୍ୱାରପାଳ ଥିଲେ ବୋଲି କହିଲେ ମଧ୍ୟ ଏ ଜନ୍ମରେ ସେ ନିଜକୁ ଅଜ୍ଞାନ ଓ ମୂର୍ଖ ବୋଲି ସୂଚନା ଦେଇଛନ୍ତି । ସାରଳା ମହାଭାରତର ଆଦିପର୍ବରେ ସେ କହିଛନ୍ତି –

ଶୁଣ ବୁଧଜନେ ନଧର ଆନଚିତ୍ତ
ଜନ୍ମେଣ ମୁରୁଖ ମୁହିଁ ନୋହଇ ପଣ୍ଡିତ ।

ସେହିପରି ଭାରତ ହରିବଂଶରେ ଅଛି-

ଆହେ ସାଧୁଜନେ ଦୋଷ ମୋ ନଧର
ମୁହିଂ ସିନା ମୂଢ଼ ଅଜ୍ଞାନ ପାମର ।

(୭) **ଜଙ୍ଘେରପୁର ଓ କନକପୁର (କନକାବତୀ) ଶବ୍ଦର ପ୍ରୟୋଗ :** ସାରଳା ଦାସ ମହାଭାରତରେ ସାରଳା ଦେବୀଙ୍କୁ ଜଙ୍ଘେରପୁର ବାସୀ ଭାବରେ ଚିତ୍ରଣ କରିଛନ୍ତି । ସେ ନିଜେ ମଧ୍ୟ କନକାବତୀ ପାଟଣାରେ ଜଙ୍ଘେରପୁରଠାରେ ଜନ୍ମଗ୍ରହଣ କରିଥିଲେ ବୋଲି ମହାଭାରତରେ ଉଲ୍ଲେଖ ରହିଛି ।

ପ୍ରସୁରାମ ନିଜ ଭୁବନ କନିକାବତୀ ନାମ
ବୀସେ ସେ ଜଙ୍ଘେରପୁରଗୋ ଯଇନ୍ତା ନଗ୍ର ବୋଲି
(ସାରଳା ମହାଭାରତ : ସଭାପର୍ବ)

କିମ୍ବା

ସେ ନଦୀର ତୀରେ ପ୍ରସୁରାମ ଘାଟଇଂ
କନେକବତୀ ନାମେ ପାଟଣା ପ୍ରକାଶଇ ।
(ସାରଳା ମହାଭାରତ : ଆଦିପର୍ବ)

ଅନୁରୂପ ଭାବରେ ଭାରତ ହରିବଂଶର କେତେକ ସ୍ଥାନରେ ଜଙ୍ଘେରପୁର ଓ  କନକପୁର କଥାର ଉଲ୍ଲେଖ ରହିଛି ।

ଜଙ୍ଘେରପୁର ବାସିନୀ କନକପୁରକୁ ତୋର ଦୃଷ୍ଟି
କଳିକାଳ ସଂସାରକୁ ଅଛୁତୁ ଆକଟି ।
(ଭାରତ ହରିବଂଶ : ପ୍ରସଙ୍ଗ: ପଶାଖେଳରେ ହାରି ପଞ୍ଚୁପାଣ୍ଡବଙ୍କର ବନଗମନ ଓ ସାରଳା ଦେବୀଙ୍କର ଜୟଗାନ)

ଅଥବା

ଜଙ୍ଘେରପୁରବାସୀ ନାମ ତୋ ଗିରିଜା
ସୁରସିଦ୍ଧମାନେ କରନ୍ତି ତୋତେ ପୂଜା ।
(ଭାରତ ହରିବଂଶ : ପ୍ରସଙ୍ଗ : ଦ୍ରୋଣଙ୍କର ଶିଷ୍ୟମାନଙ୍କଠାରୁ ବିଦ୍ୟା ପରୀକ୍ଷା)

(୮) **କରଣ, ଯୋଗ, ମାସ, ଦିନ ଇତ୍ୟାଦିର ପ୍ରୟୋଗ :** ସାରଳା ଦାସଙ୍କ ରଚନାର ଏକ ବୈଶିଷ୍ଟ୍ୟ ହେଲା କୌଣସି ଶୁଭ କାମ ହେଉଥିବା ବେଳେ ଜ୍ୟୋତିଷଶାସ୍ତ୍ର ଅନୁସାରେ ସେ ସେହି ସମୟର କରଣ, ଯୋଗ, ଦିନ ଇତ୍ୟାଦି ସମ୍ପର୍କରେ ସୂଚନା ପ୍ରଦାନ କରିଥାଆନ୍ତି । ସାରଳା ମହାଭାରତରେ ଶାନ୍ତନୁଙ୍କର ବିବାହ ସମୟରେ ଲଗ୍ନ ଏହିପରି-

ମେଷକୃଷ୍ଣ ଚତୁର୍ଥୀ ଯେ ତିଥି ଚନ୍ଦ୍ରବାରେ
ହସ୍ତା ନକ୍ଷତ୍ର ଯେ ବେଳ ତୃତୀୟ ପ୍ରହରେ
କନ୍ୟାଲଗ୍ନ ତାର ଚନ୍ଦ୍ର ଶୁଦ୍ଧ ଶୁଭବେଳ
ବୃଦ୍ଧି ନାମେ ଯୋଗ ପୁଣି କରଣ ତୈତିଳ ।

ଭାରତ ହରିବଂଶରେ ଶ୍ରୀକୃଷ୍ଣଙ୍କ ଜନ୍ମସମୟରେ ଅନୁରୂପ ଭାବେର ତିଥିବାର ଇତ୍ୟାଦିର ଗଣନା କରାଯାଇ କୁହାଯାଇଛି-

ବାଣିଜ ନାମେ କରଣ ବୈଧୃତି ନାମେ ଯୋଗ
ସିଂଘ ସଙ୍କରାନ୍ତି କି ପଚିଶ ଦିନ ଭୋଗ
ରୋହିଣୀ ନାମେ ନକ୍ଷତ୍ର ଅଷ୍ଟମିର ତିଥି
ତାରଚନ୍ଦ୍ର ଶୁଭବାର ଅଟଇ ବୃହସ୍ପତି ।

(୯) **ନାରୀର ରଜସ୍ୱଳା ପ୍ରସଙ୍ଗ :** ସାରଳା ଦାସଙ୍କର ଯଦି ଜ୍ୟୋତିଷ ଶାସ୍ତ୍ର ଉପରେ ଦଖଲ ନଥାଆନ୍ତା ତେବେ ସେ ଯୋଗ କରଣ ବର୍ଷମାସ ଦିନ ଦଣ୍ଡ ଲିତା ସମ୍ପର୍କରେ ଏତେ କଥା କହିପାରିନଥାନ୍ତେ । ପୁଣି କୋକଶାସ୍ତ୍ରରେ ଥିବା ନାରୀମାନଙ୍କର ରଜୋବତୀ ହେବା ପ୍ରସଙ୍ଗକୁ ସେ ଉଭୟ ମହାଭାରତ ଓ ହରିବଂଶରେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ସଂପ୍ରତି ପାଞ୍ଜିମାନଙ୍କରେ କନ୍ୟାର ଆଦ୍ୟରତୁର ଫଳ ପ୍ରକାଶ କରାଯାଉଛି । ତେଣୁ କନ୍ୟାର ଆଦ୍ୟରତୁର ଫଳ ଜାଣିବା ମଧ୍ୟ ଜ୍ୟୋତିଷଶାସ୍ତ୍ରର ଅନ୍ତର୍ଗତ । କନ୍ୟାର ରଜସ୍ୱଳା ହେବାର ସମୟକୁ ନେଇ ବିଭିନ୍ନ ପ୍ରକାର ଭବିଷ୍ୟବାଣୀ କରାଯାଇଥାଏ । ବିରଜା ପଞ୍ଜିକାରେ କନ୍ୟା ରଜସ୍ୱଳା ହେବାରେ ବାରଫଳ, ତିଥିଫଳ, ନକ୍ଷତ୍ରଫଳ, ଯୋଗଫଳ, କରଣଫଳ ଓ ସନ୍ଧ୍ୟାଦିର ଫଳ ଇତ୍ୟାଦି ଛଅଗୋଟି ଫଳର ବର୍ଣ୍ଣନା କରାଯାଇଛି । ମହାଭାରତ ଓ ହରିବଂଶରେ ମଧ୍ୟ ଅନୁରୂପ ଭାବରେ କନ୍ୟା କେଉଁ ବାରରେ ରଜସ୍ୱଳା ହେଲେ ଫଳ କ'ଣ ହୋଇଥାଏ, କେଉଁ ତିଥି, ନକ୍ଷତ୍ର, ଯୋଗ, କରଣ ଇତ୍ୟାଦିରେ ରଜସ୍ୱଳା ହେଲେ ଫଳ କଣ ହୋଇଥାଏ, ତାହାର ବିସ୍ତୃତ ତଥ୍ୟ ପ୍ରଦାନ କରାଯାଇଛି । ଏହିସବୁ ଫଳରେ ସାମାନ୍ୟ ପାର୍ଥକ୍ୟ ଦେଖାଯାଉଥିଲେ ମଧ୍ୟ ଭଲ ଓ ମନ୍ଦ ଦିଗରୁ ବିଚାର କଲେ ଫଳ ଠିକ୍ ରହିଛି । କନ୍ୟା କେଉଁ ବାରରେ ରଜୋବତୀ ହେଲେ ଫଳ କ'ଣ ହୋଇଥାଏ ମହାଭାରତ ଓ ଭାରତ ହରିବଂଶରୁ ଏଠାରେ ତଥ୍ୟ ଉଦ୍ଧାର କରାଯାଉଛି ।

ଆଦିତ୍ୟବାରେ ଯେବେ ହୋଅଇ ରଜବତୀ
ସ୍ୱାମୀକି ରୋଗପୀଡ଼ା ସନ୍ତାନ ନ ହୋଅନ୍ତି ।
ସୋମବାରେ ଯେଉଁ ସ୍ତିରୀ ହୋଅଇ ରଜବତୀ
ସେ ସ୍ତିରୀ ସ୍ୱାମୀରେ ସଦା ହୋଅଇ ଭଗତି ।
ମଙ୍ଗଳବାରେ ଯେବେ ହୋଅଇ ରଜକାରୀ
ବିଧବା ହୋଅଇ ଅଳପେ ହୋଅଇ ଅନାଚାରୀ
ବୁଧବାରେ ଯେବେ ହୋଅନ୍ତି ରଜବତୀ
ସ୍ୱାମୀରେ ସଉଭାଗି ସେ ହୋଅନ୍ତି ଯୁବତୀ
ଗୁରୁବାରେ ଯେବଣ ନାରୀ ହୋଅଇ ରଜବତୀ
ଧନ ସନ୍ତାନ ହୋଅଇ ଲକ୍ଷ୍ମୀରେ ପ୍ରିୟବତୀ ।
ଶୁକ୍ରବାରେ ଯେବେ ହୋଅଇ ରଜକାରୀ
ବହୁତ ପୁତ୍ର ହୋଅଇ ନୋହେ ଅନାଚାରୀ
ଯେବଣ ନାରୀ ପୁଷ୍ପବତୀ ହୋଅନ୍ତି ଶନିବାରେ
ପୁତ୍ର ସନ୍ତାନ ନାଶ ଯାଇ ଯେକ ସମ୍ବତ୍ସରେ ।
(ସାରଳା ମହାଭାରତ : ମଧ୍ୟପର୍ବ)

ଆଦିତ୍ୟ ବାସରେ ଯେ ପାକାସ୍ୱତି ହୋଇ
ସେ ସ୍ତିରୀକି ଆଉ ଛୁଇଁତେ ନ ଯୋଗାଇ
ଚନ୍ଦ୍ରବାରେ ରଜହେଲେ ବିଧବା ହୋଅଇ
ଭୌମବାରେ ରଜହେଲେ ହୋଅଇ କଳହି
ପଣ୍ଡିତବାରେ ରଜହେଲେ ବହୁତ ମିଳଇ ସେ ଧନ
ବୃହସ୍ପତି ବାରେ ରଜହୋଇଲେ ଉପୁଜେ ସୁସନ୍ତାନ
ଭୃଗୁବାରେ ରଜବତୀ ହୋଅଇ ଯେଉଂ ନାରୀ
ଏକାପୁତ୍ର ପ୍ରସବି ସେ ହୋଅଇ ଦୋଚାରି ।
ସଉରିବାରେ ରଜହେଲେ ସେ ବହୁତ ଦୁଖପାଇ
ପ୍ରତୀପଦିନ ରଜବତୀ ହେଲେ ଛୁଇଂତେ ନ ଯୋଗାଇ ।
(ଭାରତ ହରିବଂଶ : ପ୍ରସଙ୍ଗ : ଦ୍ରୌପଦୀ ବିବାହ)

'ଛୁଇଂତେ ନ ଯୋଗାଇ' ବାକ୍ୟଟିକୁ ଏକାଧିକବାର ଭାରତ ହରିବଂଶରେ ବ୍ୟବହାର କରାଯାଇଛି । ମହାଭାରତରେ ମଧ୍ୟ କୁହାଯାଇଛି ଯେ ପ୍ରତିପଦା ଦିନ ଯେବେ ହୋଅନ୍ତି ରଜବତି/ ଅତିହିଂ ପାତକୀ ସେ ଛୁଇଂତେ ନ ଯୋଗାନ୍ତି । ଏହାକୁ ପାଠକଲେ ଉଭୟ ଗ୍ରନ୍ଥ ଜଣେ ଲେଖକର ସୃଷ୍ଟି ବୋଲି ସ୍ୱତଃ ପ୍ରତୀୟମାନ ହୋଇଥାଏ ।

(୧୦) **ଶବ୍ଦର ବାରମ୍ବାର ପ୍ରୟୋଗ :** ଗୋଟିଏ ବିଷୟକୁ ବାରମ୍ବାର ଉଲ୍ଲେଖ କରିବା ଯେମିତି ମହାକାବ୍ୟର ଲକ୍ଷଣ, କିଛି ଶବ୍ଦକୁ ବାରମ୍ବାର ଉଲ୍ଲେଖ କରିବା ମଧ୍ୟ ସାରଳା ଦାସଙ୍କର ଏକ ଶୈଳୀ । ମହାଭାରତର ମୁଷଳୀ ପର୍ବରେ ନୀଳମାଧବଙ୍କର ବନ୍ଦନା କରି ସେ ଲେଖିଛନ୍ତି –

ମାଧବ ସୁମର ନରେ ଜ୍ୱରରୋଗ ତୁଟୁ
ମାଧବ ସୁମର ନରେ କ୍ରୋଧବନ୍ଧନ ଫିଟୁ
ମାଧବ ସୁମର ନରେ ରଣେ ହେଉ ଯଶ
ମାଧବ ସୁମର ନରେ ବର୍ଦ୍ଧିତ ହେଉ ବଂଶ
ମାଧବ ସୁମର ନରେ ରାଜଦ୍ୱାରେ ହେଉ ଯଶ
ମାଧବ ସୁମର ନରେ ଜଗତ୍ର ହେଉବଶ୍ୟ
ମାଧବ ସୁମର ନରେ କୋଟିୟେ ତୀର୍ଥ ଦିଶୁ
ମାଧବ ସୁମର ନରେ ଅରଷ୍ଟି ନପଶୁ
(ସାରଳା ମହାଭାରତ : ମୁଷଳୀ ପର୍ବ)

ସାରଳା ମହାଭାରତରେ 'ମାଧବ ସୁମର ନରେ'କୁ ଯେମିତି, ବାରମ୍ବାର ପ୍ରୟୋଗ କରାଯାଇଛି ଭାରତ ହରିବଂଶରେ ମଧ୍ୟ 'ହରି ସୁମର ନରେ'କୁ ସେମିତି ବାରମ୍ବାର ପ୍ରୟୋଗ କରାଯାଇଛି । ଭାରତ ହରିବଂଶରେ ଭଗବତ୍ତଙ୍କ ସେନାପତିତ୍ୱ କାଳରେ ଅର୍ଜୁନ ହରିଙ୍କର ବନ୍ଦନା କରିଛନ୍ତି । ମାଧବ ସୁମର ନରେ ସହିତ ହରି ସୁମର ନରେର ଐକ୍ୟ ସାରଳା ଦାସ ଭାରତ ହରିବଂଶ ରଚନା କରିଥିବାର ଉତ୍କୃଷ୍ଟ ପ୍ରମାଣ ।

ହରି ସୁମର ନରେ ବିପଦ କ୍ଷୟେ ଯାଉ
ହରି ସୁମର ନରେ ସମ୍ପଦ ଗତି ହେଉ
ହରି ସୁମର ନରେ ଅପୁତ୍ରିକ ପୁତ୍ରପାଇ
ହରି ସୁମର ନରେ ସିନ୍ଧୁରେ ନବୁଡ଼ଇ
ହରି ସୁମର ନରେ ନ ପଡ଼ିବ ରୋଗ
ହରି ସୁମର ନରେ ପାଇବ ଐସ୍ୱର୍ଯ୍ୟ ଭୋଗ
ହରି ସୁମର ନରେ ପାପ ହେବ ମୋଚନ
ହରି ସୁମର ନରେ ଗମିବ ବିଷ୍ଣୁ ସ୍ଥାନ
ହରି ସୁମର ନରେ ଫିଟିବ କାଳଫାଶ
ଶ୍ରୀହରି ଆସ୍ରେ କରିଛି ସାରୋଳା ଚଣ୍ଡୀଦାସ
(ଭାରତ ହରିବଂଶ : ପ୍ରସଙ୍ଗ : ଭଗଦତ୍ତଙ୍କ ସେନାପତିତ୍ୱ)

(୧୧) **ଗାଣିତିକ ତଥ୍ୟକୁ ସାନରୁ ବଡ଼ କ୍ରମରେ ବିସ୍ତୃତ କରି କହିବା :** ଗାଣିତିକ ପ୍ରୟୋଗ ଅନୁସାରେ ସମୟର ସାନ ମାନକ ହେଲା ଲିତା । କିଛି ଲିତାର ମିଶ୍ରଣରେ ଦଣ୍ଡହୁଏ, ଦଣ୍ଡର ମିଶ୍ରଣରେ ସୃଷ୍ଟିହୁଏ ଘଡ଼ି ଓ ଘଡ଼ିର ମିଶ୍ରଣରେ ସୃଷ୍ଟି ହୁଏ ପ୍ରହର । ଚାରିପ୍ରହର ମିଶିଲେ ଗୋଟିଏ ଦିବସ ଓ ଚାରି ପ୍ରହର ମିଶିଲେ ଗୋଟିଏ ରଜନୀ ସୃଷ୍ଟିହୁଏ । ରଜନୀ ଓ ଦିବସ ମିଶି କୋଡ଼ିଏଟି ହେଲେ ବିଂଶହୁଏ । ପାଞ୍ଚଟି ବିଂଶ ମିଶିଲେ ଶହେ ହୁଏ । ଶହେ ହୁଏ ସହସ୍ର ଓ ସହସ୍ର ଲକ୍ଷେରେ ପରିଣତ ହୁଏ । ଲକ୍ଷ ଲକ୍ଷ ସହସ୍ର ବର୍ଷ ମିଶିଲେ

ଗୋଟିଏ ଗୋଟିଏ ଯୁଗ ହୋଇଥାଏ । ଚାରିଯୁଗରେ ଗୋଟିଏ ଗଣ୍ଡହୁଏ ଓ ଏକସ୍ତରି ଗଣ୍ଡାରେ ଗୋଟିଏ ମନୁ ହୋଇଥାଏ । ତେରଟି ମନୁରେ ଏକ କଳ୍ପ, ସତରଗୋଟି କଳ୍ପରେ ଏକ ଉଠାଣି, ଚଉଦଟି ଉଠାଣିରେ ଏକ ଉହାଣ ଓ ଏକୋଇଶିଟି ଉହାଣରେ ବ୍ରହ୍ମାଙ୍କର ଗୋଟିଏ ଦିବସ ହୋଇଥାଏ । ତିନି ମନୁରେ ବିଧାତା ନାଶହୁଏ ଓ ସେତେବେଳେ ବିଷ୍ଣୁଙ୍କୁ ଗୋଟିଏ ଦିବସ ହୋଇଥାଏ । ସାତୋଟି କଳ୍ପରେ ବିଷ୍ଣୁ ରୁଦ୍ରଙ୍କ ପାଶକୁ ଗମନ କରନ୍ତି ଓ ସେତେବେଳେ ରୁଦ୍ରଙ୍କର ଗୋଟିଏ ଦିବସ ହୋଇଥାଏ । ଚଉଦ ମନୁରେ ଶଙ୍କର ନାଶ ଯାଆନ୍ତି ଓ ସେତେବେଳେ ନିରାକାର ପୁରୁଷଙ୍କୁ ଗୋଟିଏ ଦିବସ ହୋଇଥାଏ । ସତାଅଶି ମନୁରେ ନିରାକାର ପୁରୁଷ ନାଶ ଯାଆନ୍ତି ଓ ସେତେବେଳେ ନିରଞ୍ଜନ ଦେବତାଙ୍କୁ ଗୋଟିଏ ଦିବସ ହୋଇଥାଏ । ଏକୋଇଶି କଳ୍ପରେ ନିରଞ୍ଜନ ଦେବତା ନାଶଯାଆନ୍ତି ଓ ସେତେବେଳ ନିର୍ଗୁଣଙ୍କୁ ଗୋଟିଏ ଦିବସ ହୋଇଥାଏ । ସାତ ମନୁରେ ନିର୍ଗୁଣ ନାଶ ଯିବାପରେ ନିରାଲମ୍ବଙ୍କୁ ଗୋଟିଏ ଦିବସ ହୋଇଥାଏ । ସତର ମନୁରେ ନିରାଲମ୍ବ ନାଶ ଯାଆନ୍ତି ଓ ସେତେବେଳେ ଧର୍ମପୁରୁଷଙ୍କୁ ଗୋଟିଏ ଦିବସ ହୁଏ । ସେହିପରି ଧର୍ମପୁରୁଷଙ୍କର ବାଉନ କଳ୍ପରେ ଠୁଳ ପୁରୁଷଙ୍କୁ ଦିବସଟିଏ ହୋଇଥାଏ ।

ସମୟକୁ ବର୍ଣ୍ଣନା କରିବାରେ ସାରଳାଦାସଙ୍କର ଏହା ଅଦ୍ଭୁତ ଶୈଳୀ । ଅତି ସୂକ୍ଷ୍ମ ଲିତାଠାରୁ ଆରମ୍ଭ କରି ଅତିବିସ୍ତୃତ ଠୁଳ ପୁରୁଷଙ୍କ ଦିବସ ପର୍ଯ୍ୟନ୍ତ ସମୟକୁ ଏପରି ବିଶଦ ଭାବରେ ଭାରତ ହରିବଂଶରେ ବର୍ଣ୍ଣନା କରାଯାଇଛି । ଭାରତ ହରିବଂଶରୁ ଏକ ଉଦାହରଣ ଦେଖାଯାଉ–

ଛଡ଼ ନିଶ୍ୱାସରେ ନିତା ଏକ ହୁଅଇ
ଷାଠିଏ ନିତାରେ ଦଣ୍ଡେକ ବୋଲାଇ
ବେନିଦଣ୍ଡ ହୋଇଲେ ବୋଲାଏ ଏକ ଘଡ଼ି
ଚତୁର୍ଥ ଘଡ଼ିରେ ପହରେକ ନିବାଡ଼ି
ଚତୁର୍ଥ ପ୍ରହରେ ଦିବସ ବୋଲାଇ
ପୁଣି ଏହିମତି ରଜନୀ ଏକ ହୋଇ
କୋଡ଼ିଏ ଦିବସରେ ବିଂଶ ବୋଲି କହିଂ
ପଞ୍ଚବିଂଶରେ ସତେକ ବୋଲାଇ
ଦଶ ସତରେ ବୋଲାଇଂ ସହସ୍ରେ
ସତ ସହସ୍ରେଂ ବୋଲାଇ ଏକଲକ୍ଷେଂ ।
(ଭାରତ ହରିବଂଶ : ପ୍ରସଙ୍ଗ : ମଧୁ କୈଟଭ ବଧ)

ସାରଳା ମହାଭାରତରେ ମଧ୍ୟ ଅନୁରୂପ ଭାବରେ ସମୟର ବର୍ଣ୍ଣନା ଦେଖିବାକୁ ମିଳିଥାଏ । ଯେପରି–

ଶତେକ ମାତ୍ରେକ ଯେକ ତୁଳଦଣ୍ଡ
ଶତେକ ତୁଳଦଣ୍ଡେ ପଳେକ ବ୍ରହ୍ମାଣ୍ଡ
ସହସ୍ରେକ ପଳେ ଗୁଣେକ ହାଦେ ବୋଲି
ସହସ୍ରେକ ଗୁଣେ ଶଇଳେକ କହିଲି
ସହସ୍ରେକ ଶଇଳେ ତୁଳପାଦ ଖଣ୍ଡେ
ସହସ୍ରେକ ତୁଳେ ଗଜେକ ଯେ ଖଣ୍ଡେ
ସହସ୍ରେକ ଗଜତୁଳେ ଅଙ୍ଗାଯେକ ବୋଲି
ଯେ ବିଧି ଦ୍ୱାପର ଯୁଗକୁ ଭାରେକ କହିଲି ।
(ସାରଳା ମହାଭାରତ : କର୍ଣ୍ଣପର୍ବ)

(୧୨) **ଉପମା ପ୍ରୟୋଗ :** ଉପମା ପ୍ରୟୋଗୟରେ ସାରଳାଦାସଙ୍କ ପରି କୁଶଳୀ କବି କମ୍ ମିଳିବେ । ରଘୁବଂଶ ଆରମ୍ଭ କରିବା ବେଳକୁ କାଳିଦାସ କହିଥିଲେ, ସୂର୍ଯ୍ୟପ୍ରଭବ ରଘୁବଂଶ କେଉଁଠି, ଆଉ ଅଳ୍ପମତି ବିଶିଷ୍ଟ ମୁଁ କେଉଁଠି ! ଗୋଟିଏ ଛୋଟ ଭେଳାରେ

ମୁଁ ଗୋଟିଏ ସମୁଦ୍ର ପାର ହେବାକୁ ବସିଛି । ସାରଳା ଦାସ ସେହିପରି ସାରଳାଙ୍କ ବନ୍ଦନା କରି କହିଥିଲେ – ମହାଭାରତ ପରି ଏତେବଡ଼ ଗ୍ରନ୍ଥ ରଚନା କରିବାର ଦାୟିତ୍ୱ ମୋ ଉପରେ ଲଦି ଦେଉଛ । ପିମ୍ପୁଡ଼ି ଉପରେ ଯେମିତି କିଏ ପର୍ବତ ଲଦି ଦେଉଛି । ଯେଉଁଠାରେ ସୁଯୋଗ ପାଇଛନ୍ତି ଉପମା ପ୍ରୟୋଗ କରିବାରେ କବି କେବେ ହେଳା କରିନାହାନ୍ତି । ମହାଭାରତର କର୍ଣ୍ଣପର୍ବରେ କର୍ଣ୍ଣ ଓ ଅର୍ଜ୍ଜୁନଙ୍କର ତୁଳନା କରି ସାରଳାଦାସ ଲେଖିଛନ୍ତି–

ସିଙ୍ଘକୁ ଦେଖିଲେ ଯେହ୍ନେ ପଳାଇ ନ ପାବନ୍ତି ଠାବ
ତୁ ଅଟୁ ମତ୍ତ ହାତୀ ସିଂଘଟି ପାର୍ଥିବ
ଅହୋକର୍ଣ୍ଣ ମହାଘୋର ଅନ୍ଧକାର ରାତ୍ରଥାଇ ଘୋଟି
ଆଦିତ୍ୟ ତେଜ ଲାଗିଲେ ସେ ଯେହ୍ନେ ଯାଇ ଫିଟି
ତୁଯେ ଘୋଟୁଅଛୁ ମହାନିଶି ପରାୟେ
ଆଦିତ୍ୟ ପରାୟେ ତୋତେ ଦିଶିବଟି ପାଣ୍ଡବ ଧନୁର୍ଜୟେ
ଅହୋ କର୍ଣ୍ଣ ଇନ୍ଦୁର ଗର୍ଜନ ପରାୟେ ବୁଝଇଂ ମୁହିଂ ତେତେ
ମଞ୍ଜାରି ଦେଖିଲେ ସେ କେଣେ ପଳାଇ ପଶଇ କେଉଂଣ ଗାତେ ।
(ସାରଳା ମହାଭାରତ : କର୍ଣ୍ଣ ପର୍ବ)

ଭାରତ ହରିବଂଶରେ ଏହିପରି ବହୁ ଉପମାମାନ ଦେଖିବାକୁ ମିଳିଥାଏ । ବିଶେଷକରି ଯୁଦ୍ଧ ପ୍ରସଙ୍ଗରେ ଉଭୟଙ୍କୁ ତୁଳନାକରି ଚମତ୍କାର ଉପମାର ପ୍ରୟୋଗ ଭାରତ ହରିବଂଶକୁ ସାରଳାଙ୍କ ରଚନା ବୋଲି ପ୍ରତିପାଦିତ କରିଥାଏ । ଦ୍ରୋଣଙ୍କ ସେନାପତିତ୍ୱ କାଳରେ ଯୁଦ୍ଧ କ୍ଷେତ୍ରରେ ଭୁରିସର୍ବା ଓ ଅର୍ଜୁନଙ୍କ ମଧ୍ୟରେ କଥୋପକଥନ ଲକ୍ଷଣୀୟ–

ଭୁରିସର୍ବା ବୋଇଲେ କାହାକୁ ଡାକୁ ପାଥ
ତୁହି କୂପଜଳ ମୁହିଂ ଅଟଇ ସିନ୍ଧୁସାତ
ତୁହି ଗିରିବର ମୁହିଂ ସିନା ମେରୁ
ତୁହି ଦୁବବୃକ୍ଷ ମୁହିଂ କଳ୍ପତରୁ
ମୁହିଂ ସେ ଗୁଞ୍ଜର ତୁହି ସେ ପିମ୍ପୁଡ଼ି
ନିଶ୍ୱାସ ପବନେ ରଥି ସାରଥି ଯିବେ ଉଡ଼ି
ଅର୍ଜୁନ ବୋଇଲା ତୁ ତ ସମସ୍ତ କହିଲୁଂ
ଆପଣା ମରିବା କଥା ତଥ୍ୟ ନପାଇଲୁ
ତୁହି ସିନ୍ଧୁଜଳ ମୁହିଂ ଅଗସ୍ତି ମହାମୁନି
ତୁହି ମେରୁ ହୋଇଲେ ମୁହିଂ ସେ ପବନ ପୁଣି
ତୁହି ସିନା ହସ୍ତୀ ମୁହିଂ ଅଟେ ସିଙ୍ଘ
ଏହି କ୍ଷଣି ତୋହର ଛେଦିବଇଂ କନ୍ଧ ।
(ଭାରତ ହରିବଂଶ : ପ୍ରସଙ୍ଗ : ଦ୍ରୋଣଙ୍କ ଚକ୍ରବ୍ୟୂହ ରଚନା)

(୧୩) **ଅଶ୍ଳୀଳତାର ପ୍ରୟୋଗ :** ଅଶ୍ଳୀଳତା ସାରଳା ସାହିତ୍ୟର ଏକ ପ୍ରମୁଖ ବିଭବ । ନିଜର ପୂର୍ବଜନ୍ମ କଥା କହିବା ପ୍ରସଙ୍ଗରେ ସାରଳା କହିଛନ୍ତି ଯେ ଯେତେବେଳେ ସାରଳା ତାଙ୍କୁ ମହାଭାରତ ରଚନା କରିବାକୁ ଆଜ୍ଞାଦେଲେ ସେତେବେଳେ ଶରୀର ବର୍ଣ୍ଣନା କରିବା ପ୍ରସଙ୍ଗରେ ସାରଳା ଦାସଙ୍କୁ ଚେତାଇ ଦେଇଥିଲେ । କହିଥିଲେ ଯେ ତୁ ମୋର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗର ବର୍ଣ୍ଣନା କରିବୁ ପଛେ ମାତ୍ର ମୋର ଭଗଦ୍ୱାରକୁ ବର୍ଣ୍ଣନା କରିବୁ ନାହିଁ । ସାରଳା ଦାସ ଏଥିରେ ସମ୍ମତି ପ୍ରଦାନ କରିଥିଲେ । ତେଣୁ ଭଗର ବର୍ଣ୍ଣନାକୁ ଛାଡ଼ିଦେଲେ ଶୃଙ୍ଗାର ରସକୁ ବର୍ଣ୍ଣନା କରିବାରେ ସାରଳାଙ୍କୁ କେହି ଟପିଯାଇ ପାରିବେ ନାହିଁ । ରମଣ କରିବା, ସୁରତି ବାଞ୍ଛା କରିବା, ରେତ ସ୍ଖଳିତହେବା, ଆପାକୃତ

ଯୌନକ୍ରିୟା ଆଦି ସାରଳାଙ୍କ ସାହିତ୍ୟରେ ଭରି ହୋଇ ରହିଛି । ଆଦିପର୍ବରେ ସାରଳା ଲେଖିଛନ୍ତି-

କେ ଗାଇ ମଇଂଷି କେ ଅବା ମେଷ ଛେଳି
ନାନା ପ୍ରକାରେ କରନ୍ତି ରତି ରସ କେଳି ।

ସାରଳା ମହାଭାରତ ଓ ଭାରତ ହରିବଂଶ ମଧ୍ୟରେ ସାମଞ୍ଜସ୍ୟ ପ୍ରଦର୍ଶନ କରିବାପାଇଁ କେବଳ ଗୋଟିଏ ବିଷୟବସ୍ତୁକୁ ଏଠାରେ ଉପସ୍ଥାପନ କରାଯାଉଛି । ବିଷୟଟି ହେଲା- ପୃଥିବୀରେ ଲିଙ୍ଗକୁ କାହିଁକି ପୂଜା କରାଯାଉଛି । ଗଦାପର୍ବରେ ଦକ୍ଷଯଜ୍ଞ ପ୍ରସଙ୍ଗରେ ଶିବ କ୍ରୋଧିତ ହୋଇ ଦକ୍ଷ ପ୍ରଜାପତିଙ୍କ ଯଜ୍ଞସ୍ଥଳ ନିକଟକୁ ଯାଇଛନ୍ତି । ଶାଶୂ ତାଙ୍କୁ ବନ୍ଦାପନା କରି ଆସିବା ବେଳେ କୁହାଯାଇଛି-

ପତ୍ନୀର ନିଧନେ ଦେବ କୋପେଣ ପରଚଣ୍ଡ
ରାଗେଣ ଈଶ୍ୱର ଶାଶୁକୁ ମାନ୍ୟ ନକରି ଦେଖାଇଲେ ଅଣ୍ଡ
କୋପେଣ ଗର୍ଜନ୍ତି ସ୍ୱାମୀ କାଳସର୍ପ ଜାଣି
ବାମକରେ ଅଣ୍ଡଧରି ବୋଇଲେ ଯେଥେ ଅର୍ଘ୍ୟ ବନ୍ଦାଅ ଗୋ ଆଣି
ତ୍ରିପୁରାରିର ବଚନେ ସେ ପ୍ରଜାପତିର ରାଣୀ
ଈଶ୍ୱରଙ୍କ ଅଣ୍ଡପୂଜା କଲେ ଅର୍ଘ୍ୟଘେନି ।
(ସାରଳା ମହାଭାରତ : ଗଦାପର୍ବ)

ଶିବ ନିଜର ଭୁଲ ବୁଝିପାରି ଲଜ୍ଜିତ ହେଲେ । ପ୍ରଜାପତିଙ୍କର ପତ୍ନୀ କିନ୍ତୁ ତାଙ୍କୁ ଶାପ ପ୍ରଦାନ କରି କହିଲେ-

ପ୍ରଜାପତିର ପତ୍ନୀ କୋପେଣ ବଚନ ପରକାଶି
ଯୁଗେ ଯୁଗେ ଈଶ୍ୱର ତୁ ଅଣ୍ଡପୂଜା ହୁଅସି ।

ଭାରତ ହରିବଂଶରେ ପ୍ରସଙ୍ଗଟି ଭିନ୍ନ ପ୍ରକାରରେ ରଚିତ ହୋଇଛି । ସେଥିରେ ଅଛି ଯେ କୁଣ୍ଡଳି ନାମକ ଶିବଙ୍କୁ ନିଦ୍ରା ଲାଗିଯିବାରୁ ସେ ସତୁରି ସହସ୍ର ବରଷ ପର୍ଯ୍ୟନ୍ତ ଶୋଇପଡ଼ିଲେ । ପାର୍ବତୀଙ୍କ ଅଙ୍ଗରେ କାମପୀଡ଼ା ହେବାରୁ ସେ ଶିବଙ୍କର କର୍ପଟି ଛିଡ଼ାଇ ପକାଇ ତାଙ୍କୁ ବିବସନ କରି ଯୋନିରେ ଅଣ୍ଡଦେଇ ମୁଖମାଡ଼ି ଶୋଇ ପଡ଼ିଲେ । ଶିବଙ୍କର ନିଦଭାଙ୍ଗିଯିବାରୁ ସେ ମାୟାରେ ଲିଙ୍ଗକୁ ଚାରିଲକ୍ଷ ଯୋଜନ ପର୍ଯ୍ୟନ୍ତ ବଢ଼ାଇଲେ । କବି ଲେଖିଛନ୍ତି-

ଚାରିଲକ୍ଷ ଯୋଜନ ଅଣ୍ଡଗଲା ବଢ଼ି
ଯୋଗମାୟା ଶୋଇଣ ଅଛନ୍ତି ମୁଖମାଡ଼ି
ଯୋନି ଅଣ୍ଡ ତାଙ୍କ ଯାଇଅଛି ଜଡ଼ି
ଆକାଶ ମାର୍ଗରେ ଦେବୀ ଲାଗିଲେ ଯାଇକରି ।
(ଭାରତ ହରିବଂଶ : ପ୍ରସଙ୍ଗ : ମଣିକୁଣ୍ଡଳ ଶିବକଥା)

ବୈଶାଳୀପୁରର ଲୋକମାନେ କରତାଳି ମାରି ହସିବାରୁ ଦେବୀ ଲଜ୍ଜାବୋଧ କଲେ ଓ ବିପଦରୁ ରକ୍ଷାପାଇବା ପାଇଁ ବିଷ୍ଣୁଙ୍କୁ ସ୍ମରଣ କଲେ । ବିଷ୍ଣୁ ସୁଦର୍ଶନ ଚକ୍ରକୁ ପେଶିବାରୁ ଚକ୍ର ଶିବଙ୍କର ଅଣ୍ଡକୁ କାଟି ଖଣ୍ଡ ଖଣ୍ଡ କରିଦେଲା । ଆଉ ମାତ୍ର ଦୁଇମୁଠା ଅବଶେଷ ରହିଲା । ସୁଦର୍ଶନ ଚକ୍ରକୁ ଶତ୍ରୁ ବୋଲି ମନେକରି ଶିବ ତାର ପଛରେ ଗୋଡ଼ାଇଲେ । ଶ୍ରୀହରି ତାଙ୍କ ଦୁଃଖର ସମାଧାନ କରିଦେଇ କହିଲେ-

ଶ୍ରୀହରି ବୋଇଲେ ଯେବେ କାଟିଲା ତୁମ୍ଭ ଅଣ୍ଡ
ସେ ଅଣ୍ଡ ବିଖ୍ୟାତ ହୋଇବ ବ୍ରହ୍ମାଣ୍ଡ
ଗ୍ରାମେ ଗ୍ରାମେ ସ୍ଥାପି ପୂଜିବେ ଲିଙ୍ଗକୁ
ପୂଜିଲେ ପ୍ରସନ୍ନ ଯେ ହୋଇବ ତାହାକୁ ।
(ଭାରତ ହରିବଂଶ : ପ୍ରସଙ୍ଗ : ମଣିକୁଣ୍ଡଳ ଶିବକଥା)

ବରପାଇ ଶିବ ଆନନ୍ଦିତ ହୋଇଥିଲେ ।

(୧୪) **ନିଜସୃଷ୍ଟ କଥନିକାର ପୁନଃ ପ୍ରୟୋଗ :** ସାରଳାଙ୍କ ମହାଭାରତରେ କେତେ ଯେ ନିଜସୃଷ୍ଟ କାହାଣୀ ଭରିହୋଇ ରହିଛି ତାହାକୁ କଳନା କରିହେବ ନାହିଁ । ଅନୁରୂପଭାବରେ ଭାରତ ହରିବଂଶରେ ମଧ୍ୟ ଅସଂଖ୍ୟ ସ୍ୱସୃଷ୍ଟ କାହାଣୀ ଖଞ୍ଜି ହୋଇ ରହିଛି । ଉଭୟ ଗ୍ରନ୍ଥରେ ଶିବ ପାର୍ବତୀଙ୍କ ଆଗରେ ଗ୍ରନ୍ଥର ବିଷୟବସ୍ତୁକୁ ଉପସ୍ଥାପନ କରିଛନ୍ତି । ପ୍ରତି କ୍ଷେତ୍ରରେ ପାର୍ବତୀଙ୍କ ମନରେ ଜିଜ୍ଞାସାଭାବ ଜାତହୋଇଛି ଓ ସାରଳାଦାସ ନିଜମନରୁ ବହାଣୀଟିଏ ସୃଷ୍ଟିକରି ପାର୍ବତୀଙ୍କ ଜିଜ୍ଞାସାର ଉତ୍ତର ପ୍ରଦାନ କରିଛନ୍ତି । ଯେଉଁଠି ଗୋଟିଏ ଗ୍ରନ୍ଥରେ ସ୍ୱସୃଷ୍ଟ ଏକ କାହାଣୀ ଅନୁରୂପ ଭାବରେ ଅନ୍ୟ ଏକ ଗ୍ରନ୍ଥରେ ରୂପାୟିତ ହୋଇଥାଏ ସେଠାରେ ଉଭୟ ଗ୍ରନ୍ଥର ଲେଖକଙ୍କୁ ଏକ ବୋଲି ଧରିନେବାକୁ ହୁଏ । ମହାଭାରତର ଅନେକ କାହାଣୀ ଭାରତ ହରିବଂଶରେ ପୁନଃ ପ୍ରୟୋଗ କରା ଯାଇଥିବା ଦୃଷ୍ଟିରୁ ଉଭୟଗ୍ରନ୍ଥର ଲେଖକଙ୍କୁ ଏକ ବୋଲି ଆମେ ପ୍ରମାଣିତ କରିପାରିବା । ଅନେକ କାହାଣୀ ମଧ୍ୟରୁ କିଛି କାହାଣୀକୁ ଏଠାରେ ଉପସ୍ଥାପନ କରାଯାଉଛି, ଯାହା ସାରଳା ମହାଭାରତରେ ବିବୃତ ହୋଇଥିଲେ ମଧ୍ୟ ଭାରତ ହରିବଂଶରେ ପୁନଶ୍ଚ ପ୍ରୟୋଗ କରାଯାଇଛି ।

(କ) **ଗଙ୍ଗା କହିଲେ ଥିବି ଗାଙ୍ଗୀ କହିଲେ ଯିବି:** ଓଡ଼ିଆରେ 'ଗଙ୍ଗା କହିଲେ ଥିବି ଗାଙ୍ଗୀ କହିଲେ ଯିବି' ବୋଲି ଗୋଟିଏ ରୁଢ଼ି ପ୍ରଚଳିତ ଅଛି । ଏହି ରୁଢ଼ିଟି ସାରଳା ମହାଭାରତରୁ ସୃଷ୍ଟି ହୋଇଛି । ଶାନ୍ତନୁ ଗଙ୍ଗାଙ୍କୁ ବିବାହ କରିବା ସମୟରେ ଗଙ୍ଗା ତାଙ୍କ ଘରେ ରହିବା ପାଇଁ ଗୋଟିଏ ସର୍ତ୍ତ ରଖିଥିଲେ । ସର୍ତ୍ତହେଲା - ଯେତେଦିନ ପର୍ଯ୍ୟନ୍ତ ମୋତେ ଗଙ୍ଗାବୋଲି ଡାକୁଥିବ ମୁଁ ତୁମଘରେ ରହିଥିବି, ଯେଉଁଦିନ ଗାଙ୍ଗୀ ବୋଲି ଡାକିବ ସେହିଦିନ ଛାଡ଼ି ଚାଲିଯିବି ।

ଗଙ୍ଗାବୋଲି ବୋଲୁଥିବୁ ତୁ ଅନୁବରତେ
ଗାଙ୍ଗୀ ବୋଇଲେ ନଥାଇ ମୁଂ ତୋର ପୁରତେ,

ସର୍ତ୍ତରେ ରାଜିହୋଇ ଶାନ୍ତନୁ ଗଙ୍ଗାଙ୍କୁ ବିବାହ କରିଥିଲେ, ମାତ୍ର ସର୍ତ୍ତଟି ଯେ ଏତେ ବିଭତ୍ସ ହେବ ତାହା ଶାନ୍ତନୁ କଳ୍ପନା ମଧ୍ୟ କରିପାରିନଥିଲେ । ନିଜ ଜନ୍ମିତ ପୁତ୍ରମାନଙ୍କୁ ହତ୍ୟା କରି ଗଙ୍ଗା ଆନନ୍ଦଲାଭ କରୁଥଲେ । ଛଅଜଣ ପୁତ୍ରଙ୍କୁ ମାରିସାରିବା ପରେ ସପ୍ତମ ପୁତ୍ରକୁ ବିନାଶ କରିବାକୁ ଯାଉଛନ୍ତି, ଶାନ୍ତନୁ ଆଉ ଦୁଃଖକୁ ସହି ନପାରି ଗଙ୍ଗାଙ୍କୁ ଗାଙ୍ଗୀ ବୋଲି ଡାକିଦେଲେ । ସାରଳା ମହାଭାରତର ଆଦିପର୍ବରେ ଅଛି–

ଷଡ଼ପୁତ୍ର ମାରି ତୋର ନପୁରେ ଅଭୀଷ୍ଟ
ଆଲୋ ଆଲୋ ଗାଙ୍ଗୀ ତୁହି ଏଡ଼େ ମନ୍ଦଦୁଷ୍ଟ ।

ଗାଙ୍ଗୀ ବୋଲି ଡାକିବାରୁ ଗଙ୍ଗା ତତ୍‌କ୍ଷଣାତ ପୁତ୍ର ଓ ପୁର ଛାଡ଼ି ଚାଲିଗଲେ । ଭାରତ ହରିବଂଶରେ ମଧ୍ୟ ଅନୁରୂପ ଭାବରେ ଗାଙ୍ଗୀ ଶବ୍ଦର ପ୍ରୟୋଗ ଯୋଗୁଁ ଗଙ୍ଗା ଶାନ୍ତନୁଙ୍କୁ ଛାଡ଼ି ଚାଲିଯିବାର କଥା ଉଲ୍ଲେଖ ରହିଛି । ଭାରତ ହରିବଂଶର କଥା ଅନୁସାରେ ଗଙ୍ଗା ଶାନ୍ତନଙ୍କୁ ଶିବ ବୋଲି ଭାବି ଭୁଲରେ ତାଙ୍କୁ ବିବାହ କରିଯାଇଥିଲେ । ଯେକଥା ଜାଣିଲା ପରେ ସେ ଆଉ ଶାନ୍ତନୁଙ୍କୁ ରମଣ ଦେଲେ ନାହିଁ ଓ ତାଙ୍କଠାରୁ ସତ୍ୟ କରାଇ ନେଲେ ଯେ ଗାଙ୍ଗୀ ବୋଲି ଡାକିଦେଲେ ସେ ଆଉ ତାଙ୍କ ଘରେ ରହିବେ ନାହିଁ ।

ଶାୟେନ୍ତନୁଙ୍କୁ ଗଙ୍ଗାଦେବୀ ନଦିଲେ ରମଣିଂ
ଗଙ୍ଗା ଶାୟେନ୍ତନୁକୁ କହିଲେ ସତ୍ୟବାଣି
ଗଙ୍ଗା ବୋଇଲେ ଯେ ଥିବି ତୁମ୍ଭଘର
ଗାଙ୍ଗୀ ବୋଇଲେ ନ ରହିବି ଯିବି ଦେଶାନ୍ତର ।
(ଭାରତ ହରିବଂଶ : ପ୍ରସଙ୍ଗ : ଗଙ୍ଗାଙ୍କ ସହିତ ଶାନ୍ତନୁଙ୍କର ବିବାହ)

ଗୋଟିଏ ଗୋଟିଏ ପୁତ୍ର ଜନ୍ମକରି ଗଙ୍ଗା ତାକୁ ମାରି ପକାଉଥିଲେ । ଛଅଜଣ ପୁତ୍ରକୁ ମାରିସାରିବା ପରେ ସେ ପୁଣି ଆଉ ଗୋଟିଏ ପୁତ୍ର ଜନ୍ମକଲେ । ସେହିପୁତ୍ରକୁ ବେନିଖଣ୍ଡ କରି କାଟିବାକୁ ବସିଥିବା ବେଳେ ଶାନ୍ତନୁ ଗାଙ୍ଗୀ ବୋଲି ଡାକିଦେବାରୁ ଗଙ୍ଗା କୋପରେ ପୁତ୍ରକୁ ତଳକୁ ପକାଇଦେଲେ ।

ଷଡକୁମର ମାରି କୁମରେ ପୁଣି ଗଙ୍ଗା ଜନ୍ମକଲେ
ବେନିଖଣ୍ଡ କରି କାଟିବେ ବୋଲି ଦେବୀ ସହସ୍ର ଧଇଲେ
ରହଲୋ ଗାଙ୍ଗୀ ବୋଲି ଶାଏନ୍ତନୁ ଦିଲେ ଡାକ
କୋପେ ଭୂମିରେ ଗଙ୍ଗା ପକାଇଲେ ବାଳେକ ।

(ଭାରତ ହରିବଂଶ : ପ୍ରସଙ୍ଗ : ଗଙ୍ଗାଙ୍କ ସହିତ ଶାନ୍ତନୁଙ୍କର ବିବାହ)

ସାରଳା ମହାଭାରତ ଓ ଭାରତ ହରିବଂଶର ଏ ପ୍ରକାର ସାଞ୍ଜସ୍ୟକୁ ଅନ୍ୟ କୌଣସି କବି ଏତେ ସ୍ପଷ୍ଟଭାବରେ ଅଙ୍କନ କରିପାରିବେ ନାହିଁ ।

(ଖ) **ଭାରଦା ଉପାଖ୍ୟାନ :** ସାରଳା ଦାସ ନିଜେ ସୃଷ୍ଟି କରିଥିବା ଭାରଦା ଚରିତ୍ରଟି ନିଖୁଣ ଭାବରେ ମହାଭାରତରେ ଯେପରି ରୂପାୟିତ ହୋଇଛି ଭାରତ ହରିବଂଶରେ ମଧ୍ୟ ଅନୁରୂପ ଭାବରେ ସ୍ଥାନିତ ହୋଇଛି । ଭାରଦା ଶବ୍ଦଟି ପରବର୍ତ୍ତୀ ସମୟରେ ବୋଧହୁଏ ଭାଡୁଆ ଶବ୍ଦ ଭାବରେ ଓଡ଼ିଶାରେ ପ୍ରଚଳିତ ହୋଇ ଆସୁଛି । ସ୍ତ୍ରୀ ବୋଲକରା ଅର୍ଥରେ ମଧ୍ୟ ଏହା ପ୍ରଯୁକ୍ତ ହୋଇଥାଏ ।

ମହାଭାରତ ଯୁଦ୍ଧର ପରିଣତି କ'ଣ ହେବ ବୋଲି ଜାଣିବା ପାଇଁ ଯୁଧିଷ୍ଠିର ସହଦେବଙ୍କୁ ତଥ୍ୟ ପଚାରିବାରୁ ସହଦେବ କିଛି ନକହି ତାହା ଭାରଦା କହିବ ବୋଲି ପ୍ରକାଶ କରି ଭାରଦାକୁ ଆଣିବାପାଇଁ ଭୀମସେନକୁ ପଠାଇବା ପାଇଁ ପ୍ରସ୍ତାବ ଦେଇଥିଲେ । ଭାରଦାର ଘର ଓଡ଼ିଶାର ବୈତରଣୀ ନଦୀ କୂଳରେ ଥିବା ଯାଯପୁର ନଗ୍ରରେ । ଭୀମସେନ ଭାରଦାକୁ ଆଣିବାକୁ ଯାଇ ତାର କାର୍ଯ୍ୟକଳାପ ସମ୍ପର୍କରେ ଜାଣିବାକୁ ଇଚ୍ଛା କରି ତାର ଘର ପଛପଟରେ ଲୁଚି ରହିଥିଲା । ସୂର୍ଯ୍ୟ ଅସ୍ତ ହୋଇଯିବା ପରେ ଭୀମସେନ ଦେଖିଲା ଯେ ଭାରଦାର ପତ୍ନୀ ଦ୍ୱାର ନିକଟରେ ଥିବା ପାଷାଣ ଉପରେ ଛିଡ଼ା ହୋଇଛି । ଭାରଦା ପତ୍ନୀର ଶରୀରରେ ପାଣି ଢାଳି ଗାଧୋଇ ଦେଉଛି । ସୁବେଶ ଅଁଳା ବୋଲି ତାର କେଶକୁ ପଖାଳି ଦେଉଛି । ଟଭାରସର ରଙ୍ଗଭରି ତାର ଶରୀରରେ ହଳଦୀ ଲେପନ କରି ପନିର ଜଳରେ ଶରୀର ପଖାଳି ଦେଉଛି । ଚାଙ୍ଗୁଡ଼ାରୁ ଦେବାଙ୍ଗ ବସନ ତୋଳିନେଇ ଶୁଖିଲା ବସନକୁ ପିନ୍ଧାଇଦେଇ ଓଦାବସନକୁ ପାଲଟାଇ ଦେଉଛି । ପାଲଟା ବାସନକୁ ଜଳରେ ଆଣି ପଖାଳି ଦେଉଛି । ଶୁଖିଲା ବସନରେ ଶିର କେଶ ପୋଛି ଦେଉଛି । ବାମ କରରେ କେଶକୁ ଆଉଁସି ଡାହାଣ କରରେ ଆଲଟ ଧରି ବିଞ୍ଚି ଦେଉଛି । ହାତୀଦାନ୍ତ ପାନିଆରେ ବାଳ କୁଣ୍ଡାଇ ଦେଇ କାବେରୀ ଖୋପାରେ ଚମ୍ପକ ଓ ବକୁଳମାଳ ପିନ୍ଧାଇ ଦେଉଛି । ପତ୍ନୀକୁ ଖାଇବାକୁ ଦେଇ ତାର ମୁହଁ ଓ ହାତ ଧୋଇଦେଉଛି । ପତ୍ନୀକୁ ତାମ୍ବୁଳଭାଙ୍ଗ ଯୋଗାଇବା ସଙ୍ଗେ ସଙ୍ଗେ ତା ପାଇଁ ଆଉ ଗୋଟିଏ ଶେଯ ପାରିଦେଉଛି । ପରପୁରୁଷ ହାତରୁ ସୁନାଗଣି ନେଇ ସେହି ପୁରୁଷକୁ ଭାରିଯା ନିକଟରେ ଶୁଆଇ ନିଜେ ଦ୍ୱାର ନିକଟରେ ଶୟନ କରୁଛି ।

ଭାରଦାର କାର୍ଯ୍ୟକଳାପ ଦେଖି ତାହାକୁ ମହାପାପୀ ବୋଲି ଜ୍ଞାନ କରି ଭୀମ ତାହାର ବାଳ ଧରି ତାହାକୁ ଟେକି ଟେକି ଆଣି ଯୁଧିଷ୍ଠିରଙ୍କ ନିକଟରେ ପହଞ୍ଚାଇ ଦେଇଥିଲା । ସହଦେବଙ୍କ ନିର୍ଦ୍ଦେଶରେ ଯୁଦ୍ଧକ୍ଷେତ୍ରର ମଧ୍ୟସ୍ତମ୍ଭରେ ଭୀମ ଭାରଦାକୁ ବାନ୍ଧିଦେଇ ଆସିଲା । ଶୃଗାଳ ଓ ଶୃଗାଳୀଙ୍କ ଠାରୁ ମହାଭାରତ କଥା ଶ୍ରବଣ କରି ତହିଁ ପରଦିନ ଭାରଦା ଯୁଧିଷ୍ଠିରଙ୍କ ସମ୍ମୁଖରେ ପ୍ରକାଶ କରି ମୃତ୍ୟୁବରଣ କରିଥିଲା ।

ଏ ଗଲା ସାରଳା ମହାଭାରତରେ ଥିବା ଭାରଦା ଉପାଖ୍ୟାନ । ଭାରତ ହରିବଂଶରେ ମଧ୍ୟ ଅନୁରୂପ ଭାବରେ ଭାରଦାର କାହାଣୀ ବର୍ଣ୍ଣିତ ହୋଇଛି । ଭାରତ ଯୁଦ୍ଧରେ ପରଣତି କ'ଣ ହେବବୋଲି ଯୁଧିଷ୍ଠିର ସହଦେବକୁ ପଚାରିବାରୁ ସହଦେବ କହିଲେ-

ସହଦେବ ବୋଇଲା ଅଛନ୍ତି ଯେକଜଣ
କହିଲେ ଆସିବ ଯାଆନ୍ତୁ ଭୀମସେନ
ଘର ଉଜାଣିକାନ୍ତିରେ ଭାରଦା ବୋଲି ନାମ
ମହାଭାରତ କହିବାକୁ ସେହି ସେ ଭାର୍ଜନ ।

(ଭାରତ ହରିବଂଶ : ପ୍ରସଙ୍ଗ : ଭାରଦା ଉପାଖ୍ୟାନ)

ଯୁଧିଷ୍ଠିରଙ୍କର ଆଜ୍ଞାରେ ଭୀମସେନ ଭାରଦାକୁ ଆଣିବାକୁ ଯାଇ ସେଠାରେ ଦେଖିଛନ୍ତି-

ଯୁଧିଷ୍ଠି ଆଜ୍ଞାଦିଲେ ଗମିଲା ବିକୋଦର
ପ୍ରବେଶ ହୋଇଲା ଭାରଦା ଭୁବନର
ଭାରିଜା ଯେ ଅଛି ତାର ଯେସନେ ଅପକ୍ଷରି
ତାହାକୁ ଭାରଦା ଅଛି ସେବାକରି
ଦିବସ ଯାଇଣ ରଜନୀ ହୋଇଲା
ସୁବେଶ ହୋଇ ବାଳୀ ପଲଙ୍କେ ପହୁଡ଼ିଲା
ପରପୁରୁଷମାନେ ମିଳିଲେ ତାର କତି
ଧନ ଦେଇ ଯୁବତୀ ସଙ୍ଗେ କଲେ ରତି
ଚଳିଲେ ନାଗର ଦେଖିଲେ ଭାରଦା
ଫଳମୂଳ ଯୋଗାଇ ପତ୍ନୀକି କଲେ ସେବା
(ଭାରତ ହରିବଂଶ : ପ୍ରସଙ୍ଗ: ଭାରଦା ଉପାଖ୍ୟାନ)

ଅନୁରୂପ ଭାବରେ ଭୀମସେନ ଭାରଦାର ବାଳଧରି ନେଇଯାଇ ଯୁଧିଷ୍ଠିରଙ୍କ ନିକଟରେ ପହଞ୍ଚିଛି ଓ ତାକୁ ଭାରତସ୍ତମ୍ଭରେ ବାନ୍ଧିଦିଆଯାଇଛି । ଶୃଗାଳ ଓ ଶୃଗାଳୀଙ୍କ ଠାରୁ ମହାଭାରତର ପରିଣତି ସମ୍ପର୍କରେ ଶୁଣି ସେ ଯୁଧିଷ୍ଠିରଙ୍କ ନିକଟରେ ପରଦିନ ପ୍ରକାଶ କରି ଜୀବନ ତ୍ୟାଗ କରିଛି ।

(ଗ) **ଯୁଧିଷ୍ଠିରଙ୍କର ସୁହାଣୀ କନ୍ୟା ସହ ବିବାହ :** ସାରଳା ମହାଭାରତରେ ସ୍ୱର୍ଗାରୋହଣ ପର୍ବ ଅନୁସାରେ ପାଣ୍ଡବମାନେ ହିମାଳୟକୁ ଯିବାରାସ୍ତାରେ ବୈତରଣୀ ନଦୀ ନିକଟସ୍ଥ ଯାଯପୁର ନଗ୍ରରେ ଅବସ୍ଥାନ କରିଥିଲେ । ସାରଳାଦାସ ଯାଯପୁରକୁ ଧର୍ମପୁର ଓ ଅମରାବତୀ ନାମରେ ମଧ୍ୟ ଅଭିହିତ କରିଛନ୍ତି । ଯାଯପୁରରେ ହରିସାହୁ ନାମରେ ଜଣେ ବୈଶ୍ୟଥିଲେ । ତାଙ୍କର ସୁହାଣୀ ନାମରେ ଝିଅଟିଏ ଜନ୍ମ ହୋଇଥିଲା । ଝିଅଟିର କୋଷ୍ଠିଗଣନା କରି ଜ୍ୟୋତିଷ କହିଲେ ଯେ ବିଭାଘର ସମୟରେ ତାହାର ମୃତ୍ୟୁହେବ । ଏଣୁ ହରିସାହୁ ସୁହାଣିକୁ ବିଭା ନକରାଇ ଘରେ ରଖିଥିଲେ । ପାଣ୍ଡବମାନେ ଯାଯନଗ୍ରରେ ଉପସ୍ଥିତ ହେବାପରେ ହରିସାହୁ ସୁହାଣିକନ୍ୟାକୁ ଯୁଧିଷ୍ଠିରଙ୍କୁ ପ୍ରଦାନ କରିବାକୁ ଇଚ୍ଛା ପ୍ରକାଶ କଲେ । ବୟସାଧିକ୍ୟ କାରଣରୁ ଯୁଧିଷ୍ଠିର ବିବାହ କରିବାକୁ ଆଗ୍ରହୀ ନଥିଲେ ମଧ୍ୟ ଭାଇମାନଙ୍କର ଅନୁରୋଧରେ ସେ ସୁହାଣି କନ୍ୟାକୁ ବିବାହ କରିଥିଲେ । ବିବାହଦିନ ଯମରାଜ ସୁହାଣିକନ୍ୟାକୁ ନେଇଯିବାପାଇଁ ଆସିଥିଲେ ମଧ୍ୟ ତାହା ସମ୍ଭବ ହୋଇନଥିଲା । ଅର୍ଜୁନ କାଳଫାଶ ଶରରେ ଯମଦେବତାଙ୍କୁ ବନ୍ଦୀ କରି ଦେଇଥିଲେ । ହରିସାହୁର ଅନୁରୋଧରେ ଯମଦେବତାଙ୍କୁ ବନ୍ଧନମୁକ୍ତ କରାଯାଇଥିଲା । ସୁହାଣିକନ୍ୟାକୁ ସାଥୀରେ ଧରି ଯୁଧିଷ୍ଠିର ପଇଁତିରିଶିବର୍ଷ ପର୍ଯ୍ୟନ୍ତ ସେଠାରେ ଅବସ୍ଥାନ କରିଥିଲେ ।

ଭାରତ ହରିବଂଶ ଅନୁସାରେ ସନ୍ନ୍ୟାସ ବେଶରେ ଯାଇ ପାଣ୍ଡବମାନେ ହରିତ ବୋଲି ଏକଗ୍ରାମରେ ଅବସ୍ଥାନ କରିଥିଲେ, ଯେଉଁ ରାଜ୍ୟରେ ହରିସାହୁ ନାମକ ଏକ ବୈଶ୍ୟ ରାଜୁତି କରୁଥିଲା । ତାହାର ଝିଅ ବିଭାହୋଇ ନଥିବାରୁ ଯୁଧିଷ୍ଠିର ତାହାର କାରଣ ଜିଜ୍ଞାସା କରିଥିଲେ । ଅନୁରୂପ ଭାବରେ ବିଭା ସମୟରେ ଝିଅର ମୃତ୍ୟୁ ହେବ ବୋଲି ହରିସାହୁ ପ୍ରକାଶ କରି ଝିଅକୁ ଯୁଧିଷ୍ଠିରଙ୍କୁ ବିଭାଦେବାପାଇଁ ପ୍ରସ୍ତାବ ରଖିଥିଲା ।

ବିଭାକାଳେ ଯେହାକୁ ଯମ ଯିବ ଘେନି
ତେଣୁ ବିଭା ନଦେଇ ରଖିଛି ଦୁଲଣି
ତୁମ୍ଭେତ ବିବେକ ଧାର୍ମିକ ଗୁଣଗ୍ରାହୀ
ଦୁହିତା ଗୋଟି ଯେବେ ତୁମ୍ଭଙ୍କୁ ବିଭାଦେଇ ।
(ଭାରତ ହରିବଂଶ : ପ୍ରସଙ୍ଗ : ସୁହାଣି କନ୍ୟାର ବିବାହ)

ଯୁଧିଷ୍ଠିର ହରିସାହୁର କନ୍ୟାକୁ ବିଭାହେବାପାଇଁ ସମ୍ମତି ପ୍ରକାଶ କଲେ ।

ଅପଣେ ଯୁଧିଷ୍ଠି ବରବେଶ ହେଲେ
କନ୍ୟା ସହିତରେ ବେଦୀରେ ବସିଲେ
ଗନ୍ଧର୍ବ ବେଭାରେ ସେ ହୋଇଲେ ବିଭା
ଝିଅକୁ ହରିସାହୁ ସମର୍ପିଣ ଦେଲା ।

(ଭାରତ ହରିବଂଶ : ପ୍ରସଙ୍ଗ : ସୁହାଣି କନ୍ୟାର ବିବାହ)

ଝିଅକୁ ନେବାପାଇଁ ଆସିଥିବା ଯମକୁ ଫାଶରେ ବାନ୍ଧି ଅର୍ଜୁନ ପର୍ବତ କୋଟରରେ ରଖିଥିଲା । ହରିସାହୁର ଅନୁରୋଧରେ ଯମକୁ ମୁକୁଳାଇ ଦିଆଗଲା ।

(ଘ) **ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ :** ମହାଭାରତ ଯୁଦ୍ଧର ଅନ୍ତିମ ପର୍ଯ୍ୟାୟରେ ଏକୁଟିଆ ଜୀବିତ ରହିଯାଇଥିବା ଦୁର୍ଯୋଧନ କୁରୁକ୍ଷେତ୍ରରୁ ବାହାରକୁ ବାହାରିଯିବାପାଇଁ ରାସ୍ତା ଖୋଜୁ ଖୋଜୁ ଦେଖିଲା ସମୁଦ୍ରର ଲହରୀ ପରି ଲହରୀ ମାଡ଼ି ଆସୁଥିବା ରକ୍ତର ନଦୀଟିଏ । ସେହି ରକ୍ତନଦୀକୁ ପାରହେବପାଇଁ ଗୋଟିଏ ଆଶ୍ରୟ ଖୋଜୁଥିବା ବେଳେ ଶବଟିଏ ଭାସି ଆସୁଥିବାର ଦୁର୍ଯ୍ୟୋଧନ ଦେଖିବାକୁ ପାଇଲେ । ତାହାଥିଲା ଦୁଃଶାସନର ଶବ । ଶବକୁ ଧରିବାମାତ୍ରେ ତାହା ତିନିତାଳ ଗଭୀରକୁ ବୁଡ଼ିଗଲା । ପରବର୍ତ୍ତୀ ସମୟରେ ଆହୁରି ଅନେକ ଶବ ଭାସିଆସିଲେ । ସେମାନଙ୍କ ମଧ୍ୟରେ ଥିଲେ ଦୁର୍ଯ୍ୟୋଧନଙ୍କର ଅନ୍ୟଭାଇମାନେ, ସଖା କର୍ଣ୍ଣ, ଗୁରୁ ଦ୍ରୋଣ, ମହାରଥୀ ଶଲ୍ୟ, ଭୁରିସର୍ବା ଓ ଶକୁନି ପ୍ରମୁଖ । ସମସ୍ତଙ୍କର ଶବକୁ ଛୁଇଁବା ମାତ୍ରେ ଶବଗୁଡ଼ିକ ଅଥଳ ଗଭୀରକୁ ବୁଡ଼ିଗଲା । ମାତ୍ର ଗୋଟିଏ ଶବ ନଦୀରେ ନବୁଡ଼ି ସେହିପରି ଉପରେ ଭାସିରହିଲା । ସେହି ଶବକୁ ଅବଲମ୍ବନ କରି ଦୁର୍ଯ୍ୟୋଧନ ରକ୍ତନଦୀ ସନ୍ତରଣ କରିଗଲେ । ଆରପଟରେ ଯାଇ ଉପକାରୀ ଶବଟିକୁ ଚିହ୍ନିବାପାଇଁ ଦୁର୍ଯ୍ୟୋଧନ ଲେଉଟାଇ ଦେଇ ଦେଖିଲେ ଶବଟି ତାଙ୍କର ଏକମାତ୍ର ପୁତ୍ର ଲକ୍ଷ୍ମଣ କୁମାରର । ଦୁଃଖରେ ଦୁର୍ଯ୍ୟୋଧନଙ୍କର ଛାତି ଥରି ଉଠିଲା । ସୋମବଂଶର ଉତ୍ତରାଧିକାରୀକୁ ଏହିପରି ଭାବରେ ଦେଖିବେ ବୋଲି ସେ କେବେ କଳ୍ପନା ବି କରିନଥିଲେ ।

ସାରଳା ମହାଭାରତରେ ପ୍ରଦତ୍ତ ଦୁର୍ଯ୍ୟୋଧନଙ୍କର ରକ୍ତନଦୀ ସନ୍ତରଣ ପ୍ରସଙ୍ଗଟି ସଂସ୍କୃତ ମହାଭାରତରେ ନାହିଁ । ଏହା ସାରଳାଙ୍କର ସ୍ୱସୃଷ୍ଟ ଏକ କାହାଣୀ । ମାତ୍ର ଏଇ କାହାଣୀଟିକୁ ମଧ୍ୟ ଭାରତ ହରିବଂଶରେ ସଂକ୍ଷିପ୍ତ ଭାବରେ ପ୍ରଦାନ କରାଯାଇଛି । ଭାରତ ହରିବଂଶ ଅନୁସାରେ-

ଗମନ୍ତେ ଦୁର୍ଯ୍ୟେଧନ ରୋଧିର ନଦି ଭେଟି
ମଡ଼ା ଭାସି ଯାଉଅଛନ୍ତି କୋଟି କୋଟି
ଚାରି ଯୋଜନ ପ୍ରତି ଦିର୍ଘ ଯୋଜନ ସତର
ଏମନ୍ତ ପ୍ରକାରେଂ ପୁରି ବହଇ ରୋଧିର ।
ରଥିରଥ ଗଜ ଜଳଜୀବ ପ୍ରାଏ
ଭାସି ଯାଉଛନ୍ତି ଦେଖିଲା କୁରୁରାୟେ ।

ସାରଳା ମହାଭାରତରେ ଯେମିତି ଦୁର୍ଯ୍ୟୋଧନ ଚିନ୍ତା କରିଛନ୍ତି , ଏ ରୁଧିର ନଦୀ ହେବି କେମନ୍ତେ ମୁଂ ପାରି, ସେହିପରି ଭାରତ ହରିବଂଶରେ ମଧ୍ୟ ଦୁର୍ଯ୍ୟୋଧନ ଚିନ୍ତା କରିଛି, ଭାଳଇ ଦୁର୍ଯୋଧନ କେମନ୍ତେଂ ହେବି ପାରି । ଏହି ସମୟରେ ଗୋଟିଏ ଶବକୁ ଧରି ତା ଉପରେ ଗଦା ରଖିଦେବାରୁ ଶବଟି ଚଉଦତାଳ ଗଭୀରକୁ ବୁଡ଼ିଗଲା । ଭୁରିସର୍ବାଙ୍କ ଶବଦେଖି ତାଙ୍କ ଉପରେ ବସିପଡ଼ିବାରୁ ସେ ମଧ୍ୟ ରୁଧିର ନଦୀରେ ବୁଡ଼ିଗଲେ । ସାରଳା ଲେଖିଛନ୍ତି-

ଦ୍ରୋଣ କର୍ଣ୍ଣ ଶକୁନି ଶଲ୍ୟ ଯଦ୍ୟରଥ
ରଥି ମହାରଥି ରାଉତ ମାହୁନ୍ତ
କେହି ଦୁର୍ଯ୍ୟୋଧନକୁ ନେଇ ନ ପାରିଲେ
ଭାଳନ୍ତେ ମୃତୁପିଣ୍ଡ ଆସଇ ରୋଧିରେ ।

ବେନିଗଦା ରଖିଣ ପଡ଼ିଲା ପେଟିୟାଇ
ନାବ ପ୍ରାଏ ବାହିଣ ତେଣେଂ କୋଳେଂ ହୋଇ
ବଦନ ଦେଖିଣ ଚିହ୍ନିଲା ଲକ୍ଷ୍ମଣ କୁମାର
ଗୁଣବାଉନି କାନ୍ଦିଲା ବହୁତ ନୃପବର ।
ଆହାରେ ପୁତ୍ର ତୋତେ ପଳାଅ ବୋଇଲିଂ
ରହିଣ ପ୍ରାଣ ଦିଲୁ କୁଳ ବୁଡ଼ାଇଲିଂ
ଆରେ ପୁତ୍ର ବୋଲି ଦୟାତୋତେ ନକଲେ ପାଣ୍ଡବେଂ
ଯେତେ ବୋଲି ଭୁମିରେ କାଟିଲା ଯେକଗାରେ
ସାତତାଳ ଗଭୀରେ ଲକ୍ଷ୍ମଣ କୁମାରକୁ ପୋତି
ଗମନ୍ତେ ଭୀଷ୍ମକୁ ଭେଟିଲା କୁରୁପତି

ସାରଳା ମହାଭାରତରେ ଘଟଣାଟିଏକୁ ବର୍ଣ୍ଣନା କରିବାକୁ ସାରଳାଙ୍କ ନିକଟରେ ଯେଉଁପରି ସୁଯୋଗଥିଲା ଭାରତ ହରିବଂଶରେ ସେପରି ସୁଯୋଗ ସେ ପାଇନାହାନ୍ତି । ଭାରତହରିବଂଶର ଘଟଣାମାନଙ୍କୁ ସଂକ୍ଷିପ୍ତ କରିବାକୁ ସେ ବାଧ୍ୟ ହୋଇଛନ୍ତି । ସେଇଥିପାଇଁ ସାରଳାମହାଭାରତର ଲକ୍ଷ୍ମଣ କୁମାର ପ୍ରସଙ୍ଗଙ୍କୁ ପାଠକଲେ ପାଠକ ଯେପରି ଦୁଃଖରେ ଅଧୀର ହୋଇଯାଏ, ଭାରତ ହରିବଂଶର ଲକ୍ଷ୍ମଣକୁମାର ପ୍ରସଙ୍ଗ ପାଠକଲେ ପାଠକ ଦୁଃଖପାଏ ମାତ୍ର ଅଧୀର ହୋଇଯାଇପାରେ ନାହିଁ ।

(ଙ) **ସତ୍ୟ ଆମ୍ବ କଥା :** ସାରଳା ମହାଭାରତର ବନପର୍ବରେ ସତ୍ୟ ଆମ୍ବ କଥାର ଉଲ୍ଲେଖ ରହିଛି । ମହାଭାରତର ସତ୍ୟ ଆମ୍ବ କଥାଟି ସାମାନ୍ୟ ପରିବର୍ତ୍ତିତ ହୋଇ ଭାରତ ହରିବଂଶରେ ରୂପାୟିତ ହୋଇଛି । ମହାଭାରତର ବନପର୍ବରେ ପଶାଖେଳରେ ପରାସ୍ତ ହୋଇ ପାଣ୍ଡବମାନେ ବନବାସ କରିବାପରେ ସେମାନଙ୍କର ତଥ୍ୟ ଜାଣିବାପାଇଁ ଦୁର୍ଯ୍ୟୋଧନ ଚାରମାନଙ୍କୁ ବିଭିନ୍ନ ଦିଗକୁ ପଠାଇଅଛି । ଗୁପ୍ତଚରମାନଙ୍କୁ କହିଦିଆଯାଇଛି ଯେ ପାଣ୍ଡବମାନଙ୍କର ସନ୍ଧାନ ପାଇଲେ ସେମାନେ ଅଦିନରେ ଅର୍ଥାତ୍ ଆଶ୍ୱିନ ମାସରେ ସେମାନଙ୍କୁ ଆମ୍ବଫଳଟିଏ ମାଗିବେ । ଯଦି ସେମାନେ ଦେଇ ନପାରନ୍ତି ତେବେ ସତ୍ୟ ଭଗ୍ନ ହେବେ । ପରନ୍ତୁ ଯଦି ଦେଇପାରନ୍ତି ତେବେ ସେମାନେ ପାଣ୍ଡବ ବୋଲି ଜଣାପଡ଼ିଯିବେ ଓ ସେମାନଙ୍କୁ ବିନାଶ କରିବାପାଇଁ ସୁଯୋଗ ମିଳିଯିବ ।

ଗୌରମୋକ୍ଷ ନାମକ ଜଣେ ଗୁପ୍ତଚର ଉତ୍ତର ଦିଗକୁ ପାଣ୍ଡବମାନଙ୍କୁ ଖୋଜିବାକୁ ଯାଇ ଅସ୍କନ୍ଦବନରେ ପ୍ରବେଶ କରିଥିଲା । ସେଠାରେ ପାଣ୍ଡବମାନେ ଥିବାର ସନ୍ଦେହ କରି ସେମାନଙ୍କୁ ତ୍ରିବାର ସତ୍ୟ କରାଇ ନେଇଥିଲା । ପାଣ୍ଡବମାନେ ସତ୍ୟ କରିବାପରେ ସେମାନଙ୍କୁ ଆହାର ପାଇଁ ମାଗିଥିଲା ଚୂତଫଳଟିଏ । ମାତ୍ର ଅଦିନରେ ପାଣ୍ଡବମାନେ ଚୂତଫଳ ଆଣିବେ ବା କେଉଁଠାରୁ ? ଚୂତଫଳ ଦେଇ ନପାରିଲେ ପୁଣି ସତ୍ୟଭଗ୍ନ ହେବେ । ବିପଦରେ ପଡ଼ି ପାଣ୍ଡବମାନେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରିଥିଲେ । ଶ୍ରୀକୃଷ୍ଣ ସେମାନଙ୍କ ନିକଟରେ ପ୍ରବେଶ କରି ଗୋଟିଏ ଆମ୍ବମଞ୍ଜିକୁ ଭୂମିରେ ପୋତିଦେଇ କହିଲେ ସମସ୍ତେ ଯଦି ନିଜ ନିଜ ଜୀବନର ଗୋଟିଏ ଗୋଟିଏ ଗୋପନୀୟ ସତ୍ୟକୁ ସର୍ବସମକ୍ଷରେ ପ୍ରକାଶ କରିବେ, ତେବେ ଏହି ଚୂତମଞ୍ଜିଟି ବୃକ୍ଷରେ ପରିଣତ ହୋଇ ସେଥିରେ ଆମ୍ବ ଫଳିଯିବ । ପାଣ୍ଡବମାନେ ନିଜ ନିଜ ଜୀବନର ଗୋପନୀୟ କଥାକୁ ସର୍ବ ସମକ୍ଷରେ ପ୍ରକାଶ କରିବାରୁ ଚୂତବୃକ୍ଷ ଯଥାକ୍ରମେ ଅଙ୍କୁରିତ ହେବାଠାରୁ ବୃକ୍ଷରେ ପରିଣତ ହୋଇ ସେଥିରେ ଆମ୍ବଫଳ ମଧ୍ୟ ହୋଇଗଲା । ମାତ୍ର ଦ୍ରୌପଦୀ ନିଜ ଜୀବନର ଗୋପନୀୟ ସତ୍ୟକୁ ପ୍ରକାଶ ନକରିବାରୁ ଆମ୍ବଫଳ ପାଚି ଆହାର ଉପଯୋଗୀ ହୋଇପାରିଲା ନାହିଁ । ଏହା ଜାଣିପାରି ଶ୍ରୀକୃଷ୍ଣ ଦ୍ରୌପଦୀଙ୍କ ଜୀବନର ଗୋପୀନୟ ସତ୍ୟକଥାକୁ ପ୍ରକାଶ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଦ୍ରୌପଦୀ ପରିଶେଷରେ କହିଲେ–

ଯଦ୍ୟପି ମୋହର ପତି ଛନ୍ତି ପାଞ୍ଚଜଣ
କର୍ଣ୍ଣ ସୌନ୍ଦର୍ଯ୍ୟରେ ମୋର ଭୁଲିଯାଏ ମନ ।
(ସାରଳା ମହାଭାରତ : ବନପର୍ବ)

ସାରଳା ମହାଭାରତରେ ସତ୍ୟ ଆମ୍ବକଥା ଉଲ୍ଲିଖିତ ହୋଇଥିଲେ ମଧ୍ୟ ପାଣ୍ଡବମାନଙ୍କୁ ସତ୍ୟ କହିବାକୁ ଶ୍ରୀକୃଷ୍ଣ ପ୍ରବର୍ତ୍ତାଇଛନ୍ତି । ପାଣ୍ଡବମାନଙ୍କର ସତ୍ୟପାଠ ତଥା ଦ୍ରୌପଦୀ କର୍ଣ୍ଣଙ୍କୁ ଭଲପାଉଥିବାର ଗୋପୀନୟ ସତ୍ୟ ଭାରତ ହରିବଂଶରେ ନାହିଁ ।

ଭାରତ ହରିବଂଶ ଅନୁଯାୟୀ ପାଣ୍ଡବମାନଙ୍କୁ ଠାବକରିବା ପାଇଁ ପୁରଞ୍ଜନ ପଣ୍ଡାର ପୁଅ ସୁରଞ୍ଜନ ପଣ୍ଡାକୁ ଦୁର୍ଯ୍ୟୋଧନ ଆଜ୍ଞାଦେଇଛନ୍ତି । କହିଛନ୍ତି ଯେ ଯଦି ପାଣ୍ଡବମାନଙ୍କର ସନ୍ଦେଶ ମିଳିଯିବ ତେବେ ସେମାନେ ପୁଣିଥରେ ବାରବର୍ଷ ପାଇଁ ବନବାସ ଯିବେ । ସେମାନଙ୍କ ସନ୍ଦେଶ ଜାଣିବାପାଇଁ ସେମାନଙ୍କୁ ଅସମୟରେ ଆମ୍ବଫଳ ମାଗିବାକୁ ନିର୍ଦ୍ଦେଶ ଦେଇଛନ୍ତି । ଯଦି ସେମାନେ ଆମ୍ବଫଳ ଦେଇଦିଅନ୍ତି ତେବେ ସେମାନେ ପାଣ୍ଡବ ବୋଲି ଜଣା ପଡ଼ିବେ । ସୁରଞ୍ଜନ ପଣ୍ଡା ପାଣ୍ଡବମାନଙ୍କୁ ଠାବ କରିବାପରେ ପାଣ୍ଡବମାନେ ବ୍ରାହ୍ମଣଙ୍କୁ ଭୋଜନରେ ଆପ୍ୟାୟିତ କରିବାକୁ ପ୍ରସ୍ତୁତ ହୋଇପଡ଼ିଲେ । ମାତ୍ର ବ୍ରାହ୍ମଣ କହିଲେ-

ବ୍ରାହ୍ମଣ ବୋଇଲା ମୁଂ ଅନ୍ୟଫଳ ନ ଭକ୍ଷଇ
ଆମ୍ବଫଳ ଦିଲେ କିଛି ଆହାର କରିବଇଂ ।

ଅସମୟରେ ଆମ୍ବଫଳ ଦେବା ଅସମ୍ଭବ ଜାଣି ସଙ୍କଟରୁ ଉଦ୍ଧାର କରିବା ପାଇଁ ଯୁଧିଷ୍ଠିର ନାରାୟଣଙ୍କୁ ସ୍ମରଣ କରିଛନ୍ତି । ଗୋବିନ୍ଦ ସେମାନଙ୍କ ନିକଟରେ ପ୍ରବେଶ କରି କହିଲେ-

ଗୋବିନ୍ଦ ବୋଇଲେ ଯେବେ ସତ୍ୟାଚାରେ ବ୍ରତୀ
ତେବେ ସେ ଯେହିକ୍ଷଣି ଉଠିବ ଚୁତବୃକ୍ଷ
ଫଳ ଧରି ପାଚିବ ଭକ୍ଷିବ ଯେହୁ ବିପ୍ର ।
(ଭାରତ ହରିବଂଶ : ପ୍ରସଙ୍ଗ : ସତ୍ୟ ଆମ୍ବକଥା)

ଯୁଧିଷ୍ଠିର, ଭୀମ, ଅର୍ଜୁନ, ନକୁଳ, ସହଦେବ ଇତ୍ୟାଦି ସତ୍ୟ କରିଛନ୍ତି ।

ଯୁଧିଷ୍ଠି ବିକୋଦର ନକୁଳ ସହଦେବ ଫାଲଗୁନି
ସତ୍ୟସତ୍ୟ ବୋଲି ମାଇଲେକ ଭୂମି
ଉଠିଲା ଚୁତବୃକ୍ଷ ପଲ୍ଲବି ବଉଳିଲା
ଫଳଧରି ପାଚି ଭୂମିରେ ପଡ଼ିଲା ।
(ଭାରତ ହରିବଂଶ : ପ୍ରସଙ୍ଗ : ସତ୍ୟ ଆମ୍ବକଥା)

ସବୁ କଥାକୁ ବିସ୍ତୃତ ଭାବରେ ପ୍ରକାଶ କରିବାପାଇଁ ଭାରତ ହରିବଂଶରେ ସୁଯୋଗର ଅଭାବ ରହିଥିବାରୁ ସାରଳା ଦାସ ଏହି ଗ୍ରନ୍ଥକୁ ଯଥା ସମ୍ଭବ ସଂକ୍ଷିପ୍ତ କରିବାକୁ ଚେଷ୍ଟା କରିଛନ୍ତି । ସେଇଥିପାଇଁ ବୋଧହୁଏ ଦ୍ରୌପଦୀ ଓ କର୍ଣ୍ଣଙ୍କ ପ୍ରସଙ୍ଗକୁ ଏଠାରୁ ବାଦ ଦିଆଯାଇଛି ।

(ଚ) **କୋକୁଆ ଭୟ :** ସାରଳା ମହାଭାରତର ମୂଷଳୀ ପର୍ବରେ ଯଦୁବଂଶ ଧ୍ୱଂସ ହେବା ସମୟରେ ଆମେ କୋକୁଆ ନାମକ ଅଶୀରୀରି ସମ୍ପର୍କରେ ସୂଚନା ପାଇଥାଉ । କୋକୁଆକୁ କେହି ଦେଖି ନଥିଲେ ମଧ୍ୟ ସାରଳାଦାସ ଭୟଙ୍କର କରି ତାର ରୂପବର୍ଣ୍ଣନା କରିଛନ୍ତି । ଏକ ଅଦୃଶ୍ୟ ଶକ୍ତି ହୋଇଥିବାରୁ କୋକୁଆକୁ ଆମେ ଭୂତବୋଲି ମଧ୍ୟ କହିପାରିବା । ସାରଳା ମହାଭାରତରେ କୋକୁଆର ରୂପ ବର୍ଣ୍ଣନା କରି କୁହାଯାଇଛି-

ସେ କୋକୁଆ ଦେହ କୃଷ୍ଣ ପିଙ୍ଗଳ ବରନ
ସର୍ବାଙ୍ଗ ଶରୀରେ ଶିରା ଦିଶେ ଅପର୍ଚ୍ଛନ
ଯୋଜନେ ଲମ୍ବ ତା ଭୁଜ ସାତଗୋଟା ଆକ୍ଷି
ବ୍ରହ୍ମାଣ୍ଡ ବ୍ୟାପି ଉଡ଼ଇ ଅଛି ନବ ପକ୍ଷୀ
ଯୁଣେ ଲମ୍ବ ତୁଣ୍ଡେ ତାର ପାଞ୍ଚଯୁଣ ଗର୍ଭ
ସ୍ତ୍ରୀ ପୁରୁଷ ଯେ ପଡ଼ଇ ଗିଳଇ ସେ ସର୍ବ ।
(ସାରଳା ମହାଭାରତ : ମୂଷଳୀ ପର୍ବ)

ସାରଳା ଦାସଙ୍କର ଏହି କୋକୁଆ ଅନ୍ୟ କୌଣସି କବିଙ୍କର ରଚନାରେ ଦେଖିବାକୁ ମିଳେନାହିଁ । ସୁରେନ୍ଦ୍ର ମହାନ୍ତି ଓଡ଼ିଆ ସାହିତ୍ୟର ଆଦିପର୍ବ (ପୃଷ୍ଠା ୨୧୩)ରେ ସଂସ୍କୃତ ମହାଭାରତର କରାଳ ଛାୟା ସାରଳାଙ୍କ ମହାଭାରତରେ କୋକୁଆ ଭୟରେ ପରିଣତ ହୋଇଛି ବୋଲି ଅନୁମାନ କରିଛନ୍ତି । ଭାରତ ହରିବଂଶରେ ଆମେ ସେହି କୋକୁଆକୁ ପୁଣିଥରେ ଭେଟିଥାଉ । ଏହି କୋକୁଆ ଯଦୁବଂଶ ଧ୍ୱଂସ ସମୟରେ ଯାଦବମାନଙ୍କୁ ଭୟ ପ୍ରଦର୍ଶନ କରିନଥିଲା । ବରଂ ଏହା ଶ୍ରୀକୃଷ୍ଣ ଓ ରାଧିକାଙ୍କର ମିଳନରେ ସହାୟକ ହୋଇ ଚନ୍ଦ୍ରସେଣାର ମାଆକୁ ଭୟଭୀତ କରାଇଥିଲା ।

ଥରେ ଗ୍ରାମର ପ୍ରାନ୍ତ ଭାଗରେ ଘର କରିଥିବା ଚନ୍ଦ୍ରସେଣାର ଘରେ ଯାଇ ଶ୍ରୀକୃଷ୍ଣ ପହଞ୍ଚିଗଲେ । ଦେଖିଲେ ଦୁଆର ଜଗି ବୁଢ଼ୀ ବସି ରହିଛି । ଶ୍ରୀକୃଷ୍ଣ କହିଲେ, ଆଇ ଗୋ ! ମୋତେ ଦ୍ୱାର ଛାଡ଼ । କୋକୁଆ ଗୋଡ଼ାଇଛି । ମୁଁ ଘର ଭିତରକୁ ଯିବି । କୋକୁଆ କାହିଁ ବୋଲି ବୁଢ଼ୀ ପଚାରିବାରୁ ହେଇ ଦେଖ ଠିଆ ହୋଇଛି ବୋଲି ବୁଢ଼ୀକୁ ଦେଖାଇଦେଲେ । ବୁଢ଼ୀ ଦେଖିଲା–

ଚାହିଂଣ ବୁଢ଼ୀ ଦେଖିଲା ଭୟଙ୍କର ରୂପ
ଝାଡୁଅଛି ଡେଣା ବିସ୍ତାରି ଅଛି ଥୁଣ୍ଟ
ଆଖି ମିଟି ମିଟି କରି କରଇ ଗର୍ଜନ
ବୁଢ଼ୀକି ଦିଶିଲା କୋକୁଆ ଦୁତୀୟ ହାଦେ ଯମ

(ଭାରତ ହରିବଂଶ: ପ୍ରସଙ୍ଗ : ଶ୍ରୀକୃଷ୍ଣଙ୍କର କୋକୁଆ ଭୟ ପ୍ରଦର୍ଶନ ଓ ରାଧାଙ୍କ ସହ କେଳି)

କୋକୁଆ ସମ୍ପର୍କରେ ମହାଭାରତ ଓ ଭାରତ ହରିବଂଶର ପ୍ରସଙ୍ଗ ଅଲଗା ଅଲଗା ହୋଇପାରିଥାଏ । ମାତ୍ର ଭୟ ସୃଷ୍ଟି କରିବାପାଇଁ ଏକ ଭୟଙ୍କର ରୂପକୁ କବି ଉଭୟ ମହାଭାରତ ଓ ଭାରତ ହରିବଂଶରେ ସ୍ଥାନିତ କରିଥିବାରୁ ଉଭୟ ଗ୍ରନ୍ଥର ଲେଖକଙ୍କୁ ଏକ ବୋଲି କହିବାରେ କୌଣସି ଅସମୀଚୀନତା ରହିବ ନାହିଁ ।

(ଛ) **ଖନିକାର ଜନ୍ମବୃତାନ୍ତ :** ଖନିକାର ଜନ୍ମ ପ୍ରସଙ୍ଗଟି କୃଷ୍ଣ ଏବଂ ରାଧାଙ୍କର ରାସକ୍ରୀଡ଼ା ସହିତ ସମ୍ବନ୍ଧାନ୍ୱିତ । ମହାଭାରତରେ ଭାଗବତ ବିଷୟକ ରାଧା ଓ କୃଷ୍ଣଙ୍କର ରାସଲୀଳା ନଥିବା ଯୋଗୁଁ ଖନିକାରର ଜନ୍ମ ସମ୍ପର୍କରେ ବିସ୍ତୃତ ବିବରଣୀ ଆମେ ସେଥିରେ ପାଇନଥାଉ । ମାତ୍ର ମହାଭାରତରେ ଖନିକାରର ଜନ୍ମ ସଂପର୍କରେ ଯେଉଁ ସୂଚନା ଦିଆଯାଇଛି ତାହାକୁ ଆଧାର କରି ଭାରତ ହରିବଂଶରେ ଆମେ ତାହାର ମୂଳ ଖୋଜି ପାଇ ଯାଇପାରିବା ।

ବିଦୁର ଏକଦା ରାତ୍ର ଭ୍ରମଣ କରୁଥିବା ସମୟରେ ଦେଖିବାକୁ ପାଇଲେ ଯେ ଜଣେ ପୁରୁଷ କଟିରେ ଚିରକୁଟି ବସ୍ତ୍ର ଖଣ୍ଡିଏ ପିନ୍ଧି ଗଳିଗଳି ଘୂରି ବୁଲୁଛି । ତାର ଆଖିରେ ଅଂଜନ ରହିଛି ମାତ୍ର ମଥାରେ କେଶ ନାହିଁ । ବିଦୁରଙ୍କୁ ଦେଖି ସେ ଲୁଚି ପଡ଼ିବାରୁ ବିଦୁର ଧାଇଁଯାଇ ହାତକୁ ଧରିପକାଇଲେ । ବିଦୁର ତାହାକୁ ପରିଚୟ ପଚାରିବାରୁ ଖନିକାର ନିଜର ପିରଚୟ ଦେଇ କହିଲା–

ମୁହିଂ ଟସକର ଯେ ଅଟଇ ଯୁଗତେ
ବିଦୁର ବୋଇଲେ ଟସକର ଜାତିରେ କେମନ୍ତେ
ମୁଂ ଅଟଇ ହାଦେ ଚଉର୍ଯ୍ୟ ହୀନଜାତି
ଘରବାସ ନାହିଂ ମୋର ଚଉର୍ଯ କର୍ମେଣ ବ୍ରତି ।

(ସାରଳା ମହାଭାରତ : ଆଦିପର୍ବ)

ବିଦୁର ଟସକରର ସହାୟତା ନେଇ ସୁର ନଦୀଠାରୁ ଜଉଘର ପର୍ଯ୍ୟନ୍ତ ବିବର ଖୋଳାଇଦେଲେ । ନାରାୟଣ ସେଠାରେ ପ୍ରବେଶ କରି ଖନିକାରକୁ ଦେଖି ସନ୍ତୋଷ ପ୍ରକାଶ କରିଥିଲେ । ନାରାୟଣ କହିଲେ–

ନାରାୟଣ ବୋଇଲେ ସେ ଖଲ୍ୟକାର ଚଉର୍ଯ୍ୟ
ସରହ ସୁନ୍ଦରୀ ପୁତ୍ର ସେ ଆମ୍ଭର ଆତ୍ମଜ
ଆମ୍ଭେ ଶିଖାଇଲୁ ତାହାକୁ ଚଉର୍ଯ୍ୟପଣ ବିଦ୍ୟା
ବିମ୍ବର ଖୋଳି ପାରଇ ସେ ବଚନ ସଂସିଦ୍ଧା ।

(ସାରଳା ମହାଭାରତ : ଆଦିପର୍ବ)

ସାରଳା ମହାଭାରତରେ ଶ୍ରୀକୃଷ୍ଣ ଯେଉଁ ଖନିକାର ବା ଖଲ୍ୟକାରଙ୍କୁ ପୁତ୍ର ବୋଲି ସ୍ୱୀକାର କରିଛନ୍ତି ତାହାଙ୍କୁ ସେ ସରହ ସୁନ୍ଦରୀର ପୁତ୍ର ରୂପେ ପରିଚୟ ପ୍ରଦାନ କରିଛନ୍ତି । ସରହ ସୁନ୍ଦରୀ ରାଧିକାଙ୍କର ସଖୀ । ମହାଭାରତର ଏଇ ପରିଚୟକୁ ନେଇ ଆମେ ଭାରତ ହରିବଂଶ ନିକଟକୁ ଚାଲିଯିବା । ଖଲ୍ୟକାରର ସଂପୂର୍ଣ୍ଣ ଜନ୍ମବିବରଣୀ ଭାରତ ହରିବଂଶରେ ଉପଲବ୍ଧ ହୋଇ ପାରିବ ।

ଭାରତ ହରିବଂଶ ଅନୁସାରେ ଶ୍ରୀକୃଷ୍ଣଙ୍କର ମୁରଲୀ ରାଧିକା ରାଧିକା ବୋଲି ଡାକ ଦେବାରୁ ରାଧିକା ମଦନରେ ଭୋଳ ହୋଇ ଆକୁଳ ହୋଇପଡ଼ିଲେ । ଦୁତିକା ଆଶ୍ୱାସନା ଦେଇ କହିଲେ, ପ୍ରାଣସହୀ ! କାହିଁକି ଆକୁଳ ହେଉଛ ? ଆସ ଆମେ ଦୁଇଜଣ ସାଙ୍ଗରେ ଯାଇ ଭାବଗ୍ରାହୀଙ୍କୁ ପ୍ରବୋଧି କହିବା । ରାଧିକା କହିଲେ, ସେତ ମୋ ନିକଟକୁ ଆସିଥିଲେ । ନାସ୍ତି କଲି ବୋଲି ସେ ବାହୁଡ଼ିଗଲେ । ମୁଁ ଗୋଟିଏ ବଡ଼ ଅପରାଧ କରିଛି, ତେଣୁ ତୋତେ ଅନୁରୋଧ କରୁଛି ତୁ ତାଙ୍କ ନିକଟକୁ ଯାଆ । ମୋ କଥା ବୁଝାଇ କହିଲେ ଯଦି ମୋତେ ସେ ଦୟାକରିବେ, ତେବେ ତୁ ଆସିବୁ, ଆଉ ମୁଁ ତୋ ସହିତ ଯିବି । ଦୂତିକାର ନାମ ଦିଆଯାଇନଥିଲେ ମଧ୍ୟ ତାକୁ ସରହ ସୁନ୍ଦରୀ ବୋଲି ଧରି ନିଆଯାଇପାରେ । କାରଣ ଠାଏ ଲେଖାଯାଇଛି, ଯେମନ୍ତେ କହି ସୁନ୍ଦରୀ କୃଷ୍ଣଙ୍କୁ କୋଳ କଲା । ଏହି ସୁନ୍ଦରୀରୁ ହିଁ ଆମେ ଦୁତିକାକୁ ସରହ ସୁନ୍ଦରୀ ବୋଲି ବୁଝିବାକୁ ହେବ ।

ଶୁଭ ଅନୁକୂଳରେ ଦୁତିକା ଚଳିଯାଇ କୁଂଜବନରେ କଦମ୍ବ ମୂଳରେ ବନମାଳିଙ୍କୁ ଭେଟି ତାଙ୍କ ପାଦତଳେ ଶୋଇପଡ଼ିଲା । ଶ୍ରୀକୃଷ୍ଣ କହିଲେ ସଖୀ ! ଉଠ ଉଠ । ଅବଳା ନାରୀ ହୋଇ ଏ ଘୋର ନିଶିରେ କାହିଁକି ଆସିଲୁ ? ଦୁତିକା କହିଲେ, ତୋ ମୁରଲୀ ଧ୍ୱନି ଶୁଣି ରାଧିକା ମୋତେ ତୋ ପାଖକୁ ପେଶିଲେ । ମୋର ରାଣ ରହିଲା, ତୁ ଏଥର ବୈରାଗ୍ୟ ଛାଡ଼ିଦେ ।

ଯେମନ୍ତେ କହି ସୁନ୍ଦରୀ କୃଷ୍ଣଙ୍କୁ କୋଳକଲା
ମଦନେ ଅସାଷ୍ଟମ ହୋଇଲେ ନନ୍ଦବଳା
ଭୁଜରେଂ ଭୁଜଭିଡ଼ି କଲେକ ବିବସନ
ଦେହକୁ ଦେହ ଦେଇ କଲେକ ଆଲିଙ୍ଗନ
ମୁଖକୁ ମୁଖ ଦେଇ ପାଦକୁ ପାଦଛନ୍ଦି
ପାଟସୁତା ଗଳିତେ ମଧ୍ୟରେ ନାହିଂ ସନ୍ଧି ।

(ଭାରତ ହରିବଂଶ : ପ୍ରସଙ୍ଗ : ଶ୍ରୀକୃଷ୍ଣଙ୍କ ରାଧାପୁରେ ପ୍ରବେଶ)

ଏହାଥିଲା ଶ୍ରୀକୃଷ୍ଣଙ୍କର ପ୍ରଥମ ଶୃଙ୍ଗାର । ରାଧିକାଙ୍କ ସହିତ ଶୃଙ୍ଗାର କରିବାର କଥା, ମାତ୍ର କାମରେ ଆରତ ହୋଇ ଦୁତିକାଙ୍କ ସହିତ ଶୃଙ୍ଗାର କରି ପକାଇଲେ । ଶ୍ରୀକୃଷ୍ଣଙ୍କ ବୀର୍ଯ୍ୟରୁ ଦୁତିକା ଗର୍ଭରୁ ସେହିଠାରେ ହିଁ ପୁତ୍ରଟିଏ ଜନ୍ମ ହୋଇଥିଲା । ସେହି ହେଉଛି ଖଣତ୍କାର ବା ଖନିକାର ବା ଖଲ୍ୟକାର । ଭାରତ ହରିବଂଶରେ ଅଛି-

ଖସିଲାକ ରେତ ସରିଲା ଶୃଙ୍ଗାର
ଦୂତିକା ଗର୍ଭରୁ ଜାତ ହୋଇଲାକ କୁମର
କାମଦେବ ସମାନେ ବିରାଜେ ତାର ବପୁ
ଦେଖିଣ ଆଶ୍ଚର୍ଯ୍ୟ ଯେ ଜଗତ ଆଧୀପୁ
ବୋଇଲେ ଚୋର ରତିରେ ଜନ୍ମ ତୁ ହୋଇଲୁ
ସବୁଦିନେ ଚୋରପଣ ତୁହି ଆଚରିବୁ
ଶୁଣିଣ ଆନନ୍ଦ ଯେ ହୋଇଲା ଖଣତ୍କାର
ଯିବ ବୋଲି ଦୂତିକା ହୋଇଲା ତରତର ।

(ଭାରତ ହରିବଂଶ : ପ୍ରସଙ୍ଗ : ଶ୍ରୀକୃଷ୍ଣଙ୍କ ରାଧାପୁରେ ପ୍ରବେଶ)

(୯) **ଦ୍ରୋଣଙ୍କର ବିମାତାଙ୍କ ସହ ଦୈହିକ ସଂପର୍କ :** ଯେଉଁ ଦ୍ରୋଣଙ୍କୁ ଆଚାର୍ଯ୍ୟ ବୋଲି କହି ଆମେ ଗୁରୁର ସମ୍ମାନ ଦେଇ ଆସୁଛୁ ସେହି ଦ୍ରୋଣ ଯେ ତାଙ୍କର ବିମାତାଙ୍କ ସହ ଶାରୀରିକ ସମ୍ପର୍କ ରକ୍ଷା କରିଥିଲେ, ଏହା ଜାଣିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ । ସାରଳା

ମହାଭାରତରେ ଦ୍ରୋଣଙ୍କର ଚରିତ୍ରକୁ ଏହିପରି ଭାବରେ ଦେଖାଇ ଦିଆଯାଇଥିବା ବେଳେ ଭାରତ ହରିବଂଶରେ ଏହି ପ୍ରସଙ୍ଗକୁ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ଭାରତ ଯୁଦ୍ଧରେ ମୁଣ୍ଡକାଟ ହୋଇ ଦ୍ରୋଣ ମୃତ୍ୟୁ ବରଣ କରିଥିଲେ । ଏପରି ଅପମାନ ସୂଚକ ମୃତ୍ୟୁ ଶାପ କାରଣରୁ ହୋଇଥିଲା ବୋଲି ସାରଳା ମହାଭାରତରେ ବର୍ଣ୍ଣନା କରାଯାଇଛି ।

ଭାରଦ୍ୱାଦଶ ବୋଲି ଜଣେ ଋଷିଥିଲେ । ମନ୍ଦର ଋଷିଙ୍କର ପତ୍ନୀ ହରିତାଙ୍କର କନ୍ୟା ସୁରଜିତାଙ୍କୁ ସେ ବିବାହ କରିଥିଲେ । ଦ୍ରୋଣଙ୍କୁ ଜନ୍ମଦାନ ଦେଇ କର୍ମ ବିପାକରେ ସେ ମୃତ୍ୟୁ ବରଣ କରିଥିଲେ । କଳପି ରାଜାଙ୍କର ଝିଅ ଅନନ୍ତାଙ୍କୁ ଭାରଦ୍ୱାଦଶ ପୁଣିଥରେ ବିବାହ କରିଥିଲେ । ଅନନ୍ତା ରଜୋବତୀ ହେବାପରେ ମାତା ଓ ପୁତ୍ରଙ୍କୁ ଛାଡ଼ି ଭାରଦ୍ୱାଦଶ ପଞ୍ଚୁତୀର୍ଥକୁ ଭ୍ରମଣ କରିବାକୁ ବାହାରିଥିଲେ । ଯୁବକ ଦ୍ରୋଣ ଏବଂ ମାତା ଅନନ୍ତା ଏକ ସଙ୍ଗରେ ରହୁଥିବା ଯୋଗୁଁ ଅନନ୍ତାଙ୍କ ହୃଦୟରେ କାମବାସନା ଜାଗରିତ ହେଲା । ଦ୍ରୋଣ ବିମାତାଙ୍କ ସହିତ ଶୃଙ୍ଗାର କରିବାରୁ ଅନନ୍ତା ଗର୍ଭବତୀ ହୋଇଥିଲେ ।

କଳପି ରାଜା ସୁତା ଅନନ୍ତା କାମାକାଂକ୍ଷୀ
ପୁତ୍ରକଇଂ ଦେଖି ସେ ନୁଆରିଲା ମୂର୍ଚ୍ଛି
ଦ୍ରୋଣଇଂ ହୋଇଅଛି ଯୁବା ଯେ ବୟସ
କାମ ସଂହାରି ନୁଆରି କରିଲା ପରିହାସ
ମାତାର ଶୟନ ପୁରକୁ ଦ୍ରୋଣ କଲେ ବିଜେ
କାମବତୀ ସ୍ତିରୀ ଯେ ଅନଙ୍ଗ ରୂପ ସାଜେ
ମାତା ପୁତ୍ରଙ୍କର ହୋଇଲାକ ରତି
ସେ ଅନନ୍ତାକନ୍ୟା ଯେ ହୋଇଲା ଗର୍ଭବତୀ ।
(ସାରଳା ମହାଭାରତ : କର୍ଣ୍ଣପର୍ବ)

ଋଷି ଭାରଦ୍ୱାଦଶ ତୀର୍ଥାଟନରୁ ଫେରି ଗର୍ଭବତୀ ପତ୍ନୀକୁ ଦେଖି ସବୁକଥା ଜାଣିପାରିଲେ । କୋପଭର ହୋଇ ଦ୍ରୋଣଙ୍କୁ କହିଲେ-

କୋପେ ବୋଇଲେ ରେ ତୁହି ମୋହର ପୁତ୍ରଦ୍ରୋଣ
ପୁତ୍ର ହୋଇ ପାତେକ ଅର୍ଜିଲୁ ମାତୃ ଯେ ହରଣ ।

ଭାରଦ୍ୱାଦଶ ଦ୍ରୋଣଙ୍କୁ ଅଭିଶାପ ଦେଇ କହିଲେ-

ଗୃହବାସ ଭାଙ୍ଗିଲୁ ମୋହର ଯେଡ଼େକ କଷ୍ଟ
ଜନ୍ମେ ଜନ୍ମେ ହୋଉ ଯେ ପତ୍ନୀ ତୋହର ଭ୍ରଷ୍ଟ ।

ଦ୍ରୋଣ ନିଜର ଭୁଲ ସ୍ୱୀକାର କରି ଶାପରୁ ମୁକ୍ତି ପାଇବାର ଉପାୟ ପଚାରିଲେ । ଭାରଦ୍ୱାଦଶ କହିଲେ, ତୁ ତପୋଧନ ବେଶ ଛାଡ଼ି ଏବେ କ୍ଷତ୍ରିବୃତ୍ତି ଅବଲମ୍ବନ କର । ଭାରତ ଯୁଦ୍ଧରେ ରଣକରି ଶିରଛେଦ ହଅ । ତେବେ ତୁ ମାତା ହରଣ ଦୋଷରୁ ପାରି ହୋଇପାରିବୁ ।

ଭାରତ ହରିବଂଶରେ ଦ୍ରୋଣଙ୍କର କଥାକୁ ଅନୁରୂପ ଭାବରେ ବର୍ଣ୍ଣନା କରାଯାଇଛି । ପାର୍ବତୀ ସଦାଶିବଙ୍କୁ ପଚାରିଲେ ଯେ ବିନା ସମରରେ ଦ୍ରୋଣଙ୍କର କନ୍ଧରୁ ମୁଣ୍ଡ ଛିଣ୍ଡି ପଡ଼ିଲା । ତାଙ୍କୁ କିଏ ଶାପ୍ୟ ଦେଇଥିଲା ? ଦ୍ରୋଣଙ୍କର କାହାଣୀ ବର୍ଣ୍ଣନା କରି ସଦାଶିବ କହିଲେ, ଭରଦ୍ୱାଜ ଋଷିଙ୍କର ଦୁଇଗୋଟି ଭାରିଜା । ପ୍ରଥମ ବିବାହୀ ନିକଟରୁ ଦ୍ରୋଣ ଜନ୍ମଗ୍ରହଣ କରିଥିଲେ । ଦ୍ୱିତୀୟ ବିବାହୀଟି ଷୋଳସା ଯୁବତୀ ଥିଲା । ଉଭୟଙ୍କୁ ଏକତ୍ରଛାଡ଼ି ମୁନି ତପ କରିବାକୁ ଗଲା ଉତ୍ତାରେ ଦ୍ରୋଣ ବିମାତାଙ୍କ ସହିତ ରତି କରିଥିଲେ । କାଳେ ଋଷିଙ୍କର ଦ୍ୱିତୀୟା ପତ୍ନୀ ଦ୍ରୋଣଙ୍କ ଔରସରେ ଗର୍ଭଧାରଣ କରିଥିଲେ ।

ଭରଦ୍ୱାଜ ଋଷିଙ୍କର ଦୁତିୟ ଭାରିଜା
ପ୍ରଥମ ବିବାହୀର ଦ୍ରୋଣେ ଅଟନ୍ତି ତନୁଜା
ଦୁତିୟ ବିବାହୀ ଅଟନ୍ତି ଷୋଳସା ଯୁବତି
ତପକୁ ଗଲା ମୁନି ଦ୍ରୋଣ କଲା ରତି
(ଭାରତ ହରିବଂଶ : ପ୍ରସଙ୍ଗ : ଦ୍ରୋଣଙ୍କର ନିଧନ)

ଭରଦ୍ୱାଜ ତପରୁ ଫେରି ଯୋଗବଳରେ ସବୁ ଜାଣିପାରିଲେ ଓ ଦ୍ରୋଣଙ୍କୁ ସାପ୍ୟ ପ୍ରଦାନ କଲେ ।

ଯୋଗରେ ଜାଣିଲେ ହରିଲାକ ଦ୍ରୋଣ
ମାତାଙ୍କୁ ହରିଲୁରେ ପାପିଷ୍ଠ ଅଜ୍ଞାନ
ମୋହର ସାପ୍ୟଘେନି ସମୟେ ଥାଅ ବ୍ରତି
ଭାରତ ସମରେ ତୁ ହୋଇବୁ ସେନାପତି ।
ବିନା ସମରେ କାଟିବେ ତୋର ସିର
ଏମନ୍ତ ସାପ୍ୟ ତହିଂ ଦିଲେ ମୁନିବର ।
(ଭାରତ ହରିବଂଶ : ପ୍ରସଙ୍ଗ: ଦ୍ରୋଣଙ୍କର ନିଧନ)

ଭଗଦତ୍ତ ନାମରେ ଏକ ଚରିତ୍ର ଉଭୟ ସାରଳା ମହାଭାରତରେ ଦେଖିବାକୁ ମିଳେ । ଭଗଦତ୍ତ ଅତ୍ୟନ୍ତ ଯୋଦ୍ଧା ଥିଲେ, ଏପରିକି ଭୀଷ୍ମଙ୍କ ସମ ଯୋଦ୍ଧା ଥିଲେ । ସାରଳା ମହାଭାରତରେ ଭୀଷ୍ମଙ୍କ ମୃତ୍ୟୁପରେ ଭଗଦତ୍ତ ପାଣ୍ଡବମାନଙ୍କ ସହିତ ଘୋରଯୁଦ୍ଧ କରିଛି । ଭାରତ ହରିବଂଶରେ ଦ୍ରୋଣଙ୍କ ମୃତ୍ୟୁପରେ କର୍ଣ୍ଣଙ୍କୁ ସେନାପତି କରାନଯାଇ ଭଗଦତ୍ତଙ୍କୁ କୌରବ ଥାଟର ସେନାପତି କରିଦିଆଯାଇଛି । ସାରଳା ମହାଭାରତରେ ଭଗଦତ୍ତଙ୍କୁ ସୋମଦତ୍ତଙ୍କର ପୁଅ ଭାବରେ ଚିତ୍ରଣ କରାଯାଇଛି । ମାତ୍ର ଭାରତ ହରିବଂଶରେ ଭଗଦତ୍ତ ହେଉଛନ୍ତି ସେହି ପୁଅ ଯିଏ ଦ୍ରୋଣଙ୍କ ଔରସରେ ବିମାତାଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିଲେ ।

ସାରଳା ମହାଭାରତ ଓ ଭାରତ ହରିବଂଶ ମଧ୍ୟରେ ଏହିପରେ ଅନେକ ସାମଞ୍ଜସ୍ୟ ଦେଖିବାକୁ ମିଳେ । ଭାରତ ହରିବଂଶ ଏପର୍ଯ୍ୟନ୍ତ ପ୍ରକାଶିତ ହୋଇନଥିବା ଯୋଗୁଁ ତାହାର ରଚୟିତା ଯେ ସାରଳା ଦାସ, ଏ ବିଷୟରେ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ । ମାତ୍ର ଯେଉଁ ବୈଶିଷ୍ଟ୍ୟ ଓ ସାମଞ୍ଜସ୍ୟମାନ ଏଠାରେ ପ୍ରଦାନ କରାଗଲା ତାହା ପାଠକଲାପରେ ସେ ସନ୍ଦେହ ଆପେ ଆପେ ଦୂରୀଭୂତ ହୋଇଯିବ । ସାରଳାଦାସଙ୍କର ଶବ୍ଦପ୍ରୟୋଗ ରୀତି, ପଦପ୍ରୟୋଗ ରୀତି ଓ ଶୈଳୀ ଭାରତ ହରିବଂଶରେ ଯେପରି ପ୍ରଦର୍ଶିତ ହୋଇଛି ତାହାକୁ ଲକ୍ଷ୍ୟକଲେ ଏହି ଗ୍ରନ୍ଥଟି ସାରଳାଙ୍କଦ୍ୱାରା ରଚିତ ବୋଲି ଅନାୟାସରେ କୁହାଯାଇପାରିବ । ମହାଭାରତରେ ତାଙ୍କର ଶୈଳୀ ଓ ବୈଶିଷ୍ଟ୍ୟକୁ ଏହିପ୍ରବନ୍ଧର ପରବର୍ତ୍ତୀ ପର୍ଯ୍ୟାୟରେ ସୂଚନା ଦେବା ଉଚିତ ମନେକରୁଛି ।

## ।। ତିନି ।।

ତାହା ଥିଲା ଦୀର୍ଘବର୍ଷ ତଳର କଥା । ଆମ ଘରର ପୋଥିଭାଡ଼ିରେ ବିଭିନ୍ନ ପ୍ରକାରର ପୋଥି ସଂରକ୍ଷିତ ହୋଇ ରହିଥାଏ । ସେହି ପୋଥିଭାଡ଼ିର ପୋଥିମାନ ଦେଖିବା ପାଇଁ ଅଧ୍ୟାପକ ଡ. ଦୁର୍ଗାପ୍ରସନ୍ନ ପଣ୍ଡା ଯାଇଥିଲେ ଆମଘରକୁ । ସେହିଠାରେ ହିଁ ଭାରତ ହରିବଂଶ ପୋଥି ପ୍ରାପ୍ତ ହୋଇଥିଲା । ଭାରତ ହରିବଂଶକୁ ସାରଳାଦାସ ରଚନା କରିଚନ୍ତି ବୋଲି ଭଣିତା ଦେଖିବାପରେ ଡ. ପଣ୍ଡା ଅତ୍ୟନ୍ତ ଆଗ୍ରହରେ ପୋଥି ଖଣ୍ଡିକ ନେଇ ଆସିଥିଲେ । ପରବର୍ତ୍ତୀ ସମୟରେ ସେ ଭାରତ ହରିବଂଶ ଉପରେ ଗୋଟିଏ ଦୁଇଟି ପ୍ରବନ୍ଧ ମଧ୍ୟ ରଚନା କରିଥିଲେ ।

ପୋଥିଟିର ପାଠୋଦ୍ଧାର କରିବା ହୁଏତ ତାଙ୍କ ପାଇଁ ଅସମ୍ଭବ ହୋଇପଡ଼ିଥିଲା । ସେ ଜଣେ ଗବେଷକ ଛାତ୍ର ଖୋଜିବାକୁ ଲାଗିଲେ ଯାହାଙ୍କ ମାଧ୍ୟମରେ ପୋଥିଟିର ପାଠୋଦ୍ଧାର ହୋଇପାରନ୍ତା । ପରିଶେଷରେ ଅଧ୍ୟାପକ ଅବିନାଶ ଦେ ନାମକ ଜଣେ ଗବେଷକ ଭାରତ ହରିବଂଶ ଉପରେ ଗବେଷଣା କରିବା ପାଇଁ ଡ. ପଣ୍ଡାଙ୍କୁ ଦିଗ୍‌ଦର୍ଶକ ଭାବରେ ଗ୍ରହଣ କଲେ । ଦୀର୍ଘ ବର୍ଷ ଗବେଷଣା କରିବା ପରେ ଏହି ବିଷୟବସ୍ତୁ ଉପରେ ଅଧ୍ୟାପକ ଦେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଉପାଧି ପାଇବା ପାଇଁ ଯୋଗ୍ୟ ହୋଇଗଲେ । ତାଙ୍କ ରଚିତ ଶୋଧପ୍ରବନ୍ଧଟି ଉତ୍କଳ ବିଶ୍ୱବିଦ୍ୟାଳୟର ଗ୍ରନ୍ଥାଗାରରେ ସଂରକ୍ଷିତ ଅଛି ।

ଏହି ଶୋଧ ପ୍ରବନ୍ଧଟିକୁ ମୁଁ ଦେଖିବାର ସୁଯୋଗ ପାଇ ଦୁଃଖିତ ହେଲି । କାରଣ ପୋଥିର ପ୍ରଥମାଂଶର ପାଠୋଦ୍ଧାର କରି ସେ କୌଣସିମତେ ପିଏଚ୍.ଡି. ପାଇଯାଇଛନ୍ତି । ଭାରତ ହରିବଂଶର ପ୍ରଥମାର୍ଦ୍ଧଟି ଭାଗବତ ବିଷୟକ ଓ ଦ୍ୱିତୀୟାର୍ଦ୍ଧଟି ମହାଭାରତ ବିଷୟକ । ଏହାର ନାମ ହରିବଂଶ ଦିଆଯାଇଥିବାରୁ ବୋଧହୁଏ କୃଷ୍ଣଙ୍କର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ ଜୀବନୀକୁ ଏଥିରେ ବିବୃତ କରାଯାଇଛି । ମାତ୍ର ଅଧ୍ୟାପକ ଦେଙ୍କର ଶୋଧପ୍ରବନ୍ଧରେ ମହାଭାରତ ବିଷୟକ ଅଂଶଟି ଆଦୌ ଉପସ୍ଥାପିତ ହୋଇପାରିନାହିଁ ।

ଅଧ୍ୟାପକ ଶ୍ରୀଯୁକ୍ତ ଦେ ତାଙ୍କର ଶୋଧପ୍ରବନ୍ଧ ରଚନା ପାଇଁ ପାଞ୍ଚଗୋଟି ପୋଥିକୁ ବ୍ୟବହାର କରିଥିଲେ । ତନ୍ମଧ୍ୟରୁ ଗୋଟିଏ

ଅସଂପୂର୍ଣ୍ଣ ଓ ଅନ୍ୟଗୁଡିକ ପୂର୍ଣ୍ଣ । ବିଷ୍ଣୁପୁରର ଲକ୍ଷ୍ମୀକାନ୍ତ ତ୍ରିପାଠୀଙ୍କ ନିକଟରୁ ଯେଉଁ ପୋଥିଟି ସଂଗୃହୀତ ହୋଇଥିଲା ତାହାର ପାଠକୁ ବିଶ୍ୱସ୍ତ ପାଠବୋଲି ବିବେଚନା କରି ସେ ତାହାକୁ 'କ' ପୋଥିଭାବରେ ନାମିତ କରିଛନ୍ତି । ଡିମିଚାରୁ ସୁମନୁ ପଣ୍ଡାଙ୍କଠାରୁ ଓ ନୀଳମଣି ମହାବିଦ୍ୟାଳୟର ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର ପାଢ଼ୀଙ୍କଠାରୁ ପ୍ରାପ୍ତ ହୋଇଥିବା ପୋଥି ଦୁଇଟି ପୂର୍ଣ୍ଣାଙ୍ଗ ବୋଲି ସେ ପ୍ରକାଶ କରି ସୁମନୁ ପଣ୍ଡାଙ୍କ ପୋଥିକୁ ଖ ପୋଥି ଓ ପୂର୍ଣ୍ଣଚନ୍ଦ୍ର ପାଢ଼ୀଙ୍କ ପୋଥିକୁ ଙ ପୋଥି ଭାବରେ ନାମକରଣ କରିଛନ୍ତି । ରାଜ୍ୟ ସଂଗ୍ରାହଳୟରେ ଯେଉଁ ଦୁଇଖଣ୍ଡ ପୋଥି ରହିଛି ସେ ଦୁଇଖଣ୍ଡ ମିଶିଲେ ଗୋଟିଏ ପୂର୍ଣ୍ଣାଙ୍ଗ ପୋଥି ହେବ । ଅଥଚ ଅଧ୍ୟାପକ ଦେ ସେ ଦୁଇଟିକୁ ତାଙ୍କ ଶୋଧପ୍ରବନ୍ଧରେ ଅଲଗା ବୋଲି ଦେଖାଇ ଗ ପୋଥି ଓ ଘ ପୋଥି ଭାବରେ ତାହାର ନାମକରଣ କରିଛନ୍ତି । ଯେଉଁ ପୋଥିଟିକୁ ଅଧ୍ୟାପକ ଦେ ଅସଂପୂର୍ଣ୍ଣ ବୋଲି କହିଛନ୍ତି ତାହା ମଧ୍ୟ ସେ ବିଷ୍ଣୁପୁରର ଲକ୍ଷ୍ମୀକାନ୍ତ ତ୍ରିପାଠୀଙ୍କ ଗୃହରୁ  ପ୍ରାପ୍ତ ହୋଇଛନ୍ତି । ଏତେଗୁଡ଼ିଏ ପୂର୍ଣ୍ଣାଙ୍ଗ ପୋଥି ପାଇଥିଲେ ମଧ୍ୟ ସେ ତାଙ୍କର ଶୋଧ ପ୍ରବନ୍ଧଟିକୁ କାହିଁକି ଅପୂର୍ଣ୍ଣାଙ୍ଗ କରିଦେଲେ ତାହା ଠିକ୍ ବୁଝି ହେଉନାହିଁ । ବୋଧହୁଏ ତାଙ୍କର ଅନାଗ୍ରହ, ଅନିଚ୍ଛାପ୍ରବଣତା ତଥା ଶ୍ରମକାତରତା ତାଙ୍କୁ ଏପରି କରିବାକୁ ବାଧ୍ୟ କରିଛି ।

ମୁଁ ଏହି ଭାରତ ହରିବଂଶର ସମ୍ପାଦନା କାଳରେ ଶ୍ରୀ ଦେଙ୍କ ଶୋଧ ପ୍ରବନ୍ଧର ସହାୟତା ନେଇ ସେ ପାଞ୍ଚଗୋଟି ପୋଥିକୁ ନେଇ ଯେଉଁ ଶୁଦ୍ଧପାଠ କରିଛନ୍ତି ତଥା ବିଶ୍ୱସ୍ତ ପାଠ ଭାବରେ ଯେଉଁ କ ପୋଥିକୁ ଗ୍ରହଣ କରିଛନ୍ତି ତାହାକୁ ଏକ ପୋଥିଭାବରେ ଗ୍ରହଣ କରି ଖ ପୋଥିଭାବରେ ନାମିତ କରିଛି । କାରଣ ଏହି ଖ ପୋଥିଟି ହେବ ପାଞ୍ଚଗୋଟି ପୋଥିର ମିଳିତ ଶୁଦ୍ଧରୂପ । ମୁଁ ବିଶ୍ୱସ୍ତ ପାଠ ଭାବରେ ଯେଉଁ ପୋଥିଟିକୁ ଗ୍ରହଣ କରିଛି ଓ ଯାହାକୁ କ ପୋଥିଭାବରେ ନାମିତ କରିଛି ତାହା ସୋର ସନ୍ନିକଟସ୍ଥ ଜଳଦା ଗ୍ରାମରୁ ଶ୍ରୀ ପର୍ଶୁରାମ ଶତପଥୀଙ୍କ ଗୃହରୁ ସଂଗ୍ରହ କରାଯାଇଥିବା ଏକ ପୂର୍ଣ୍ଣାଙ୍ଗ ପୋଥି । ମୋର ଗ ପୋଥିଟି ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଥିବା ପୋଥିନମ୍ବର CY୧୩୫୦ । ରାଜ୍ୟ ସଂଗ୍ରହାଳୟରେ ଥିବା ଦୁଇଖଣ୍ଡ ପୋଥି ପାଠୋଦ୍ଧାର ହୋଇ CY୧୩୫୦ ଓ CY୧୩୫୧ ନମ୍ବରରେ ସଂରକ୍ଷିତ ଥିଲେ ମଧ୍ୟ CY୧୩୫୧ରେ ଭାରତ ହରିବଂଶର ପାଠୋଦ୍ଧାର ନାହିଁ । ସୂଚୀରେ CY୧୩୫୧କୁ ଭାରତ ହରିବଂଶର ଦ୍ୱିତୀୟ ଖଣ୍ଡ ବୋଲି ଲେଖା ହୋଇଥିଲେ ମଧ୍ୟ ପ୍ରକୃତରେ ଏହି ନମ୍ବର ପାଣ୍ଡୁଲିପିରେ ଅନ୍ୟ ବିଷୟବସ୍ତୁମାନ ନିବଦ୍ଧ ହୋଇଯାଇଛି । ଏଣୁ ପ୍ରକୃତରେ ରାଜ୍ୟ ସଂଗ୍ରହାଳୟରୁ ଯେଉଁ ହାତଲେଖାଟି ସଂଗୃହୀତ ହୋଇପାରିଲା ତାହା ଭାରତ ହରିବଂଶର ଭାଗବତ ବିଷୟକ ଅଂଶ । ଏହାକୁ ଏକ ପୋଥିରୂପେ ଏବଂ ଗ ପୋଥି ରୂପେ ନାମକରଣ କରି ତାହାକୁ ମୁଁ ମୋର ସଂପାଦନା କାର୍ଯ୍ୟରେ ନିୟୋଜିତ କରିଛି । ସୋର ନିକଟସ୍ଥ ଜଳଦା ଗ୍ରାମରୁ ଶ୍ରୀ ବ୍ରଜକିଶୋର ଶତପଥୀଙ୍କ ଗୃହରୁ ମୁଁ ଆଉଖଣ୍ଡିଏ ଅସମ୍ପୂର୍ଣ୍ଣ ପୋଥି ସଂଗ୍ରହକରିଛି ଓ ତାହାକୁ ଘ ପୋଥି ଭାବରେ ନାମିତ କରିଛି । ତେଣୁ ମୋ ସଂଗୃହୀତ ପୋଥିମାନ ନିମ୍ନ ଭାବରେ ସୂଚିତ କରିହେବ-

| **ପୋଥିର ନାମ** | **ବିଷୟବସ୍ତୁ** | **ଯାହାଠାରୁ ସଂଗୃହୀତ** | **ସଂଗ୍ରହସ୍ଥାନ** |
|---|---|---|---|
| କ | ଭାଗବତ ଓ ମହାଭାରତ ବିଷୟକ ପୂର୍ଣ୍ଣାଙ୍ଗ ଗ୍ରନ୍ଥ | ଶ୍ରୀ ପର୍ଶୁରାମ ଶତପଥୀ | ଗ୍ରା/ପୋ- ଜଳଦା, ତୁଡ଼ିଗଡ଼ିଆ, ସୋର, ବାଲେଶ୍ୱର |
| ଖ | ଭାଗବତ ବିଷୟକ | ଅଧ୍ୟାପକ ଅବିନାଶ ଦେଙ୍କ ଶୋଧପ୍ରବନ୍ଧ | ଉତ୍କଳ ବିଶ୍ୱବିଦ୍ୟାଳୟ, ଭୁବନେଶ୍ୱର |
| ଗ | ଭାଗବତ ବିଷୟକ | ରାଜ୍ୟ ସଂଗ୍ରହାଳୟ | ଭୁବନେଶ୍ୱର, ପୋଥି CY୧୩୫୦ |
| ଘ | ମହାଭାରତ ବିଷୟକ | ଶ୍ରୀ ବ୍ରଜକିଶୋର ଶତପଥୀ | ଗ୍ରା/ପୋ - ଜଳଦା, ତୁଡ଼ିଗଡ଼ିଆ,ସୋର, ବାଲେଶ୍ୱର |

ଶ୍ରୀ ପର୍ଶୁରାମ ଶତପଥୀଙ୍କ ଗୃହରୁ ପ୍ରାପ୍ତ ହୋଇଥିବା ପୋଥିଟିର ଲମ୍ବ ୧ଫୁଟ ସାଢ଼େ ସାତଇଞ୍ଚ ଓ ଓସାର ଦେଢ଼ଇଞ୍ଚ । ଏହି ପୋଥିର ପ୍ରତି ପୃଷ୍ଠାରେ ପ୍ରାୟ ପାଞ୍ଚଗୋଟି ଧାଡ଼ି ରହିଛି ତଥା କେତେପୃଷ୍ଠାରେ ଚାରିଗୋଟି ଧାଡ଼ିମଧ୍ୟ ରହିଛି । ପ୍ରତ୍ୟେକ ଧାଡ଼ିରେ ପ୍ରାୟ ଆଠଗୋଟି ପାଦ ରହିଛି ।

ଏହି ପୋଥିଟିକୁ ରଚନା କରିଥିଲେ ତାଙ୍କର ଜଣେ ପୂର୍ବପୁରୁଷ, ଯାହାଙ୍କର ନାମ ପରମାନନ୍ଦ ଶତପଥୀ । ପୋଥିର ଶେଷରେ ଲେଖା ହୋଇଥିଲା ଯେ ଶ୍ରୀଦିବ୍ୟସିଂହ ଦେବ ନୃପତେ ଦଶଅଙ୍କ ବାରଶ ପଚସ୍ତରୀ ସାଲ ମୀନ ମାସ ପଚିଶି ଦିନେ ଅର୍କବାସରେ ଦିବା ତିନିପ୍ରହରେ ତ୍ରୟୋଦଶୀ ତିଥିରେ ସଂପୂର୍ଣ୍ଣ । ଇଂରାଜୀ ମସିହା ହିସାବ କଲେ ଏହି ଦିନଟି ହେବ ୧୮୬୮ ମସିହା ମାର୍ଚ୍ଚମାସ ।

ମନେହୁଏ ପରମାନନ୍ଦ ଶତପଥୀ ଜଣେ କବିଥିଲେ । ଭାରତ ହରିବଂଶ ଶେଷ ହେବାପରେ ସେ ୮୨ଧାଡ଼ିର ଆଉଗୋଟିଏ ଅଧ୍ୟାୟ ସେଥିରେ ସଂଯୋଗ କରି ଜଗନ୍ନାଥଙ୍କର ବନ୍ଦନା, ଦଶାବତାର ବର୍ଣ୍ଣନା, ଶିବଙ୍କର ବନ୍ଦନା ତଥା ଦୁର୍ଗାଙ୍କର ବନ୍ଦନାକୁ ପ୍ରକାଶ କରିଛନ୍ତି । ଏହି ଅଧ୍ୟାୟଟି ତାଙ୍କର ନିଜସ୍ୱ ରଚନା ହୋଇଥିବା ଯୋଗୁଁ ଭାରତ ହରିବଂଶର ସମ୍ପାଦନାରେ ତାହାକୁ ସଂଯୁକ୍ତ କରାଯାଇନାହିଁ । ପରମାନନ୍ଦ ଲେଖିଛନ୍ତି-

ଆହେ ସୁଜ୍ଞଜନମାନେ ପୁରୋଇ ଗାଇବ
ସୁଦ୍ଧ ଅସୁଦ୍ଧ ଦୋଷ ମୋ ନଘେନିବ
ଶ୍ରୀଗୁରୁ ବ୍ରାହ୍ମଣ ବୈଷ୍ଣବ ଚରଣ
ତାହାଙ୍କ ପାଦେ ମୁଁ ପଶିଲି ଶରଣ
ମାତା ପିତାଙ୍କ ପାଦେ ମୋର ନମସ୍କାର
ସାଧୁଜନଙ୍କୁ ଯୋଡ଼ଇ ବେନିକର
ଶ୍ରୀନୀଳସୁନ୍ଦର ପ୍ରଭୁଙ୍କ ଚରଣ
ବିପ୍ର ପରମାନନ୍ଦ ମାଗଇ ଶରଣ ।
ଈଶ୍ୱର ପାର୍ବତୀ ପ୍ରତି ଭକ୍ତି ଗ୍ରନ୍ଥପୁଣ
ଭାରତ ହରିବଂଶ ହୋଇଲା ସମ୍ପୂର୍ଣ୍ଣ ।

(ଭାରତ ହରିବଂଶ କ ପୋଥିର ଅପ୍ରକାଶିତ ପୁଷ୍ପିକା)

ଗ୍ରନ୍ଥର ପୁଷ୍ପିକାରେ ପରମାନନ୍ଦ କେଉଁଠାରେ ନିଜକୁ ପରମାନନ୍ଦ ଶତପଥୀ ବୋଲି କହିନାହାନ୍ତି । ମାତ୍ର ପୋଥି ସଂଗ୍ରହ କରିବାକୁ ଯିବାକାଳରେ ଶ୍ରୀ ପର୍ଶୁରାମ ଶତପଥୀ ତାଙ୍କର ସପ୍ତମ ପୁରୁଷର ବ୍ୟକ୍ତି ପରମାନନ୍ଦ ଏହି ପୋଥିକୁ ନକଲ କରିଥିଲେ ବୋଲି ଅତ୍ୟନ୍ତ ଗର୍ବ ସହକାରେ ପ୍ରକାଶ କରିଥିବାରୁ ପରମାନନ୍ଦ ଯେ ପରମାନନ୍ଦ ଶତପଥୀ ଏହା ଆମର ବିଶ୍ୱାସଯୋଗ୍ୟ ହୋଇପାରିଛି ।

ଖ ପୋଥି ସମ୍ପର୍କରେ ମୁଁ ସୂଚନା ପ୍ରଦାନ କରିସାରିଛି । ଏହା ଅଧ୍ୟାପକ ଅବିନାଶ ଚନ୍ଦ୍ର ଦେଙ୍କଦ୍ୱାରା ରଚିତ ଶୋଧପ୍ରବନ୍ଧ ଓ ଏହା ଉତ୍କଳ ବିଶ୍ୱବିଦ୍ୟାଳୟ ଗ୍ରନ୍ଥାଗାରରେ ଉପଲବ୍ଧ । ଯେଉଁ ପୋଥିକୁ ବିଶ୍ୱସ୍ତପାଠ ବୋଲି ବିବେଚନା କରି ସେ ତାହାକୁ ଶୋଧପ୍ରବନ୍ଧରେ କ ପୋଥିର ମାନ୍ୟତା ପ୍ରଦାନ କରିଛନ୍ତି, ସେହି ପୋଥିଟି ସେ ଲକ୍ଷ୍ମୀକାନ୍ତ ତ୍ରିପାଠୀ ଅର୍ଥାତ୍ ମୋ ନିକଟରୁ ସଂଗ୍ରହ କରିଛନ୍ତି । ପୋଥିଗୁଡ଼ିକର ଲିଖନକାର ସମ୍ପର୍କରେ ଶୋଧପ୍ରବନ୍ଧରେ କୌଣସି ସୂଚନା ପ୍ରଦାନ କରାଯାଇନଥିଲେ ମଧ୍ୟ 'ବାଲେଶ୍ୱରର ପୋଥିପତ୍ର' ନାମକ ଏକ ପ୍ରବନ୍ଧ ରଚନା କଲାବେଳେ ମୁଁ ସବୁପୋଥିର ପୁଷ୍ପିକା ପାଠକରିଥିଲି ଓ ଜାଣିବାକୁ ପାଇଥିଲି ଯେ ମୋ ନିକଟରୁ ସଂଗୃହୀତ ହୋଇଥିବା ପୋଥିଟି ମୋର ପୂର୍ବପୁରୁଷ ବୈଦ୍ୟନାଥ ତ୍ରିପାଠୀଙ୍କଦ୍ୱାରା ନକଲ କରାଯାଇଥିଲା । ପୋଥିଟି ମୋ ନିକଟରେ ନଥିବା ଯୋଗୁଁ ମୁଁ ପୋଥିରଚନାର ସମୟ ସମ୍ପର୍କରେ ଅବହିତ ନୁହେଁ । ମାତ୍ର ଅଧ୍ୟାପକ ଦେଙ୍କର ଶୋଧପ୍ରବନ୍ଧଟି ୧୯୯୪ ମସିହାରେ ପ୍ରସ୍ତୁତ କରାଯାଇ ବିଶ୍ୱବିଦ୍ୟାଳୟକୁ ସମର୍ପିତ ହୋଇଥିଲା ।

ରାଜ୍ୟ ସଂଗ୍ରହାଳୟରେ ଥିବା ପୋଥି ଦୁଇଖଣ୍ଡ ମଧ୍ୟରୁ ତାଳପତ୍ର ପୋଥିଗୁଡ଼ିକ କୀଟଦ୍ରଂଷ୍ଟ । ଏହାର ଭାଗବତ ବିଷୟକ ଅଂଶଟିକୁ କାଗଜରେ ନକଲ କରାଯାଇଥିବାରୁ ତାହା ରାଜ୍ୟ ସଂଗ୍ରହାଳୟରେ CY୧୩୫୦ ପୋଥିନମ୍ବରରେ ସୁରକ୍ଷିତ ହୋଇ ରହିପାରିଛି । ଏହା ଏକ ଉତ୍ତମ କାର୍ଯ୍ୟ ହୋଇଥିଲେ ମଧ୍ୟ ନକଲକାରୀଙ୍କର ପୋଥିବିଷୟକ ଜ୍ଞାନ ନଥିବା ଯୋଗୁଁ ଠିକ୍ ଭାବରେ ନକଲ ହୋଇପାରିନାହିଁ । ରାଜ୍ୟ ସଂଗ୍ରହାଳୟର ପୋଥିଟିକୁ ମିସ୍ ପ୍ରଣତି ମିଶ୍ର ନାମକ ଝିଅଟିଏ ନକଲ କରିଛି । ମୋର ମନେହୁଏ ବିଶ୍ୱବିଦ୍ୟାଳୟର କୌଣସି ଛାତ୍ରୀ ଅର୍ଥ ସଂଗ୍ରହ କରିବା ଆଶାରେ ପୋଥିଟିକୁ ଉତାରି ଦେଇଯାଇଛି । ଯେଉଁଠାରେ ସେ ପଢ଼ିପାରିନାହିଁ ସେଠରେ ଡଟ୍ ଡଟ୍ ଦେଇ ଛାଡ଼ି ଦେଇଯାଇଛି । ପୁଣି ମୋର କ ପୋଥିରେ ଥିବା ଅନେକ ଧାଡ଼ି ସେଥିରେ ନଥିବାରୁ ଭ୍ରମବଶତଃ ତାହା ଉତାରି ହୋଇନାହିଁ ବୋଲି ମୋର ମନେ ହୋଇଛି । ଅଜ୍ଞାନତା କିପରି ନକଲକାରୀକୁ ଘାରିଛି ତାହାର ଗୋଟିଏ ଉଦାହାରଣ ପ୍ରଦାନ କରୁଛି ।

ହେବ- କୁମର ଜନମିଣ ରଡ଼ିୟେ ଛାଡ଼ିଲା
ଲେଖାଯାଇଛି - ମର ଜନମିଣ ରଡ଼ି ଯେ ଛାଡ଼ିଲା ।

ଏହି ପୋଥିର ନାମ ମୁଁ ଗ ପୋଥି ରଖିଥିବାରୁ ପାଠକ ଗ୍ରନ୍ଥପାଠ କଲାବେଳେ ଅନୁଭବ କରିପାରିବେ ଯେ ପୃଷ୍ଠାର ନିମ୍ନରେ ଗ ପୋଥିରେ ଅନେକ ଧାଡ଼ି ନାହିଁ ।

ଘ ପୋଥି ଖଣ୍ଡିକୁ ମୁଁ ମୋର ନିକଟସ୍ଥ ଜଳଦାଗ୍ରାମର ଶ୍ରୀ ବ୍ରଜକିଶୋର ଶତପଥୀଙ୍କଠାରୁ ସଂଗ୍ରହ କରିଥିଲି । ଏହି ପୋଥି ଖଣ୍ଡିକର ଲମ୍ବ ଦେଢ଼ ଫୁଟ ଓ ଓସାର ଏକଇଞ୍ଚ । ପ୍ରତି ପୃଷ୍ଠାରେ ଚାରିଗୋଟି ଧାଡ଼ି ରହିଛି ଓ ପ୍ରତି ଧାଡ଼ିରେ ସାଢ଼େପାଞ୍ଚପାଦ ବା ଛଅପାଦ ପାଠ ରହିଛି । ପୋଥିର ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡ ମିଶି ୫୩୩ପୃଷ୍ଠା । ମୋର ଦୁର୍ଭାଗ୍ୟକୁ ମୁଁ କେବଳ ଦ୍ୱିତୀୟ ଖଣ୍ଡଟି ପାଇପାରିଥିବାରୁ ସେଥିରେ ପୃଷ୍ଠାସଂଖ୍ୟା ୨୫୨ରହିଛି । ଏହି ପୋଥିଟି ଅସଂପୂର୍ଣ୍ଣ ହେଲେ ମଧ୍ୟ ଏହା ଅତ୍ୟନ୍ତ ସ୍ୱଚ୍ଛ ଓ ପଠନ ଯୋଗ୍ୟ । ଏହି ପୋଥି ଖଣ୍ଡିକୁ ବିପ୍ର ହରିପାଣି ନକଲ କରିଛନ୍ତି । ଗ୍ରନ୍ଥର ପୁଷ୍ପିକାରେ କୌଣସି କବିତା ରଚନା କରିନଥିଲେ ମଧ୍ୟ ନିଜର ଜୀବନର ଦୁଃଖକୁ ଲିପିକାର ଗଦ୍ୟଭାଷାରେ ଅତି ସରଳଭାବରେ କହିଯାଇଛନ୍ତି, ଯାହା ପାଠକଲେ ସ୍ୱତଃ ଆମ ଆଖିରୁ ମଧ୍ୟ ଅଶ୍ରୁ ଝରିଆସିବ । ବିପ୍ର ହରିପାଣିଙ୍କର କୌଣସି ପୁଅ ନଥିଲା । ସେ ତାଙ୍କର ପୁତୁରା ବଲ୍ଲଭଠାରୁ ପୁଅଟିଏ ଆଣି ଗୋବିନ୍ଦନାମରେ ପୋଷ୍ୟପୁତ୍ର କରାଇଥିଲେ । ତାଙ୍କ ଦୁଃଖର କାହାଣୀକୁ ସେ ପୁଷ୍ପିକାରେ ଲେଖି କହିଛନ୍ତି- "ହେ ସୁଜ୍ଞଜନମାନେ ଶୁଣ, ମୁ ଯେ ଅତି ଦୁଃଖିତ ବ୍ରାହ୍ମଣ, ମୋର ଆଶ୍ରା କେହିନାହିଁ । ମୋ ପରି ମୋ ବୟସରେ ଶୁଣିବାର ପାଞ୍ଚପୁରୁଷରେ କୁଳ ଅଙ୍ଗାର କେହି ଜନମ ହୋଇନଥିଲା । ମୁଁ କେବଳ ଜନମ ହୋଇଅଛି । ମୋର କିଛି ଚାରାବଶ ନାହିଁ । ମୁ କି କରିବି । ମୁ ଜାଣନ୍ତିରେ ଏ ଜନ୍ମରେ କିଛି ଦୋଷ କରିନାହିଂ । ମୋର କିବା ପୂର୍ବରେ ପାପଥିଲା, ସେ କଥା ମୋତେ ଏଜନ୍ମରେ ଆସି ଫଳିଲା । ମୁ କି କରିବି ।"

ଏତେ କଷ୍ଟକରି ପୋଥିକୁ ନକଲ କରିଥିବା ବିପ୍ର ହରିପାଣିଙ୍କର ନାମ ଆମେ ଆଜି ଉଦ୍ଧାର କରୁଛୁ । ତାଙ୍କର ଆତ୍ମା ନିଶ୍ଚୟ ଶାନ୍ତିଲାଭ କରିବ ।

ଗ୍ରନ୍ଥର ଲେଖନ କେବେ ସମାପ୍ତ ହୋଇଥିଲା ଏ ସମ୍ପର୍କରେ ସୂଚନା ଦେଇ ହରିପାଣି ଲେଖିଛନ୍ତି ଯେ, ଶ୍ରୀ ଦିବ୍ୟସିଂହ ମହାରାଜାଙ୍କ ବିଜେ ସମସ୍ତ ଅଣତିରିଶ ଅଙ୍କ ସ୍ନ ବାରଶହ ଏକାନବେ ସାଲ ମକର ମାସ ଏକଦିନେ ଶ୍ରୀ ଭାରତ ହରିବଂଶ ସଦାଜୟେ ସଂପୂର୍ଣ୍ଣ ହୋଇଥିଲା । ଇଂରାଜୀ ମସିହା ଅନୁସାରେ ହିସାବକଲେ ତହାହେବ ୧୮୮୪ ମସିହା ଜାନୁଆରି ମାସ । କ ପୋଥି ନକଲ କରାଯିବାର ଷୋହଳବର୍ଷ ପରେ ଏହା ନକଲ କରାଯାଇଥିଲା ।

ପୋଥି ନକଲ କରିବା ସମୟରେ ନକଲକାର ବହୁ ସମସ୍ୟା ମଧ୍ୟରେ ଗତି କରିଥାଏ । ସେଇଥିପାଇଁ ନକଲଟା ଶୁଦ୍ଧଭାବରେ ହୋଇ ପାରେନାହିଁ । ନକଲକାରୀ ଗୋଟିଏ ପୋଥିରୁ ଧାଡ଼ିଏ ପଢ଼ି ସେହି ଧାଡ଼ିଟିକୁ ନୂଆପୋଥିରେ ଲେଖିଥାଏ । ପଢ଼ି, ମନେରଖି, ତାହାକୁ ଲେଖିବାଭିତରେ କେତେ ଶବ୍ଦ ପରିବର୍ତ୍ତିତ ହୋଇଯାଇଥାଏ । ଡକ୍ଟର ଧୀରେନ୍ଦ୍ର କୁମାର ଷଡଙ୍ଗୀ ଓ ଡକ୍ଟର ଶ୍ରୀଚରଣ ମହାନ୍ତିଙ୍କ ସମ୍ପାଦନାରେ ପ୍ରକାଶିତ 'ପୋଥିପରିଚୟ' ନାମକ ଗ୍ରନ୍ଥର 'ପୋଥିର ପାଠ ବିକୃତିର ବିଭିନ୍ନ କାରଣ' ନାମକ ପ୍ରବନ୍ଧରେ ପ୍ରଫେସର ଆଶୁତୋଷ ପଟ୍ଟନାୟକ ପୋଥି ନକଲରେ ବିକୃତି ହେବାର ଛବିଶ ଗୋଟି କାରଣ ପ୍ରଦାନ କରିଛନ୍ତି । ସେଗୁଡ଼ିକ ହେଲା (୧) ସମାନ ବର୍ଣ୍ଣ ସମ୍ବନ୍ଧୀୟ ବିଭ୍ରାନ୍ତି (୨) ସାଧାରଣ ଅକ୍ଷର ସମ୍ବନ୍ଧୀୟ ବିଭ୍ରାନ୍ତି (୩) ଶ୍ରବଣ ଓ ଉଚ୍ଚାରଣ ଜନିତ ତ୍ରୁଟି (୪) ଦୃଷ୍ଟି ଦୋଷ ଜନିତ ତ୍ରୁଟି (୫) ଅପରିଚିତ ଶବ୍ଦ ସ୍ଥାନରେ ପରିଚିତ ଶବ୍ଦର ପ୍ରୟୋଗ (୬) ପୁନରାବୃତ୍ତି (୭) ସମାକ୍ଷର ଯୋଗ (୮) ଅକ୍ଷର, ଶବ୍ଦ ଓ ବାକ୍ୟର କ୍ରମ ପରିବର୍ତ୍ତନ (୯) ପ୍ରାକୃତ ଶବ୍ଦ ସ୍ଥାନରେ ସଂସ୍କୃତ ଶବ୍ଦର ପ୍ରୟୋଗ (୧୦) ସାଧାରଣ ସମରୂପତା ହେତୁ ଶବ୍ଦର ଅଶୁଦ୍ଧ ଲିଖନ (୧୧) ଅକ୍ଷର ବୃଦ୍ଧି ((କ) ଶବ୍ଦର ପୁନରାବୃତ୍ତି ହେତୁ (ଖ) ଦୁଇ ପଙ୍‌କ୍ତି ମଧ୍ୟରେ ଅନ୍ୟଏକ ପଙ୍‌କ୍ତିର ଆଗମ (ଗ) ପ୍ରକ୍ଷିପ୍ତ (ଘ) ଏକପ୍ରକାର ଲେଖାର ପ୍ରଭାବ ହେତୁ ପାଠର ଅଭିବୃଦ୍ଧି) (୧୨) ଶବ୍ଦ ବିପର୍ଯ୍ୟୟ (୧୩) ମୂଳଶବ୍ଦ ସ୍ଥାନରେ ନୂତନ ଶବ୍ଦର ସଂସ୍ଥାନ (୧୪) ଅଜାଣତରେ ହୋଇଥିବା ଭୁଲକୁ ସଜାଡ଼ିବାର ପ୍ରୟତ୍ନ (୧୫) ଶବ୍ଦ ମଧ୍ୟରେ ବର୍ଣ୍ଣ ବିପର୍ଯ୍ୟୟ (୧୬) ମାତ୍ରାଲୋପ ହେତୁ ଶବ୍ଦ ବିଭ୍ରାନ୍ତି (୧୭) ପଦ ବା ଶବ୍ଦର ବିକୃତ ରୂପଗ୍ରହଣ (୧୮) ଅନ୍ଧଯୁକ୍ତିର ବଶବର୍ତ୍ତୀ ହୋଇ ନୂତନ ଶବ୍ଦର ପ୍ରୟୋଗ (୧୯) ଦ୍ରୁତ ଲିଖନ ଜନିତ ତ୍ରୁଟି (୨୦) ଅଶୁଦ୍ଧ ସମାସ ହେତୁକ ଭ୍ରମ (୨୧) ସଂକ୍ଷିପ୍ତ ରୂପରେ ମିଥ୍ୟାର୍ଥ ପ୍ରକାଶ (୨୨) ନାମ ବାଚକ ସଂଖ୍ୟା ବିଭ୍ରାନ୍ତି (୨୩) ଅଙ୍କ ଲିଖନରେ ବିଭ୍ରାନ୍ତି (୨୪) ଅକ୍ଷର, ଶବ୍ଦ ଓ ପଙ୍‌କ୍ତି ଗୁଡ଼ିକରେ ସାମ୍ୟତା ହେତୁ ପାଠ ବିଲୁପ୍ତି (୨୫) ପୂର୍ଣ୍ଣଚ୍ଛେଦର ମନମୁଖୀ ପ୍ରୟୋଗ ଓ (୨୬) ସ୍ଥାନଚ୍ୟୁତ ।

ଡ. ପଟ୍ଟନାୟକ ପୋଥି ନକଲରେ ବିକୃତିଗୁଡ଼ିକ ଏଗାରଗୋଟି ମାଧ୍ୟମଦେଇ ପ୍ରବେଶ କରିଥାଏ ବୋଲି ମଧ୍ୟ ପ୍ରକାଶ କରିଛନ୍ତି । ଏହିସବୁ ବିକୃତି ଯୋଗୁଁ ପୋଥି ପୋଥି ମଧ୍ୟରେ ପାର୍ଥକ୍ୟ ରହିଯାଇଥିବାର ଦେଖିବାକୁ ମିଳିଥାଏ । ଏହି ପୋଥି ସଂପାଦନା ବେଳକୁ ମୁଁ କିଛି

ସମସ୍ୟାର ସମ୍ମୁଖୀନ ହୋଇ ଏକାଧିକ ପାଠରୁ ଗୋଟିଏ ପ୍ରକାର ପାଠକୁ ଗ୍ରହଣ କରିବାକୁ ଚେଷ୍ଟା କରିଛି । ନିମ୍ନରେ ସେହି ସମସ୍ୟାଗୁଡ଼ିକର କିଛି ସୂଚନା ପ୍ରଦାନ କରିବି । ପାଠକମାନେ ଦୟାକରି ପ୍ରଯୁକ୍ତ ଶବ୍ଦକୁ ସମ୍ମାନପ୍ରଦର୍ଶନ କରି ମୂଳଶବ୍ଦ ନିକଟକୁ ଗତିକରିବେ ବୋଲି ଆଶା ପ୍ରକାଶ କରୁଛି । ଶବ୍ଦସୃଷ୍ଟିର ଯେଉଁ ସମସ୍ୟାମାନ ବିଭିନ୍ନ ପୋଥିରେ ପରିଦୃଷ୍ଟ ହେଉଛି ତାହା ଏହିପରି–

(୧) ଯେ ଅକ୍ଷରର ପ୍ରୟୋଗ : କବିତାର ପାଦଗୁଡ଼ିକରେ ଯେଉଁ ଯେ ମାନ ପ୍ରୟୋଗ କରାଯାଉଛି ତାହା ପାଦକୁ ପୂର୍ଣ୍ଣାଙ୍ଗ କରିବାପାଇଁ ଏକଶବ୍ଦ ନୁହେଁ । ନକଲକାର ନକଲ କରିବାକୁ ଗଲାବେଳେ ମନେ ମନେ ଯେଉଁ ସ୍ୱରକୁ ଗୁଣଗୁଣାଇ ହୁଏ ସେତେବେଳେ ଯେଉଁଠାରେ ଯେ ର ଆବଶ୍ୟକତା ଉପଲବ୍ଧି କରେ ସେହିଠାରେ ଯେ ଅକ୍ଷରଟି ଲଗାଇଦିଏ । ସେଇଥିପାଇଁ ବେଳେ ବେଳେ ଗୋଟିଏ ଗୋଟିଏ ପାଦରେ ଏକାଧିକ ଯେ ର ପ୍ରୟୋଗ ଦେଖିବାକୁ ମିଳେ ଓ ସେଥିପାଇଁ ଭିନ୍ନ ଭିନ୍ନ ପୋଥିରେ ଭିନ୍ନ ଭିନ୍ନ ସ୍ଥାନରେ ଯେ ର ପ୍ରୟୋଗ ଦେଖିବାକୁ ମିଳେ ।

(୨) ଯୁକ୍ତାକ୍ଷରର ସରଳ ପ୍ରୟୋଗ : ନକଲକାରୀ ଜାଣିନେଇଥାଏ ଯେ ସେ ସଂସ୍କୃତ ଭାଷାରେ ଶବ୍ଦମାନ ପ୍ରୟୋଗ ନକରି ଗାଉଁଲି ଭାଷାର ଶବ୍ଦମାନ ପ୍ରୟୋଗ କରିବାକୁ ଯାଉଛି । ସଂସ୍କୃତ ନାଟକରେ ଅପ୍ରାକୃତ ଭାଷାକୁ ଯେପରି ପ୍ରୟୋଗ କରାଯାଇଥାଏ ନକଲକାରୀ ଜାଣି ଜାଣି ସେହିପରି ଶବ୍ଦମାନ ବ୍ୟବହାର କରିଥାଏ । ସେଇଥିପାଇଁ ସେ ଦୁର୍ଯ୍ୟୋଧନକୁ ଦୁର୍ଯୋଧନ ବା ଦ୍ରିଯୋଧନ ବୋଲି ଲେଖେ, ଆଶ୍ଚର୍ଯ୍ୟକୁ ଆଷ୍ଟାର୍ଯ୍ୟ ବା ଆଶିର୍ଯ୍ୟ ଭାବରେ ପ୍ରୟୋଗ କରେ । ଯୁଧିଷ୍ଠିର ତା ଭାଷାରେ ହୁଏ ଯୁଧିଷ୍ଟିର ବା ଯୁଧିଷ୍ଟି ବା ଯୁଯେଷ୍ଟି ।

(୩) ବନାନର ଯଥେଚ୍ଛା ପ୍ରୟୋଗ : ବିଶେଷ କରି ଯ ଓ ଶ ଲେଖିବା କାଳରେ ନକଲକାରୀ ତାହାର ଯଥେଚ୍ଛା ପ୍ରୟୋଗ କରିଥାଏ । ଭାରତ ହରିବଂଶର କ ପୋଥିରେ ସର୍ବତ୍ର ଯ ସ୍ଥାନରେ ଜ, ବହୁ ସ୍ଥାନରେ ଶ ବା ଷ ସ୍ଥାନରେ ସର ବ୍ୟବହାର କରାଯାଇଛି । କ ପୋଥିରେ ଦେଲା ସ୍ଥାନରେ ସର୍ବତ୍ର ଦିଲା ବୋଲି ଲେଖାଯାଇଛି । ଗ୍ରନ୍ଥର ସମ୍ପାଦନା କାଳରେ ମୁଁ ସେହି ଅନୁସାରେ ଯ ସ୍ଥାନରେ ଜ ଓ ଶ ସ୍ଥାନରେ ସର ବ୍ୟବହାର କରିଛି । ପାଠକମାନେ ଠିକ୍ କରି ପଢ଼ିବାକୁ ଅନୁରୋଧ ।

(୪) ଲ ସ୍ଥାନରେ ନ ଓ ନ ସ୍ଥାନରେ ଲ ର ପ୍ରୟୋଗ : କ ପୋଥିରେ ବହୁସ୍ଥାନରେ ନ ସ୍ଥାନରେ ଲର ପ୍ରୟୋଗ ହୋଇଛି । ଯେମତି ନୋହିଲେକୁ ଲୋହିଲେ । ଅନ୍ୟ ପୋଥିରେ ଲ ସ୍ଥାନରେ ନ ର ପ୍ରୟୋଗ ହୋଇଛି । ଯେମିତି ଲାଗିକୁ ନାଗି ।

(୫) ଅକାର ଉପରେ ଅଧିକ ଗୁରୁତ୍ୱ : ଉକାର ବା ଇକାର ସ୍ଥାନରେ ବହୁତ ସମୟରେ ଅକାରର ପ୍ରୟୋଗ କରାଯାଇଛି । ଯେମିତି ମୁକୁଟ ସ୍ଥାନରେ ମକୁଟ, ନଳିନି ସ୍ଥାନରେ ନଳଣି, କମଳିନୀ ସ୍ଥାନରେ କମଳଣୀ, ପୁଣି ସ୍ଥାନରେ ପୁଣ, ମୋହିନି ସ୍ଥାନରେ ମୋହନି, ଆୟୁସ ସ୍ଥାନରେ ଆୟସ କିମ୍ବା ପରମାୟୁସ ସ୍ଥାନରେ ପରମାୟସ ଇତ୍ୟାଦି ।

(୬) ସ୍ଥାନେ ସ୍ଥାନେ ମ ବ ଭାବରେ ଓ ଣ ନ ରୂପରେ ପ୍ରୟୋଗ : କ ପୋଥିରେ ନିର୍ମାଣ ସ୍ଥାନରେ ନିର୍ବାଣ ବୋଲି ଲେଖାଯାଇଛି ଓ ଅଣାକାର ସ୍ଥାନରେ ଅନାକାର ବୋଲି ଲେଖାଯାଇଛି ।

ଯେଉଁ ଶବ୍ଦଗୁଡ଼ିକ ସାମାନ୍ୟ ପରିବର୍ତ୍ତିତ ହୋଇ ପ୍ରୟୋଗ କରାଯାଇଛି ତା ପାଇଁ ତଳେ ଅନ୍ୟ ପୋଥିର ଶୁଦ୍ଧପାଠ ପ୍ରଦାନ କରାଯାଇନାହିଁ । ଯେମିତି ଶ କୁ ସ ଭାବରେ ବହୁ ସ୍ଥାନରେ ଲେଖାଯାଇଥିବାରୁ ତଳେ ଅନ୍ୟ ପୋଥିର ଶୁଦ୍ଧପାଠ ପ୍ରଦାନ କରାଯାଇନାହିଁ । କାରଣ ଯେ କୌଣସି ସ ପ୍ରଦାନ କରାଯାଇଥିଲେ ମଧ୍ୟ ପାଠକଙ୍କୁ ବୁଝିବାକୁ ଅସୁବିଧା ହେବନାହିଁ । ବେଳେ ବେଳେ ଗୋଟିଏ ପୋଥିରେ ସଦାଶିବ ଲେଖା ହୋଇଥିଲେ ମଧ୍ୟ ଅନ୍ୟ ପୋଥିରେ ତ୍ରିଲୋଚନ ଶବ୍ଦ ପ୍ରୟୋଗ କରାଯାଇଛି । ଏପରି ପରିବର୍ତ୍ତନକୁ ମଧ୍ୟ ଶୁଦ୍ଧପାଠରେ ଗ୍ରହଣ କରାଯାଇନାହିଁ ।

## ।। ଚାରି ।।

ଓଡ଼ିଶାରେ କ୍ୱଚିତ୍ କବି ତାଙ୍କ ଜନ୍ମସ୍ଥାନ ସଂପର୍କରେ ନିଜ ରଚନାରେ ସୂଚନା ପ୍ରଦାନ କରିଯାଇଛନ୍ତି । ପୂର୍ବଜନ୍ମ ସମ୍ପର୍କରେ ତ ସାରଳା ଦାସଙ୍କ ବ୍ୟତୀତ ଆଉ କେହି ବର୍ଣ୍ଣନା କରିଥିବାର ଜଣାଯାଏନାହିଁ । ସାରଳାଦାସ ନିଜର ଜନ୍ମସ୍ଥାନ ସମ୍ପର୍କରେ ପ୍ରାଞ୍ଜଳ ଭାବରେ ବିଭିନ୍ନ କାବ୍ୟରେ ପ୍ରକାଶ କରିଯାଇଛନ୍ତି ।ଏହା ସତ୍ତ୍ୱେ ବି ସାରଳା ଦାସଙ୍କ ଜନ୍ମସ୍ଥାନ ସମ୍ପର୍କରେ ଓଡ଼ିଆ ଗବେଷକମାନେ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହୋଇପାରିନାହାନ୍ତି ।

ସାରଳା ଦାସଙ୍କ ଉପରେ 'ଶ୍ରୀଭାରତଦର୍ପଣ' ନାମକ ଏକ ଗ୍ରନ୍ଥ ରଚନା କରିବା ସମୟରେ ପଣ୍ଡିତ ଗୋପୀନାଥ ନନ୍ଦ ମହୋଦୟ ତାଙ୍କ ଜନ୍ମସ୍ଥାନ ସମ୍ପର୍କରେ ସମ୍ୟକ୍ ଚର୍ଚ୍ଚା କରିଛନ୍ତି । ବିରାଟ ପର୍ବର ଶେଷଭାଗରେ ଥିବା ପାଠକୁ ଉଦ୍ଧାରକରି ସେ ଝଙ୍କଡ଼, ଶାରଳ,

ତେନ୍ତୁଳିଆପଦା ଓ କନକପୁର ପାଟଣା ବା ରାମପାଟଣା ଇତ୍ୟାଦି ସ୍ଥାନମାନଙ୍କୁ କବିଙ୍କର ସାମୟିକ ନିବାସ ବୋଲି ଅନୁମାନ କରିଛନ୍ତି । ପଣ୍ଡିତ ନନ୍ଦଙ୍କ ପୂର୍ବରୁ ମୃତ୍ୟୁଞ୍ଜୟ ରଥ ସାରଳାଙ୍କ ସମ୍ପର୍କରେ 'ସାରଳା ଚରିତ' ନାମକ ଏକ ଗ୍ରନ୍ଥ ରଚନାକରି ସାରଳାଙ୍କର ଜୀବନୀ ଓ ସାହିତ୍ୟର ବିସ୍ତୃତ ଆଲୋଚନା କରିଛନ୍ତି । ସାରଳାଙ୍କ ଜନ୍ମସ୍ଥାନ ସମ୍ପର୍କରେ ସଠିକ୍ ତଥ୍ୟ ଓଡ଼ିଆ ପାଠକମାନଙ୍କୁ ପ୍ରଦାନ କରିବା ପାଇଁ ସେ କେବଳ କବିଙ୍କର ରଚନା ଉପରେ ନିର୍ଭର ନକରି ଝଙ୍କଡ଼ ନିକଟସ୍ଥ ସ୍ଥାନକୁ ଯାଇଥିଲେ ଓ ଅନୁସନ୍ଧାନ ଲବ୍ଧ ତଥ୍ୟକୁ 'ସାରଳା ଚରିତ' ଗ୍ରନ୍ଥର ଜନ୍ମସ୍ଥାନ ଶୀର୍ଷକରେ ପ୍ରକାଶ କରିଥିଲେ ।

ମୃତ୍ୟୁଞ୍ଜୟ ରଥ ଲେଖିଛନ୍ତି ଯେ କବିଙ୍କର ପୂର୍ବନାମ ସିଦ୍ଧେଶ୍ୱର ପରିଡ଼ା ଥିଲା । ମହାଭାରତର ଆଦ୍ୟପର୍ବ ଓ ମଧ୍ୟପର୍ବରୁ ପଦ ଉଦ୍ଧାର କରି ସେ ଅନୁମାନ କରିଛନ୍ତି "ଚନ୍ଦ୍ରଭାଗା ନଦୀର (କନକପୁର ପାର୍ଶ୍ୱବାହିନୀ କ୍ଷୁଦ୍ରନଦୀ) ଘାଟିଆଳ ପରଶୁରାମ ତାହାଙ୍କର ଅଗ୍ରଜ ଥିଲେ । ଏହି ପରଶୁରାମ କନକାବତୀ ପାଟଣା (ଆଧୁନିକ କନକପୁର) ବସାଇଥିଲେ । ଏହି ଗ୍ରାମ କଟକରୁ ତାଳଦଣ୍ଡା ନାଳବାଟେ ପ୍ରାୟ ୧୫କ୍ରୋଶ ପୂର୍ବରେ ଅବସ୍ଥିତ । ତାହାର ଉତ୍ତର ପଶ୍ଚିମବର୍ତ୍ତୀ ଶାରଳ ନାମକ ଗ୍ରାମ (ଆଧୁନିକ ନାମ ବଡ଼ ଶାରୋଳ) କବିଙ୍କର ଆଦି ବାସସ୍ଥାନ ଥିଲା । ଆହୁରି ମଧ୍ୟ କବିଙ୍କର ପରମାରାଧ ଶାରଳା ଦେବୀଙ୍କର ମନ୍ଦିର ପ୍ରଥମେ ଏହି ଗ୍ରାମରେ ଥିଲା । ଏହି ମତକୁ ପୁଷ୍ଟକରିବା ପାଇଁ ମୃତ୍ୟୁଞ୍ଜୟ ରଥ ଆଦ୍ୟପର୍ବରୁ ଯେଉଁ ଉଦାହରଣଟି ଦେଇଥିଲେ, ତାହା ହେଲା-

ନୀଳ ସୁନ୍ଦର ଗିରି ଉତ୍ତର ଦିଗ କୋଣେ
ସାରସ୍ୱତ ଭୂମି ଭ୍ରତଖଣ୍ଡ ଅଇଶାନ୍ୟେ
ଚନ୍ଦ୍ରଭାଗା ବୋଲି କରି ନଦୀ ଏକ ଗୋଟି
ବୃଦ୍ଧମାତାଙ୍କ ପାରୁଶେ ମହୋଦଧି ଭେଟି
ସେ ନଦୀ ତୀରରେ ପର୍ଶୁରାମ ଯେ ଘାଟଇ
କନକାବତୀ ନାମେ ପାଟଣା ପ୍ରକାଶଇ
ତା ଉତ୍ତରେ ଅନୁଜ ଶରଳ ବୋଲି ଗ୍ରାମେ
ବିଜୟେ ମାହେଶ୍ୱରୀ ଶାରଳା ଚଣ୍ଡୀନାମେ ।

ବିଭିନ୍ନ ପୋଥିରେ ଏହି ପଦଟି ରହିଥିଲେ ମଧ୍ୟ କେଉଁଠି କେଉଁଠି ସାମାନ୍ୟ ପରିବର୍ତ୍ତିତ ହୋଇଯାଇଛି । ପୁଣି ସାରଳାଙ୍କ ଜନ୍ମସ୍ଥାନ ସମ୍ପର୍କରେ ଯେଉଁ ଗବେଷକମାନେ ଚର୍ଚ୍ଚା କରିଛନ୍ତି ସମସ୍ତେ ଏହି ପଦକୁ ଉଦ୍ଧାର କରିଛନ୍ତି । ପୁଣି ସମସ୍ତେ ଏହି ପଦକୁ ଅର୍ଥକରି କହିଛନ୍ତି ଯେ ନୀଳ ସୁନ୍ଦର ଗିରିର ଉତ୍ତର କୋଣରେ ଚନ୍ଦ୍ରଭାଗା ନଦୀ ବୋହି ଯାଉଛି । ଏହି ଚନ୍ଦ୍ରଭାଗା ନଦୀ ବୃଦ୍ଧମାତା ନଦୀ ସହିତ ମିଶି ସମୁଦ୍ରରେ ପଡ଼ିଛି । ଚନ୍ଦ୍ରଭାଗା ନଦୀତୀରରେ ପର୍ଶୁରାମ ବୋଲି ଗୋଟିଏ ଘାଟ ଅଛି । ପର୍ଶୁରାମ ଘାଟ ପାଖରେ କନକାବତୀ ନାମରେ ଏକ ପାଟଣା ଓ ଶାରୋଳା ନାମରେ ଗୋଟିଏ ଗ୍ରାମ ରହିଛି । ସେହି ସ୍ଥାନଟି ସାରଳା ଦାସଙ୍କର ଜନ୍ମସ୍ଥଳୀ ।

ଚନ୍ଦ୍ରଭାଗା ଓ ବୃଦ୍ଧମାତା ନଦୀ ବ୍ୟତୀତ ସାରଳାଦାସ ତାଙ୍କ ଜନ୍ମସ୍ଥାନର ନିକଟବର୍ତ୍ତୀ ଆଉ ଦୁଇଗୋଟି ନଦୀକଥା ଉଲ୍ଲେଖ କରିଛନ୍ତି । ତନ୍ମଧ୍ୟରୁ ଗୋଟିଏ ହେଲା ଚିତ୍ରୋତ୍ପଳା ଓ ଅନ୍ୟଟି ପ୍ରାଚୀ । ବୈତରଣୀ ନଦୀକଥା ସାରଳା ଦାସ ମହାଭାରତରେ ବାରମ୍ବାର ଉଲ୍ଲେଖ କରିଥିଲେ ମଧ୍ୟ ଏହି ନଦୀ ତାଙ୍କ  ଜନ୍ମସ୍ଥାନର ନିକଟବର୍ତ୍ତୀ ବୋଲି କେଉଁଠାରେ କହିନାହାନ୍ତି । ଜନ୍ମସ୍ଥାନ ଓ ନିକଟବର୍ତ୍ତୀ ଗ୍ରାମ ଭାବରେ ସାରଳା ଦାସ ସାରୋଳା, ଜଙ୍ଘେରପୁର ଓ କନକାବତୀ ପାଟଣା କଥା ଉଲ୍ଲେଖ କରିଛନ୍ତି । ସାରଳାଙ୍କ ଜନ୍ମସ୍ଥାନ ସମ୍ପର୍କରେ ଚର୍ଚ୍ଚା କରିବାକୁ ହେଲେ ଆମକୁ ଗ୍ରାମନିକଟରେ କୌଣସି ଏକ ନଦୀ ପ୍ରବାହିତ ହେଉଥିବାର ଦେଖାଇବାକୁ ପଡ଼ିବ ଅଥବା ନଦୀ ପ୍ରବାହିତ ହେଉଥିବା ସ୍ଥଳରେ ଏହିପରି ଏକ ଗ୍ରାମର ଉପସ୍ଥିତିକୁ ପ୍ରଦର୍ଶନ କରିବାକୁ ପଡ଼ିବ ।

ପଣ୍ଡିତ ମୃତ୍ୟୁଞ୍ଜୟ ରଥ ତାଙ୍କର ଗବେଷଣାଲବ୍ଧ ଜ୍ଞାନବଳରେ ପାଠକମାନଙ୍କୁ ଜଣାଇବାକୁ ଚାହିଁଛନ୍ତି ଯେ ସାରଳାଙ୍କର ଅଗ୍ରଜ ପରଶୁରାମ କନକପୁର ପାର୍ଶ୍ୱରେ ବୋହି ଯାଉଥିବା ଚନ୍ଦ୍ରଭାଗା ନାମକ ଏକ କ୍ଷୁଦ୍ର ନଦୀରେ ଘାଟିଆଳ ଥିଲେ ଓ ସେ କନକବତୀ ପାଟଣା ବସାଇଥିଲେ । କନକପୁରର ଉତ୍ତର ପଶ୍ଚିମ କୋଣରେ ଶାରଳ ନାମକ ଏକ ଗ୍ରାମଥିଲା ଯେଉଁଠାରେ ସାରଳା ଦାସ ଜନ୍ମ ଗ୍ରହଣ କରିଥିଲେ । କନକପୁରର ଏକ କ୍ରୋଶ ଉତ୍ତରରେ ତେନ୍ତୁଳିଆପଦା ନାମକ ଗ୍ରାମର ପଶ୍ଚାଦ୍‌ଭାଗରେ ବୃଦ୍ଧନଦୀ ଯାହାକୁ ଏବେ ବୁଢ଼ନଇ ବୋଲି କୁହାଯାଉଛି, ପ୍ରବାହିତ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତରେ ସାରଳା ଦାସ ଶାରଳ ଗ୍ରାମରେ ଜନ୍ମ ହୋଇଥିଲେ ମଧ୍ୟ ସେ କିଛିଦିନ

ତେନ୍ତୁଳିଆପଦାଠାରେ ଓ କିଛିଦିନ  ରାହାମାଠାରେ ଅବସ୍ଥାନ କରିଥିଲେ ।

ରାହାମାଠାରେ ସାରଳା ଦାସ ଅବସ୍ଥାନ କରୁଥିବା କାଳରେ ସାରଳା ଦାସଙ୍କ ନାମରେ ଲୋକ ମୁଖରେ ପ୍ରଚଳିତ ଏକ କିମ୍ବଦନ୍ତୀକୁ ପଣ୍ଡିତ ରଥ ସାରଳା ଚରିତରେ ଉଲ୍ଲେଖ କରିଛନ୍ତି । କିମ୍ବଦନ୍ତୀଟି ହେଲା ରାହାମାରେ ଅବସ୍ଥାନ କାଳରେ କବି ସ୍ୱପ୍ନ ଦେଖିଲେ ଯେ ରାତିରେ ତାଙ୍କୁ ସ୍ୱପ୍ନରେ ଦେବୀ କହୁଛନ୍ତି, ତୁ ଯଦି ସେଠାରେ ରହୁଛୁ ତ ମୋତେ ବି ସେଠାକୁ ନେଇଚାଲ । କେମିତି ଆସିବ ବୋଲି ପଥ ପଚାରିବାରୁ ଦେବୀ କହିଲେ ତୁ ପଛକୁ ନ ଚାହିଁ ଆଗେ ଆଗେ ଚାଲ, ମୁଁ ପଛେ ପଛେ ଯାଉଛି । ଯେଉଁଠାରେ ଗୋଟିଏ ବକ ସଞ୍ଚାଣ ଧରିଥିବାର ଦେଖିବୁ ସେହିଠାରେ ମନ୍ଦିର ନିର୍ମାଣ କରିବୁ । ସେହି ଅନୁସାରେ କବି ଆଗେ ଆଗେ ଚାଲିଥିଲେ ଓ ଦେବୀ ପଛେ ପଛେ ଚାଲିଥିଲେ । କିଛି ଦୂର ଯାଇ ରହସ୍ୟ ଜାଣିବା ପାଇଁ କବି ପଛକୁ ଚାହିଁ ଦେବାରୁ ଦେଖିଲେ ଦେବୀ ଆଗକୁ ଆଗକୁ ନ ଯାଇ ସେହିଠାରେ ସ୍ଥିର ହୋଇଯାଇଛନ୍ତି । କବି ଆଗକୁ ଆଉ କିଛିବାଟ ଆଗେଇ ଯାଇ ଦେଖିଲେ ଗୋଟିଏ ପଡ଼ିଆରେ ସ୍ୱପ୍ନାନୁରୂପ ବକଟିଏ ସଞ୍ଚାଣ ଧରିଅଛି । କବି ସେହିଠାରେ ମନ୍ଦିର ନିର୍ମାଣର ବ୍ୟବସ୍ଥା କରିଥିଲେ ।

ମୃତ୍ୟୁଞ୍ଜୟ ରଥ ସାରଳାଙ୍କର ଜନ୍ମସ୍ଥାନକୁ ଯେଉଁପରି ଭାବରେ ବର୍ଣ୍ଣନା କରିଥିଲେ ଗୋପୀନାଥ ମହାନ୍ତିଙ୍କ ପ୍ରବନ୍ଧ ରଚନାକାଳ ପର୍ଯ୍ୟନ୍ତ ଅନ୍ୟମାନେ ବି ତାହା ଗ୍ରହଣ କରିନେଇଥିଲେ । ଜଙ୍ଖେରପୁର କାଳକ୍ରମେ ପରିବର୍ତ୍ତିତ ହୋଇ ଝଙ୍କଡ଼ ନାମରେ ପରିଚିତ ହୋଇଛି ଓ ଝଙ୍କଡ଼ର ସାରଳା ଦେବୀ ହିଁ କବିବନ୍ଦିତ ସାରଳାଦେବୀ ବୋଲି ସମସ୍ତେ ଗ୍ରହଣ କରିନେଇଥିଲେ । ମାତ୍ର ଗୋପୀନାଥ ମହାନ୍ତି ଝଙ୍କାର ଅଷ୍ଟମ ବର୍ଷ ଦ୍ୱିତୀୟ ସଂଖ୍ୟା (୧୯୫୬)ରେ 'ସାରଳା ଦାସଙ୍କର ଘର କେଉଁଠି' ବୋଲି ପ୍ରବନ୍ଧଟିଏ ଲେଖିଦେଲାପରେ ସାରଳା ଦାସଙ୍କର ପ୍ରଚଳିତ ଜନ୍ମସ୍ଥାନ ସମ୍ପର୍କରେ ସନ୍ଦେହ ଆସିଗଲା ।

ଗୋପୀନାଥ ମହାନ୍ତିଙ୍କ ମତରେ ପୁରୀର ଉତ୍ତର ପୂର୍ବ ଦିଗରେ ଚନ୍ଦ୍ରଭାଗା ନଦୀ ବୋହିଯାଇଛି । ଚନ୍ଦ୍ରଭାଗା ଓ ବୃଦ୍ଧାମାତା ନଦୀ ଯେଉଁଠାରେ ମିଳିତ ହୋଇଛନ୍ତି ସେହି ମୁହାଣ ନିକଟରେ କଣିଆ ବୋଲି ଗୋଟିଏ ଜନପଦ ରହିଛି । କଣିଆ କନକପୁରର ଅପଭ୍ରଂଶ । ସାରଳା ଦାସ ସେହି କନକପୁରରେ ଜନ୍ମଗ୍ରହଣ କରିଥିଲେ । ଗୋପୀନାଥ ମହାନ୍ତିଙ୍କ ମତରେ ବୃଦ୍ଧାମାତା ବୋଲି ଯେଉଁ ବୁଢ଼ ନଈକୁ କୁହାଯାଉଛି ତାହାର ଚନ୍ଦ୍ରଭାଗା ବା ପ୍ରାଚୀନଦୀ ସହିତ କୌଣସି ସମ୍ପର୍କ ନାହିଁ । ମୁନି ଗୋସେଇଁ ମଠ ନାମରେ ଯେଉଁ ସାରଳା ଦାସଙ୍କୁ ଚିହ୍ନିତ କରାଯାଉଛି ଅନ୍ୟ କୌଣସି ମୁନିଙ୍କ ନାମରେ ସେହି ମଠଟି ହୋଇପାରେ । ଝଙ୍କଡ଼, ସାରଳା ଓ କନକପୁର ପ୍ରଭୃତି ଗ୍ରାମନାମକୁ ପରବର୍ତ୍ତୀ ସମୟରେ କେହି ପ୍ରଦାନ କରିଥାଇପାରନ୍ତି ।

ତାଙ୍କର ଯୁକ୍ତିକୁ ସିଦ୍ଧ କରିବାପାଇଁ ଉପରୋକ୍ତ ପ୍ରବନ୍ଧରେ ଗୋପୀନାଥ ମହାନ୍ତି ଲେଖିଥିଲେ - ହଜାରେରୁ ବେଶୀ ବର୍ଷ ବୋହିଗଲାପରେ ନଈ ପୋତି ହୋଇଗଲାପରେ ପୃଥିବୀରେ ଏତେ ପରିବର୍ତ୍ତନ ଘଟିଗଲା ପରେ ଅମୁକ ଲୋକ ସାରଳା ଦାସଙ୍କ ବଂଶଧର ବୋଲି ବିନା ପ୍ରମାଣରେ କହିବା କି ଭାବିବା ହାସ୍ୟାସ୍ପଦ, ତହିଁରୁ ଆମୋଦ ମିଳବ, ସତ୍ୟ ନୁହେଁ । ଉପଯୁକ୍ତ ପ୍ରମାଣ ନଥାଇ ଭୁଗୋଳର ନିର୍ଦ୍ଦେଶ ବିରୁଦ୍ଧରେ ଯାଇ ଝଙ୍କଡ଼କୁ ହିଁ ସାରଳା ଦାସ ବର୍ଣ୍ଣନା କରିଥିବା ଜଂଖେର ଓ କନକପୁରକୁ ତାଙ୍କ ଘର ବୋଲି ଭାବିବାବି ସେହିପରି ଅନ୍ଧବିଶ୍ୱାସ । ଏଭଳି ବି ବିଶ୍ୱାସ କରାଯାଇପାରେ ଯେ ପ୍ରାଚୀନଦୀ ଜଙ୍ଖେରଗଡ଼ର ସାରୋଳାଚଣ୍ଡୀଙ୍କ ଦେଉଳକୁ ଓ କନକାବତୀ ବା କଣୟଗ୍ରାମରେ ସାରଳା ଦାସଙ୍କ ଆଦିଠାବକୁ ଉଦରସ୍ଥ କରିସାରିବାର କିଛିବର୍ଷ ଅତିବାହିତ ହେଲାପରେ କୌଣସି ସାରଳା ମହାଭାରତପ୍ରେମୀ ବାବାଜି ବା ମୁନି ଝଙ୍କଡ଼ରେ ସାରଳା ଠାକୁରାଣୀଙ୍କ ପ୍ରତିଷ୍ଠା କରିଥିଲେ ଓ ସେହିପାଖରେ ତାଙ୍କର 'ମୁନିଗୋସେଇଁ' ମଠ ବସାଇଥିଲେ । ସାରଳା ଦାସଙ୍କ ସ୍ମୃତିକୁ ପୁନରୁଜ୍ଜୀବିତ କରିବା ଉଦ୍ଦେଶ୍ୟରେ ଲୁପ୍ତ 'ଜଙ୍ଖେର' ଗଡ଼ର ନାମାନୁସାରେ ସେ ଗ୍ରାମର ନାଁ ରଖିଲେ ଝଙ୍କଡ଼ । ଠାକୁରାଣୀଙ୍କ ନାମ ରଖିଲେ ସାରଳା ଓ ସେହି ପାଖ ଗ୍ରାମର ନାମ ରଖିଲେ କନକପୁର । ଚନ୍ଦ୍ରଭାଗା, ମହୋଦଧି, ଗଙ୍ଗାମାତା ମୁହାଣ ଇତ୍ୟାଦି ସ୍ଥାପନ କରିବା ତାଙ୍କ ପକ୍ଷରେ ଅସମ୍ଭବ ବୋଲି ସେ ନିଶ୍ଚୟ ଜାଣିଥିବେ । କାରଣ ସେସବୁ ଭୁଗୋଳର ପରିଚିତ ସ୍ମୃତିସ୍ତମ୍ଭ ପରି । ତେଣୁ ସେଭଳି ନାଆଁ ସେ ଦେଲେନାହିଁ । ସେ ମୁନି ହେଲେ ବି ମଠାଧୀଶ ବୋଧେ ହୋଇଥିବେ, ଯାହା ସାରଳା ଦାସେ କେବେ ନଥିଲେ । ସାରଳା ଠାକୁରାଣୀଙ୍କୁ ସେ ସେଠି ପ୍ରତିଷ୍ଠା କରିଥିବାରୁ ତାଙ୍କ ବନ୍ଧୁବାନ୍ଧବଙ୍କର ସେଠି ସେବା ଅଧିକାର ରହିଥିବା ସ୍ୱାଭାବିକ ଓ ସେମାନେ ଆପଣାକୁ 'ମୁନି' ବୋଲି କହିଥିବା ମଧ୍ୟ ସ୍ୱାଭାବିକ । ଏ କେବଳ ଏକ କଳ୍ପନା, ସତ୍ୟ ନୁହେଁ । କିନ୍ତୁ ଏ କଳ୍ପନା ଚନ୍ଦ୍ରଭାଗା ସମୁଦ୍ରକୂଳ ମୁହାଁଣ, ଗୋମୁଖୀ କେଶବ, ଚିତ୍ରୋତ୍ପଳା ଉତ୍ପଳେଶ୍ୱର କାକଟପୁର ମଙ୍ଗଳାଙ୍କ ଦକ୍ଷିଣ ପଟ, ପୁରୀର ଉତ୍ତରପୂର୍ବ ପଟ ଇତ୍ୟାଦି ବିଦ୍ୟମାନ ନଥାଇ ଝଙ୍କଡ଼ର ସାରଳାଙ୍କୁ ମହାଭାରତକାରଙ୍କ ଆରାଧ୍ୟ ସାରୋଳାଚଣ୍ଡୀ କହିବା ଅପେକ୍ଷା ଅଧିକତର ବିଶ୍ୱାସଯୋଗ୍ୟ ।

ଗୋପୀନାଥ ମହାନ୍ତିଙ୍କ ପ୍ରବନ୍ଧ ପ୍ରକାଶ ପାଇବାପରେ ସାରଳା ଦାସଙ୍କ ଜନ୍ମସ୍ଥାନ କେଉଁଠି ବୋଲି ଏକ ସ୍ଥାୟୀ ସିଦ୍ଧାନ୍ତରେ ଉପନୀତ ହୋଇ ହେଲାନାହିଁ । ଯେଉଁମାନେ ଝଙ୍କଡ଼ ସନ୍ନିକଟ ସାରଳା ଦାସଙ୍କର ଘର ବୋଲି କହିଲେ ସେମାନଙ୍କ ନିକଟରେ ଚନ୍ଦ୍ରଭାଗା, ପ୍ରାଚୀ, ଚିତ୍ରୋତ୍ପଳା ଆଦି ନଦୀ ନଥିଲା । ଯେଉଁମାନେ କାକଟପୁର ସମୀପବର୍ତ୍ତୀ କୌଣସି ସ୍ଥାନରେ ସାରଳାଙ୍କର ଘର ବୋଲି କହିଲେ ସେମାନଙ୍କ ନିକଟରେ ବି ନଦୀ ନଥିଲା । କାରଣ ଚନ୍ଦ୍ରଭାଗା ଓ ପ୍ରାଚୀ କେବେଠାରୁ ପୋତି ହୋଇଯାଇଥିଲା । ପୁଣି ସେମାନଙ୍କ ନିକଟରେ ଜଙ୍ଖେରପୁର ବା ସାରୋଳ ପରି ଗ୍ରାମ ମଧ୍ୟ ନଥିଲା ।

ସାରଳାଙ୍କ ଘର ସମ୍ପର୍କରେ ଗୋପୀନାଥ ମହାନ୍ତିଙ୍କର ନୂତନ ତଥ୍ୟକୁ ଓଡ଼ିଶାର ଅନ୍ୟ ଗବେଷକମାନେ ସହଜରେ ଗ୍ରହଣ କରିପାରିଲେ ନାହିଁ । ଝଙ୍କାରର ଅଷ୍ଟମବର୍ଷ ୨ୟ ସଂଖ୍ୟାରେ ଗୋପୀନାଥ ମହାନ୍ତିଙ୍କ ପ୍ରବନ୍ଧ ପ୍ରକାଶିତ ହୋଇଗଲାପରେ ସେହି ଝଙ୍କାରର ଅଷ୍ଟମବର୍ଷ ୫ମ ସଂଖ୍ୟାରେ ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସେହି ପ୍ରବନ୍ଧର ପ୍ରତିବାଦରେ "ସାରଳାଦାସଙ୍କ ଘର କେଉଁଠି ?" ଶିରୋନାମାରେ ପ୍ରବନ୍ଧଟିଏ ପ୍ରକାଶ କରିଥିଲେ । ସେହି ପ୍ରବନ୍ଧରେ ସେ ଚାରିଗୋଟି ପୋଥିରୁ ସାରଳାଦାସଙ୍କ ଆତ୍ମପକ୍ଷ ବିବୃତି ସଂଗ୍ରହ କରି ଗୋପୀନାଥ ମହାନ୍ତିଙ୍କ ପ୍ରଦତ୍ତ ସମସ୍ତ ଯୁକ୍ତିକୁ ଖଣ୍ଡନ କରିଥିଲେ । ସମସ୍ତ ପ୍ରମାଣକୁ ଏକତ୍ର ଆଲୋଚନା କରି ସେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ ସାରଳାଦେବୀଙ୍କ ଘର ତଥା ସାରଳାଦେବୀଙ୍କ ପୀଠ ଚନ୍ଦ୍ରଭାଗା ବା ବୃଦ୍ଧମାତା ନଦୀ କୂଳରେ ଜଙ୍ଖେର ଗ୍ରାମରେ ଅବସ୍ଥିତ ଥିଲା । ଏହା ପାଖରେ ଥିଲା ପରଶୁରାମ ପାଟଣା ଓ କନକାବତୀ ନଗର । ବୃଦ୍ଧମାତାନଦୀ ଚିତ୍ରୋତ୍ପଳା ସହିତ ମିଶି ସମୁଦ୍ରରେ ପଡ଼ିଥିଲା । ସାରଳା ଦାସଙ୍କ ଘର ଯେ ବିରଜା ମଣ୍ଡଳରେ ଥିଲା ଏହା ମଧ୍ୟ ଡ. ପାଣିଗ୍ରାହୀ ପ୍ରମାଣ କରିଥିଲେ ।

ଝଙ୍କାରର ସେହି ଅଷ୍ଟମ ବର୍ଷ ୫ମ ସଂଖ୍ୟାରେ ଡ. ବଂଶୀଧର ମହାନ୍ତି ମଧ୍ୟ 'ସାରଳା ଦାସଙ୍କ ଘର ଝଙ୍କଡ଼ ନା କଣିଆ' ନାମରେ ଏକପ୍ରବନ୍ଧ ପ୍ରକାଶ କରିଥିଲେ । ଏହି ପ୍ରବନ୍ଧରେ ସେ ଗୋପୀନାଥ ମହାନ୍ତିଙ୍କର ସମସ୍ତ ଯୁକ୍ତିକୁ କାଟି ତାଙ୍କୁ ଝଙ୍କଡ଼ର ବାସିନ୍ଦା ଭାବରେ ପୁନଶ୍ଚ ପ୍ରତିଷ୍ଠିତ କରିଥିଲେ । ଝଙ୍କଡ଼ ନିକଟରେ ଚନ୍ଦ୍ରଭାଗା ନଦୀ ପ୍ରବାହିତ ହେଉଥିବାର ପ୍ରମାଣ ଦେଇ ପ୍ରବନ୍ଧର ଶେଷରେ ସେ କହିଥିଲେ ଯେ ଐତିହାସିକ ସାରଳା ମନ୍ଦିର, ସ୍ଥାନ ନାମ, କିମ୍ବଦନ୍ତୀ ଓ ବଂଶ ପରମ୍ପରା ପ୍ରଭୃତି ପ୍ରମାଣରୁ ସାରଳା ଦାସଙ୍କୁ କଟକ ଜିଲ୍ଲା ତିର୍ତ୍ତୋଲ ଥାନା ଝଙ୍କଡ଼ ପ୍ରଗଣାର ବାସିନ୍ଦା କହିବା ଦ୍ୱିରୁକ୍ତି ମାତ୍ର ।

ଡ. ମହାନ୍ତି ଓ ଡ. ପାଣିଗ୍ରାହୀଙ୍କ ପ୍ରବନ୍ଧ ପ୍ରକାଶିତ ହେବାର ଚାରିମାସ ପରେ ଅର୍ଥାତ୍ ଝଙ୍କାର ୮ମବର୍ଷ ୯ମ ଓ ୧୦ମ ଦୁଇଗୋଟି ସଂଖ୍ୟାରେ ଅଚ୍ୟୁତାନନ୍ଦ ଦାସ ନାମକ ଜଣେ ଗବେଷକ 'ସାରଳା ଦାସଙ୍କ ଆବିର୍ଭାବ ସ୍ଥାନ ଓ ସମୟ' ଶୀର୍ଷକରେ ଏକ ବିସ୍ତୃତ ପ୍ରବନ୍ଧ ପ୍ରକାଶ କରିଥିଲେ । ଏହି ପ୍ରବନ୍ଧରେ ମଧ୍ୟ ଅଚ୍ୟୁତାନନ୍ଦ ଗୋପୀନାଥ ମହାନ୍ତିଙ୍କର ଝଂକାର ଓ ଡଗରରେ ପ୍ରକାଶିତ ଦୁଇଗୋଟି ପ୍ରବନ୍ଧରେ ଥିବା ମତକୁ ଯୁକ୍ତି ବଳରେ ଖଣ୍ଡନ କରିଥିଲେ । ଅଚ୍ୟୁତାନନ୍ଦ ବୁଡ଼ନଈକୁ ବୃଦ୍ଧ ମାତାଙ୍ଗୀ ଓ କନକପୁର ନିକଟରେ ପ୍ରବାହିତ ନଦୀକୁ ଚନ୍ଦ୍ରଭାଗା ନାମରେ ଚିହ୍ନିତ କରିଥିଲେ । ପ୍ରାବନ୍ଧିକଙ୍କ ମତରେ ବଡ଼ ସାରୋଳ ଗ୍ରାମଟି ସାରଳା ଚଣ୍ଡୀଙ୍କ ଆଦିପୀଠ । ମନ୍ଦିରଟି ଏହି ସ୍ଥାନରୁ ସ୍ଥାନାନ୍ତରିତ ହୋଇଯାଇଥିଲେ ମଧ୍ୟ ନଣ୍ଡାଦେଉଳ ନାମରେ ତାହା ଆଜି ମଧ୍ୟ ପରିଚିତ । ମୁସଲମାନଙ୍କ ଦାଉରୁ ହିନ୍ଦୁ ଦେବାଦେବୀଙ୍କୁ ରକ୍ଷା କରିବା ପାଇଁ ମାନସିଂହ ସେଠାରେ ରାଜପୁତ ବସ୍ତି ବସାଇଥିଲେ । ରାଜପୁତମାନଙ୍କର ଇଷ୍ଟଦେବୀ ସାରଳାଚଣ୍ଡୀ ।

ସାରଳାଙ୍କ ସମ୍ପର୍କରେ ଯେଉଁ ଗବେଷକମାନେ ଆଲୋଚନା କରିଛନ୍ତି ପ୍ରାୟ ସମସ୍ତେ ତାଙ୍କ ଜନ୍ମସ୍ଥାନ ସମ୍ପର୍କରେ କିଞ୍ଚିତ ସୂଚନା ପ୍ରଦାନ କରିଛନ୍ତି । ଅଧିକାଂଶ ଗବେଷକ ଝଙ୍କଡ଼ ନିକଟରେ ତାଙ୍କର ଘର ବୋଲି ମତ ପ୍ରକାଶ କରିଛନ୍ତି । ଐତିହାସିକ କୈଳାସଚନ୍ଦ୍ର ଦାଶ ୨୦୧୭ ମସିହା ଝଂକାରର ୬୯/୧ ସଂଖ୍ୟାରେ 'ସାରଳା ଦାସଙ୍କ ଜନ୍ମସ୍ଥାନ' ପ୍ରବନ୍ଧରେ ଓ ୨୦୧୯ ମସିହା, ଝଂକାର ପୂଜା ସଂଖ୍ୟାରେ 'ସିଦ୍ଧ ସାରୋଳ ଚଣ୍ଡୀ ଓ ବୃଦ୍ଧମାତା : ଏକ ସଦ୍ୟ ପରିକ୍ରମା' ପ୍ରବନ୍ଧରେ ସାରଳାଙ୍କ ଜନ୍ମସ୍ଥାନ ପ୍ରସଙ୍ଗକୁ ବହୁ ଦୃଷ୍ଟିକୋଣରୁ ଆଲୋଚନା କରି ତାଙ୍କର ଜନ୍ମସ୍ଥାନକୁ ଝଂକଡ଼ଠାରୁ ବହୁଦୂରକୁ ନେଇ ଯାଇଛନ୍ତି । ଶ୍ରୀ ଦାଶ ସିଦ୍ଧାନ୍ତରେ ଉପନୀତ ହୋଇ ପ୍ରକାଶ କରିଛନ୍ତି ଯେ ସାରଳା ମହାଭାରତ ବର୍ଣ୍ଣିତ କେତେକ ପ୍ରସଙ୍ଗରୁ ଏକଥା ସ୍ୱଷ୍ଟ ଯେ ସିଦ୍ଧ ସାରୋଳା ଚଣ୍ଡୀଙ୍କ ସ୍ଥାନ ଜଂଖେରପୁର ଚନ୍ଦ୍ରଭାଗା ପ୍ରବାହିତ ଅଂଚଳରେ ଥିଲା ଏବଂ ସେହି ଜଂଖେରପୁର ମଧ୍ୟଯୁଗରେ ପ୍ରସିଦ୍ଧ ଜଂଖେର ବା ବର୍ତ୍ତମାନର ଝଂକଡ଼ ହୋଇ ନପାରେ ।

ମୁଁ କୌଣସି ଐତିହାସିକ ନୁହେଁ ଯେ ଐତିହାସିକ ତଥ୍ୟର ଆଧାରରେ ସାରଳା ଦାସଙ୍କ ଜନ୍ମସ୍ଥାନ ବିଷୟରେ କଳନା କରିପାରିବି । କିମ୍ବା ସ୍ଥାନ ଉପରେ ପୁଙ୍ଖାନୁପୁଙ୍ଖ ଧାରଣା ରଖିଥିବା କୌଣସି ଗବେଷକ ନୁହେଁ ଯେ ସଂପ୍ରତି ଯାହା ନାହିଁ ତାହା ପୂର୍ବେ ଥିଲା ବୋଲି ଶାସ୍ତ୍ରକୁ ଉଦ୍ଧାର କରି ପ୍ରମାଣ କରିପାରିବି । ଗବେଷକମାନଙ୍କ ପାଇଁ ମୁଁ କେତେଗୋଟି ସୂଚନା ମାତ୍ର ପ୍ରଦାନ କରିବି, ଯାହାକୁ ତର୍ଜମାକଲେ ସାରଳା

ଦାସଙ୍କ ଜନ୍ମସ୍ଥାନ ନିରୂପଣରେ ତାହା ସହାୟକ ହୋଇପାରିବ । ଏଠାରେ ସେହିପରି ପାଞ୍ଚଗୋଟି ସୂଚନା ପ୍ରଦତ୍ତ ହେଉଛି, ସାରଳାଦାସଙ୍କ ଜନ୍ମସ୍ଥାନ ପ୍ରସଙ୍ଗ ଆଲୋଚନା କଲାବେଳେ ଗବେଷଣା କ୍ଷେତ୍ରରେ ତାହା ସହାୟକ ହୋଇପାରିବ । ସେହି ପାଞ୍ଚଗୋଟି ହେଲା- (୧) ସାରଳା ଦାସ ନିଜେ ରଚନା କରିଥିବା ତାଙ୍କର ଜନ୍ମ ଚରିତ (୨) ଅପରଙ୍କଦ୍ୱାରା ରଚିତ ତାଙ୍କର ଜନ୍ମଚରିତ (୩) ମହାଭାରତରେ ସାରଳା ଦାସ ଗୁରୁତ୍ୱ ପ୍ରଦାନକରି ବାରମ୍ବାର ଉଲ୍ଲେଖ କରିଥିବା ସ୍ଥାନ (୪) ଶ୍ରୀଚଣ୍ଡୀ ସାରୋଳା ଓ ଜଂଖେରପୁରବାସୀ ମଧ୍ୟରେ ପାର୍ଥକ୍ୟ (୫) ବ୍ୟବହାର କରିଥିବା କେତେକ ଶବ୍ଦରୁ ଜନ୍ମସ୍ଥାନ ସହ ସମ୍ପର୍କ ।

**(୧) ସାରଳା ଦାସ ନିଜେ ରଚନା କରିଥିବା ତାଙ୍କର ଜନ୍ମ ଚରିତ :** ସାରଳା ଦାସ ନିଜେ ତାଙ୍କର ଜନ୍ମସ୍ଥାନ ସମ୍ପର୍କରେ ଯେଉଁ ସୂଚନାମାନ ପ୍ରଦାନ କରିଛନ୍ତି ପ୍ରାୟ ପ୍ରତ୍ୟେକ ଗବେଷକ ତାହାକୁ ଉଦ୍ଧାର କରି ଆଲୋଚନା କରିଛନ୍ତି । ମାତ୍ର ଆର୍ତ୍ତବଲ୍ଲଭ ମହାନ୍ତିଙ୍କଦ୍ୱାରା ସମ୍ପାଦିତ ସାରଳା ମହାଭାରତର ଆଦିପର୍ବର ପରିଶିଷ୍ଟ ଭାବରେ 'ସାରଳା ଦେବୀଙ୍କ ବନ୍ଦନା' ଶୀର୍ଷକରେ ଏକ କାହାଣୀ 'ଦ' ପୋଥିରୁ ପାଠୋଦ୍ଧାର କରି ପ୍ରକାଶ କରାଯାଇଛି । କାହାଣୀପରି ପ୍ରଦାନ କରାଯାଇଥିବା ତାଙ୍କର ନିଜ କଥାକୁ ଗବେଷକମାନେ ବୋଧହୁଏ ତାଙ୍କର ଗବେଷଣା ପରିସର ଅନ୍ତର୍ଭୁକ୍ତ କରିନାହାନ୍ତି । ଦୁଇଶହ ଚଉଷଠି ପଦବିଶିଷ୍ଟ ଏହି କାହାଣୀକୁ ପାଠକମାନଙ୍କ ଅବଗତି ନିମିତ୍ତ ଏଠାରେ ପ୍ରଦାନ କରାଯାଉଛି ।

ସଂସାରରେ ଯେତେକ ଦେବାଦେବୀ ପୂଜା ପାଉଛନ୍ତି ସମସ୍ତେ ସମସ୍ୟା ନଦେଇ ମୌନ ହୋଇ ବସି ରହିଥାଆନ୍ତି । ମାତ୍ର ଶ୍ରୀସାରୋଳାଚଣ୍ଡୀଙ୍କ ନାମକୁ ଯିଏ ସ୍ମରଣ କରନ୍ତି ସାରୋଳାଚଣ୍ଡୀ ନିଶ୍ଚୟ ତାଙ୍କୁ ସହାୟତା ପ୍ରଦାନ କରି ଥାଆନ୍ତି । ସୂର୍ଯ୍ୟଙ୍କ ଉଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଦେବୀ ତିନି ପ୍ରକାର ମୂର୍ତ୍ତି ଧାରଣ କରିଥାଆନ୍ତି । ପ୍ରଭାତ ସମୟରେ ସେ ବାଳକ ରୂପ ଧାରଣକରି ବାଳକମାନଙ୍କ ସହିତ ଖେଳିଥାଆନ୍ତି । ବାଳକ ରୂପରେ ଏକ ପ୍ରହର ଖେଳିବା ପରେ ଦେବୀ ବାଳକ ରୂପ ପରିତ୍ୟାଗ କରି ଯୁବାନାରୀ ରୂପ ଗ୍ରହଣ କରନ୍ତି ଓ ଯୁବାସ୍ତିରୀ ମାନଙ୍କ ସହିତ ମେଳି ହୁଅନ୍ତି । କାହାର ସଖୀ, କାହାର ସଙ୍ଗାତୁଣୀ ଓ କାହାର ଦାସୀ ରୂପରେ ମନ ମୋହି ଗୋଟିଏ ପ୍ରହର ପରେ ଦେବୀ ସେହି ରୂପକୁ ତ୍ୟାଗକରନ୍ତି । ଯୁବାସ୍ତିରୀ ରୂପ ତ୍ୟାଗକରି ଦେବୀ ପ୍ରାଚୀନଦୀରେ ସ୍ନାନ କରନ୍ତି ଓ ପରେ ତରୁଣୀ ରୂପ ଧାରଣ କରନ୍ତି । ସେତେବେଳେ ଦେବୀ ନାନା ଅଳଙ୍କାରରେ ଆଭରଣ ହୁଅନ୍ତି । ଶିରରେ ସିମନ୍ତିନୀ, ଗଳାରେ ମୋତିମାଳ, କର୍ଣ୍ଣରେ ସୁବର୍ଣ୍ଣକାପ, ହାତରେ ତାଡ଼ ଓ ପୟରେ ନୂପୁର ଇତ୍ୟାଦି ଧାରଣ କରନ୍ତି । ଅଷ୍ଟଭୁଜା ଦେବୀ ସିଂହ ପିଠିରେ ବିଜୟ କରନ୍ତି । ତାଙ୍କ ପାଦରେ ଡାକୁଣୀ ଓ ପିଶାଚୁଣୀମାନେ ଖଟୁଥାଆନ୍ତି । ସନ୍ଧ୍ୟା ସମୟରେ ନଗର ଭ୍ରମଣକରି ଆସି ଦେବୀ ମନ୍ଦିରରେ ବିଜୟ କରନ୍ତି । ସିଂହାସୀନ ହୋଇ ସେ ପୁରୁଷୋତ୍ତମକୁ ବିଜେକରି ଜଗନ୍ନାଥଙ୍କୁ ଦର୍ଶନ କରନ୍ତି । ଜଗନ୍ନାଥଙ୍କ ବଡ଼ସିଂହାର ବେଶ ଦେଖିସାରି ଦେବୀ ନିଜ ଆସ୍ଥାନକୁ ମେଲାଣି ହୋଇ ଆସନ୍ତି । ଏହିପରି ପ୍ରତିଦିନ କରୁଥିବା ଦେବୀଙ୍କର ପଟାନ୍ତର ନାହିଁ । କୌଣସି ରାଜା ତାଙ୍କ ପାଇଁ ଭୋଗ ଖଞ୍ଜିନାହାନ୍ତି ମାତ୍ର ଦେବୀଙ୍କର ଆଜ୍ଞାରେ ଛେଳି, ପୋରୁହ, ବୋଦା ଆଦି ବହୁ ଦୂରରୁ ଆସି ତାଙ୍କୁ ସମର୍ପିତ ହୋଇଥାଏ । କବି ଲେଖିଛନ୍ତି-

ମୁହିଁ ଯେ ସାରୋଳା ଦାସ ସେହି ଗ୍ରାମରେ ଥାଇ
ନାନା କଷ୍ଟ ପଡ଼ିଣ ଦିନ ମୁଁ ବଞ୍ଚଇ
ଜାତିରେ ଶୂଦ୍ର ମୁଂ ଯେ ଅଟଇ ମୂରୁଖ
ପାଠ ସାହାସ୍ରମାନ ମୁଂ ନଜାଣଇ ହାକ ।

ନିଜ ସମ୍ପର୍କରେ ସୂଚନାଦେଇ ସାରଳା ଦାସ କହୁଛନ୍ତି ଯେ ସେ ସାରୋଳା ଗ୍ରାମରେ ପ୍ରଧାନ ଅଟନ୍ତି । ପୁରୁଷାନୁକ୍ରମରେ ସେ ଗ୍ରାମୀଣ ଭାବରେ ଅବସ୍ଥାପିତ ଅଛନ୍ତି । ତାଙ୍କର ଇଷ୍ଟଦେବତା ସାରୋଳା ଚଣ୍ଡୀ ଓ ତାହାଙ୍କ ଚରଣରେ ସେ ସର୍ବଦା ସେବା କରୁଥାଆନ୍ତି । ନିଜର ଜୀବିକା ସମ୍ପର୍କରେ ସାରଳା ଲେଖିଛନ୍ତି ଯେ-

ଚାଷ ଚଷିଣ ଆମ୍ଭେ ନାନା କୃଷି କରି
ଧାନର ଚାଷ କାକୁଡ଼ି ମାଣ୍ଡିଆ ଆଦି କରି
ନାନା କୃଷିକରି ଦୁଃଖରେ ଦିନ ନେଉ
ଯେଥିର ଆହାଲାଦେ ଦିନ ବଞ୍ଚୁଥାଉ ।

ନିଜ ପରିବାର ସମ୍ପର୍କରେ ସୂଚନା ଦେଇ ସାରଳା ଦାସ କହିଛନ୍ତି ଯେ ତାଙ୍କ ପିତାଙ୍କର ଚାରିଗୋଟି ପୁତ୍ର । ତନ୍ମଧ୍ୟରୁ ସାରଳାଦାସ ସବୁଠାରୁ ସାନ । ପିତାମାତା ବୃଦ୍ଧ ହୋଇଯାଇଛନ୍ତି । ଜ୍ୟେଷ୍ଠ ଭାଇମାନେ ସବୁବେଳେ ଚାଷକାର୍ଯ୍ୟରେ ମନୋନିବେଶ କରୁଥାଆନ୍ତି । ସାରଳାଙ୍କୁ ସେମାନେ ଯେଉଁ କୃଷିରେ ଲଗାଇଦିଅନ୍ତି ସେ ସୁଖରେ ସେହି କାର୍ଯ୍ୟକୁ ସମ୍ପାଦନ କରନ୍ତି ।

ଏହିପରି କିଛିଦିନ ଅତିବାହିତ ହେବାପରେ ବୈଶାଖ ମାସ ଶୁକ୍ଳପକ୍ଷ ଅଷ୍ଟମୀ ମଙ୍ଗଳବାର ଉପସ୍ଥିତ ହେଲା । ସେଦିନ ପରିବେଶ ଥିଲା ଖୁବ୍ ଉତ୍ତପ୍ତ । ସାରଳାଦାସଙ୍କ ପରିବାର ପ୍ରାଚୀନଦୀର ଉତ୍ତର କୂଳରେ ଆଖୁଭୂମି ଖଣ୍ଡିଏ ଚାଷ କରୁଥିଲେ । ଭାଇମାନେ ଯନ୍ତ ବସାଇ ଆଖୁବାଡ଼ିକି ପାଣି ତଣ୍ଡୁଥାଆନ୍ତି । ତାହାର ପାଖାପାଖି ରାଜପଥ ହୋଇଥିବାରୁ ବହୁ ସଂଖ୍ୟାରେ ଲୋକ ଯାତାୟତ କରୁଥାଆନ୍ତି । ପାଣି ତେଣ୍ଡୁଥିବା ସମୟରେ ସାରଳାଦାସ ବିଭଙ୍ଗକରି ଗୀତପଦୁଟିଏ ଲେଖାଏ ଗାଇ ଦେଉଥାଆନ୍ତି । ସେହି ରାସ୍ତାରେ ଦେବୀ ଷୋଡ଼ଶୀ ରୂପଧାରଣ କରି ଆସୁଥାଆନ୍ତି । ଦେବୀଙ୍କୁ ଦେଖି ସାରଳାଦାସ ଲଜ୍ଜାପାଇ ଗୀତ ଗାଇବା ବନ୍ଦ କରିଦେଲେ । ଦେବୀ ଖଣ୍ଡେ ଦୂରଯାଇ ଯୁବାରୂପ ତ୍ୟାଗକରି ବୃଦ୍ଧାରୂପ ଧାରଣ କଲେ । ସାରଳାଙ୍କୁ ଦେଖି ଦେବୀ ପଚାରିଲେ, ତୁ ଗୀତ ଗାଉଥିଲୁ ବନ୍ଦ କଲୁ କାହିଁକି ? ସାରଳା କହୁଛନ୍ତି-

ମୁହିଂ ବୋଇଲି ମାଗୋ ଯାଉଅଛ ତୁମ୍ଭେ
କେସନେ ଭଣ୍ଡ ବିଭଣ୍ଡ ଫୁକାରିବି ତୁଣ୍ଡେ
ଯେତେକ କହି ମୁହିଂ ହୋଇଲଇଂ ତୁନି
କି ଗୀତ ଗାଇବିଯେ କହିଦିଅ ପୁଣି
ଠାକୁରାଣୀ ବୋଇଲେ ତୁ ବିଷ୍ଣୁର ଚରିତ ବଖାଣ
ତୋହର ମୁଖରେ ଅନ୍ୟକାବ୍ୟ ନଫୁରୁ ବଚନ ।

ସେହିଦିନଠାରୁ ସାରଳାଦାସ ବିଷ୍ଣୁଙ୍କର ଚରିତ ପ୍ରକାଶ କରିବାରେ ମନୋନିବେଶ କଲେ । ଏହାପରେ ସାରଳାଦାସ ତାଙ୍କର ପୂର୍ବଜନ୍ମର କଥା ପ୍ରକାଶ କରିଛନ୍ତି । ପୂର୍ବଜନ୍ମରେ ସେ କପିଳାସ ପୁରରେ ଶିବଙ୍କର ପଶ୍ଚିମଦ୍ୱାରରେ ଦ୍ୱାରପାଳଥିଲେ । ଏକଦା ପାର୍ବତୀଙ୍କର ଉଲଗ୍ନ ଶରୀର ଦେଖିବାରୁ ପାର୍ବତୀ ତାଙ୍କୁ କ୍ରୋଧରେ ମୃତ୍ୟୁମଣ୍ଡଳରେ ଜନ୍ମ ହେବ ବୋଲି ଶାପ୍ୟ ପ୍ରଦାନ କରିଥିଲେ । ଶିବ ମଧ୍ୟ ଅଳ୍ପ ଦୋଷରେ ଶାପ୍ୟ ପ୍ରଦାନରେ ଅସନ୍ତୁଷ୍ଟ ହୋଇଥିଲେ ମଧ୍ୟ ପାର୍ବତୀଙ୍କ ଶାପ୍ୟ ଯେ ଫଳିବ ଏହା ନିଶ୍ଚିତ କରିଦେଲେ । କେଉଁଠାରେ ଜନ୍ମହେବେ ବୋଲି ସାରଳା ପଚାରିବାରୁ ଶିବ କହିଲେ-

ଶୁଣି ବିଶ୍ୱନାଥେ ଅଳପ ହସିଲେ
ବୋଇଲେ ଉତ୍କଳ ଦେଶ ଓଡ଼ରାଷ୍ଟ୍ର ମଣ୍ଡଳେ
ନୀଳଗିରି ନୀଳସୁନ୍ଦର ବଟ ନିକଟର
ପ୍ରାଚୀ ନଦୀର ସେ ଯେ ଉତ୍ତର ତୀରର
ସ୍ୱର୍ଗୁ ବଳିଣ ସେ ଦେଶ ପଟାନ୍ତର ।
ତହିଂର ପଡ଼ା ଯେ ସାରୋଳା ନାମେ ଗ୍ରାମ
ତୋହରି ପିତା ତହିଂ ହୋଇବ ଗ୍ରାମୀନ
ତୋହର ନାମ ଯେ ହୋଇବ ସାରୋଳା
ଜନମୁଂ ମୁରୁଖ ବିଦ୍ୟାରେ ନାହିଂ ମେଳା ।

ଦେବୀ ସାରଳା ଓ ସାରୋଳାଦାସ ଗୋଟିଏ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ଦେବୀ ମହାଭାରତ ପୁରାଣ ଗୀତରେ ସାରଳାଙ୍କୁ କହିଦେବାରୁ ସାରଳା ତାହା ପୋଥିରେ ଲେଖିବାକୁ ସକ୍ଷମ ହୋଇଥିଲେ ।

ସାରଳାଦାସଙ୍କର ଏହି କାହାଣୀରେ ଚନ୍ଦ୍ରଭାଗା ନଦୀ କିମ୍ବା ବୃଦ୍ଧାମାତା ନଦୀର ନାମ ନାହିଁ । ପ୍ରାଚୀନଦୀର ଉତ୍ତର ତଟରେ ସାରୋଳା ନାମକ ଗ୍ରାମରେ କବିଜନ୍ମ ଗ୍ରହଣ କରିଥିଲେ ବୋଲି ଏହି ଅଧ୍ୟାୟରେ ସୂଚନା ପ୍ରଦାନ କରାଯାଇଛି । ସାରଳାଦାସଙ୍କ ଜନ୍ମସ୍ଥାନ ଚର୍ଚ୍ଚା କରିବା ସମୟରେ ଏହି ତଥ୍ୟକୁ ଗ୍ରହଣକରିବା ଏକାନ୍ତ ଆବଶ୍ୟକ ।

**(୨) ଅପରଙ୍କଦ୍ୱାରା ରଚିତ ସାରଳା ଦାସଙ୍କ ଜନ୍ମ ଚରିତ :** ଯେପରି ଦାଢ଼୍ୟତା ଭକ୍ତିଗ୍ରନ୍ଥରେ ରାମଦାସ ବିଭିନ୍ନ ବ୍ୟକ୍ତିଙ୍କର ଜୀବନୀକୁ ପଦ୍ୟାକାରରେ ଲିପିବଦ୍ଧ କରିଛନ୍ତି, ସେହିପରି ସାରଳା ଦାସଙ୍କର ଜୀବନ କାହାଣୀକୁ ମଧ୍ୟ କୌଣସି କବି ଲିପିବଦ୍ଧ କରିଯାଇଛନ୍ତି । ଶ୍ୟାମସୁନ୍ଦର ରାଜଗୁରୁ ଉତ୍କଳ ସାହିତ୍ୟର ସପ୍ତମ ବର୍ଷ ଚତୁର୍ଥ ସଂଖ୍ୟା ୧୯୦୩ ମସିହାରେ ଜଣେ କବିଙ୍କର ସାରଳାଦାସଙ୍କ ଜୀବନୀ ସମ୍ପର୍କିତ କବିତାକୁ ଉଦ୍ଧାର କରିଛନ୍ତି । ଖଣ୍ଡିଏ ହସ୍ତଲିଖିତ ପୁସ୍ତକର ପ୍ରାରମ୍ଭରେ ଲେଖାହୋଇଥିବା କବିତାକୁ ଉଦ୍ଧାରକରି ରାଜଗୁରୁ ମହାଶୟ ଏହାକୁ ଜଣେ ସାହିତ୍ୟ ଶଠର କାର୍ଯ୍ୟ ବୋଲି ଅନୁମାନ କରିଛନ୍ତି । ଏଥିରୁ ଆମେ ପ୍ରାମାଣିକତା ସଂଗ୍ରହ କରି ନପାରିଲେ ବି ଜଣେ କବି କବିତାକୁ ଲେଖିଲା ବେଳେ ସେ ଶୁଣିଥିବା କଥା ଉପରେ କିଛିଟା ଗୁରୁତ୍ୱ ଦେବା ଗବେଷକର କର୍ତ୍ତବ୍ୟ ହେବା ଉଚିତ । ସେହି ହାତ ଲେଖାଟି ମଧ୍ୟ କୌଣସି ଜଣେ ପ୍ରାଚୀନ କବିଙ୍କର । ସେହି ଦୃଷ୍ଟିରୁ ସେ ଯେଉଁ କଥାକୁ ଶୁଣିଛନ୍ତି ସେଥିରେ କିଛିଟା ସତ୍ୟତା ରହିଥିବା ଅସମ୍ଭବ ନୁହେଁ ।

ଶ୍ୟାମସୁନ୍ଦର ରାଜଗୁରୁ ଉଦ୍ଧାର କରିଥିବା କବିତାଟି ଏହପରି-

କୈଳାସବାସୀ ସେ (ଶାରଳା ଦାସ) ରୂପରେ ଅବତାର
ମୂର୍ଖ ହୋଇ ଜନ୍ମ ହେଲା ଶୂଦ୍ରଘର
ବିରଜା ମଣ୍ଡଳ ଦେଶେ କୃଷି କରୁଥାଇ
ଏକଦିନେ ପଦେ ସେ ଟେକିଲା ଗୀତଗାଇ
ପଛକୁ ଚାହିଂଲା ଆମ୍ଭେ (ଶାରଳା ଦେବୀ) ବୃଦ୍ଧାସ୍ତିରୀ ରୂପ
ତେଣୁ କରି ଗୀତପଦ କଲାକ ସେ ଲୋପ
କରେ ହଳ ବାଡ଼ି ଧରିଣ ଭୂମିଚଷି
ପୁଣି ହିଂ ଢମାଳି ଗୀତ ଗାଇଲା ପଦେ ହସି
ଅତି ବୃଦ୍ଧ ଅବସ୍ଥା ହୋଇଣ ଆମ୍ଭେ ଗଲୁଂ
ସେ କୃଷିକାର ପାଶେ ପ୍ରବେଶ ହୋଇଲୁଂ
ଚାଲନ୍ତେ ଲଡ଼ବଡ଼ ଯେ ଛିଡ଼ା ଧୋତି କଟି
ସେ ଭୂମିର ହୁଡ଼ା ନପାରିଲୁଂ ଉଠି
ଥରହର ହୋଇ ଭୂମିରେ ପଡ଼ିବା ବେଳେ
କୃଷିକାର ଦେଖି ଧାଇଂଲା ତତକାଳେ
ବେନିକରେ ମୋତେ କୋଳାଗ୍ରତ କରି
ସ୍ଥିର କରିନେଇ ବସାଇଲା ଧରି
କାହିଂର ମାତ ତୁଗୋ କେବଳ ଦେଶ ଯାଉ
ସଙ୍ଗେ କେହି ନାହିଁ ଏକା ତ ଅଇଲୁ କାହୁଂ
ମୁଂ ବୋଇଲି ଆରେ ବନ୍ଧୁବର୍ଗ ମୋର ନାହିଂ
ତେଣୁ ଏକା ହୋଇ ଅଇଲି ଏଥେଂ ମୁହିଂ
ଯକ୍ଷପୁର ଶାସନେ ଅଟଇ ମୋର ବାସ
ବଣା ହୋଇ ଅଇଲି ନ ଜାଣି କେଉଁ ପାଶ
ମୁଂ ବୃଦ୍ଧା ମୋତେ ଗଙ୍ଗା ପାରି କରିଦିଅ
ଆମ୍ଭର ଆୟୁଘେନି ଆପଣେ ବର୍ତ୍ତିଥାଅ
ମୁହିଂ ବୃଦ୍ଧ ସ୍ତିରୀ ଯେ ଦେହରେ ସୁସ୍ଥ ନାହିଂ
ଜଳ ଶରୀରେ ଲାଗିଲେ ବାଧା ଯେ ବଳଇ

ଏ ନଦୀ ପାରି ମୋତେ ଦିଅ ହୋ କୃଷିକାର
ତ୍ୱରିତେ ଯିବି ମୁଂ ମୋର ଯକ୍ଷପୁର
ଶୁଣି ମହାକାଳ ହଳ ଛାଡ଼ିଦେଲା
ମତେ ନେଇ ଯେ କାଖରେ ବସାଇଲା
ବୃଦ୍ଧ ଗଙ୍ଗାତୀରେ ହୋଇଲା ପ୍ରବେଶ
ଦେଖିଣ ତାହାର ଯେ ଉଡ଼ିଲା ସାହାସ
ମନେ ବିଚାରିଲା ପ୍ରଖର ନଦୀଜଳ
କେମନ୍ତ କରି ଏଥି ପାଇବି ଥଳକୁଳ
x x x x x x x x
ଆମ୍ଭେ ଜାଣିଲୁ ତାର ହୃଦର ବେଦନା
ବୋଇଲୁଂ ବାବୁ ଗୀତ ପଦେ ଗାଉନା
ବଚନେ କହିଲା ମା ଗୋ ମୂର୍ଖ ମୋର ମତି
ବଷଟକାର ପଦ କେମନ୍ତେ କରିବି ଭକତି
ଆମ୍ଭେ ବିଚାରିଲୁଂ ସେ ହୋଇଲା ତୋର ଜ୍ଞାନ
ଶ୍ରୀମହାଭାରତ ଏବେ କରତୁ ଲେଖନ ।

ଏହି କବିତାରେ ସାରଳାଦାସଙ୍କୁ ବିରଜା ମଣ୍ଡଳର ଅଧିବାସୀ ଭାବରେ ବର୍ଣ୍ଣନା କରାଯାଇଛି । ପୁଣି ବୃଦ୍ଧ ନଦୀକୁ ଗଙ୍ଗାନାମରେ ଅଭିହିତ କରାଯାଇଛି । ସାରଳାଙ୍କ ଘରକୁ ଯକ୍ଷପୁର ଶାସନ ନାମରେ ଅଭିହିତ କରାଯାଇଛି । ତେଣୁ ଏହିସବୁ ଦୃଷ୍ଟିରୁ ସାରଳାଙ୍କ ଜନ୍ମସ୍ଥାନ ପ୍ରସଙ୍ଗ ଆଲୋଚନା କାଳରେ ଏହିଗୀତକୁ ମଧ୍ୟ ଆଲୋଚନା ପରିସରର ଅନ୍ତର୍ଭୁକ୍ତ କରିବା ନିହାତି ଆବଶ୍ୟକ ।

**(୩) ମହାଭାରତରେ ସାରଳାଦାସ ଗୁରୁତ୍ୱ ପ୍ରଦାନ କରି ବାରମ୍ବାର ଉଲ୍ଲେଖ କରିଥିବା ସ୍ଥାନ :** ଉପର କବିତାରେ ସାରଳାଦାସଙ୍କୁ ବିରଜାମଣ୍ଡଳର ଅଧିବାସୀ ରୂପେ ଚିହ୍ନିତ କରାଯାଇଛି । ବିରଜାମନ୍ଦିର ଯାଜପୁରରେ ଥିବା ଯୋଗୁଁ ବିରଜାପଞ୍ଜିକା ପ୍ରଚଳନ କରାଯାଉଥିବା ସ୍ଥାନକୁ ବିରଜାମଣ୍ଡଳ ବୋଲି କୁହାଯାଇଥାଏ ।

ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଝଂକାର ଅଷ୍ଟମବର୍ଷ ୫ମ ସଂଖ୍ୟାରେ ସାରଳା ଦାସଙ୍କ ଘର କେଉଁଠି ଶିରୋନାମାରେ ବିଭିନ୍ନ ମହାଭାରତ ପୋଥିରୁ ସଂଗ୍ରହ କରି ଯେଉଁ ଉଦାହରଣମାନ ପ୍ରଦାନ କରିଛନ୍ତି ତନ୍ମଧ୍ୟରୁ ଗୋଟିଏ ଉଦାହରଣରେ ଲେଖାଯାଇଛି ଯେ-

ମହୁଦଧି ଉତ୍ତର ପାରୁସେ ଯମ୍ବୋଦ୍ୱୀପ ମହୀଂ
ଭ୍ରଥଖଣ୍ଡ ଓଡ଼ରାଷ୍ଟ୍ର ଆଗମେଣ କହୀଂ
ଶୁବିଧାନ କଟେକ ଯାଯପୁର ନଗ୍ରି
ବିଖଳେଶ୍ୱର ଦକ୍ଷିଣ କୋଣେ ବିଜୟେ ସାକୋମ୍ଭେରି ।

ଏଠାରେ ଯାଜପୁର ନଗ୍ରର କଥା ଉଲ୍ଲିଖିତ ହୋଇଥିବାରୁ ଯାଜପୁର ତାଙ୍କର ଖୁବ୍ ପରିଚିତ ସ୍ଥାନ ବୋଲି ମନେ କରାଯାଇପାରେ । ଅନେକ ସ୍ଥାନରେ ସେ ଯାଜପୁର କଥା ଲେଖିଥିବା ଯୋଗୁଁ ଯାଜପୁର ନିକଟବର୍ତ୍ତୀ କୌଣସି ସ୍ଥାନରେ ସେ ଜନ୍ମ ହୋଇଥିବା କଥାକୁ ଏଡ଼ାଇ ଦିଆଯାଇ ନପାରେ ।

ମହାଭାରତର ଉଦ୍‌ଯୋଗପର୍ବର ଗୋଟିଏ ଅଧ୍ୟାୟରେ ଭାରଦାର କଥା ବର୍ଣ୍ଣନା କରାଯାଇଛି । ଭାରଦା ଏପରି ଏକ ପାପୀ ଯିଏ ନିଜ ସ୍ତ୍ରୀର ସେବାକରି ଜୀବନ ଅତିବାହିତ କରୁଥାଏ । ନିଜ ସ୍ତ୍ରୀକୁ ପରପୁରୁଷ ନିକଟରେ ଛାଡ଼ିଦେଇ ସେ ଦୁଆର ମୁହଁରେ ଜଗି ବସିଥାଏ । ସେହି ଭାରଦା ମୁହଁରୁ ପାଣ୍ଡବମାନେ ଭାରତ ଯୁଦ୍ଧର ଭବିଷ୍ୟତ ସମ୍ପର୍କରେ ଜାଣିପାରିଥିଲେ । ସେଇଥିପାଇଁ ମହାଭାରତରେ ଭାରଦା ଚରିତ୍ରର ଗୁରୁତ୍ୱ ରହିଛି ।

ଭାରଦାର ଘର ଯାଜପୁର ନଗ୍ରରେ ବୋଲି ମହାଭାରତରେ ଉଲ୍ଲେଖ କରାଯାଇଛି । ଭାରଦାର ଘର ସମ୍ପର୍କରେ ଯୁଧିଷ୍ଠିରଙ୍କର ପ୍ରଶ୍ନର ଉତ୍ତର ଦେଇ ସହଦେବ କହିଛନ୍ତି–

ସ୍ୱାମୀ ବଇତରଣୀ ନଦୀକୂଳେ ଯାଯପୁର ବୋଲି ନଗ୍ରେ
ଧବଳୀ ପର୍ବତ ଗୋଟି ଅଛି ପଛିମର ଭାଗେ
ସେହି ଧବଳି ପର୍ବରେ ଗୋଟିଏ ସୁସଞ୍ଚ ପରିମଳ ପୁରରେ ଭାରଦା ପତ୍ନୀ ସହିତ ବାସକରେ ।

ସ୍ୱର୍ଗାରୋହଣ ପର୍ବରେ ଯାଜପୁରକୁ ଅତ୍ୟନ୍ତ ପ୍ରାଧାନ୍ୟ ଦିଆଯାଇଛି । କଳିର ପ୍ରବେଶ ପରେ ପାଣ୍ଡବମାନେ ରାଜ୍ୟତ୍ୟାଗ କରି ସନ୍ନ୍ୟାସବେଶ ଧାରଣ କରି ପ୍ରଥମେ ବୈତରଣୀ ନଦୀ କୂଳରେ ଯାଜପୁରନଗ୍ରରେ ପ୍ରବେଶ କରିଛନ୍ତି । ମହାଭାରତର ସ୍ୱର୍ଗାରୋହଣ ପର୍ବରେ ଅଛି–

ଭୋ ରାଜନ କୋଇନ୍ତାର ପୁତ୍ରେ ଯେ ରାଜ୍ୟ ତେଜ୍ୟାକରି
ବଇତରଣୀ ନଦୀକୂଳେ ଅଛି ଯାଜନଗ୍ରପୁରୀ
ଯହୁଂ ଯୁଧେଷ୍ଟି ଦେବ ଚଳିଲେ ପ୍ରସ୍ଥାନେ
ରହିଲେ ଧର୍ମପୁରେ ପଣ୍ଡୁର ନନ୍ଦନେ ।

ଯାଜପୁରରେ ହରି ସାହୁର କନ୍ୟା ସୁହାଣୀକୁ ଯୁଧିଷ୍ଠିର ବିବାହ କରିଥିଲେ । ଏଠାରେ ଗବେଷକମାନଙ୍କୁ ସୂଚିତ କରାଇବାକୁ ଚାହେଁ ଯେ ସାରଳା ଦାସଙ୍କ ମହାଭାରତର କ ପୋଥି, ଛ ପୋଥି, ଥ ପୋଥି, ୯ ପୋଥି, ୦ ପୋଥି ଓ ଡ ପୋଥିରେ ଯାଜପୁର ନଗ୍ରକୁ ଚିତ୍ରୋତ୍ପଳା ନଦୀ ତୀରରେ ବୋଲି କୁହାଯାଇଛି ।

"ଚିତ୍ରୋତ୍ପଳା ନଦୀ ତୀରେ ଯେ ଯାଜନାମେ ନଗ୍ରି ।"

ହୁଏତ ବୈତରଣୀକୁ କବି ଚିତ୍ରୋତ୍ପଳା ନଦୀ ବୋଲି କହୁଥିଲେ । ତେଣୁ ସାରଳା ଦାସ ପ୍ରୟୋଗ କରିଥିବା ଚିତ୍ରୋତ୍ପଳା ନଦୀକୁ ଯଦି ବୈତରଣୀ ନଦୀ ଭାବରେ ଗ୍ରହଣ କରାଯିବ ତ ଅନେକ ସମସ୍ୟାର ସମାଧାନ ହୋଇଯାଇପାରିବ ।

ଯାଜପୁରର ପ୍ରଶଂସାରେ କବି କିପରି ଶତମୁଖ ହୋଇଛନ୍ତି ସେହି ସ୍ୱର୍ଗାରୋହଣ ପର୍ବରୁ ତାହାର ଉଦାହରଣ ସଂଗ୍ରହ କରିହେବ । ହରିସାହୁଙ୍କ ସମକ୍ଷରେ ଯମଦେବତା ସତ୍ୟକରି କହିଛନ୍ତି–

ମୃତ୍ୟୁମଣ୍ଡଳେ ଯେ ନଗ୍ର ନାମ ଅମରାବତୀ
ଶୁଣ ଆହେ ବୁଧଜନେ ମୁଂ ଯାହା କହିଲି
ତେଣୁ ସେ ଅମରାବତୀ ନାମ ଧର୍ମପୁର ବୋଲି ।

ଏହି ସବୁ ଦୃଷ୍ଟିରୁ ବିଚାରକଲେ କବିଙ୍କର ଘର ଯାଜପୁର ନଗ୍ର ହୋଇଥାଉ ବା ନଥାଉ ବିରଜାମଣ୍ଡଳରେ ବୋଲି ସ୍ପଷ୍ଟଭାବରେ ଅନୁମିତ ହୋଇଥାଏ ।

**(୪) ଶ୍ରୀଚଣ୍ଡୀ ସାରୋଳା ଓ ଜଂଖେରପୁରବାସୀ ମଧ୍ୟରେ ପାର୍ଥକ୍ୟ :** ସାରଳାଦାସ କେତେବେଳେ ଶ୍ରୀଚଣ୍ଡୀ ସାରଳାଙ୍କୁ ସାରଳାଗ୍ରାମର ଅଧିଷ୍ଠାତ୍ରୀ ଦେବୀ ବୋଲି କହିଛନ୍ତି ତ ପୁଣି କେତେବେଳେ ଜଙ୍ଖେରପୁରବାସୀ ବୋଲି କହିଛନ୍ତି । ତେଣୁ ସାରୋଳାଚଣ୍ଡୀ ଜଣେ କି ଦୁଇଜଣ ଏ ନେଇ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ । ସାରଳା ଦାସଙ୍କ ରଚିତ ଭାରତ ହରିବଂଶ ନାମକ ପୋଥିରେ ସାରଳାଙ୍କ ବନ୍ଦନା ପାଠକଲେ ସମସ୍ତ ସନ୍ଦେହ ଦୂରୀଭୂତ ହୋଇପାରିବ ।

ସାରଳା ମହାଭାରତରେ ସାରଳାଙ୍କର ଯେପରି ଦଶଗୋଟି ଅବତାରର ବର୍ଣ୍ଣନା କରାଯାଇଛି ଭାରତ ହରିବଂଶରେ ସେହିପରି ଏକୋଇଶି ଗୋଟି ଅବତାରର ବର୍ଣ୍ଣନା କରାଯାଇଛି । ପାର୍ବତୀ, ଚଣ୍ଡୀ, ମଙ୍ଗଳା, କାଳିକା, ବ୍ରହ୍ମାୟେଣି, ରୁଦ୍ରାୟେଣି, ସିଦ୍ଧେଶ୍ୱରୀ, କାମାକ୍ଷି, ହିଙ୍ଗୁଳା ଇତ୍ୟାଦିଙ୍କୁ ସାରଳାଙ୍କ ଅବତାର ଭାବରେ ବର୍ଣ୍ଣନା କରିସାରିବାପରେ ସେ ଲେଖିଛନ୍ତି–

ବିଂଶ ଅବତାରେ ଶ୍ରୀଚଣ୍ଡୀ ସାରୋଳା
ୟେକବିଂଶ ଅବତାରେ ଯଙ୍ଖେରପୁରବାସୀ
ମୁହିଂ ଦୀନପାମର ତୁମ୍ଭର ପାଦରେ ଶରଣ ପଶି ।

ଏଠାରେ ଶ୍ରୀଚଣ୍ଡୀ ସାରୋଳାଙ୍କୁ ଗୋଟିଏ ଅବତାର ଓ ଯଙ୍ଖେରପୁରବାସୀଙ୍କୁ ଆଉ ଗୋଟିଏ ଅବତାର ବୋଲି କହିଥିବା ଯୋଗୁଁ ସେ ଦୁଇଜଣ ଯେ ଅଲଗା ତାହା ନିଶ୍ଚିତ ରୂପେ ଗ୍ରହଣ କରିହେବ । ଏଣୁ ସାରଳା ଦାସଙ୍କର ଘର ଏମିତି ଏକ ସ୍ଥାନରେ ଥିଲା ଯେଉଁଠାରେ ଦୁଇଜଣ ସାରଳାଙ୍କ ଉପସ୍ଥିତିକୁ ସ୍ୱୀକାର କରାଯାଉଥିଲା । ଝଙ୍କଡ଼ ନିକଟରେ ବିଲ୍ୱସାରଳା, ବଡ଼ ସାରୋଳା ନାମରେ କେତେକ ଗ୍ରାମ ରହିଥିବାରୁ ସେହିସବୁ ସ୍ଥାନମାନଙ୍କରେ ସାରୋଳାଚଣ୍ଡୀ ପୂଜିତ ହେଉଥିବାର ଅନୁମାନ କରାଯାଇପାରେ । ଯେଉଁମାନେ ସାରଳାଙ୍କ ଜନ୍ମସ୍ଥାନ ସମ୍ପର୍କରେ ଗବେଷଣା କରୁଛନ୍ତି, ସେମାନଙ୍କୁ ମନେରଖିବାକୁ ହେବ ଯେ ଦୁଇଜଣ ସାରଳା ପୂଜିତ ହେଉଥିବା ସ୍ଥାନରେ ହିଁ ସାରଳାଦାସ ଜନ୍ମଗ୍ରହଣ କରିଥିଲେ ।

**(୫) ବ୍ୟବହାର କରିଥିବା କେତେକ ଶବ୍ଦରୁ ଜନ୍ମସ୍ଥାନ ସହ ସମ୍ପର୍କ :** ସାରଳା ଦାସଙ୍କ ଜନ୍ମସ୍ଥାନ ସମ୍ପର୍କରେ ଜାଣିବାପାଇଁ ମହାଭାରତରେ ପ୍ରଯୁକ୍ତ କେତେକ ଶବ୍ଦ ଉପରେ ଗବେଷକମାନେ ଗୁରୁତ୍ୱ ଦେଇଥାଆନ୍ତି । ମହାନଦୀ, ଚିତ୍ରୋତ୍ପଳା, ଚନ୍ଦ୍ରଭାଗା, ବୃଦ୍ଧାମାତା, ବୈତରଣୀ, ଝଂଖେରପୁର, କନକାବତୀ, ସାରୋଳା ଇତ୍ୟାଦି ଶବ୍ଦକୁ ତର୍ଜମା କରି ସାରଳାଙ୍କ ଜନ୍ମସ୍ଥାନ ସମ୍ପର୍କିତ ଏକ ସିଦ୍ଧାନ୍ତରେ ଉପନୀତ ହେବାକୁ ଚେଷ୍ଟା କରିଥାଆନ୍ତି । ଡ. ବଂଶୀଧର ମହାନ୍ତି ସାରଳା ଦାସଙ୍କର ଜନ୍ମସ୍ଥାନ ଶୀର୍ଷକ ଆଲୋଚନାରେ ଝଙ୍କେଶ୍ୱର, ସାନସାରୋଳ, ସାରୋଳ, କନକପୁର ଦେଉଳୀ, ବଡ଼ ସାରୋଳ, ତେନ୍ତୁଳିଆପଦା, ରାଉଳପୁର ଇତ୍ୟାଦି କେତେକ ଗ୍ରାମର ନାମ ୧୯୫୧ ମସିହା ସେନ୍‌ସସ୍ ରିପୋର୍ଟରୁ ଉଦ୍ଧାର କରି ପ୍ରଦାନ କରିଛନ୍ତି । ଗୋଟିଏ ଗ୍ରାମର ନାମ ରାଉଳପୁର ଥିବା ଯୋଗୁଁ ସେଠାରେ ରାଉଳମାନେ ବାସ କରୁଥିବାର ଆମେ ଅନୁମାନ କରିବା । ସାରଳଦାସଙ୍କ ଭାରତ ହରିବଂଶରେ ରାଉଳମାନଙ୍କର କଥା ଅତିସୁନ୍ଦର ଭାବରେ ଉଲ୍ଲେଖ କରାଯାଇଛି । ଶୂଦ୍ର ରାଉଳଟିଏ ଶ୍ମଶାନ ଭୂମିକୁ ଚାଷକରିବା ସମୟରେ ଭୂତମାନେ ଗୋଳକରିବାରୁ ଭୂତମାନଙ୍କୁ ସେ ମହାଜାଲରେ ବାନ୍ଧିପକାଇଲା ।

ସମସାନ ଭୂମିକି ସୁଦ୍ର ରାଉଳ ଚଷିଲା
ଭୂତଗୋଳ କରନ୍ତେ ମହାଜାଲରେ ବାନ୍ଧିଲା
(ଭାରତ ହରିବଂଶ : ପ୍ରସଙ୍ଗ : ଦୂତଭାବରେ ଶ୍ରୀକୃଷ୍ଣଙ୍କର ହସ୍ତିନାପୁର ଗମନ)

ସେହି ରାଉଳମାନଙ୍କର ନାମରେ ଯେ ଝଂଙ୍କଡ଼ ନିକଟବର୍ତ୍ତୀ ସ୍ଥାନ ରାଉଳପୁର ହୋଇନଥିବ ତାହା କିଏ କହିପାରିବ ।

ଉପରୋକ୍ତ ପ୍ରମାଣ ଓ ପ୍ରୟୋଗ ଗୁଡ଼ିକୁ ତର୍ଜମା କଲେ ସାରଳାଦାସଙ୍କର ଜନ୍ମସ୍ଥାନ ବିରଜାମଣ୍ଡଳର ଅନ୍ତର୍ଗତ ଥିଲା ବୋଲି ଅନୁମାନ କରିହେବ । ଅବଶ୍ୟ ଏହି ସବୁ ପ୍ରମାଣମାନ ସାରସ୍ୱତ ଚର୍ଚ୍ଚାରୁ ନିର୍ଗତ ହୋଇ ଆମ ନିକଟରେ ତଥ୍ୟ ରୂପରେ ପ୍ରତିଭାତ ହୋଇଛି । ଯେଉଁମାନେ ସାରଳାଦାସଙ୍କର ଜନ୍ମସ୍ଥାନ କୋଣାର୍କ ନିକଟରେ ବୋଲି ଦାବି କରୁଛନ୍ତି ସେମାନଙ୍କ ନିକଟରେ ବଳିଷ୍ଠ ଓ ଅକାଟ୍ୟ ଯୁକ୍ତି ନ ପହଞ୍ଚିବା ପର୍ଯ୍ୟନ୍ତ ଝଂକଡ଼ ନିକଟବର୍ତ୍ତୀ ସ୍ଥାନରେ ସାରଳାଙ୍କ ଜନ୍ମସ୍ଥାନ ବୋଲି ଗ୍ରହଣ କରିବାରେ କିଛି ଅସୁବିଧା ନାହିଁ ।

## ।। ପାଞ୍ଚ ।।

ସାରଳା ଦାସ ଚଣ୍ଡୀ ପୁରାଣରେ ଲେଖିଥିଲେ ଯେ ସେ ପ୍ରଥମେ ରାମାୟଣ, ଦ୍ୱିତୀୟରେ ମହାଭାରତ ଓ ତୃତୀୟରେ ଭାଗବତ ରଚନା କରିଥିଲେ । ଗବେଷକ ମାନେ ଚଣ୍ଡୀପୁରାଣକୁ ଦେବୀ ଭାଗବତ ବୋଲି ବାଖ୍ୟା କରି ତାହା ସାରଳାଙ୍କର ତୃତୀୟ ରଚନା ବୋଲି କହିଥାଆନ୍ତି । ସାରଳା ମଧ୍ୟ ଚଣ୍ଡୀପୁରାଣକୁ ଶିରି ଭାଗବତ ବୋଲି ଉଲ୍ଲେଖ କରିଛନ୍ତି । କେବଳ ଭାଗବତ ନୁହେଁ ସାରଳା ଚଣ୍ଡୀପୁରାଣକୁ ହରିବଂଶ ବୋଲି ମଧ୍ୟ କହିଛନ୍ତି । ଦେବୀ ଭାଗବତର ବିଷୟବସ୍ତୁ ସହିତ ଚଣ୍ଡୀପୁରାଣର କୌଣସି ସାମଞ୍ଜସ୍ୟ ନାହିଁ । ତେଣୁ ଚଣ୍ଡୀ ପୁରାଣକୁ ଭାଗବତ ବୋଲି କହିବା ଉଚିତ ମନେହୁଏ ନାହିଁ । ଅପର ପକ୍ଷରେ ଭାରତ ହରିବଂଶ ସହିତ ଭାଗବତର ବହୁ ସାମ୍ୟ ପରିଲକ୍ଷିତ ହୁଏ । ଏହି ଗ୍ରନ୍ଥର ପ୍ରଥମାଂଶ ଭାଗବତର ଗୋପଲୀଳାର ବିଷୟବସ୍ତୁ । ଭାଗବତ ଦ୍ୱାରିକା ଲୀଳାରୁ ମଧ୍ୟ ଏହର ବିଷୟବସ୍ତୁ ସଂଗ୍ରହ କରାଯାଇଅଛି । ଭାରତ ହରିବଂଶରେ କୁହାଯାଇଛି-

ଭାରତ ହରିବଂଶ ଏ ଶୁଣିଲେ ପାପନାସିଂ
ବୈବସୂତ ଆଗେଂ ଯାହା କହିଲେ ଅଗସ୍ତି

ଦ୍ୱାରିକା ନୀଳା ଏହୁ ଗୋବିନ୍ଦ ଭିଆଇ
ଦେଖଇ ହଟକୁଟ କନ୍ଦଳ ଲଗାଇ,

(ଭାରତ ହରିବଂଶ : ପ୍ରସଙ୍ଗ : ଦ୍ରୋଣଙ୍କ ପଦ୍ମବିହ୍ୱ ରଚନା)

ପୁଣି-

ଶ୍ରୀହରି ଚରିତ  ଏ ଅପୂର୍ବ ଆଖ୍ୟାନ
ତାହା ତୋତେ ଯେବେ କହିବା ସଂସର୍ପିଣ
ଭାରତ ହରିବଂଶ ଦ୍ୱାରିକାନୀଳା ଚରିତ
ସୁଣିଲେ ସର୍ବପାପ ଅଙ୍ଗରୁ ହୋଏ ହତ ।

(ଭାରତ ହରିବଂଶ : ପ୍ରସଙ୍ଗ : ଦୁର୍ଯ୍ୟୋଧନର ଭୀଷ୍ମଙ୍କୁ ସେନାପତି ପଦେ ବରଣ)

ତେଣୁ ଭାରତ ହରିବଂଶକୁ ସାରଳାଙ୍କର ତୃତୀୟ ରଚନା ବୋଲି ସ୍ୱୀକାର କରାଯାଇପାରେ ।

ସାରଳାଦାସ ମହାଭାରତ, ରାମାୟଣ, ଚଣ୍ଡୀପୁରାଣ, ଭାରତ ହରିବଂଶକୁ ଛାଡ଼ିଦେଲେ ଆହୁରି ଅନେକ କାବ୍ୟ କବିତା ମଧ୍ୟ ରଚନା କରିଛନ୍ତି । ନୀଳମଣି ମିଶ୍ରଙ୍କ ସମ୍ପାଦନାରେ ରାଜ୍ୟ ସଂଗ୍ରହାଳୟଦ୍ୱାରା ପ୍ରକାଶିତ An Alphabetical Catalogue of Authors ନାମକ ଗ୍ରନ୍ଥରେ ସାରଳା ଦାସ ବା ସିଦ୍ଧେଶ୍ୱର ଦାସଙ୍କର ୨୪ଖଣ୍ଡ ଗ୍ରନ୍ଥ ସମ୍ପର୍କରେ ସୂଚନା ପ୍ରଦାନ କରାଯାଇଛି । ସେଗୁଡ଼ିକ ହେଲା-

| ଗ୍ରନ୍ଥର ନାମ | କେଟଲଗ୍ ନମ୍ବର |
|---|---|
| (୧) ଲକ୍ଷ୍ମୀ ପୁରାଣ - | OR. MS/81-E |
| (୨) ଗୋବିନ୍ଦଚନ୍ଦ୍ର - | O.L./1688.O.L. 1700<br>O.L. 1475-C |
| (୩) ଚତୁର୍ମାସ୍ୟା ଗୁରୁବାର କଥା- | OR. Pr.18-C |
| (୪) ଚଣ୍ଡୀପୁରାଣ - | OR. MS/119, OR P/101<br>OR P/102, OR. P/103<br>OR P/241, OR P/242<br>OR P/401, OR P/821<br>OR P/960, OR P/979<br>OR P/1150, OR P/1701<br>OR P/1966, OR P/1968<br>OR P/2003 |
| (୫) ଭାରତ ହରିବଂଶ (୧ମ, ୨ୟ) | OR P/406, OR P/497<br>OR P/498, OR P/499 |
| (୬) ଅଧ୍ୟାତ୍ମ ରାମାୟଣ - | O.L. /173-C |
| (୭) ଚନ୍ଦ୍ରକଳା ହରଣ - | O.L. /25 |
| (୮) ନାଗାର୍ଜୁନ ଯୁଦ୍ଧ - | O.L. /430 |
| (୯) ନୀଳେନ୍ଦି ହରଣ - | O.L. /442, O.L/1702-B |
| (୧୦) ଚନ୍ଦ୍ରାବତୀ ହରଣ - | O.L. /551-B, O.L./ 1187-B<br>O.L. /1663, O.L./1673<br>O.L. /1904, O.L./2023 |

| | |
|---|---|
| (୧୧) ମାଳଶ୍ରୀ, ସ୍ତୁତି - | O.L. /852 (A-B) |
| | O.L. /1129-D |
| (୧୨) ସଚଳା ପରିଣୟ- | O.L. /1187 -A |
| (୧୩) ମହାଭାରତ, ଆଦ୍ୟପର୍ବ, ମଧ୍ୟପର୍ବ, ସଭାପର୍ବ, ବନପର୍ବ, ବିରାଟ ପର୍ବ, ଉଦଯୋଗ ପର୍ବ, ଭୀଷ୍ମ, ଦ୍ରୋଣ ପର୍ବ କର୍ଣ୍ଣାଦି ପର୍ବ । | ମହାଭାରତ ପାଇଁ ୧୧୯ଗୋଟି ପୋଥିର ସୂଚନା ପ୍ରଦାନ କରାଯାଇଛି । |
| (୧୪) ଆଦିକାବ୍ୟ - | O.L. 737 |
| (୧୫) ସପ୍ତକାଣ୍ଡ ରାମାୟଣ - | OR.P/1180, OR P/1181-A |
| (୧୬) ସୁଗନ୍ଧା ହରଣ - | OR.P/1431, OR.P/1432 |
| | OR.P/1181-B |
| (୧୭) ବିଲଙ୍କା ରାମାୟଣ - | OR.P/1663, OR.P/1737 |

ଏହାବ୍ୟତୀତ ବିଚିତ୍ର ରାମାୟଣକୁ ଏହି ତାଲିକାର ଅନ୍ତର୍ଭୁକ୍ତ କରାଯାଇନାହିଁ, ମାତ୍ର ବିଚିତ୍ର ରାମାୟଣ ଶୁଦ୍ଧପାଠ କରାଯାଇ ପ୍ରକାଶିତ ହୋଇସାରିଛି । ପ୍ରଫେସର ବଂଶୀଧର ମହାନ୍ତି ସଂଗ୍ରହ କରିଥିବା ଲକ୍ଷ୍ମୀନାରାୟଣ ବଚନିକା ମଧ୍ୟ ଏହି ତାଲିକାରେ ନାହିଁ ।

ଏଠାରେ କେତେଗୋଟି ପୋଥି ସମ୍ପର୍କରେ ସାମାନ୍ୟ ସୂଚନା ପ୍ରଦାନ କରାଯାଉଛି ।

(୧) **ଗୋବିନ୍ଦଚନ୍ଦ୍ର :** ନୀଳମଣି ମିଶ୍ରଙ୍କ ସମ୍ପାଦନାରେ ପ୍ରକାଶ ପାଇଥିବା A Descriptive Catalogue of Oriya Manuscripts ଗ୍ରନ୍ଥର ତୃତୀୟ ଭାଗରେ ଗୋବିନ୍ଦ ଚନ୍ଦ୍ର ଗ୍ରନ୍ଥ ସମ୍ପର୍କରେ କିଛି ସୂଚନା ଦିଆଯାଇଛି । ଏହି ପୋଥିଟି ଗଞ୍ଜାମ ଜିଲ୍ଲାର ପୋଡ଼ାମାରିରୁ ସଂଗୃହୀତ ହୋଇଥିଲା । ଏହି ଗ୍ରନ୍ଥର ଲେଖକ ସିଦ୍ଧେଶ୍ୱର ଦାସ । ଗ୍ରନ୍ଥର ଶେଷଭାଗରେ ଲେଖାଯାଇଛି-

ତୁମ୍ଭେ ଯେ ଯମର ମୁଖୁ ବଞ୍ଚାଇଲ କାଳ
ନିଜ ଦେହ ଘେନିଅଛ ଯୁଗଯୁଗାନ୍ତର
ତୁମ୍ଭ ଶ୍ରୀପାଦ ପଦ୍ମେଂ ରହୁମୋରମନ
ଲୋଡ଼ି ନପାଇଲି ଯାହା ତୁମ୍ଭ ଶ୍ରୀଚରଣ
ନଜାଣଇ ପାଠ ଶ୍ୟାସ୍ର ଗୀତସ୍ୱନ ମାନ
ଚରଣାରବିନ୍ଦେ ମୁହିଂ ବଳାଇଲି ମନ
ଗୋବିନ୍ଦଚନ୍ଦ୍ରଙ୍କଠାରେ ବହୁତ ମୋ ଆଶ
ଶରଣ ମାଗଇ ତହିଂ ସିଦ୍ଧେଶ୍ୱର ଦାସ ।

ସାରଳା ଦାସଙ୍କ ସମୟକୁ ଗୋବିନ୍ଦ ଚନ୍ଦ୍ରଙ୍କର କାହାଣୀ ଲୋକମୁଖରେ ପ୍ରଚଳିତ ଥିଲା । ଗୋବିନ୍ଦ ଚନ୍ଦ୍ର ହାଡ଼ିପାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଭାରତ ହରିବଂଶରେ ଗୋରଖନାଥ ଓ ମତ୍ସେନ୍ଦ୍ରନାଥଙ୍କର କଥା ଉଲ୍ଲିଖିତ ହୋଇଛି ।

(୨) **ଲକ୍ଷ୍ମୀପୁରାଣ, ଚତୁର୍ମାସ୍ୟା ଗୁରୁବାର କଥା ଓ ଲକ୍ଷ୍ମୀନାରାୟଣୀ ବଚନିକା :** ବଳରାମ ଦାସ ଯେଉଁ ଲକ୍ଷ୍ମୀପୁରାଣ ରଚନା କରିଛନ୍ତି, ତାହାର ଉତ୍ସ ସାରଳାଦାସଙ୍କ ଠାରୁ ସଂଗୃହୀତ ହୋଇଛି ବୋଲି ମନେକରାଯାଇପାରେ । ଲକ୍ଷ୍ମୀପୁରାଣ, ଚତୁର୍ମାସ୍ୟା ଗୁରୁବାର କଥା ଓ ଲକ୍ଷ୍ମୀନାରାୟଣ ବଚନିକା ଲକ୍ଷ୍ମୀଙ୍କୁ କେନ୍ଦ୍ରକରି ରଚିତ । ଲକ୍ଷ୍ମୀପୁରାଣଟି ସିଦ୍ଧେଶ୍ୱର ଦାସଙ୍କଦ୍ୱାରା ରଚିତ । ଚତୁର୍ମାସ୍ୟା ଗୁରୁବାର କଥା ସହିତ ଏହି ପୁରାଣର ଗଭୀର ସାମ୍ୟ ରହିଛି । ଚତୁର୍ମାସ୍ୟାରେ ଯେଉଁମାନେ ଗୁରୁବାର ବ୍ରତପାଳନ କରନ୍ତି ସେମାନେ ବ୍ରତ ସମୟରେ ଏହାକୁ ପାଠ କରିଥାଆନ୍ତି । ଲକ୍ଷ୍ମୀପୁରାଣର ପଦରେ ଗୁରୁବାର ବ୍ରତକଥାର ଉଲ୍ଲେଖ ରହିଥିବାରୁ ଏହିପରି ଅନୁମିତ ହୋଇଥାଏ । ଲକ୍ଷ୍ମୀପୁରାଣରେ କୁହାଯାଇଛି-

ଗୁରୁବାର ବ୍ରତକଥା ଶୁଣିବା ନିମନ୍ତେ
ସିଦ୍ଧେଶ୍ୱର ଦାସ ଏହା ବର୍ଣ୍ଣିଲେ ଯେ ଗୀତେ ।

ଚତୁର୍ମାସ୍ୟା ଗୁରୁବାର କଥାଟି ଗଦ୍ୟ ଛନ୍ଦରେ ରଚନା କରାଯାଇଛି । ବ୍ରତକଥାମାନ ଗଦ୍ୟ ଓ ପଦ୍ୟ ଉଭୟ ଛନ୍ଦରେ ରଚିତ ହୋଇଥାଏ । ମଙ୍ଗଳ ସଂକ୍ରାନ୍ତି ବ୍ରତକଥା, ରବିନାରାୟଣ ବ୍ରତକଥା ଇତ୍ୟାଦି ଉଭୟ ଗଦ୍ୟ ଓ ପଦ୍ୟଛନ୍ଦରେ ରଚିତ । ତେଣୁ ସମାନ ବିଷୟବସ୍ତୁକୁ ନେଇ ସାରଳାଦାସ ଚତୁର୍ମାସ୍ୟା ଗୁରୁବାର କଥାକୁ ଗଦ୍ୟରେ ରଚନା କରିଛନ୍ତି । ଚତୁର୍ମାସ୍ୟା ଗୁରୁବାର କଥାରେ କୁହାଯାଇଛି-

ଆଷାଢ଼ ଯାଇ ଶ୍ରାବଣ ପଶିଲା । ବିହି ମହାଲକ୍ଷ୍ମୀ ଘରେ ଘରେ ପଶିଲା । ଚତୁର୍ମାସ୍ୟା ଗୁରୁବାର ହୋଇଲା । ତାହା ଶ୍ରୀଆ ମାଲୁଣି କରଇ ।

ଏହି ପଦ୍ୟ ରଚନାରେ ସାରଳାଦାସଙ୍କର ଭଣିତା ରହିଥିବାରୁ ତାହା ସାରଳାଦାସଙ୍କ ଦ୍ୱାରା ରଚିତ ବୋଲି ଅନୁମିତ ହୁଏ । ଶ୍ରୀଆ ମାଲୁଣୀ କଥା ଉଲ୍ଲିଖିତ ହୋଇଥିବାରୁ ପରବର୍ତ୍ତୀ ସମୟରେ ବଳରାମ ଦାସ ଏହି ବିଷୟବସ୍ତୁକୁ ଆଧାର କରି ଲକ୍ଷ୍ମୀପୁରାଣ ଗ୍ରନ୍ଥ ରଚନା କରିଥିବା କଥାକୁ ଅସ୍ୱୀକାର ମଧ୍ୟ କରାଯାଇପାରିବ ନାହିଁ ।

ସାରଳା ଦାସଙ୍କ ନାମରେ ଭଣିତା ଥିବା ଯେଉଁ ଲକ୍ଷ୍ମୀ ନାରାୟେଣୀ ବଚନିକା ଗ୍ରନ୍ଥଟି ସଂଗ୍ରହ କରାଯାଇଛି ତାହା ଆଲୋଚନାର ଅପେକ୍ଷା ରଖେ । ଏହି ଗ୍ରନ୍ଥଟି ନଅଗୋଟି ପୃଷ୍ଠା ବିଶିଷ୍ଟ ଓ ଏଥିରେ ପଦସଂଖ୍ୟା ମାତ୍ର ୭୯ । ଲକ୍ଷ୍ମୀ ଓ ନାରାୟଣଙ୍କ ମଧ୍ୟରେ କଥୋପକଥନ ଏହାର ବିଷୟବସ୍ତୁ । ଲକ୍ଷ୍ମୀପୁରାଣ ବା ଚତୁର୍ମାସ୍ୟା ଗୁରୁବାର କଥା ପରି ଏହା ମଧ୍ୟ ଏକ ବ୍ରତପୋଥି ହୋଇପାରିଥାଏ । ଏହାର ଭଣିତାରେ ସାରଳାଦାସଙ୍କ ନାମୋଲ୍ଲେଖ କରି ଲେଖାଯାଇଛି-

ଲକ୍ଷ୍ମୀ ନାରାୟଣେକ ପଦଂ ଚରଣେ ସେବା
ସୁଦ୍ରମୁନି ସାରୋଳାଦାସଙ୍କୁ ଗତୀମୁକତି ଦେବା ।

ଡ. ବଂଶୀଧର ମହାନ୍ତି 'ସାରଳା ସାହିତ୍ୟ' ନାମକ ଗ୍ରନ୍ଥର ପୃ ୭୮ରୁ ୮୪ମଧ୍ୟରେ ଏହି ଛୋଟ ଗ୍ରନ୍ଥର ଏକ ଦୀର୍ଘ ଆଲୋଚନା କରିଛନ୍ତି । ଏହି ଗ୍ରନ୍ଥର ଆଦ୍ୟରେ କୁହାଯାଇଛି-

ଜୟତୁ ମହାଲକ୍ଷ୍ମୀ ମାଗୋ ହରିର ଘରଣୀ
ଜୟତୁ ମହାଲକ୍ଷ୍ମୀ ମାଗୋ ତିଭୁବନ ଗୋସାମଣି
ଖିର ସୋମୋଦ୍ର ଯାତ ତୈଲୋକ ମୋହନି
ତୁମ୍ଭର ଚରଣେ ମାଗୋ କରଇ ଦଇନି
ସରଣ ପସୈ ମାଗୋ ଯେତୋ ଚରଣ ବେନି
ସେତ ଗଜପିଠିରେ ଯେବଣ ଦେବ ଥିତି
ସେ ଦେବ ଚରଣେ ସେବା ମୋର ନିତି
ବୋଲନ୍ତି ମହାଲକ୍ଷ୍ମୀ ସୁଣିମା ଦେବହରି
ଗୁରୁବାର ବୋଲି ଦେବ ବ୍ରତେକ ଅଛି ମୋହରି ।
(ସାରଳା ସାହିତ୍ୟ, ଡ. ବଂଶୀଧର ମହାନ୍ତି ପୃ ୮୦)

ଲକ୍ଷ୍ମୀନାରାୟଣୀ ବଚନିକାରେ ଗୁରୁବାର ବ୍ରତକଥା ଲେଖା ହୋଇଥିବା ଯୋଗୁଁ ଏହି ତିନୋଟି ଗ୍ରନ୍ଥ ମାଧ୍ୟମରେ ଯେ ସାମ୍ୟରହିଛି ଏହା ସ୍ୱୀକାର କରାଯାଇପାରେ ।

(୩) **ସପ୍ତକାଣ୍ଡ ରାମାୟଣ, ଆଦିକାବ୍ୟ ଓ ବିଚିତ୍ର ରାମାୟଣ :** ସପ୍ତକାଣ୍ଡ ରାମାୟଣ, ଆଦିକାବ୍ୟ ଓ ବିଚିତ୍ର ରାମାୟଣର ବିଷୟବସ୍ତୁରେ ମେଳ ରହିଛି । ସଚ୍ଚିଦାନନ୍ଦ ମିଶ୍ର ବିଚିତ୍ର ରାମାୟଣର ପାଠୋଦ୍ଧାର କରିଥିବା ବେଳେ ସପ୍ତକାଣ୍ଡ ରାମାୟଣ ଓ ଆଦିକାବ୍ୟ ଦୁଇଖଣ୍ଡ ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ସଂରକ୍ଷିତ ଅଛି । ପଣ୍ଡିତ ନୀଳମଣି ମିଶ୍ରଙ୍କ ଦ୍ୱାରା ରଚିତ ଓ ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ପ୍ରକାଶିତ 'ଓଡ଼ିଆ ରାମସାହିତ୍ୟ' ଗ୍ରନ୍ଥରେ 'ସପ୍ତକାଣ୍ଡ ରାମାୟଣ'ର ବିସ୍ତୃତ ଆଲୋଚନା କରାଯାଇଛି । ଡ. ଦୁର୍ଗାପ୍ରସନ୍ନ ପଣ୍ଡା ମଧ୍ୟ କୋଣାର୍କ-

୧୯୮୯, ସେପ୍ଟେମ୍ବର-ଅକ୍ଟୋବର ସଂଖ୍ୟାରେ ତାଙ୍କର ଏକ ପ୍ରବନ୍ଧରେ ଏହି ସପ୍ତକାଣ୍ଡ ରାମାୟଣର ବିସ୍ତୃତ ଆଲୋଚନା କରିଛନ୍ତି ।

ସପ୍ତକାଣ୍ଡ ରାମାୟଣରେ ଆଦ୍ୟକାଣ୍ଡ, ଅଯୋଧ୍ୟାକାଣ୍ଡ, ଆରଣ୍ୟକକାଣ୍ଡ, କିଷ୍କିନ୍ଧା କାଣ୍ଡ, ସିନ୍ଦୁରାକାଣ୍ଡ, ଲଙ୍କାକାଣ୍ଡ ଓ ଉତ୍ତୁରାକାଣ୍ଡ ନାମରେ ସାତଗୋଟି କାଣ୍ଡ ରହିଛି । ରାମଚନ୍ଦ୍ରଙ୍କର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏହି ରାମାୟଣର ବିଷୟବସ୍ତୁ । ଏଥିରେ ଅନକେ ଗଳ୍ପ ସଂଯୋଜିତ ହୋଇଛି ଯାହା ମୂଳ ରାମାୟଣରେ ନାହିଁ । ସପ୍ତକାଣ୍ଡ ରାମାୟଣରେ ଗଦ୍ୟଭାଷାରେ ମଧ୍ୟ ରଚନା କରାଯାଇଛି । ଯେମିତି-

ରାମଙ୍କୁ ନଦେଖି ଦଶରଥ କ୍ରୋଧକଲା । ଦଶରଥ ବୋଇଲେ
ଭାରିଜା ବୋଲକରି ପୁତ୍ରକୁ ମୁରୁଛିଲୁଂ । ଚାରିପୁତ୍ର ଥାଇ
ଅପୁତ୍ରିକ ହୋଇଲୁଂ । (ଆରଣ୍ୟକ କାଣ୍ଡ)

ରାମାୟଣଙ୍କୁ ଆଦିକାବ୍ୟ କୁହାଯାଉଥିବାରୁ ସାରଳାଙ୍କ ରଚିତ ଅନ୍ୟ ଏକ ରାମାୟଣ ଗ୍ରନ୍ଥର ନାମ ଆଦିକାବ୍ୟ । ଏହି କାବ୍ୟଟି ମଧ୍ୟ ସପ୍ତକାଣ୍ଡ ରାମାୟଣ ପରି ରାମାୟଣର ସଂପୂର୍ଣ୍ଣ ବିଷୟବସ୍ତୁକୁ ଭିତ୍ତି କରି ରଚିତ ହୋଇଛି ।

ସଚ୍ଚିଦାନନ୍ଦ ମିଶ୍ରଙ୍କ ଦ୍ୱାରା ସମ୍ପାଦିତ ବିଚିତ୍ର ରାମାୟଣ ଗ୍ରନ୍ଥଟି ରାମାୟଣର ବିଷୟବସ୍ତୁକୁ ଭିତ୍ତିକରି ରଚିତ ହୋଇଥିଲେ ମଧ୍ୟ ଏହି ଗ୍ରନ୍ଥ ପ୍ରଥମେ ସୀତା ବନବାସଠାରୁ ଆରମ୍ଭ ହୋଇଛି । ସୀତାଙ୍କୁ ବନମଧ୍ୟରେ ତ୍ୟାଗ କରି ଆସିବାକୁ ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ ନିର୍ଦ୍ଦେଶ ଦେଇ କହିଛନ୍ତି-

ତୁ ହୋ ଲକ୍ଷ୍ମଣ ସୀତୟାକୁ ଘେନିଯିବୁ
ଅଗମ୍ୟ ଘୋରବନେ ଛାଡ଼ିଣ ଆସିବୁ ।
କପଟକରି ରଖିବୁ ସୀତୟାର ମନ
ବିପିନ୍ୟେ ତେଜି ଆସିବୁ ସୀତାର ନୋହିବଟି ଗ୍ୟାଂନ ।
(ବିଚିତ୍ର ରାମାୟଣ)

ଲକ୍ଷ୍ମଣ ସୀତାଙ୍କୁ ନେଇ ବାଲ୍ମୀକିଙ୍କର ଆଶ୍ରମରେ ଛାଡ଼ିଦେଇ ଆସିଛନ୍ତି । ବାଲ୍ମୀକିଙ୍କର ଆଶ୍ରମରୁ ସୀତା ବିଦେହକୁ ଯାତ୍ରା କରିଛନ୍ତି । ପିତ୍ରାଳୟରେ ସୀତାଙ୍କର ଲବକୁଶ ନାମରେ ଦୁଇଗୋଟି ପୁତ୍ର ଜନ୍ମହୋଇଛନ୍ତି । ବିଦ୍ୟାଲାଭ ପରେ ଲବକୁଶ ରାଜ୍ୟାନ୍ତରକୁ ଭିକ୍ଷାଲାଭ ନିମିତ୍ତ ଗମନ କରିଛନ୍ତି । ଲବ ଅଯୋଧ୍ୟା ଗମନ କରି ରାମଙ୍କ ଆଗରେ ରାମାୟଣ ଗାନ କରିଛନ୍ତି । ଋଷ୍ୟଶୃଙ୍ଗଙ୍କ ପ୍ରସଙ୍ଗ ଗାନ କରିବାପରେ ଲବ ପୁଣି ବିଦେହକୁ ବାହୁଡ଼ି ଆସିଛନ୍ତି । ପରବର୍ତ୍ତୀ ସମୟରେ ଲବ ଓ କୁଶ ମିଶିକରି ଅଯୋଧ୍ୟାକୁ ଯାଇ ରାମଙ୍କ ସମ୍ମୁଖରେ ରାମାୟଣ ଗାନ କରିଛନ୍ତି । ଶାନ୍ତାଙ୍କର ବିବାହଠାରୁ ଆରମ୍ଭ କରି ସୀତାଙ୍କର ଦ୍ୱିତୀୟ ଅଗ୍ନିପରୀକ୍ଷା ପର୍ଯ୍ୟନ୍ତ ରାମାୟଣ ଗାନ କରାଯାଇଛି । ସୀତାଙ୍କର ପାତାଳୀ ହେବା ଏବଂ ତୀର୍ଥଯାତ୍ରା ଆଦି ରାମାୟଣର ସଂପୂର୍ଣ୍ଣ ବିଷୟବସ୍ତୁ ଲବକୁଶଙ୍କ ମାଧ୍ୟମରେ କବି ଗାନ କରାଇଛନ୍ତି । ବିଷୟବସ୍ତୁରେ ସାମାନ୍ୟ ପରିବର୍ତ୍ତନ ଥିଲେ ମଧ୍ୟ ସପ୍ତକାଣ୍ଡ ରାମାୟଣ ଓ ଆଦିକାବ୍ୟର ପ୍ରସଙ୍ଗରେ ଗଭୀର ସାମଞ୍ଜସ୍ୟ ଦେଖିବାକୁ ମିଳେ ।

(୪) **ନୀଳେନ୍ଦି, ଚନ୍ଦ୍ରାବତୀ ହରଣ ଓ ସଟଳା ପରିଣୟ :** ସାରଳା ଦାସଙ୍କ ମହାଭାରତର ମଧ୍ୟପର୍ବରେ ନିଳେନ୍ଦୀ, ଚନ୍ଦ୍ରାବତୀ ହରଣ ଓ ସରଳା ପରିଣୟ କଥା ଉଲ୍ଲେଖ ରହିଛି । ଏହି ତିନୋଟି ହରଣ ଓ ପରିଣୟ କଥାକୁ ନେଇ ସାରଳା ଦାସ ସ୍ୱତନ୍ତ୍ର ଭାବରେ କାବ୍ୟ ରଚନା କରିଛନ୍ତି । ମଧ୍ୟପର୍ବର ୪୫୦ ପୃଷ୍ଠାରୁ ୫୧୨ପୃଷ୍ଠା ପର୍ଯ୍ୟନ୍ତ ଦୀର୍ଘ ଅଧ୍ୟାୟରେ ନୀଳେନ୍ଦୀ ହରଣର କଥା ଉଲ୍ଲେଖ ରହିଛି ।

ମଧ୍ୟପର୍ବର ବିଷୟବସ୍ତୁ ଅନୁସାରେ ବରୁଣ ରାଜାଙ୍କର ଅନେକ ରାଣୀମଧ୍ୟରୁ ପାଟରାଣୀର ନାମ ନୀରବତୀ । ନୀରବତୀଙ୍କର ଗର୍ଭରୁ ସର୍ବସୁଲକ୍ଷଣୀ ଏକ ଦୁହିତା ଜନ୍ମହେଲା । ଜଳଧର ମନ୍ତ୍ରୀ ତାହାର ଜାତକ ଦେଖି କହିଲେ ଯେ ଷୋହଳ ବର୍ଷ ବୟସକୁ କନ୍ୟାର ଗଣ୍ଡଦୋଷ ରହିଛି । ତାହା ଶୁଣି ଷୋହଳ ବର୍ଷ ବୟସ ପର୍ଯ୍ୟନ୍ତ ତାର ମୁଖ ନ ଚାହିଁବେ ବୋଲି କନ୍ୟାକୁ କପିଳାସ ନିକଟସ୍ଥ ବନସ୍ତରେ ଛାଡ଼ି ଆସିବାକୁ ରାଜା ଦାସୀମାନଙ୍କୁ ନିର୍ଦ୍ଦେଶ ଦେଲେ । କନ୍ୟାକୁ ଏକା ନ ଛାଡ଼ି ମାତା ନୀରବତୀ ମଧ୍ୟ ତାସହିତ ବନକୁ ଗମନ କଲେ । ଏକଦା ତ୍ରିଲୋଚନ ପାର୍ବତୀଙ୍କୁ ଧରି ବୃଷଭ ପୃଷ୍ଠରେ ବସି ଭ୍ରମଣ କରୁଥିବା ବେଳେ ନାରୀଟିଏ ବନସ୍ତ ମଧ୍ୟରେ ବସି କାନ୍ଦୁଥିବା ଦେଖିଲେ । ନୀରବତୀ ପାର୍ବତୀଙ୍କ ଆଗରେ ସମସ୍ତ ଦୁଃଖ ବର୍ଣ୍ଣନା କରିବାରୁ ପାର୍ବତୀଙ୍କ ଆଶୀର୍ବାଦରେ କନ୍ୟାର ଗଣ୍ଡଦୋଷ ନଷ୍ଟ ହୋଇଗଲା । ପାର୍ବତୀ ସେହି କନ୍ୟାର ନାମ ରଖିଲେ ନୀଳେନ୍ଦୀ । ଶିବ ନୀରବତୀଙ୍କ ନିକଟରେ ଗୋଟିଏ ସର୍ତ୍ତ ମଧ୍ୟ ରଖିଲେ । କହିଲେ, ଏ କନ୍ୟା ବଡ଼ ହେଲେ ମୋର ପୁଅ କାର୍ତ୍ତିକେଶ୍ୱର ସହ ବିଭା କରାଇବୁ ।

ନୀରବତୀ କନ୍ୟାକୁ ଗୋପ୍ୟକରି ରଖିଥିଲା । କାଳକ୍ରମେ ନୀଳେନ୍ଦୀ ପୂର୍ଣ୍ଣ ଯୌବନପ୍ରାପ୍ତ ହେଲା । ବରୁଣରାଜ ଝିଅକୁ କାହା ସହିତ ବିଭା କରାଇବେ ବୋଲି ଚିନ୍ତା କରି ମନ୍ତ୍ରୀ ସହିତ ସେ ସମ୍ପର୍କରେ ଚର୍ଚ୍ଚା କଲେ । ଏପଟେ ନାରଦ ମହର୍ଷି ଯାଇ ଦ୍ୱାରକାପୁରରେ ଉପସ୍ଥିତ ହେଲେ । ବଳରାମଙ୍କର ଆନନ୍ଦାନନ୍ଦ ନାମକ ପୁତ୍ର ମୁନିଙ୍କୁ ଯଥାଯୋଗ୍ୟ ସତ୍କାର କଲା । ନାରଦ ମହର୍ଷି ଆନନ୍ଦାନନ୍ଦ ସମ୍ମୁଖରେ ନୀଳେନ୍ଦୀର ସୌନ୍ଦର୍ଯ୍ୟର ପ୍ରଶଂସାକରି ତାକୁ ଧରି ବରୁଣ ଦେବତାଙ୍କର ପୁରକୁ ଚାଲିଗଲେ ଓ ସେଠାରେ ଆନନ୍ଦାନନ୍ଦ ସହିତ ନୀଳେନ୍ଦୀର ପରିଚୟ କରାଇଦେଲେ ।

ନାରଦ ନୀଳେନ୍ଦୀ ସମ୍ମୁଖରେ ଆନନ୍ଦାନନ୍ଦର ପ୍ରଶଂସା କରିବା ସହିତ ମାଳା ନେଇ ତାହାକୁ ବରଣ କରିବାପାଇଁ ପ୍ରବର୍ତ୍ତାଇଲେ । ଉଭୟଙ୍କୁ ଗନ୍ଧର୍ବ ବିଧିରେ ବିଭା କରାଇଦେଇ ବରୁଣ ରାଜାଙ୍କ ପୁରରେ ବରକନ୍ୟାଙ୍କୁ ଛାଡ଼ି ମହାମୁନି ଅନ୍ତର୍ଦ୍ଧାନ ହୋଇଗଲେ ।

ନୀରବତୀ ଦିନେ ବରୁଣ ରାଜାଙ୍କ ସମ୍ମୁଖରେ ପୂର୍ବର କଥା ପ୍ରକାଶ କରି କାର୍ତ୍ତିକଙ୍କୁ ବିବାହ କରାଇବାପାଇଁ ତ୍ରିଲୋଚନଙ୍କ ଦେଇଥିବା ବଚନକୁ ସ୍ମରଣ କରାଇଦେଲେ । କାର୍ତ୍ତିକଙ୍କୁ ବିବାହ କରାଇବା ପ୍ରସ୍ତାବରେ ବରୁଣ ମଧ୍ୟ ରାଜିହୋଇ ତ୍ରିଲୋଚନଙ୍କ ନିକଟକୁ ପ୍ରସ୍ତାବ ନେଇଗଲେ । ହର ହରଷିତ ହୋଇ ବିଭାର ସମ୍ଭାର ଯୋଗାଡ଼ କରିବାପାଇଁ ନନ୍ଦୀ ମହାକାଳକୁ ନିର୍ଦ୍ଦେଶ ଦେଲେ । ଚଉଦକୋଟି ଶିବଗଣଙ୍କୁ ବରଯାତ୍ରୀ ଭାବରେ ଧରି କାର୍ତ୍ତିକେଶ୍ୱରଙ୍କୁ ବରବେଶ କରି ଶିବ ବିବାହ ପ୍ରସ୍ତୁତିରେ ଲାଗିପଡ଼ିଲେ ।

ନାରଦ ମହାମୁନି କପିଳାସରେ ପ୍ରବେଶ କରି ନୀଳେନ୍ଦୀ ବଳରାମଙ୍କ କୁମର ଆନନ୍ଦାନନ୍ଦକୁ ଗନ୍ଧର୍ବ ବିବାହ କରିସାରିଛନ୍ତି ବୋଲି ଜଣାଇ ଦେଲେ । ଶିବ କ୍ରୋଧଭର ହୋଇ ଶ୍ରୀକୃଷ୍ଣ ଓ ବଳରାମଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲେ । ବ୍ରହ୍ମା ଦେବଗଣଙ୍କ ସହିତ ଯୁଦ୍ଧକ୍ଷେତ୍ରରେ ପ୍ରବେଶ କରି ଉଭୟଙ୍କ ମଧ୍ୟରେ ଶାନ୍ତି ସ୍ଥାପନ କରିଥିଲେ ।

ବଳରାମଙ୍କର ପୁତ୍ର ଆନନ୍ଦାନନ୍ଦ ବରୁଣରାଜାଙ୍କ କନ୍ୟା ନୀଳେନ୍ଦୀକୁ ହରଣ କରିବାପରି ଦୁର୍ଯୋଧନର କନ୍ୟା ଚନ୍ଦ୍ରାବତୀଙ୍କୁ ଶ୍ରୀକୃଷ୍ଣଙ୍କର ପୁତ୍ର ଶାମ୍ବ ଅପହରଣ କରିନେଇଥିଲେ । ଦୁର୍ଯ୍ୟୋଧନର ଶ୍ରୀକୃଷ୍ଣ ବଳରାମଙ୍କ ସହିତ ଯୁଦ୍ଧ ହୋଇଥିଲା । ପରିଶେଷରେ କନ୍ୟା ଅର୍ପଣ କରି ଦୁର୍ଯ୍ୟୋଧନ ଶରଣ ପଶିଥିଲା । ସାରଳା ମହାଭାରତର ମଧ୍ୟପର୍ବରେ ଚନ୍ଦ୍ରାବତୀ ହରଣ ପ୍ରସଙ୍ଗକୁ ଅତି ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ସାରଳାଦାସଙ୍କ ଭଣିତାରେ ଦୁଇଖଣ୍ଡ ଚନ୍ଦ୍ରାବତୀ ହରଣ ପୋଥି ଦେଖିବାକୁ ମିଳେ । ନୀଳମଣି ମିଶ୍ର A Descriptive Catalogue of Oriya Manuscripts ଗ୍ରନ୍ଥରେ ଚନ୍ଦ୍ରାବତୀ ହରଣ ଗ୍ରନ୍ଥର ସାମାନ୍ୟ ସୂଚନା ମଧ୍ୟ ପ୍ରଦାନ କରିଛନ୍ତି । ବିଷୟବସ୍ତୁକୁ ଆରମ୍ଭ କରି ସାରଳା ଦାସ ଲେଖିଛନ୍ତି–

ଦୃଜଧନ ନାମେଣ ଯେ ଜେଷ୍ଟପୁତ୍ର ନାମ
ସୁରଧଜ ମାହାତମା କୁଟଧଜନାମ
ହସ୍ତିନା କଟକେ ସେହୁଂ ହୋଇଲେ ୟେକରାଜା
ତାହାଙ୍କୁ ଖଟିଲେ ସେହୁ ସକଳ ପରଜା
ଭାନୁବତୀ ବୋଲିଣ ତାହାର ପ୍ରିୟବତୀ
ଲକ୍ଷ୍ମଣ ବୋଲି କୁମର ତାହାର ଉତପତି
ଦୋହିତାଏ ଜାତହେଲା ନାମ ଚନ୍ଦ୍ରାବତୀ
ଅତିଅନ୍ତ ସୁନ୍ଦର ଯେ ଅଟଇ ଦୋହିଂତି

(ଚନ୍ଦ୍ରାବତୀ ହରଣ O.L./55I (B))

ଚନ୍ଦ୍ରାବତୀ ହରଣ କାବ୍ୟର ପରିଶେଷରେ ସାରଳା ଦାସ ଭଣିତାରେ ନିଜର ନାମ ପ୍ରକାଶ କରି ଲେଖିଛନ୍ତି–

ୟେଣୁ ମୁ ଯେ ଚିନ୍ତା କରଇଂ ଅନୁବରତ
ଶୂଦ୍ରମୁନି ସାରଳା ଦାସ ଚିନ୍ତଇ ଅବିରତ
ପୁରାଣ ଦିଅ ମୋତେ ଶଙ୍ଖଚକ୍ର ହସ୍ତ
ଚନ୍ଦ୍ରାବତୀ ହରଣ ଯେ ନିର୍ଭା ୟେଥୁଂ ହୋଇଲା ସମାପତ

(ଚନ୍ଦ୍ରାବତୀ ହରଣ O.L./1187CB)

ରାଜ୍ୟ ସଂଗ୍ରାହଳୟ ପୋଥି ନଂ O.L./1187(A) ରେ ସଚଳା ହରଣ ବିଷୟବସ୍ତୁ ଉଲ୍ଲିଖିତ ହୋଇଛି । ସାରଳାଦାସଙ୍କ ମହାଭାରତରେ ସଚଳାହରଣ ପ୍ରସଙ୍ଗ ଅତି ବିସ୍ତୃତ ଭାବରେ ପ୍ରଦାନ କରାଯାଇଛି । ଶ୍ରୀକୃଷ୍ଣଙ୍କର କନ୍ୟା ସଚଳା ନଦୀରେ ସ୍ନାନ କରୁଥିବା ବେଳେ ଚିତ୍ରସେନ ନାମକ ଗନ୍ଧର୍ବ ତାର ରୂପଦେଖି ମୁଗ୍ଧ ହୋଇଛି ଓ ତାକୁ ହରଣ କରିନେଇଛି । ଚିତ୍ରସେନ ଇନ୍ଦ୍ରଙ୍କର ପୁତ୍ର ହୋଇଥିବାରୁ ଶ୍ରୀକୃଷ୍ଣାଦି ଯାଦବମାନେ ଇନ୍ଦ୍ରଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଛନ୍ତି । ନିଜ ପଟକୁ ଅର୍ଜୁନଙ୍କୁ ଆଣିବାପାଇଁ ଗୋଟିଏ ପଟରେ ସଖା ଶ୍ରୀକୃଷ୍ଣ ତାଙ୍କ ପାଖକୁ ଦୂତ ପଠାଇଛନ୍ତି । ଅନ୍ୟପଟରେ ତାଙ୍କ ପିତା ଇନ୍ଦ୍ର ମଧ୍ୟ ଅର୍ଜୁନଙ୍କୁ ତାଙ୍କ ସପକ୍ଷରେ ଯୁଦ୍ଧ କରିବାକୁ ନେବାକୁ ଯୁଧିଷ୍ଠିରଙ୍କୁ ବାର୍ତ୍ତା ଦେଇଛନ୍ତି । ଫଳତଃ ଯୁଦ୍ଧରେ ଅସ୍ତ୍ର ନଧରିବାପାଇଁ ଯୁଧିଷ୍ଠିର ଅର୍ଜୁନଙ୍କୁ ପରାମର୍ଶ ଦେଇଛନ୍ତି । ଯୁଦ୍ଧରେ ଇନ୍ଦ୍ର ପରାସ୍ତ ହୋଇଛନ୍ତି । ମାତ୍ର ଶଚୀଙ୍କର ମଧ୍ୟସ୍ଥତାରେ ସବୁ ସମସ୍ୟାର ସମାଧାନ ହୋଇଯାଇଛି । ଚିତ୍ରସେନ ସହିତ ସଚଳା କନ୍ୟାର ବିବାହ ହୋଇଯାଇଛି । ଏହି ବିଷୟବସ୍ତୁକୁ ନେଇ ସାରଳା ସଚଳା ପରିଣୟ ରଚନା କରିଥିବାର ଅନୁମିତ ହୋଇଥାଏ ।

(୫) **ସୁଗନ୍ଧା ହରଣ ଓ ନାଗାର୍ଜୁନ ଯୁଦ୍ଧ :** ସୁଗନ୍ଧା ଏକ ଚରିତ୍ର ନୁହେଁ । ବରଂ ଏହା ସୁଗନ୍ଧିକା ନାମକ ଏକ ପୁଷ୍ପ । ଭାରତ ହରିବଂଶ ଅନୁସାରେ ଶ୍ରୀକୃଷ୍ଣଙ୍କ ଔରସରେ ଗର୍ଭଧାରଣ କରିଥିବା ରୁକ୍ମିଣୀ ନିର୍ଦ୍ଦିଷ୍ଟ ସମୟରେ ପ୍ରସବ କରିପାରିଲେ ନାହିଁ । ନାରଦ ମହାମୁନି ଆସି ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ତାହାର କାରଣ ଜଣାଇଥିଲେ । ନାରଦ କହିଲେ ରୁକ୍ମିଣୀ ଦେବୀଙ୍କର ଋତୁସ୍ନାନ ବେଳେ ଥରେ ପୁଷ୍ପ ଗୋଟିଏ ଭାସି ଆସୁଥିଲା । ରୁକ୍ମିଣୀ ତାହା ନାକରେ ଦେବାବେଳକୁ ପୁଷ୍ପର ପାଖୁଡ଼ା ଗୁଡିକ ଝଡ଼ିପଡ଼ିଥିଲା । ଏହିପରି ଏକ ପୁଷ୍ପ ଆଘ୍ରାଣ କରିବାକୁ ଇଚ୍ଛା ପୋଷଣ କରିଥିବାରୁ ରୁକ୍ମିଣୀଙ୍କର ସନ୍ତାନ ପ୍ରସବ କରିବାକୁ ବାରବର୍ଷ ଡେରି ହୋଇଗଲା । ସୁଗନ୍ଧିକା ପୁଷ୍ପ ରହିଛି ଅସ୍କନ୍ଦ ବନରେ । ତାର ଚାରିପାଖରେ ଜଳ ଉଜାଣି ବହୁଛି । ସେଠାରେ ସାତ କୋଟି ଗନ୍ଧର୍ବ ଜଗୁଆଳି ଅଛନ୍ତି । ପୁଣି ତୋଟାକୁ ଜଗିରହିଛି ହନୁମାନ । ଅସ୍କନ୍ଦ ବନରୁ ସୁଗନ୍ଧିକା ଆଣିବାପାଇଁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ପଠାଇଲେ । ତାହା ଇନ୍ଦ୍ରଙ୍କର ବନ ହୋଇଥିବାରୁ ଓ ଅର୍ଜୁନ ଇନ୍ଦ୍ରଙ୍କର ପୁତ୍ର ହୋଇଥିବାରୁ ସହଜରେ ସୁଗନ୍ଧିକା ଆଣିହେବ ବୋଲି ଶ୍ରୀକୃଷ୍ଣ ମନରେ ବିଚାର କରିଥିଲେ । ଅର୍ଜୁନର ପ୍ରଥମ ସାକ୍ଷାତ ହୋଇଥିଲା ହନୁମାନ ସହିତ ଏବଂ ସେହି ସାକ୍ଷାତରେ ଉଭୟଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ହୋଇଥିଲା । ହନୁମାନ ଅର୍ଜୁନଙ୍କୁ ଫିଙ୍ଗିଦେବାରୁ ଅର୍ଜୁନ ଗଗନ ମାର୍ଗରେ ଉଡ଼ିଯାଇ ଦେବସଭା ମଧ୍ୟରେ ପଡ଼ିଥିଲା । ଇନ୍ଦ୍ର ଅର୍ଜୁନଙ୍କୁ ଚିହ୍ନିପାରି ତାକୁ ସୁରକ୍ଷା ପ୍ରଦାନ କରିଥିଲେ । ଅର୍ଜୁନ ପୁନଶ୍ଚ ଅସ୍କନ୍ଦ ବନରେ ପ୍ରବେଶ କରି ହନୁମାନ ସମକ୍ଷରେ ଉପସ୍ଥିତ ହୋଇଥିଲେ । ଏଥର ହନୁମାନ ଅର୍ଜୁନ ସହିତ ଯୁଦ୍ଧ ନକରି ସରରେ ଜଳମଧ୍ୟରେ ଏକବନ୍ଧ ବାନ୍ଧିବାକୁ ପ୍ରବର୍ତ୍ତାଇଥିଲେ । କଥାହେଲା ଯେ ହନୁମାନ ସେହି ବନ୍ଧରେ ପାଦ ରଖିଲେ ଯେପରି ବନ୍ଧଟି ବୁଡ଼ି ନଯାଏ । ଅର୍ଜୁନ ସରରେ ବନ୍ଧବାନ୍ଧି ହନୁମାନଙ୍କୁ ପାଦ ରଖିବାକୁ ଆହ୍ୱାନ କଲେ । ହନୁମାନ ବିଶ୍ୱମୂର୍ତ୍ତି ଧାରଣ କରିବାରୁ ଅର୍ଜୁନ ଭୟରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ଶ୍ରୀକୃଷ୍ଣ ସେଠାରେ ପ୍ରବେଶ କରି ବନ୍ଧକୁ ଶିରରେ ଟେକିଧରିଲେ । ବନ୍ଧରେ ହନୁମାନ ପାଦ ଦେବାରୁ ମହାଭାରା ପାଇ ଶ୍ରୀକୃଷ୍ଣ ରୁଧିର ଉଦ୍‌ଗୀରଣ କଲେ । ଆର ପାଦ ନରଖିବା ପାଇଁ ବନ୍ଧତଳରୁ ଶବ୍ଦ ଶୁଭିଲା ।

ହନୁମାନ ଧ୍ୟାନରେ ବସି ବନ୍ଧତଳେ ଶ୍ରୀକୃଷ୍ଣ ଅଛନ୍ତି ବୋଲି ଜାଣିପାରି ମନଦୁଃଖ କଲା । ସେଠାରେ ହନୁମାନଙ୍କୁ ଶ୍ରୀକୃଷ୍ଣ ଶଙ୍ଖ ଚକ୍ର ଗଦା ପଦ୍ମଧରି ଚତୁର୍ଭୁଜ ରୂପ ପ୍ରଦର୍ଶନ କରାଇଥିଲେ । ଏହାପରେ ହନୁମାନ ନିଜେ ଯାଇ ସୁଗନ୍ଧିକା ପୁଷ୍ପ ହରଣ କରି ଆଣିଥିଲେ ।

ଏହି ବିଷୟ ବସ୍ତୁକୁ ନେଇ ସାରଳା ଦାସ ସୁଗନ୍ଧା ହରଣ ଗ୍ରନ୍ଥର ରଚନା କରିଛନ୍ତି । ମହାଭାରତର କାହାଣୀକୁ ନେଇ ଏହା ତାଙ୍କର ଅନ୍ୟତମ କାବ୍ୟଗ୍ରନ୍ଥ ।

'ନାଗାର୍ଜୁନ ଯୁଦ୍ଧ' କାବ୍ୟରେ ଅର୍ଜୁନ ଓ ତାଙ୍କ ପୁଅ ନାଗାର୍ଜୁନଙ୍କ ମଧ୍ୟରେ ଯୁଦ୍ଧକୁ ବିଷୟବସ୍ତୁ କରାଯାଇଛି । ଭାରତ ହରିବଂଶରେ ଅର୍ଜୁନ ଓ ନାଗାର୍ଜୁନଙ୍କର ଯୁଦ୍ଧ ପ୍ରସଙ୍ଗକୁ ବିସ୍ତୃତଭାବରେ ବର୍ଣ୍ଣନା କରାଯାଇଛି । ଭାରତ ହରିବଂଶ ଅନୁସାରେ ନାରଦ ମହାମୁନି ଦିନେ ଯୁଧିଷ୍ଠିରଙ୍କର ସଭାରେ ପହଞ୍ଚି ଯମପୁରରେ ଥିବା ତାଙ୍କ ବାପା ପଣ୍ଡୁଙ୍କ ସମ୍ପର୍କରେ ସୂଚନା ଦେଲେ । ପଣ୍ଡୁ ଯମପୁରରେ ତିନି ପାହାଚ ତଳକୁ ଛିଡ଼ା ହୋଇ ରହିଥିଲେ । ମାତ୍ର ଯୁଧିଷ୍ଠିର ରାଜସୂୟ ଯଜ୍ଞ କରିବାପରେ ପଣ୍ଡୁ ଦୁଇ ପାହାଚ ଉପରକୁ ଉଠି ଗୋଟିଏ ପାହାଚ ତଳେ ଠିଆ ହୋଇରହିଲେ । ଗଣ୍ଡାବଧ କରି ପିତୃ ଶ୍ରାଦ୍ଧ କଲେ ପଣ୍ଡୁ ଆଉ ଉପରକୁ ଉଠିବେ ବୋଲି ପ୍ରକାଶ କରିବାରୁ ଯୁଧିଷ୍ଠିର ଗଣ୍ଡାବଧ କରି ଆଣିବାପାଇଁ ଅର୍ଜୁନଙ୍କୁ ପ୍ରେରଣ କଲେ ।

ଅର୍ଜୁନ ଶବର ବେଶରେ ଗମନ କରି କୌଣସିଠାରେ ଗଣ୍ଡା ନପାଇ ପାର୍ବତୀଙ୍କର ଗଣ୍ଡାକୁ ବଧ କରିଦେଲେ । ପାଣ୍ଡବଙ୍କର ଗଣ୍ଡାର ସୁରକ୍ଷାର ଦାୟିତ୍ୱରେ ଥିଲେ ଅର୍ଜୁନଙ୍କର ପୁତ୍ର ନାଗାର୍ଜୁନ । ପିତାଙ୍କୁ ଚିହ୍ନି ନଥିବାରୁ ନାର୍ଗାଜୁନ ଅର୍ଜୁନଙ୍କ ସହିତ ଯୁଦ୍ଧ ଆରମ୍ଭ କରିଦେଲା ଓ

ଅର୍ଜୁନଙ୍କର ପ୍ରାଣ ହରଣ କରିନେଲା । ଏକଥା ଜାଣିପାରି ଶ୍ରୀକୃଷ୍ଣ ଶିବଙ୍କ ସହିତ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଗଲେ । ହରିହରଙ୍କ ମଧ୍ୟରେ ପ୍ରବଳ ଯୁଦ୍ଧ ହେଉଥିବା ସମୟରେ ଯମ ଅର୍ଜୁନଙ୍କୁ ଜୀବନ ଦାନ ଦେବାରୁ ଯୁଦ୍ଧ ବନ୍ଦ ରହିଲା । ପିତା ଓ ପୁତ୍ରଙ୍କର ମିଳନ ହେଲା ।

(୬) **ଚନ୍ଦ୍ରକଳା ହରଣ :** ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥିବିଭାଗରେ ଚନ୍ଦ୍ରକଳା ହରଣ ନାମକ ଯେଉଁ ପୋଥିଖଣ୍ଡିଏ ଉପଲବ୍ଧ ହେଉଛି ତାହା ମହାଭାରତର ମଧ୍ୟପର୍ବର ବିଷୟବସ୍ତୁ ବୋଲି ପୋଥିରେ ଉଲ୍ଲେଖ ରହିଛି । ମାତ୍ର ମଧ୍ୟପର୍ବରେ ଚନ୍ଦ୍ରକଳା ନାମରେ ଏକ ନାରୀ ଚରିତ୍ର ଦେଖିବାକୁ ମିଳୁନଥିବାରୁ କବି ଚନ୍ଦ୍ରାବତୀକୁ ଚନ୍ଦ୍ରକଳା ବୋଲି କହୁଥିବାର ମନ ମଧ୍ୟରେ ସନ୍ଦେହ ସୃଷ୍ଟି ହୁଏ । ଚନ୍ଦ୍ରକଳା ହରଣ ପୋଥିର ଆରମ୍ଭରେ କବି ଲେଖିଛନ୍ତି-

ବନ୍ଦଇ ସରସ୍ୱତୀ ମାଗୋ ବ୍ରହ୍ମାର ଦୁଲଣୀ
ଶିରରେ ଶୋଭାବନ ତାଳୁରେ ଦିବ୍ୟମଣି
ନାନାଶାସ୍ତ୍ର ମାଗୋ ହୃଦରେ ବଖାଣି
ପ୍ରସନ୍ନ ହୁଅ ମତେ ବିଷ୍ଣୁଙ୍କ ପାଟରାଣୀ
ବିଷ୍ଣୁଙ୍କ ପାଶେ ମାଗୋ ଆହୋ ନିତ୍ୟେ ଥାଉ
ଯନ୍ତ୍ରଂ ଧରି ମାଗୋ ସୁସ୍ୱରେ ଗୀତ ଗାଉ
ଓଁକାର ଅକ୍ଷରୁ ମାଗୋ ହୋଇଲୁ ଅବତାର
ତୋର ରୂପଚାହିଁ ବଶ୍ୟ ହେଲେ ଚକ୍ରଧର
(ଚନ୍ଦ୍ରକଳା ହରଣ O.L.25)

ଚନ୍ଦ୍ରକଳା ହରଣକୁ ମଧ୍ୟପର୍ବର ବୋଲି ସୂଚନା ଦେବା ସଙ୍ଗେ ସଙ୍ଗେ ଭଣିତାରେ ସାରଳା ଚଣ୍ଡୀଦାସଙ୍କର ନାମମଧ୍ୟ ଉଲ୍ଲେଖ କରାଯାଇଛି ।

ବଦୟନ୍ତି ଅଗସ୍ତି ଶୁଣହେ ମହୀପତି
ଚନ୍ଦ୍ରକଳା ହରଣ ମୋର ମଧ୍ୟପର୍ବ ରୀତି
ଚନ୍ଦ୍ରକଳା ହରଣ ହୋଇଲାକ ଶେଷ
କୃଷ୍ଣପାଦେ ଶରଣ ସାରଳା ଚଣ୍ଡୀଦାସ
(ଚନ୍ଦ୍ରକଳା ହରଣ O.L.25)

(୭) **ଅଧ୍ୟାତ୍ମ ରାମାୟଣ ଓ ବିଲଙ୍କା ରାମାୟଣ :** ଅଧ୍ୟାତ୍ମ ରାମାୟଣ ଓ ବିଲଙ୍କା ରାମାୟଣ ସାଧାରଣ ରାମାୟଣଠାରୁ ଅପେକ୍ଷାକୃତ ଭିନ୍ନ । ଅଧ୍ୟାତ୍ମ ରାମାୟଣରେ ରାମାୟଣପରି ସାତୋଟି କାଣ୍ଡ ରହିଥିଲେ ମଧ୍ୟ ସେଥିରେ ରାମଚନ୍ଦ୍ରଙ୍କୁ ପୂର୍ଣ୍ଣବ୍ରହ୍ମ ହିସାବରେ କଳନା କରାଯାଇଛି । ପାର୍ବତୀଙ୍କର ପ୍ରଶ୍ନ ଓ ଶିବଙ୍କ ଉତ୍ତରରେ ବାଳକାଣ୍ଡଠାରୁ ଉତ୍ତରାକାଣ୍ଡ ପର୍ଯ୍ୟନ୍ତ ରାମଚନ୍ଦ୍ରଙ୍କୁ ସ୍ୱୟଂ ଭଗବାନ ହିସାବରେ ପରିଗଣନା କରାଯାଇ ଅଧ୍ୟାତ୍ମ ଦର୍ଶନ ଉପରେ ଗୁରୁତ୍ୱ ଦିଆଯାଇଛି । ଅଷ୍ଟାଦଶ ଶତାବ୍ଦୀରେ କବି ହଳଧର ଦାସ ମଧ୍ୟ ଓଡ଼ିଆ ଭାଷାରେ ଅଧ୍ୟାତ୍ମ ରାମାୟଣ ରଚନା କରିଛନ୍ତି ।

ଡ. ନରେନ୍ଦ୍ର ନାଥ ମିଶ୍ର 'ବଳରାମ ଦାସ ଓ ଓଡ଼ିଆ ରାମାୟଣ' ଗ୍ରନ୍ଥରେ ସାରଳାଦାସଙ୍କ ବିଲଙ୍କା ରାମାୟଣକୁ ଓଡ଼ିଆ ଭାଷାର ପ୍ରଥମ ରାମ ସାହିତ୍ୟ ବୋଲି ବିବେଚନା କରିଛନ୍ତି । ବିଲଙ୍କା ରାମାୟଣ ଉପରେ ସଂସ୍କୃତ ଅଦ୍ଭୁତ ରାମାୟଣର ପ୍ରଭାବ ପଡ଼ିଛି । ଏଥିରେ ଶକ୍ତି ସ୍ୱରୂପିଣୀ ସୀତାଙ୍କର ମହିମା ବର୍ଣ୍ଣନା କରାଯାଇଛି । ରାବଣକୁ ବିନାଶକରି ଆସିବାପରେ ସହସ୍ରଶିରା ରାବଣକୁ ବିନାଶ କରିବାପାଇଁ ସୀତା ପରାମର୍ଶ ଦେଇଛନ୍ତି । କବି ସୀତାଙ୍କର ଗୌରବ ବୃଦ୍ଧିକରି ତାଙ୍କୁ ଚଣ୍ଡୀଭାବରେ କଳନା କରିଛନ୍ତି । ଏହାର ବୈଶିଷ୍ଟ୍ୟ ସମ୍ପର୍କରେ ସୂଚନା ଦେଇ ଡ. ନରେନ୍ଦ୍ର ନାଥ ମିଶ୍ର କହିଛନ୍ତି, 'ଲଙ୍କା ଯୁଦ୍ଧ ଶେଷରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ପରେ ଏହାର କଥାଭାଗ ଆରମ୍ଭ ହୋଇଅଛି । ବାଲ୍ମୀକି ରାମାୟଣର କଥାବସ୍ତୁର ମୂଳସ୍ରୋତ ସହିତ ଏହାର କୌଣସି ସାମଞ୍ଜସ୍ୟ ନାହିଁ । ରାମଚରିତ୍ରର ପ୍ରକାଶ ଆଂଶିକ ହେଲେ ହେଁ ସେ ସାରଳା ଦାସଙ୍କ ବର୍ଣ୍ଣିତ ଘଟଣାବଳୀର ପ୍ରଭାବ ପରବର୍ତ୍ତୀ ଓଡ଼ିଆ ରାମାୟଣମାନଙ୍କରେ ଅନୁଭୂତ ହୁଏ । ବଳରାମ ଦାସ ଦାଣ୍ଡି ରାମାୟଣର ସୁନ୍ଦରାକାଣ୍ଡରେ ହନୁମାନକୁ ପ୍ରାଧାନ୍ୟ ଦେବାରେ ସାରଳା ଦାସଙ୍କ ଦୃଷ୍ଟାନ୍ତ ଗ୍ରହଣ କରିଥିବା ସମ୍ଭବ । କାରଣ, ବିଲଙ୍କା

ରାମାୟଣରେ ସାରଳା ଦାସହିଁ ପ୍ରଥମେ ହନୁମାନଙ୍କୁ ଉପନାୟକର ସ୍ଥାନ ଦେଇଛନ୍ତି । ସର୍ବତ୍ର ହନୁମାନର ବୀରତ୍ୱ ଓ ଅଦ୍ଭୁତ କର୍ମ ବିଶଦ ଭାବରେ ବର୍ଣ୍ଣନା କରିଅଛନ୍ତି । ଏଥିରେ ଦୁଇଟି ସ୍ଥାନରେ ମଥାରୁ ବ୍ରହ୍ମଅଗ୍ନି କାଢ଼ି ହନୁମାନ ବିଲଙ୍କା ଦହନ କରିଥିବାର ଚିତ୍ର ସାରଳା ଦେଇଛନ୍ତି । ବଳରାମ ଏହା ଗ୍ରହଣ କରିଛନ୍ତି । ହନୁମାନର ମାୟାମୃତ୍ୟୁ, ରାବଣର ରାଣୀମାନଙ୍କର ନାକକାନ କର୍ତ୍ତନ ଆଦି ପ୍ରସଙ୍ଗ ସାରଳା ଦାସଙ୍କ ଅନୁସରଣରେ ବଳରାମ ଦାସ ବର୍ଣ୍ଣନା କରିଥିବାର ମନେହୁଏ' । (ବଳରାମ ଦାସ ଓ ଓଡ଼ିଆ ରାମାୟଣ ପୃ ୧୬୭)

(୮) **ମାଳଶ୍ରୀ, ସ୍ତୁତି :** ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ମାଳଶ୍ରୀ, ସ୍ତୁତି ନାମରେ ଏକ ପୋଥି ରହିଛି ବୋଲି ନୀଳମଣି ମିଶ୍ର An Alphabetical Catalogue of Authors ଗ୍ରନ୍ଥରେ ସୂଚିତ କରିଛନ୍ତି । ଡ. ଦୁର୍ଗାପ୍ରସନ୍ନ ପଣ୍ଡା ମଧ୍ୟ କୋଣାର୍କ-୧୯୮୯ର ସେପ୍ଟେମ୍ବର-ଅକ୍ଟୋବର ସଂଖ୍ୟାରେ ସାରଳା ରଚନାବଳୀ ଶୀର୍ଷକ ପ୍ରବନ୍ଧରେ ଏହି ମାଳଶ୍ରୀଗ୍ରନ୍ଥ ସମ୍ପର୍କରେ ଆଲୋଚନା କରିଛନ୍ତି । ମାଳଶ୍ରୀର ଅର୍ଥହେଲା ଶ୍ରେଷ୍ଠ ସ୍ତୁତିର ଏକ ମାଳା । ଓଡ଼ିଶାରେ ଅନେକ କବିଙ୍କର ମାଳଶ୍ରୀ ଦୃଷ୍ଟିଗୋଚର ହୋଇଥାଏ । ମାତ୍ର ସାରଳାଦାସ ପ୍ରଥମକରି ମାଳଶ୍ରୀ ରଚନା ଆରମ୍ଭ କରିଥିଲେ । ଡ. ପଣ୍ଡା ତାଙ୍କର ପ୍ରବନ୍ଧରେ ଦୁଇଗୋଟି ମାଳଶ୍ରୀକୁ ଉଦାହରଣ ଭାବରେ ପ୍ରଦାନ କରିଛନ୍ତି । ସେ ଦୁଇଟି ହେଲା-

(୧) ଜୟ ଜୟ ମଧୁ କଇଟଭ ହାରିଣୀ
ମହିଷାସୁର ମାରିଣୀ ତାରିଣୀ
ହୁଂକାର ଧ୍ୱଂସିତ ଧୂମ୍ରଲୋଚନା
କୃତ ଚଣ୍ଡିମୁଣ୍ଡ ବନ୍ଧ ରଞ୍ଜନା

(୨) କହନ୍ତି ସାରଳା ଦାସ କବି ଶୂଦ୍ରମୁନି
ତବ ପଦ୍ମପାଦେ ବିନୟେ ଭଗତି
ଜୟ ଜୟ ଦୁର୍ଗାମାଗୋ ଅନ୍ନପୂର୍ଣ୍ଣା ପାର୍ବତୀ
କରନ୍ତି ରଣେ ଯେ ବିନୟେ ଦୟିନୀ
ବଦନ୍ତି ସାରଳା ଦାସ କବି ଶୂଦ୍ରମୁନି ।

ଡ. ପଣ୍ଡା 'ତୁଷ୍ଟି' ଶିରୋନାମାରେ ମଧ୍ୟ ଗୋଟିଏ କବିତାକୁ ଉଦାହରଣ ଭାବରେ ପ୍ରଦାନ କରିଛନ୍ତି । ସେହି କବିତାଟି ହେଲା-

ଶ୍ରୀ ଦୁର୍ଗାଙ୍କୁ ସୁମରଣା ବହୁତେ
ଆପଦ ଖଣ୍ଡିନୀ ମାଗୋ ଜାତ ଦେବ ହିତେ
ସୁମରନ୍ତି କାନ୍ତାୟେନୀ ଅଭୟେ ମହାମାୟେ
କୃପାକର ମାହେଶ୍ୱରୀ ଦୁର୍ଗତି କର କ୍ଷୟେ
ଦେବବୃନ୍ଦ ବିନତି ଶୁଣି ମାତ ଦୁର୍ଗେ
ସେ ଯେ ଆପଦ ଖଣ୍ଡିନୀ ସର୍ବଯୁଗେ

X X X X

ଜଗୁ ଜନମୋହିନୀ ଜୟଶ୍ରୀ ମଙ୍ଗଳେ
ସଦା ସମ୍ପତ୍ତି ଦେଇ ଦଧିବାମନ ଅନୁକୂଳେ
ନମସ୍ତେ କାନ୍ତାୟେନୀ ନମସ୍ତେ ନମସ୍ତେ
ତୁମ୍ଭ ଶ୍ରୀ ଚରଣେ ଭଜନ ମୁଁ କରଇ ଅନୁବ୍ରତେ
ଯେଉଁ ଦେବୀ ସଂସାରକୁ ଧାରଣ ଆଦିପତି
ଯୋଗେଶ ଯୋଗେଶ୍ୱରୀ ଗୋ ସାରଳା ଚଣ୍ଡୀମୂର୍ତ୍ତି
ସଂସାରେ ସହଣି ତୁ ଜନ ମନବାଞ୍ଛା

ଆପଦ ଖଣ୍ଡିଣୀ ମାତ ଗୋ କରସି ମୋତେ ରକ୍ଷା
ବିପଦୁଁ ଉଦ୍ଧାରହେବି ଶ୍ରୀ ସାରଳା ଚଣ୍ଡୀ ପ୍ରସନ୍ନେ
ବଦନ୍ତି ସାରଳା ଦାସ ସେବିବି ଜନ୍ମେ ଜନ୍ମେ ।
(ମୂଳପୋଥି : O.L.852 -ପୃ-୧୫)

(୯) **ଚଣ୍ଡୀ ପୁରାଣ :** ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ସାରଳା ଦାସଙ୍କ ଚଣ୍ଡୀ ପୁରାଣର ପ୍ରାୟ ୧୫ଖଣ୍ଡ ପୋଥି ରହିଛି । କଟକ ବାଲୁବଜାର ସ୍ଥିତ ଅରୁଣୋଦୟ ପୁସ୍ତକାଳୟରେ ଚଣ୍ଡୀପୁରାଣ ବା ଚଣ୍ଡୀଯୁଦ୍ଧ ନାମରେ ଏକ ପୁସ୍ତକ ଚଉଦ ଅକ୍ଷର ବୃତ୍ତରେ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ପ୍ରକାଶିତ ହୋଇ ମିଳିପାରୁଛି । ଏହା ବ୍ୟତୀତ କୃଷ୍ଣ ଚରଣ ସାହୁ ମଧ୍ୟ ଉତ୍କଳ ବିଶ୍ୱବିଦ୍ୟାଳୟର ଦୁଇଟି କାଗଜ ନକଲ ଅନୁଲିପି ଓ ଡକ୍ଟର ବଂଶୀଧର ଷଡଙ୍ଗୀ (ଅଧ୍ୟାପକ, ନିମାପଡ଼ା କଲେଜ)ଙ୍କ ଦ୍ୱାରା ସଂଗୃହୀତ ଗୋଟିଏ ପୋଥି ସାହାଯ୍ୟରେ ଚଣ୍ଡୀପୁରାଣର ଶୁଦ୍ଧପାଠ କରି ସଂପାଦନା କରିଛନ୍ତି । ଅରୁଣୋଦୟ ପ୍ରେସର ଚଣ୍ଡୀପୁରାଣ ଚଉଦ ଅକ୍ଷରୀ ହୋଇଥିଲେ ମଧ୍ୟ ତାହାର ଭଣିତାରେ ସାରଳା ଦାସଙ୍କ ନାମ ରହିଛି ।

ଛପନ କୋଟି ଦେବୀ ଯେ ଚୌଷଠି ଯୋଗିନୀ
ଅଷ୍ଟଚଣ୍ଡୀ ଦେବୀ ନବକୋଟି କାତ୍ୟାୟନୀ
ମହିଷାଙ୍କୁ ମରଦିଲେ ଯେଉଁ ମହାଦେବୀ
ତାଙ୍କ ପାଦେ ଶରଣ ମୁଁ ଶାରଳା ଯେ କବି
ଜନ୍ମେ ଜନ୍ମେ ଅଟଇଗୋ ମୁହିଁ ଶୂଦ୍ରମୁନି
କେବଳ ସେବିଲି ଦୁର୍ଗା ଶ୍ରୀ ଚରଣ ବେନି ।
(ଅରୁଣୋଦୟ ପ୍ରେସ୍‌ଦ୍ୱାରା ମୁଦ୍ରିତ ଚଣ୍ଡୀପୁରାଣ ପୃ-୧୫୪)

କୃଷ୍ଣଚରଣ ସାହୁଙ୍କ ଶୁଦ୍ଧପାଠ ଓ ନିତ୍ୟାନନ୍ଦ ସାହୁଙ୍କଦ୍ୱାରା ପ୍ରକାଶିତ ଚଣ୍ଡୀ ପୁରାଣରେ ଅକ୍ଷରର ସାମଞ୍ଜସ୍ୟ ନଥିଲେ ମଧ୍ୟ ବିଷୟ ବସ୍ତୁରେ ଅସମାନତା ଦେଖିବାକୁ ମିଳେନାହିଁ । ଉଭୟ ଗ୍ରନ୍ଥରେ ସାରଳା ଦାସ ଗଣେଶ ଓ ସାରଳା ଦେବୀଙ୍କ ବନ୍ଦନା କରିସାରିବା ପରେ ଗ୍ରନ୍ଥରେ ମହିଷାସୁର ତପସ୍ୟା କରିବାକୁ ଯାଇଛି । ତାପରେ ମହିଷାସୁରର ଦିଗ୍‌ବିଜୟ ବର୍ଣ୍ଣନା କରାଯାଇଛି । ମେରୁଶୃଙ୍ଗକୁ ଯୁଦ୍ଧରେ ପରାସ୍ତକରି ମହିଷାସୁର ଧୂମ୍ରଲୋଚନଙ୍କୁ ସାରଥି ପଣେ ଶାଢ଼ୀ ପ୍ରଦାନ କରିଛି । ଏହାପରେ ଚଣ୍ଡମୁଣ୍ଡ ସହିତ ମହିଷାସୁରର ଯୁଦ୍ଧ ଓ ପରାଜୟ ବର୍ଣ୍ଣନା କରାଯାଇଛି । ମହିଷାସୁର ଦକ୍ଷିଣ ଦିଗକୁ ଗମନ କରି ଚନ୍ଦ୍ରାବତୀକୁ ବିବାହ କରିଛି । ଶୁମ୍ଭ ଓ ନିଶୁମ୍ଭ ସହ ଯୁଦ୍ଧ ପରେ ଦୁର୍ଗା ଆସି ରତ୍ନଗିରିରେ ଅବସ୍ଥାନ କରିଛନ୍ତି । ଏହାପରେ ସାରଳା ଦାସ ଚଣ୍ଡ ମୁଣ୍ଡ, ଶୁମ୍ଭ ନିଶୁମ୍ଭ, ଚାମର ବେମାଳ, କାନ୍ତିମାଳା, ବିଡ଼ାଳାକ୍ଷ, ରକ୍ତବୀର୍ଯ୍ୟ, କାଳଦଣ୍ଡ, କାଳବିମୋଚନ ଇତ୍ୟାଦିଙ୍କର ଯୁଦ୍ଧ ଓ ଯୁଦ୍ଧରେ ମୃତ୍ୟୁ କଥା ବର୍ଣ୍ଣନା କରିଛନ୍ତି । ପରିଶେଷରେ ମହିଷାସୁର ଯୁଦ୍ଧକୁ ଗମନ କରି ମୃତ୍ୟୁବରଣ କରିଛି ।

(୧୦) **ମହାଭାରତ ଓ ଭାରତ ହରିବଂଶ :** ଯେଉଁଗ୍ରନ୍ଥ ଗୁଡ଼ିକ ସାରଳା ଦାସ ରଚନା କରିଛନ୍ତି ବୋଲି ଏଠାରେ ଆଲୋଚନା କରାଗଲା ସେ ସମସ୍ତ ଗ୍ରନ୍ଥ ସାରଳା ଦାସଙ୍କର ନୁହେଁ ବୋଲି କେତେକ ଗବେଷକ ମତବ୍ୟକ୍ତ କରନ୍ତି । କାରଣ ଏଥିମଧ୍ୟରୁ କେତେକଗ୍ରନ୍ଥ ସାରଳାଙ୍କ ନାମରେ ଭଣିତା ହୋଇଥିଲେ ମଧ୍ୟ ଅନ୍ୟ କେତେକ ସିଦ୍ଧେଶ୍ୱର ଦାସଙ୍କ ନାମରେ ଭଣିତା କରାଯାଇଛି । ସାରଳାଙ୍କର ଆଦ୍ୟ ଜୀବନର ନାମ ସିଦ୍ଧେଶ୍ୱର ପରିଡ଼ା ହୋଇଥିବା ଯୋଗୁଁ ସିଦ୍ଧେଶ୍ୱର ଦାସଙ୍କୁ ସାରଳା ବୋଲି ଗ୍ରହଣ କରିବାକୁ ଏହି ଗବେଷକମାନେ କୁଣ୍ଠାବୋଧ କରୁଛନ୍ତି ।

ସାରଳାଦାସଙ୍କର ଗ୍ରନ୍ଥସମୂହର ଆଲୋଚନା କାଳରେ ତାଙ୍କ ରଚିତ ମହାଭାରତ ଓ ଭାରତ ହରିବଂଶକୁ ଏଠାରେ ଆଲୋଚନାର ପରିସରଭୁକ୍ତ କରାଯାଉନାହିଁ । କାରଣ ବହୁ ଗବେଷକ ମହାଭାରତ ସଂପର୍କରେ ସେମାନଙ୍କର ଗବେଷଣାତ୍ମକ ନିବନ୍ଧ ପ୍ରକାଶ କରିସାରିଲେଣି । ରାଜ୍ୟ ସାଂସ୍କୃତିକ ବ୍ୟାପାର ବିଭାଗଦ୍ୱାରା ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସମ୍ପାଦିତ ମହାଭାରତ ମଧ୍ୟ ପ୍ରକାଶିତ ହୋଇସାରିଛି । ତେଣୁ ଏଠାରେ ମହାଭାରତର ଆଲୋଚନା କରିବାର ଆବଶ୍ୟକତା ଉପଲବ୍ଧ ହୁଏନାହିଁ । ସେହିପରି ଭାରତ ହରିବଂଶର ବିସ୍ତୃତ ଆଲୋଚନା ଏଠାରେ

କରାଯାଉଥିବାରୁ ପୁଣିଥରେ ଏଠାରେ ତାର ଆଲୋଚନା ଦ୍ୱିରୁକ୍ତି ଦୋଷଦୁଷ୍ଟ ହେବାର ସମ୍ଭାବନା ରହିଛି ।

ଯେଉଁମାନେ ସାରଳାଙ୍କର ରଚନାବଳୀ ସମ୍ପର୍କରେ ଆଲୋଚନା କରିବେ ସେମାନେ ଏଥିରେ ବର୍ଣ୍ଣିତ ତାଙ୍କର ସମଗ୍ର ରଚନାକୁ ଲକ୍ଷ୍ୟ କରିବା ସହିତ ଅନ୍ୟମାନେ ଆଲୋଚନା କରିଥିବା ମହାଭାରତ ତଥା ଏହି ମୁଖବନ୍ଧରେ ଅନ୍ୟତ୍ର ଆଲୋଚିତ ହୋଇଥିବା ଭାରତ ହରିବଂଶକୁ ଦୃଷ୍ଟିପଥାରୂଢ଼ କଲେ ସାରଳାଙ୍କୁ ସଠିକ୍ ଭାବରେ ମୂଲ୍ୟାୟନ କରିହେବ ।

## ॥ ଛଅ ॥

**ଭାରତ ହରିବଂଶରେ ସାରଳା ଦାସଙ୍କର ବୈଶିଷ୍ଟ୍ୟ:** କବିତ୍ୱ ଶକ୍ତିରେ ସାରଳା ଦାସଙ୍କର ସାହିତ୍ୟ ଭରପୂର । ନିଜକୁ ମୂର୍ଖ ଓ ଅପଣ୍ଡିତ କହୁଥିଲେ ମଧ୍ୟ ସେ ମୂର୍ଖ କିମ୍ବା ଅପଣ୍ଡିତ ନଥିଲେ । ଯିଏ ସଂସ୍କୃତ ମହାଭାରତକୁ ପଢ଼ି ତାକୁ ଆତ୍ମସ୍ଥ କରିପାରିଥିଲେ, ଯିଏ ଅଧ୍ୟାତ୍ମ ରାମାୟଣ ଓ ରାମାୟଣକୁ ଅଧ୍ୟୟନ କରିଥିଲେ ତାଙ୍କୁ ଆମେ ମୂର୍ଖବୋଲି କହିବା କେଉଁ ଯୁକ୍ତି ବଳରେ ! ତାଙ୍କ କାବ୍ୟ କବିତାରେ ଥିବା ନୂତନତ୍ୱ ଓ କବିତ୍ୱର ପ୍ରକାଶ ଜଣେ ମହାକବିଙ୍କ ପକ୍ଷରେ ହିଁ ସମ୍ଭବ ହୋଇପାରେ । ଭାରତ ହରିବଂଶରୁ ସାରଳାଦାସଙ୍କ କେତେକ ବୈଶିଷ୍ଟ୍ୟ ସଂପର୍କରେ ଆଲୋଚନା କରାଯାଉଛି ।

(୧) **ଲୌକିକ ଭାଷା ପ୍ରତି ଅନୁରକ୍ତି :** ସାରଳା ଦାସ ସଂସ୍କୃତ ସାହିତ୍ୟକୁ ଭଲଭାବରେ ଅଧ୍ୟୟନ କରିଥିଲେ । ମାତ୍ର ଆମ ନିଜ ଭାଷାରେ କାବ୍ୟ ରଚନା କରିବାକୁ ସେ ଗୁରୁତ୍ୱ ଦେଇଥିଲେ । ଆମ ନିଜ ଭାଷା ପୁଣି ଦୁଇପ୍ରକାରର । ଗୋଟିଏ ଭାଷାରେ ସଂସ୍କୃତକୁ ଆମେ ତତ୍‌ସମଭାବରେ ବ୍ୟବହାର କରୁଛୁ । ଅନ୍ୟଟି ହେଲା ଲୌକିକ ଭାଷା । ପାଟିକୁ ଯେମିତି ଆସିଲା ସେ ଭାଷାକୁ ଆମେ ସେମିତି କହିଦେଉଛୁ । ସଂପୂର୍ଣ୍ଣ ଭାବରେ ଲୌକିକ ଭାଷା ପ୍ରୟୋଗ କରି କାବ୍ୟ ରଚନା କରିବାରେ ସାରଳା ଦାସ ଆଗ୍ରହୀ ଥିଲେ । ସଂସ୍କୃତରେ ମୂଳ ଶବ୍ଦ ହେଲା ଦୁର୍ଯ୍ୟୋଧନ । ସାରଳା ଦାସ ଦୁର୍ଯ୍ୟୋଧନ ଶବ୍ଦ ଜାଣିନଥିଲେ ବୋଲି କହିହେବ ନାହିଁ । ଜାଣିଥିଲେ ମଧ୍ୟ ଲୌକିକଭାଷାରେ ଦୁର୍ଯ୍ୟୋଧନକୁ ଦ୍ରିଯୋଧନ ବା ଦୁର୍ଯୋଧନ ବୋଲି କହୁଥିବା ଯୋଗୁଁ ସାରଳାଦାସ କାବ୍ୟରେ ସେହି ଶବ୍ଦ ବ୍ୟବହାର କରିବାକୁ ଉଚିତ୍ ବୋଲି ମନେ କରିଛନ୍ତି । ମୂଳ ସଂସ୍କୃତ ଶବ୍ଦ ଓ ସାରଳା ଦାସ ବ୍ୟବହାର କରିଥିବା ଲୌକିକ ଶବ୍ଦ ଲକ୍ଷ୍ୟ କରାଯାଉ ।

| **ମୂଳ ସଂସ୍କୃତ ଶବ୍ଦ** | **ସାରଳା ଦାସ ବ୍ୟବହାର କରିଥିବା ଶବ୍ଦ** |
|---|---|
| ଦୁର୍ଯ୍ୟୋଧନ | ଦ୍ରିଯୋଧନ/ଦୁର୍ଯୋଧନ |
| ଦୁଃଶାସନ | ଧୁସାସନ |
| ଯୁଧିଷ୍ଠିର | ଯୁଯେଷ୍ଠି |
| ବୃକୋଦର | ବିକୋଦର |
| ସବ୍ୟସାଚୀ | ସର୍ବସାଚି |
| ଜୟଦ୍ରଥ | ଯଦ୍ୟରଥ |
| ନନ୍ଦିନୀ | ନନ୍ଦନି |
| ଅପ୍‌ସରା | ଅପକ୍ଷରା |
| ବଦନ୍ତି | ବଦୟନ୍ତି |
| ସାଗର | ସାହେର |
| ବ୍ୟୂହ | ଭୁଅ |
| ଦ୍ରୌପଦୀ | ଦ୍ରୋପଦି/ଦ୍ରୋପତି |
| ଅଭିମନ୍ୟୁ | ଅଭିମନୁ ଇତ୍ୟାଦି । |

(୨) **ଦାଣ୍ଡୀବୃତ୍ତରେ ରଚନା :** ଦାଣ୍ଡୀବୃତ୍ତରେ କାବ୍ୟ ରଚନା କରିବା ସାରଳାଙ୍କ କାବ୍ୟରଚନାର ଅନ୍ୟତମ ବୈଶିଷ୍ଟ୍ୟ । ଦାଣ୍ଡୀ ବୃତ୍ତରେ ପାଦର ଅକ୍ଷର ସଂଖ୍ୟାରେ ମେଳ ନଥାଏ । ଗାଉଥିବା ଲୋକ ଯେଉଁଭଳିଆ ଗାୟନ କରେ ସେହି ଅନୁସାରେ କବି ପାଦକୁ କମ୍

ବା ବେଶୀ କରନ୍ତି । କବି କବିତା ଲେଖିବାବେଳେ ଧାଡ଼ିଗୁଡ଼ିକୁ ମନେ ମନେ ଗାୟନ କରିଥାଏ । ଭାରତ ହରିବଂଶରୁ ଦୁଇଟି ଉଦାହରଣ ଏଠାରେ ପ୍ରଦତ୍ତ ହେଲା ।

(୧) ତୋହର ଚରଣେ ମୁଂ କରଇ ଦଇନୀ - ୧୩ ଅକ୍ଷର
ଶରଣ ପଶିଲା ମାଗୋ ସାରୋଳା ଦାସ ଶୂଦ୍ରମୁନି - ୧୭ ଅକ୍ଷର

(୨) ପାହିଲାକ ରଜନୀ ପୂର୍ବେ ଦିଗେଂ ଉଦୟେ ହୋଇଲେ ଦିନକର - ୨୧ ଅକ୍ଷର
ଶୁଣ ଗୋ ଉମା ବୋଲି ବୋଲନ୍ତି ଶୂଳଧର - ୧୪ ଅକ୍ଷର

(୩) **ଉପମା ପ୍ରୟୋଗରେ ଚମତ୍କାରିତା :** ଉପମାର ଚମତ୍କାର ପ୍ରୟୋଗ ସାରଳା ଦାସଙ୍କ କବିତାର ବୈଶିଷ୍ଟ୍ୟ । ଭାରତ ହରିବଂଶରେ ଯେଉଁଠି ସୁଯୋଗ ପାଇଛନ୍ତି ସେ ସେଠାରେ ଉପମାର ସୁନ୍ଦର ପ୍ରୟୋଗ କରିଛନ୍ତି । ଭାରତ ହରିବଂଶର ସଚଳା ହରଣ ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କର କନ୍ୟା ସଚଳାକୁ ଇନ୍ଦ୍ରଙ୍କର ପୁତ୍ର ଚିତ୍ରସେନ ହରଣ କରିନେଇଛନ୍ତି । ଫଳତଃ ଇନ୍ଦ୍ରଙ୍କ ସହ ଗୋବିନ୍ଦଙ୍କର ଯୁଦ୍ଧ ହୋଇଛି । ଯୁଦ୍ଧ କ୍ଷେତ୍ରରେ ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ନିଜର ବଡ଼ିମା ପ୍ରକାଶ କରି ଇନ୍ଦ୍ର କହୁଛନ୍ତି-

କହନ୍ତି ସୁରପତି ଶୁଣରେ କହ୍ନାଇ
ଇତର ଜନ ପ୍ରାୟେ ମୋତେ ମଣୁ ତୁହି
ସୂଚୀ ମୂନରେ କି ମେରୁ ଉପୁଡ଼ଇ
ପବନ ବହିଲେକି ପୃଥିବୀ ଉଡ଼ିଯାଇ
ସୂର୍ଯ୍ୟକିରଣରେ କି ସୁଖଇ ସିନ୍ଧୁଜଳ
ଟେକା ଭାଙ୍ଗି ଚୂନା କି ଆକାଶ ମଣ୍ଡଳ
ସୁତା ଖିଅକରେ କି ନକ୍ଷତ୍ରମାଳ ଗୁନ୍ଥି
ପବନ ବନ୍ଦ ହୋଇବକି ବସାଇଲେ ଫାସି ।
(ଭାରତ ହରିବଂଶ : ପ୍ରସଙ୍ଗ : ସଚଳା ହରଣ)

ଏଠାରେ ଶ୍ରୀକୃଷ୍ଣଙ୍କୁ ସୂଚୀମୁନ, ପବନ, ସୂର୍ଯ୍ୟ କିରଣ, ଟେକା, ସୁତାଖିଅ ଓ ଫାଶ ସାହିତ ତୁଳନା କରାଯାଇଥିବା ବେଳେ ଇନ୍ଦ୍ର ନିଜକୁ ମେରୁ, ପୃଥିବୀ, ସିନ୍ଧୁଜଳ, ଆକାଶ ମଣ୍ଡଳ, ନକ୍ଷତ୍ରମାଳ ଓ ପବନ ସହିତ ତୁଳନା କରିଛନ୍ତି । ପୁନଶ୍ଚ ସେହି ଅଧ୍ୟାୟରେ ସଚୀରାଣୀ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରି କହୁଛନ୍ତି-

ତୁମ୍ଭେ ସେ ମୌସୋଧି ଆମ୍ଭେ ଅଟୁ ରୋଗି
ତୁମ୍ଭେ ସେ ଗଙ୍ଗାଜଳ ଆମ୍ଭେ ଅଟୁ ନଦି
ତୁମ୍ଭେ ସେ ମେରୁ ହରି ଆମ୍ଭେ ସେ ପର୍ବତ
ଆମ୍ଭେ ସେ ଦୁଷ୍ଟଜନ ତୁମ୍ଭେ ସେ ମହତ ।
(ଭାରତ ହରିବଂଶ : ପ୍ରସଙ୍ଗ : ସଚଳା ହରଣ)

ଏଠାରେ ସଚିରାଣୀ ନିଜକୁ ରୋଗୀ, ନଦୀ, ପର୍ବତ ଓ ଦୁଷ୍ଟଜନ ସହିତ ତୁଳନା କରିଥିବା ବେଳେ ଶ୍ରୀକୃଷ୍ଣଙ୍କୁ ମହୌଷଧି, ଗଙ୍ଗାଜଳ, ମେରୁ ଓ ମହତଜନ ସହିତ ତୁଳନା କରିଛନ୍ତି ।

ଭୀଷ୍ମଙ୍କୁ ସେନାପତି ପଦରେ ବରଣ କରିବା ସମୟରେ ସୈନ୍ୟ ସେନାମାନଙ୍କୁ ଦଧିଭାଣ୍ଡ ସହିତ ତୁଳନା କରାଯାଇଛି । କୃପବ୍ରହ୍ମା ଦୁର୍ଯ୍ୟୋଧନଙ୍କୁ ବୁଝାଇ କହିଛନ୍ତି ଯେ କୁରୁକ୍ଷେତ୍ର ଯୁଦ୍ଧରେ ସୈନ୍ୟମାନେ ଦଧି ହେବାବେଳେ ପାଣ୍ଡବମାନେ ଭାଣ୍ଡ ପ୍ରାୟ ହୋଇବେ । ଅର୍ଜୁନ ସେଥିରେ ଖୁଆ ହେବେ ଓ ବାସୁଦେବ ତାହାକୁ ମନ୍ଥନ କରିବେ । ଦଧି ନାଶ ହୋଇଗଲେ ଯେପରି ଲହୁଣି ସୃଷ୍ଟି ହୁଏ ସେହି ମାତ୍ର ତେରଜଣଙ୍କୁ ଛାଡ଼ି ଅନ୍ୟ ସମସ୍ତେ କୁରୁକ୍ଷେତ୍ର ଯୁଦ୍ଧରେ ବିନାଶପ୍ରାପ୍ତ ହେବେ ।

କୃପବ୍ରହ୍ମାଙ୍କର କଥାରେ ଦୁର୍ଯୋଧନ କ୍ରୋଧିତ ହୋଇ ନିଜର ଯୋଦ୍ଧାମାନଙ୍କୁ ନିନ୍ଦା କରିଛନ୍ତି । ସେମାନଙ୍କୁ ଅପମାନିତ କରି କହିଛନ୍ତି-

ସିଙ୍ଘ ହୋଇଣ ତ ହୋଇଲ ଛାଗଳ
ଧୋଣ୍ଡ ବିର୍ଯେ ଜନ୍ମି ଯେ ବୋଲାଅ ମଣିନାଗ ଆବର
ମଞ୍ଜାରି ପ୍ରାଏ ମଣିଂ କରିଥିଲିଂ ଆସା
ଏବେ ଦେଖିଲିଂ ତୁମ୍ଭେ ହୋଇଲ ବଣମୁଷା

(ଭାରତ ହରିବଂଶ : ପ୍ରସଙ୍ଗ : ଦୁର୍ଯ୍ୟୋଧନର ଭୀଷ୍ମଙ୍କୁ ସେନାପତି ପଦେ ବରଣ)

ଏଠାରେ ସିଂହ ସହିତ ଛାଗଳ, ଧୁଣ୍ଡ ସହିତ ମଣିନାଗ ତଥା ମଞ୍ଜାରି ସହିତ ବଣମୂଷାକୁ ତୁଳନା କରାଯାଇଛି । ଭୀଷ୍ମ ଯୁଦ୍ଧରେ ଧନୁଶର ତ୍ୟାଗ କରିବା ବେଳେ କବି ପାଚିଲା ଫୁଟି ସହିତ ଭୀଷ୍ମଙ୍କର କାର୍ଯ୍ୟକୁ ତୁଳନା କରିଛନ୍ତି-

ପାଚିଲା ଫୁଟି ଯେହ୍ନେ ପଡ଼ଇ ମିଳାଇ
ସେହି ରୂପେ ଭୀଷ୍ମଂ ତରଳ ଗଲେ ହୋଇ

(ଭାରତ ହରିବଂଶ : ପ୍ରସଙ୍ଗ : ଦୁର୍ଯ୍ୟୋଧନର ଭୀଷ୍ମଙ୍କୁ ସେନାପତି ପଦେ ବରଣ)

ଭାରତ ହରିବଂଶରେ ଯୁଦ୍ଧ କ୍ଷେତ୍ରରେ ଅତି ସୁନ୍ଦର ଉପମାମାନ ପ୍ରୟୋଗ ହୋଇଥିବାର ଦେଖିବାକୁ ମିଳିଥାଏ । ଦ୍ରୋଣଙ୍କର ପଦ୍ମବିହ୍ୱ ରଚନା କାଳରେ ଭୁରିଶ୍ରବା ଓ ପାର୍ଥଙ୍କ ମଧ୍ୟରେ ହୋଇଥିବା କଥୋପକଥନରେ କିପରି ଚମତ୍କାର ଉପମା ପ୍ରୟୋଗ କରାଯାଇଛି, ତାହା ଲକ୍ଷଣୀୟ । ଭୁରିଶ୍ରବା ପାର୍ଥଙ୍କୁ କହୁଛନ୍ତି-

ଭୁରିସର୍ବା ବୋଇଲେ ରେ କାହାକୁ ଡାକୁ ପାଥ
ତୁହି କୁପଜଳ ମୁହିଂ ଅଟଇ ସିନ୍ଧୁସାତ
ତୁହିଂ ଗିରିବର ମୁହିଂ ସିନା ମେରୁ
ତୁହି ଦୁବ ବୃକ୍ଷ ମୁହିଂ କଳ୍ପତରୁ
ମୁହିଂ ସେ ଗୁଞ୍ଜର ତୁହି ସେ ପିମ୍ପୁଡ଼ି
ନିଶ୍ୱାସ ପବନେ ରଥି ସାରଥି ଯିବେ ଉଡ଼ି ।

(ଭାରତ ହରିବଂଶ : ପ୍ରସଙ୍ଗ : ଦ୍ରୋଣଙ୍କର ପଦ୍ମବିହ୍ୱ ରଚନା)

ଭୁରିଶ୍ରବା ଅର୍ଜୁନଙ୍କୁ କୂପଜଳ, ଗିରିବର, ଦୁବବୃକ୍ଷ ଓ ପିମ୍ପୁଡ଼ି ସହିତ ତୁଳନା କରି ନିଜକୁ ସିନ୍ଧୁସାତ, ମେରୁ, କଳ୍ପତରୁ ଓ ଗୁଞ୍ଜର ବୋଲି କହି ସାରିବାପରେ ଅର୍ଜୁନ ପୁନଶ୍ଚ ଅନ୍ୟ ଏକ ଉପମାରେ ଭୁରିଶ୍ରବାଙ୍କୁ ସଠିକ୍ ଉତ୍ତର ଦେଇ କହିଛନ୍ତି-

ଅର୍ଜୁନ ବୋଇଲା ତୁ ତ ସମସ୍ତ କହିଲୁଂ
ଆପଣା ମରିବା କଥା ତଥ୍ୟ ନପାଇଲୁଂ ।
ତୁହି ସିନ୍ଧୁଜଳ ମୁହିଂ ଅଗସ୍ତି ମହାମୁନି
ତୁହି ମେରୁ ହୋଇଲେ ମୁହିଁ ସେ ପବନ ପୁଣି
ତୁହି ସିନା ହସ୍ତୀ ମୁହିଂ ଅଟେ ସିଙ୍ଘ
ଏହିକ୍ଷଣି ତୋହର ଛେଦିବଇଂ କନ୍ଧ

(ଭାରତ ହରିବଂଶ : ପ୍ରସଙ୍ଗ : ଦ୍ରୋଣଙ୍କର ପଦ୍ମବିହ୍ୱ ରଚନା)

ସାରଳା ଦାସ ଭାରତ ହରିବଂଶରେ ଭଗଦତ୍ତଙ୍କୁ ସେନାପତି ରୂପେ ବରଣ କରିବା ପ୍ରସଙ୍ଗରେ ନପୁଂସକ ସହିତ ଅନେକ କିଛିର ତୁଳନା କରିଛନ୍ତି । ଏହାକୁ ମଧ୍ୟ କବିଙ୍କର ଉପମା ପ୍ରୟୋଗ ଭାବରେ ଗ୍ରହଣକରାଯାଇପାରେ । ଶ୍ରୀକୃଷ୍ଣ ଓ ଯୁଧିଷ୍ଠିରଙ୍କ ମଧ୍ୟରେ ହେଉଥିବା କଥାବାର୍ତ୍ତାରେ ଶ୍ରୀକୃଷ୍ଣ କହିଛନ୍ତି-

କ୍ଷତ୍ରି ହୋଇ ଯେବେ ହୋଅ ଜଙ୍ଗମ
ଗୁରୁ ହୋଇ ଯେବେ ନକରେ କଲ୍ୟାଣ

ସ୍ତିରୀ ହୋଇ ଯେବେ ନଜ୍ୟା ନଥିଲା
ନୃପତି ହୋଇ ଯେବେ ପରରାଷ୍ଟ୍ର ନ ସାଧିଲା
ବୃକ୍ଷ ହୋଇ ଯେବେ ନ ଧରଇ ଫଳ
ନଦୀ ହୋଇ ଯେବେ ନ ବହଇ ଜଳ
ବଇଦ ହୋଇଣ ନ ଚିହ୍ନଇ ରୋଗ
ଯୁବାକାଳେ ଯେବେ ଯେହୁ ନକରଇ ଭୋଗ
ଦେବତା ହୋଇ ଯେବେ ନୋହଇ ପ୍ରସନ
ଗିରି ହୋଇ ଯେବେ ନ ସମ୍ଭାଳେ ବନ
କୂପ ହୋଇ ଯଦି ନ ଝରଇ ଜଳ
ସାଗର ହୋଇ ଯଦି ଚାଲନ୍ତେ ହୋଏ ଥଳ
ବେସ୍ୟା ହୋଇ ଯେବେ ହୋଇଲା କଷ୍ଟି
କୃଷି ହୋଇ ଯେବେ ଫଳିଲାକ ନଷ୍ଟି
ଦାନି ହୋଇ ଯେବେ ହୋଇଲା ଦାରିଦ୍ର
ପଣ୍ଡିତ ହୋଇ ଯେବେ ହୃଦେ ବହେ ରାଗ
ବିଅର୍ଥ ହୁଅନ୍ତି ଯେ ଏତେ ଏତେ ଜନ
ନ ପୁଂସେକ ସଙ୍ଗେ ଏହାକୁ କରିବ ଲେଖନ ।

(ଭାରତ ହରିବଂଶ : ପ୍ରସଙ୍ଗ : ସେନାପତି ରୂପେ ଭଗଦତ୍ତକୁ ବରଣ)

(୪) **ଛୋଟ ଛୋଟ କାହାଣୀର ପ୍ରୟୋଗ :** ପ୍ରସଙ୍ଗ କ୍ରମେ ଛୋଟ ଛୋଟ ଗଳ୍ପ କହିବାରେ ସାରଳାଦାସଙ୍କର ବୈଶିଷ୍ଟ୍ୟ ବିଦ୍ୟମାନ । ଭାରତ ହରିବଂଶରେ ବିଷୟବସ୍ତୁ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଅନେକ ଛୋଟ ଛୋଟ କାହାଣୀ ସାରଳା ଦାସ ସୃଷ୍ଟି କରିଯାଇଛନ୍ତି ।

ଏକଦା ପାଣ୍ଡବଙ୍କର ଦୂତହୋଇ ଶ୍ରୀକୃଷ୍ଣ ପାଞ୍ଚଖଣ୍ଡ ଗ୍ରାମ ମାଗିବାପାଇଁ ଦୁର୍ଯ୍ୟୋଧନଙ୍କ ନିକଟକୁ ଯାଇଥିଲେ । ସୂଚିମୁନରେ ମୁନେ ଜମି ଦେବେ ନାହିଁ କହି ଦୁର୍ଯ୍ୟୋଧନ ଶ୍ରୀକୃଷ୍ଣଙ୍କୁ ଫେରାଇଦେଇ ଅନ୍ତଃପୁରକୁ ଗମନକଲେ । ଅନ୍ତଃପୁରରେ ଭାନୁମତୀ ଶ୍ରୀକୃଷ୍ଣଙ୍କୁ ମାୟାବୀ ପୁରୁଷ ବୋଲି କହି ଦୁର୍ଯ୍ୟୋଧନଙ୍କୁ ଗପଟିଏ ଶୁଣାଇଥିଲେ । ଗପଟି ଏହିପରି- ପୂର୍ବକାଳରେ ଶୂଦ୍ର ରାଉଳ ଶ୍ମଶାନଭୂମିକୁ ଚଷିବାକୁ ଆରମ୍ଭ କଲା । ଭୂତମାନେ ଗୋଳ କରିବାରୁ ରାଉଳ ତାକୁ ମହାଜାଲରେ ବାନ୍ଧି ପକାଇଥିଲା । ଭୂତମାନେ କହିଲେ, ଆମକୁ କାହିଁକି ବାନ୍ଧିଲୁ କହ । ରାଉଳ କହିଲା, ତୁମେମାନେ ଯଦି ତିନିଶହ ଷାଠିଏ ପଉଟି ଖସାଦେବ, ତାହାହେଲେ ସମସ୍ତଙ୍କୁ ଜାଲରୁ ଫିଟାଇ ଦେବି । ସବୁ ଭୂତ ଖସାଦେବାପାଇଁ ସମ୍ମତି ପ୍ରକାଶ କଲେ, ମାତ୍ର ସେମାନଙ୍କର ନୃପତି ବାବନାଭୂତ କୋପ କରିବାରୁ ରାଉଳ ତାକୁ ମଧ୍ୟ ମହାଜାଲରେ ବାନ୍ଧି ପକାଇଲା । ବାବୁନାଭୂତ ଡାକ ଦେବାରୁ ରାଉଳ କହିଲା, ତୁ ଯଦି ତିନିଶହ ଷାଠିଏ ପଉଟି ଛଡ଼ା ତିଳ ଦେବୁ ତାହାହେଲେ ତୋତେ ମୁଁ ଜାଲରୁ ଫିଟାଇ ଦେବି । ତିଳ ଦେବ ନାହିଁ ବୋଲି ମୂଳରୁ ବାବନା ଭୂତ ନାସ୍ତି କରୁଥିଲା, ମାତ୍ର ସେହି ବାବନାଭୂତ ଅଛଡ଼ା ତିଳ ଦେବା ସ୍ଥାନରେ ଛଡ଼ା ତିଳରେ ମୁକ୍ତି ପାଇଲା ।

ଏହି ଛୋଟ କାହାଣୀଟି ପ୍ରକାଶ କରି ଭାନୁମତୀ ଦୁର୍ଯ୍ୟୋଧନକୁ କହିବାକୁ ଚାହୁଁଥିଲେ ଯେ ଶ୍ରୀକୃଷ୍ଣ ମାତ୍ର ପାଞ୍ଚଖଣ୍ଡ ଗ୍ରାମ ମାଗୁଥିବା ବେଳେ ସେ ତାଙ୍କୁ ମନାକରି ଫେରାଇଦେଲେ । ମାତ୍ର ଏଥିପାଇଁ ହୁଏତ ତାଙ୍କୁ ରାଜ୍ୟ ଦେବାକୁ ପଡ଼ିପାରେ । ଏହି ପ୍ରସଙ୍ଗରେ ରାଣୀ ଭାନୁମତୀ ଦର୍ଯ୍ୟୋଧନଙ୍କ ସମ୍ମୁଖରେ ଆଉ ଗୋଟିଏ ଗଳ୍ପର ମଧ୍ୟ ଅବତାରଣା କରିଛନ୍ତି । ଗପଟି ହେଲା - ବନସ୍ତ ମଧ୍ୟରେ ମହାବଳୀ ସିଂହଟିଏ ବାସକରୁଥାଏ । ପ୍ରତ୍ୟେକଦିନ ଗୋଟିଏ ଗୋଟିଏ ଜୀବ ମାରି ସେ ଭକ୍ଷଣ କରେ । ଦିନେ ଗୋଟିଏ ଶଶକର ପାଳି ପଡ଼ିଲା । ଧୀରେ ଧୀରେ ଯାଉ ଯାଉ ଶଶକଟି ବାଟରେ ଗୋଟିଏ କୂଅ ଦେଖିଲା । ଗୋଟିଏ ନୂଆ ରାଜାକୁ ଭେଟିଲା ବୋଲି ଶଶକ ଯାଇ ସିଂହ ନିକଟରେ କହିଲା । ସିଂହ ରାଗିଯାଇ କହିଲା, ମୁଁ ଏଠାରେ ଏକାଗ୍ର ନୃପତି । କେଉଁଠାରେ ସିଂହରାଜ ଅଛି ମୋତେ ତୁ ଦେଖାଇ ଦେ । ସିଂହ

ଏହା କହିବାରୁ ଶଶା ଆଗେ ଆଗେ ଚାଲିଲା ଓ ସିଂହ ତାର ପଛେ ପଛେ ଚାଲିଲା । ଶଶକ କୂଅ ନିକଟରେ ପହଞ୍ଚି କହିଲା ଯେ ସିଂହରାଜା ଏଇ କୂଅ ଭିତରେ ଲୁଚିଛି । ସିଂହ କୂଅ ଭିରକୁ ଚାହିଁ ତାର ପ୍ରତିଛବି ଦେଖି ତାହାକୁ ଅନ୍ୟ ଏକ ସିଂହ ବୋଲି ଭାବିଲା ଓ କୂଅ ଭିତରକୁ ଡେଇଁ ପଡ଼ି ପ୍ରାଣତ୍ୟାଗ କଲା । ସାରଳା ଲେଖିଛନ୍ତି-

କୂପରେ ପଡ଼ନ୍ତେ ସିଙ୍ଘ ପ୍ରାଣଗଲା
କହଇ ଭାନୁମତୀ ସୁଣହେ କୁରୁରାଜା ଭଲା
ସଂସା ବୁଧିରେ ସିଂହ ମରି ଅଛଇ
ନିକି ସେହି କଥା ତୁମ୍ଭକୁ ହୁଅଇ
ତୁମ୍ଭେ ଯେ ବୋଇଲ ମୁଂ ନଦେବି ସୂଚିମୁନ
ନିକି ପାଣ୍ଡବେ ନିଅନ୍ତି ପଞ୍ଚଗ୍ରାମ ।

(ଭାରତ ହରିବଂଶ : ପ୍ରସଙ୍ଗ : ଦୂତଭାବରେ ଶ୍ରୀକୃଷ୍ଣଙ୍କ ହସ୍ତିନାପୁର ଗମନ)

ଏଇ ଛୋଟ କାହାଣୀଟିରେ ଭାନୁମତୀ ଶ୍ରୀକୃଷ୍ଣଙ୍କୁ ଶଶା ଓ ଦୁର୍ଯ୍ୟୋଧନଙ୍କୁ ସିଂହ ସହ ତୁଳନା କରି ବୁଦ୍ଧି ନିକଟରେ ବଳ ତୁଚ୍ଛ ବୋଲି ପ୍ରକାଶ କରିଛନ୍ତି ।

ଆଉ ଗୋଟିଏ ଛୋଟ ଗଳ୍ପର ଉଦାହରଣ ଏଠାରେ ଦେଖାଯାଉ । ଧୃତରାଷ୍ଟ୍ର ସବୁବେଳେ ଇଚ୍ଛା କରୁଥିଲେ ପାଣ୍ଡବ ଓ କୌରବମାନେ ମିଳିମିଶି ଗୋଟିଏ ସ୍ଥାନରେ ରୁହନ୍ତୁ । ଶକୁନି କିନ୍ତୁ ସେକଥା ଚାହୁଁ ନଥିଲା । ନିଜପୁତ୍ରର କଲ୍ୟାଣ ପାଞ୍ଚୁ ନାହାନ୍ତି ବୋଲି ବରଂ ସେ ଧୃତରାଷ୍ଟ୍ରଙ୍କୁ ଦୋଷ ଦେଉଥିଲା । ଏହି ପ୍ରସଙ୍ଗରେ ଶକୁନି ଧୃତରାଷ୍ଟ୍ରଙ୍କ ସମ୍ମୁଖରେ ଗପଟିଏ ଉଦାହରଣ ଭାବରେ ପ୍ରକାଶ କରିଥିଲା । ଗପଟି ଏହିପରି- ସୁରସେନ ବୋଲି ଜଣେ ରାଜା ଥିଲେ । ତାହାର ଶହେଗୋଟି ପୁତ୍ର ଜନ୍ମ ହୋଇଥିଲେ । ସୁରସେନ ପ୍ରତିଦିନ ଗଙ୍ଗାନଦୀରେ ସ୍ନାନ କରନ୍ତି । ଦିନେ ସୁରସେନ ପୁତ୍ରମାନଙ୍କୁ କହିଲେ, ତୁମ୍ଭେମାନେ ଗଙ୍ଗାନଦୀକୁ ନବର ନିକଟକୁ ଖୋଳିଆଣ । ଏହିଠାରେ ରହି ମୁଁ ସ୍ନାନ କରିବି । ପୁତ୍ରମାନେ ଗଙ୍ଗାନଦୀକୁ ଖୋଳି ଆଣିବାକୁ ଚେଷ୍ଟା କଲେ, ମାତ୍ର ଖୋଳି ନପାରି ପିତାଙ୍କୁ କହିଲେ । ପିତା ପୁତ୍ରମାନଙ୍କ ଉପରେ ବିରକ୍ତ ହୋଇ କହିଲେ, ଗଙ୍ଗାକୁ ଖୋଳି ଆଣି ନପାରିଲେ ତୁମ୍ଭେମାନେ ଆଉ ଘରେ ରହିପାରିବ ନାହିଁ । ପିତାଙ୍କର କଥାଶୁଣି ପୁତ୍ରମାନେ ବିଚାର କରି ରାତିରେ ବାପାଙ୍କୁ ହାଣି ପକାଇଲେ । ଜ୍ୟେଷ୍ଠପୁତ୍ର ବୀରସେନ ରାଜ୍ୟର ରାଜାହେଲା ।

ସେହି ରାଜା ସୁରସେନ ପରି ଧୃତରାଷ୍ଟ୍ରର ଅବସ୍ଥା ହୋଇପାରେ ବୋଲି ଶକୁନି ତାଙ୍କୁ ପରୋକ୍ଷରେ ସୂଚିତ କରାଇଦେଲେ । ଯେପରି ପଞ୍ଚତନ୍ତ୍ରରେ ଛୋଟ ଛୋଟ କାହାଣୀ ମାଧ୍ୟମରେ ବିଷ୍ଣୁଶର୍ମା ଶିକ୍ଷାଦାନ କରୁଥିଲେ ସେହିପରି ସାରଳା ଦାସ ପ୍ରସଙ୍ଗ ଉପଯୋଗୀ ଛୋଟ ଛୋଟ କାହାଣୀମାନ ସୃଷ୍ଟି କରି ବିଷୟବସ୍ତୁକୁ ଉପଦେଶାତ୍ମକ କରିଛନ୍ତି ।

(୫) **ନିଜ ପ୍ରଯୁକ୍ତ କାହାଣୀଠାରୁ ଭିନ୍ନକରି କାହାଣୀ କହିବା :** ସାରଳା ଦାସ ନିଜେ ଯେଉଁ କାହାଣୀଟି ନୂଆକରି ମହାଭାରତରେ କହିଛନ୍ତି ସେହି କାହାଣୀଟି ଭାରତ ହରିବଂଶରେ ପ୍ରୟୋଗ କରିବା ବେଳେ ସେଥିରେ ସାମାନ୍ୟ ପରିବର୍ତ୍ତନ କରିଦେଇଛନ୍ତି । ସାରଳା ମହାଭାରତରେ ସତ୍ୟ ଆମ୍ବକଥା ଖୁବ୍ ଚମତ୍କାର ଭାବରେ ପରିବେଶିତ ହୋଇଛି । ଦୁର୍ଯ୍ୟୋଧନଙ୍କ ନିର୍ଦ୍ଦେଶରେ ପାଣ୍ଡବମାନଙ୍କର ସନ୍ଧାନ ସଂଗ୍ରହରେ ଯାଇଥିବା ଗୁପ୍ତଚର ପାଣ୍ଡବମାନଙ୍କୁ ଦେଖି ଆଶ୍ୱିନମାସରେ ସେମାନଙ୍କୁ ଆମ୍ବ ମାଗିଥିଲେ । ଉଦ୍ଦେଶ୍ୟ ଥିଲା ଯେ ସେମାନେ ଆମ୍ବ ଦେଇ ନପାରିଲେ ସତ୍ୟଭଗ୍ନ ହେବେ ଓ ଆମ୍ବ ଦେଇପାରିଲେ ପାଣ୍ଡବ ବୋଲି ଜଣାପଡ଼ିଯିବେ । ପାଣ୍ଡବମାନେ ବିପଦରୁ ଉଦ୍ଧାରପାଇବା ପାଇଁ ଶ୍ରୀକୃଷ୍ଣଙ୍କୁ ସ୍ମରଣ କରିଥିଲେ । ଶ୍ରୀକୃଷ୍ଣ ଆମ୍ରବୀଜଟିଏ ଭୂମିରେ ପୋତିଦେଇ ପ୍ରତ୍ୟେକ ନିଜ ନିଜ ଜୀବନର ନିଭୃତତମ ଗୁପ୍ତକଥା ଗୋଟିଏ ଗୋଟିଏ କହିଲେ ଆମ୍ରବୃକ୍ଷରେ ଫଳ ଧରିବ ବୋଲି କହିଥିଲେ । ଦ୍ରୌପଦୀଙ୍କୁ ଛାଡ଼ି ଅନ୍ୟମାନେ ନିଜ ନିଜ ଜୀବନର ଗୁପ୍ତକଥା ପ୍ରକାଶ କରିବାରୁ ଆମ୍ର ବୃକ୍ଷ ହୋଇ ସେଥିରେ ଫଳଧାରଣ କରିଥିଲା । କର୍ଣ୍ଣ ସୌନ୍ଦର୍ଯ୍ୟରେ ତାଙ୍କର ମନଭୁଲିଯାଏ ବୋଲି ପ୍ରକାଶ କରିବାପରେ ଆମ୍ବଟି ପାଚିଥିଲା ।

ମହାଭାରତର ଏହି କାହାଣୀଟି ଯେପରି ଚମତ୍କାର ଭାବରେ ବର୍ଣ୍ଣିତ ହୋଇଛି ଭାରତ ହରିବଂଶରେ ସେହିପରି ହୋଇପାରିନାହିଁ । ଭାରତ ହରିବଂଶରେ ସତ୍ୟ ଆମ୍ବ ପ୍ରସଙ୍ଗ ଆସିଥିଲେ ମଧ୍ୟ 'କର୍ଣ୍ଣ ସୌନ୍ଦର୍ଯ୍ୟରେ ମୋର ଭୁଲିଯାଏ ମନ' ବୋଲି କହିବା ପାଇଁ ଦ୍ରୌପଦୀଙ୍କୁ ସୁଯୋଗ ଦିଆଯାଇନାହିଁ ।

ଭାରତ ହରିବଂଶରେ ପାଣ୍ଡବମାନେ ସମସ୍ତେ ଗୋଟିଏ ଗୋଟିଏ ସତ୍ୟ ଘଟଣା କହିବାପରେ ଆମ୍ଭଟି ପାଚି ଯାଇଛି । ବୋଧହୁଏ ଭାରତ ହରିବଂଶକୁ ସଂକ୍ଷେପରେ ଶେଷ କରିବାକୁ ଚାହୁଁଥିବାରୁ ସାରଳା ବିଷୟବସ୍ତୁରେ ଏହିପରି ବ୍ୟତିକ୍ରମମାନ ସୃଷ୍ଟି କରିଛନ୍ତି ।

ଭଗଦତ୍ତ ନାମକ ଅନ୍ୟଏକ ପ୍ରସଙ୍ଗ ଏଠାରେ ଆଲୋଚନା କରାଯାଉ । ମହାଭାରତରେ ସାରଳାଦାସ ଭଗଦତ୍ତ ଚରିତ୍ର ସମ୍ପର୍କରେ ବର୍ଣ୍ଣନା କରିଛନ୍ତି ଓ ଭଗଦତ୍ତଙ୍କୁ ଜଣେ ପରାକ୍ରମୀ ବୀର ଭାବରେ ମଧ୍ୟ ପ୍ରକାଶ କରିଛନ୍ତି । ମାତ୍ର ଭାରତ ହରିବଂଶରେ ଭଗଦତ୍ତଙ୍କୁ ଯେଉଁପରି ମର୍ଯ୍ୟାଦା ପ୍ରଦାନ କରାଯାଇଛି, ସାରଳା ମହାଭାରତରେ ସେପରି କରାଯାଇନାହିଁ ।

ସାରଳା ମହାଭାରତରେ ଭଗଦତ୍ତଙ୍କୁ ଜଣେ ଯୋଦ୍ଧାଭାବରେ ବର୍ଣ୍ଣନା କରାଯାଇଥିଲେ ମଧ୍ୟ ତାହାଙ୍କୁ ସେନାପତି ପଦରେ ବରଣ କରାଯାଇନାହିଁ । ଭାରତ ହରିବଂଶରେ ଭଗଦତ୍ତ ସେନାପତି ପଦ ଅଳଂକୃତ କରିଛନ୍ତି । ଯୁଦ୍ଧରେ ଦ୍ରୋଣ ନିଧନ ହେବାପରେ କୌରବମାନଙ୍କର ସେନାପତି ପଦ ଖାଲି ପଡ଼ିଲା । ଗୋଟିଏ ଦିନପରେ କର୍ଣ୍ଣ ସେନାପତି ହେବେ ବୋଲି ପ୍ରସ୍ତାବ ଦେବାରୁ ସେହି ଗୋଟିଏ ଦିନ ପାଇଁ କିଏ ସେନାପତି ହେବ ସେଥିପାଇଁ ଦୁର୍ଯ୍ୟୋଧନ ବୀର ଲୋଡ଼ିବାକୁ ଲାଗିଲେ । ଭଗଦତ୍ତ ନିଜେ ସେନାପତି ହୋଇ ପାଣ୍ଡବମାନଙ୍କୁ ବିନାଶ କରିବାର ପ୍ରସ୍ତାବ ଦେଇଥିଲେ । ଫଳରେ ଦୁର୍ଯ୍ୟୋଧନ ଭଗଦତ୍ତ ଶିରରେ ସେନାପତିର ମୁକୁଟ ବାନ୍ଧିଦେଇଥିଲେ ।

ଭଗଦତ୍ତ ପ୍ରଥମେ ମଣ୍ଡଳି ବ୍ୟୂହ ନିର୍ମାଣ କରିଥିଲେ । ସେ ମଣ୍ଡଳି ବ୍ୟୂହ ସୂର୍ଯ୍ୟଙ୍କର ମଣ୍ଡଳପରି ଅତି ପ୍ରଚଣ୍ଡ । ମଣ୍ଡଳର ଚାରିପାଖରେ ପୁଣି ବାଉନଟା ମଣ୍ଡଳ କଟାଯାଇଥିଲା । ତାହାର ସବୁଦ୍ୱାର ଭିତରକୁ ଓ ଗୋଟିଏ ଦ୍ୱାର ବାହାରକୁ ଥିଲା । ସେ ଦ୍ୱାର ନିକଟରେ ବାରକୋଟି ସୈନ୍ୟ ଜଗିରହିଥିଲେ । ମଣ୍ଡଳି ବ୍ୟୂହର ସମ୍ମୁଖରେ ଜଳବ୍ୟୂହ ରଚନା କରାଯାଇଥିଲା । ସେଥିରେ ଲହରୀ ତୋଳି ନଦୀଟିଏ ବୋହୁଥିଲା । ତାର ଚାରିପାଖରେ ଭଗଦତ୍ତ କୁଣ୍ଡଳି ବ୍ୟୂହ ରଚନା କରିଥିଲେ । କୁଣ୍ଡଳି ବ୍ୟୂହରେ ବିନାକାଷ୍ଠ ଓ ବିନାଘୃତରେ ଅନଳ ଜଳି ତାରାମଣ୍ଡଳକୁ ଛୁଉଁଥିଲା ।

ଏପରି ବ୍ୟୂହ ପାଣ୍ଡବମାନେ ଆଗରୁ କେବେ ଦେଖି ନଥିବାରୁ ଆଶ୍ଚର୍ଯ୍ୟ ହୋଇଗଲେ । ଭଗଦତ୍ତ ଆସ ଆସ ବୋଲି ଡାକଦେବାରୁ ନନ୍ଦିଘୋଷ ରଥରେ ବସି ପାର୍ଥ ଓ ଶ୍ରୀକୃଷ୍ଣ ଯୁଦ୍ଧ କ୍ଷେତ୍ରକୁ ଗମନ କଲେ । ଜଳଶର ବିନ୍ଧି କୁଣ୍ଡଳି ବ୍ୟୂହକୁ ଲିଭାଇବାପାଇଁ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ପରାମର୍ଶ ଦେଲେ । ଅର୍ଜୁନ ଜଳଶର ବିନ୍ଧିଲା ସତ, ମାତ୍ର ବ୍ୟୂହ ଲିଭିବା ପରିବର୍ତ୍ତେ ଅଧିକ ପ୍ରଜ୍ୱଳିତ ହୋଇ ଜଳି ଉଠିଲା । ଶ୍ରୀକୃଷ୍ଣଙ୍କ ପରାମର୍ଶ ଅନୁସାରେ ଅର୍ଜୁନ ତାଙ୍କର ପିତା ଇନ୍ଦ୍ରଙ୍କୁ ଜଳବର୍ଷା କରିବାପାଇଁ ନିବେଦନ କଲେ । ଇନ୍ଦ୍ର ଅମୃତାକ୍ଷ ନାମକ ମେଘକୁ ଆଜ୍ଞା ଦେଇ ସୁଧାଜଳ ବୃଷ୍ଟିକରିବାରୁ କୁଣ୍ଡଳି ବ୍ୟୂହର ଅଗ୍ନି ନିର୍ବାପିତ ହେଲା । ପାଣ୍ଡବମାନେ କୁଣ୍ଡଳି ବ୍ୟୂହକୁ ଅତିକ୍ରମ କରିଗଲେ ମଧ୍ୟ ଜଳବ୍ୟୂହକୁ ଅତିକ୍ରମ କରିପାରିଲେ ନାହିଁ । ଅର୍ଜୁନ ଅଗ୍ନିଶର ନିକ୍ଷେପ କଲେ ମଧ୍ୟ ଜଳବ୍ୟୂହ ଶୁଖିଲା ନାହିଁ । ଅର୍ଜୁନ ଶରରେ ଏକ ବନ୍ଧ ନିର୍ମାଣ କଲେ । ମାତ୍ର ଭଗଦତ୍ତ ଅଗ୍ନିଶର ବିନ୍ଧି ସେହି ବନ୍ଧକୁ ନଷ୍ଟ କରିଦେଲେ । ଶ୍ରୀକୃଷ୍ଣଙ୍କର ଉପାୟ ବଳରେ ଅର୍ଜୁନ ଜଳବ୍ୟୂହ ଭେଦକରି ଭଗଦତ୍ତଙ୍କ ସହ ଯୁଦ୍ଧକଲେ ଓ ବିମାନ ତଳେ ଚାପି ହୋଇ ଭଗଦତ୍ତ ମୃତ୍ୟୁବରଣ କଲେ ।

ଭାରତ ହରିବଂଶରେ ଭଗଦତ୍ତଙ୍କର ଏକ ପରିଚୟ ମଧ୍ୟ ପ୍ରଦାନ କରାଯାଇଛି । ସେ ଦ୍ରୋଣାଚାର୍ଯ୍ୟଙ୍କର ପୁତ୍ର । ସାରଳା ମହାଭାରତରେ ସୂଚନା ଦିଆଯାଇଛି ଯେ ଦ୍ରୋଣ ତାଙ୍କର ବିମାତାଙ୍କ ସହ ଶୃଙ୍ଗାର କ୍ରିୟାରେ ଲିପ୍ତ ଥିଲେ । ଦ୍ରୋଣଙ୍କ ଔରସରୁ ବିମାତାଙ୍କ ଗର୍ଭରୁ ଏକ ପୁତ୍ର ସନ୍ତାନ ମଧ୍ୟ ଭୂମିଷ୍ଠ ହୋଇଥିଲା । ଦ୍ରୋଣଙ୍କର ପିତା ଭରଦ୍ୱାଜ ଏହା ଜାଣିପାରି ଦୋଚାରୀ ବୋଲି କହି ରାମକାଳି ନାମକ ପତ୍ନୀକୁ ପରିତ୍ୟାଗ କରିଥିଲେ । ତାଙ୍କର ପତ୍ନୀ ନର୍ମଦାନାମକ ଏକ ତପୋବନରେ ମୁନିମାନଙ୍କ ଗହଣରେ ରହିଥିଲା । କାଳକ୍ରମେ ରାମକାଳି ପ୍ରାଣତ୍ୟାଗ କରିବାରୁ ଈକ୍ଷ୍ୟାକୁ ନାମକ ମୁନି ପୁତ୍ର ଭଗଦତ୍ତର ଦାୟିତ୍ୱ ଗ୍ରହଣ କଲେ ଓ ତାଙ୍କୁ ଧନୁର୍ବିଦ୍ୟା ଓ ବ୍ୟୂହ ରଚନା ଆଦି ଶିକ୍ଷା ପ୍ରଦାନ କରିଥିଲେ । ମହାଭାରତରେ ଭଗଦତ୍ତଙ୍କର ପରିଚୟ ପ୍ରଦାନ କରାଯାଇନଥିଲେ ମଧ୍ୟ ଭାରତ ହରିବଂଶରେ ତାଙ୍କୁ ଦ୍ରୋଣର ପୁତ୍ରଭାବରେ ପରିଚୟ ଦିଆଯାଇଛି ।

(୬) **ସମସାମୟିକ ଚରିତ୍ରଗୁଡ଼ିକର କାବ୍ୟରେ ପ୍ରୟୋଗ :** ସାରଳା ଦାସଙ୍କର ରଚନାର ବଡ଼ ବୈଶିଷ୍ଟ୍ୟ ହେଲା ସମସାମୟିକ ସମାଜରେ ଯେଉଁ ଚରିତ୍ରଗୁଡ଼ିକ ତାଙ୍କର ଦୃଷ୍ଟିପଥାରୂଢ଼ ହୁଏ ସେଭଳି ଚରିତ୍ରକୁ ସେ କାବ୍ୟର ଚରିତ୍ରରେ ରୂପାନ୍ତରିତ କରିଦିଅନ୍ତି । ସମାଜରେ ପତ୍ନୀର ବୋଲହାକ କରୁଥିବା ଚରିତ୍ରମାନେ ଅଛନ୍ତି । ଅର୍ଥପାଇଁ ପତ୍ନୀକୁ ପରପୁରୁଷଠାରେ ସମର୍ପଣ କରିବା ବ୍ୟକ୍ତି ମଧ୍ୟ ସମାଜରେ କମ୍ ନାହାନ୍ତି । ଭାରଦା ସେହିଭଳି ଏକ ଚରିତ୍ର, ଯିଏ ତାର ସ୍ତ୍ରୀକୁ ପରପୁରଷଠାରେ ଛାଡ଼ି ଆମୋଦ ଲାଭ କରିଥାଏ । ସାରଳା ଦାସ ମହାଭାରତରେ ଭାରଦା ଚରିତ୍ରକୁ ଚିତ୍ରଣ କରିଛନ୍ତି, ଭାରତ ହରିବଂଶରେ ମଧ୍ୟ ଭାରଦା ଚରିତ୍ରକୁ ଚିତ୍ରଣ କରିଛନ୍ତି ।

ମହାଭାରତରେ ଅଗ୍ନିକାର ମହର୍ଷିଙ୍କର କଥା ଉଲ୍ଲେଖ ରହିଛି । ପଣ୍ଡୁ ମନଭେଦି ଶର ପ୍ରୟୋଗକରି ତାଙ୍କୁ ମୃତ୍ୟୁମୁଖକୁ ଠେଲି ଦେଇଥିଲେ । ଭାରତ ହରିବଂଶରେ ସେହି ଅଗ୍ନିକାର ବା ଅଗ୍ନିକା ମହର୍ଷିଙ୍କର ପୂର୍ବଜନ୍ମର କାହାଣୀକୁ ଏତେ ଚମତ୍କାର ଭାବରେ ବର୍ଣ୍ଣନା କରାଯାଇଛି ଯେ ସେପରି ଚରିତ୍ରକୁ ସାରଳା ଦାସ ତତ୍‌କାଳୀନ ସମାଜରେ ଅତିନିକଟରୁ ଲକ୍ଷ୍ୟ କରିଛନ୍ତି । ଭାରତ ହରିବଂଶ ଅନୁସାରେ ଅଗ୍ନିକା ନାମକ ଜଣେ ମହର୍ଷି ମୃତ୍ୟୁ ଉତ୍ତାରେ ସଂଜୀବନୀ ପୁରରେ ପ୍ରବେଶ କରିଥିଲେ । ଚିତ୍ରଗୁପ୍ତ ତାହାର ପାପପୁଣ୍ୟ ଦେଖି ପ୍ରକାଶ କଲାଯେ ଏ ଋଷିଙ୍କର କୌଣସି ପାପନାହିଁ, କେବଳ ଏହାଙ୍କର ପୁତ୍ର ଜାତ ହୋଇନାହିଁ । ଯମ ଋଷିଙ୍କୁ ପାଖକୁ ଡାକି ପୁତ୍ରଜନ୍ମ ସମ୍ପର୍କରେ ପଚାରିଥିଲେ । ଯମ ପଚାରିଲେ, ରେ ଯତି ! ତୋର ତ ପୁତ୍ରନାହିଁ, ତୁ କାହିଁକି ବିଭାହେଲୁ ନାହିଁ ? ଅଗ୍ନିକା କହିଲେ ମୁଁ ବିଭା ହୋଇଥିଲି । ଥରେ ନୁହେଁ, ଚାରିଥର ବିଭା ହୋଇଥିଲି । ମାତ୍ର କୌଣସି ଭାର୍ଯ୍ୟାନିକଟରୁ ସନ୍ତାନ ହେଲାନାହିଁ ।

ଯମ କହିଲେ, ଯଦି ନିଜ ଭାର୍ଯ୍ୟାଠାରୁ ପୁତ୍ର ନହେଲା, ତେବେ ଧନ ଦେଇ ପରସ୍ତ୍ରୀ କାହିଁକି ହରଣ କଲୁନାହିଁ ? ମୁନି କହିଲେ, ମୁଁ ସେହିପରି କରିଥିଲି । ମାତ୍ର ମୋର ବୀର୍ଯ୍ୟରୁ କାହାଠାରୁ ପୁତ୍ର ଜନ୍ମହେଲା ନାହିଁ । ଯମ କହିଲେ, ଯଦି ତୋ ବୀର୍ଯ୍ୟରୁ ପୁତ୍ର ଜାତ ନହେଲା ତେବେ ତୋର ଭାର୍ଯ୍ୟାକୁ ପରପୁରୁଷଠାକୁ କାହିଁକି ପେଶିଲୁ ନାହିଁ । ମୁନି କହିଲେ, ତାହା ମଧ୍ୟ କରିଥିଲି । ସ୍ତ୍ରୀର ଋତୁସ୍ନାନକାଳରେ ତାକୁ ପରପୁରଷଠାକୁ ପଠାଇଥିଲି । ତେବେ ମଧ୍ୟେ ତାଠାରୁ ପୁତ୍ରଜନ୍ମ ହେଲାନାହିଁ । ଯମ କହିଲେ, ଯଦି ଏପରି ହେଲା, ତେବେ ପରଠାରୁ ପୁଅ ଗୋଟିଏ ଆଣି ତାକୁ ନିଜ ପୁଅପରି କରି ପାଳିଥାଆନ୍ତୁ । ସେ ବିଭାହୋଇଥିଲେ ତାଠାରୁ କୁମାର କୁମାରୀ ଜାତ ହୋଇଥାଆନ୍ତେ । ମୁନି କହିଲେ, ଗୋଟିଏ ଅନାଥ ବାଳକ ଆଣି ମୁଁ ପାଳିଥିଲି ମାତ୍ର ଅବିବାହିତ ଅବସ୍ଥାରେ ସେ ମୃତ୍ୟୁବରଣ କଲା । ଯମରାଜ ଏହାଶୁଣି ଅଗ୍ନିକା ମହର୍ଷିଙ୍କୁ ମର୍ତ୍ତ୍ୟକୁ ପଠାଇ ଦେଲେ ପୁତ୍ରଟିଏ ଜନ୍ମକରି ପୁଣି ଯମପୁରକୁ ଫେରିବାପାଇଁ ।

ସମାଜରେ ଏକାଧିକ ବିବାହ କରୁଥିବା ବ୍ୟକ୍ତି ଅଛନ୍ତି, ବିବାହ କରିସାରିବା ପରେ ପୁତ୍ରକନ୍ୟା ଉତ୍ପନ୍ନ ହେଉନଥିବା ବ୍ୟକ୍ତି ଅଛନ୍ତି, ପରନାରୀ ସହ ସମ୍ପର୍କ ରଖୁଥିବା ବ୍ୟକ୍ତି ଅଛନ୍ତି, ନିଜନାରୀକୁ ପରପୁରୁଷଠାରେ ସମର୍ପଣ କରୁଥିବା ବ୍ୟକ୍ତି ଅଛନ୍ତି ଏବଂ ଅନାଥ ବାଳକକୁ ଆଣି ପୁତ୍ର ପରି ପାଳୁଥିବା ବ୍ୟକ୍ତି ମଧ୍ୟ ଅଛନ୍ତି । ଏ ପ୍ରକାର ସମସ୍ତ ଚରିତ୍ରକୁ ମିଶାଇ ସାରଳା ଦାସ ତାହାକୁ ଗୋଟିଏ ଚରିତ୍ରରେ ରୂପାନ୍ତରିତ କରିଛନ୍ତି ।

ଭାରତ ହରିବଂଶରେ ଥିବା ଭୀମ, ଅର୍ଜୁନ, ଯୁଧିଷ୍ଠିର, ଶ୍ରୀକୃଷ୍ଣ, ଦୁର୍ଯ୍ୟୋଧନ, ଶକୁନି, ଦ୍ରୌପଦୀ ପରି ଅନେକ ଚରିତ୍ର ଆମେ ସମାଜରେ ଦେଖିବାକୁ ପାଇଥାଉ । ସେହି ଚରିତ୍ରଗୁଡ଼ିକୁ ଦେବତ୍ୱ ଗୁଣରେ ସଜାଇ ସାରଳା ଦାସ ଚିତ୍ରଣ କରିଛନ୍ତି । ମାତ୍ର ଯେତେବେଳେ ଚରିତ୍ରଗୁଡ଼ିକରୁ ଦେବତ୍ୱ ଗୁଣକୁ ଅପସାରିତ କରି ସେମାନଙ୍କୁ ମାନବିକ ଗୁଣଯୁକ୍ତ କରିଛନ୍ତି, ସେତେବେଳେ ସମାଜର ନିତିଦିନିଆ ଦୃଷ୍ଟିପଥାରୂଢ଼ ହେଉଥିବା ଚରିତ୍ରମାନଙ୍କୁ ସେମାନଙ୍କଠାରେ ଆମେ ଲକ୍ଷ୍ୟ କରିପାରୁଛୁ ।

ସାରଳା ଦାସଙ୍କ ପ୍ରଯୁକ୍ତ ଚରିତ୍ରଗୁଡ଼ିକର ଲୌକିକତା ସମ୍ପର୍କରେ ଏଠାରେ ପରେ ଆଲୋଚନା କରାଯିବ ।

(୭) **ଭାରତ ହରିବଂଶରେ ଲାଳିତ୍ୟ :** ଭାରତ ହରିବଂଶର ଯେଉଁ ପଦରେ ଆଖି ପକାଇଲେ ବି ତାର ଲାଳିତ୍ୟ ବାରି ହୋଇପଡ଼େ । ଜଣେ ଉତ୍କୃଷ୍ଟ କବି ଭାବରେ କାବ୍ୟର ଲାଳିତ୍ୟ ପାଇଁ ଯେଉଁପରି ଶବ୍ଦ ସଂଯୋଜନା ଦରକାର ଭାରତ ହରିବଂଶରେ ସେହିପରି ଶବ୍ଦ ସଂଯୋଜନା ପ୍ରୟୋଗ କରାଯାଇଛି । ପଦ ସବୁକୁ ଲଳିତ କରିବା ପାଇଁ ସାରଳା ଦାସ ବହୁ ନୂତନ ଶବ୍ଦମାନ ସୃଷ୍ଟି କରିଛନ୍ତି । ମାନ୍ୟବନ୍ତ ସ୍ଥାନରେ ମାନିତ, ମାଧବଙ୍କର ପୁତ୍ରକୁ ମାଧବୀ, ବିରାଟଙ୍କର ପୁତ୍ରକୁ ବିରାଟି ଭାବେ ଉଲ୍ଲେଖ କରି ସେ ତାଙ୍କର ନୂତନ ଶବ୍ଦ ସୃଷ୍ଟିର ମର୍ଯ୍ୟାଦା ବୃଦ୍ଧି କରିଛନ୍ତି ।

ଯୁଦ୍ଧରେ ଅଭିମନ୍ୟୁ ମୃତ୍ୟୁବରଣ କରିବାପରେ ଅର୍ଜୁନ ଶୋକାତୁର ହୋଇ କ୍ରନ୍ଦନ କରିଛନ୍ତି । ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ବୋଧପ୍ରଦାନ କରି କହୁଛନ୍ତି, ରେ ଅର୍ଜୁନ ! ଜନ୍ମ ହୋଇଥିଲେ ତ ନିଶ୍ଚୟ ମରିବାକୁ ପଡ଼େ । ଆତ୍ମା ଯେଉଁଠାରୁ ଆସିଥାଏ ସେହିଠାକୁ ଚାଲିଯାଏ । ମରିଗଲା ବୋଲି ମିଛରେ ପ୍ରାଣୀମାନେ ଶୋକକରନ୍ତି । ରେ ଫାଲ୍ଗୁନି ! ତୁ କାହାର ପୁତ୍ର ବା କିଏ ତୋର ପୁତ୍ର ! କେହି କାହାର ନୁହନ୍ତି । ସମସ୍ତେ ପଥଚାରୀମାନଙ୍କ ସଙ୍ଗତରେ ସଙ୍ଗହେବାପାଇଁ ଆସିଥାଆନ୍ତି । ରାତ୍ରକାଳରେ ବୃକ୍ଷରେ ସବୁପକ୍ଷୀମାନେ ଆସି ବସିଥାଆନ୍ତି, ମାତ୍ର ରାତି ପାହିଗଲେ ଯିଏ ଯେଉଁ ସ୍ଥାନକୁ ଯିବାକଥା ଚାଲିଯାଏ । ସେହିପରି ପଥର ବୃକ୍ଷପ୍ରାୟ ଏ ପାପର ମନ୍ଦିର । ପୁତ୍ର ମରିବାକୁ ତୁ ଆଉ ଶୋଚନା କରନାହିଁ । କାବ୍ୟରେ ଏଇ କଥା କହିବାବେଳେ ସାରଳା ଦାସ ଯେମିତି ଆତ୍ମଦର୍ଶନର କଥା କହିଛନ୍ତି ସେହିପରି ପଦ ସବୁକୁ ଲାଳିତ୍ୟପୂର୍ଣ୍ଣ ଭାବରେ ପ୍ରୟୋଗ କରିଛନ୍ତି ।

ପଦଗୁଡ଼ିକୁ କିପରି ଲାଳିତ୍ୟପୂର୍ଣ୍ଣ କରାଯାଇପାରିବ ସେଥିପାଇଁ ସେ ସୁନ୍ଦର ସୁନ୍ଦର କୌଶଳମାନ ପ୍ରୟୋଗ କରିଛନ୍ତି । ଦୁଇଟି ଉଦାହରଣ ଏଠାରେ ଦେଖାଯାଉ । ଯହୁଁ ଓ ତହୁଁ ଲଗାଇ ପ୍ରଥମ ଉଦାହରଣଟିକୁ ସେ ରଚନା କରିଛନ୍ତି ।

ସେ ପଦ୍ମପତ୍ରରେ ପଡ଼ିଲା ଯହୁଁ ବୀର୍ଯ୍ୟ
ସେହୁ ବୀର୍ଯ୍ୟଯେ ହୋଇଲା କଢ଼ି ଅଜ
ଯହୁଁ ଅଜକଢ଼ି ଫୁଟିଣ ବିରାଜନ୍ତି
ଯହୁଁ ସେ ବିରାଜିଣ ଝଟକିଲା ଜ୍ୟୋତି
ଯହୁଁ ସେ ନୀଳକାନ୍ତି ନୀଳାମ୍ବର ଜ୍ୟୋତି
ତେଣୁ ବୃସଭାନୁ ଗୋପାଳ ଗଲାକ ଯେ ଧାତି
ଯହୁଁ ସେ ନୀଳକାନ୍ତି ଜନ୍ମିଲା ପଦ୍ମଦଳ
ତେଣୁ ପଦ୍ମମୁଖୀ ବୋଲନ୍ତି ସକଳ ।
ଯେଣୁ ସେ ସକଳ କଲେକ କଲ୍ୟାଣ
ତେଣୁ ବୃସଭାନୁ କଲାକ ଗମନ ।
ଯେଣୁ ଗମନ ସେ କଲାକ ନଦୀଜଳ
ଦେଖିଲା ନନ୍ଦନୀ ଯେକ ପଡ଼ିଛି ପଦ୍ମଦଳ
ଯହୁଁସେ ପଦ୍ମଦଳେ ନନ୍ଦନୀ ଦେଖିଲା
ଦେଖି ସେ କୋଳକରି ଘରକୁ ଘେନିଗଲା
ଯହୁଁ ସେ ଗୋପାଳ ଘରକୁ ଗଲାଘେନି
ବୃସାଳୀ ବୋଲି ତାହାର ନିଜପତ୍ନୀ
ଯହୁଁ ସେ ତାରପତ୍ନୀ ଦେଖିଲା କୁମାରୀ
ପୁତ୍ରଠାରୁ ଅତିସ୍ନେହେ ଦୁହିତାକୁ ପାଳି
ଯହୁଁ ସେ ପାଳିଲା ଅତି ସେ ଯତନ
ତେଣୁ ରୂପେ ତାର କେହି ନୋହିଲେକ ସମ
ଯେଣୁଂ ସମ ତାକୁ ନୋହିଲେ ରାଜ୍ୟର
ତେଣୁ ରାଧିକା ନାମ ହୋଇଲା ତାହାର
ଯହୁଁ ତିନିପୁରେ ନୋହିଲା ସରିସମ
କେହି ବରପଣେ ତାକୁ ନୋହିଲେ ଭାର୍ଜନ
ଯେଣୁ ତାକୁ ଭାର୍ଜନ ନୋହିଲେକ ବର
ତେଣୁ ତାକୁ ବରିଲା ଚନ୍ଦ୍ରସେଣା ଗୋପାଳ
ଯେଣୁ ସେ ଚନ୍ଦ୍ରସେଣା ପୂର୍ବର ତପକରି
ତେଣୁ ରାଧିକାକୁ ପାଇଲା ସେହୁନାରୀ
ଯେଣୁଂ ସେ ତାର ହୋଇଲା ଭାରିଯା ରାଧିକା
ତେଣୁ ଚନ୍ଦ୍ରସେଣା ହୋଇଲା ନପୁଂସକା
ତେଣୁ ରାଧିକାକୁ ଘାରିଲା ମଦନ
ଶ୍ରୀକୃଷ୍ଣ ଶୃଙ୍ଗାରକୁ ବଳିଲା ତାର ମନ

ଯେଣୁ ସେ ରାଧିକା ମାଗିଅଛି ପୂର୍ବେବର
ତେଣୁକରି ଶ୍ରୀକୃଷ୍ଣ ତାକୁ କରନ୍ତି ଶୃଙ୍ଗାର
(ଭାରତ ହରିବଂଶ : ପ୍ରସଙ୍ଗ : ରାଧାଙ୍କର ଜନ୍ମ)

ଏହି ପଦଗୁଡ଼ିକରେ ପ୍ରଥମ ଧାଡ଼ି ସହିତ ଦ୍ୱିତୀୟ ଧାଡ଼ି ସମ୍ପର୍କାନ୍ୱିତ ହୋଇଥିବା ଯୋଗୁଁ ଏଥିରେ ପଦଲାଳିତ୍ୟ ସୃଷ୍ଟି ହୋଇଛି । ଠିକ୍ ଏହିପରି ଯେଣୁ ତେଣୁ ଶବ୍ଦ ପ୍ରୟୋଗ କରି ପଦ ସଂଯୋଜନା କରାଯାଇଥିବା ଆଉ ଏକ କାବ୍ୟାଂଶକୁ ଲକ୍ଷ୍ୟ କରାଯାଉ-

ଯେଣୁ ପରିପୂର୍ଣ୍ଣ ସେ ସର୍ବଗୁଣେଂ ହୋଇ
ତେଣୁ ସାହା ତାକୁ ହୋଇଲେ ଭାବଗ୍ରାହୀ
ଜେ ସେ ଭଗବାନ ସେହି ସେ ଧନୁର୍ଜଇ
ଜେ ସେ ଧନୁର୍ଜଇ ଦୁତୀୟ କୃଷ୍ଣ ସେହିଂ
ଜେଣୁ ଦୁତିକୃଷ୍ଣ ନାମ ସେ ପାଇଲା
ତେଣୁ ନନ୍ଦିଘୋଷ ରଥରେ ବସିଲା
ନନ୍ଦିଘୋଷ ରଥେଂ ସାରଥି ଭଗବାନ
ତେଣୁ କୌରୋବକୁ ନିପାତିବେ ଅର୍ଜୁନ
ଜେଣୁ ସେ କୁରୁବଳ ନାସଜିବେ
ତେଣୁ ପଞ୍ଚୁକଟକ ଯୁଧିଷ୍ଠି ପାଇବେ
ଯେଣୁ ସେ ଯୁଧିଷ୍ଠି ହୋଇବେ ନୃପମଣିଂ
ତେଣୁ ଜଗତେ ସୁଭିବ ପାଣ୍ଡେବ ଧନ୍ୟଧନ୍ୟି ।
(ଭାରତ ହରିବଂଶ : ପ୍ରସଙ୍ଗ : ଅଭିମନ୍ୟୁ ବଧ)

(୮) **ସଂସ୍କୃତ ସାହିତ୍ୟରୁ ଉପାଦାନ ଗ୍ରହଣ :** ସଂସ୍କୃତରେ ଗୋଟିଏ ଶ୍ଳୋକଅଛି-

ଉଦୟତି ଯଦି ଭାନୁଃ ପଶ୍ଚିମ ଦିଗ୍‌ବିଭାଗେ
ବିକଶତି ଯଦି ପଦ୍ମଂ ପର୍ବତାନାଂ ଶିଖାଗ୍ରେ
ପ୍ରଚଳତି ଯଦି ମେରୁଃ ଶୀତତାଂଯାତି ବହ୍ନି
ନ ଚଳତି ଖଳୁ ବାକ୍ୟଂ ସଜ୍ଜନାନାଂ କଦାଚିତ୍ ।

ଏହାର ଅର୍ଥ ହେଲା ଯଦି ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦୟ ହୁଅନ୍ତି, ପଦ୍ମ ଯଦି ପର୍ବତର ଶିଖର ପ୍ରଦେଶରେ ଫୁଟେ, ମେରୁ ପର୍ବତ ଯଦି ଚାଲେ କିମ୍ବା ଅଗ୍ନି ଯଦି ଶୀତଳ ହୁଏ, ତେବେ ମଧ୍ୟ ସଜ୍ଜନ ଲୋକର ବାକ୍ୟ ଅନ୍ୟଥା ହୁଏନାହିଁ । ଅର୍ଥାତ୍ ଏ ସବୁ ଘଟଣା ଯେପରି ଅସମ୍ଭବ ସେହିପରି ସାଧୁଲୋକ ନିଜ କଥାରୁ ବିଚଳିତ ହେବା ଅସମ୍ଭବ । ଏହି ଶ୍ଳୋକଟିକୁ ସାରଳାଦାସ ପାଠକରିଥିବାର ଅନୁମାନ କରାଯାଏ । କାରଣ ଠିକ୍ ଏହି ଅର୍ଥକୁ ସେ ଭାରତ ହରିବଂଶରେ ମଧ୍ୟ ବ୍ୟବହାର କରିଛନ୍ତି ।

ଦୁର୍ଯ୍ୟୋଧନକୁ ପାଞ୍ଚଖଣ୍ଡ ଗ୍ରାମ ମାଗିବାପାଇଁ ଶ୍ରୀକୃଷ୍ଣ ପାଣ୍ଡବମାନଙ୍କ ଦୂତ ହୋଇ ଯିବାବେଳେ ଯୁଧିଷ୍ଠିରଙ୍କୁ ପଚାରିଛନ୍ତି, ଯଦି ସେମାନେ ଗ୍ରାମ ନ ଦିଅନ୍ତି ତେବେ କ'ଣ କରାଯିବ ବୋଲି । ଯୁଧିଷ୍ଠିର ସେହିଠାରେ କହିଛନ୍ତି-

ପୂର୍ବେ ଯେବେ ଅସ୍ତ ହୋଇବେ ଦିନକର
ପଶ୍ଚିମେ ଯେବେ ଉଦେ ହୋଇବେ ସସିଧର
ପର୍ବତ ସିରରେ ଯେବେ ଫୁଟିବ ନଳଣିଂ
ମଧୁର ହେବ ଯଦି ଲବଣଜଳ ପାଣିଂ
ସ୍ତିରି ଯେବେ ପୁରୁଷ ଦିବସ ରଜନି
ଜଳଯେବେ ସ୍ଥକିତ ସିତଳ ବହନି

ଏତେ କଥା ଯେବେ ସଂସାରେ ଯିବ ହୋଇ
ଜେବେ ଗ୍ରାମ ନଦେବ ସମର କରିବଇଂ ।

ସାରଳାଦାସ ସଂସ୍କୃତ ସାହିତ୍ୟରୁ ଉପାଦାନ ଗ୍ରହଣ କରିଥିବାରୁ ତାଙ୍କର ବହୁଶାସ୍ତ୍ରଦର୍ଶିତା ଏଥିରୁ ଜଣାପଡ଼ିଯାଇଥାଏ ।

(୯) **ରାଜ୍ୟ ଶାସନ ସଂପର୍କିତ ଉପଦେଶ :** ରାଜାମାନେ ପ୍ରଜାଙ୍କର ସୁଖପାଇଁ ରାଜ୍ୟକୁ କିପରି ଶାସନ କରିବାର କଥା ସାରଳା ଦାସ ଭାରତ ହରିବଂଶରେ ତାହା ଉଲ୍ଲେଖ କରି କହିଛନ୍ତି –

ଏବେ ପଞ୍ଚୁ କଟକେ ହୁଅ ତୁ ରାଜନ
ରାଜାପଣି ବାବୁରେ ବଡ଼ଇ କଠିଣ
ପ୍ରଜାଙ୍କୁ ପାଳିବୁ ତୁ ପୁତ୍ର ସମକରି
ବିଶ୍ୱାସ ବ୍ରାହ୍ମଣକୁ ସୁପକାରେ ବରି
ପରଦେସ ବାରତା ଡଗର କହୁଥିବ
ଅଳପ ନଦୀଜଳେ ବନ୍ଧ ବନ୍ଧାଇବ
ତୋଳିବୁ ଦେବାଳୟ ଦରିଦ୍ରେଂ ଦେବୁଦାନ
ଅପନ୍ତରା ପଥେଂ ରୋପିବୁ ତୋଟାମାନ
ଅଳପ ଦୋସକୁ କୋପ ନ କରିବୁ
ପଣ୍ଡିତ ମୁଖରୁ ପୁରାଣ ସୁଣୁଥିବୁ
ବୁଝିବୁ ପ୍ରଜାହାନି ନକରିବୁ ପିଡ଼ା
ଗୋପତ ପଥରେ ପକାଇବୁ ଅଡ଼ା
ସିସିର କାଳେଂ ପଥେ ଜାଳିବୁ ହୁତାସନ
ଗ୍ରିସମ କାଳେଂ ପଥେଂ ଦେବୁଂ ପାଣିପଣା ଦାନ
ଏତେ ମାର୍ଗେଂଥିଲେ ରାଜାପଣ ଦୁର୍ଲଭ
ଛେଦଇ ପାପଭାରା ପୁଣ୍ୟରେ ହୋଏ ସୁଲଭ ।

(ଭାରତ ହରିବଂଶ : ପ୍ରସଙ୍ଗ : ଭୀଷ୍ମଙ୍କର ଯୁଧିଷ୍ଠିରଙ୍କୁ ତତ୍ତ୍ୱଜ୍ଞାନ କଥନ ଓ ଦେହତ୍ୟାଗ)

(୧୦) **ଭାରତ ହରିବଂଶରେ ସାମାଜିକ ଜୀବନ :** ସମାଜରେ କେଉଁ କେଉଁ ଅନ୍ୟାୟ କଲେ ପାପ ହୋଇଥାଏ ଭାରତ ହରିବଂଶରେ ସାରଳା ତାହାର ସୂଚନା ଦେଇଛନ୍ତି ।

ଗୋହତ୍ୟା ସ୍ତ୍ରିହତ୍ୟା ବ୍ରହ୍ମହତ୍ୟା ସୁରାପାନ
ବିଶ୍ୱାସ ଘାତକି ପିତୃଦ୍ରୋହି ଗୋମାଂସଭୋଜନ
ଅଶ୍ୱସ୍ତ ଛେଦନ ଯେ ତୁଳସା ବୃକ୍ଷ ଉପାଡ଼ି
ଭାଜନ୍ତି ଦେବାଳୟ ହରନ୍ତି ପରନାରି
ସଂକ୍ରାନ୍ତି ଏକାଦସି ଅମାବାସ୍ୟା ଜେ ଦିନ
ଏଥିରେ ଜେ ସ୍ତିରିକି କରନ୍ତି ରମଣ
ପଶ୍ଚିମେ ସିରେଂ ଥୋଇ ଦକ୍ଷିଣ ମୁଖେ ଭୁଜିଂ
ସମରେ ପିଠି ଦେଇଣ ଜେ ଉପ୍ରୋଧି
ଏକା ସୁର୍ଯେ ଯେଉଂଜନ ଦୁଇବେଳେ ଅର୍ଣ୍ଣ ଭୁଜଂଇ
ସଭାରେ ମିଛକହି ପରକୁ ଗୋଡ଼ାଇ

ଧନ ନେଇଣ ଯେ ବିକଇ ଦୁଲଣି
ସୁଝି ନପାରି ଜେହୁ ହୋଇ ପରରଣିଂ
ଏମାନଙ୍କର ଯେତେ ପାତେକ ହୋଅଇ
କାଲି ଯଦ୍ୟରଥକୁ ନ ମାଇଲେ ସେ ପାପକୁ ମୁହିଂ ବହିଂ ।

(ଭାରତ ହରିବଂଶ : ପ୍ରସଙ୍ଗ : ଜୟଦ୍ରଥକୁ ମାରିବାପାଇଁ ଅର୍ଜୁନଙ୍କ ପ୍ରତିଜ୍ଞା)

(୧୧) **ଭାରତ ହରିବଂଶରେ ହାସ୍ୟରସର ପ୍ରୟୋଗ :** ଭାରତ ହରିବଂଶରେ ହାସ୍ୟରସର ପ୍ରୟୋଗ ବହୁଳ ଭାବରେ ପରିଲକ୍ଷିତ ହୋଇଥାଏ । ଅକ୍ରୂର ଶ୍ରୀକୃଷ୍ଣ ବଳରାମଙ୍କୁ ନେଇ ମଥୁରାପୁରକୁ ଗମନ କାଳରେ ମଥୁରାର ନାରୀମାନେ କୃଷ୍ଣ ବଳରାମଙ୍କୁ ଦେଖିବା ପାଇଁ ଯେଉଁପରି ଭାବରେ ଘରଦ୍ୱାର ଛାଡ଼ି ବାହାରି ଆସିଛନ୍ତି ତାହା ଅତ୍ୟନ୍ତ ହାସ୍ୟ ଉଦ୍ରେକକାରୀ ।

ସତ୍ୟଳା ହରଣ ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କର କନ୍ୟା ସତଳାକୁ ଇନ୍ଦ୍ରଙ୍କର ପୁତ୍ର ଚିତ୍ରସେନ ବିବାହ କରିଗଲେ । ବିବାହ ସରିଗଲାପରେ ଇନ୍ଦ୍ରଙ୍କର ପତ୍ନୀ ଶଚୀଦେବୀ ଶ୍ରୀକୃଷ୍ଣଙ୍କ ସମୁଦୁଣୀ ହୋଇଗଲେ । ଶଚୀଦେବୀ ଅର୍ଘ୍ୟଧରି ଆସି ଶ୍ରୀକୃଷ୍ଣଙ୍କ ମୁଣ୍ଡରେ ଢାଳିଦେଲେ । ଶ୍ରୀକୃଷ୍ଣଙ୍କୁ କହିଲେ-

ବୋଇଲେ ମୋତେ ଦୟାରଖିଥିବ ଭଗବାନ
ଏହିରୁପେଂ ମୋର ଯାଉଥିବ ଦିନ ।

ଶଚୀଙ୍କର କଥା ଶୁଣି ଶ୍ରୀକୃଷ୍ଣ ଆଶୀର୍ବାଦ ସୁଲଭ ବାକ୍ୟରେ କହିଲେ-

ଅଳପ ହସିଣ ବୋଇଲେ ମୋହାବାହୁ
ଆହୁରି ଚାରିଗୋଟା ବର ତୋତେ ହେଉ ।

ଗାଆଁ ଗହଳରେ ଏମିତିଆ ରସରସିଆ ଢଙ୍ଗରେ ଆଶୀର୍ବାଦ ଦେଇଥାଆନ୍ତି । ପୁଣି ଶଚୀଙ୍କ କ୍ଷେତ୍ରରେ କଥାଟା ଅଲଗା । ଜଣେ ଶଚୀକୁ ଅନେକ ଇନ୍ଦ୍ର । ଜୀବନଯାକ ଶଚୀ ଅନେକ ବର ପାଇଯାଇସାରିଲେଣି । ସେଇଥିପାଇଁ ଶ୍ରୀକୃଷ୍ଣ ତାଙ୍କୁ ଆହୁରି ଚାରିଗୋଟା ବର ମଞ୍ଜୁର କରିଦେଲେ ।

ଭାରତ ହରିବଂଶରେ ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା ହାସ୍ୟରସରେ ଭରପୁର । ଭୂତବୋଲି କହି ଗୋପୀମାନଙ୍କୁ ଡରାଇବା, ରାଧାଙ୍କୁ ନଟୁ ଚୋରଣୀ ବୋଲି ସାବ୍ୟସ୍ତ କରିବା, ଘାଟସାଧି ଗୋପୀମାନଙ୍କଠାରୁ କଉଡ଼ି ଆଦାୟ କରିବା ଇତ୍ୟାଦିରେ ହାସ୍ୟରସର ପ୍ରୟୋଗ କରାଯାଇଛି । ଲବଣୀ ଚୋରୀ କରିବାପାଇଁ ଶ୍ରୀକୃଷ୍ଣଙ୍କ ଦୁଷ୍ଟାମି ଓ ପଡ଼ୋଶୀମାନଙ୍କ ଘରେ ଯାଇ ସେମାନଙ୍କୁ ହଇରାଣ କରିବାରେ ହାସ୍ୟରସ ନିହିତ ଅଛି ।

ଯଶୋଦାଙ୍କ ନିକଟରେ ଗୋପାଳୁଣୀମାନେ ଶ୍ରୀକୃଷ୍ଣଙ୍କ କାର୍ଯ୍ୟାବଳୀର ପ୍ରତିବାଦ କରିଛନ୍ତି । କିଏ କହୁଛି, ମୋ ପୁଅକୁ କାହ୍ନୁ ବିଧାଏ ମାରି ଆସିଛି, କିଏ କହୁଛି ମୋ ପୁଅକୁ ବି ସେ ମାଡ଼ି ବସିଲା ଯେ ତାର ଆଣ୍ଠୁ ଛିଣ୍ଡିଯାଇଛି । କିଏ କହୁଛି, ମୋ ବୋହୂର କଳସୀ ଭାଙ୍ଗି ଦେଲା, ପୁଣି କିଏ କହୁଛି ମୋ ଲବଣୀ ଚୋରି କରି ଖାଇଗଲା । ଆଉ ଜଣେ ଗୋପାଳୁଣୀର କଥା ଶୁଣନ୍ତୁ-

କେ ବୋଲଇ ମୋହର ଉପରେ ମୁତିଦେଲା
ମେଘ ବରଷିଲା ବୋଲିଣ କହିଲା ।

ଠିକ୍ ଏହିପରି ଆଉ ଗୋଟିଏ ଘଟଣା -

କେ ବୋଲଇ ତୋର ପୁଅ ବଟ ବୃକ୍ଷରେ ଥିଲା ବସି
ଝିଅ ଯାଉଥିଲା ମୋ ଘେନିଣ କଳସୀ
ତାହାର ଉପରେ ସେ ମୂତି ପକାଇଲା
ପଡ଼ିଲି ପଡ଼ିଲି ବୋଲି ବୃକ୍ଷ ହଲାଇଲା
ବୋଇଲା ପତ୍ରେ ଥିଲା ବରଷାର ଜଳ
ମୁହିଂ ଡିଅନ୍ତେଣ ହଲିଲା ଯହୁଂ ଡାଳ

ତେଣୁ ପାଣି ଝରଝର ତୋ ଉପରେ ପଡ଼ିଲା
ତାଟକା ହୋଇ ଝିଅ ଜଳ ଆଣିଗଲା ।
(ଭାରତ ହରିବଂଶ : ପ୍ରସଙ୍ଗ : ଯଶୋଦାଙ୍କ ନିକଟରେ ଗୋପୀମାନଙ୍କ ଅଭିଯୋଗ)

ଭୀମ ଯେତେବେଳେ ଯେଉଁଠାରେ ଯୁଦ୍ଧ କରିଛି ଆମେ ସେଠାରେ ହାସ୍ୟରସର ଖୋରାକ ପାଇପାରିଛୁ । ହାସ୍ୟରସର ଉଦ୍ରେକ କରିବାପାଇଁ ଯେମିତି ସାରଳାଦାସ ଭୀମ ଚରିତ୍ରକୁ ନିର୍ମାଣ କରିଛନ୍ତି । ତେଣୁ ଭାରତ ହରିବଂଶରେ ମୂଳରୁ ଶେଷ ପର୍ଯ୍ୟନ୍ତ ହାସ୍ୟରସର ଏକ ସ୍ରୋତ ଯେମିତି ପ୍ରବାହିତ ହୋଇଯାଇଛି ।

(୧୨) **ଭାରତ ହରିବଂଶରେ ଶୃଙ୍ଗାର ରସର ପ୍ରୟୋଗ :** ଭାରତ ହରିବଂଶରେ ରାଧା ଓ କୃଷ୍ଣଙ୍କର ମିଳନର କଥା କହିବା ବେଳେ ଶୃଙ୍ଗାର ରସକୁ ପ୍ରାଧାନ୍ୟ ଦିଆଯାଇଛି । କେବଳ ରାଧା ନୁହନ୍ତି ରାଧାଙ୍କର ସଖୀମାନଙ୍କ ସହ ମଧ୍ୟ ଶ୍ରୀକୃଷ୍ଣଙ୍କର ଶୃଙ୍ଗାରର ବର୍ଣ୍ଣନା ଏଥିରେ ରହିଛି । ଶ୍ରୀକୃଷ୍ଣଙ୍କ ମୁରଲୀ ସ୍ୱନ ଶୁଣି ରାଧା କାମାତୁର ହୋଇ ନିଜର ସଖୀଙ୍କୁ ଶ୍ରୀକୃଷ୍ଣ ନିକଟକୁ ପ୍ରେରଣ କଲେ । ଶ୍ରୀକୃଷ୍ଣ ସଖୀକୁ ଦେଖି କାମଜ୍ୱାଳାରେ ବିହ୍ୱଳିତ ହୋଇ ତା ସହିତ ଶୃଙ୍ଗାର କରିଥିଲେ ।

ଯେମନ୍ତେ କହି ସୁନ୍ଦରୀ କୃଷ୍ଣଙ୍କୁ କୋଳକଲା
ମଦନେ ଅସାଷ୍ଟମ ହୋଇଲେ ନନ୍ଦବଳା
ଭୁଜରେଂ ଭୁଜଭିଡ଼ି କଲେକ ବିବସନ
ଦେହକୁ ଦେହ ଦେଇ କଲେକ ଆଲିଙ୍ଗନ
ମୁଖକୁ ମୁଖଦେଇ ପାଦକୁ ପାଦଛନ୍ଦି
ପାଟସୁତା ଗଳିତେ ମଧ୍ୟରେ ନାହିଁ ସନ୍ଧି
(ଭାରତ ହରିବଂଶ : ପ୍ରସଙ୍ଗ : ସଖୀ ସହ କୃଷ୍ଣଙ୍କର ଶୃଙ୍ଗାର)

ଦୂତି ଫେରି ଆସିବାପରେ ରାଧା ଯାଇଥିଲେ ଶ୍ରୀକୃଷ୍ଣଙ୍କ ପାଶକୁ । ଶ୍ରୀକୃଷ୍ଣ ବେନିଭୁଜ ବିସ୍ତାର କରି ରାଧିକାକୁ କୋଳକୁ ଟାଣି ନେଇଥିଲେ । ତାପରେ-

ବିଦାରିଲେ ବେନି କୁଚ କଲେକ ବିବସନ
ହିଆକୁ ହିଆ ଦେଇ ଗାଢ଼େ କରନ୍ତି ଆଲିଙ୍ଗନ
ମୁଖରେ ମୁଖ ଦେଇ ଅଧର ପାନ କଲେ
ଚଉଷଠି ପରିବନ୍ଧେ ସୁରତି ଲଗାଇଲେ ।
(ଭାରତ ହରିବଂଶ : ପ୍ରସଙ୍ଗ : ସଖୀ ସହ କୃଷ୍ଣଙ୍କର ଶୃଙ୍ଗାର)

ଶ୍ରୀକୃଷ୍ଣ ଏକଦା ରାଧାଙ୍କର ଗୃହରେ ପ୍ରବେଶ କରି ତାଙ୍କ ସହ ଶୃଙ୍ଗାର କରିଥିଲେ ।

ଶୁଣିଣ ରାଧିକା ହରଷ ହୋଇଲେ
ଶ୍ରୀକୃଷ୍ଣନାଥଙ୍କୁ କୋଳରେ ବସାଇଲେ
ଭୁଜକୁ ଭୁଜଭିଡ଼ି ମୁଖରେ ଚୁମ୍ବଦେଇ
ପଲଙ୍କେ ପହୁଡ଼ିଲେ ରାଧିକା ଭାବଗ୍ରାହୀ
ହିଆକୁ ହିଆ ଦେଇ ସେ ରମଣ କରନ୍ତି
ପାଦକୁ ପାଦଛନ୍ଦି ଭିଡ଼ାଭିଡ଼ି ହୋନ୍ତି
କଲେକ ରମଣ ଚଉଷଠି ପରିବନ୍ଧ
ସାରିଣ ବେନିଜନେ ପଲଙ୍କେ ଗଲେ ନିଦ
(ଭାରତ ହରିବଂଶ : ପ୍ରସଙ୍ଗ : ଶ୍ରୀକୃଷ୍ଣଙ୍କର କୋକୁଆଭୟ ପ୍ରଦର୍ଶନ ଓ ରାଧାଙ୍କ ସହ କେଳି)

ଭୂତକେଳି ସମୟରେ ଶ୍ରୀକୃଷ୍ଣଙ୍କର ରାଧାଙ୍କ ସହ ରମଣ, ଶିବଙ୍କର ପାର୍ବତୀଙ୍କ ସହ ରମଣ, ନାରଦଙ୍କର ସୁକେଶୀ ଚାଣ୍ଡାଳୁଣୀ ସହିତ ରମଣ ଇତ୍ୟାଦିରେ ଶୃଙ୍ଗାର ରସର ବର୍ଣ୍ଣନା ଦେଖିବାକୁ ମିଳିଥାଏ ।

(୧୩) **ଚିଟାଉ ଲେଖନ :** ଭାରତ ହରିବଂଶରେ କଂସ ନନ୍ଦ ନିକଟକୁ ଯେଉଁ ଚିଟାଉ ଲେଖିଛନ୍ତି ତାହା ପରବର୍ତ୍ତୀ ଓଡ଼ିଆ ସାହିତ୍ୟକୁ ବେଶ୍ ପ୍ରଭାବିତ କରିଛି । ଚିଟାଉ ଲେଖିବାର ଶୈଳୀ ସାରଳା ଦାସଙ୍କ ଠାରୁ ହିଁ ଆରମ୍ଭ ହୋଇଥିଲା । ମଥୁରା ମଙ୍ଗଳରେ ଭକ୍ତଚରଣ ଦାସ ଅକ୍ରୂର ହାତରେ ନନ୍ଦ ନିକଟକୁ କଂସର ଯେଉଁ ଚିଟାଉ ପଠାଇଛନ୍ତି ତାହା ଭାରତ ହରିବଂଶର ପ୍ରଭାବ ବୋଲି ମନେ ହୋଇପାରେ । ଭାରତ ହରିବଂଶରେ କଂସ ଲେଖିଥିବା ଚିଟାଉଟି ଏହିପରି-

ମଥୁରା ନୃପତି କଂସାସୁର ମୁଂ ଅଟଇ
ଅଇରି ଦଳଣ ବାନା ମଉଡ଼ମଣିଂ ମୁହିଂ
ମଞ୍ଚ ରାଜାମାନେ ମୋର ଖଟନ୍ତି ପୟର
ଭୟରେ ବାସୁକି ଯେ ଉଦ୍‌ଗାରେ ରୋଧିର
ଇନ୍ଦ୍ର ସହିତରେ ତେତିଶ କୋଟି ଦେବେ
ଡରେ ଉଭା ହୋଇଥାନ୍ତି ମୋହର ଆଗେଂ
ବ୍ରହ୍ମା ଶିବ ଯାଆନ୍ତି ମୋତେ ଅପସରି
ସିନ୍ଧୁର ଭିତରେ ଲୁଚି ରହିଛି ଶ୍ରୀହରି
ୟେମନ୍ତ ମହିମା ଅଟଇ ମୋହର
କରିଅଛି ମୁହିଂ ଧନୁ ସୟମ୍ବର
ତଦନ୍ତରେ ମୁଂ ରଙ୍ଗସଭା ଅଛି କରି
ଦେଖିବାକୁ ଆସନ୍ତି ସକଳ ଦଣ୍ଡଧାରି
ତୁହି ନନ୍ଦ ଗୋପରେ ହୋଇଅଛୁ ନୃପବର
ଗୋରସ ଆଣିବୁ ତୁ ବେନି ଶତେ ଭାର
ସମସ୍ତ ଗୋପାଳ ତୋର ସଙ୍ଗେଥିବେ
ରାମକୃଷ୍ଣ ବେନିଭାଇ ତୋ ସଙ୍ଗେ ଆସିବେ ।
ଲେଖାରେ ମୋର ସେ ଅଟନ୍ତି ଭଣଜା
ଆସିବେ ୟେଠାବକୁ ତାଙ୍କୁ ଦେଖିବେ ସର୍ବରାଜା
ଦେଖିବାକୁ ଶ୍ରଦ୍ଧା ହୋଇଛି ମୋହର
ବିଳମ୍ବ ନ କରିଣ ଆସିବ ତତକାଳ ।

(ଭାରତ ହରିବଂଶ : ପ୍ରସଙ୍ଗ : କଂସର ଚିଟାଉ)

(୧୪) **ଭାରତ ହରିବଂଶରେ ବର୍ଣ୍ଣନା :** ବିଭିନ୍ନ ପ୍ରକାର ବର୍ଣ୍ଣନାରେ ଭାରତ ହରିବଂଶ ସମୃଦ୍ଧ । ଏଥିରେ ସକାଳ ବର୍ଣ୍ଣନା କିପରି କରାଯାଇଛି ଦେଖାଯାଉ । ଭଗଦତ୍ତ ସେନାପତି ହୋଇଥିବା ବେଳେ ରାତି ପାହି ସକାଳ ହେଲା । କବି କହୁଛନ୍ତି-

ସୟନ କରନ୍ତେ ପାହିଲା ରଜନି
ଦେବତାଙ୍କ ଆଳେ ସୁଭିଲା ସଙ୍ଖଧ୍ୱନି
ଘନ ଘନ ତାମ୍ରଚୁଡ ଦିଲେ ରଡ଼ି
ପୁର୍ବଦିଗେ ଉଦୟ ପବନ ବେହାରି ।

କବିମାନେ ସୌନ୍ଦର୍ଯ୍ୟବର୍ଣ୍ଣନାକୁ ସବୁବେଳେ ଗୁରୁତ୍ୱ ଦେଉଥିବା ସମୟରେ ଭାରତ ହରିବଂଶରେ ନାରୀର ସୌନ୍ଦର୍ଯ୍ୟ ବର୍ଣ୍ଣନା ଅତ୍ୟନ୍ତ ମନୋମୁଗ୍ଧକର । ଏକଦା ସତରଦିନ ସୂର୍ଯ୍ୟ ଉଦୟ ହେଲେ ନାହିଁ । ସୂର୍ଯ୍ୟକୁ ଦର୍ଶନ ନକଲେ ପଣ୍ଡୁ ଆହାର କରନ୍ତି ନାହିଁ । ତେଣୁ ପଣ୍ଡୁ

ତାଙ୍କ ପତ୍ନୀ ମାଦ୍ରୀଙ୍କୁ ବାହାରକୁ ଆସିବାପାଇଁ ଅନୁରୋଧ କଲେ । କାରଣ ମାଦ୍ରୀ ଏତେ ସୁନ୍ଦର ଯେ ତାଙ୍କୁ ଦେଖିବା ପାଇଁ ସୂର୍ଯ୍ୟଦେବ ନିଶ୍ଚୟ ବାହାରକୁ ଆସିବେ ବୋଲି ପଣ୍ଡୁଙ୍କର ଧାରଣା ଥିଲା । ଭାରତ ହରିବଂଶରେ ସେହି ମାଦ୍ରୀଙ୍କର ସୌନ୍ଦର୍ଯ୍ୟ ବର୍ଣ୍ଣନା ଏହିପରି–

ସ୍ୱାମିର ବଚନ ଶୁଣି ମାଦ୍ରି ହୋଇ ସଜ
ତାହର ରୂପ ଦେଖି କନ୍ଦର୍ପ ଢଳି ଯିବ ।
କଟି ସିଂଘ ମଝାଜାନୁ ଓଲଟ କଦଳି
ନାସା ତିଳ ପୁଷ୍ପ ଚମ୍ପାକଢ଼ି ଯେ ଆଙ୍ଗୁଳି
କୁରଙ୍ଗନୟନି କର୍ଣ୍ଣ ଅଟେ ଯେ ଜବାଫୁଲ
ଶିରରେ ବାନ୍ଧିଛି ଝୁଡ଼ା ଚାଚେକର ବାଳ
ହସ୍ତିକୁମ୍ଭ ଗଣ୍ଡସ୍ଥଳ ମର୍କତ ଲିଙ୍ଗ କୁଚ
ତଥିପରେ ମଣିହାର ଦିଶଇ ଝଟଝଟ ।
ମୃଣାଳର ନାଡ଼ ପ୍ରାୟେ ଦିଶଇ ବାହୁବେନି
ଅଙ୍ଗୁଷ୍ଠିର ମୁଦ୍ରିକା ଅରୁଣ ଜ୍ୟୋତି ଜିଣି
କଚଟି ବାହୁଟି ଯେ ଭୁଜ ଯେ ଶୋଭାବନ
ପିନ୍ଧିଣ ଚିତ୍ରପାଟ ପତନି ଉପୁରାଣ
ମାନବେ ଅସମ୍ଭବ ସେ ଦେବଙ୍କୁ ଆଗୋଚର
ତେମନ୍ତ ସ୍ତିରି ନାହିଁ ଚଉଦ ବ୍ରହ୍ମାଣ୍ଡର ।

(ଭାରତ ହରିବଂଶ : ପ୍ରସଙ୍ଗ : ପଣ୍ଡୁ ଓ ମାଦ୍ରୀଙ୍କର ମୃତ୍ୟୁ)

## ॥ ସାତ ॥

**ପରବର୍ତ୍ତୀ କବିଙ୍କ ଉପରେ ଭାରତ ହରିବଂଶର ପ୍ରଭାବ :** ଭାରତ ହରିବଂଶରେ କଂସ ନନ୍ଦଙ୍କ ନିକଟକୁ ଲେଖଥିବା ଚିଟାଉ କିପରି ପରବର୍ତ୍ତୀ ସମୟରେ ଭକ୍ତଚରଣ ଦାସଙ୍କୁ ପ୍ରଭାବିତ କରିଛି ତାହାର ସାମାନ୍ୟ ଆଲୋଚନା ପୂର୍ବରୁ କରାଯାଇଛି । ମଥୁରା ମଙ୍ଗଳରେ ଥିବା–

ଲେଖିଅଛି କଂସ ହୋଇ ମହାରୋଷ
ଆରେ ଗୋପପତି ନନ୍ଦ
ଆଜ୍ଞାପ୍ରମାଣେ ତତକାଳେ ଆସିବୁ
ନୋହିଲେ ଛେଦିବି କନ୍ଧ

ଇତ୍ୟାଦି ଯେ ଭାରତ ହରିବଂଶର–

ମଥୁରାନୃପତି କଂସାସୁର ମୁଂ ଅଟଇ
ଅଇରି ଦଳଣ ବାନା ମଉଡ଼ ମଣିଂ ମୁହିଂ
ମଞ୍ଚରାଜାମାନେ ମୋର ଖଟନ୍ତି ପୟର

ଭୟରେ ବାସୁକି ଯେ ଉଦ୍‌ଗାରେ ରୋଧିର ଆଦି ପଦଦ୍ୱାରା ପ୍ରଭାବିତ ହୋଇଛି ଏହାକୁ ଅସ୍ୱୀକାର କରାଯାଇ ପାରିବନାହିଁ । ବିଶେଷ ଭାବରେ ସାରଳାଙ୍କ ମାଧ୍ୟମରେ ରାଧା ନୂଆକରି ଓଡ଼ିଆ ସାହିତ୍ୟକୁ ପ୍ରବେଶ କରିଛନ୍ତି । ସାରଳାଙ୍କ ପୂର୍ବରୁ ରାଧା ଓ କୃଷ୍ଣଙ୍କର ମିଳନର କଥା ଆଉ କେହି ରଚନା କରିନାହାନ୍ତି । ସେଇଥିପାଇଁ ଭାରତ ହରିବଂଶରେ ଥିବା ରାଧାଙ୍କର ରାସଲୀଳା କଥା ପରବର୍ତ୍ତୀ କବିମାନଙ୍କୁ ପ୍ରଭାବିତ କରିବା ସ୍ୱାଭାବିକ ।

ଏଠାରେ ଭାରତ ହରିବଂଶରେ ରାଧାଙ୍କ ସମ୍ପର୍କିତ ତିନିଗୋଟି ପ୍ରସଙ୍ଗ ଉପସ୍ଥାପନ କରାଯିବ ଯେଉଁ ପ୍ରସଙ୍ଗକୁ ନେଇ ପରବର୍ତ୍ତୀ କବି ସ୍ୱତନ୍ତ୍ର ଭାବରେ ଏକ ଏକ କାବ୍ୟ ରଚନା କରିଛନ୍ତି । ସେହି ତିନିଗୋଟି ପ୍ରସଙ୍ଗ ହେଲା– ଭୂତକେଳି, ନଟୁଚୋରୀ ଓ ଘାଟସଧା । ଏଥିମଧ୍ୟରୁ ଭୂତକେଳିକୁ ଦୀନକୃଷ୍ଣ ଦାସ ରଚନା କରିଛନ୍ତି । ନଟୁଚୋରୀର ଭଣିତାରେ ଦୀନ ସୁନ୍ଦରୀ ବୋଲି ଲେଖାଯାଇଥିବାରୁ ଏହାକୁ

ଦୀନକୃଷ୍ଣ ଦାସ ରଚନା କରିଛନ୍ତି କି ନାହିଁ ବୋଲି ଗବେଷକମାନେ ସନ୍ଦେହ ଘେରରେ ରହିଛନ୍ତି ।

**ଭୂତକେଳି :** ଶ୍ରୀକୃଷ୍ଣ ଗୋପପୁରରେ ଥିବାବେଳେ ତାଙ୍କର ତିନିପ୍ରକାର କର୍ମକୁ କବିମାନେ ବହୁଭାବରେ ବର୍ଣ୍ଣନା କରିଆସିଛନ୍ତି । ସେ ତିନିଗୋଟି ହେଲା-ଲୀଳା, ରାସ ଓ କେଳି । ଶ୍ରୀକୃଷ୍ଣଙ୍କର ସମସ୍ତ କାର୍ଯ୍ୟ ଲୀଳା ମଧ୍ୟରେ ଅନ୍ତର୍ଭୁକ୍ତ । ପୂତନାକୁ କ୍ଷୀର ସଙ୍ଗରେ ଶୋଷିବାଠାରୁ କାଳୀୟଦଳନ, କୁଂଜବନରେ ମୁରଲୀ ଫୁଙ୍କିବାଠାରୁ ଗୋପୀ ଓ ରାଧା ସହ ସମ୍ଭୋଗ ଆଦି ସମସ୍ତ ଲୀଳା ମଧ୍ୟରେ ଅନ୍ତର୍ଭୁକ୍ତ । କେଳି ଶବ୍ଦ କ୍ରୀଡ଼ା ଶବ୍ଦରୁ ଉତ୍ପନ୍ନ ହୋଇଅଛି । ଏହା କେବଳ ରତିକ୍ରୀଡ଼ା । ପ୍ରେମ ଉଦ୍ଦୀପକ ମିଳିତ ନୃତ୍ୟ ଓ ସଂଗୀତ ହିଁ ରାସ ପର୍ଯ୍ୟାୟର । ରାସର ସମାପ୍ତି କେଳିରେ ହୋଇପାରେ, ନହୋଇ ମଧ୍ୟ ପାରେ । ରାସର ଶେଷ ଭାଗକୁ କେଳି ବେଳେ ବେଳେ ଯୋଡ଼ିଯାଇଥାଏ । ମାତ୍ର ଶାସ୍ତ୍ରରେ ରାସ ଓ କେଳି ଦୁଇଟି ସ୍ୱତନ୍ତ୍ର ପ୍ରକ୍ରିୟା । ଭୂତକେଳିରେ ରାସର କଥାନାହିଁ । ଏଠାରେ ଶ୍ରୀକୃଷ୍ଣ ଓ ରାଧାଙ୍କ ମଧ୍ୟରେ ରତିକ୍ରିୟାର କଥା ହିଁ କୁହାଯାଇଛି ।

ସାରଳା ଦାସ ଭାରତ ହରିବଂଶରେ ପ୍ରଥମେ ଭୂତକେଳି କଥା ଉଲ୍ଲେଖ କରିଛନ୍ତି । ରାଧାଙ୍କ ସହିତ ଚୋରାରେ ରତିକରୁଥିବା ସମୟରେ ତାଙ୍କ ମୁଣ୍ଡରେ ଏକ ନୂତନ ଚିନ୍ତାଧାରା ଖେଳିଛି । ସେ ରାଧିକାଙ୍କୁ ଡାକି କହିଛନ୍ତି -

ଯେବେ ଗୋ ଚୋରାରତି ଆଉ ନ କରିବା
ସମସ୍ତେ ଦେଖୁଥିବେ ରମଣ କରିବା ।

ସମସ୍ତେ ଦେଖୁଥିବା ଅବସ୍ଥାରେ କିପରି ରମଣ କରିହେବ, ସେଥିପାଇଁ ଗୋଟିଏ ଯୋଜନା ପ୍ରସ୍ତୁତ କରାଯାଇଛି । ରାଧିକାକୁ ବୁଦ୍ଧିଦେଇ ଶ୍ରୀକୃଷ୍ଣ କହିଛନ୍ତି- ତୁ ଯେତେବେଳେ ଯମୁନାକୁ ଜଳ ଆଣିବାକୁ ଯିବୁ ସେତେବେଳେ ଭୂତ ଲାଗିଲା ବୋଲି ତଳେ ପଡ଼ିଯିବୁ । ତଳୁ ଉଠି ଲୁଗାପଟା ଦେହରୁ ଫିଙ୍ଗିଦେଇ ପାଗଳୀ ପରି ପ୍ରଳାପ କରିବୁ । ଗୁରୁ ଗଉରବ ନମାନି ସମସ୍ତଙ୍କୁ ଗାଳି ଦେବାରେ ଲାଗିବୁ । ଗୋପାଳମାନେ ଯେତେ ଗୁଣମନ୍ତ୍ର କଲେ ମଧ୍ୟ ତୁ ଶାନ୍ତ ହେବୁନାହିଁ । ଶେଷରେ ଯେତେବେଳେ ଗୋପାଳମାନେ ହାନ୍ଦୋଳାରେ ବସାଇ ଆମକୁ କାନ୍ଧରେ ବୋହିନେବେ ଆମେ ସେହି ହାନ୍ଦୋଳରେ ହିଁ ଶୃଙ୍ଗାର କରିବା ।

ଶ୍ରୀକୃଷ୍ଣଙ୍କ କହିବା ଅନୁଯାୟୀ ସମସ୍ତ କାର୍ଯ୍ୟହେଲା । ଭୂତଲାଗିଛି ବୋଲି ରାଧିକା ପାଗଳୀ ପ୍ରାୟ ହୋଇଗଲେ । ଗୋପପୁରର କୌଣସି ଗୁଣିଆ ଭୂତ ଛଡ଼ାଇ ପାରିଲେ ନାହିଁ । ଶେଷରେ ଶ୍ରୀକୃଷ୍ଣ ଯାଇ ରାଧାଙ୍କ ପଲଙ୍କରେ ବିଜେକଲେ । ପଲଙ୍କର ଚାରିପାଖରେ ଟେରାବାଡ଼ ଦେବାପାଇଁ ଗୋପାଳମାନଙ୍କୁ ନିର୍ଦ୍ଦେଶ ଦେଲେ । କିଛି ଗୋପାଳ ହାନ୍ଦୋଳାକୁ କାନ୍ଧେଇଲେ ଓ ଆଉ କିଛି ଉପରେ ଛତ୍ର ଧରିଲେ । ସେହି ଅବସ୍ଥାରେ ଶ୍ରୀକୃଷ୍ଣ ରାଧିକାଙ୍କୁ ରମଣ କଲେ ।

ଥୋକାଯେକ ଗୋପାଳ ହାନ୍ଦୋଳା କାନ୍ଧୋଇଲେ
ଥୋକାଯେକ ଉପରେ ଛତ୍ର ଉହାଡ଼ିଲେ
ଆଗେପଛେ ଗୋପାଳ ଅଛନ୍ତି ଉଭାରି
ରାଧିକାକୁ ରମଣ କରନ୍ତି ଦଇତାରି
ମଡ଼ ମଡ଼ ଶବଦ ଶୁଭଇ ଖଟଦଣ୍ଡା
ଶ୍ରୀକୃଷ୍ଣ ବୋଇଲେ ଯେହାକୁ ଝିଙ୍କିଲା ଭୁତଚଣ୍ଡା ।
ସମସ୍ତେ ମିଳିଛନ୍ତି ଗୋବିନ୍ଦ କଲେ କେଳି
ଶୁଣଗୋ ଉମା ବୋଲି ବୋଲନ୍ତି ଦେବସୁଳି ।

(ଭାରତ ହରିବଂଶ : ପ୍ରସଙ୍ଗ : ଭୂତକେଳି)

ହାନ୍ଦୋଳାରେ ବସିଯିବା ପୂର୍ବରୁ ଶ୍ରୀକୃଷ୍ଣ ଭୂତକୁ ଭୋଗ ସାମଗ୍ରି ଦେବାପାଇଁ ଗୋପାଳମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଗୋପାଳମାନେ "ଛେନା ନଡ଼ିଆ ଆବର ପିଷ୍ଟକ ଦୁଧଦହି/ଘୃତ ମଧୁ ନବାତ ଖଜା ଯେ ମିଠାଇ" ଆଦି ଭୂତକୁ ନୈବେଦ୍ୟ ଦେଇଛନ୍ତି । ଶ୍ରୀକୃଷ୍ଣ ସମସ୍ତ ଦ୍ରବ୍ୟକୁ ଏକାଗ୍ରାସରେ ଭକ୍ଷଣ କରିଛନ୍ତି ।

ସାରଳା ଦାସଙ୍କ ପରବର୍ତ୍ତୀ ସମୟରେ ଅଚ୍ୟୁତାନନ୍ଦ ଦାସ ହରିବଂଶରେ ଏହି ପ୍ରସଙ୍ଗକୁ କିଞ୍ଚିତ ଭିନ୍ନ ଭାବରେ ସ୍ଥାନିତ କରିଛନ୍ତି । ଅଚ୍ୟୁତାନନ୍ଦଙ୍କ ରଚନା ଅନୁସାରେ ଦିନେ ରାତ୍ରିରେ ଶ୍ରୀକୃଷ୍ଣ କୁଞ୍ଜବନକୁ ଯାଇ ବିରହ ବଂଶୀ ବଜାଇବାରୁ ରାଧିକା ପୁଲକିତ ହୋଇ

ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହୋଇଛନ୍ତି । କୁଂଜବନରେ ରାତ୍ରି ପୁହାଇବାପରେ ପରଦିନର ପ୍ରଭାତ ଆସିଯାଇଛି । ଶ୍ରୀକୃଷ୍ଣ ହସି ହସି ରାଧାଙ୍କୁ କହିଛନ୍ତି, ଆଜି ଘରକୁ କିପରି ଯିବ ? ଶାଶୁ ଓ ନଣନ୍ଦ ଅନେକ ଗାଳି ଦେବେ । ରାଧା ଏଠାରେ ଶ୍ରୀକୃଷ୍ଣଙ୍କୁ ବୁଦ୍ଧି ବତାଇଛନ୍ତି । କହିଛନ୍ତି- ମୋତେ ବ୍ରହ୍ମଦୈତ୍ୟ ଲାଗିଛି ବୋଲି କହି ମୁଁ ଘରକୁ ଯିବି । ତମେ ଏଇଠି ରହିଥାଅ, ତମ ପାଇଁ ବିଭିନ୍ନ ପ୍ରକାରର ଖାଦ୍ୟଦ୍ରବ୍ୟ ମଧ୍ୟ ପଠାଇଦେବି ।

ସେହିପରି ହେଲା । ଅଣ୍ଡିରାଚଣ୍ଡୀ ନାମକ ଭୂତ ଲାଗିଛି ବୋଲି ରାଧା ଉନ୍ମତ୍ତପ୍ରାୟ ହୋଇଗଲେ । ଅଣ୍ଡିରାଚଣ୍ଡୀ ଭୂତ ସଂପର୍କରେ ଭୟଙ୍କର କଥାମାନ ବର୍ଣ୍ଣନା କରିବାକୁ ଲାଗିଲେ । ଗୁଣିଆମାନେ ତାଙ୍କୁ ଭଲ କରିବା ଅସମ୍ଭବ ହୋଇ ପଡ଼ିବାରୁ ଗୋପାଳମାନେ ହାତଯୋଡ଼ି ପ୍ରାର୍ଥନା କରିବାକୁ ଲାଗିଲେ । ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ଭୂତରୂପୀ ରାଧା କହିଲେ-

ମୁହିଂ ଯେବେ ରାଧିକାକୁ ଯିବି ଆଜି ଛାଡ଼ି
ଭୁରି ଭଜନ ଦେବଟି କୁଂଜବନେ ବାଢ଼ି ।

ରାଧିକାଙ୍କ କଥା ମାନି ଘୃତରେ ପରିପକ୍ୱ ସୁପକ୍ୱ ରାନ୍ଧଣା, ଶହେଭାର ଅନ୍ନ, ସାତଭାର ବ୍ୟଞ୍ଜନ, ପିଷ୍ଟକ ଶହେ ଭାର ଆଦି କୁଂଜବନରେ ଭୂତକୁ ସମର୍ପଣ କରିଦିଆଗଲା । ଶ୍ରୀକୃଷ୍ଣ ସେ ସବୁକୁ ଖାଇ ସନ୍ତୁଷ୍ଟ ହେଲେ ।

ସାରଳା ଦାସଙ୍କ ଭାରତ ହରିବଂଶର ଭୂତକେଳି ପ୍ରସଙ୍ଗକୁ ଅଚ୍ୟୁତାନନ୍ଦ ତାଙ୍କ ରଚିତ ହରିବଂଶରେ ସ୍ଥାନିତ କରିଛନ୍ତି । ଦୀନକୃଷ୍ଣ ଦାସଙ୍କ 'ଭୂତ କେଳି'ର ଉତ୍ସ ଭାବରେ ଭାରତ ହରିବଂଶକୁ ସ୍ୱୀକାର କରାଗଲେ ମଧ୍ୟ ଦୀନକୃଷ୍ଣଙ୍କ ଭୂତକେଳିର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ସାରଳାଙ୍କ ଭୂତକେଳିକୁ ଏକ ସଂପୂର୍ଣ୍ଣଗ୍ରନ୍ଥ କରି ଦୀନକୃଷ୍ଣ ରଚନା କରିଛନ୍ତି । ସାରଳା ସଂକ୍ଷିପ୍ତ ଭାବରେ ଯେଉଁକଥା କହିବାକୁ ଚେଷ୍ଟା କରିଛନ୍ତି ଦୀନକୃଷ୍ଣ ବିସ୍ତୃତ ଭାବରେ ତାହାକୁ କାବ୍ୟରୂପ ପ୍ରଦାନ କରିଛନ୍ତି ।

ଦୀନକୃଷ୍ଣଙ୍କ ଭୂତକେଳିର କଥାବସ୍ତୁ ଅନୁସାରେ ଦିନେ ଶୁକମୁନିଙ୍କ ଚରଣରେ ଦିବ୍ୟ ପୂଜାର୍ଚ୍ଚନା କରି ପରୀକ୍ଷିତ କହିଲେ- ହେ ମହାବେତ୍ତା ମୁନି, ଶ୍ରୀକୃଷ୍ଣ ଷୋଳସହସ୍ର ଗୋପନାରୀଙ୍କୁ ଧରି ତିନିରାତ୍ରି କେଉଁପରି ରାସକ୍ରୀଡ଼ା କରିଥିଲେ ତଥା ଚନ୍ଦ୍ରସେଣା ଗୃହରେ ଅବସ୍ଥାନ କରି କେଉଁପରି ଭୂତକେଳି କରିଥିଲେ, ଅନୁଗ୍ରହ କରି ଭାଗବତର ଏହି ଅପୂର୍ବ ଚରିତ ମୋ ଆଗରେ ପ୍ରକାଶ କରନ୍ତୁ ।

ଶୁକମୁନି ପରୀକ୍ଷିତଙ୍କୁ ଭାଗବତର ଏହି ଅପୂର୍ବ କାହାଣୀ ଶୁଣାଇବାକୁ ଲାଗିଲେ । ଦିନେ ଶ୍ରୀକୃଷ୍ଣ କଦମ୍ବମୂଳରେ ଥିବାବେଳେ ରାଧିକା କାଖରେ କୁମ୍ଭ ଘେନି ଯମୁନାକୁ ପାଣି ଆଣିବାକୁ ଗଲେ । ବାଟରେ ଶ୍ରୀକୃଷ୍ଣ ଭେଟ ହୋଇ ରାତ୍ରି ପାଞ୍ଚଘଡ଼ିରେ ରାଧିକାର ପୁରକୁ ବିଜେ କରିବେ ବୋଲି ସୂଚନା ଦେଲେ । ରାଧିକାର ସ୍ୱାମୀ ଚନ୍ଦ୍ରସେଣା ରାତ୍ରିରେ ଗୋଗୋଷ୍ଠକୁ ଚାଲିଗଲାପରେ ଶ୍ରୀକୃଷ୍ଣ ରାଧିକାପୁରରେ ପ୍ରବେଶ କରି କବାଟରେ କରାଘାତ କଲେ । ପ୍ରଥମେ ରାଧିକା ଦ୍ୱାର ନଖୋଲି ଶ୍ରୀକୃଷ୍ଣଙ୍କୁ ବିଭିନ୍ନ ପ୍ରଶ୍ନପଚାରି ପରୀକ୍ଷା କରିବାକୁ ଲାଗିଲେ । ମାତ୍ର ପରେ ଶ୍ରୀକୃଷ୍ଣଙ୍କ ବିନୟବାଣୀରେ ସନ୍ତୁଷ୍ଟ ହୋଇ ଦ୍ୱାର ଖୋଲିଦେଲେ । ରାଧାକୃଷ୍ଣ ଚଉଷଠି ବନ୍ଧରେ ଦିବ୍ୟ ରତି କରି କ୍ଳାନ୍ତ ହୋଇ ଅଚେତନରେ ନିଦ୍ରାବଶ ହୋଇଗଲେ ।

ସକାଳେ ଚନ୍ଦ୍ରସେଣା ଗୋଗୋଷ୍ଠରୁ ଫେରି ରାଧିକା ରାଧିକା ଡାକ ଦେବାପରେ ରାଧାକୃଷ୍ଣଙ୍କର ନିଦ୍ରାଭଙ୍ଗ ହେଲା । କବାଟ ଖୋଲି ବାହାରକୁ ବାହାରିଲେ ଲୋକଲଜ୍ଜା ହେବ ବୋଲି ଏବେ କ'ଣ କରାଯିବ ସେଥିନେଇ ଉଭୟ ଘର ମଧ୍ୟରେ ମନ୍ତ୍ରଣା କରିବାକୁ ଲାଗିଲେ । ରାଧା ବିଚଳିତ ହୋଇ ପଡୁଥିବା ବେଳେ କୃଷ୍ଣ ତାଙ୍କୁ ସାନ୍ତ୍ୱନା ଦେଇ ଭୂତ ହୋଇ ଚନ୍ଦ୍ରସେଣାକୁ ଡରାଇବେ ବୋଲି ପ୍ରତିଶ୍ରୁତି ଦେଲେ ।

ଡାକ ନ ଶୁଣିବାରୁ ଚନ୍ଦ୍ରସେଣା କୁଞ୍ଚଜଳା ବାଟରେ ଭିତରକୁ ଅନାଇ ଦେଖିଲା ରାଧାଙ୍କ ସହିତ ଶ୍ରୀକୃଷ୍ଣ ପଲଙ୍କରେ ବିଜେ କରିଛନ୍ତି । ଚନ୍ଦ୍ରସେଣା ଅସ୍ଥିର ହୋଇ ପ୍ରତିଶୋଧ ନେବାପାଇଁ ଉଭୟଙ୍କୁ ହତ୍ୟା କରିବ ବୋଲି ପ୍ରସ୍ତୁତ ହୋଇ ପୁଣି ଥରେ କୁଞ୍ଚଜଳା ବାଟେ ଘର ଭିତରକୁ ଚାହିଁଦେଲା । ଏଥର ଚନ୍ଦ୍ରସେଣା ଏକ ଭୟଙ୍କର ଦୃଶ୍ୟକୁ ସାମ୍ନାକଲା । ସମଗ୍ର ଘରକୁ ପୂରି ତ୍ରିପଣ୍ଡକାଳିଆ ଭୂତଟିଏ ସେଠାରେ ବିରାଜମାନ କରୁଛି । ରୂପଟି ବିକଟାଳ, ଆଷାଢ଼ର ମେଘଠାରୁ ଆହୁରି କଳାଦେହ, ତାଳଗଛ ପରି ନିଶଯୋଡ଼ା, କାଳସର୍ପ ପରି ଗର୍ଜନ, ମୁହଁରେ ପର୍ବତ ପଶିଯିବା ପରି ଆଁ ଓ ବାରହାତ ଲହ ଲହ ଜିହ୍ୱା । ଘର ଭିତରେ ରାଧା ନାହିଁ ଅଥଚ ଭୂତର ମୁହଁରେ ରକ୍ତ ଲାଗିଛି । ତ୍ରିପଣ୍ଡ କାଳିଆଭୂତ ରାଧାକୁ ଖାଇଦେଇଛି ବୋଲି ଚନ୍ଦ୍ରସେଣା ନିଶ୍ଚିତ ହୋଇଗଲା । ଏହି ସମୟରେ କବାଟ ଜଳାରେ ହାତବଢ଼ାଇ ଭୂତ ଟହ ଟହ ହୋଇ ହସିଦେଲା । ଭୟରେ ଅସମ୍ଭାଳ ହୋଇ ଚନ୍ଦ୍ରସେଣା ଗୋପପୁରରେ ଥିବା ଭଉଣୀ ଯଶୋଦା ଘରକୁ ଧାଇଁ ପଳାଇଗଲା ।

ନନ୍ଦ, ଯଶୋଦା ଓ ଗୋପାଳମାନେ ଚନ୍ଦ୍ରସେଣା ମୁଖରୁ ଭୂତ ସମ୍ପର୍କରେ କଥାମାନ ଶୁଣିଲେ । ଯଶୋଦା ଶ୍ରୀକୃଷ୍ଣଙ୍କୁ ଖୋଜିବେ ବୋଲି ଶ୍ରୀକୃଷ୍ଣ ନିଜ ଅଙ୍ଗରୁ ମାୟାକୁମରଟିଏ ଜାତକରି ଗୋପପୁରକୁ ପଠାଇଦେଲେ । ସମସ୍ତଙ୍କ ଅଲକ୍ଷ୍ୟରେ ଗୋପନଗ୍ରରେ ପ୍ରବେଶ କରି ମାୟାକୁମର ବଳରାମଙ୍କ ନିକଟରେ ଶୋଇପଡ଼ିଲା, ନନ୍ଦ ଲଉଡ଼ିମାନ ଧରି ଚନ୍ଦ୍ରସେଣା ପୁରକୁ ଯିବାପାଇଁ ଗୋପାଳମାନଙ୍କୁ ନିର୍ଦ୍ଦେଶ ଦେବାରୁ ନନ୍ଦଙ୍କ ନେତୃତ୍ୱରେ ଗୋପାଳମାନେ ମହାକୋଳାହଳରେ ଆଗେଇ ଚାଲିଲେ ।

ନନ୍ଦ ପ୍ରଥମେ କୁଞ୍ଚିକଳା ବାଟେ ଘର ଭିତରକୁ ଅନାଇ ଦେଖିଲେ ଘରେ କେହି ନାହିଁ । ମାତ୍ର ଚନ୍ଦ୍ରସେଣା ଦେଖିବାବେଳକୁ ଭୂତ ପୂର୍ବପରି ଟହ ଟହ ହୋଇ ହସିଦେଲା । ନନ୍ଦ ସହିତ ଗୋପାଳମାନେ ଭୟତ୍ରସ୍ତ ହୋଇ କ'ଣ କରିବେ ବୋଲି ବିଚାର କରିବାକୁ ଲାଗିଲେ । କିଛି ଗୋପାଳ ମହାଗୋଳ କରି କେନ୍ଦୁବାଡ଼ିରେ କବାଟକୁ ଆଘାତ କରିବାରୁ ତ୍ରିପଣ୍ଡ କାଳିଆ ଭୂତ ମହାଗର୍ଜନ କରି ରଡ଼ିଟିଏ ଛାଡ଼ି ଦେଲା । ଗୋପାଳମାନେ ଗୋଟିଏ ଗର୍ଜନରେ ପଳାଇଯାଇ ଗୋପପୁରରେ ଗୁଣ୍ଡ ହେଲେ ।

ଭୂତକୁ ସ୍ତୁତି ମାଧ୍ୟମରେ ସନ୍ତୁଷ୍ଟ କରିବାପାଇଁ ଚନ୍ଦ୍ରସେଣା ପ୍ରସ୍ତାବ ଦେବାରୁ ନନ୍ଦ ସେହି ଅନୁସାରେ ଗୋପାଳମାନଙ୍କୁ ନିର୍ଦ୍ଦେଶ ଦେଲେ । ନନ୍ଦଙ୍କର ନିର୍ଦ୍ଦେଶ ଅନୁଯାୟୀ ଗୋପାଳମାନେ ହୀନବୀର୍ଯ୍ୟଭାବରେ କରଯୋଡ଼ି ଭୂତକୁ ସ୍ତୁତିକରି ପ୍ରସନ୍ନ ହେବାପାଇଁ ପ୍ରାର୍ଥନା କଲେ । କେଉଁ ଦୋଷପାଇଁ ରାଧାକୁ ଖାଇଲେ ତାହା ଜାଣିବାପାଇଁ ମଧ୍ୟ ଇଚ୍ଛା ପ୍ରକାଶ କଲେ । ଗୋପାଳଙ୍କ ପ୍ରାର୍ଥନାରେ ଭୂତ ପ୍ରସନ୍ନ ହୋଇ ଗୋପାଳଙ୍କର ଦୋଷ କହିବାକୁ ଲାଗିଲେ ।

ଭୂତର କହିବା ଅନୁସାରେ କଦମ୍ବମୂଳରେ ତାର ଶତଚନ୍ଦ୍ର ଦର୍ପଣଟିଏ ଥିଲା । ସେହି ଦର୍ପଣ ମାଧ୍ୟମରେ ସେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନର କଥା ଦେଖି ପାରୁଥିଲା । ଦର୍ପଣଟିକୁ ଗୋପାଳମାନଙ୍କ ଭିତରୁ କେହି ଚୋରି କରିଛି ବୋଲି ଅଭିଯୋଗ କରିବା ସଙ୍ଗେ ସଙ୍ଗେ ସେହି ଦର୍ପଣଟି ତାକୁ ଫେରାଇ ଦେବାପାଇଁ ଭୂତ ଦାବିକଲା । ଫେରାଇ ନପାରିଲେ ପ୍ରତିବଦଳରେ ଆକାଶର ଚାନ୍ଦ ଦେଲେ ସେ ତାହାକୁ ଦର୍ପଣ କରି ବ୍ୟବହାର କରିବ ଏବଂ ରାଧାକୁ ଫେରାଇଦେଇ ଚାଲିଯିବ ବୋଲି ମଧ୍ୟ ପ୍ରତିଶ୍ରୁତି ଦେଲା ।

ମାତ୍ର ଗୋପାଳମାନେ ଶତଚନ୍ଦ୍ର ଦର୍ପଣ ବା ଆକାଶର ଚାନ୍ଦ ଆଣିବେ କେଉଁଠାରୁ ? ବିନୟ ହୋଇ ପୁଣି ପ୍ରାର୍ଥନା କରିବାକୁ ଲାଗିଲେ । ବାରମାସଯାକ ପୂଜାକରି ଭାରଭାର ନୈବେଦ୍ୟ ଦେବାପାଇଁ ପ୍ରସ୍ତାବ ଦେଲେ । ଭୂତ ଏହି ପ୍ରସ୍ତାବରେ ରାଜି ହେଲା । ଭୂତ କହିଲା- ମୃତ ସଞ୍ଜୀବନୀ ମନ୍ତ୍ର ଫୁଙ୍କି ମୃତ ରାଧିକାକୁ ଜୀଆଇଁବା ପାଇଁ ତିନିଦିନ ସମୟ ଲାଗିଯିବ । ତମେମାନେ ଭୋଗରାଗ ଆଣି ମଝି ଅଗଣାରେ ଠୁଳ କର । ଭୋଗ ନିକଟରେ କେହି ରହିବ ନାହିଁ । ତିନିଦିନ ପରେ ଆସି ରାଧିକାକୁ ନେଇଯିବ ।

ଭୂତର କଥା ଅନୁସାରେ ଗୋପାଳମାନେ ଲକ୍ଷ ଲକ୍ଷ ଭାର ଭୋଗଆଣି ମଝି ଅଗଣାରେ ଠୁଳ କଲେ । ଭୂତର ନିର୍ଦ୍ଦେଶରେ ଭୋଗ ରଖି ତିନିଦିନ ପରେ ଆସିବେ ବୋଲି ଗୋପାଳମାନେ ନିଜ ନିଜ ଘରକୁ ଫେରିଗଲେ ।

ରାଧା ଶ୍ରୀକୃଷ୍ଣଙ୍କୁ ପଚାରିଲେ- ଲକ୍ଷ ଲକ୍ଷ ମହଣ ଭାର ଖାଦ୍ୟକୁ ଖାଇବ କିଏ ? ନିଜେ ଖାଇଦେବେ ବୋଲି ଶ୍ରୀକୃଷ୍ଣ କହିବାରୁ ରାଧିକା ବିଶ୍ୱାସ କଲେ ନାହିଁ । ଶ୍ରୀକୃଷ୍ଣ ଆଁ କରି ନିଜ ପେଟ ଭିତରେ ରାଧିକାଙ୍କୁ ବିଶ୍ୱରୂପ ଦର୍ଶନ କରାଇଲେ ।

ବୃନ୍ଦାବନରେ ତିନିଦିନ ପର୍ଯ୍ୟନ୍ତ ଗୋପକେଳି କରିବାପାଇଁ ଶ୍ରୀକୃଷ୍ଣ ମନେ ମନେ ବିଚାର କଲେ । ଭୋଗମାନ ଧରି ବୃନ୍ଦାବନକୁ ନେଇଯିବା ପାଇଁ ଅଷ୍ଟଦେବତାଙ୍କୁ ନିର୍ଦ୍ଦେଶ ଦେଲେ । ମୁରଲୀରେ ଗୋପୀମାନଙ୍କର ନାମଧରି ଡାକିବାରୁ ସମସ୍ତ ଗୋପାଳୁଣୀ ବୃନ୍ଦାବନରେ ଆସି ଠୁଳ ହେଲେ । ଶ୍ରୀକୃଷ୍ଣ ଅନନ୍ତ ମୂରତି ଧାରଣ କରି ସମସ୍ତ ଗୋପୀଙ୍କ ସହ ତିନିରାତି ବିହାର କଲେ । ଭାବଭୋଳରେ ମାତି ରାଧା ଏ ମାୟା ଜାଣି ପାରିଲେ ନାହିଁ । ତିନିଦିନ ତିନିରାତିପରେ ଘରକୁ ବାହୁଡ଼ିଯିବାପାଇଁ ଶ୍ରୀକୃଷ୍ଣଙ୍କୁ ଶ୍ରୀରାଧା ଅନୁରୋଧ କରିବାରୁ ଶ୍ରୀକୃଷ୍ଣ ରାଧିକାକୁ ଛାଡ଼ି ନନ୍ଦ ମନ୍ଦିରକୁ ପ୍ରତ୍ୟାବର୍ତ୍ତନ କଲେ ।

**ନଟୁଚୋରୀ :** ଭାରତ ହରିବଂଶର ନଟୁଚୋରୀ ପ୍ରସଙ୍ଗକୁ ପରବର୍ତ୍ତୀ ସମୟରେ ଦୀନ ସୁନ୍ଦରୀ ନାମକ ଜଣେ କବି ଛୋଟ କାବ୍ୟାକାରରେ ଲିପିବଦ୍ଧ କରିଛନ୍ତି । କେବଳ ନଟୁଚୋରୀ ନୁହେଁ ଅନ୍ୟ କେତେକ କୌତୁକ କଥାକୁ ମଧ୍ୟ ନଟୁଚୋରୀ କାବ୍ୟରେ ଉଲ୍ଲେଖ କରାଯାଇଛି । କୁଚ କେଉଁଠାରୁ ସୃଷ୍ଟି ହେଲା ବୋଲି ଶ୍ରୀକୃଷ୍ଣଙ୍କର ପ୍ରଶ୍ନ ଓ ରାଧିକାଙ୍କର ଉତ୍ତରକୁ ଭାରତହରିବଂଶ ଓ ନଟୁଚୋରୀରେ କିପରି ବର୍ଣ୍ଣନା କରାଯାଇଛି ତାହା ଏଠାରେ ଲକ୍ଷଣୀୟ ।

ଶ୍ରୀକୃଷ୍ଣ ଥରେ ରାଧିକାପୁରକୁ ଯାଇ ସରଳବଣୀ ଭକ୍ଷିବା ସଙ୍ଗେ ସଙ୍ଗେ ରାଧିକାଙ୍କ ଦେହରୁ ବସନ କାଢ଼ି ଦେଇ ବେନି ହସ୍ତରେ କୁଚକୁ ମର୍ଦ୍ଦନ କରିବାକୁ ଲାଗିଲେ ।

ଉଠିଣ ରାହୀ ଦେହୁ କାଢ଼ିଲେ ବସନ
ବେନି ହସ୍ତେ କୁଚ ମର୍ଦ୍ଦନ୍ତି ଜନାର୍ଦ୍ଦନ
ବୋଇଲେ ମାଇଂ ଯେହା କାହୁଂ ତୁ ପାଇଲୁ
କେତେଦିନେ ବସି ଯେ ବେନିକି ନିର୍ମାଣିଲୁ
ସିବ ସକତି କି ଯେ ମର୍କତର ଲିଙ୍ଗ
କିମ୍ବା ଦେବତାଙ୍କର ଯେ ଅଟଇ ସୁଧାକୁମ୍ଭ ।
ଅମୃତ ପୁରୋଇଣ ନିଳମୁଦ ଦେଇ
କହ ମାଇଂ ମୋତେ କେ ତୋତେ ଯେହା ଦେଇ ।
(ଭାରତ ହରିବଂଶ : ପ୍ରସଙ୍ଗ : ଭୂତକେଳି)

ଶ୍ରୀକୃଷ୍ଣଙ୍କର କଥାଶୁଣି ରାଧିକା କହୁଛନ୍ତି-

ରାଧିକା ବୋଇଲେ ଶୁଣ ହେ ମାଧୋଇ
ସ୍ତିରିଙ୍କର ଅର୍ଜିଲା ଫଳ ଯେ ଅଟଇ
ଯେବଣ ବିଧାତା ଆମ୍ଭଙ୍କୁ କଲା ଜନ୍ମ
ଦୟାକରି ଦେଲା ସେ ଜାନୁ ଯଉବନ
ବାଳକାଳରେ ଯେ ଗୋପତେଂ ଥାଇ ରହି
ଯୁବା କାଳକୁ ଯେ ବଢ଼ିଣ ଶୋଭାପାଇ
(ଭାରତ ହରିବଂଶ : ପ୍ରସଙ୍ଗ: ଭୂତକେଳି)

ଅନୁରୂପ ଭାବରେ ନଟୁଚୋରୀ କାବ୍ୟରେ ମଧ୍ୟ ଶ୍ରୀକୃଷ୍ଣ ରାଧିକାଙ୍କୁ କୁଚ କେଉଁଠାରୁ ସୃଷ୍ଟିହେଲା ବୋଲି ପ୍ରଶ୍ନ ଉତ୍‌ଥାପନ କରିଛନ୍ତି ।

ଅତି ସ୍ନେହଭରେ ବାମ କୁଚପରେ ହାତଦେଲେ ପୀତବାସ
କହନ୍ତି ଅଚ୍ୟୁତ କହ ମାଇଁ ସତ ଏହା ନାମ ଗୋଟି କିସ ଲୋ
ଏହା ପାଇଲୁ କାହୁଁ
ତୋତେ ଦେଇଛନ୍ତି ଏହା କେହୁ ଲୋ ।
ଏମନ୍ତ ପଦାର୍ଥ ଲୁଚାଇ ରଖିଛୁ ବେଳୁ ନ କହିଲୁ ମୋତେ
କେଉଁ ଦୋଷ ମୁହିଁ ତୋଠାରେ କରିଛି ଦୟା ନାହିଁ ତୋର ଚିତ୍ତେଲୋ
ମାଇଁ କହିବୁ ସତ
କିପାଁ ମୋଠାରେ କଲୁ ଗୋପତ ଲୋ
(ନଟୁଚୋରୀ : ପଦ ୭ ଓ ୮)

ନଟୁଚୋରୀ ସମ୍ପର୍କରେ ଭାରତ ହରିବଂଶରେ ଅଛି ଯେ ଦିନେ କୁଞ୍ଜବନରେ ରାଧିକାଙ୍କୁ ଦେଖି ଶ୍ରୀକୃଷ୍ଣ ସୁରତି ବାଞ୍ଛା କଲେ । ରାଧିକା କୃଷ୍ଣଙ୍କର କଥା ନ ମାନିବାରୁ ଶ୍ରୀକୃଷ୍ଣ ତାଙ୍କର ପାଦତଳେ ପଡ଼ିଗଲେ । ଯେଣେ ଯଶୋଦା ପୁଅକୁ ଖୋଜି ଖୋଜି କୁଂଜବନରେ ଯାଇ ଦେଖିଲେ ଶ୍ରୀକୃଷ୍ଣ ରାଧାର ପାଦତଳେ ପଡ଼ିଅଛି ।

ଯଶୋଦା ବୋଇଲେ ଲୋ ରାଧିକା ତୁହି ଯେତେ ଭଳି
ତୋର ପାଦତଳେ ଲୋ ପଡ଼ିଛି ବନମାଳି
କିସ ନେଇଅଛୁ ମାଗିଲେ ନଦେଇ
କଅଁଳା ପୁଅକୁ ତୁ ଭଣ୍ଡାଉଣ ଥାଉ ।

ରାଧିକା କହିଲେ ଗୋ ନଣନ୍ଦ, ଶୁଣ । କହ୍ନାଇ କଦମ୍ବ ଗଛ ଉପରେ ଉଠିଥିଲା । ମୁଁ ତୁମକୁ କହିଦେବି ବୋଲି କହିବାରୁ ନ କହିବା

ପାଇଁ ମୋର ପାଦତଳେ ପଡ଼ିଛି । ଏକଥା ଶୁଣି ଯଶୋଦା ଶ୍ରୀକୃଷ୍ଣଙ୍କୁ ପିଟିବାକୁ ଗୋଡ଼ାଇଲେ । ଶ୍ରୀକୃଷ୍ଣ କହିଲେ, ଗୋ ମାତା, କିଛି କଥା ବୁଝି ନ ବିଚାରି ମୋତେ ମାରିବା ପାଇଁ ଗୋଡ଼ାଇଛ । ମୁଁ ନାଟ ଖେଳୁଥିଲି ଯେ ଦୂରକୁ ଗଡ଼ିଗଲା । ମାଇଁ ତାହାକୁ ସାଉଁଣ୍ଟି ନେଇ ଅଣ୍ଟାରେ ଲୁଚାଇ ଦେଇଛି । ମାଗିଲେ ମୋତେ ଦେଉନାହିଁ । ସେଇଥିପାଇଁ ମୁଁ ତାର ପାଦ ତଳେ ପଡ଼ିଥିଲି । ଶ୍ରୀକୃଷ୍ଣଙ୍କ କଥା ଶୁଣି ଯଶୋଦା ରାଧିକାକୁ ବହୁତ କରି ଗାଳିଦେଲେ । କହିଲେ, ଆଲୋ ରାଢ଼ୁଣୀ, ସେ ତୋର ଭଣଜା । ତୁ ତା ସଙ୍ଗରେ ହଟ ଲଗାଇଛୁ । ଯଶୋଦାଙ୍କର କଥା ଶୁଣି ରାଧିକା କୋପିତ ହୋଇ କହିଲେ, କିଏ ତା ନାଟ ଚୋରି କରିଛି ?

ଯେତେ ବୋଲି ଝାଡ଼ି ଦିଲାକ ଅଞ୍ଚଳ
ଶ୍ରୀକୃଷ୍ଣ ବୋଇଲେ ଗୋ ରଖିଅଛୁ ତୁ ଅଣ୍ଟିର
ଶୁଣିଣ ରାଧିକା ଯେ ତମ ତମ ହେଲା
ବସନ ଫିଙ୍ଗିଦେଇ ଝାଡ଼ିଣ ସେ ଦିଲା ।
ଅଣ୍ଟିରୁ ନାଟଗୋଟି ପଡ଼ିଲାକ ଝଡ଼ି
ଶ୍ରୀକୃଷ୍ଣ ବୋଇଲେ ଏଥେ ନାହିଁତ ଦଉଡ଼ି ।

ଶ୍ରୀକୃଷ୍ଣ କହିଲେ, ନାଟ ସିନା ମିଳିଲା । ହେଲେ ତାର ଦଉଡ଼ିତ ଏ ପର୍ଯ୍ୟନ୍ତ ମିଳିନାହିଁ । ମାଇଁ ଖୋଷାଭିତରେ ଦଉଡ଼ିକୁ ଲୁଚାଇ ରଖିଛି । ଦଉଡ଼ି ଦିଅ ବୋଲି ଶ୍ରୀକୃଷ୍ଣ ଅଳିକରିବାକୁ ଲାଗିଲେ । ସେଇଠୁ ରାଧିକା କହିଲେ-

ରାଧିକା ବୋଇଲେ ଯେତ ଅପୁର୍ବ କହଇ
ନାଟ ଦେଲି ପୁଣି ଯେତ ଦଉଡ଼ି ମାଗଇ
ଖୋଷା ଫିଟାଇଣ କୋପେଂ ଦେଲାକ ସେ ଝାଡ଼ି
ଶ୍ରୀକୃଷ୍ଣ ଅଗ୍ରତେ ପଡ଼ିଲା  ଲେଣ୍ଡି ଯେ ଦଉଡ଼ି
ଦେଖିଣ ଆଶ୍ଚିର୍ଯ୍ୟ ହୋଇଲେକ ରାହି
ବସନ ତଳେ ରଖି ଅଛଇ ଉଭା ସେହି
ଜାନୁ ଯଉବନ ଯୋନି ସହିତେ ଦିଶୁଅଛି
ନୟନ ପୁରାଇଣ ଦେଖନ୍ତି ଶ୍ରୀବଛି ।

(ଭାରତ ହରିବଂଶ : ପ୍ରସଙ୍ଗ : ଚିତ୍ରରେଖା ସହିତ ଶ୍ରୀକୃଷ୍ଣ ମିଳନ)

ନଟୁଚୋରୀ ଗ୍ରନ୍ଥରେ ସମାନ ଭାବରେ ବିଷୟବସ୍ତୁର ଅବତାରଣା କରାଯାଇଛି । କୁଂଜବନରେ ଶ୍ରୀକୃଷ୍ଣ ରାଧାଙ୍କୁ ଅଟକାଇ ରତିମାଗିଛନ୍ତି ଓ ରାଧିକା ରତିଦାନ କରିବାକୁ କୁଣ୍ଠା ପ୍ରକାଶ କରିଛନ୍ତି । ଶ୍ରୀକୃଷ୍ଣ ରାଧିକାଙ୍କର ଦୁଇପାଦ ଧରି ପଡ଼ି ରହିଛନ୍ତି । ଏପଟେ ଯଶୋଦା ଶ୍ରୀକୃଷ୍ଣଙ୍କୁ ଖୋଜି ଖୋଜି ଆସି ରାଧାର ପାଦତଳେ ତାଙ୍କୁ ଦେଖି ରାଧିକାଙ୍କୁ ଗାଳି ଦେଇଛନ୍ତି । ରାଧିକା କହିଲେ ଗୋ ନଣନ୍ଦେ, କହ୍ନାଇ କଦମ୍ବ ବୃକ୍ଷ ଉପରକୁ ଉଠିଥିଲେ । ଗଛରୁ ଖସି ପଡ଼ିଥିଲେ ଆଉ କ'ଣ ଜୀବନ ପାଇଥାଆନ୍ତେ । ଯଶୋଦା ଶ୍ରୀକୃଷ୍ଣଙ୍କୁ ବୁଝାଇ କହିଲେ, ତୋ ମାଇଁ ତ ଠିକ୍ କହିଛି । ଭଲ କଥା କହିଲେ ତୋତେ ସଲ ଲାଗୁଛି । ମାତାଙ୍କର କଥାଶୁଣି ଶ୍ରୀକୃଷ୍ଣ କ୍ରୋଧଭର ହୋଇ କହିଲେ, ଗୋ ମାତା, ମାଇଁ ତୋ ଆଗରେ ମିଛକଥା କହିଛନ୍ତି ।

ମୁହିଁତ ସ୍ୱଭାବେ ବାଳୁତ ଅଟଇ ନ ଜାଣଇ ଗଛ ଚଢ଼ି
ନଟୁ ଯୋଡ଼ି ମୋର ମାଇଁ ଲୁଚାଇଛି ତେଣୁ ମୁଁ ଚରଣେ ପଡ଼ି ଗୋ
ନଟୁ ଦିଅ ଗୋ ବୋଲି
ଗୋଡ଼ ତଳେ ପଡ଼ି ଗଡୁଥିଲି ଗୋ ।

ଯଶୋଦା କହିଲେ, ଆଲୋ ରାଧିକା, ତୁ କୋମଳମତି ବାଳକଟିକୁ ଭଣ୍ଡାଉଅଛୁ । ତା ନଟୁକୁ ଚୋରୀ କରିନେଇ ମିଛକଥା ଗୁଡ଼ାକ କହୁଛୁ । ଶ୍ରୀକୃଷ୍ଣ କହିଲେ, ଯଦି ମାଇଁ ନଟୁ ନେଇ ନାହିଁ ବୋଲି ମନା କରୁଛି ତେବେ ବସ୍ତ୍ର ଝାଡ଼ି ଦେଖାଉ, ସତ କି ମିଛ ଜଣାପଡ଼ିଯିବ ।

ଶ୍ରୀକୃଷ୍ଣଙ୍କର କଥାମାନି ଯଶୋଦା ମଧ୍ୟ ରାଧାଙ୍କୁ ବସନ ଫେଡ଼ିବାକୁ ଆଜ୍ଞା ଦେଲେ । କବି କହୁଛନ୍ତି-

ଯଶୋଦାର ବାଣୀ ଶ୍ରବଣରେ ଶୁଣି ରାଧିକା ଚକିତ ହେଲେ
ତକ୍ଷଣେ ବସନ ଫେଡ଼ିଣ ଦିଅନ୍ତେ ନଟୁ ଅବନୀ ପଡ଼ିଲେ ଲୋ
ରାଧା ହେଲେ ଚକିତ
ସେ ତ ଗଣ୍ଡରେ ମାଇଲେ ହାତ ଲୋ ।
ରାଧିକାର ସ୍ତନ ଯଉବନ ଦେଖି କହନ୍ତି ଦେବ ମୁରାରି
ନଟୁ ଯୋଡ଼ି ମୋର ସାକ୍ଷାତରେ ଦେଲ ଏବେ ଦିଅ ନଟୁ ଡୋରି ଗୋ
ଶୁଣି ରାଧା କହଇ
ନଟୁ ଡୋରି ନଜାଣଇ ମୁହିଁ ଗୋ ।

ଶ୍ରୀକୃଷ୍ଣ କହିଲେ, ନଟୁଡୋରି ତୋ ଗଭାରେ ବାନ୍ଧିଛୁ । ସମସ୍ତଙ୍କ ଆଗରେ ଖୋଲିକରି ଦେଖା । ରାଧିକା କବରୀ ଫିଟାଇ ଦେବାରୁ ସେଥିରୁ ନଟୁ ଦଉଡ଼ି ଖସି ମହୀରେ ପଡ଼ିଲା

**ଶ୍ରୀକୃଷ୍ଣଙ୍କ ଘାଟସଧା :** ଦିନେ ଶ୍ରୀକୃଷ୍ଣ ନନ୍ଦଙ୍କୁ କହିଲେ, ତାତ ଆମେ ଏବେ ଯମୁନା ଘାଟରେ ଘାଟିଆ ପଣ କରିବା । କଂସ ଆମକୁ ରାଜ୍ୟ ସମର୍ପିଛନ୍ତି । ଘାଟ କଉଡ଼ି ନ ଆଣିଲେ ଆମେ ତାଙ୍କୁ ସୁନିଆଁ କିପରି ଦେବା । ନନ୍ଦ କହିଲେ ମୁଁ ତ ଅତ୍ୟନ୍ତ ବିଷୟୀ, ଘାଟ ଜଗିବାକୁ ମୋତେ ବେଳ କାହିଁ ? ଶ୍ରୀହରି ନିଜେ ଘାଟ ଜଗିବାକୁ ପ୍ରସ୍ତାବ ଦେବାରୁ ନନ୍ଦ ସେଥିରେ ରାଜି ହୋଇଗଲେ ।

ଶ୍ରୀକୃଷ୍ଣ ଯମୁନା ନଦୀରେ ଘାଟିଆ ହୋଇ ରହିଲେ । ଗୋପୀମାନେ ଦଧି ବିକିବାକୁ ମଥୁରାକୁ ଯିବାବେଳକୁ ସେମାନଙ୍କୁ ଅଟକାଇ ଘାଟର କଉଡ଼ି ମାଗିଲେ । ରାଧିକା କହିଲେ, ଯଦି ଆମକୁ ବାଟ ନ ଛାଡ଼ିବୁ ତେବେ ଲେଉଟିଯିବୁ ପଛେ ଘାଟ କଉଡ଼ି ଦେବୁ ନାହିଁ । ଶ୍ରୀକୃଷ୍ଣ ପୁଣି ବାଟ ଓଗାଳିବାରୁ ଗୋପୀମାନେ ଗୋଟିଏ ଜାଗାରେ ବସି ପଡ଼ିଲେ । ଶ୍ରୀକୃଷ୍ଣ ଚନ୍ଦ୍ରାବଳୀ ପାଖରେ ବସିପଡ଼ି କହିଲେ, ଗୋ ରାହୀ ! ତୋର ଦଧିହାଣ୍ଡି ମୁଟୁଳା ଓ କୁଣ୍ଡୋଇକି ମିଶାଇଲେ ମୋର ଦାନ ବିଶାଶତେ ମାଢ଼ । ଅଷ୍ଟରତ୍ନ ପୁଷ୍ପରେ ଶିରରେ ତୁ ଯେଉଁ ଖୋଷା ଖୋଷିଛୁ ସେଥିକୁ ମୋର ଧନ ହୋଇଲା ସହସ୍ର ମାଢ଼ । ତୋ ଗଳାରେ ଯେଉଁ ମୁକୁତାର ହାର ଲମ୍ବିଛି ସେଥିକୁ ଶତେ ମାଢ଼ ସୁବର୍ଣ୍ଣ ଦେବୁ । ତୋର ନାସାରେ ଜଡ଼ାଭର ବସଣି ଥିବାରୁ ସେଥିକୁ ଶତେମାଢ଼ ସୁବର୍ଣ୍ଣ ଗଣିଦେବୁ । ମର୍କତର ଲିଙ୍ଗପରି ତୋର ଦୁଇଗୋଟି କୁଚକୁ ଅମୃତ ଦେଇ ନୀଳମୁଦରେ ରଖିଅଛୁ । ସେଥିକୁ ଦାନ ମୋର ସତଷଠୀ ହେଲା । ଅଙ୍ଗୁଷ୍ଠିରେ ଜଡାଉର ମୁଦ୍ରିକା, ନୀଳଶାଢ଼ୀ, ପତନି, ଉପରାଣ ଇତ୍ୟାଦିକୁ ଧନହେଲା ସତଷଠୀ । ଓଲଟ କଦଳୀ ପ୍ରାୟ ତୋର ଜାନୁ, ଅଙ୍ଗରେ କୁଙ୍କୁମରେ ଲେଖାହୋଇଥିବା ପତ୍ରାବଳୀ, ହସ୍ତରେ ସୁବର୍ଣ୍ଣର ବାହି ଯାହା ସୂର୍ଯ୍ୟର ତେଜପ୍ରାୟ ଝଟକି ଦିଶୁଛି, ଯେଥକୁ ଦାନ ମୋର ବାଉନ ଲକ୍ଷ ମାଢ଼ ଧନ । ଶ୍ରୀକୃଷ୍ଣଙ୍କର କଥାଶୁଣି ରାଧିକା କହୁଛନ୍ତି-

କେବଣ ନାରୀ ଯେହାକୁ ଦେଇଥିଲା ଜନ୍ମ
ଯେଡ଼େ ଅଲାଜୁକ ଯେ ଦେହକୁ ମାଗେ ଦାନ

ରାଧିକା କହିଲେ, ଆମେତ ପଣନ୍ତରେ ଧନବାନ୍ଧି ଆଣିନାହୁଁ । କାଲି ଆସିଲେ ତୋର କଉଡ଼ି ଆମେ ଗଣିଦେବୁ ।

ଶ୍ରୀକୃଷ୍ଣ ବୋଇଲେ ଯେବେ ତୁମ୍ଭର ନାହିଁ ଧନ
ଇଚ୍ଛାମୋର ହୋଇଅଛି ଦିଅ ରତିଦାନ ।

ଶ୍ରୀକୃଷ୍ଣ ଗୋପୀମାନଙ୍କ ସହିତ ରତିକ୍ରୀଡ଼ା କରିଛନ୍ତି । ଗୋପୀମାନଙ୍କର ହାଣ୍ଡି କୁଣ୍ଡୋଇ ସବୁ ସୁବର୍ଣ୍ଣରେ ପରିଣତ ହୋଇଛି ।

ଭାରତ ହରିବଂଶରେ ଏହି ଅଖ୍ୟାନଟି ପରବର୍ତ୍ତୀ କବିମାନଙ୍କୁ ପ୍ରଭାବିତ କରିଥିଲେ ମଧ୍ୟ ସ୍ୱତନ୍ତ୍ର ଭାବରେ ଏଥିପାଇଁ କୌଣସି କାବ୍ୟ ରଚନା କରଯାଇ ନାହିଁ । ଅଚ୍ୟୁତାନନ୍ଦ ଦାସଙ୍କ ହରିବଂଶରେ ଭାରତ ହରିବଂଶ ପରି ସମାନ କଥା ରହିଥିବାର ଦୃଷ୍ଟି ଗୋଚର ହୁଏ । ହରିବଂଶ ଅନୁସାରେ ଗୋପୀମାନେ ମଥୁରା ହାଟକୁ ଦଧିବିକ୍ରୀ କରିବାପାଇଁ ଯାଉଥିବାବେଳେ ଶ୍ରୀକୃଷ୍ଣ ତାଙ୍କୁ ବାଟ ଓଗାଳି ଘାଟର କଉଡ଼ି ମାଗିଛନ୍ତି । ଭାରତ ହରିବଂଶ ପରି ଅଚ୍ୟୁତାନନ୍ଦଙ୍କ ହରିବଂଶରେ ମଧ୍ୟ ଦେହର ସମସ୍ତ ଅଳଙ୍କାର ପାଇଁ ସ୍ୱତନ୍ତ୍ର କଉଡ଼ି ଦେବାକୁ ପ୍ରସ୍ତାବ ଦିଆଯାଇଛି ।

ଗୋବିନ୍ଦ ବୋଇଲେ ଆଗୋ ଶୁଣ ଗୋପାଙ୍ଗନା
ତୁମ୍ଭର ପାଦ ନୂପୁର ସସ୍ରେ ମାଢ଼ ସିନା
ବିଦ ମୁଦି କଙ୍କଣ ଯେ ନାସାମଣି ଝଟ
ଏସବୁ ଲେଖନ୍ତି ହେବ ବେନିମାଢ଼ ଘାଟ
ନାସା ନାକଚଣା ଆଉ କଣ୍ଠ ମୁକ୍ତାମାଳି
ଏଥକୁ ଲେଖିଲେ ଯଦି ମାଢ଼େକ ଉଗୁଳି
କର୍ଣ୍ଣେ କର୍ଣ୍ଣପତ୍ର ଆଉ ମୁକୁତା ତଡ଼କୀ
ଏଥକୁ ଘାଟ ଯେ ପୁଣି ସସ୍ରମାଢ଼ ଲେଖି
କଟିତଟରେ ଯେ ଶୋଭାପାଏ ରତ୍ନହାର
ଏଥକୁ ଲେଖିଲେ ହେବ ଘାଟ ଯେ ଅପାର
ନେତ ପଡନି ସିନ୍ଧୁଆ ପିନ୍ଧିଅଛ ଭିଡ଼ି
ଶତେ ମାଢ଼ ସୁନା ଏକା ଏହୁ ପାଟଶାଢ଼ୀ
ନୟନରେ ତୁମ୍ଭର ଯା ବିରାଜେ କଜ୍ଜ୍ୱଳି
ଏଥକୁ ଲେଖିଲେ ତିନିମାଢ଼ ଯେ ଉଗୁଳି
ସୁକୁମାରୀ ସୁଲକ୍ଷଣୀ ଅଟ ନବଯୁବା
ତ୍ରୈଲୋକ୍ୟ ମୋହନୀରୂପ ଅତିଶୟ ଶୋଭା
ମୁଖରେ ତାମ୍ବୁଳ ପୁଣି ଚରଣେ ଅଳତା
ଅଣ୍ଡିର କୋକିଳ ପ୍ରାୟ ସୁଲଳିତ କଥା
ସମ୍ପୂର୍ଣ୍ଣ ଚନ୍ଦ୍ରବଦନ ଦିଶେ ଝଟଝଟ
ଏଥେ ଲେଖିଲେ ଅପାର ହୋଇବ ତ ଘାଟ ।

ଗୋପୀମାନେ କହ୍ନେଇର କଥାକୁ ହସରେ ଉଡ଼ାଇଦେଲେ । ମାତ୍ର କହ୍ନେଇ ଗୋପୀମାନଙ୍କଠାରୁ କଉଡ଼ି ନନେଇ ଘାଟ ଛାଡ଼ିଲେ ନାହିଁ । ଶ୍ରୀକୃଷ୍ଣ କହିଲେ, ଯଦି ତୁମେ କଉଡ଼ି ଦେଇ ନପାରିବ, ତେବେ ମୁଁ ଗୋଟିଏ କଥା ମାଗିବି ଦେଇ ପାରିବକି ? ଗୋପୀମାନେ ଦେବି ବୋଲି ତ୍ରିବାର ସତ୍ୟ କଲେ । ଏହାଶୁଣି ଶ୍ରୀକୃଷ୍ଣ କହିଲେ-

ଗୋପୀଙ୍କର ନିଷ୍ଠାବାକ୍ୟ ଶୁଣି ଭଗବାନ
ବୋଇଲେ ପ୍ରୀତି ଦାନରେ ମୋର ପ୍ରୟୋଜନ
ସର୍ବଦା ରହିବ ତୁମ୍ଭ ଆମ୍ଭର ପୀରତି
କଉଡ଼ିରେ କାର୍ଯ୍ୟନାହିଁ ମୋର ରୂପବତୀ

(ଅଚ୍ୟୁତାନନ୍ଦଙ୍କ ସପ୍ତଖଣ୍ଡ ହରିବଂଶ, ତୃତୀୟ ଖଣ୍ଡ, ଅଧ୍ୟାୟ : ବତ୍ସାସୁରର ପୂର୍ବଜନ୍ମ ବୃତ୍ତାନ୍ତ ଏବଂ ଶ୍ରୀକୃଷ୍ଣଙ୍କର ଘାଟସଧା)

ଭାରତ ହରିବଂଶ ପରି ଏଠାରେ ମଧ୍ୟ ଗୋପୀମାନେ ପ୍ରଥମେ ରତିଦାନ କରିବାକୁ ରାଜି ହୋଇନାହାନ୍ତି । ମାତ୍ର ଶ୍ରୀକୃଷ୍ଣଙ୍କର ମିଠା କଥାରେ ସମ୍ମୋହିତ ହୋଇ ସମ୍ମତି ପ୍ରଦାନ କରିଛନ୍ତି । ଏକା ଶ୍ରୀକୃଷ୍ଣ ଷୋଳ ସହସ୍ର ରୂପ ଧାରଣ କରି ଷୋଳ ସହସ୍ର ଗୋପନାରୀଙ୍କ ସହିତ ମିଳିତ ହୋଇଛନ୍ତି ।

ଅଚ୍ୟୁତାନନ୍ଦଙ୍କ ଏହି ଘାଟସଧା ସହିତ ଭାରତ ହରିବଂଶର ଘାଟସଧାର ବହୁ ସାମଞ୍ଜସ୍ୟ ରହିଛି । ଅଚ୍ୟୁତାନନ୍ଦ ଭାରତ ହରିବଂଶଦ୍ୱାରା ପ୍ରଭାବିତ ହୋଇଥିବାର ସ୍ପଷ୍ଟ ସୂଚନା ଏଥିରୁ ମିଳିଥାଏ ।

ଦୀନକୃଷ୍ଣ ଦାସଙ୍କର ନାବକେଳି ନାମରେ ଏକ ଗ୍ରନ୍ଥ ରହିଥିଲେ ମଧ୍ୟ ସେଥିରେ ଘାଟସଧା ବିଷୟ ଉଲ୍ଲିଖିତ ହୋଇନାହିଁ । ବରଂ ଶ୍ରୀକୃଷ୍ଣ ବୃଦ୍ଧ କୈବର୍ତ୍ତବେଶ ଧାରଣ କରି ରାଧା ଇତ୍ୟାଦି ଗୋପୀମାନଙ୍କୁ ଘାଟ ପାରିକରିଦେଇ ନାହାନ୍ତି । ସବୁ ଗୋପୀଙ୍କୁ କୂଳରେ ଛାଡ଼ି

କେବଳ ରାଧାଙ୍କୁ ନାବରେ ବସାଇ ମଝିନଈରେ ତାଙ୍କ ସହ ଶୃଙ୍ଗାର କରିବା ନାବକେଳି ଗ୍ରନ୍ଥର ବିଷୟବସ୍ତୁ ।

ଶ୍ରୀକୃଷ୍ଣଙ୍କ ଘାଟସଧା ନାମରେ ଆଉ ଖଣ୍ଡିଏ ବହିମଧ୍ୟ ବଜାରରେ ଦେଖିବାକୁ ମିଳୁଛି । ସେହି ବହିଟି ଫକୀରଙ୍କ ନାମରେ ଭଣିତା ରହିଛି । ଫକୀର ମୋହନ ସେନାପତି ଲେଖକ ଜୀବନର ଆଦ୍ୟାବସ୍ଥାରେ ଗ୍ରାମର କୃଷ୍ଣଲୀଳା ପାଇଁ କବିତାମାନ ଲେଖି ଦେଉଥିବାର ଆତ୍ମଜୀବନ ଚରିତରେ ଉଲ୍ଲେଖ କରିଛନ୍ତି । ଘାଟସଧାଟି କୃଷ୍ଣଲୀଳାର ଅନ୍ତର୍ଭୁକ୍ତ ହୋଇଥିବା ଯୋଗୁଁ ଏହି ଗ୍ରନ୍ଥଟିକୁ ଫକୀର ମୋହନ ସେନାପତି ରଚନା କରିଥିବାର ଅଧିକ ସମ୍ଭାବନା ରହିଛି ।

ସେ ଯାହାହେଉ ଗ୍ରନ୍ଥଟିର ନାମ ଘାଟସଧା ହେଲେ ମଧ୍ୟ ଘାଟସଧା ସମ୍ପର୍କରେ ଅଧିକ ପଦ ଏଥିରେ ଦିଆଯାଇନାହିଁ । ବରଂ ନାବକେଳିକୁ ଗ୍ରନ୍ଥର ବିଷୟବସ୍ତୁ କରିଦିଆଯାଇଛି । ମଝିରେ କିଛି ପଦରେ ତରାଇବେଶ ଧାରଣ କରିଥିବା ଶ୍ରୀକୃଷ୍ଣ ଘାଟ ମାଗିବା କଥା ଉଲ୍ଲେଖ କରାଯାଇଛି । ଏହି ଗ୍ରନ୍ଥରେ ବୃଦ୍ଧ ତରାଇ କହୁଛନ୍ତି–

ଆଗୋ ଗୋପୀଗଣ କହିଲେ ନମାନ
ଘାଟ ହେଲା ନୂଆ ଜାରି
ନିତି ମାହାଳିଆ ଚାଲିଯାଅ ବୋଲି
ଆଜି କି ଯିବ ସେପରି ଗୋ
ଶୁଣ ନବନାଗରି
କଥା ମାନିଲେ କରିବି ପାରି ଗୋ ।
ସମସ୍ତଙ୍କ ଅଙ୍ଗୁ ଅଳଙ୍କାର ମାନ
ଯାଅ ଏବେ ବନ୍ଧା ଦେଇ
ନତୁବା ତୁମ୍ଭ ମଧ୍ୟରୁ ଜଣେ ନାରୀ
ମୋ ପାଶରେ ଥାଉ ରହିଗୋ
ତୁମ୍ଭ ଫେରନ୍ତା ବେଳେ
ପଣିଦେଲେ ଛାଡ଼ିଦେବେ ହେଳେ ଗୋ ।

ଏହି ଘାଟସଧା ପରି ଗାଥା କୃଷ୍ଣଲୀଳାରେ ବା କୃଷ୍ଣରସାତ୍ମକ ଦଧି ଇତ୍ୟାଦିରେ ଘାଟସଧା ବିଷୟକୁ ଗାନ କରାଯାଇଥାଏ । ଏହା ଏବେ ଲୋକ ସାହିତ୍ୟର ଅନ୍ତର୍ଭୁକ୍ତ ହୋଇଯାଇଛି ।

## ।। ଆଠ ।।

**ଭାରତ ହରିବଂଶର ଚରିତ୍ର ଚିତ୍ରଣ :** ପୂର୍ବରୁ ସୂଚିତ କରାଯାଇଛି ଯେ ଭାରତ ହରିବଂଶର ପ୍ରଥମାର୍ଦ୍ଧଟି ଭାଗବତ ବିଷୟକ ଓ ଦ୍ୱିତୀୟାର୍ଦ୍ଧ ଭାରତ ବିଷୟକ । ଭାଗବତ ବିଷୟକ ଭାରତ ହରିବଂଶର ପ୍ରଥମାର୍ଦ୍ଧଟି ରଚନା କରିବା ବେଳେ ସାରଳା ଦାସ ଚରିତ୍ରଗୁଡ଼ିକୁ ନିଜ ମନମୁତାବକ କରି ତୋଳିବାପାଇଁ ସୁଯୋଗ ପାଇନାହାନ୍ତି । ଭାଗବତ ବିଷୟକ ଭାରତ ହରିବଂଶର ପ୍ରଥମାର୍ଦ୍ଧର ଚରିତ୍ରମାନ ପୂର୍ବନିର୍ଦ୍ଧାରିତ । ସେମାନେ ଖୁବ୍ କମ୍ ସମୟପାଇଁ ଦେଖାଦେଇ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । କେବଳ ଶ୍ରୀକୃଷ୍ଣ ଚରିତ୍ରଟି ତାର ଜନ୍ମକାଳରୁ ଯୁବକ କାଳ ପର୍ଯ୍ୟନ୍ତ ଏହି ଅଂଶରେ ଗୁରୁତ୍ୱ ବହନ କରିଛି । ଏହି ଶ୍ରୀକୃଷ୍ଣ ଚରିତ୍ର ପ୍ରଦର୍ଶନ କାଳରେ ମଧ୍ୟ ସାରଳା ଦାସ ଅଧିକ କିଛି ରଚନା କରିପାରିନାହାନ୍ତି । ଶ୍ରୀକୃଷ୍ଣଙ୍କର ବାଲ୍ୟକାଳରେ ସେ ତାଙ୍କର ଅଝଟପଣ ଦେଖାଇଥିବା ବେଳେ ରାଧା ଓ ଗୋପୀମାନଙ୍କ ସହିତ ତାଙ୍କର ପ୍ରେମ କାହାଣୀକୁ ଅତି ସୁନ୍ଦର ଭାବରେ ପ୍ରଦର୍ଶନ କରିଛନ୍ତି । ପ୍ରେମରେ ନିମଗ୍ନ ରହିବା ଓ  ରାକ୍ଷସମାନଙ୍କୁ ହତ୍ୟା କରିବାପରେ ଶ୍ରୀକୃଷ୍ଣଙ୍କର ଚରିତ୍ର ସୀମାବଦ୍ଧ ହୋଇ ରହିଛି । ନନ୍ଦ, ଯଶୋଦା, ବସୁଦେବ, ଦେବକୀ, କିମ୍ବା ଉଗ୍ରସେନର ଚରିତ୍ରମାନ ମଧ୍ୟ ଅତି ସଂକ୍ଷିପ୍ତ ଭାବରେ ପ୍ରଦର୍ଶିତ ହୋଇଛି, ଯେଉଁ ଚରିତ୍ରକୁ କବି ନିଜ ଇଚ୍ଛା ଅନୁସାରେ ପରିବର୍ତ୍ତିତ କରିପାରିନାହାନ୍ତି । କଂସ ଚରିତ୍ରଟି ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଥିଲେ ମଧ୍ୟ ଚରିତ୍ରଟିକୁ କେବଳ ଯୁଦ୍ଧର ଡାକରା ଦେଇ ମୃତ୍ୟୁବରଣ କରିବା ମଧ୍ୟରେ ସୀମାବଦ୍ଧ କରି ରଖାଯାଇଛି ।

କଂସର ଆଜ୍ଞାରେ ଯେଉଁମାନେ ଶ୍ରୀକୃଷ୍ଣଙ୍କୁ ଗୋପପୁରରେ ବଧ କରିବାକୁ ଆସିଛନ୍ତି, ଗ୍ରନ୍ଥଟି ପଢୁ ପଢୁ ସେମାନଙ୍କୁ ଖଳପୁରୁଷ ଭାବରେ ଚିତ୍ରଣ କରାଯାଇପାରିବ । ସେହି ଦୁଷ୍ଟରାକ୍ଷସମାନଙ୍କର ମୃତ୍ୟୁ ହେବା ସଙ୍ଗେ ସଙ୍ଗେ ସାରଳା ଦାସ ତାଙ୍କୁ ଆଉ ଏକ ଭିନ୍ନ ରୂପରେ ଚିତ୍ରଣ କରିଛନ୍ତି । ସେମାନେ ସମସ୍ତେ କୌଣସି ଦେବଅଂଶଜାତ ବ୍ୟକ୍ତି, ଯିଏ କୌଣସି କାରଣରୁ ଅଭିଶାପଗ୍ରସ୍ତ ହୋଇ ରାକ୍ଷସ ଶରୀର ଧାରଣ କରିଥିଲେ । ପୂତନା, ଶକଟାସୁର, ଅଘାସୁର, ଯାମଳାର୍ଜ୍ଜୁନ, କେଶୀ, ଧେନୁକାସୁର, ଅଜଗର, ଷଣ୍ଢାସୁର କିମ୍ବା ଚାଣୁର ଓ ମୁଷ୍ଟିକ ହୋଇଥାଆନ୍ତୁ, ଶ୍ରୀକୃଷ୍ଣଙ୍କ ସହିତ ଯୁଦ୍ଧ କରି ମରିବା ପରେ ତାଙ୍କର ପୂର୍ବଜନ୍ମର କଥା ଶୁଣି ନିଶ୍ଚିତ ଭାବରେ ତାଙ୍କପ୍ରତି ସମବେଦନା ଜାତ ହୋଇଥାଏ । ଏପରିକି କଂସର ମଧ୍ୟ ପୂର୍ବଜନ୍ମର କଥା ବର୍ଣ୍ଣନା କରି ପାଠକଙ୍କଠାରୁ ସମବେଦନା ପ୍ରାପ୍ତ ହେବାକୁ କାବ୍ୟରେ ଚେଷ୍ଟା କରାଯାଇଛି ।

ଭାରତ ବିଷୟକ ଅଂଶରେ ବିଭିନ୍ନ ଚରିତ୍ର ଗୁଡ଼ିକୁ ବିସ୍ତୃତ ଭାବରେ ପରିବେଷଣ କରାଯାଇଛି, ଯାହା ପାଠକଲେ କବି ଯେ ସେହି ଚରିତ୍ରଗୁଡ଼ିକୁ ନିଜର ଇଚ୍ଛା ଅନୁସାରେ ପରିବେଷଣ କରିଛନ୍ତି ତାହା ଜଣା ପଡ଼ିଯାଉଛି । ଭାରତ ବିଷୟକ ଅଂଶର ଅଳ୍ପ କେତୋଟି ଚରିତ୍ରକୁ ଏଠାରେ ଚିତ୍ରଣ କରାଯାଉଛି ।

**ଭୀମ :** ଭୀମ ସାରଳା ମହାଭାରତ ପରି ଭାରତ ହରିବଂଶର ମଧ୍ୟ ନାୟକ । ସେ ହୁଣ୍ଡା ପ୍ରକୃତିର, ଯାହା ବୁଝିଥାଏ ସେଇୟା । କାହାରିକୁ ମନଦେଇ ଭଲପାଇବା ତା ଜାତକରେ ନାହିଁ । ସେ ଦାୟରେ ପଡ଼ି କେବଳ ଯୁଧିଷ୍ଠିରଙ୍କୁ ସମ୍ମାନ କରେ । ଯଦି ମନ ନମାନିଛି ଅନ୍ୟମାନଙ୍କୁ ସେ ତୁଚ୍ଛ ବୋଲି ମନେ କରିଥାଏ । ତାକୁ ବୁଝାଇଦେଲେ ସେ ବୁଝିଯାଏ । ଶହେ ଲୋକଙ୍କଦ୍ୱାରା ହୋଇପାରୁନଥିବା କାମକୁ ସେ ଏକୁଟିଆ କରିଦିଏ । ନହେଲେ ସବୁ ଭାଙ୍ଗିରୁଜି ଏକାକାର କରିଦିଏ । ନିଜ ଜୀବନକୁ ତାର ଭୟ ନଥାଏ । ସେ କାହାରିଠାରେ ନତମସ୍ତକ ହୁଏନାହିଁ ।

ଜନ୍ମକାଳରୁ ଭୀମ ବଡ଼ ପ୍ରତାପୀ । ସତେସିଙ୍ଘ ଗିରି ଉପରେ ସେ ଜନ୍ମ ହୋଇଥିଲେ । ତାଙ୍କର ଜନ୍ମକାଳରେ ବ୍ୟାଘ୍ରଟିଏ ଦେଖି କୁନ୍ତୀ ଲୁଚିବାପାଇଁ ଲତା ଆଢୁଆଳକୁ ଚାଲିଯାଇଥିଲେ । କ୍ଷୀର ନପାଇ ଭୀମ ଗୋଡ଼ ପିଟି କାନ୍ଦିବାରୁ ତାର ପାଦର ଆଘାତରେ ଗିରିର ଗୋଟିଏ ଶୃଙ୍ଗ ଝଡ଼ିଗଲା । ତେଣୁ ପ୍ରଥମ ସମରରେ ସେ ହାରିବା ପାଇଁ ଗିରି ତାକୁ ଶାପ୍ୟଦାନ କରିଥିଲେ ।

ଭୀମ ଦୁର୍ଯ୍ୟୋଧନଙ୍କୁ ଗୋଲକପୁତ୍ର କହିବା କ୍ଷଣଠାରୁ ହିଁ ଭାରତ ଯୁଦ୍ଧର ଭିତ୍ତିପ୍ରସ୍ତର ସ୍ଥାପିତ ହୋଇଥିଲା । ସଭାମଧ୍ୟରେ ପ୍ରତ୍ୟହ ଦୁର୍ଯ୍ୟୋଧନ ଭୀମକୁ ବସରେ ପବନପୁତ୍ର ବୋଲି କହି ବ୍ୟଙ୍ଗ କରୁଥିଲା । ଏହାକୁ ସହ୍ୟ କରିବାର ସୀମା ପାର ହୋଇଯିବାରୁ ଭୀମ ଶ୍ରୀକୃଷ୍ଣଙ୍କର ସହାୟତା ଲୋଡ଼ିଥିଲେ । ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଙ୍କୁ ଗୋଲକପୁତ୍ର ବୋଲି ପ୍ରତ୍ୟୁତ୍ତର ଦେବାକୁ ଶିଖାଇ ଦେଇଥିଲେ । ସାରଳା ଲେଖିଛନ୍ତି–

ବସ ପବନପୁତ୍ର ବୋଲି ବୋଇଲା କୁରୁସାଇଂ
ଭୀମ ବୋଇଲା ହୋ ବସୁଛି ଗୋଲେକ ତନଇ ।

ଦୁର୍ଯ୍ୟୋଧନ ଏହି ଅପମାନକୁ ସହି ପାରିଲା ନହିଁ । ଅଜା ଗାନ୍ଧାରସେନ ସହିତ ତାର ସବଂଶକୁ ପଥରଗୃହରେ ବନ୍ଦିକରି ରଖିଲା । ସେହିଠାରୁ ହିଁ କୁରୁବଂଶକୁ ଧ୍ୱଂସ କରିବାପାଇଁ ଶକୁନି ପ୍ରତିଜ୍ଞା କରିଥିଲେ ଓ ଶେଷ ପର୍ଯ୍ୟନ୍ତ ତାହା କରି ଦେଖାଇ ଦେଇଥିଲେ ।

ପାଣ୍ଡବାସୁର ବଧକାଳରେ ଆମେ ଭୀମର ପିଲାଳିଆମିକୁ ଲକ୍ଷ୍ୟକରିପାରିବା । ପାଣ୍ଡବାସୁର ନାମକ ଦୈତ୍ୟ ଆସି କୌରବମାନଙ୍କୁ ଉଠାଇ ନେଇଯାଇଥିଲା । ଯୁଧିଷ୍ଠିର କୌରବମାନଙ୍କୁ ପାଣ୍ଡବାସୁର କବଳରୁ ରକ୍ଷା କରିବାପାଇଁ ଭୀମକୁ ପରାମର୍ଶ ଦେଲେ । କୌରବମାନଙ୍କ ପ୍ରତି ବୀତସ୍ପୃହ ଭୀମ କହିଲା–

ବିକୋଦର ବୋଇଲା ଦେବ ମରନ୍ତୁ କଉରୋବେ
ବିଷଲଡୁ ଦେଇ ମୋତେ ଜଳରେ ମେଲି ଦେଲେ ।

ତା ସତ୍ତ୍ୱେ ବି କୌରବମାନଙ୍କୁ ରକ୍ଷା କରିବାକୁ ଯୁଧିଷ୍ଠିର ଭୀମକୁ କହିବାରୁ ଭୀମ ପାଣ୍ଡବାସୁର ନିକଟକୁ ଯାଇଥିଲା । ସେତେବେଳକୁ ପାଣ୍ଡବାସୁର କୌରବମାନଙ୍କୁ ଗର୍ଭରେ ପୂରାଇ ସାରିଥିଲା । ଭୀମ ଦାନବର ଗଳା ଚାପିଧରିବାରୁ ଦୈତ୍ୟର ପ୍ରାଣ ଚାଲିଗଲା । ତାର ଗର୍ଭରୁ ଖୋଜି ଭୀମ ଅଠାନବେ ଜଣ କୌରବଙ୍କୁ ବାହାରକୁ ବାହାରକଲା ଓ ବାହାରକୁ ବାହାର କରିବାବେଳେ ସମସ୍ତଙ୍କୁ ବିଧାଏ ବିଧାଏ ବସାଇଲା ।

ଦୁର୍ଯ୍ୟୋଧନ ବୋଇଲା କିପାଇଂ ମାରୁ ତୁହି
ଦଇତ ମାଡ଼ଠାରୁ ତୋ ମାଡ଼ ବଳଇ
କିପାଇଂ ରଖିଲୁ ଖାଆନ୍ତା ପଛେ ଦତ୍ୟ
ତୋହର ବିଧା ତ ବାବୁ ସୁଭୁଛି ବଜ୍ରଘାତ

ଭୀମ ଦୁର୍ଯ୍ୟୋଧନଙ୍କୁ ପ୍ରତ୍ୟୁତ୍ତର ଦେଇ କହିଲା-

କେତେ ଅଇଲ କେତେ ଗର୍ଭରେ ଅଛଇ
ତେଣୁ ବିଧା ମାରିଣ ତୁମ୍ଭଙ୍କୁ ଗଣୁଛଇ ।

ଦୁର୍ଯ୍ୟୋଧନ କହିଲା-

ସମସ୍ତେ ଅଛୁଂ ବୋଲି ବୋଇଲା ଦୁର୍ଯ୍ୟୋଧନ
ଊଣା ପଛେ ହେଉ ବିଧା ମାରିତୁ ନଗଣ ।

ଭୀମ କହିଲା-

ଭିମ ବୋଇଲାରେ ଗଣତୁ ଯେଠାରେ
ଊଣା ହେଲେ ମୋତେ ଯୁଧେଷ୍ଠି ଗାଳିଦେବେ ।

ଗାଆଁ ଗହଳରେ ଖେଳିଲା ବେଳେ ବାଳକ ବାଳିକାମାନେ ଏହିପରି ବିଧାମାରି ଅନ୍ୟମାନଙ୍କୁ ଗଣିଥାଆନ୍ତି । ସାରଳା ଦାସ ସେହି ଦୃଶ୍ୟକୁ ଭୀମ ଚରିତ୍ରରେ ପ୍ରଦର୍ଶନ କରିଛନ୍ତି ।

ଜତୁଗୃହରୁ ପଳାୟନ କଲାବେଳେ ନଦୀରେ କୈବର୍ତ୍ତ ନାବ ବାହି ପାଣ୍ଡବମାନଙ୍କୁ ପାର କରାଉଥିଲା । ନଦୀ ମଝିରେ କୈବର୍ତ୍ତ କହିଲା- ଏଠାରେ କିମ୍ବିରୀ ବାରବର୍ଷ ହେଲା ଜଗି ରହିଛି । ତାକୁ ଜଣକୁ ଆହାର କରିବାକୁ ନଦେଲେ ସେ କାହାରିକୁ ଛାଡ଼ିବ ନାହିଁ । ଏହି ବିପଦ ବେଳରେ ଯୁଧିଷ୍ଠିର ଭୀମଙ୍କର ପରାମର୍ଶ ମାଗିଲେ । ଭୀମ ପ୍ରଥମେ କହିଲା- ଚାଲ କୈବର୍ତ୍ତକୁ ପାଣିକୁ ପକାଇଦେବା । ତାହାର ନାବ ଘାଟ, ତାକୁଇ କିମ୍ବିରୀ ଖାଉ । ଯୁଧିଷ୍ଠିର କହିଲେ- ସେ ପରା ଆମର ଉପକାରୀ । ଭୀମ କହିଲା- ତେବେ ନକୁଳ ଆଉ ସହଦେବକୁ ଫିଙ୍ଗିଦେବା, କିମ୍ବିରୀ ସେମାନଙ୍କୁ ଖାଇଯାଉ । ଯୁଧିଷ୍ଠିର କହିଲେ- ସେମାନେ ପରା ସାନ ସାନ, ପୁଣି ଆମର ସାବତ ଭାଇ । ସାବତ ଭାଇକୁ ନାଶିଲେ ବୋଲି ଲୋକମାନେ ପଛନ୍ତେ ଦୋଷଦେବେ । ଭୀମ କହିଲା- ତାହା ହେଲେ ଅର୍ଜୁନଙ୍କୁ ଦେଇଦେବା । ଯୁଧିଷ୍ଠିର କହିଲେ- ସେ ପରା ଇନ୍ଦ୍ରଙ୍କର ପୁଅ । ପରିଶେଷରେ ଭୀମ କହିଲା- ତୁମେ ତ ସମସ୍ତଙ୍କୁ ରକ୍ଷା କଲ, ତେବେ ମୋତେ କିମ୍ବିରୀ ଖାଉ । ଏହା କହି ଭୀମ ପାଣିକୁ ଡେଇଁ ପଡ଼ିଲା ଓ କିମ୍ବାରୀର ଭୀମ ହସ୍ତରେ ମୃତ୍ୟୁ ହୋଇଥିଲା ।

ଭୀମ ଜାଣିଥିଲା ଯେ ଯେତେବେଳେ ବିପଦ ଆସିବ ତାକୁଇ ହିଁ ପ୍ରଥମେ ବିପଦ ମୁହଁକୁ ଠେଲି ଦିଆଯିବ । କିମ୍ବା ଯୁଦ୍ଧ କରିବା ପାଇଁ ତାକୁଇ ହିଁ ପଠାଇ ଦିଆଯିବ । କିନ୍ନରୀ ଦୈତ୍ୟ କ୍ଷେତ୍ରରେ ମଧ୍ୟ ତାହା ଘଟିଛି । ଦିନେ କିନ୍ନରୀ ନାମକ ରାକ୍ଷାସୁଣୀ ଆସି କୁନ୍ତୀକୁ ଖାଇବାକୁ ବସିଲା । ଭୟରେ ଥରହର ହୋଇ କୁନ୍ତୀ କହିଲା, ମୋର ପାଞ୍ଚଟି ପୁଅ ଅଛନ୍ତି । କିନ୍ନରୀ କହିଲା ମୋତେ ଗୋଟିଏ ପୁଅ ଦେବୁ ବୋଲି ସତ୍ୟ କର, ମୁଁ ତୋତେ ଛାଡ଼ିଦେବି । କୁନ୍ତୀ ସତ୍ୟକଲା ସତ୍ୟ, ମାତ୍ର ଯୁଧିଷ୍ଠିର, ଅର୍ଜୁନ, ନକୁଳ ଓ ସହଦେବଙ୍କୁ ଖାଇବାକୁ ଦେଲା ନାହିଁ । ଭୀମ ଆସିବା ପରେ କୁନ୍ତୀ ତାକୁ ସବୁକଥା କହିଗଲା । ଭୀମ କହିଲା-

ଭୀମ ବୋଇଲା ମାତା ମୋ ଶତ୍ରୁ ହେଲୁ ତୁହି
ଅସୁରୀ ମୁଖରେ ମୋତେ ଦେବୁ ତୁ ଖୁଆଇ ।

କିନ୍ନରୀ ଭୀମକୁ ଗିଳିପକାଇଲା ଓ କିନ୍ନରୀର ଗର୍ଭରେ ଭୀମ ବିଶ୍ୱମୂର୍ତ୍ତି ଧାରଣ କରିବାରୁ ରାକ୍ଷାସୁଣୀର ମୃତ୍ୟୁ ହୋଇଥିଲା ।

ଅନ୍ୟପୁତ୍ର ଥାଉଁ ଥାଉଁ ଭୀମକୁ କାହିଁକି କୁନ୍ତୀ କିନ୍ନରୀକୁ ସମର୍ପଣ କଲେ ବୋଲି ପାର୍ବତୀଙ୍କ ପ୍ରଶ୍ନରେ ଶିବ କହିଛନ୍ତି-

ବଦୟନ୍ତି ସଦାଶିବ ବଡ଼ଗିଲା ସେ ବିକୋଦର
କୋଇଂତା ସହିତେ ଚାରିପୁତ୍ର ଯେତେ ଖାଇ
ଯେକ ଭୀମ ସେନକୁ ତେତେକ ଦିଅଇ

ତଦ୍ୟପି ଭୀମର ନପୁରଇ ପେଟ
ଦେଖିଣ କୋଇଂତା ସେ ହୁଅଇ ବିମୁଖ
ତେଣୁ ବିଚାରିଲା କିନ୍ନରୀ ୟାକୁ ଖାଉ
ୟେହାର ପେଟକଷ୍ଟ ମୋ ଦେହ ନସହୁ ।

ଯେତେ ଖାଇଲେ ବି ଭୀମସେନଙ୍କ ଉଦର ପୂର୍ଣ୍ଣ ହୁଏ ନାହିଁ । ସଂଗ୍ରାମରେ, ଭୋଜନରେ ଓ ଶୃଙ୍ଗାରରେ ସେ କେବେହେଲେ ତୃପ୍ତ ହୁଅନ୍ତିନାହିଁ । କବି ଲେଖିଛନ୍ତି–

ସଂଗ୍ରାମେ ଅତ୍ରିପୁତି ସେ ଭୋଜନେ ଅତ୍ରିପୁତି
ଶୃଙ୍ଗାରେ ଅତ୍ରିପୁତି ସେ ପବନ ସନ୍ତତି ।

ଭୀମଙ୍କର ଭୁଜାସୁରକୁ ବଧ କରିବା ପ୍ରସଙ୍ଗ ଏଠାରେ ଆଲୋଚନା କରାଯାଉ । ପାଣ୍ଡବମାନେ ଯେତେବେଳେ ବେଦଶ୍ରମଣ ବ୍ରାହ୍ମଣଘରେ ରହୁଥିଲେ ସେତେବେଳେ ନିକଟସ୍ଥ ଅଞ୍ଚଳରେ ଭୁଜାସୁର ନାମରେ ଗୋଟିଏ ରାକ୍ଷସ ରହୁଥିଲା । ଗ୍ରାମର ଲୋକମାନେ ପାଳିକରି ପ୍ରତ୍ୟେକ ଦିନ ହଳେ ବଳଦ, ଜଣେ ମନୁଷ୍ୟ ଓ ଅନ୍ନ ପିଠା ଆଦି ପଠାଇଥାଆନ୍ତି । ପାଣ୍ଡବମାନେ ବେଦଶ୍ରମଣ ଘରେ ଥିବାବେଳେ ରାକ୍ଷସ ନିକଟକୁ ଯିବାପାଇଁ ବେଦଶ୍ରମଣ ଘରର ପାଳି ପଡ଼ିଲା । ବେଦଶ୍ରମଣ ଓ ତାର ଏକମାତ୍ର ପୁତ୍ର ମଧ୍ୟରୁ ଯାହାକୁ ରାକ୍ଷସ ନିକଟକୁ ପଠାଇଲେ ବି ସଂସାର ତାର ଉଚ୍ଛନ୍ନ ହୋଇଯିବ ବୋଲି ବ୍ରାହ୍ମଣର ଭାରିଯା ବସି ଭାଳୁଥାଏ । ତାର ଦୁଃଖ ସହି ନପାରି କୁନ୍ତୀ ନିଜପୁତ୍ରମାନଙ୍କ ମଧ୍ୟରୁ ଗୋଟିଏ ପୁତ୍ରକୁ ରାକ୍ଷସ ନିକଟକୁ ପଠାଇବେ ବୋଲି ଆଶ୍ୱାସନା ଦେଇଦେଲେ । ଭୀମ ଘରକୁ ଫେରି ହାତପାଦ ଧୋଇ ଗୋଟିଏ ହାଇମାରି କାନ୍ଥକୁ ଆଉଜି ବସିଯିବାପରେ ବ୍ରାହ୍ମଣ ଘରର ବିପତ୍ତି କଥା କୁନ୍ତୀ ତାଙ୍କୁ ଜଣାଇଦେଲେ । ଭୀମ ଜାଣିଗଲା ଯେ ପରୋକ୍ଷରେ ମାଆ ତାକୁ ଭୁଜାସୁର ନିକଟକୁ ଯିବାକଥା କହୁଛନ୍ତି । ସାରଳା ଦାସ ମାଆଙ୍କ ସମ୍ମୁଖରେ ଭୀମ କହିଥିବା କଥାକୁ କିପରି ଲେଖିଛନ୍ତି ଦେଖନ୍ତୁ–

ଭୀମ ବୋଇଲା ଗୋ ଜନନୀ ହେଲୁ ବାଇ
ପରର ଲାଗି କେହୁ ଆପଣାପ୍ରାଣ ଦେଇ
କାଳକ ରହିଅଛି ସରିବ ସେହୁପୁଣ
ଆମ୍ଭେ କେତେକାଳ କରିଅଛୁ ସ୍ଥାନ
ଯେବେ ନିଶ୍ଚେ ବ୍ରାହ୍ମଣ ଆମ୍ଭଙ୍କୁ ଅଛି ପାଞ୍ଚ
କୁଟୁମ୍ବ ସହିତରେ ତାହାକୁ ଦେବି ଛେଚି
ଦଇତ୍ୟଠାରୁ ମୁହିଂ ଅଟଇ ବଡ଼ କାଳ
ଆୟୁଷ ଥାଉଂ ଥାଉଂ ପେଶିବି ଯମ ଆଳ ।

ଯୁଧିଷ୍ଠିର ଭୀମକୁ ବୁଝାଇବା ପରେ ଭୀମ ଭୁଜାସୁର ନିକଟକୁ ଯିବାକୁ ରାଜିହେଲା । ମାତ୍ର ବେଦଶ୍ରବଣକୁ କହିଦେଲା ଯେ ଅସୁର ପାଇଁ ପ୍ରତ୍ୟହ ଯେତେଯେତେ ଦ୍ରବ୍ୟ ଯାଉଥିଲା ତାଠାରୁ ଦୁଇଗୁଣ ଦ୍ରବ୍ୟ ପ୍ରସ୍ତୁତି କର । ସେଦିନ ଦୁଇଗୁଣ ଦ୍ରବ୍ୟଘେନି ଭୀମ ଭୁଜାସୁର ନିକଟକୁ ଯାଇଥିଲା । ସେଠାରେ ନିଜେ କିପରି ଖାଦ୍ୟଦ୍ରବ୍ୟମାନ ଖାଇଦେଇଥିଲା ଭାରତ ହରିବଂଶରୁ ତାର ଉଦାହରଣ ଦେଖାଯାଉ–

ଖଣ୍ଡେ ଦୁରୁ ଭିମସେନ ଦତ୍ୟକୁ ଦେଖିଲା
ତରତର ହୋଇ ସବୁ ସାମଗ୍ରି ଖାଇଦେଲା
ଦେଖିଣ ଦତ୍ୟ ଯେ ଧାଇଂଲା କୋପବହି
ମୋହର ପଦାର୍ଥରେ କିପାଂ ମାନବା ଯାଉ ଖାଇ
ୟେମନ୍ତ କହି ଦତ୍ୟ ବିଧାୟେ ପ୍ରହାରିଲା
ଚାପୋଡ଼ ମାରି ଭିମ ଯାବୋଡ଼େ ଖାଇଗଲା ।
ପୁଣି ଦତ୍ୟ ଝାମ୍ପନ୍ତେ ଭିମ ମାଇଲା ଗୋଇଂଠାୟେ
ସାତ ପାଞ୍ଚଭାର ପିଠା କଳେ କରି ଖାୟେ

ଦାନବ ବୋଇଲାରେ ନ ମରି ତୁହି ଜୀଉଂ
ମୁହିଂ ଦେଖୁଂ ଦେଖୁଂ ମୋର ସାମଗ୍ରି ଖାଇଯାଉ ।
ଭିମ ବୋଇଲାରେ ଦଣ୍ଡେକ ରହ ତୁହି
ବେନି ଶତେ ଭାର ଆଉ ଉବୁରା ହୋଇଛଇ
ଯେହା ଖାଇ ସାରିଣ ତୋତେ ସେ ଖାଇବି
ଯେତେ ବୋଲି ଭିମ ଜାବୋଡ଼େ ଦିଲା ପୁଣି ।
ପିଠା ପଣା ଅନ୍ନ ସରିଲା ଯେତେବେଳେ
ମାଡ଼ିବସିଲା ବିକୋଦର ଦତ୍ୟର ବକ୍ଷସ୍ଥଳେ ।

ଭୁଜାସୁରକୁ ବଧ କରିସାରିବା ପରେ ଭୀମ ହିଡ଼ମ୍ବକ ଦୈତ୍ୟକୁ ବଧ କରିଥିଲେ ଓ ହିଡ଼ମ୍ବକ ଦୈତ୍ୟର କନ୍ୟା ହିଡ଼ିମ୍ବିକୀର ପାଣିଗ୍ରହଣ କରିଥିଲେ । ହିଡ଼ମ୍ବକ ନାଶଯିବାରୁ ଭୀମକୁ ସେହି ରାଜ୍ୟର ନୃପତି କରିଦେଲେ । ନୃପତି ହେବାପରେ ଭୀମ ଯେପରି ନିଜର ଭାଇମାନଙ୍କୁ ଭୁଲିଯାଇଥିଲା, ତାହା କେବଳ ଭୀମ ପରି ଚରିତ୍ରମାନଙ୍କଦ୍ୱାରା ହିଁ ସମ୍ଭବ । ନୃପତି ହେବାପରେ ନଗ୍ର ଲୋକମାନେ ତା ନିକଟରେ ରାଜାପଣରେ ଖଟିଲେ । ମଣିମା ମଣିମା ଡାକଶୁଣି ବିକୋଦର ଭୋଳ ହୋଇଗଲା ।

ଭୀମଙ୍କୁ ଫେରାଇ ଆଣିବା ପାଇଁ ଯୁଧିଷ୍ଠିର ସହଦେବକୁ ପଠାଇଲେ । ସହଦେବ ଯାଇ ତାଙ୍କୁ ନମସ୍କାର କରି ଯୁଧିଷ୍ଠି ଆଜ୍ଞା କରିଛନ୍ତି ଏବେ ଚାଲଯିବା ବୋଲି ଡାକ ଦେଲେ । ସହଦେବଙ୍କ କଥାଶୁଣି ଭୀମ କହିଲେ-

ଭିମସେନ ବୋଇଲା ଯୁଧିଷ୍ଠି ବୋଲି କେହୁଂ
ତୁ ଯେଡ଼େ ଭଳିରେ ମୋର ଆଗରେ ବସିଣ କଥା କହୁଂ
ଭିକ୍ଷା ମାଗିବାକୁ ଯଦି ଆସିଛ ବ୍ରାହ୍ମଣ
କହନି କେତେ ପ୍ରାଣି ଦେବି ତେତେ ମାଣ ।

ଭୀମଙ୍କର କଥାଶୁଣି ସହଦେବ ଆଶ୍ଚର୍ଯ୍ୟ ହୋଇ କହିଲା, ଆମେ ପାଞ୍ଚଭାଇରୁ ଗୋଟିଏ ଭାଇକୁ ଚୋର ନେଇଯାଇଛି । ଏବେ ମାଆଙ୍କ ସହିତ ଆମେ ପାଞ୍ଚଜଣ ଅଛୁ । ଭୀମ କହିଲା, ତେବେ ପାଞ୍ଚମାଣ ଦେଉଛି ନେଇଯାଅ, ଆଉ ଯେଉଁ ଭାଇକୁ ଚୋର ନେଇଯାଇଛି ତାକୁ ଠାବ କରି ଆସିଲେ ମୁଁ ଚୋରକୁ ଦଣ୍ଡ ଦେବି । ସହଦେବ କହିଲେ, ଚୋର ତାଙ୍କୁ ଛାଡ଼ି ଦେଲାଣି । ଏବେ ସେ ଏହି ରାଜ୍ୟରେ ରାଜା ହୋଇଯାଇଛନ୍ତି । ମୁଁ ତାଙ୍କ ଭାଇ ବୋଲି ସେ ମୋତେ ଚିହ୍ନିପାରୁ ନାହାନ୍ତି । ସାରଳା ଦାସ ଲେଖିଲେ-

ଭୀମ ବୋଇଲା ଯେବେ ତୋ ଭ୍ରାଥ ତୋତେ ନ ଚିହ୍ନିଲା
କର୍ମ ତୋର ମନ୍ଦ ବହନେ ଯେଥୁ ପଳା
ଯେତେ ବୋଲି ଭିମ ଯେ ତରାଟିଲା ଆଖି
ଡରେ ସହଦେବ ପଳାଇଲା ଘୁଞ୍ଚି ।

ସହଦେବ ପାଖରୁ ଯୁଧିଷ୍ଠିର ଭୀମଙ୍କ ବିଷୟରେ ସବୁକଥା ଶୁଣି ବିବ୍ରତ ହୋଇ ଅର୍ଜୁନଙ୍କୁ ତାଙ୍କୁ ଆଣିବାକୁ ପଠାଇଲେ । ଅର୍ଜୁନ ଯାଇ ଦେଖିଲେ, ମାରୁତି ସଭା ମଣ୍ଡାଇ ବସିଛନ୍ତି । ଶିରରେ ମୁକୁଟ ଶୋଭାବନ ଦେଖାଯାଉଛି । ତାଡ଼ ତୋଡ଼ର, ବାହୁଟି, ଜଗଦୋଳା, ବିଜମାଳି, ଡାହାଣ ପାଖରେ ପାଟଖଣ୍ଡା, ବାମ ପାଖରେ ବୀରଛୁରି, ପାଦରେ ସୁବର୍ଣ୍ଣର କଠଉ । ଭୀମ ଗଜଦନ୍ତ ପଲଙ୍କ ଉପରେ ବସିଛନ୍ତି । ଭୃତ୍ୟଜନମାନେ ଚାମର ଢାଳୁଛନ୍ତି, ମଣିମା ମଣିମା ବୋଲି ଖୁଣ୍ଟିଆ ଡାକ ଦେଉଛନ୍ତି । ଇନ୍ଦ୍ର ପରି ଦେଖାଯାଉଛନ୍ତି ଭୀମସେନ । କାଳଚକ୍ର ପ୍ରାୟ ବେନି ତୋଳା ଫେରାଇ ଆଣୁଛନ୍ତି ।

ଅର୍ଜୁନ ଡର ଡର ହୋଇ ଭୀମଙ୍କୁ ଉଳଗ ହେଲେ । "ଭୀମ ବୋଇଲା, କି କାରଣେ ଅଇଲ ପଣ୍ଡାଯେ" ? ଅର୍ଜୁନ କହିଲେ, ତୁମେ ମୃଗୟା କରିବାକୁ ଆସି ଏଠାରେ ରହିଗଲ । ଧର୍ମରାୟ ତୁମ୍ଭଙ୍କୁ ଡାକୁଛନ୍ତି, ମୁଁ ତୁମ୍ଭଙ୍କୁ ନେବା ପାଇଁ ଆସିଛି । ଭୀମ କୋପିତ ହୋଇ କହିଲେ-

ଶୁଣିଣ କୋପିତ ସେ ହୋଇଲା ବିକୋଦର
ଧର୍ମପୁରୁଷ ଅଛିରେ ଆକାଶ ମଣ୍ଡଳର

ସେ କିପାଇଂରେ ଯେ କରନ୍ତା ମୋତେ ଲୋଡ଼ା
ମିଥ୍ୟାଭାଷି ଲୋଭି ତୁ ଅଟୁରେ ବାପୁଡ଼ା
ଖଳ ପରପଞ୍ଚ ତୁ ଯେ ନ ଦେଖିଲା କଥାମାନ କହୁ
ପଳାଇ ଯାଅ ତୁହି ପ୍ରାଣ ନପାଇବୁ ଆଉ
ସେବକମାନଙ୍କୁ ବୋଇଲା ମାର ଏ ଦ୍ୱିଜକୁ
ଭୟରେ ଅର୍ଜୁନ ସେ ବିଚାରେ ମନକୁ ।

ସହଦେବ ଓ ଅର୍ଜୁନ ଫେରି ଆସିବା ପରେ ଭୀମକୁ କିପରି ଅଣାଯିବ ସେଥିପାଇଁ ସମସ୍ତେ ଚିନ୍ତିତ ହୋଇ ପଡ଼ିଲେ । ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ମଧ୍ୟ ସ୍ମରଣ କଲେ । ଶ୍ରୀକୃଷ୍ଣ ଗରୁଡ଼ ପୃଷ୍ଠରେ ବସି ଆସି ସେଠାରେ ଉପସ୍ଥିତ ହେଲେ । ଶ୍ରୀକୃଷ୍ଣ ସହଦେବଙ୍କୁ ସାଙ୍ଗରେ ଧରି ଭୀମଙ୍କ ପାଖକୁ ଗଲେ ମଧ୍ୟ ଭୀମ ତାଙ୍କୁ ଭିତରକୁ ଛାଡ଼ିଲା ନାହିଁ । ଭୀମଙ୍କୁ ଉପାୟକରି ଆଣିବାପାଇଁ ଶ୍ରୀକୃଷ୍ଣ ଗରୁଡ଼କୁ ଆଜ୍ଞା ଦେଲେ । ପିଲାମାନଙ୍କୁ ଭଣ୍ଡାଇଲା ପରି ଗରୁଡ଼ ଭୀମଙ୍କୁ ଭଣ୍ଡାଇ କିପରି ନେଇ ଆସିଲା ତାହା ଏଠାରେ ଦେଖାଯାଉ ।

ଭୀମ ଓ ହିଡ଼ିମ୍ବିକୀ ପଲଙ୍କ ଉପରେ ବସିଥିବା ବେଳେ ଗରୁଡ଼ ଯାଇ ଅଗଣାରେ ବୁଲିବାକୁ ଲାଗିଲା । ଏପରି ସୁନ୍ଦର ପକ୍ଷୀଟିଏ ବସିଥିବାର ଦେଖି ଭୀମ ପଚାରିଲେ, ରେ ପକ୍ଷୀ ! ତୋର ନାମ କ'ଣ ? ତୁ କୋଉଥିପାଇଁ ଏଠାକୁ ଆସିଛୁ ? ଗରୁଡ଼ କହିଲା ମୁଁ ରମ୍ୟେକ ଦ୍ୱୀପରେ ଥାଏ । ସବୁବେଳେ ପରର ଉପକାର କରି ମୋର ଜୀବନ ବଞ୍ଚାଇଥାଏ । ଯିଏ ଇଚ୍ଛାକରେ ତାକୁ ମୋ ପିଠିରେ ବସାଇ ସେ ଯେଉଁଠାକୁ ଚାହେଁ ସେହିଠାରୁ ବୁଲାଇ ଆଣେ । ଚଉଦ ବ୍ରହ୍ମାଣ୍ଡ ମୁଁ କ୍ଷଣକରେ ବୁଲିଆସିପାରେ । ପକ୍ଷୀ କହିଲା, ତୁମେ ତ ନୂଆକରି ନୃପତି ହୋଇଛ । ଯଦି ତୁମ ଇଚ୍ଛା ହୁଏ ତେବେ ମୁଁ ତୁମକୁ ଏ ସଂସାର ଦେଖାଇ ଆଣିବି । ଭୀମ ଖୁବ୍ ଖୁସି ହୋଇ କହିଲା, ରେ ପକ୍ଷୀ ! ତୁ ତ ବଡ଼ ଉପକାରୀ ଲୋକ । ମୋତେ ଏ ଜଗତଟା ବୁଲାଇ ଆଣ । ଗରୁଡ଼ ବସାଇବା ପାଇଁ ପିଠି ଦେଖାଇଦେଲା । ବୃକୋଦର ବସି ପଡ଼ିବାପରେ ତାକୁ ଧରି ଉଡ଼ି ଉଡ଼ି ଯୁଧିଷ୍ଠିରଙ୍କ ନିକଟରେ ପହଞ୍ଚାଇ ଦେଲା ।

ଭୀମ ଏପରି ଯେ ଯାହାକୁ ସେ ସମ୍ମାନାସ୍ପଦ ବୋଲି ମାନିଥିବ ତାକୁଇ ହିଁ କେବଳ ସମ୍ମାନ ପ୍ରଦାନ କରିବ । ତା ବ୍ୟତୀତ ଅନ୍ୟ ଯେ କୌଣସି ବା ଯେତେ ବଡ଼ ଲୋକ ହୋଇଥିଲେ ମଧ୍ୟ ତାକୁ ତୁଚ୍ଛ ବୋଲି ମନେ କରିବ । ବିରାଟ ରାଜ୍ୟରେ ଗୁପ୍ତବାସ କରିବା ସମୟରେ ଅନେକ ଥର ସେ ଏହିପରି ବିରାଟ ରାଜାଙ୍କୁ ଅବଜ୍ଞା କରିଛି । ଭାରତ ହରିବଂଶ ଅନୁସାରେ ଦିନେ ଏକ ଶବର ବ୍ୟାଘ୍ରଟିଏ ଧରି ବିରାଟ ରାଜାଙ୍କ ସଭାରେ ପ୍ରବେଶ ହେଲା । ପାରିଷଦଗଣ ଭୟରେ ଯିଏ ଯୁଆଡ଼େ ପଳାଇଗଲେ । ସୂପକାର ବ୍ରାହ୍ମଣକୁ ଡାକିବା ପାଇଁ ଯୁଧିଷ୍ଠିର ବିରାଟରାଜାଙ୍କୁ ପରାମର୍ଶ ଦେଲେ । ଡଗର ଯାଇ ସୂପକାରବେଶୀ ଭୀମଙ୍କ ନିକଟରେ ପହଞ୍ଚି କହିଲା–

ତାହା ଶୁଣି ରାଜନ ଡଗର ପେସିଲା
ରାଜାଙ୍କର ଆଜ୍ଞା ବୋଲିଂ ସୂପକାରକୁ ବୋଇଲା
କେ କାହାର ଆଜ୍ଞାକାରୀ ବୋଲି ନୟନ ତରାଟି ଚାହିଁଲା
ଚାହାନ୍ତେ ନୟନେ ଆଲୋଳ ଦିସିଲା
ଡଗର ଡରେ ପଳାଇ ରାଜାକୁ କହଇ
ସେ ସୂପକାର ନୟନେ ଜଳିଗଲି ମୁହିଂ ।

ସେହି ଡଗରକୁ ଯୁଧିଷ୍ଠିର ପୁଣି ପଠାଇଲେ ଭୀମସେନଙ୍କ ନିକଟକୁ । ରାଜାଙ୍କର ଆଜ୍ଞା ବୋଲି ନକହି ଠାକୁରଙ୍କର ଆଜ୍ଞାବୋଲି କହିବାକୁ ମଧ୍ୟ ନିର୍ଦ୍ଦେଶ ଦେଲେ ।

ଏମନ୍ତ ଆଜ୍ଞା ସୁଣି ଡଗର ଚଳିଗଲା
ଭିମସେନ ଆଗେଂ ଠାକୁରଙ୍କ ଆଜ୍ଞା ବୋଲି କହିଲା
ଯୁଧିଷ୍ଠିଙ୍କ ଆଜ୍ଞାରେ ଭିମସେନ ମିଳିଲା
ବିଧାଏ ପ୍ରହାରି ବ୍ୟାଘ୍ରକୁ ନାସିଲା

ଭାରତ ହରିବଂଶରେ ଭୀମ ଓ ଦୁଃଶାସନଙ୍କ ଯୁଦ୍ଧ ଅତି କୌତୁହଳପୂର୍ଣ୍ଣ ଘଟଣା । ଏହି ଯୁଦ୍ଧ ସମୟରେ ଅନ୍ୟ ଯୁଦ୍ଧମାନ ବନ୍ଦକରି ଯୋଦ୍ଧାମାନେ ଭୀମ ଦୁଃଶାସନ ଯୁଦ୍ଧ ଦେଖିବା ପାଇଁ ଆଗ୍ରହାନ୍ୱିତ ହୋଇପଡ଼ିଥିଲେ । ଦୁଇଜଣଯାକ ଗର୍ଜନ କରି ପ୍ରତିପକ୍ଷଙ୍କ ପାଇଁ ଯେଉଁ ଶବ୍ଦମାନ ପ୍ରୟୋଗ କରୁଥିଲେ ତାହା ସୁନ୍ଦର ଭାବରେ ଭାରତ ହରିବଂଶରେ ଚିତ୍ରିତ ହୋଇଛି । ପ୍ରଥମେ ଦୁଃଶାସନ ଭୀମକୁ ମାଡ଼ିବସି ତାକୁ ଗାଳିଦେଇ କହିଥିଲା–

ରେ ରେ ପାଣ୍ଡବା ପ୍ରତିଜ୍ଞା ବହିଲୁ
ରେ ରେ ପାଣ୍ଡବା ନିରେଖ ହୋଇଲୁ
ରେ ରେ ପାଣ୍ଡବା ସୁତିଲୁ ରଣମଝି
ରେ ରେ ପାଣ୍ଡବା ଯମ ପୁଛିଲା ପାଜିଂ

ଦୁଃଶାସନ ଗାଳିକୁ ଭୀମ ସହ୍ୟକରି ନପାରି ତାକୁ ଲେଉଟାଇ ମାଡ଼ିବସିଲା । ଠିକ୍ ସେହିଭଳି ଢଙ୍ଗରେ ଦୁଃଶାସନକୁ ଗାଳିଦେଇ କହିଲା–

ହୃଦରେ ବିଧାମାରି ଡାକଇ ବିକୋଦର
ରେ ରେ କୌରୋବା ଇଷ୍ଟ ଦେବତା ସୁମର
ରେ ରେ କୌରୋବା ପୁରିଲା ତୋର କାଳ
ରେ ରେ କୌରବା ଜିବୁରେ ଜମ ଆଳ ।

ସମଗ୍ର ଭାରତ ହରିବଂଶରେ ଭୀମର ଚରିତ୍ର ଗୋଟେ ହୁଣ୍ଡା ପରି । ପିଲାମାନେ ଯେପରି କପଟକ୍ରୋଧ କରନ୍ତି, ଭୀମଙ୍କର ଚରିତ୍ରରେ ଆମେ ସେହିପରି ଲକ୍ଷଣମାନ ଦେଖିବାକୁ ପାଇଥାଉ ।

**ଯୁଧିଷ୍ଠିର :** ଭୀଷ୍ମ ଦେହତ୍ୟାଗ କରିବା ସମୟରେ ଯୁଧିଷ୍ଠିରଙ୍କୁ କିଛି ତତ୍ତ୍ୱ ଉପଦେଶ ଦେଇଥିଲେ । କହିଲେ, ରେ ଯୁଧିଷ୍ଠିର ! ତୁ ନୃପତି ହେଲେ ଯେତେ ଲୋକ ଏ ଭାରତ ଯୁଦ୍ଧରେ ମଲେ ସବୁ ପାପ ଦୋଷ ତୋ ମୁଣ୍ଡରେ ଲାଗିବ । ପାପ ଓ ପୁଣ୍ୟ ଦୁଇଜଣ ଦୁଇଟି ଭାଇ । ଯେଉଁମାନେ ଯୁଦ୍ଧରେ ପ୍ରାଣତ୍ୟାଗ କଲେ ସେମାନେ ସମସ୍ତେ ପୁଣ୍ୟଭାଗ ନେଲେ । ଯିଏ ରାଜ୍ୟର ଅଧିକାରୀ ହେବ ବୋଲି ବଞ୍ଚି ରହିଲା ତା ଭାଗରେ ପାପପୁରୁଷ ରହିଲା । ଭୀଷ୍ମଙ୍କର କଥାଶୁଣି ଯୁଧିଷ୍ଠିର ଅଶ୍ରୁପୂର୍ଣ୍ଣ ଲୋଚନ ହୋଇଗଲେ । କହିଲେ–

ପାପକୁ ମୋର ବଡ଼ ଭଏ ଥାଇ
ପୁଣିଂ ତ ପାପ ଦୋସ ଦେଉଛ ଗୋସାଇଂ
କିମ୍ପାଇଂ ମୁହିଂ ଯେ ସମରେ ନ ମଲିଂ
ମଲା ଲୋକ ପାପ ଭୁଜିଂତେ ରହିଲିଂ ।

ପାପକୁ ଭୟକରୁଥିବା ଯୁଧିଷ୍ଠିର ସବୁବେଳେ ସତ୍ୟାନୁବର୍ତ୍ତୀ ହୋଇ ରହିଥାନ୍ତି । ଧର୍ମ ପଥରେ ଚାଲୁ ଥାଆନ୍ତି ବୋଲି ସମସ୍ତେ ତାଙ୍କୁ ଠାକୁର ବୋଲି କହି ମାନିଥାଆନ୍ତି । ପାଣ୍ଡବ ପାଞ୍ଚଭାଇଙ୍କ ମଧ୍ୟରୁ କେବଳ ଯୁଧିଷ୍ଠିରଙ୍କୁ ଶ୍ରୀକୃଷ୍ଣ ନମସ୍କାର କରନ୍ତି ଏବଂ ଅନ୍ୟଭାଇମାନେ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରିଥାଆନ୍ତି । ନିଜ ବିବେକକୁ ପଛକରି ଯୁଧିଷ୍ଠିର ଥରୁଟିଏ ମିଛକଥା କହିଥିଲେ ବୋଲି ସ୍ୱର୍ଗାରୋହଣପରେ ତାଙ୍କର କାନି ଆଙ୍ଗୁଳିକୁ ନର୍କକୁଣ୍ଡରେ ବୁଡ଼ାଇବାକୁ ପଡ଼ିଥିଲା । ସମସ୍ତ ସୁଗୁଣ ଥିବା ସତ୍ତ୍ୱେ ବି ଭାରତ ହରିବଂଶରେ ସାରଳା ଦାସ ତାଙ୍କୁ ମାନବୀୟ ଚରିତ୍ର ଗୁଣସମ୍ପନ୍ନ କରି ଗଢ଼ି ତୋଳିଛନ୍ତି ।

ସାଧାରଣ ମଣିଷଟିଏ ପରି ସେ ପଶାଖେଳିଛନ୍ତି, ପଶା ଖେଳରେ ସମସ୍ତ ହରାଇ ଦୁଃଖୀ ହୋଇଛନ୍ତି, ଶ୍ରୀକୃଷ୍ଣଙ୍କ କଥାକୁ ସ୍ୱୀକାର କରି ମିଛ କହିଛନ୍ତି, ସ୍ୱଦେହରେ ସ୍ୱର୍ଗଯିବାକୁ ନିଜ ସ୍ତ୍ରୀର ପାଦତଳେ ପଡ଼ିଛନ୍ତି, ବୟସ ଅଧିକ ହେଲେ ମଧ୍ୟ ଗୋଟିଏ ଅଳ୍ପ ବୟସ୍କା କିଶୋରୀର ପାଣିଗ୍ରହଣ କରିଛନ୍ତି, ସ୍ୱର୍ଗାରୋହଣ କାଳରେ ଭାଇମାନଙ୍କର ବିପଦ ଦେଖି ପଛକୁ ଚାହିଁନାହାନ୍ତି, ଭୀମକୁ ସ୍ୱର୍ଗ ଯିବାରୁ କ୍ଷାନ୍ତ କରିବାପାଇଁ ତାକୁ ଅନୁଚିତ ପରାମର୍ଶ ଦେଇଛନ୍ତି ଇତ୍ୟାଦି ।

ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କ ସହ ପାଞ୍ଚପାଣ୍ଡବଙ୍କୁ ହିଂସା କରିବାର କାରଣ ହେଲା ଯୁଧିଷ୍ଠିର ବାରୁଣା ଓ ଜୟନ୍ତିନା ନାମକ ଦୁଇଟି ଗ୍ରାମରେ ରାଜାହେବା । ପିତା ଥାଉଁ ଥାଉଁ ଦୁର୍ଯ୍ୟୋଧନ ହସ୍ତିନାର ନୃପତି ହୋଇଯିବା ପରେ ବ୍ୟାସ ଏବଂ ବିଦୁର ଧୃତରାଷ୍ଟ୍ରଙ୍କୁ କହି

ପାଣ୍ଡବମାନଙ୍କୁ ବାରୁଣା ଓ ଜୟନ୍ତିନା ନାମକ ଦୁଇଗୋଟି ଗ୍ରାମ ପ୍ରଦାନ କଲେ ଓ ଯୁଧିଷ୍ଠିର ସେଠାରେ ସିଂହାସନ ଅଳଂକୃତ କଲେ । ଗ୍ରାମର ଲୋକମାନେ ଯୁଧିଷ୍ଠିରଙ୍କୁ ସେବାକରି ରହିଲେ । ଯୁଧିଷ୍ଠିର ନିଜେ ରାଜା ହୋଇ ଆସ୍ଥାନରେ ବସିଥାନ୍ତି । ସହଦେବ ତାଙ୍କର ମନ୍ତ୍ରୀ ହୋଇ ଆଗତ ଭବିଷ୍ୟତ କଥା କହିଥାଏ । ନକୁଳ ବୀରଛତ୍ର ଧରିଥାଏ, ଯୋଦ୍ଧାପଣରେ ଆସ୍ଥାନରେ ଥାଏ ଭୀମ ଓ ଅର୍ଜୁନ ଥାଟରକ୍ଷା କରୁଥାଏ ।

ଦିନେ ନାରଦ ଯୁଧିଷ୍ଠିରଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କର ପିତା ପଣ୍ଡୁଙ୍କ ବିଷୟରେ କିଛି ସୂଚନା ଦେଲେ । କହିଲେ ଯେ ପଣ୍ଡୁ ବ୍ରହ୍ମହତ୍ୟା କରିଥିବାରୁ ଜନ୍ତୁପତି ତାଙ୍କୁ ସଭାରେ ବସିବାପାଇଁ ଦେଉନାହାନ୍ତି । ରାଜସୂୟ ଯଜ୍ଞକଲେ ସେ କଷ୍ଟରୁ ନିସ୍ତାର ପାଇବେ । ରାଜସୂୟ ଯଜ୍ଞ କିପରି କରିବେ ସେକଥା ଭାବି ଯୁଧିଷ୍ଠିର ଚିନ୍ତାଗ୍ରସ୍ତ ହୋଇପଡ଼ିଲେ । ପାଖରେ ତ ସମ୍ପଦ ବୋଲି କିଛି ନାହିଁ । ଲକ୍ଷେ ନୃପତିଙ୍କୁ ବରଣ କରିବାପାଇଁ ସାହା ମଧ୍ୟ କେହି ନାହାନ୍ତି । ଯୁଧିଷ୍ଠିର ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ରାଜସୂୟ ଯଜ୍ଞ ସହଜରେ ହୋଇପାରିବ ବୋଲି ଶ୍ରୀକୃଷ୍ଣ ତାଙ୍କୁ ଆଶ୍ୱସ୍ତ କଲେ । ଛୟାନବେ ସହସ୍ର ରାଜାଙ୍କୁ ଜରାସନ୍ଧ ବନ୍ଦୀ କରିଛି । ଶ୍ରୀକୃଷ୍ଣ ଓ ଭୀମ ଜରାସନ୍ଧକୁ ବଧକରି ରାଜାମାନଙ୍କୁ ଉଦ୍ଧାର କଲେ ଓ ରାଜସୂୟ ଯଜ୍ଞକୁ ବରଣ କଲେ । ଚାରିଭାଇ ଚାରିଦିଗକୁ ଯାଇ ଅନ୍ୟ ରାଜାମାନଙ୍କୁ ନିମନ୍ତ୍ରଣ କରିଆଣିଲେ । ଶ୍ରୀକୃଷ୍ଣ ଶବର ରାଜ୍ୟରେ ପ୍ରବେଶ କରି ଯଜ୍ଞପାଇଁ ସମସ୍ତ କାଷ୍ଠ ଓ ପରିବା ଯୋଗାଇବାକୁ ନିର୍ଦ୍ଦେଶ ଦେଲେ । ଦ୍ୱାରକାପୁରରେ ଥିବା ମହାରଣାମାନଙ୍କୁ ଯାଗଶାଳ ନିର୍ମାଣ କରିବାପାଇଁ କହିଲେ, ଲକ୍ଷ ଲକ୍ଷ ପଉଟି ଧାନଦେବାପାଇଁ କୁବେର ପ୍ରତିଶ୍ରୁତି ଦେଲେ । ବରୁଣକୁ କହିଲେ ସମସ୍ତ ପାଣିଦ୍ରବ୍ୟ ଯୋଗାଇବା ପାଇଁ ଓ ମୟଦୈତ୍ୟକୁ କହିଲେ ମାୟାସଭା ନିର୍ମାଣ କରିବାପାଇଁ । ଅତି ସଫଳଭାବରେ ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞ ସମ୍ପୂର୍ଣ୍ଣ ହେଲା ।

ମୁଖ୍ୟ ଦାୟିତ୍ୱମାନ ଶ୍ରୀକୃଷ୍ଣ ଗ୍ରହଣ କରିଥିଲେ ମଧ୍ୟ ଏତେବଡ଼ ଯଜ୍ଞ ସଫଳ ହୋଇପାରିଥିବାରୁ ଯୁଧିଷ୍ଠିରଙ୍କ ହୃଦୟରେ ଅହଂଭାବ ଜାତ ହୋଇଥିଲା । ଶ୍ରୀକୃଷ୍ଣ ତାଙ୍କର ଗର୍ବ ଭାଙ୍ଗିବା ପାଇଁ ତାଙ୍କୁ ନେଇ ଦିଗଭ୍ରମଣ କରିବାପାଇଁ ଗଲେ । ବାଟରେ ଯାଉଁ ଯାଉଁ ଯୁଧିଷ୍ଠିର ଦେଖିଲେ ଖେଟ ଖର୍ବଟ ପର୍ବତ ବନଗିରି ଇତ୍ୟାଦିରେ ସୁବର୍ଣ୍ଣ କୁଢ଼ କୁଢ଼ ପଡ଼ିଅଛି । କେଉଁଠାରେ ମେରୁର ଆକାରରେ ବସ୍ତ୍ର ପଡ଼ିଅଛିତ କେଉଁଠାରେ ହୀରା ନୀଳା ମାଣିକ୍ୟ ପଥର ପଡ଼ିଛି । କେଉଁଠି ଅଷ୍ଟରତ୍ନରେ ପର୍ବତ ଜଡ଼ି ହୋଇଛି ତ କେଉଁଠି ମେରୁପ୍ରାୟ ଉଚ୍ଚରେ ଧାନ୍ୟରାଶି ଜମା ହୋଇଛି । ଯୁଧିଷ୍ଠିର ଆଶ୍ଚର୍ଯ୍ୟ ହୋଇ ଏ ସବୁ ଜିନିଷ ରାସ୍ତାରେ ପଡ଼ିବାର କାରଣ ପଚାରିଲେ । ଶ୍ରୀକୃଷ୍ଣ କହିଲେ, ବାସୁକୀଙ୍କର ଯଜ୍ଞକୁ ବ୍ରାହ୍ମଣମାନେ ଆସିଥିଲେ । ନେଇ ନପାରି ଏ ସବୁ ଦ୍ରବ୍ୟକୁ ଫିଙ୍ଗିଦେଇ ଯାଇଛନ୍ତି । ଯୁଧିଷ୍ଠିର ଆହୁରି ଆଶ୍ଚର୍ଯ୍ୟ ହୋଇ ବିଚାରିଲେ–

ମୋ ଠାରୁ ଯେଡ଼େ ଯଜ୍ଞ କରିଅଛି ସେହି
ଯେତେ ପଡ଼ିଅଛି କେତେ ନେଲେ ବହି
ଯେତେ ଧନଦ୍ରବ୍ୟ ଥିଲା ମୋ ଭଣ୍ଡାର
ତହୁଂ ତିନିଗୁଣେ ଯେ ପଡ଼ିଛି ବାଟର

ଏ ସବୁ ଦେଖି ଯୁଧିଷ୍ଠିରଙ୍କ ଅହଙ୍କାର ଭଗ୍ନ ହେଲା । ଏହା ପ୍ରଭୁ ଭଗବାନଙ୍କର ମାୟା ବୋଲି ସେ ଜାଣି ପାରିଲେ । ଏହି ଅଧ୍ୟାୟରେ ଖୁବ୍ ଚମତ୍କାର ଭାବରେ ଯୁଧିଷ୍ଠିରଙ୍କର ଚରିତ୍ରକୁ ଚିତ୍ରଣ କରାଯାଇଛି । ଯୁଧିଷ୍ଠିର ଓ ଶ୍ରୀକୃଷ୍ଣ ବାସୁକୀଙ୍କ ନିକଟକୁ ଗଲେ । ବାସୁକୀ ଯୁଧିଷ୍ଠିରଙ୍କୁ ନମସ୍କାର କଲା ନାହିଁ, ମାତ୍ର ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ଓଳଗି ହେଲେ । ଯୁଧିଷ୍ଠିରଙ୍କୁ ପାଖକୁ ଡାକି ବାସୁକୀ ପଚାରିଲେ, ତୁମକୁ ଯେ ଶ୍ରୀକୃଷ୍ଣ ଓଳଗି ହେଲେ, ତାଙ୍କୁ ପଚାର କାହା ହସ୍ତରେ ତୁମର ମୁକ୍ତି ରହିଛି ।

ବାରୁଣାକୁ ଫେରି ଆସିବାପରେ ଶ୍ରୀକୃଷ୍ଣଙ୍କ ପାଦତଳେ ଯୁଧିଷ୍ଠିର ପଡ଼ିଗଲେ । ଶ୍ରୀକୃଷ୍ଣ ଆଶ୍ଚର୍ଯ୍ୟ ହୋଇ କହିଲେ, ହେ ଧର୍ମସୁତ । ତୁମେ କାହିଁକି ଅନ୍ୟାୟ ଆଚରଣ କରି ମୋର ଆୟୁଷ ହାନି କଲ ? ଏତେଦିନ ଯାଏ ଏପରି ତ କେବେ କରିନଥିଲ । ଆଜି କ'ଣ ଭୋଳ ହୋଇଗଲ କି ?

ଯୁଧିଷ୍ଠିର କହିଲେ, ମୁଁ ଅଜ୍ଞାନ ପଣରେ ତୋତେ ସେବା ନକରି ଅକାରଣରେ ବଞ୍ଚି ରହିଛି । ଏ ଭବ ସଂସାରରୁ କିପରି ତରିବି ? ଏ ଦେହ ଘେନି କିପରି ସ୍ୱର୍ଗପୁରରେ ପ୍ରବେଶ କରିବି । ହେ ଶ୍ରୀକୃଷ୍ଣ ! ତୁମେ ମୋତେ ଏକଥା ନକହିଲା ପର୍ଯ୍ୟନ୍ତ ମୁଁ ତୁମର ପାଦ ଛାଡ଼ିବି ନାହିଁ । ଏହା ଶୁଣି ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କର ଚରିତ୍ରର କଥା ଅବତରଣା କରିଛନ୍ତି–

ବୋଇଲେ ଭଗବାନ ଶୁଣ ହୋ ଯୁଧିଷ୍ଠିର
ଶତ୍ରୁ ମିତ୍ର ଏକତ୍ୱ ନାହିଁ ତୋ ପରାପର
ଦାନରେ ସାଚା ତୁମ୍ଭେ ଦୟାରେ ସାଗର
ସତ୍ୟବାଦି ମିଥ୍ୟା ନାହିଁ ତୋହର ଦେହର
ଧର୍ମକଥା ବିନୁ ଅଧର୍ମ ତୋର ନାହିଁ
ଯେଥିରେ ଗତି ନାହିଁ କିସ ପଚାରୁ ନୃପସାଇଁ ।

ଶ୍ରୀକୃଷ୍ଣଙ୍କ କଥାରେ ଯୁଧିଷ୍ଠିରଙ୍କର ମନ ବୁଝିଲା ନାହିଁ । ସେ କହିଲେ ଯଦି ତୁମେ ମୋର ଗତିକଥା ନ କହିବ ତେବେ ମୁଁ ବହ୍ନିଜାଳି ଦେହତ୍ୟାଗ କରିବି । ବାଧ୍ୟ ହୋଇ ଶ୍ରୀକୃଷ୍ଣ କହିଲେ, ହେ ଯୁଧିଷ୍ଠିର ! ଚିନ୍ତା ଛାଡ଼ । ଦ୍ରୌପଦୀ ହସ୍ତରେ ତୋହର ଗତି ଅଛି । ଦୟାକରି ଯଦି ତୋତେ ସେ ଛାଡ଼ିଦେବ ତେବେ ତୁ ଦେହ ଘେନି ସ୍ୱର୍ଗକୁ ଯାଇପାରିବୁ । ଦ୍ରୌପଦୀ ନ ଛାଡ଼ିଲେ ତୁ ଯାଇ ପାରିବୁନାହିଁ ।

ଯୁଧିଷ୍ଠିର ଚିନ୍ତାରେ ପଡ଼ିଗଲେ । ଭାବିଲେ, ଦ୍ରୌପଦୀ ଯେତେ଼ ଲୋକ ପୁଣି ମୋର ପତ୍ନୀ ହୋଇଛି । ତାହାହେଲେ ମୁଁ ତାର ସେବା କରିବି । ସେ ବରଦେଲେ ସ୍ୱଦେହରେ ସ୍ୱର୍ଗକୁ ଯାଇପାରିବି । ଏ କଥା ବିଚାରକରି ଯୁଧିଷ୍ଠିର ଅନ୍ତଃପୁରକୁ ଯାଇ ଦ୍ରୌପଦୀଙ୍କର ପାଦତଳେ ପଡ଼ିଗଲେ । ଏହା ଦେଖି ଦ୍ରୌପଦୀ ଆଶ୍ଚର୍ଯ୍ୟ ହୋଇ କହିଲେ, ହେ ସ୍ୱାମୀ ! ମୁଁ ତୁମର ସ୍ତ୍ରୀ । କିଛି କଥା ନ ବିଚାରି ମୋତେ ଓଳଗି ହୋଇ ପଡ଼ିଲ । ଯୁଧିଷ୍ଠିର ଦ୍ରୌପଦୀଙ୍କୁ ଭୈରବୀ, ଚଞ୍ଚଳା, କାଳରାତ୍ରି, ନାରାୟଣୀ, ମଙ୍ଗଳା ଇତ୍ୟାଦି ସମ୍ବୋଧନ କରି ବନ୍ଦନା କଲେ ଓ କହିଲେ, ତୋହର ହସ୍ତରେ ମୋର ଗତିପଥ ରହିଛି ।

ଦ୍ରୌପଦୀ କହିଲେ, ସ୍ଥାବର, ଜଙ୍ଗମ, କୀଟ ଓ ପତଙ୍ଗ ଚାରିଖାନିଙ୍କର ଉଦ୍ଧାରକର୍ତ୍ତା ନାରାୟଣ । ମୁଁ ତ ସ୍ତ୍ରୀ ଅଲକ୍ଷଣୀ, ତୁମ୍ଭର ଦାସୀ ଅଟେ । ମୁଁ ଗତିମୁକ୍ତି କଥା କିପରି ଜାଣିବି ? ଦ୍ରୌପଦୀଙ୍କ ବଚନରେ ଯୁଧିଷ୍ଠିର ମୌନ ହୋଇ ରହିଲେ ଓ ପୁଣି ଶ୍ରୀକୃଷ୍ଣଙ୍କୁ ସବୁକଥା ଜଣାଇଲେ । ଶ୍ରୀକୃଷ୍ଣ ବୁଦ୍ଧିଦେଇ କହିଲେ, ଦ୍ରୌପଦୀ ପାକାଶ୍ରୋଣିତ ସ୍ନାନ କରୁଥିବା ବେଳେ ତାର ବସ୍ତ୍ର ଛାଡ଼ି ନଦେଇ ଯାହା ମାଗିବାର କଥା ମାଗିବ ।

ଯୁଧିଷ୍ଠିର ସେହିପରି କଲେ । ରଜୋବତୀ ହେବାର ସପ୍ତମ ଦିନ ଦ୍ରୌପଦୀ ସ୍ନାନ କରିବାକୁ ଯାଇଥିବା ସମୟରେ ଯୁଧିଷ୍ଠିର ତାଙ୍କୁ ବସନ ଦେଲେ ନାହିଁ । କହିଲେ, ଏଇ ଦେହ ନେଇ ମୁଁ କିପରି ସ୍ୱର୍ଗକୁ ଯିବି ସେହି ବର ମୋତେ ଦିଅ । ଦ୍ରୌପଦୀ ବାଧ ହୋଇ ବର ପ୍ରଦାନ କଲେ । ସ୍ୱର୍ଗକୁ ସ୍ୱଦେହରେ ଯିବାକୁ ଇଚ୍ଛାକରି ଯୁଧିଷ୍ଠିର ଆବଶ୍ୟକ ପଦକ୍ଷେପ ନେଇଥିବାରୁ ପରିଶେଷରେ ସେ ସ୍ୱର୍ଗକୁ ଯିବାପାଇଁ ସକ୍ଷମ ହୋଇପାରିଲେ ।

ସ୍ୱର୍ଗାରୋହଣ କାଳରେ ଯୁଧିଷ୍ଠିର ହିମାଳୟ ଦେଇ ଯାତ୍ରା କରୁଥିବା ସମୟରେ କୌଣସି ଭାଇମାନଙ୍କର କଥା ବୁଝି ନାହାନ୍ତି । ବରଂ ଭାଇମାନେ କିପରି ତଳକୁ ଖସିପଡ଼ନ୍ତୁ ମାନସିକ ଭାବେ ଏହା ଆଶା କରିଛନ୍ତି । ଏପରିକି ଯେଉଁ ପତ୍ନୀ ତାଙ୍କୁ ବରଦାନ କରିଥିଲେ ତାଙ୍କୁ ମଧ୍ୟ ମରିବା ପାଇଁ କହି ଛାଡ଼ି ଚାଲିଯାଇଛନ୍ତି । ଭାରତ ହରିବଂଶରେ ଅଛି-

ଦ୍ରୋପଦି ବୋଇଲେ ମୁଂ ନ ପାରଇଂ ଯାଇ
ଡାକନ୍ତି ସହଦେବ ରହ ରହ ଭାଇ
ହେମ ଲାଗି ଯାଇ ନପାରେ ପାଞ୍ଚାଳି
ଦଣ୍ଡେକ ରହିଲେ ସେ ଉଠିବ ସମ୍ଭାଳି ।
ଯୁଧିଷ୍ଠି ବୋଇଲେ ସେ ଥାଉ ସେହିଠାର
ଯେ ଆସିବ ଆସହୋ ନୋହିଲେ ପଡ଼ି ମର ।

ଭାଇମାନଙ୍କୁ ଅପେକ୍ଷା ନକରିବା ସମ୍ପର୍କରେ ଅବଶ୍ୟ ଭାରତ ହରିବଂଶରେ ଏକ ଯୁକ୍ତିଯୁକ୍ତ କାରଣ ଦର୍ଶାଯାଇଛି । ପାର୍ବତୀଙ୍କ ପ୍ରଶ୍ନର ଉତ୍ତରଦେଇ ତ୍ରିଲୋଚନ କହିଛନ୍ତି-

ସହେଦବ ନକୁଳ ଭିମ ସର୍ବସାଚି
ଯେହାଙ୍କର ଦେହେ ମାୟା ଆବୋରିଣ ଅଛି

ତେଣୁ ଯେକ ପଡ଼ିଲେ ଆରେକ ଶୋକଭର
ନିସ୍କାଞ୍ଚନ ଶରିରସେ ଅଟଇ ଯୁଧିଷ୍ଠିର
X X X X X X
ଆପଣେ ଯେଉଁ ପୁଣ୍ୟ ଅର୍ଜିଣ ସେହୁଥାଇ
ସେହି ପୁଣ୍ୟ ପଥରେ ତାର ସଙ୍ଗ ହୋଇ
ଯୁଧିଷ୍ଠି ଦେବ ପୁଣ୍ୟ ଅର୍ଜିଣ ଯେ ଥିଲେ
ତେଣୁ ହେମ ପଥରେ ଗମନ୍ତି ସେହୁଭଲେ ।

ଏହି ସ୍ୱର୍ଗାରୋହଣ ପର୍ବରେ ଯୁଧିଷ୍ଠିର ଜ୍ଞାତସାରରେ କିପରି ମୃତ୍ୟୁପଥର ଯାତ୍ରୀ କରାଇଛନ୍ତି ଦେଖାଯାଉ । ହିମାଳୟ ପଥରେ ସ୍ୱର୍ଗକୁ ଯିବା ବେଳେ କିଏ ରହିଲେ ଓ କିଏ ଗଲେ ଏକଥା ଜାଣିବା ପାଇଁ ଯୁଧିଷ୍ଠିର ବେଳେ ବେଳେ ପଛକୁ ଚାହିଁ ଦେଖୁଥାନ୍ତି । ଅର୍ଜୁନ, ନକୁଳ, ସହଦେବ ଆଦି ଯାଇ ନପାରି ସବୁ ତଳକୁ ଖସି ପଡ଼ିସାରିଲେଣି । କେବଳ ଭୀମ ଯୁଧିଷ୍ଠିରଙ୍କର ପଛେ ପଛେ ଚାଲିଛି । ପୁଣି ଭୀମ ବାମ ଅଙ୍ଗ ପକାଇ ଚାଲୁଥିବାରୁ ଯାତ୍ରାପଥ ତାକୁ ଏତେ ବାଧୁନାହିଁ । ଯୁଧିଷ୍ଠିର ପଛକୁ ଚାହିଁ ଭୀମ ଯାତ୍ରାର କୌଶଳ ଜାଣିପାରିଲେ । ଯୁଧିଷ୍ଠିର ମନ ମଧ୍ୟରେ  ଚିନ୍ତାକଲେ ଯେ ଏ ଭୀମ ସ୍ୱର୍ଗକୁ ଗଲେ ସେଠାରେ ହୁରିଜୁରି କରିବ । ତାର ଏହି ଗୁଣ ପାଇଁ ଇନ୍ଦ୍ରଦେବ ନିଶ୍ଚୟ କୋପ କରିବେ । ଏକଥା ଚିନ୍ତାକରି ଭୀମକୁ ବୁଦ୍ଧି ଦେଇ କହିଲେ-

ଯେତେ ବୋଲି ଯୁଧିଷ୍ଠି ଡାକିଲେ ଭିମକୁ
କ୍ଷତ୍ରି ହୋଇ କିପାଇଂ ପେଲୁ ତୁ ବାମ ଯେ ଅଙ୍ଗକୁ
ନିର୍ବାଣ କାଳେ ଯେହୁ ନିସତ ହୋଅଇ
ଲଭଇ ଅପଯଶ ପଉରୁଷ ନ ଲଭଇ
ଯେବେ ଡାହାଣ ଅଙ୍ଗ ପେଲି ଭିମ ଆସ
ହେମପଥେ ଗମିଣ ସ୍ୱର୍ଗପୁରେ ପସ ।

ଯୁଧିଷ୍ଠିର ଯାହା ଚାହୁଁଥିଲେ ତାହାହିଁ ଘଟିଲା । ତାଙ୍କର କପଟ ଭୀମ ଜାଣି ନପାରି ଡାହାଣ ଅଙ୍ଗ ପକାଇ ଚାଲିବା କ୍ଷଣି ତଳକୁ ଖସି ପଡ଼ିଲେ । ତଳେ ଅପେକ୍ଷା କରିଥିବା ଦ୍ରୌପଦୀ ଖପର ପାତି ତାଙ୍କର ରୁଧିର ଶୋଷିନେଲେ ।

ସାରଳା ଦାସ ଯୁଧିଷ୍ଠିରଙ୍କ ପରିଜଣେ ଧର୍ମାତ୍ମା ବ୍ୟକ୍ତିଙ୍କୁ କାହିଁକି ଯେ ଯାଯପୁରକୁ ନେଇ ତାଙ୍କୁ ହରି ସାହୁର ଝିଅ ସିହାଣି କନ୍ୟା ସହ ବିବାହ କରାଇଦେଇଥିଲେ ତାହା  ଜାଣିବାର ଉପାୟ ନାହିଁ । ବିଭା ନ ହେବା ପାଇଁ ଯୁଧିଷ୍ଠିର ମଧ୍ୟ ଥରେ ହେଲେ ମନା କଲେ ନାହିଁ । ଯେତେବେଳେ ହରି ସାହୁ କହିଲେ-

ତୁମ୍ଭେ ତ ବିବେକ ଧାର୍ମିକ ଗୁଣଗ୍ରାହି
ଦୁହିତା ଗୋଟେ ଯେବେ ତୁମ୍ଭଙ୍କୁ ବିଭାଦେଇ ।

ହରି ସାହୁର କଥାଶୁଣି ଯୁଧିଷ୍ଠିର ଅର୍ଜୁନକୁ ଚାହିଁଥିଲେ । ଅର୍ଜୁନ ସମ୍ମତି ଜଣାଇବାରୁ ଯୁଧିଷ୍ଠିର ଝିଅଟିକୁ ବିଭାହେବାପାଇଁ ରାଜି ହୋଇଗଲେ ।

ଶୁଣି ହରିସାହୁକୁ ବୋଇଲେ ଯୁଧିଷ୍ଠି
ହୋଇବା ବିଭା ସଜକର ହୋ କନ୍ୟାଗୋଟି
ଶୁଣିଣ ହରି ସାହୁ ହରଷ ହୋଇଲା
ନବର ମଣ୍ଡାଇଣ କନ୍ୟାକୁ ସଜକଲା
ଆପଣେ ଯୁଧିଷ୍ଠି ବରବେଶ ହେଲେ
କନ୍ୟା ସହିତରେ ବେଦିରେ ବସିଲେ ।

ଗନ୍ଧର୍ବ ବେଭାରେ ସେ ହୋଇଲେ ବିଭା
ଝିଅକୁ ହରି ସାହୁ ସମର୍ପଣ ଦେଲା ।

ସାରଳା ଦାସ ଯୁଧିଷ୍ଠିରଙ୍କୁ ସାଧାରଣ ମଣିଷଟିଏ ଭଳି କରି ଗଢ଼ିତୋଳିବାକୁ ଚେଷ୍ଟା କରିଛନ୍ତି । ସେଇଥିପାଇଁ ତାଙ୍କ ନିକଟରେ ଅହଂକାର ଅଛି, ଯେ କୌଣସି ଉପାୟରେ ନିଜକୁ ନେଇ ଉପରକୁ ଯିବାର ଆକାଙ୍‌କ୍ଷା ଅଛି, ଏପରିକି ପରିଣତ ବୟସରେ ବିବାହ ବନ୍ଧନରେ ଆବଦ୍ଧ ହୋଇଯିବା ପାଇଁ ମଧ୍ୟ ସେ କୁଣ୍ଠା ପ୍ରକାଶ କରିନାହାନ୍ତି । ତା ସତ୍ତ୍ୱେ ବି ବିଷୟବସ୍ତୁଠାରୁ ସେ ଅଧିକ ଦୂରକୁ ଯାଇ ପାରିନାହାନ୍ତି । ମୂଳ ସଂସ୍କୃତ ମହାଭାରତରେ ତାଙ୍କୁ ଯେପରି ପୁଣ୍ୟାତ୍ମା ଭାବରେ ଚିତ୍ରଣ କରାଯାଇଛି, ସମସ୍ତ ପ୍ରକାର ମାନବୀୟ ଚରିତ୍ର ଗୁଣ ବିଶିଷ୍ଟ ହୋଇଥିଲେ ମଧ୍ୟ ସାମଗ୍ରିକ ଭାବରେ ସାରଳା ଦାସ ତାଙ୍କୁ ସେହିପରି ଚିତ୍ରଣ କରିଛନ୍ତି ।

**ଅର୍ଜୁନ :** ଭାରତ ହରିବଂଶରେ ଯେଉଁ ଅର୍ଜୁନଙ୍କୁ ଆମେ ପ୍ରତ୍ୟକ୍ଷ କରୁ ଶ୍ରୀକୃଷ୍ଣ କେବଳ ତାଙ୍କର ସଖା ନୁହନ୍ତି, ଶ୍ରୀକୃଷ୍ଣଙ୍କ ଦେହରୁ ସେ ସୃଷ୍ଟି ହୋଇଛନ୍ତି । ଶ୍ରୀକୃଷ୍ଣ କଂସକୁ ବଧ କରିସାରି ମଥୁରାରେ ଥିବା ସମୟରେ ବାରୁଣାବନ୍ତରୁ ଅକ୍ରୂର ସହିତ ଅର୍ଜୁନ ଯାଇଥିଲେ ସେଠାକୁ । ହରି ଓ ଅର୍ଜୁନଙ୍କର ସମାନ ରୂପ ଦେଖି ମଥୁରାର ନରନାରୀମାନେ ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଭାରତ ହରିବଂଶରେ ଅଛି–

ଶ୍ରୀହରି ଅର୍ଜୁନ ଦୁହେଂ ଦିଶନ୍ତି ଯେକସରି
ମଥୁରା ନରନାରି ଦେଖିଣ ଅର୍ଜୁନ
ବୋଇଲେ ଶ୍ରୀକୃଷ୍ଣ  କି ହୋଇଲେ ରୁପଭିନ୍ନ
କେ ବୋଲଇ ଯେକା କୃଷ୍ଣ ହୋଇଲେ ବେନିରୁପ
X X X X X X
କେ ବୋଲଇ ଯେହୁ ଯେକ ବେନି ଅବତାର
ଜନ୍ମିଣ ଅଛନ୍ତି ସେ ନାଶିବେ ମହିଭାର ।

ଏହିଠାରେ ଅର୍ଜୁନଙ୍କର ପୂର୍ବଜନ୍ମ ବୃତ୍ତାନ୍ତ ମଧ୍ୟ ବର୍ଣ୍ଣନା କରାଯାଇଛି । ଦେବାସୁର ନାମକ ଜଣେ ଦୈତ୍ୟ ସୁରାଭାଣ୍ଡରୁ ସୃଷ୍ଟି ହୋଇ ଏତେ ବଳବାନ ହୋଇଯାଇଥିଲା ଯେ କେହି ତାକୁ ସାଧ୍ୟ କରିପାରିଲେ ନାହିଁ । ଇନ୍ଦ୍ର ସୁଧର୍ମା ସଭା ଛାଡ଼ି, ଦଶଦିଗପାଳମାନେ ନିଜ ନିଜ ସ୍ଥାନରୁ, ବ୍ରହ୍ମା ଯଶୋବନ୍ତୀପୁର ଛାଡ଼ି ଦୈତ୍ୟ ଭୟରେ କୁଆଡ଼େ ଲୁଚିଗଲେ । ମହାଦେବ ମଧ୍ୟ ପାତାଳ ବିମ୍ବରେ ଯାଇ ଲୁଚିଲେ । ଭଗବାନ ବିଷ୍ଣୁ ତା ସହିତ ଯୁଦ୍ଧ କରିବା ପାଇଁ ସୁଦର୍ଶନ ଚକ୍ର ଧରି ବାହାରିଗଲେ । ସୁଦର୍ଶନ ଚକ୍ର ମଧ୍ୟ ଦୈତ୍ୟକୁ ନଭେଦି ଉପୁଡ଼ି ପଡିଲା । ଚାରିସହସ୍ର ବରଷ ଯୁଦ୍ଧ କରିଲେ ମଧ୍ୟ ଭଗବାନ ବିଷ୍ଣୁ ଦୈତ୍ୟକୁ ଜିଣିପାରିଲେ ନାହିଁ । ନିରସ୍ତହୋଇ ନୀଳସୁନ୍ଦର ବଟମୂଳରେ ମୌନ ହୋଇ ବସିଥିବା ବେଳେ ତାଙ୍କ ମନରୁ ଏକ ପୁରୁଷ ଜାତ ହେଲା । କାମରୂପ ସଦୃଶ ସେହି ସୁନ୍ଦର ପୁରୁଷଟି କ'ଣ କରିବ ବୋଲି ଭଗବାନଙ୍କୁ ପଚାରିବାରୁ ଶ୍ରୀହରି ତାହାଙ୍କୁ ଦୈତ୍ୟ ସହିତ ଯୁଦ୍ଧ କରିବାକୁ ପଠାଇଦେଲେ । କିଛିଦିନ ଯୁଦ୍ଧକରି ଦେବାସୁର ଦୈତ୍ୟକୁ ସଂହାରକରି ସେହି ପୁରୁଷ ନୀଳସୁନ୍ଦର ବଟ ମୂଳରେ ବସିଥିବା ଶ୍ରୀହରିଙ୍କ ନିକଟକୁ ଫେରିଆସିଲା । ଶ୍ରୀହରି ତାହାର କଲ୍ୟାଣ ବାଞ୍ଛା କରି ତାହାର ବପୁ ଅଜେୟ ହେଉ ବୋଲି ଆଶୀର୍ବାଦ କଲେ । ଅଜଙ୍ଗ ସଦାଶିବ ବୋଲି ତାର ନାମକରଣ ମଧ୍ୟ କରିଦେଲେ । ଅଜଙ୍ଗ ସଦାଶିବ ତ୍ରେତୟା ଯୁଗରେ ଲକ୍ଷ୍ମଣ ଓ ଦ୍ୱାପର ଯୁଗରେ ଅର୍ଜୁନ ହୋଇ ଶ୍ରୀହରିଙ୍କ ପାଶେ ପାଶେ ରହିଥିଲେ । ଅର୍ଜୁନ ଜନ୍ମକାଳରେ ବ୍ୟାସଦେବ କୃଷ୍ଣ ବୋଲି ତାଙ୍କର ନାମକରଣ ମଧ୍ୟ କରିଥିଲେ–

ଅତି ହିଂ ଲକ୍ଷଣରେ ହୋଇଲା ନନ୍ଦନ
ତେଣୁ ତାର ନାମ ହୋଇଲା ଅର୍ଜୁନ
ପଞ୍ଚଦସ କଳା ଅଛଇ ତାର ତହିଂ
ତେଣୁ କୃଷ୍ଣନାମ ବ୍ୟାସମୁନି ଦେଇ ।

ଶ୍ରୀକୃଷ୍ଣଙ୍କର ଷୋହଳ କଳା ଥିଲାବେଳେ ଅର୍ଜୁନ ପଞ୍ଚଦଶ କଳାନେଇ ଜନ୍ମ ଗ୍ରହଣ କରିଥିଲେ । ସାରଳା ଦାସ ଅର୍ଜୁନର ଚରିତ୍ରକୁ ସତ୍ ଓ ସତ୍ୟବାନ୍ ରୂପେ ଗଢ଼ି ତୋଳିଛନ୍ତି । ଯେଉଁ କାର୍ଯ୍ୟକୁ ଅନ୍ୟାୟ ବୋଲି ସେ ଭାବିଛନ୍ତି ତାହା ସେ ସ୍ୱୀକାର କରିବାକୁ ଇଚ୍ଛା ପ୍ରକାଶ କରିନାହାନ୍ତି । ସତ୍ୟ ପାଳନ ଗୁଣଯୋଗୁଁ ତାଙ୍କର ଶ୍ରୀକୃଷ୍ଣ ଓ ବଳରାମଙ୍କ ସହ ଯୁଦ୍ଧ ମଧ୍ୟ ହୋଇଯାଇଛି । ଶତଧନୁନାମକ ଜଣେ ଯାଦବକୁ

ହତ୍ୟା କରିବାପାଇଁ ଶ୍ରୀକୃଷ୍ଣ ଗୋଡ଼ାଇଥିବା ବେଳେ ଶତଧନୁ ଅର୍ଜୁନର ଶରଣ ପଶିଲେ । ଶ୍ରୀକୃଷ୍ଣ ଶବର ରୂପ ଓ ଅର୍ଜୁନ ମହ୍ଲର ରୂପ ଧାରଣ କରିଥିବା ହେତୁ କେହି କାହାକୁ ଚିହ୍ନି ନପାରି ଯୁଦ୍ଧ ଆରମ୍ଭ କରିଦେଲେ । ଅର୍ଜୁନଙ୍କ ମନଭେଦୀ ଶରରେ ଶ୍ରୀକୃଷ୍ଣ ନିଚେଷ୍ଟ ହୋଇ ପଡ଼ିଗଲେ । ଅର୍ଜୁନ ଜାଣିପାରି ମନଦୁଃଖ କଲା ଓ ଜୀବନ୍ୟାସ ଶର ବିନ୍ଧି ଶ୍ରୀକୃଷ୍ଣଙ୍କୁ ଜୀବନଦାନ ଦେଲା ।

ଭାରତ ହରିବଂଶର ସୁଭଦ୍ରା ପ୍ରସଙ୍ଗରେ ଆମେ ଅର୍ଜୁନଙ୍କର ଚରିତ୍ରବତ୍ତାକୁ ଲକ୍ଷ୍ୟ କରିପାରିବା । ଏକଦା ଅର୍ଜୁନ ଦ୍ୱାରିକାରେ ଥିବା ସମୟରେ ନିଜେ ସତ୍ୟଭାମା ସୁଭଦ୍ରାଙ୍କୁ ବେଶ କରାଇ ରାତ୍ରିରେ ଅର୍ଜୁନଙ୍କ ନିକଟକୁ ନେଇଯାଇଥିଲେ ।

ଆଜ୍ଞା ପାଇ ସତ୍ୟା ସୁଭଦ୍ରାକୁ ନେଇ
କବାଟରେ ହସ୍ତ ଦେଇ ଡାକିଲେ ମହାମାଇ
କିପାଇଂ ଡାକୁଅଛ ବୋଲି ବୋଇଲେ ଫାଲଗୁନି
ସତ୍ୟଭାମା ବୋଇଲେ ସୁଭଦ୍ରାକୁ ଆସିଅଛି ଘେନି
ତୁମ୍ଭକୁ ଦେଖିଣ ଯେହୁ ହୋଇଲା କାମାତୁର
କରିବୁଂ ପ୍ରଦାନ ତୋତେ ସୁରତିଂ ଯେବେ କର
ଅର୍ଜୁନ ପ୍ରତିବାଚ ହୋଇଲ ତୁମ୍ଭେ ବାଇ
ମହତ ପ୍ରାଣି କି ସେ ଅନ୍ୟାୟ ଆଚରଇ
ନହରେଂ ପରଧନ ପରନାରି ମୁଂ ନହରିବିଂ
ସତ୍ୟ ଭଗ୍ନ ହୋଇଲେ ମୁଂ କୁମ୍ଭିପାକେ ପଡ଼ିବି

ତହିଁପରଦିନ ସୁଭଦ୍ରାକୁ ନେଇ ପୁଣି ସତ୍ୟଭାମା ଅର୍ଜୁନ ନିକଟକୁ ଯାଇଥିଲେ । ସତ୍ୟଭାମା କହିଲେ, ଏ ତୋ ପଦାର୍ଥ ତୁ ସମ୍ଭାଳ । ଅର୍ଜୁନ କହିଲେ, ସେ ମୋର ପଦାର୍ଥ ନୁହେଁ, ସେ ମୋର ଭଉଣୀ । ଭାରତ ହରିବଂଶରେ ସୁଭଦ୍ରା ଓ ଅର୍ଜୁନଙ୍କର କଥୋପକଥନ ଲକ୍ଷଣୀୟ–

ସୁଭଦ୍ରା ବୋଇଲେ ଧିକ ତୋ ବଳବିର୍ଯ୍ୟ
ଧିକ ତୋର ଦଶନାମ କ୍ଷତ୍ରିପଣ ପହିଜ
ଅର୍ଜୁନ ପ୍ରତିବାଚ ଧିକ ତୋ ଜିବନ
ଧିକ ତୋର ଭାଇ ସେ ଯେ ଶ୍ରୀହରି ବଳରାମ
ବଦୟନ୍ତି ସୁଭଦ୍ରା ସେ ଲଜ୍ୟା କି କାରଣେ
ଛାଡ଼ନ୍ତି ଲଜ୍ୟା ଗମନ୍ତି ବରଜାତି ପଣେ
ଯେଜନ ମାଗିଣ ଖାଇ ତାର ଲଜ୍ୟା ଯେ ନଥାଇ
ଛାଡ଼ଇ ଲଜ୍ୟା ଯେଜନ ପରଘରେଂ ଭୁଜଂଇ
ଚୋରି ନାରି ଛୋଟା ଅସମର୍ଥ ଜନ
ଯେହାଙ୍କର ଲଜ୍ୟା ନଥାଇ ଶୁଣ ହୋ ଅର୍ଜୁନ

ଅର୍ଜୁନ ସୁଭଦ୍ରାଙ୍କୁ ଗ୍ରହଣ କରିବାକୁ ରାଜି ନହେବାରୁ ସତ୍ୟଭାମା ତାଙ୍କୁ ଧରି ଫେରିଗଲେ । ରତିଦେବୀଙ୍କଠାରୁ ମନ୍ତ୍ରଧୂଳି ଦେଇ ପରେ ପୁଣିଥରେ ସୁଭଦ୍ରା ଅର୍ଜୁନଙ୍କ ନିକଟକୁ ଯାଇଥିଲେ । ସୁଭଦ୍ରା କରାଘାତ କରିବା କ୍ଷଣି ଅର୍ଜୁନ କବାଟ ଖୋଲି ବାହାରକୁ ଆସି ତାଙ୍କର କେଶ ଧରି ନେଇ ରାଣ୍ଡୁଣୀ ବୋଲି କହି ଗାଳି ଦେବାକୁ ଲାଗିଲେ । ଅବଶ୍ୟ ସୁଭଦ୍ରା ମନ୍ତ୍ରଧୂଳି ପକାଇଦେବାପରେ ଅର୍ଜୁନ ବଶ ହୋଇଯାଇଥିଲେ ।

ପରନାରୀ ପ୍ରତି ଅର୍ଜୁନଙ୍କର ଯେପରି ଲୋଭ ନଥିଲା ପରଧନ ପ୍ରତି ମଧ୍ୟ ସେହିପରି ଲୋଭ ନଥିଲା । ପିତୃଶ୍ରାଦ୍ଧ ପାଇଁ ଗଣ୍ଡା ମାରିବାକୁ ଯାଇ ଜଳପିଉଥିବା ସମୟରେ ଅର୍ଜୁନ ଗଣ୍ଡାକୁ ବଧ କରିଥିଲେ । ଗଣ୍ଡା ଦେହରେ ପୋଏଳା, ସୁବର୍ଣ୍ଣ, ପଥର ଇତ୍ୟାଦି ଅଳଙ୍କାରମାନ ଦେଖି ଅର୍ଜୁନ ପରଧନ କିପରି ହରିବେ ବୋଲି ବିଚାର କରିଥିଲେ ।

ବିଚାରେ ସର୍ବସାଚି ହରିବିଂ କେମନ୍ତେ ପରଧନ
ଗଣ୍ଡାକୁ ଡାଙ୍କି ଦେଇଣ ବସିଲା ମଉନ ।

ଗଣ୍ଡାର ରକ୍ଷାକର୍ତ୍ତା ନାଗାର୍ଜ୍ଜୁନ ଯେତେବେଳେ ଆସି ଗଣ୍ଡାକୁ କିଏ ବଧ କଲା ବୋଲି ପଚାରିଲା ତ ଅର୍ଜୁନ କହିଲେ-

ଶୁଣିଣ ଅର୍ଜୁନ ଲତାରୁ ଉଠେ ଝାଡ଼ି
ବୋଇଲା ତପସ୍ୱି ତୋର ଅଳଙ୍କାର ନିଅ କାଢ଼ି ।

ସେଠାରେ ପିତା ଓ ପୁତ୍ରଙ୍କ ମଧ୍ୟରେ ଯେଉଁ ଯୁଦ୍ଧ ହୋଇଥିଲା ସାରଳା ଦାସ ତାହାକୁ ଚମତ୍କାର ଭାବରେ ବର୍ଣ୍ଣନା କରିଛନ୍ତି । ଅର୍ଜୁନ ପ୍ରୟୋଗ କରିଥିବା ଶର ପ୍ରଥମେ ନାଗାର୍ଜୁନର କପାଳ ଚୁମ୍ବନ କରିଥିଲା ତ ନାଗାର୍ଜୁନ ପ୍ରେରିତ ଶର ପ୍ରଥମେ ଅର୍ଜୁନର ପାଦସ୍ପର୍ଶ କରିଥିଲା ।

ବିରାଟ ରାଜ୍ୟରେ ଗୁପ୍ତବନବାସ କରିବା କାଳରେ ଅର୍ଜୁନ ବୃହନ୍ନାରୀ ବେଶ ଧାରଣ କରିଥିଲା । ବୃହନ୍ନାରୀ ଭାବରେ ଭୀମ ତାଙ୍କର ପରିଚୟ ଦେଇ କହିଛନ୍ତି-

ଏହୁ ସ୍ତିରି କଥା ସୁଣହେ ରାଜନ
ନାମ ବୃହନାରି ଅପାର ଅଛି ଗୁଣ
ବୃଦ୍ଧା ଯୁବତିକି ଜ୍ଞାନକଥା କହିଂ
ରୋଦନ୍ତି ବାଳକୁ ଖେଳାଇ ନ କାନ୍ଦଇ
ସୋଳସା ଯୁବତି ସଙ୍ଗେ ଖେଳେ ନାଟ
ଅପୟକାଳେ ସାରଥି ବୋଇଲେ ବାହେ ରଥ
ଥୋକାଏକ ଧନୁ ବିଦ୍ୟା ହି ଜାଣଇ
ନୋହେ ସ୍ତିରି ପୁରୁସ ନପୁଂସେକ ଏହିଂ

ଗୁପ୍ତବନବାସ କାଳରେ ବିରାଟ ରାଜ୍ୟରେ ସାରଳା ଦାସ ଅର୍ଜୁନଙ୍କୁ ସ୍ୱତନ୍ତ୍ର ଭାବରେ ଏକ ଚରିତ୍ର କରି ଗଢ଼ି ତୋଳିଛନ୍ତି । ଯେତେବେଳେ ବିରାଟ ରାଜ୍ୟ ପ୍ରତି ବିପଦ ଆସିଛି ସେତେବେଳେ ସେ ତାଙ୍କର ଶୌର୍ଯ୍ୟ ଦେଖାଇବାକୁ ଭୁଲିଯାଇ ନାହାନ୍ତି ।

ଶ୍ରୀମଦ୍‌ଭଗବଦ୍‌ଗୀତାରେ ଯୁଦ୍ଧ କରିବାକୁ ଅର୍ଜୁନ ମନା କରିବା ପରି ଭାରତ ହରିବଂଶରେ ଭୀଷ୍ମଙ୍କର ସେନାପତିତ୍ୱ ସମୟରେ ଭୀଷ୍ମ ଓ ଅନ୍ୟମାନଙ୍କୁ ଦେଖି ଅର୍ଜୁନ ଯୁଦ୍ଧ କରିବାକୁ ଅନିଚ୍ଛା ପ୍ରକାଶ କରିଛନ୍ତି । ଭାରତ ହରିବଂଶରୁ ଏହାର ଉଦାହରଣ ଦେଖାଯାଉ-

ଅର୍ଜୁନ ବୋଇଲା ସେ ଅଟନ୍ତି ପିତାମହ
ବିଦ୍ୟାଗୁରୁ ଦ୍ରୋଣ ଭରଦ୍ୱାଜ ପୁଅ
ସଲ୍ୟ ମାତୁଳ କର୍ଣ୍ଣଭାଇ ଜେଷ୍ଟ
କୁଳବୃଦ୍ଧ ଭୁରିସର୍ବା ଭିଣୋଇ ଜଦ୍ୟରଥ
ଅସ୍ୱସ୍ତମା ଆଦି ସଙ୍କୁନି ଯେତେ ରଥି
ସମସ୍ତେ ବାନ୍ଧବ ସହଦ୍ରୋ ଅଟନ୍ତି
କେମନ୍ତେ ତାହାଙ୍କୁ ବିନ୍ଧିବଇଂ ସର
ବିନ୍ଧିବାକୁ ସକ୍ଷ୍ୟ ନବଳଇ ମୋହର ।

ଅର୍ଜୁନ ସତ୍ୟନିଷ୍ଠ ଭାବରେ ସବୁକାର୍ଯ୍ୟ କରିବାବେଳେ ବିବେକର ଅନୁମୋଦନ ଚାହିଁଛନ୍ତି । ଯେଉଁ କାମ କରିବାପାଇଁ ବିବେକ ତାଙ୍କୁ ଅନୁମୋଦନ କରିନାହିଁ, ଅର୍ଜୁନ ସେ କାମ କରିବାକୁ ଇଚ୍ଛା ପ୍ରକାଶ କରିନାହାନ୍ତି । ଅବଶ୍ୟ ଶ୍ରୀକୃଷ୍ଣ ପରାମର୍ଶ ଅନୁଯାୟୀ ସେ ବହୁ ସ୍ଥାନରେ ବିବେକ ବିରୋଧରେ କାମ କରି ଯାଇଛନ୍ତି ।

ଭୀଷ୍ମଙ୍କ ସହିତ ଯୁଦ୍ଧ କରିବା ପାଇଁ ଯେତେବେଳେ ଶ୍ରୀଖଣ୍ଡୀକୁ ପାଣ୍ଡବମାନଙ୍କର ସେନାପତି କରିବାକୁ ଶ୍ରୀକୃଷ୍ଣ ପରାମର୍ଶ ଦେଇଛନ୍ତି ସେତେବେଳେ ଅର୍ଜୁନ ପ୍ରଥମବ୍ୟକ୍ତି ଯିଏ ତାହାକୁ ସ୍ୱୀକାର କରିବାକୁ କୁଣ୍ଠାବୋଧ କରିଛନ୍ତି ।

ଅର୍ଜୁନ ବୋଇଲା ସେ ନପୁଂସେକ ଜାତି
ତାହାକୁ କେମନ୍ତେ କରିବା ସେନାପତି
ସଂସାରେ ଅପଜସ ହୋଇବ ଆମ୍ଭଙ୍କୁ
କେମନ୍ତେ ସେନାପତି କରିବା ତାହାଙ୍କୁ
ବୋଲିବେ ପାଣ୍ଡବେ ହୋଇଲେ ରଣଙ୍କୁ ନିସତ
ସେନାପତି ଗୋଟାଏ କଲେ ନପୁଂସେକ ।

ସେହିପରି କର୍ଣ୍ଣଙ୍କ ସହିତ ଯୁଦ୍ଧକଲା ବେଳେ ମଧ୍ୟ ଯେତେବେଳେ କର୍ଣ୍ଣର ରଥ ଭୂମିତଳକୁ ଦବିଯାଇଛି କର୍ଣ୍ଣ ସେତେବେଳେ ଯୁଦ୍ଧ ନକରିବାପାଇଁ ଅର୍ଜୁନକୁ ପ୍ରସ୍ତାବ ଦେଇଛନ୍ତି । କର୍ଣ୍ଣଙ୍କର କଥାଶୁଣି ଅର୍ଜୁନ ମଧ୍ୟ ଯୁଦ୍ଧ ବନ୍ଦ କରିଦେଇଛନ୍ତି । ଯୁଦ୍ଧ କାହିଁକି ବନ୍ଦ କଲୁ ବୋଲି ଶ୍ରୀକୃଷ୍ଣ ପଚାରିବାପରେ ଅର୍ଜୁନ କହିଛନ୍ତି–

ଅର୍ଜୁନ ବୋଇଲେ କର୍ଣ୍ଣ ରଥ ଭୁମିରେ ବସିଛଇ
କେମନ୍ତେ ତାହାକୁ ମୁଂ ନାରାଜ ବିନ୍ଧିବଇଂ
ପ୍ରଭୁ ରଥ ଭୁମିଗତ ଦନ୍ତରେ ତିରଣ
କେସ ମୁକଳିତ ଯେ ପସଇ ସରଣ
ଜାଣୁ ଜାଣୁ ଏହାଙ୍କୁ ପୁଣ କେ ନାସଇ
ରୌରୋବ ନର୍କକୁଣ୍ଡରେ ପଡ଼େ ସେହୁ ଜାଇ

ଶ୍ରୀକୃଷ୍ଣ ବୁଝାଇଦେବାପରେ ଅର୍ଜୁନ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଛନ୍ତି । ସାରଳା ଦାସ ଅର୍ଜୁନଙ୍କୁ କୌଣସିଠାରେ ଅମାନବୀୟ ଚିନ୍ତାଧାରାଯୁକ୍ତ ବ୍ୟକ୍ତି ଭାବରେ ଦେଖିନାହାନ୍ତି । ଯୁଦ୍ଧପ୍ରତି ତାଙ୍କର ଆସକ୍ତି ରହିଥିଲେ ମଧ୍ୟ ଯୁଦ୍ଧ କରିବାପାଇଁ ସେ କେବେହେଲେ ଅନୁଚିତ କାର୍ଯ୍ୟ କରିନାହାନ୍ତି । ସାରଳା ଦାସ ଅର୍ଜୁନଙ୍କୁ ଜଣେ ଭଲ ମଣିଷ ଭାବରେ ଗଢ଼ି ତୋଳିବାକୁ ଚେଷ୍ଟା କରିଛନ୍ତି । ଯୁଧିଷ୍ଠିର ଧାର୍ମିକ ବ୍ୟକ୍ତି ହେଲେ ମଧ୍ୟ ତାଙ୍କ ଚରିତ୍ରରେ ଯେମିତି ବେଳେ ବେଳେ ଅନୁଚିତ କ୍ରିୟା ଦେଖାଇ ଦିଆଯାଇଛି, ଅର୍ଜୁନଙ୍କ ଚରିତ୍ରରେ କୌଣସି ସ୍ଥାନରେ ସେହିପରି ଅନୁଚିତ କାର୍ଯ୍ୟ ଦେଖିବାକୁ ମିଳେନାହିଁ ।

**ଧୃତରାଷ୍ଟ୍ର :** ଭାରତ ହରିବଂଶରେ ଧୃତରାଷ୍ଟ୍ରଙ୍କୁ ଖଳବୁଦ୍ଧିବିଶିଷ୍ଟ ବ୍ୟକ୍ତି ଭାବରେ ଚିତ୍ରଣ କରାଯାଇ ନାହିଁ । ହୃଦୟରେ ପୁତ୍ରସ୍ନେହ ରହିଥିଲେ ମଧ୍ୟ ସେ ସବୁବେଳେ ଅନ୍ୟାୟର ବିରୋଧ କରିଆସିଛନ୍ତି । ନିଜପୁତ୍ର ଓ ପଣ୍ଡୁଙ୍କର ପୁତ୍ରମାନଙ୍କ ମଧ୍ୟରେ ମନୋମାଳିନ୍ୟ ରହିଲା ବୋଲି ସେ ପାଣ୍ଡବମାନେ ଶାସନ କରିବା ପାଇଁ ଦୁଇଗୋଟି ଗ୍ରାମ ପ୍ରଦାନ କରିଛନ୍ତି । ନିଜ ପୁତ୍ର ଦୁର୍ଯ୍ୟୋଧନ ସବୁବେଳେ ପାଣ୍ଡବମାନଙ୍କ ସହିତ ଦ୍ୱନ୍ଦ୍ୱ ଲଗାଏ ବୋଲି ଧୃତରାଷ୍ଟ୍ର ଅସନ୍ତୁଷ୍ଟ ହୁଅନ୍ତି ଏବଂ ଏକଥା ମଧ୍ୟ ଅନ୍ୟତ୍ର ପ୍ରକାଶ କରିଦେଇଛନ୍ତି । ମଥୁରାରୁ ଯେତେବେଳେ ଶ୍ରୀକୃଷ୍ଣ ଅକ୍ରୂରକୁ ହସ୍ତିନାକୁ ପଠାଇଛନ୍ତି ସେତେବେଳେ ଅକ୍ରୂର ଯାଇ ପ୍ରଥମେ ଧୃତରାଷ୍ଟ୍ରଙ୍କ ସହ ଭେଟ କରିଛି । ସମାଦର ପୂର୍ବକ ଅକ୍ରୂରଙ୍କୁ ପାଛୋଟି ନେଇ ପାଣ୍ଡବଙ୍କୁ ସେ କାହିଁକି ଅଲଗା ରାଜ୍ୟ ପ୍ରଦାନ କରିଛନ୍ତି ସେ ବିଷୟରେ ସୂଚନା ଦେଇ କହିଛନ୍ତି–

ଅକ୍ରୂର ବଚନେ ଯେ ଧୃତରାଷ୍ଟ୍ର ବୋଲଇ
ପାଞ୍ଚଭାଇଙ୍କି ମୁଂ ଦେଇଛି ନବର ତୋଳାଇ
ଦୃଷ୍ଟ ଦୁର୍ଯୋଧନ କନ୍ଦଳ ଲଗାଇଲା
ତେଣୁ ବାରୁଣାରେଂ ରଖିଲଇଂ ଭଲା ।

ପ୍ରକୃତରେ ପଣ୍ଡୁ ଓ ତାଙ୍କର ପୁତ୍ରମାନଙ୍କ ପ୍ରତି ଧୃତରାଷ୍ଟ୍ରଙ୍କର ଥିଲା ଅମାପ ସ୍ନେହ । ପଣ୍ଡୁଙ୍କର ମୃତ୍ୟୁପରେ କୁନ୍ତୀଙ୍କର ଶୋକ ଦେଖି ସେ ତାଙ୍କୁ ସାନ୍ତ୍ୱନା ଦେଇ କହିଛନ୍ତି–

ଧୃତିରାଷ୍ଟ୍ର ବୋଇଲା କିଛି ଗୋ ନ ବିଚାର
ପୁତ୍ରଙ୍କୁ ସଙ୍ଗେ ଘେନି ଆସ ଯିବା ଗୋ ଘର

ଯୁଧିଷ୍ଠି ଭିମ ପାଥ ନକୁଳ ସହଦେବ ପଞ୍ଚବାଳ
ସ୍ନେହରେ ଧୃତିରାଷ୍ଟ୍ର କଲା ତାଙ୍କୁ କୋଳ

କୁନ୍ତୀଙ୍କୁ ନେଇ ଧୃତରାଷ୍ଟ୍ର ଜୟିନ୍ତା ଗ୍ରାମରେ ରଖିଲେ ତଥା ବ୍ୟାସ ଓ ବିଦୁରଙ୍କର ପରାମର୍ଶରେ ଯୁଧିଷ୍ଠିରଙ୍କୁ ଦୁଇଟି ଗ୍ରାମର ରାଜା କରାଇ ଦେଇଥିଲେ । ସେହି ସତ୍ୟନିଷ୍ଠ ଧୃତରାଷ୍ଟ୍ରଙ୍କ ସମକ୍ଷରେ ପଶାଖେଳରେ ହାରିଯିବା ଯୋଗୁଁ ଦୁର୍ଯ୍ୟୋଧନଙ୍କର ପାଣ୍ଡବମାନଙ୍କୁ ଅପମାନିତ କରିବା ଓ ଦୁଃଶାସନର ଦ୍ରୌପଦୀଙ୍କୁ ବିବସ୍ତ୍ର କରିବା ଧୃତରାଷ୍ଟ୍ରଙ୍କୁ ଦୁଃଖ ଦେଇଥିଲା । ଦ୍ରୌପଦୀଙ୍କ କୋପାନଳରେ ଯେତେବେଳେ କୌରବଙ୍କର ଅନ୍ତପୁରରେ ଅଗ୍ନି ଲାଗିଗଲା ଓ ଦୁର୍ଯ୍ୟୋଧନଙ୍କର ପତ୍ନୀ ଭାନୁମତୀ ଉଲଗ୍ନ ହୋଇ ସଭାମଧ୍ୟକୁ ଦଉଡ଼ି ଆସିଲେ ସେତେବେଳେ ଧୃତରାଷ୍ଟ୍ର ଜାଣିଗଲେ ଯେ ପୁତ୍ରମାନେ ଅନ୍ୟାୟର ପ୍ରତିଫଳ ପାଇଯାଇଛନ୍ତି । ଦ୍ରୌପଦୀଙ୍କ ପରି ଯଜ୍ଞରୁ ଉତ୍ପନ୍ନ ହୋଇଥିବା ଦେବୀଙ୍କୁ ବିବସ୍ତ୍ର କରିବା ପାଇଁ ସଭାମଧ୍ୟକୁ ଆଣିବା ଅତ୍ୟନ୍ତ ଲଜ୍ଜାକର କଥାବୋଲି ଭାବି ଧୃତରାଷ୍ଟ୍ର ଦ୍ରୌପଦୀଙ୍କ ସମ୍ମୁଖକୁ ଯାଇ ତାଙ୍କୁ ବନ୍ଦନା କରିଛନ୍ତି-

ସଜଂୟକୁ ଧୃତିରାଷ୍ଟ୍ର ସଙ୍ଗତେ ଘେନିଲା
ଜିଗ୍ନସେନିଠାରେ ଯାଇ ପ୍ରବେଶ ହୋଇଲା
ବୋଇଲେ ମହାମାଇ ଉପେକ୍ଷା ଦୋଷ କର
ନଜାଣି କୋପକଲେ ମୋହର କୁମର
ତେଣୁ ଯେ ଦଣ୍ଡ ପାଇଲେଣି ଯେବେ
ପୁର ଦହନ ହୋଇଲାନି ତୋହ କୋପେ ଯେବେ
ତୋହର କୋପକୁ ତୁହି ସେ ସଂହର
ମୁହିଂ କିସ ବର୍ଣ୍ଣିବି ମହିମାଂ ତୋହର
ଯତି ସତି ଗୁରୁ ବ୍ରାହ୍ମଣ ଦେବତାନ୍ତ
ଯେହାଙ୍କୁ ଜିଙ୍ଘାସିଲେ ଶିରି ହୁଏ ହତ ।

ଦ୍ରୌପଦୀ ମୁହଁକୁ ଥମ ଥମ କରି କହିଲେ, ହେ ତାତ ! ତୁମ୍ଭର ପୁତ୍ରମାନେ ଅନ୍ୟାୟ ଆଚରିଲେ । ମୋର ସ୍ୱାମୀଙ୍କୁ କପଟପଶାରେ ହରାଇ ମୋତେ ବିବସନ କରିବେ ବୋଲି ସଭାକୁ ନେଇ ଆସିଲେ । ମୋର ଧର୍ମ ଥିଲା ବୋଲି ମୁଁ ବିବସନ ହେଲି ନାହିଁ । ବରଂ ଭାନୁମତୀକୁ ସଭାରେ ଉଲଗ୍ନ ହେବାକୁ ପଡ଼ିଲା । ଦ୍ରୌପଦୀ କହିଲେ, ତାତ ! ମୋର ସ୍ୱାମୀ କପଟ ପଶାରେ ହରାଇଥିବା ସମସ୍ତ ଦ୍ରବ୍ୟ, ରାଜ୍ୟ ଇତ୍ୟାଦିକୁ ମୋତେ ଫେରାଇଦେଲେ ମୋର କୋପ ଶାନ୍ତ ହେବ । ଧୃତରାଷ୍ଟ୍ର ଏହାଶୁଣି ସମସ୍ତ ଦ୍ରବ୍ୟ ପାଣ୍ଡବମାନଙ୍କୁ ଫେରାଇ ଦେଲେ । ଏପରିକି ଦୁଃଶାସନଠାରୁ ମୁକୁଟ ଅଳଙ୍କାରମାନ ଛଡ଼ାଇ ଯୁଧିଷ୍ଠିରଙ୍କୁ ପିନ୍ଧାଇଦେଲେ । ପୁତ୍ର ପ୍ରତି ସ୍ନେହ ଯୋଗୁଁ ଧୃତରାଷ୍ଟ୍ର ବହୁ ସମୟରେ ବିବେକାନୁମୋଦିତ କାର୍ଯ୍ୟ କରି ନପାରୁଥିଲେ ମଧ୍ୟ ଅନ୍ୟାୟ ପ୍ରତି ତାଙ୍କର ଘୃଣା ସବୁବେଳେ ରହି ଆସିଥିଲା । ଧୃତରାଷ୍ଟ୍ର ଜାଣିଥିଲେ ଯେ ଶକୁନି ପିତୃହତ୍ୟାର ପ୍ରତିଶୋଧ ନେବାପାଇଁ କୌରବମାନଙ୍କୁ ଧ୍ୱଂସକରିବାର ଚକ୍ରାନ୍ତ କରୁଛି । ତେଣୁ ସେ ଶକୁନିର ପ୍ରତ୍ୟେକ କାର୍ଯ୍ୟକୁ ବିରୋଧ କରୁଥିଲେ । ମାତ୍ର ଶକୁନି ଦୁର୍ଯ୍ୟୋଧନର ବଳ ପ୍ରାପ୍ତହୋଇ ଧୃତରାଷ୍ଟ୍ରଙ୍କୁ ଅସମ୍ମାନ କରିବାକୁ ପଛାଉ ନଥିଲା ।

**ଦୁର୍ଯ୍ୟୋଧନ :** ଭାରତ ହରିବଂଶରେ ଦୁର୍ଯ୍ୟୋଧନ ଚରିତ୍ରକୁ ଖଳନାୟକ ଭାବରେ ଚିତ୍ରଣ କରାଗଲେ ମଧ୍ୟ ତା ହୃଦୟରେ ଥିବା ମାନବିକତା ବେଳେ ବେଳେ ଉଙ୍କି ମାରିଛି । ପାଣ୍ଡବଭାଇମାନଙ୍କ ପ୍ରତି ଅସହିଷ୍ଣୁ ଭାବ ଥିବା ଯୋଗୁଁ ଦୁର୍ଯ୍ୟୋଧନ ସବୁବେଳେ ପାଣ୍ଡବମାନଙ୍କ ବିରୋଧରେ ସଂଗ୍ରାମ କରିଆସିଛି । ଅନ୍ୟଥା ଅନ୍ୟ କୌଣସିଠାରେ ତାର ଦୁଷ୍ଟ ପ୍ରକୃତି ଜଣାଯାଇନାହିଁ ।

ଦୁର୍ଯ୍ୟୋଧନ ଅତ୍ୟନ୍ତ ମାନୀ ବୋଲି ତାର ନାମ ମାନଗୋବିନ୍ଦ । ସୁତପୁତ୍ର କର୍ଣ୍ଣଙ୍କୁ ସେ ରାଜ୍ୟ ପ୍ରଦାନକରି ନୃପତି କରାଇଥିଲେ । କର୍ଣ୍ଣଙ୍କ ସହିତ ବନ୍ଧୁତ୍ୱ ତାଙ୍କର ଏତେ ଅତୁଟଥିଲା ଯେ ମୃତ୍ୟୁ ପର୍ଯ୍ୟନ୍ତ ତାହା ତୁଟିନଥିଲା । ଦୁର୍ଯ୍ୟୋଧନ ଏପରି ଐଶ୍ୱରିକ ଶକ୍ତିସମ୍ପନ୍ନ ଥିଲେ ଯେ ଭାନୁମତୀଙ୍କର ବିବାହକାଳୀନ ଘଟଣାକୁ ଦେଖିଲେ ତାହା ଜାଣିହୋଇଯିବ । ଭାନୁମତୀ ଥିଲେ କୋଶଳ ଦେଶର ରାଜା

ଭାନୁମତଙ୍କର କନ୍ୟା । କନ୍ୟାର ବିବାହ ପାଇଁ ପିତା ଭାନୁମତ ଯେତେବେଳେ ବର ଖୋଜିବାକୁ ଗଲେ କନ୍ୟା କହିଲା ବିଭା ହେବାପାଇଁ ମୋର ଗୋଟିଏ ସତ୍ୟ ଅଛି । ଏଠାରେ ତୁମ୍ଭେ ଏକ ପଥର ସ୍ଥାପନ କର । ଯେଉଁ ବ୍ୟକ୍ତି ଛୁଇଁବା ମାତ୍ରକେ ସେହି ପଥରଟି ସୁବର୍ଣ୍ଣରେ ପରିଣତ ହେବ ମୁଁ ତାଙ୍କୁଇ ହିଁ ବିବାହ କରିବି । ପୁଣି ତାଙ୍କର ହାତରେ ଶଙ୍ଖ ଓ ପଦ୍ମନିଧି ଥିବ ।

ପଥରଟିଏ ସ୍ଥାପନ କରି ରାଜା ସ୍ୱୟମ୍ବରର ଆୟୋଜନ କଲେ । ଲକ୍ଷେ ରାଜା ଆସି ସ୍ୱୟମ୍ବର ସ୍ଥଳରେ ପହଞ୍ଚିଲେ । ମାତ୍ର କେହି ସ୍ପର୍ଶ କରି ପଥରକୁ ସୁବର୍ଣ୍ଣରେ ପରିଣତ କରିପାରିଲେ ନାହିଁ । ସେହି ସମୟରେ କର୍ଣ୍ଣ ଓ ଦୁର୍ଯ୍ୟୋଧନ ମୃଗୟାକୁ ଯାଇଥିଲେ । ଗୋଳ ଶୁଣି ସେଠାରେ ଉପସ୍ଥିତ ହୋଇ ଦୁର୍ଯ୍ୟୋଧନ ପଥରକୁ ଛୁଇଁ ଦେବାରୁ ତାହା ସୁବର୍ଣ୍ଣରେ ପରିଣତ ହୋଇଗଲା । ତାହା ଦେଖି ଭାନୁମତୀ ଦୁର୍ଯ୍ୟୋଧନଙ୍କର ଗଳାରେ ବରଣମାଳା ପିନ୍ଧାଇ ଦେଲେ ।

ଦୁର୍ଯ୍ୟୋଧନଙ୍କର ଜୀବନର ଶେଷ ସମୟ ଅତ୍ୟନ୍ତ ଦୁଃଖଦାୟକ ଥିଲା । ତଥାପି ବି ସେ ତାଙ୍କର ସ୍ୱାଭିମାନଙ୍କୁ ତ୍ୟାଗ କରିପାରିନଥିଲେ । ଶେଷ ସମୟ ଏତେ ଦୁଃଖକର ଥିଲା ଯେ ସେ ତାଙ୍କର ଏକମାତ୍ର ପୁତ୍ର ଲକ୍ଷ୍ମଣ କୁମାରର ଶବପୃଷ୍ଠରେ ବସି ରକ୍ତନଦୀ ପାର ହୋଇଥିଲେ । ସେହି ଶବଟିକୁ ନିଜର ପୁତ୍ରବୋଲି ଜାଣିପାରି ତାର ଗୁଣ ବାହୁନି ସେ ଅନେକ କାନ୍ଦିଥିଲେ । ନିଜ ଜୀବନ ରକ୍ଷାପାଇଁ ବ୍ୟାସ ସରୋବର ଭିତରେ ପଶିଯିବାକୁ ଭୀଷ୍ମ ତାଙ୍କୁ ପରାମର୍ଶ ଦେଇଥିଲେ ।

ଦୁର୍ଯ୍ୟୋଧନ ବ୍ୟାସ ସରୋବର ମଧ୍ୟରେ ପ୍ରବେଶ କରି ଦେଖିଲେ ସେଠାରେ ରତ୍ନବେଦୀ ଉପରେ ପଲଙ୍କଟିଏ ପଡ଼ିଅଛି । କ୍ଳାନ୍ତ ହୋଇପଡ଼ିଥିବା ଦୁର୍ଯ୍ୟୋଧନ ସେହି ପଲଙ୍କ ଉପରେ ଶୋଇପଡ଼ିଲେ । ସେହି ସମୟରେ ସ୍ୱୟଂ ଲକ୍ଷ୍ମୀ ଯାଇ ତାଙ୍କ ନିକଟରେ ବିଜେକଲେ । କହିଲେ, ରେ କୁରୁସାଇଁ ! ତୁ ଏତେ ସରି ହୋଇଗଲୁ । ମୁଁ ତ ତୋ କାନ୍ଧରେ ସବୁବେଳେ ରହିଥିଲି । କିନ୍ତୁ ତୁ ରୁଧିର ନଦୀରେ ବୁଡ଼ିଗଲାପରେ ମୁଁ ତୋ କାନ୍ଧ ଛାଡ଼ି ଚାଲିଆସିଲି । ଦୁର୍ଯ୍ୟୋଧନଙ୍କ ପ୍ରଶଂସା କରି ଲକ୍ଷ୍ମୀ କହିଲେ-

ଚଉଦ ଭୁବନେ ଭ୍ରମଣ କଲିଂ ଜାଇ
ତୋର ସାଦୃସେ ପୁରୁଷେଂ ନଦେଖିଲି କାହିଂ ।

ଲକ୍ଷ୍ମୀ କହିଲେ, ତୁ ଯଦି ଭୀମର ତିନିରଡ଼ି ସହିପାରିବୁ, ତେବେ ତୋର ଆଉ କିଛି ହେବ ନାହିଁ । ତୁ ପଞ୍ଚୁକଟକରେ ନୃପତି ବୋଲାଇବୁ । ଦୁର୍ଯ୍ୟୋଧନ କହିଲେ, ତିନିରଡ଼ି କାହିଁକି ମୁଁ ଭୀମର ଶହେରଡ଼ି ସହି ପାରିବି । ଏହା କହି ଲକ୍ଷ୍ମୀଙ୍କର ଜାନୁରେ ଶିରଦେଇ ଶୋଇ ପଡ଼ିଲେ ।

ଏପଟେ ଭୀମ ଆଦି ପାଣ୍ଡବମାନେ ଦୁର୍ଯ୍ୟୋଧନଙ୍କୁ ଖୋଜି ଖୋଜି ବ୍ୟାସ ସରୋବର ନିକଟରେ ପହଞ୍ଚିଲେ । ଭୀମ ପ୍ରଥମଥର ସିଂହନାଦ କରିବାରୁ ଦୁର୍ଯ୍ୟୋଧନ ତାହା ସହିଗଲେ । ମାତ୍ର ଦ୍ୱିତୀୟଥର ସିଂହନାଦ କଲାବେଳେ ଆଉ ସହିପାରିଲେ ନାହିଁ । ଶିରଝୁଣି ଶୋଇଥିବା ସ୍ଥାନରୁ ଉଠି ପଡ଼ିଲେ । ଲକ୍ଷ୍ମୀ ତାଙ୍କୁ ଅଟକାଇଲେ । କହିଲେ ଆଉ ଗୋଟିଏ ରଡ଼ି ଯେବେ ସହିଯିବୁ ତେବେ ତୋର ଆଉ ମୃତ୍ୟୁ ହେବନାହିଁ । କିନ୍ତୁ ମାନୀ ଦୁର୍ଯ୍ୟୋଧନ ଲକ୍ଷ୍ମୀଙ୍କର କଥା ଶୁଣିଲେ ନାହିଁ । କହିଲେ-

ଦୁର୍ଯ୍ୟୋଧନ ବୋଇଲା ଗୋ ଏ ଛାର ଅଟେ ଭିମା
ସେହି ଡାକୁଅଛି କରିଣ ଗାରିମା
କ୍ଷତ୍ରି ହୋଇ ଏହା କେମନ୍ତେ ସହି ପାରି
ଏତେ ବୋଲି ଲକ୍ଷ୍ମିକି ପକାଇଲେ ଠେଲି ।

ମାନୀ ଦୁର୍ଯ୍ୟୋଧନ ଗୋଟିଏ ରଡ଼ି ସହି ନପାରିଲେ ବୋଲି ତାଙ୍କୁ ମୃତ୍ୟୁ ମୁଖରେ ପଡ଼ିବାକୁ ପଡ଼ିଲା । ଭୀମଙ୍କ ସହିତ ଯୁଦ୍ଧରେ ତାଙ୍କର ଜାନୁଭଗ୍ନ ହୋଇଥିଲେ ମଧ୍ୟ ମୃତ୍ୟୁ ହୋଇନଥିଲା । ବରଂ ମୃତ୍ୟୁ ହୋଇଥିଲା ଆଉ ଏକ କରୁଣ ଦୃଶ୍ୟ ଅବଲୋକନ କରି । ସେହି କରୁଣ ଦୃଶ୍ୟଟି ହେଲା ସେହି ଜାନୁଭଗ୍ନ ଅବସ୍ଥାରେ ଅଶ୍ୱତ୍ଥାମା ତାଙ୍କୁ ଭେଟି ଯୁଦ୍ଧରେ ସେନାପତି ହେବାକୁ ଇଚ୍ଛା ପ୍ରକାଶ କଲା ଓ ପାଣ୍ଡବମାନଙ୍କୁ ବିନାଶ କରିବ ବୋଲି ପ୍ରତିଶ୍ରୁତି ଦେଲା । ତା କଥାରେ ବିଶ୍ୱାସ ରଖି ଦୁର୍ଯ୍ୟୋଧନ ଅଶ୍ୱତ୍ଥାମାକୁ ସେନାପତି କରିଦେଲେ । ପାଣ୍ଡବମାନଙ୍କର ପାଞ୍ଚପୁତ୍ର ଶୋଇଥିବା ବେଳେ ସେମାନଙ୍କୁ ପାଣ୍ଡବ ବୋଲି ମନେକରି ଅଶ୍ୱତ୍ଥାମା ସେମାନଙ୍କର ମୁଣ୍ଡ

କାଟି ଆଣି ଦୁର୍ଯ୍ୟୋଧନ ସମ୍ମୁଖରେ ଥୋଇଦେଲା । ମୁଣ୍ଡଗୁଡ଼ିକୁ ଦେଖି ପାଣ୍ଡବମାନଙ୍କର ପାଞ୍ଚପୁଅ ବୋଲି ଜାଣିବା ପରେ ଦୁର୍ଯ୍ୟୋଧନ ଦୁଃଖରେ ଅଧୀର ହୋଇ ପଡ଼ିଲା । ଭାରତ ହରିବଂଶରେ ଅଛି-

ମୁଣ୍ଡଭାର ରଖନ୍ତେ ଉଦୟେ ହେଲା ଦିନ
ପଞ୍ଚାଳ କୁମାର ମୁଣ୍ଡ ଚିହ୍ନିଲା ଦୁର୍ଯ୍ୟୋଧନ
ଧିକାରି ଅଶ୍ୱସ୍ତମାକୁ ବହୁତ ଗାଳିଦିଲା
ପୁତ୍ରକୁ ନାସକଲୁ କୁଳତ ବୁଡ଼ିଲା ।
ମୁହିଂ ଚାଣ୍ଡାଳ ତୋତେ କିପାଇଂ ବୋଇଲିଂ
ପୁତ୍ରଙ୍କ ମରଣ ମୁହିଂ ନୟନେ ଦେଖିଲି ।

ଅଶ୍ୱତ୍‌ଥାମା ଲାଜରେ ପଳାଇଗଲା ପରେ ଦୁର୍ଯ୍ୟୋଧନ ଶୋକାଭିଭୂତ ହୋଇ କ'ଣ କଲେ ଭାରତ ହରିବଂଶରେ ତାର କରୁଣଚିତ୍ର ପ୍ରଦାନ କରାଯାଇଛି ।

ଲାଜେଣ ଅସ୍ୱସ୍ତମା ଗଲାକ ପଳାଇ
ମୁଣ୍ଡଗୋଡ଼ାକ ହୃଦରେ ଲଦିଲା କୁରୁସାଇଂ
ରୋଧିର ଝରଝର ବହୁଣ ଅଛଇ
ସମ୍ପୂର୍ଣ୍ଣ ଚନ୍ଦ୍ରମା ପ୍ରାଏ ବଦନ ଦିସଇ
କୁମାରଙ୍କ ବଦନ ଚାହିଂଣ ଦୁର୍ଯୋଧନ
ଡାକିଲା ପିଣ୍ଡରୁ ଛାଡ଼ି ଯାଉ ମୋ ଜିବନ
ଜାଅ ବୋଲି ବୋଲନ୍ତେ ଶରିରୁ ପ୍ରାଣଗଲା ଛାଡ଼ି
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି ।

ଖଳନାୟକ ଭାବରେ ଯାହାକୁ ଚିତ୍ରଣ କରାଯାଇଛି ତାର ହୃଦୟରେ ଥିବା ମାନବୀୟ ଗୁଣଗୁଡ଼ିକୁ ଭାରତ ହରିବଂଶରେ ଯେଉଁପରି ଭାବରେ ପରିସ୍ଫୁଟ କରଯାଇଛି ସେଥିରେ ସାରଳା ଦାସଙ୍କର ମାନବପ୍ରେମ ସହଜରେ ଅନୁମାନ କରିହୁଏ ।

**ଶକୁନି :** ଶକୁନି ଅତ୍ୟନ୍ତ ବୁଦ୍ଧିମାନ ହୋଇଥିବା ଯୋଗୁଁ ଶତ୍ରୁହେଲେ ମଧ୍ୟ ଦୁର୍ଯ୍ୟୋଧନ ତାଙ୍କୁ ମନ୍ତ୍ରୀପଦରେ ବରଣ କରିଥିଲା । ଅଜା ଗାନ୍ଧାରସେନଙ୍କୁ ପଥରର ଗଡ଼ ଦେଖାଇବା ପାଇଁ ଆମନ୍ତ୍ରଣ କରିଆଣିଥିଲା ଦୁର୍ଯ୍ୟୋଧନ । ଅତ୍ୟନ୍ତ ଆନନ୍ଦର ସହିତ କୁଟୁମ୍ବଙ୍କ ଗହଣରେ ଗାନ୍ଧାରସେନ ଆସିଥିଲେ ପଥରର ଗଡ଼ ଦେଖିବାପାଇଁ । ହେଲେ ଦୁର୍ଯ୍ୟୋଧନର କପଟତା ବିଷୟରେ କେହି କିଛି ଜାଣି ନଥିଲେ । ଦୁର୍ଯ୍ୟୋଧନ କୁଟୁମ୍ବ ସହିତ ଗାନ୍ଧାରସେନକୁ ପଥରଗଡ଼ ମଧ୍ୟରେ ବନ୍ଦୀ କଲେ । ଶତାଧିକ ବ୍ୟକ୍ତିଙ୍କ ପାଇଁ ଅଙ୍ଗାୟେକ ଅନ୍ନମାତ୍ର । ଗାନ୍ଧାରସେନ ଭାବିଲେ ଏହି ଅନ୍ନକୁ ଜଣେ କେହି ଖାଇ ବଂଚିବା ଦରକାର, ଯିଏ କି ପ୍ରତିଶୋଧ ନେଇପାରିବ । ଗାନ୍ଧାରସେନ ସମସ୍ତଙ୍କ ସମ୍ମୁଖରେ ପ୍ରସ୍ତାବ ରଖିଥିଲେ ଯେ ଯିଏ ଦୁର୍ଯ୍ୟୋଧନ ବଂଶକୁ ଧ୍ୱଂସ କରିପାରିବ ସେଇ କେବଳ ଏହି ଅନ୍ନକୁ ଖାଇ ବଞ୍ଚିରହୁ । ପିତାଙ୍କର ବଚନରେ ସମସ୍ତେ ତୁନି ହୋଇ ରହିଲେ ମଧ୍ୟ ଶକୁନି ହାତ ଯୋଡ଼ି କହିଥିଲା, ହେ ତାତ ! ଆଜ୍ଞା ଯଦି ଦେବୁ, ତେବେ ମୁଁ ତାର ବଂଶ ଧ୍ୱଂସ କରିପାରିବି । ଗାନ୍ଧାରସେନ ତାଙ୍କର ହାତକୁ କାଟି ପଶାକାଠି କରିବାପାଇଁ ଶକୁନିକୁ ପରାମର୍ଶ ଦେଲେ । ସେହି ପଶାକାଠି ମାଧ୍ୟମରେ ଦୁର୍ଯ୍ୟୋଧନ ଓ ଯୁଧିଷ୍ଠିରଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରାଇ ଦୁର୍ଯ୍ୟୋଧନର ବଂଶନାଶ କରିବାପାଇଁ ସେ ଆଗ୍ରହ ପ୍ରକାଶ କରିଥିଲେ ।

ବୁଦ୍ଧିମାନ ଶକୁନି ବନ୍ଦୀଗୃହ ମଧ୍ୟରୁ ବାହାରି ଆସି କିପରି ଦୁର୍ଯ୍ୟୋଧନଙ୍କର ମନ୍ତ୍ରୀତ୍ୱ ଗ୍ରହଣ କରିଥିଲେ ତାହା ଏକ କୌତୂହଳର ବିଷୟ । ଘଟଣାଟି ହେଲା- ଦୁର୍ଯ୍ୟୋଧନ ଥରେ ପରିସ୍ରା କରୁଥିବା ସମୟରେ ମୂତ୍ରରେ ବରଫଳଟିଏ ଭାସି ଉଠିବାରୁ ସେ ହାସ୍ୟ ସମ୍ବରଣ କରି ପାରିନଥିଲେ । ତାଙ୍କର ହସ ଦେଖି ରାସ୍ତାରେ ଯାଉଥିବା ମୁଦୁସୁଲୀ ମଧ୍ୟ ହସି ଦେଇଥିଲା । ଦୁର୍ଯ୍ୟୋଧନ ତାହାଦେଖି ମୁଦୁସୁଲୀ କାହିଁକି

ହସିଲା ବୋଲି ପଚାରିଲେ । ତୁମେ ହସିବା ଯୋଗୁଁ ମୁଁ ହସିଲି ବୋଲି ମୁଦୁସୁଲୀ ଉତ୍ତର ଦେଇଥିଲା ଏବଂ ସେ କାହିଁକି ହସିଲେ ସେ କଥା ପରଦିନ କହିବି ବୋଲି ମୁଦୁସୁଲି କହିଥିଲା । ଶକୁନି ହିଁ ମୁଦୁସୁଲିକୁ ସଠିକ୍ ଉତ୍ତର ଦେଇ ପାରିଥିଲେ । ତାହା ଜାଣି ଦୁର୍ଯ୍ୟୋଧନ ଶକୁନିର ବୁଦ୍ଧିକୁ ପ୍ରଶଂସା କରି ତାଙ୍କୁ ମନ୍ତ୍ରୀତ୍ୱ ପ୍ରଦାନ କରିଥିଲେ ।

ମନ୍ତ୍ରୀ ଭାବରେ ଦୁର୍ଯ୍ୟୋଧନ ଶକୁନିର ମସ୍ତକରେ ଶାଢ଼ୀ ବାନ୍ଧିବା ପରେ ମଧ୍ୟ ସେ କୁରୁବଂଶକୁ ଧ୍ୱଂସ କରିବା ପ୍ରଚେଷ୍ଟାରେ ଲାଗି ରହିଥିଲା । ତାର ସେହି ସଂଗୋପିତ ଇଚ୍ଛାକୁ ଶ୍ରୀକୃଷ୍ଣ ଓ ଧୃତରାଷ୍ଟ୍ର ଉଭୟ ଜାଣି ପାରିଥିଲେ । ଧୃତରାଷ୍ଟ୍ର ତାକୁ ପିତୃଋଣ ପରିଶୋଧ କରିବାପାଇଁ ମୋର ବଂଶକୁ ଧ୍ୱଂସ କରିଦେବୁ ବୋଲି ବାରମ୍ବାର କହିଲେ ମଧ୍ୟ ଶକୁନି ସେ କଥାକୁ ସ୍ୱୀକାର କରିନାହିଁ । ବରଂ ସେ ଧୃତରାଷ୍ଟ୍ରଙ୍କୁ ଅନ୍ଧବୋଲି କହି ଭର୍ତ୍ସନା କରିଛି । ଯେତେବେଳେ ଧୃତରାଷ୍ଟ୍ର କହିଛନ୍ତି-

କୁଳକ୍ଷୟେ ମନ୍ତ୍ରୀ ସେ ଅଟଇ ସଙ୍କୁନି
ଜାଣିଲିଂ କୁରୁବଂଶ ବୁଡ଼ାଇବ ପୁଣି ।

ସେତେବେଳେ ଶକୁନି ଧୃତରାଷ୍ଟ୍ରଙ୍କୁ ତାଚ୍ଛଲ୍ୟ କରି ପାଣ୍ଡବ ଓ କୌରବ ମଧ୍ୟରେ କିଏ ଶ୍ରେଷ୍ଠ ହେବେ ସେକଥା ବୁଝାଇ ଦେଇଛନ୍ତି । ଶକୁନି କହିଛନ୍ତି- କୌରବ ଥାଟରେ ଯେଉଁ ଭୀଷ୍ମ ଅଛନ୍ତି ସେ ମହୀଭେଦି ଓ ଗୁରଦ୍ରୋଣ ବ୍ୟୂହଭେଦି । ଶଲ୍ୟ ଜଣେ ଉତ୍କୃଷ୍ଟ ରଥୀ ଓ କର୍ଣ୍ଣ ଭାରୋଇ ମଲ୍ଲ । ଅଶ୍ୱତ୍ଥାମା ତ୍ରିଜୀବି, କୃପ ଆଚାର୍ଯ୍ୟ ମଧ୍ୟ ମହାରଥୀ । ପାଣ୍ଡବଙ୍କର ଜୟଶକ୍ତି ଜୟଦ୍ରଥ ହାତରେ ଅଛି । ଅଳମ୍ବୁଷ ଓ ଅଳାୟୁଧମାନେ ଶତ୍ରୁଙ୍କର କାଳ ଅଟନ୍ତି । ସୋମଦତ୍ତ ଓ ବାଲମ୍ଭିକ ଯୁଦ୍ଧ କରିବାରେ ଅନର୍ଗଳ । ଭଗଦତ୍ତର ଅନେକ ମହିମା ରହିଛି । ଭୁରିସର୍ବା କୌରବ ଥାଟର କୁଳବୃଦ୍ଧ । ଦୁଃଶାସନର ଯୁଦ୍ଧକୁ ଇନ୍ଦ୍ର ମଧ୍ୟ ଭୟ କରନ୍ତି । ତା ସମ୍ମୁଖରେ ପାଣ୍ଡବମାନେ ତିଷ୍ଠି ପାରିବେ ନାହିଁ । ତା ସହିତ ଅନେଶତ ଭାଇ ଓ ତ୍ରିଗତ ରାଜାର ସୈନ୍ୟମାନେ ଅଛନ୍ତି । ତୋର ବଡ଼ପୁଅ ଦୁର୍ଯ୍ୟୋଧନର ନାମ ମାନଗୋବିନ୍ଦ । ସେ ପାଷାଣରେ ହାତ ଦେଲେ ତାହା ସୁବର୍ଣ୍ଣ ହୋଇଯାଏ । ତାର ଚାଲିରେ ମହୀରେ ପଦ୍ମଫୁଲ ଫୁଟିଯାଏ । ଲକ୍ଷେ ନୃପତିଙ୍କ ମଧ୍ୟରେ ସେ ଶ୍ରେଷ୍ଠ । ଅପର ପକ୍ଷରେ ପାଣ୍ଡବ ପାଞ୍ଚଭାଇଙ୍କର କେହି ସାହାଭରସା ନାହାନ୍ତି । ସାହା ଏକମାତ୍ର କାହ୍ନୁଆ ଗଉଡ଼, ଯିଏ ଜରାସନ୍ଧର ଭୟରେ ସମୁଦ୍ର ଭିତରେ ଘର କରିରହିଛି । ଶୂଦ୍ରାଣୀ ସୁତ ବିଦୁରର ପାଣ୍ଡବମାନଙ୍କୁ ସହାୟତା କରିବାକୁ ସାମର୍ଥ୍ୟ ନାହିଁ । କୈବର୍ତ୍ତସୁତ ବ୍ୟାସ ପାଣ୍ଡବମାନଙ୍କର ଦୂତ ହେଲେ ମଧ୍ୟ ସେ ଅଧେ ଗ୍ରନ୍ଥ ଛାଡ଼ି ଥୋକାଯେ ପାଠ ପଢ଼ନ୍ତି । ଯୁଧିଷ୍ଠିରଙ୍କୁ ଧନୁର୍ବିଦ୍ୟା ଆସେନାହିଁ । ଭୀମ ଧନୁ ନଧରି ଗଦା ଧରିଥାଏ । ବହୁତ ଶତ୍ରୁ ଦେଖିଲେ ଅର୍ଜୁନ ଡରିଯାଏ । ସହଦେବ ମନ୍ତ୍ରୀ ସବୁ ଜାଣି କିଛି କହେନାହିଁ । ମାଦ୍ରିର ସୁତ ନକୁଳ ଅତି ସୁକୁମାର । ତେଣୁ ଆମ ସହିତ ସମର କରିବାକୁ ପାଣ୍ଡବମାନେ ଭାର୍ଜନ ହେବେନାହିଁ ।

ଧୃତରାଷ୍ଟ୍ର ଶକୁନିକୁ ରାମ ଓ ରାବଣର କାହାଣୀ ଶୁଣାଇ ସେହି ରାମ ଶ୍ରୀକୃଷ୍ଣ ରୂପେ ଜନ୍ମ ହୋଇଛନ୍ତି ବୋଲି କହିବାରୁ ଶକୁନି ଧୃତରାଷ୍ଟ୍ରଙ୍କୁ ଆଉ ଗୋଟିଏ ଗପ କହି ଗପରେ ପିତା ପୁତ୍ରମାନଙ୍କୁ କଷ୍ଟକର ଆଜ୍ଞାଦେବାରୁ ପୁତ୍ରମାନେ କିପରି ରାତିରେ ପିତାକୁ ହାଣି ପକାଇଲେ ତାହା ବର୍ଣ୍ଣନା କରିଛନ୍ତି । କୁରୁବଂଶ ଧ୍ୱଂସ କରିବା ଶକୁନିର ଲକ୍ଷ୍ୟ ହୋଇଥିଲେ ମଧ୍ୟ ସେ ତାହା କାହାରିକୁ ଜାଣିବାକୁ ଦେଇନାହିଁ । ମାତ୍ର ଶ୍ରୀକୃଷ୍ଣଙ୍କ ଆଗରେ ତାର ସମସ୍ତକାର୍ଯ୍ୟ ଧରାପଡ଼ିଯାଇଛି ।

ଶ୍ରୀକୃଷ୍ଣ ବାରୁଣାବନ୍ତରେ ଥିବାବେଳେ ଏକଦା ଶକୁନି ଯାଇ ତାଙ୍କ ନିକଟରେ ଉପସ୍ଥିତ ହୋଇଥିଲା । ପିତୃଋଣ ଶୁଝିବାର ଦାୟିତ୍ୱ ନେଇଛି ବୋଲି ଶ୍ରୀକୃଷ୍ଣ ଶକୁନିକୁ ସଚେତ କରାଇ ଦେଇ କହିଲେ-

ଗୋବିନ୍ଦ ବୋଇଲେ ସଙ୍କୁନିକି ଚାହିଂ
ସୁଝିବୁ ପିତୃଋଣ ସମର ଭିଆଇ ।

ଶକୁନି କିନ୍ତୁ ନିଜର ଦୋଷ ନମାନି ସବୁ ଦୋଷ ଶ୍ରୀକୃଷ୍ଣଙ୍କ ଉପରେ ଗଡ଼ାଇଦେଲା । ଭାରତ ହରିବଂଶରେ ଶ୍ରୀକୃଷ୍ଣ ଓ ଶକୁନିର କଥାବାର୍ତ୍ତା ଲକ୍ଷ୍ୟ କରାଯାଉ ।

ଶକୁନି- ସଙ୍କୁନି ବୋଇଲା ହରି ତୁ ଜେବେ କହିବୁ
କୁରୁ ପାଣ୍ଡେବ ଏକତ୍ୱ କରିବିଂ ବାବୁ

ଜେବେ ତୋ ଇଚ୍ଛା ଅଛି ଭାରଥ ଦେଖିବାକୁ
ବିବାଦ କରାଇବି କୁରୁ ପାଣ୍ଡେବଙ୍କୁ
ଶ୍ରୀକୃଷ୍ଣ- ବଦୟନ୍ତି ଭଗବାନ ସୁଣହେ ସଙ୍କୁନି
ଦୁଷ୍ଟ ନିବାରିତେ ମୁଂ ମହିରେ ଅଛି ଜନ୍ମି
ଦୁଷ୍ଟଙ୍କର ପ୍ରବଳ ଏବେ ହୋଇଲା ମହାଭାରା
ଭାରତ ଭିଆଇ ଉସ୍ୱାସ କରିବା ବସୁନ୍ଧରା ।

ଶକୁନିଙ୍କର ଏକମାତ୍ର ଲକ୍ଷ୍ୟଥିଲା କୁରୁବଂଶକୁ ଧ୍ୱଂସ କରିବା । ଏହା ବ୍ୟତୀତ ନିଜ ଜୀବନକୁ ବଞ୍ଚାଇବା ପାଇଁ ସେ କୌଣସି ଚେଷ୍ଟା କରିନଥିଲେ । ରଣାଙ୍ଗନରେ ସହଦେବଙ୍କ ସହିତ ଯୁଦ୍ଧ କରୁଥିବା ସମୟରେ ସହଦେବ ତାଙ୍କୁ ଆଡ଼ ହୋଇଯିବାପାଇଁ ଯେତେ ଅନୁରୋଧ କରିଥିଲେ ମଧ୍ୟ ଶକୁନି ସେ କଥା ମାନିନଥିଲେ । ସହଦେବଙ୍କୁ ଶକୁନି କି ଉତ୍ତର ଦେଇଥିଲେ ଭାରତ ହରିବଂଶରେ ତାହାର ଚମତ୍କାର ବର୍ଣ୍ଣନା ଦେଖିବାକୁ ମିଳେ ।

ବହୁତ ସମର କରନ୍ତି ବେନିଜନ
ସଙ୍କୁନିକି ବୋଇଲା ମାଦ୍ରିର ନନ୍ଦନ
କଲୁଂ ପିତୃକାର୍ଯ୍ୟ ହସ୍ତିନାରେ ଥାଇ
ମରାଇଲୁ ଦ୍ରିଯୋଧନ ସତାଣ୍ଡବେ ଭାଇ
ଦୃଦକ୍ଷ ଆମ୍ଭଠାରେ ପଶିଲା ସରଣ
ମରିବାକୁ ଏକା ଅଛଇ ଦ୍ରିଯୋଧନ ।
ଯାଆ ଏବେ ବାବୁ ସମର ଆଡ଼େ ହୋଇ
କିପାଇଂ ପରଲାଗି ନାସଜିବୁ ତୁହିଂ
ସଙ୍କୁନି ପ୍ରତିବାଚ ସୁଣରେ ସହଦେବ
ତୋହାର ବାହାକୁ ଆସ ଅଛଇ ମୋହର ସେ ପୁର୍ବ
ମୋହର ଯୋଗୁଂ ସିନା ହୋଇଲା ଭାରତ
ଜେତେକ ସନ୍ୟ ସେନା ହୋଇଲେକ ହତ
ଜେବେ ନ ମରିଣଂ ରଖିବି ଜିବନ
ତାହାଙ୍କ ପାପରେ ମୁଂ ହୋଇବିଂ ଲେପନ
ତେଣୁ ମୁଂ ରଣଜଙ୍ଗେ ନାସିବି ସ୍ୱରିର
ଗତ ଜନ୍ମକୁ ସେ ନଥିବ ପାପଭାର
(ଭାରତ ହରିବଂଶ : ପ୍ରସଙ୍ଗ : ସଲ୍ୟ ଓ ଶକୁନିର ମୃତ୍ୟୁ)

ସମାଜରେ ଶକୁନିକୁ ଜଣେ କୁଚକ୍ରୀ ବୋଲି ଚିହ୍ନିତ କରାଯାଉଥିଲେ ମଧ୍ୟ ସାରଳା ଦାସ ତାହାଙ୍କୁ ଏତେ ଖରାପ ବୋଲି ବିବେଚନା କରିନାହାନ୍ତି । କେବଳ ଶକୁନି କାହିଁକି କୌଣସି ଚରିତ୍ରକୁ ସେ ଖଳବ୍ୟକ୍ତି ଭାବରେ ବର୍ଣ୍ଣନା କରିନାହାନ୍ତି । ଯାହାଙ୍କୁ ଆମେ ଖଳବ୍ୟକ୍ତି ବୋଲି ମନେ କରିଛୁ ତା ଭିତରେ ଜଣେ ସାଧାରଣ ମଣିଷର ଭାବନାକୁ ସେ ସଂଯୋଜିତ କରିଦେଇଛନ୍ତି । ତେଣୁ ସାରଳା ଦାସ କହିବାକୁ ଚାହିଁଛନ୍ତି ଯେ ଦୁନିଆରେ କୌଣସି ବ୍ୟକ୍ତି ଖରାପ ନୁହନ୍ତି । ଅନ୍ଧାରର ଅପର ପାର୍ଶ୍ୱରେ ଆଲୋକ ଥିଲା ପରି ଯାହାକୁ ଆମେ ଖରାପ ବୋଲି ଭାବୁଛୁ ତାର ମଧ୍ୟ ଅନେକ ଭଲଗୁଣ ରହିଛି ।

ଭାରତ ହରିବଂଶର ଚରିତ୍ରଗୁଡ଼ିକୁ ଚିତ୍ରଣ କରିବାରେ ସାରଳା ଦାସଙ୍କର ବୈଶିଷ୍ଟ୍ୟ ଆମେ କେତେଗୋଟି ଚରିତ୍ରର ଚିତ୍ରଣକୁ ଲକ୍ଷ୍ୟ କରି ବୁଝିପାରିଲୁ । ଶ୍ରୀକୃଷ୍ଣଙ୍କୁ ସେ ବେଳେବେଳେ ଦେବତା ଭାବରେ ଚିତ୍ରଣ କରିଥିଲେ ମଧ୍ୟ ବେଳେବେଳେ ତାଙ୍କର କାର୍ଯ୍ୟକଳାପ ସାମାନ୍ୟ ମନୁଷ୍ୟ ପରି କରାଯାଇଛି । ରାକ୍ଷସମାନଙ୍କୁ ହତ୍ୟା କରିବା ସମୟରେ କିମ୍ବା ରାଧା ଓ ଗୋପୀମାନଙ୍କ ସହ କେଳି କରିବା ସମୟରେ ତାଙ୍କର ଦେବତ୍ୱ ପ୍ରକାଶିତ ହୋଇଛି । ମାତ୍ର ପାରିବାରିକ କଥୋପକଥନ କାଳରେ ସେ ଜଣେ ସାଧାରଣ ମଣିଷ ପରି ଚିତ୍ରିତ ହୋଇଛନ୍ତି । କପଟବୁଦ୍ଧି ଯୋଗୁଁ ସେ ନିଜେ ସବୁବେଳେ ଜିତିଛନ୍ତି ଓ ତାଙ୍କର ଆପଣାର ବ୍ୟକ୍ତିକୁ ଜିତାଇଛନ୍ତି । ମାତ୍ର ନିଜ ଲୋକର ଅହଂକାରକୁ ମଧ୍ୟ ସେ ସହ୍ୟ କରି ପାରିନାହାନ୍ତି । ସେ ଯୁଧିଷ୍ଠିରଙ୍କର ଏପରିକି ଅର୍ଜୁନର ଅହଂକାରକୁ ମଧ୍ୟ ଭାଙ୍ଗିଛନ୍ତି । ପାଣ୍ଡବମାନଙ୍କର ଯେତେବେଳେ ବିପଦ ପଡ଼ିଛି ସେତେବେଳେ ସେ ତାଙ୍କ ନିକଟରେ ପହଞ୍ଚି କୌଶଳକ୍ରମେ ତାଙ୍କୁ ରକ୍ଷା କରିଛନ୍ତି । ଯୁଦ୍ଧରେ ଅସ୍ତ୍ର ଧାରଣ ନକରି ମଧ୍ୟ ସେ ବଡ଼ ଯୋଦ୍ଧା । ଭାରତ ହରିବଂଶରେ ସେ ଗରୁଡ଼ ଓ ସୁଦର୍ଶନ ଚକ୍ରର ବହୁଳ ବ୍ୟବହାର କରିଛନ୍ତି । ତାଙ୍କୁ ଭଗବାନରୂପେ ପ୍ରତିପାଦିତ କରିବାପାଇଁ ଗରୁଡ଼ ଓ ସୁଦର୍ଶନ ଚକ୍ରର ବ୍ୟବହାର କରାଯାଇଛି । ତାଙ୍କ ମାୟାଜାଲରୁ କେହି ରକ୍ଷା ପାଇ ଯାଇପାରିନାହିଁ । ଏପରିକି ନାରଦ ମଧ୍ୟ ତାଙ୍କ ମାୟାରୁ ବର୍ତ୍ତି ନପାରି ଜଣେ ନିମ୍ନଜାତିର ସ୍ତ୍ରୀ ସହିତ ସଂସାର ବାନ୍ଧିଛି । ଭାରତ ହରିବଂଶକୁ ସମ୍ପୂର୍ଣ୍ଣ ଭାବରେ ଶ୍ରୀକୃଷ୍ଣ ଆବୋରି ବସିଛନ୍ତି । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କରି ଇଚ୍ଛାରେ ହିଁ ସଂସାର ପରିଚାଳିତ ହୋଇଛି ।

ନାରୀମାନଙ୍କୁ ସର୍ବଦା ସମ୍ମାନ ଦେଉଥିଲେ ମଧ୍ୟ ସେମାନଙ୍କର ଚରିତ୍ରକୁ ପ୍ରକାଶ କରିବାରେ ସେ କେବେ ହେଳା କରିନାହାନ୍ତି । ଦ୍ରୌପଦୀଙ୍କୁ ସେ ରାଢୁଣୀ ବୋଲି କୁହାଇଛନ୍ତି । ଦ୍ରୌପଦୀ ଏବଂ ହିଡ଼ିମ୍ବିକୀଙ୍କର କଳହ ମଧ୍ୟ କୌତୂହଳପ୍ରଦ । ଯେତେବେଳେ ରାଜସୂୟ ଯଜ୍ଞକୁ ଆସିବାପାଇଁ ଭୀମ ତାଙ୍କର ପୁତ୍ର ଘଟୋତ୍କଚକୁ ସ୍ମରଣ କଲେ ସେତେବେଳେ ହିଡ଼ିମ୍ବିକୀର ପୁତ୍ର ଘଟୋତ୍କଚ ଯଜ୍ଞକୁ ଆସିବାପାଇଁ ବାହାରିଲେ । ଆସିବାବେଳେ ହିଡିମ୍ବିକୀ ତାଙ୍କୁ ଚେତାଇ ଦେଇ କହିଲେ, ଯେବେ ଯଜ୍ଞକୁ ଯିବୁ ତେବେ ପଞ୍ଚୁଭ୍ରତା ସ୍ତ୍ରୀ ଦ୍ରୌପଦୀକୁ ନମସ୍କାର କରିବୁ ନାହିଁ । ଘଟୋତ୍କଚର ପଛେ ପଛେ ହିଡ଼ିମ୍ବିକୀ ମଧ୍ୟ ଯଜ୍ଞନିକଟକୁ ଆସିଲେ । ଯୁଧିଷ୍ଠିରଙ୍କୁ ନମସ୍କାର କଲେ ମଧ୍ୟ ଘଟୋତ୍କଚ ଦ୍ରୌପଦୀକୁ ନମସ୍କାର କଲେ ନାହିଁ । ଦ୍ରୌପଦୀ କ୍ରୋଧିତ ହୋଇ ଘଟୋତ୍କଚକୁ ଶାପ୍ୟ ଦେଇ କହିଲେ, ବିନା ସମରରେ ତୋର ଶିରଚ୍ଛେଦନ ହେଉ । ପୁତ୍ର ପ୍ରତି ଶାପ୍ୟ ପ୍ରଦାନ ହୋଇଥିବାର ଦେଖି ହିଡ଼ିମ୍ବିକୀ ମଧ୍ୟ ଚୁପ୍ ବସି ରହିଲା ନହିଁ । ସେ ଦ୍ରୋପଦୀଙ୍କୁ ଶାପ ପ୍ରଦାନ କରି କହିଲା, ତୋର ପୁତ୍ରମାନେ ଶୋଇଥିବା ସମୟରେ ନାଶ ଯାଆନ୍ତୁ । ସାରଳା ମହାଭାରତରେ ଯେପରି ଅଧିକ ଭାବରେ ନାରୀନାରୀ ମଧ୍ୟରେ କଳହକୁ ଦେଖାଇ ଦିଆଯାଇଛି ଭାରତ ହରିବଂଶରେ ଏତେ ଅଧିକ ଓ ବିସ୍ତୃତ ରୂପେ ତାହା ନଥିଲେ ମଧ୍ୟ କିଞ୍ଚିତ ଭାବରେ ତାହା ପରିଦୃଷ୍ଟ ହୋଇଥାଏ ।

ଭାରତ ହରିବଂଶ ସମ୍ପାଦନାର ମୁଖବନ୍ଧରେ ଭାରତ ହରିବଂଶର ପରିଚୟ, ସାରଳା ଦାସଙ୍କ ଜନ୍ମ ପ୍ରସଙ୍ଗ, ସଂପାଦନାର ବିବରଣ. ପରବର୍ତ୍ତୀ କବିଙ୍କ ଉପରେ ଏହି ଗ୍ରନ୍ଥର ପ୍ରଭାବ, ଭାରତ ହରିବଂଶର ବୈଶିଷ୍ଟ୍ୟ ଓ କେତେକ ଚରିତ୍ର ସମ୍ପର୍କରେ ଆଲୋଚନା କରାଗଲା । କାବ୍ୟର ପଦମାନ ଲୋକସାହିତ୍ୟ ପରି ସରଳ ଭାବରେ ଗତିଶୀଳ ହୋଇଥିବା ଯୋଗୁଁ ଏହି ମୁଖବନ୍ଧକୁ ସରଳଭାବରେ ରଚନା କରିବାର ପ୍ରୟାସ କରାଯାଇଛି । କାବ୍ୟଟିକୁ ପଢ଼ିଲେ ସେଥିରୁ ସ୍ୱତଃସ୍ଫୂର୍ତ୍ତ ଭାବରେ ରସାସ୍ୱାଦନ କରିହେଉଥିବାରୁ ଗ୍ରନ୍ଥ ସମ୍ପର୍କରେ ଅଧିକ ଆଲୋଚନା କରିବାର ଆବଶ୍ୟକତା ଉପଲବ୍ଧି କରିହେଲା ନାହିଁ । ସାରଳା ଦାସ ଏହି ଗ୍ରନ୍ଥକୁ ରଚନା କରିଥିଲେ ବୋଲି କେତେକ ପ୍ରମାଣ ଏଥିରେ ପ୍ରଦାନ କରାଯାଇଥିଲେ ମଧ୍ୟ ସାରଳା ଦାସ ଯେ ଏହାକୁ ରଚନା କରିଛନ୍ତି ଗ୍ରନ୍ଥ ପାଠମାତ୍ରେ ହିଁ ଏହା ଜ୍ଞାତ ହୋଇପାରିବ । ତେଣୁ ଏହି ଗ୍ରନ୍ଥକୁ ଓଡ଼ିଆ ସାହିତ୍ୟର ଇତିହାସରେ ଏକ ଅମୂଲ୍ୟ ସମ୍ପଦ ବୋଲି କଳନା କରିବାକୁ ପଡ଼ିବ ।

ପୋଥିଟିର ଶୁଦ୍ଧପାଠ କରିବା ଏକ କଷ୍ଟଦାୟକ ପଦକ୍ଷେପ । ପୁଣି ଏକଟୁଆ ଏହି କାର୍ଯ୍ୟକୁ କରିବା ଅସମ୍ଭବ ପରି ମନେ ହୋଇପାରେ । ମୁଁ ଭାରତ ହରିବଂଶର ଶୁଦ୍ଧପାଠ କରିବାପାଇଁ ଚାରିଗୋଟି ପୋଥିରୁ ସହାୟତା ନେଇଛି । ପୋଥିକୁ ଉତାରିବା, ପଢ଼ିବା, ଡିଟିପି କରିବା ଏବଂ ଡିଟିପି ହୋଇ ସାରିବା ପରେ ପ୍ରୁଫ୍ ସଂଶୋଧନ କରିବା ଅତ୍ୟନ୍ତ ଦୁରୂହ କାର୍ଯ୍ୟ । ଡ. ହେମମାଳା ଦାଶ ମୋତେ ଏଥିରେ ପୂର୍ଣ୍ଣ ଭାବରେ ସହଯୋଗ କରିବା ହେତୁ କାର୍ଯ୍ୟଟି ଯଥାଶୀଘ୍ର ସଂପୂର୍ଣ୍ଣ ହୋଇପାରିଲା । ଡ. ଦାଶଙ୍କର ପୋଥି ସମ୍ପାଦନାରେ ଅନୁଭୂତି ଥିବା ଯୋଗୁଁ ସେ ମୋତେ ଏଥିରେ ସହାୟତା କରିପାରିଲେ । ପୋଥିକୁ ଖାତାକୁ ଉତାରିବା, ପ୍ରୁଫ୍ ସଂଶୋଧନ କରିବା ଓ ଡିଟିପି

ନିକଟରେ ବସି ସଠିକ୍ ଭାବରେ ଲିପିବଦ୍ଧ କରିବାରେ ତାଙ୍କର ଭୂମିକା ରହିଛି । ସେଇଥିପାଇଁ ଏହି ଗ୍ରନ୍ଥ ସଂପାଦନାର ଅର୍ଦ୍ଧାଧିକ ଶ୍ରେୟ ଡ. ଦାଶଙ୍କୁ ପ୍ରଦାନ କରୁଛି । ମୋର ଅଗ୍ରଜା ଅରୁଣା ରାୟ ଏହି ମୁଖବନ୍ଧକୁ ସଂଶୋଧନ କରିବାରେ ତାଙ୍କର ଶ୍ରମ ଓ ଧୀଷଣା ପ୍ରୟୋଗ କରିଥିବାରୁ ତାଙ୍କୁ ମୁଁ ମୋର କୃତଜ୍ଞତା ପ୍ରଦାନ କରୁଛି ।

ସାରଳା ଦାସ ଥିଲେ ଜଣେ ପ୍ରଭାବଶାଳୀ କବି । ତାଙ୍କ ପଦମାନ ପାଠ କଲାବେଳେ ପାଠକର ହୃଦୟରେ ଏକ ଆନନ୍ଦର ପ୍ରବାହ ପ୍ରବାହିତ ହୋଇଥାଏ । ଅର୍ଦ୍ଧ ସହସ୍ରାଧିକ ବର୍ଷ ଅତିକ୍ରାନ୍ତ ହୋଇଗଲା ପରେ ମଧ୍ୟ ତାଙ୍କର ପଦମାନ ନିତ୍ୟ ନୂତନ ଲାଗିଥାଏ । ଜଣାଯାଏ ଯେମିତି ଏଇ କିଛିଦିନ ପୂର୍ବରୁ ଘଟଣାଟିଏ ଘଟିଯାଇଛି । ରଚନାରେ ସାର୍ବକାଳିକତା ଥିବା ଯୋଗୁଁ ମଣିଷର ହୃଦୟରେ ସାରସ୍ୱତ ଚେତନା ସାମାନ୍ୟତମ ଭାବରେ ତିଷ୍ଠି ରହିଥିବା ଯାଏଁ ସାରଳା ଦାସ ବଞ୍ଚିରହିଥିବେ ।

**ଲକ୍ଷ୍ମୀକାନ୍ତ ତ୍ରିପାଠୀ**

# ସୂଚୀପତ୍ର

# ସାରଳାଙ୍କ ଏକବିଂଶ ଅବତାର

ଜୟତୁ ସାରଦା ଦେବି ମହିମା କିସୋରିଂ
ଜଗତ ତାରେଣି ମା ଗୋ ଅଟୁ ସାକାୟେରି[୨] ॥୧॥
ଜୟତୁ ବାଗ୍‌ଦେବି[୩] ଜୟତୁ ମହାମାଇ
ତୋହର ସୁଦୟାରେ ପଦ ଅର୍ଥ ଦିସଇ ॥୨॥
ଜୟତୁ ମହାମାଇ ସଙ୍କର ଘରଣି
ନାସିଲୁ ଦନୁଜ[୪] ବଳ ତୁ ରଖିଲୁ ଧରଣି[୫] ॥୩॥
ମହିସାସୁର ସେ ଯେ ଜନ୍ମିଲା ମେଦନିର
ବଢ଼ିଲାକ ମହାବଳି ଅତି ହିଂ ବଳିୟାର ॥୪॥
ଦେବେ ଅଜୟେ ସେ ପୁରୁଷେଂ ବଧ ନୋହି
ବ୍ରହ୍ମାଙ୍କୁ ସେବିଣ ଯେ ଏମନ୍ତ ବର ପାଇ ॥୫॥
ତାହାର ଭୟେ ଦେବେ ରହି ନ ପାରିଲେ ସ୍ୱର୍ଗପୁରେ
ଆତଙ୍ଗେ ତୋତେ ଚିନ୍ତା କଲେକ ବେଦବରେ ॥୬॥
ଆଦ୍ୟରେ ଥିଲୁ ତୁହି ଆଦିସକ୍ତି ଧରି
ବ୍ରହ୍ମା ବିଷ୍ଣୁ ସଙ୍କର ଯେ ତୋ ଠାରୁଂ ଅବତରି ॥୭॥
ଦୁତିୟେ ବ୍ରହ୍ମା ବୋଲେ ଅଗ୍ନିରୁଂ ଜାତହୋଇଂ
ଦୁର୍ଗା ଅବତାରେଂ ପୁଣି ହୋଇଲୁ ମହାମାଇଂ ॥୮॥
ଅପୁର୍ବ ମହନି ତୁ ହୋଇଲୁ ଅବତାର
ମଇସାସୁର ସଙ୍ଗେ ତୁ କରିଲୁ ମହାସମର ॥୯॥
ଚଣ୍ଡ ମୁଣ୍ଡ ପ୍ରଚଣ୍ଡ ବେନ୍ତାଳି ସଙ୍ଗେ ଘେନି
ପୁଣି ହୋଇଲୁ ତୁ ଭଇରୋବି ମହାତ୍ମଣି ॥୧୦॥
ମହିସାସୁର ସଙ୍ଗେ ଚଉରାସି କାଠି ସନ୍ୟ ଥିଲେ
ରକ୍ତ ଟୋପାକରୁ କୋଟି କୋଟି ସନ୍ୟ[୬] ଜାତ ହେଲେ ॥୧୧॥

୧ । ଗ ପୋଥି – ଏହି ଧାଡ଼ି ପୂର୍ବରୁ ଅଧିକ ଅଛି –
ବନ୍ଦଇ ଯେ ଗଣପତି ଗଉରିନନ୍ଦନ
କପୋଳେ ସୋଭିତ ଜାର ଶ୍ରୀଖଣ୍ଡି ଚନ୍ଦନ
ଅଯୁନି ସମ୍ଭୁତେ ଜାକୁ ଦୁର୍ଗା କରେ ଜାତ
ସେ ଦେବ ଚରଣେ ଲୋଟୁ ମାଥ
୨ । ଖ ପୋଥି –ରଣବାହୁ ବାନା ଉଡ଼ି
୨ । ଗ ପୋଥି –ରଣରାହୁ ବାନା ଉଡ଼ି
୩ । ଗ ପୋଥି – ବାକ୍ୟଦେବୀ
୪ । ଖ ପୋଥି –ଦତ୍ୟ
୪ । ଗ ପୋଥି –ଦୈତ୍ୟ
୫ । ଖ ଓ ଗ ପୋଥି – ମେଦନି
୬ । ଗ ପୋଥି – ଦୈତ୍ୟ

ସମର କରିଣ ତୁ ବିସ୍ମୟେ ହୋଇଲୁ
ମନରୁ ସେ ଯୋଗ୍ନିଗଣ ତୁହି ସେ ଜାତକଲୁଂ[୧] ॥୧୨॥
ସାତକୋଟି ଚାମଡ଼ା ତେର କୋଟି ବେନ୍ତାଳି
ସତର କୋଟି ଡାକେଣି ହୋଇଲେ ତହିଂ ମେଳି ॥୧୩॥
ଖାଇଲେ ରକ୍ତ ମାଂସ ମାଇଲେ ସର୍ବ ଯେ ସଇନି
ସବଦ ଗରୁତର କମ୍ପଇ ମେଦନି ॥୧୪॥
ସିଂହ ଉପରେ ବସି ମା ଗୋ କଲୁ ଅନେକ ସମର
ବହୁତ ଯୁଦ୍ଧ କଲା ମା ଗୋ ମହିସାସୁର ବିର ॥୧୫॥
ବହୁତ କଠୋରେ ତୁ ଯେ ନ ପାରିଲୁ ମାରି
ଉଲଗ୍ନ ହୋଇ ମା ଗୋ ପକାଇ ଦେଲୁ ସାଢ଼ି ॥୧୬॥
ଆଗୋଚର କର୍ମ ତୁ କଲୁ ଗୋ ମହାମାୟା
ଅସୁରକୁ ଦିସିଲା ତୋହର ନିଜ କାୟା ॥୧୭॥
ଭବ ଦେଖି ଭ୍ରମଣ ହୋଇଲା ତାର ଚିତ୍ତ
ଅନଙ୍ଗ ସରରେ[୨] ସେ ହୋଇଲା ଅସକତ ॥୧୮॥
ହସ୍ତରେ ସେ ଧରିଣ ନ ପାରିଲା ଧନୁସର
ତୁହି ତାହାକୁ ମାଇଲୁ ଗୋ ତ୍ରିସୁଳ ଧରି କର ॥୧୯॥
ବାଜିଣ ତ୍ରିସୁଳ ଯେ ହୃଦୟ ଫାଟିଗଲା
ସଗଡ଼ ସ୍ତମ୍ଭ ପ୍ରମାଣେ ରୋଧିର ବହିଲା ॥୨୦॥
ହସ୍ତରେ ଖପର ଘେନିଲୁ ସୁଭ୍ରକେସି
ଖପରପାତି ମା ଗୋ ରୁଧିର ଗର୍ଭକୁ ଦେଲୁ କ୍ଷେପି ॥୨୧॥
ମହିସାସୁର ରୋଧିର ଯଦି ଭୁମିରେ[୩] ପଡ଼ନ୍ତା
ସଚରାଚର ପୃଥି କି ସମ୍ଭାଳି ହୁଅନ୍ତା[୪] ॥୨୨॥
ସଂସାର ରକ୍ଷା ନିମନ୍ତେ ରୋଧିର ସମ୍ଭାଳିଲୁ
ସପ୍ତସିନ୍ଧୁ ରୋଧିର ଗର୍ଭରେ ପୁରୋଇଲୁ[୫] ॥୨୩॥
ତୋହର ଭବ ଦେଖି ଦତ୍ୟ ନାସ ଗଲା
ଚଉଦ ବ୍ରହ୍ମାଣ୍ଡ ଯାକ ଉସ୍ୱାସ ହୋଇଲା ॥୨୪॥
ସ୍ତିରି ହୋଇ ଯହୁଂ ଦେଖାଇଲୁ ଭବ
ଭବାନି ନାମ ତେଣୁ ଦିଲେକ ଦଇବ ॥୨୫॥
ଦେବଙ୍କର ହିତେ ତୁ ଉଲଗ୍ନ ହୋଇଲୁ
ଦେବତାଙ୍କୁ ଖାଇତେ ପୁଣି ହିଂ ଗୋଡ଼ାଇଲୁ ॥୨୬॥
ତୁହି ଗୋଡ଼ାବନ୍ତେ ଦେବତା ପଳାଇଲେ
ବ୍ରହ୍ମା ଯାଇ ମେରୁ ଗୁମ୍ଫାରେ ଲୁଚିଲେ ॥୨୭॥

୧ । ଖ ପୋଥି –ମାନ ଜନ୍ମାଇଲୁ
୨ । ଖ ଓ ଗ ପୋଥି –ପୀଡ଼ାରେ
୩ । ଖ ଓ ଗ ପୋଥି –ଭୂମିରେ
୪ । ଖ ପୋଥି – ରହନ୍ତା
୫ । ଗ ପୋଥି – ଖେପିଲୁ

ଦିଗପାଳେ ଛାଡ଼ିଣ ପଳାଇଲେ ଦିଗମାନ
ତୋହର ଆଗରେ କେହି ନୋହିଲେ ଭାର୍ଜନ ॥୨୮॥
ଯେକା ସଙ୍କର ସେ ନ ପାରିଲେ ପଳାଇ
ତୋହର ରଡ଼ି ସୁଣି ରହିଲେ ଉଭା[୧] ହୋଇ ॥୨୯॥
ନିର୍ମାଖି ଜନପ୍ରାୟେ ସିବ ରହିଲେ ଆଗର
ତାହାଙ୍କୁ ଦେଖି ଦୟା ବସିଲା ହୃଦୟର ॥୩୦॥
ବୋଇଲୁ ମାଗ ବର ଜଟିଆ[୨] ସିବ ଯୋଗି
ପଳାଇ ନ ପାରି ଯେ ରହିଲୁ ଭୁମି ଭାଗି[୩] ॥୩୧॥
ସଙ୍କର ବୋଇଲେ ତୋ ରୁପକୁ ଦେଖି ମୁହିଂ
ହୋଇଲି ଅଧଉର୍ଯ୍ୟ ରହିଲି ଉଭା ହୋଇ ॥୩୨॥
ଖାଇଲେ ଖାଅ ତୁହି ପୁରାଅ ଗର୍ଭର
ନୋହିଲେ ଦୟା କରି କରସି ମୋତେ କୋଳ ॥୩୩॥
ତୋହର ଜାନୁପରେ ବସାଅ ମୋତେ ନେଇ
ଜନ୍ମ ଜନ୍ମାନ୍ତରେ ତୋର ପତି ହୋଇବଇଂ[୪] ॥୩୪॥
ତୁହି ଯେବେ ମୋତେ ଗୋ ରଖସି ସରଣ
ଯେମନ୍ତେ ବୋଲି ଯହୁଂ ବୋଇଲେ ତ୍ରିଲୋଚନ ॥୩୫॥
ସୁଣିଣ ମହାମାୟା ହରସ ହୋଇଲେ
ବର ପଣେ ସିବଙ୍କୁ ବରିଣ କୋଳ କଲେ ॥୩୬॥
ତୁମ୍ଭର ସଙ୍ଗତେ ସିବ କଲେକ ରମଣ
ସୁରତି ରସରେ ବଞ୍ଚାଇଲୁ କାଳ ଦିନ ॥୩୭॥
ଚତୁର୍ଥେ ଚଣ୍ଡି ରୁପେ ହୋଇଲୁ ଅବତାର
ପୁଣି ଜନ୍ମିଲୁ ଦକ୍ଷ ପ୍ରଜାପତି ଘର ॥୩୮॥
ପଞ୍ଚମ ଅବତାର ତୋହର ହୋଇଲା
ଦକ୍ଷ ପ୍ରଜାପତି ଯେ ପାର୍ବତି ନାମ ଦିଲା ॥୩୯॥
ଶିବଙ୍କୁ ବିଭା ହୋଇ ଅନେକ ଭୋଗ କଲୁ
ଦକ୍ଷ ଯଜ୍ଞରେ ପଡ଼ିଣ ଗୁପତ[୫] ତହିଂ ହେଲୁଂ ॥୪୦॥
ହେମବନ୍ତ ଘରେ ତୁ ଜନ୍ମିଲୁ ମହାପ୍ରାଣି
ପାଇଲୁ ଓମା ନାମ ସେବିଲୁ ସୁଳପାଣି ॥୪୧॥
ସପ୍ତମେ ସରସ୍ୱତି ଅବତାର ହୋଇ
ବାଉନ କୋଟି ବିଦ୍ୟା ଭଣ୍ଡାର ତୋର ତହିଂ ॥୪୨॥

୧ । ଖ ଓ ଗ ପୋଥି -ଠିଆ
୨ । ଖ ପୋଥି -ଜଡ଼ିଆ
୨ । ଗ ପୋଥି -ଜଟାୟା
୩ । ଖ ଓ ଗ ପୋଥି - ପୃଥ୍ୱୀ ଲାଗି
୪ । ଖ ଓ ଗ ପୋଥି - ମୁହିଂ ହୋଇ
୫ । ଖ ଓ ଗ ପୋଥି -ଗୋପ୍ୟ

ତୋହର ଦୟାରେ ଯେ ମୁର୍ଖ କବି ହୋଇ
ଲେଖନ୍ତେ ପଦ ସାହାସ୍ର ଦେଉଥାଉ କହି ॥୪୩
ଅଷ୍ଟମ ଅବତାରେଂ ତୁ ଯେ ହୋଇଲୁ ମଙ୍ଗଳା
ସର୍ବଜନମାନଙ୍କୁ କରୁ ତୁ ସଂଖୋଳା ॥୪୪॥
ଅନେକ ପ୍ରକାରେ ପୁଜା ତୁମ୍ଭଙ୍କୁ ଦେଇ[୧]
ପାଣି ପଣା ପିଷ୍ଟକ ଆବର ଘୃତ ଦହି ॥୪୫॥
ନରବଳି ଭୋଜନ ଯେ ଛାଗଳ ମଇଂସି
ସମସ୍ତ ଦ୍ରବ୍ୟ ଭକ୍ଷି ବଦନ ହୃଷ୍ଟ ଦିସି ॥୪୬॥
ନବମ ଅବତାରେ ହୋଇଲୁ କାଳିକା
ସନ୍ଥକୁ ନିସ୍ତାରିଣ ଦୁଷ୍ଟକୁ କରୁ ଇଛା ॥୪୭॥
ଦସମେ ନନ୍ଦ ଘରେ ଜନ୍ମିଲୁ ଯାଇ ଦେବି
କଂସ କଚାଡ଼ନ୍ତେ ସୁନ୍ୟରେ ଗଲୁ ଖେପି[୨] ॥୪୮॥
ଯେକାଦସରେ ଦୃପଦ ଘରେ ଅବତରି
ଦ୍ରୋପତି ନାମ ବହି ପଞ୍ଚୁ ପାଣ୍ଡବେଙ୍କୁ ବରି ॥୪୯॥
ଭାରଥ ଯୁଦ୍ଧରେ ସଂହାରିଲୁ ସୈନ୍ୟ
ସାତତାଳ ରୋଧିର ବୁହାଇଲୁ ପୁଣ ॥୫୦॥
ଯୋଜନେକ ଦିର୍ଘ ଛଡ଼ ଯୋଜନ ବହିଗଲା
ତେତେକ ରୋଧିର ତୋର ପେଟକୁ[୩] ନ ଅଣ୍ଟିଲା ॥୫୧॥
ଦହିମହି[୪] ହୋଇଲୁ ନ ପୁରିଲା ପେଟ
ଦ୍ୱାଦସେ ଜଗି ବସିଲୁ ଦସାସ୍ୱନି ଘାଟ ॥୫୨॥
ତ୍ରୟୋଦସ ଅବତାରେ ତୁ ହୋଇଲୁ ବ୍ରହ୍ମାୟେଣି
ରୁଦ୍ରାୟେଣି ନାମ ତୋର ଚତୁର୍ଦ୍ଦସେ ବଖାଣି ॥୫୩॥
ପଞ୍ଚଦସ ଅବତାରେ ଅଦିତି ରାଜମାତା
ଷୋଡ଼ସ ଅବତାରେ ମାଗୋ ହୋଇଲୁ ସ୍ଥାନମାତା[୫] ॥୫୪॥
ସପ୍ତଦସରେ ବୋଲାଉ ସିଦ୍ଧେସ୍ୱରି ନାମ
କାମାକ୍ଷି ବୋଲିଣ ସେ ବୋଲନ୍ତି ଅଷ୍ଟାଦସମ ॥୫୫॥
ଉନବିଂସ ଅବତାରେ ନାମ ତୋ ହିଙ୍ଗୁଳା
ବିଂସ ଅବତାରେ ଶ୍ରୀଚଣ୍ଡି ସାରୋଳା ॥୫୬॥
ଯେକବିଂସ ଅବତାରେ ଯକ୍ଷେଂପୁରେ[୬] ବାସି
ମୁହିଂ ଦିନ ପାମର ତୁମ୍ଭର ପାଦରେ ସରଣ ପସି ॥୫୭॥

୧ । ଖ ଓ ଗ ପୋଥି -ପୂଜାମାନେ ପାଇ
୨ । ଖ ଓ ଗ ପୋଥି - ଖେଦି
୩ । ଖ ଓ ଗ ପୋଥି - ଗର୍ଭକୁ
୪ । ଖ ଓ ଗ ପୋଥି -ଦହମହ
୫ । ଖ ପୋଥି -କାଳମାତା
୫ । ଗ ପୋଥି -ଥାନମାତା
୬ । ଗ ପୋଥି -ଯକ୍ଷପୁର

ଯେକବିଂସ[୧] ଅବତାର କଲି ମୁଂ ବର୍ଣ୍ଣନ
ଆଉ କହିବାକୁ ଯେ ନୋହଇ ଭାର୍ଜନ ॥୫୮॥
ଅନନ୍ତ ମହିମା ତୋର କେ କହୁ ଅନ୍ତ କରି
କ୍ଷଣକେ ଅନୁ ଆନ ହେଉ ଯେ ସାକାମ୍ୱେରି[୨] ॥୫୯॥
ଠିକ ଠିକ କରି ଆର୍ଦ୍ଧନା କଲି ତୋତେ
କିଞ୍ଚିତେ ଦୟା ମୋତେ କର ଗୋ ଜଗନ୍ନାତେ ॥୬୦॥
ଯେବଣ ସାହାସ୍ର ମୁଂ ଲେଖିତେ କରେ ବାଞ୍ଛା
ତାହା କହି ଦେବ ମୋତେ ହୃଦରେ କରି ବସା ॥୬୧॥
ପଦେକ ଲେଖନ୍ତେ ଆର ପଦେକ ଦିସିବ
ଅଗୋଚର[୩] କଥା ମୋତେ ଗୋଚର ହୋଇବ ॥୬୨॥
ଶ୍ରୀଚଣ୍ଡି ସାରୋଳା ଚରଣକୁ ମୋର ଆସ
ସରଣ ମାଗଇ ସାରୋଳା ଚଣ୍ଡି ଦାସ[୪] ॥୬୩॥

## ଗଣେଶଙ୍କ ଜନ୍ମବୃତ୍ତାନ୍ତ

ଜୟତୁ ଗଣନାଥ ଗିରିଜାର ସୁତ
ବିନା ରେତରେ ତୁ ହୋଇଅଛୁ ଜାତ ॥୬୪॥
କପିଳାର ନନ୍ଦିନି କି ନାସିଲେ ଯହୁଂ ହର
ଗୋ ହତ୍ୟା ଦୋସ ଗୋଟି ପାଇଲେ ଦିଗାମ୍ୱର ॥୬୫॥
ପାର୍ବତି ମୁଖ ଚାହିଂ ବୋଇଲେ ଦିଗବାସ
କରିବି ଯାଇ ତପ ଯାଉଛି ବନବାସ ॥୬୬॥
ହଟକେସ୍ୱର ପୁରେ ପ୍ରବେସ ହେଲେ ଯାଇଂ
ତହିଂରେ ଗଙ୍ଗାଦେବି ଉଜାଣି ବହଇ ॥୬୭॥
କୋଟି କୋଟି ତିର୍ଥ ଯହିଂ ମିଳିଣ ହୋନ୍ତି ଭାବ[୫]
କୋଟିୟେ ଗୋହତ୍ୟା ଦୋସ ଯହିଂରେ କ୍ଷୟେ ଯିବ[୬] ॥୬୮॥
ତହିଂରେ ବସିଣ ଯେ ଆରମ୍ଭିଲେ ତପ
ଯୋଗ ଲୟେ କରି ବସନ୍ତେ ବହିଗଲା ଦସ ସହସ୍ର ବରସ ॥୬୯॥
ଯେଣେ ଯେ ପାର୍ବତି ପାକାପ୍ରସନ୍ନ ହୋଇଲେ
ସପ୍ତମ ଦିନେ ସୁଦ୍ଧ ସ୍ନାହାନ ଦେବି କଲେ ॥୭୦॥
ସ୍ନାହାନ ସାରି ଦେବି ପିନ୍ଧିଲେ ଝିନ ବାସ
ନାନା ଅଳଙ୍କାର ସେ ମଣ୍ଡିଲେ ଅଙ୍ଗ ବାସ ॥୭୧॥

୧ । ଖ ଓ ଗ ପୋଥି – ଯେକୋଇସ
୨ । ଖ ପୋଥି – ସାକମ୍ୱରୀ
୩ । ଖ ପୋଥି – ଅପେକ୍ଷାରେ
୪ । ଦୁଇଧାଡ଼ି ଖ ଓ ଗ ପୋଥିରେ ନାହିଁ
୫ । ଖ ପୋଥି –ହୁଅନ୍ତି ଏକଠାବ
୫ । ଗ ପୋଥି –ହୋଅନ୍ତିଂ ମେଳଭାବ
୬ । ଖ ପୋଥି –ନାଶ ଯିବ

ବିଚିତ୍ର ମନ୍ଦିରେ ସେ ବସିଲେ ଦେବି ଯାଇ
ମଳୟ ପବନ[୧] ସେ ଯେ ବସନ୍ତ[୨] ବହଇ ॥୭୨॥
କାରଣ୍ଡ ସାରସ ହଂସ ଆବର ସୁକସାରି
କୁହୁ କୁହୁ କରିଣ କୋକିଳ ରାବ କରି ॥୭୩॥
ଆନନ୍ଦେ କୋଳାହଳ[୩] ହୁଅନ୍ତି ମୃଗ ଯୁଥ
ସକଳ ଜିବେ ତହିଂ ହୁଅନ୍ତି ଉନମତ ॥୭୪॥
କାମସର ପିଡ଼ା କଲା ପାର୍ବତି ଅଙ୍ଗର
ଦେବି ଯେ ଚିନ୍ତାକଲେ ଭୋ ଦେବ ଇଶ୍ୱର[୪] ॥୭୫॥
ଶିବଙ୍କୁ ଚିନ୍ତା କରନ୍ତେ କାମ ପିଡ଼ା କଲା
ଯୋନିରୁ ରଜ ସ୍ଖଳି ହୋଇ[୫] ଭୁମିରେ ପଡ଼ିଲା ॥୭୬॥
ରଜ ସ୍ଖଳିତ[୬] ଯହୁଂ ପଡ଼ିଲା ମହିୟାଳି
ହୃଦରେ ବିଚାରିଣ ଆକଟିଲେ ବାଳି ॥୭୭॥
ନଳଣି ପତ୍ରେ ଯେହ୍ନେ ନିର ନ ଲାଗଇ
ସେହି ରୁପେ ସେ ରହିଲା ଭୁମିରେ ଠୁଳ ହୋଇ ॥୭୮॥
ଇଶ୍ୱରଙ୍କ ବିଭୁତି ପକାଇଲେ ତହିଂର
ସେହିକ୍ଷଣି ଜନ୍ମ ଯେ ହୋଇଲା କୁମର ॥୭୯॥
ମାତାର ମୁଖ ଚାହିଂ ବୋଲଇ ନନ୍ଦନ
କ୍ଷୁଧା ଲାଗଇ ମାତା ଦିଅ କ୍ଷିର ପାନ ॥୮୦॥
ମାତା ବୋଇଲେ ମୋ ସ୍ତନରେ ନାହିଁ କ୍ଷିର
ଜନନି ବୋଇଲେ ତୁ ଅମୃତ ପାନକର[୭] ॥୮୧॥
ଅମୃତ ଭକ୍ଷି ପୁତ୍ର ହୋଇଲା ମହାବଳ
ଦକ୍ଷିଣ ଦ୍ୱାରେ ଯାଇ ହୋଇଲା ଦ୍ୱାରପାଳ ॥୮୨॥

## ଶିବଙ୍କଦ୍ୱାରା ଗଣେଶଙ୍କ ଶିରଚ୍ଛେଦ

ଯେଥୁଂ ଅନ୍ୟନ୍ତରେ ସେ ଯେ ଗଲା କିଛୁ ଦିନ
ତପସିଦ୍ଧ କରିଣ ଗମିଲେ ତ୍ରିଲୋଚନ ॥୮୩॥
ଦକ୍ଷିଣ ସିଂହଦ୍ୱାରେ ପ୍ରବେସ ସଙ୍କର
ସେ ଦ୍ୱାରେ ଦ୍ୱାରପାଳ ପାର୍ବତିକୁମର ॥୮୪॥

୧ । ଖ ଓ ଗ ପୋଥି – ବସନ୍ତ
୨ । ଖ ଓ ଗ ପୋଥି – ପବନ
୩ । ଖ ଓ ଗ ପୋଥି – ଗେଲ ଗେଲ
୪ । ଖ ଓ ଗ ପୋଥି – ହେ ପ୍ରଭୁ ଶଙ୍କର
୫ । ଖ ପୋଥି –ଗଳି ହୋଇ
୬ । ଖ ପୋଥି –ସ୍ଖଳି
୭ । ଖ ଓ ଗ ପୋଥି –କର ତୁ ଆହାର

ବଦୟନ୍ତି ସଦାସିବ ଦ୍ୱାର ଛାଡ଼ ତୁହି
ସୁଣିଣ ଦ୍ୱାରପାଳ[୧] ଯେ ବସିଲା ନିଠିଆଇ ॥୮୫॥
ବୋଇଲା ଯୋଗି ଭିକ୍ଷାସି ତୁହି ଛାର
ଆଜ୍ଞା ନାହିଂ କେମନ୍ତେ ଛାଡ଼ିବି ତୋତେ ଦ୍ୱାର[୨] ॥୮୬॥
ଯିସ ତୁ ମାଗିବୁ ଦେବଇଂ ସେହିଠାଇଂ
ତୋହର ହସ୍ତରେ ତ ଥାଳ ତୁମ୍ବା ନାହିଂ ॥୮୭॥
କମଣ୍ଡଳ ଗୋଟିକରେ କେତେ ନେବୁ ଧନ
ଯେଥିକି ଭିତରେ ପସିତେ କରୁ ମନ ॥୮୮॥
ତାହା ସୁଣି ସଦାସିବ ହୋଇଲେ କୋପ ଭର
କାଳସର୍ପ ଜାଣିକି ଦଂସିଣ କି ଗଲାକ[୩] ଶରୀର ॥୮୯॥
ଅନଙ୍ଗ[୪] ଧନୁ ଧରି ଗୁଣରେ ସର ସନ୍ଧିଂ
ବୋଇଲେ ପଳାଅରେ ପକାଇବି ବିନ୍ଧିଂ ॥୯୦॥
ଦେଖିଣ ଦୁର୍ଗାସୁତ ଉଠିଲା ସିରଝୁଣି
ତୁହି ଡରାଇଲେ କିରେ ଡରଇଂ ମୁହିଂ ପୁଣି ॥୯୧॥
ଯେତେ ବୋଲି କୁମର ଯେ ଧଇଲା ଧନୁସର
ପିତା ପୁତ୍ର ଦୁହିଙ୍କର[୫] ହୋଇଲା ସମର ॥୯୨॥
ତିକ୍ଷମୁନା ସର ଯେ ବିନ୍ଧିଲେ ସଙ୍କର
ସୁଚିମୁନା ଶରେ ତାହା ଛେଦିଲା କୁମର ॥୯୩॥
କୋପେଣ କୁମର ଯେ ବିନ୍ଧିଲା ସରଗୋଟି
ଇଶ୍ୱର ପାଦତଳେ ସରଯାଇ[୬] ଲୋଟି ॥୯୪॥
ସଙ୍କର ବିନ୍ଧିଲେ ଯେ ନାରାଜ ଗରୁ ଟାଣ
କୁମରର ମୁଖେ ସେ ଦେଲାକ ଚୁମ୍ବନ ॥୯୫॥
ପୁଣି ଇଶ୍ୱର ଯେ ବିନ୍ଧିଲେ ମହାକାଳ
କୁମର ବିନ୍ଧିଲା ଯେ ନାରାଜ କାଳାନଳ ॥୯୬॥
ଯହୁଂ ସେ ତେଢ଼େକ ସର ଗଲାକ ହାଦେଂ ଫାଟି
କୋପିତ ହୋଇଲେ ସେ ଯେ ଦେଖିଲେ ଦୃଜଟି ॥୯୭॥
ହସ୍ତରେ ତ୍ରିସୁଳ ଯେ ଧଇଲେ ତ୍ରିପୁରାରି
ପୁତ୍ର ସିର କାଟିଲେ ବେନି ଖଣ୍ଡ କରି ॥୯୮॥

୧ । ଖ ପୋଥି - ନନ୍ଦନ
୧ । ଗ ପୋଥି -ଗଣନାଥ
୨ । ଖ ଓ ଗ ପୋଥି - ପସିବୁ ଭିତର
୩ । ଖ ପୋଥି -ଜାଣିକି ଦଂସିଲା
୩ । ଗ ପୋଥି - ବୋଇଲେ ଆଜ ତୋର କାଟିବଇଂ ଶିର
୪ । ଗ ପୋଥି - ଅଜଙ୍ଗ
୫ । ଖ ପୋଥି -ପୁତ୍ରଙ୍କର ତହିଂ
୬ । ଖ ପୋଥି - ସିର ଯାଇ

ବେନି ଖଣ୍ଡ କରନ୍ତେ ସେଂ[୧] ପଡ଼ିଲା କୁମର
ଭିତରେ ପ୍ରବେସ ଯେ ହୋଇଲେ ସଙ୍କର[୨] ॥୯୯॥
ପାର୍ବତି ଆଗେ ଯାଇ କହିଲେ ଦାସିମାନେ
ବିଜେ କଲେ ତୁମ୍ଭର ସ୍ୱାମି ଗୋ ତ୍ରିଲୋଚନେ ॥୧୦୦॥
ସୁଣିଣ ସାକାମ୍ଭେରି ହରସ ହୋଇଲେ
ଅର୍ଘ୍ୟ ସ୍ଥାଳି[୩] ଦେବି ଗୋଟାଏ ହସ୍ତରେ ଘେନିଲେ ॥୧୦୧॥
ସିବଙ୍କୁ ଓଳଗିଣ ବନ୍ଦାନ୍ତି ଅର୍ଘ୍ୟ ପାତ୍ର
ଦେଖିଲେ ତ୍ରିସୁଳେ ଯେ ଲାଗିଛି ରକତ ॥୧୦୨॥
ପାର୍ବତି ପଚାରିଲେ କାହିଂ କରୁଥିଲ ସମର
କାହାକୁ ନାସିଲ ତ୍ରିସୁଳେଂ ଲାଗିଛି ରୁଧିର ॥୧୦୩॥
ଇଶ୍ୱରେ ବୋଇଲେ ଯେ ଦକ୍ଷିଣ ଦ୍ୱାରପାଳ
ବଡ଼ ଆଣ୍ଟଂ ଅଟଇ ସେ କାହାର ଦୁଲାଳ ॥୧୦୪॥
ଭିତରେ ପସନ୍ତେ ମୋତେ ନ ଦିଲା ଦ୍ୱାର ଛାଡ଼ି
ବୁଝାଇ କହନ୍ତେ ସେ ଅନେକ ଦିଲା ଗାଳି ॥୧୦୫॥
ତ୍ରିସୁଳ ଘେନି ମୁଁ ତାକୁ କଲି ଯେ ପ୍ରହାର
ବେନିଖଣ୍ଡ ହୋଇଣ ସେ ପଡ଼ିଲା ମହାବିର ॥୧୦୬॥

## ପାର୍ବତୀଙ୍କ ଶୋକ ଓ ଶିବଙ୍କ ସଞ୍ଜୀବନୀ ମନ୍ତ୍ରରେ ଗଣେଶଙ୍କ ପୁନର୍ଜୀବନ

ଯେମନ୍ତ ବୋଲି ଯହୁଂ ସଙ୍କର କହିଲେ
ସୁଣିଣ ଦୁର୍ଗା ଦେବି ମୂର୍ଚ୍ଛା ଗଲେ ॥୧୦୭॥
ସମ୍ଭାଳି ହୋଇ ଦେବି କଲେକ ରୋଦନ
ବୋଇଲେ ସ୍ୱାମି ଆହୋ ଏ ମୋହର ନନ୍ଦନ ॥୧୦୮॥
ଯେବଣ ଦିନେ ତୁମ୍ଭେ ତପସ୍ୟା କରିଗଲ
ପାକାପ୍ରସନ୍ନ ମୁଂ ହୋଇଲି ସେହିକାଳ ॥୧୦୯॥
ସ୍ନାହାନ ସାରିଣ ମୁଂ ବସିଲି ହୃଷ୍ଟ ହୋଇ
ତୁମ୍ଭଠାରେ ମୋହର ରହିଲା ଚିତ୍ତ ଯାଇ ॥୧୧୦॥
କାମପିଡ଼ା କରନ୍ତେ ଖସିଲା ଅଙ୍ଗୁ ରଜ
ଭୂମିରେ ପଡ଼ନ୍ତେ ମୁଂ ଧଇଲି ଯାଇ ବେଗ ॥୧୧୧॥
ତୁମ୍ଭର ବିଭୁତି ଯେ ପକାଇଲି ଯହୁଂ
ଶିବ ଶିବ ବୋଲନ୍ତେ କୁମର ଜାତ ତହୁଂ ॥୧୧୨॥
କୁମର ଜନମି ଉଞ୍ଚେଣ ରାବ ଦିଲା
ବୋଇଲା ଜନନି ଗୋ ଖିର ଦିଅ ଭଲା ॥୧୧୩॥

୧ । ଖ ପୋଥି - ହୋଇଣ ଯେ
୨ । ଖ ପୋଥି - ଇସ୍ୱର
୩ । ଖ ପୋଥି -ଅର୍ଘ୍ୟ ଥାଳି

ସ୍ତନେ କ୍ଷିର ନ ଦେଖି ଦେଲି ମୁଂ ଅମୃତ
ଭକ୍ଷିଣ କୁମର ଯେ ହୋଇଲା ବଳବନ୍ତ ॥୧୧୪॥
ଦକ୍ଷିଣ ଦୁଆରେ ତାକୁ କଲି ମୁଂ ଦୁଆରି
ଦିଗପାଳ ହୋଇଲେ ତାକୁ ନ ଦେବୁ ଦ୍ୱାର ଛାଡ଼ି ॥୧୧୫॥
ମୋହର ଆଜ୍ଞାରେ ସେ ନିରୋଧି ଥିଲା ଦ୍ୱାର[୧]
କିପାଇଂ ପୁତ୍ରକୁ ମୋର ନାସିଲ ଦିଗାମ୍ବର ॥୧୧୬॥
ଅଲେଳ ପୁତ୍ରମୋର ଦୁଖିର ଜିବନ
ଅନେକ ଦୁଖ ପାଇ ମୁଂ ପାଇଥିଲିଂ ନନ୍ଦନ ॥୧୧୭॥
ପୁତ୍ରକୁ ନାସିଲ ଅପୁତ୍ରିକ ମୋତେ କଲ
ଯେଡ଼େ ସୁଭ ଗୋଟି ମୋର ଏଡ଼ାଇଣ[୨] ଦିଲ ॥୧୧୮॥
ଆହାରେ ନନ୍ଦନ ମୋତେ କେଣେ ଛାଡ଼ି ଗଲୁ
ବଳବନ୍ତ ପଣେଣ ଦ୍ୱାର ଯେ ଆବୋରିଲୁ ॥୧୧୯॥
ତୋହର ବିହୁନେ ମୁଂ ନ ପାରେଂ ଦେହ ଧରି
ଆହେ ବିଶ୍ୱନାଥ ମୁଂ ମରିବି ଅଗ୍ନି ଜାଳି ॥୧୨୦॥
ଅଗ୍ନିରେ ଝାସି ମୁହିଂ ଛାଡ଼ିବି ଦେହୁ ପ୍ରାଣ
ଯେତେ ବୋଲି ଦେବି କଲେ ବହୁତ ରୋଦନ ॥୧୨୧॥
ତାହା ଦେଖି ବିସ୍ୱନାଥ କହିଲେ ପ୍ରବୋଧାଇ
ନ କାନ୍ଦ ସୁନ୍ଦରି ଗୋ ପୁତ୍ରକୁ ମୁଂ ଆଣିବି ଜିଆଇଂ ॥୧୨୨॥
ଧାଇଂ ଯାଇ ସିଂହଦ୍ୱାରେ ପ୍ରବେସ ହେଲେ ସିବ
ପଡ଼ିଅଛି ଗଣ୍ଡି ଖଣ୍ଡ ତହିଂରେ ନାହିଂ ମୁଣ୍ଡ ॥୧୨୩॥
କି ବୁଦ୍ଧି କରିବି ବୋଲି ଇଶ୍ୱର ଭାଳିଲେ
ମୁଣ୍ଡ ଗୋଟି କେହୁ ପୁଣି ଏଥୁ ନିଲା ଭଲେ[୩] ॥୧୨୪॥
ଯେତେ ବୋଲି ସିବ ତହୁଂ ଗଲେକ ହାଦେ ଧାଇଂ
ଭୃକୁଟିକୁ ବୋଇଲେ ମୁଣ୍ଡ ଗୋଟିଯେକ ଆଣ ଯାଇ ॥୧୨୫॥
ଯେହୁ ସୋଇଥିବ ପଶ୍ଚିମ କରି ସିର
ତାହାର ମୁଣ୍ଡ ହାଣି ଆଣ ହୋ ତତପର ॥୧୨୬॥
ସଦାସିବ ବଚନେ ଚଳିଲା ଭୃକୁଟି
ଖୋଜିଲା ଦେସ ଗିରି ବନ ଯେ ଚଉକତି[୪] ॥୧୨୭॥
ଯେମନ୍ତେ ବହୁତ ଯେ ବନସ୍ତେ ଖୋଜିଲା
ପଶ୍ଚିମକୁ ସିର ଯେ କାହିଂ ନ ଦେଖିଲା ॥୧୨୮॥
ପୁଣି ଖୋଜନ୍ତେ ସେ ହସ୍ତି ଯେକ ଦେଖିଲା
ପଶ୍ଚିମକୁ ସିର କରି ଯାଇଅଛି ନିଦ୍ରା ॥୧୨୯॥

---

୧ । ଖ ପୋଥି –ରୋଧିଲା ଦୁଆର
୨ । ଖ ପୋଥି –ଲୋଟାଇଣ ଦେଲ
୩ । ଖ ପୋଥି – ଘେନି ଗଲା ଯେବେ
୪ । ଖ ଓ ଗ ପୋଥି –ବନ ଗିରିବର କତି

ଖଡ଼ଗେ ହାଣିଣ ଛିନାଇଲା[୧] ସିର
ପ୍ରବେସ ହୋଇଲା ଯାଇ କପିଳାସ ପୁର ॥୧୩୦॥
କୁମର କନ୍ଧେ ସିର[୨] ଇଶ୍ୱରେ ବସାଇଲେ
କମଣ୍ଡଳୁ[୩] ଜଳ ସିଞ୍ଚି ଅମୃତ ନିଉଣ୍ଡିଲେ ॥୧୩୧॥
ସଜିଂବନି ମନ୍ତ୍ର ଯହୁଂ ପଢ଼ିଲେ ସଙ୍କର
ତକ୍ଷଣେ ଜିବ ପାଇ ଉଠିଲା କୁମର ॥୧୩୨॥
ଯହୁଂ ଗଜ ସିର ଲଗାଇଲେ କନ୍ଧଂ
ତେଣୁ ଗଣପତି ନାମ ଦିଲେ ସଦାନନ୍ଦଂ ॥୧୩୩॥
ଦେବତାଙ୍କଠାରେ ତୁ ଅଟୁ ଦେବରାଜା
ଯଜ୍ଞ ହବିର୍ଭାଗେ ଅଗ୍ରେଂ ତୋର ପୁଜା ॥୧୩୪॥
ମୋତେ ତୁ ପ୍ରସନ୍ନ ହୁଅ ବିଘ୍ନରାଜ
ପଦେକ ଲେଖନ୍ତେ ଯେ ଦିସିବ ଆରପଦ ॥୧୩୫॥

## ନିରାକାର ଗୋସାଇଁଙ୍କ ମହିମା ବର୍ଣ୍ଣନା

ଜୟତୁ ସାରଙ୍ଗଧର ଚତୁର୍ଦ୍ଧାମୁରତି
ପାଦରେ ଖଟିଆନ୍ତି ଲକ୍ଷ୍ମି ଯେ ସରସ୍ୱତି ॥୧୩୬॥
ନିରତେ କମଳା ଯେ ଖଟଇ ପୟର
ଚଉଦ ବ୍ରହ୍ମାଣ୍ଡ ମଧ୍ୟେ ମହିମାଂ ତୁମ୍ଭର ॥୧୩୭॥
ଅନନ୍ତ ମହିମା ଯାହାର ବ୍ରହ୍ମା ନ ପାଇଲା ଅନ୍ତ
ଅନ୍ତନାଡ଼ି ଖଣ୍ଡକରେଂ ବ୍ରହ୍ମାଣ୍ଡ ଖଣ୍ଡ ସାତ ॥୧୩୮॥
କୋଟି କୋଟି ବ୍ରହ୍ମାଣ୍ଡ ଯାହାର ରୋମେଣ ବସଇ
କୋଟି କୋଟି ବ୍ରହ୍ମାଣ୍ଡ କରତା ଭାବଗ୍ରାହି ॥୧୩୯॥
ଅସେସ ବ୍ରହ୍ମାଣ୍ଡ କରତା ଦେବ ହରି
ତାହାର ମହିମା କେ ପାରିବ ଅନ୍ତ କରି ॥୧୪୦॥
ନୟନରୁଂ ଚନ୍ଦ୍ର ସୁର୍ଯ୍ୟ ପାଦରୁ ଜାତ ଗଙ୍ଗା
ନାଭିରୁ ବ୍ରହ୍ମା[୪] କଣ୍ଠରୁ ସରସ୍ୱତି ଜନମିଲା ॥୧୪୧॥
ମୁଖରୁ ଚାରିବେଦ ମସ୍ତକରୁ ଜନ୍ମିଲେ ସନ୍ନ୍ୟାସି
କର୍ଣ୍ଣ ମୁଳରୁ ଜାତ ହୋଇଲେ ବନବାସି ॥୧୪୨॥
ଯେମନ୍ତ ପ୍ରକାରେଂ ତୁ ରଞ୍ଚିଲୁ[୫] ସଂସାର
ଜାତ କରି ପାଳୁ ପୁଣି କରୁ ତୁ ସଂହାର ॥୧୪୩॥

---

୧ । ଖ ପୋଥି –ଛିଣ୍ଡାଇଲା
୧ । ଗ ପୋଥି – ଛିଡ଼ାଇଲା
୨ । ଖ ପୋଥି – ମୁଣ୍ଡ
୩ । ଖ ଓ ଗ ପୋଥି – କୁଶରେ
୪ । ଖ ପୋଥି –ସରୀରୁ ସର୍ବ ଦେବା
୫ । ଖ ପୋଥି – ସଞ୍ଚିଲୁ

ଜୟତୁ ନିରାକାର ଜୟତୁ ନିଳମଣି
ଅଗାଦ ଜଳରେ ଆସନ ତୋହର ପୁଣି ॥୧୪୪॥
କ୍ଷିର ସିନ୍ଧୁ ସୟନେ ଅନନ୍ତ ପରେ ନିଦ୍ରା
କାଳରାତ୍ରି ପୟରେ ଲୋଟିଥାଇ ସର୍ବଦା ॥୧୪୫॥
ଚୌରାସି କାଠି ସେ ଯେ ଅଟଇ ସିନ୍ଧୁ ଜଳ[୧]
ତହିଂ ଭିତରେ ପୁରେକ ଯେ ଅତ୍ୟନ୍ତ ନିର୍ମଳ[୨] ॥୧୪୬॥
ଅଣାସି ଯୋଜନ ପୁର ଦିର୍ଘ ପ୍ରତି
ସତେ ଯୋଜନ ଉଛ ଅଟଇ ସେ ଯେ ଟି ॥୧୪୭॥
ଧବଳମୟେ ପୁର ହୋଇଛି ନିର୍ବାଣ
କାନ୍ହର ବିହୁନେ ପୁର[୩] ରହିଛି ସୁନ୍ୟେଣ ॥୧୪୮॥
ସୁନ୍ୟପୁର ବୋଲି ବୋଲଇ ଜଗତଇ
ସେ ପୁରର ମହିଂମା କେ ପାରିବ ହାଦେ କହି ॥୧୪୯॥
ସୁବର୍ଣ୍ଣର ଉଆସକୁ ତାଳ ରୁଅ[୪] ସେଣିଂ
ଉପରେଂ ପାଣି ଦ୍ରବ୍ୟ ହୋଇଛି ଛାଉଣି ॥୧୫୦॥
ହିରାର କଣକାଣ୍ଡ ମାଣିକ୍ୟର ସ୍ତମ୍ଭ
ସୁବର୍ଣ୍ଣର[୫] ବୈଠି ଦାନ୍ତିଆ ପାଣିଦ୍ରବ୍ୟ ॥୧୫୧॥
କନେକର ଗୁରୁଜ ବସିଛି ବିତପନ
ତହିଂର ପରେ ବସିଅଛି ଯେ କାଚ ଢାଳମାନ ॥୧୫୨॥
କାଚପରେ ସୁବର୍ଣ୍ଣ କଳସ ବସିଛଇ
କଳସ ଉପରେ ନେତ ବସିଛି[୬] ନିଠିଆଇ ॥୧୫୩॥
ନେତପରେଂ ଚିରାଳ ଉଡ଼ଇ ଫରହର
ସ୍ୱର୍ଗପୁରେ ଥାଇ ତା ଦେଖନ୍ତି ସୁରେସ୍ୱର ॥୧୫୪॥
କୁରୁବିନ୍ଦ ପରାଗ ତହିଂ ହୋଇଛନ୍ତି ଜଡ଼ି
କାହିଂ ଗଜ ମୋତି ପଡ଼ିଛି ଯେ ଧାଡ଼ି ଧାଡ଼ି ॥୧୫୫॥
ପାଟ ସୁତାମାନ କାହିଂର ଛନ୍ତି ବାନ୍ଧି
କାହିଂରେ ସୁବର୍ଣ୍ଣ ପଇତା ପୁଞ୍ଜି ପୁଞ୍ଜି ॥୧୫୬॥
କାହିଂ ରସାଣିଲା ରସାଣ ଅଛଇ ବନ୍ଧ ଦ୍ୱାର
କେଉଂଠାରେ ମାଣିକ୍ୟ ଦିସଇ ଉଜ୍ଜ୍ୱଳ ॥୧୫୭॥

---

୧ । ଖ ପୋଥି – ଖୀର ସିନ୍ଧୁ
୧ । ଗ ପୋଥି – କ୍ଷିର ସିନ୍ଧୁ
୨ । ଖ ଓ ଗ ପୋଥି – ଭିଆଇଲୁ ମହାପ୍ରଭୁ
୩ । ଖ ଓ ଗ ପୋଥି – ଚାଳ
୪ । ଖ ପୋଥି – ଉରା ମୁକୁତାର
୫ । ଖ ପୋଥି – କୁରୁବିନ୍ଦର
୬ । ଗ ପୋଥି – ବାନ୍ଧିଛି

କେବଣ ଦ୍ୱାରେ ଲାଗିଛି ହେମର କବାଟି
କାହିଂରେ ଚିତ୍ରକମ କାହିଂରେ ଜଳଘଟି[୧] ॥୧୫୮॥
କନକ ଟେରା କାହିଂ ହିଙ୍ଗୁଳର ପାଟି
କାହିଂ ଆଉଜି ସେ ଯେ ଚନ୍ଦନର ଦାରୁ ଗୋଟି ॥୧୫୯॥
ଧୁପକାଠି ଧୁଆଁ ସେ ଯେ ଲାଗଇ ଝାଳ
ତହିଂ ସୋଭା ପାଉଛି ହିଙ୍ଗୁଳ ହରତାଳ ॥୧୬୦॥
ରୁଅ ରତ୍ନାବଳି ଗଣ୍ଠି ଯେ ପାଟସୁତା
ଦିସଇ ଝଟଝଟ ବୈଦୁ୍ୟ ବତା ॥୧୬୧॥
କେଉଁଠାରେ ପ୍ରାଙ୍ଗଣ ବିଚିତ୍ର କମ ନୂଆ
କାହିଂ ନେତ ସିତୁଳି କୃବିନ୍ଦ ଜୋତିଥୁଆ[୨] ॥୧୬୨॥
ପରାଗର ପେଡ଼ା[୩] ସେ ଯେ ମର୍କତର ଡୋରା
ତଥିପରେ ଫୁଟିଛି ନଳଣିଂ ପାଖୁଡ଼ା ॥୧୬୩॥
ତଥି ଉପରେ କେଳି କରନ୍ତି ଭ୍ରମର
ବିଜୁଳିକି ସୋଭା ଯେହ୍ନେ ରଜନି ଅନ୍ଧକାର ॥୧୬୪॥
ସୁବର୍ଣ୍ଣର ଝାଳ ଯେ ଦାଉ ଦାଉ ଦିସଇ
ତହିଂକି ରଙ୍ଗଝରା ସୋଭାବନ ପାଇ ॥୧୬୫॥
କନେକର ବାଡ଼କି ବସାଇଲା[୪] ଇଟା
ତହିଂ ପରେ ଗେରୁ ସେ ଯେ ବସିଛି ଟୋପା ଟୋପା ॥୧୬୬॥
କନେକର ପାବଚ୍ଛ ଯେ ନବରତ୍ନେ କମ
ଅତି ଯତ୍ନେ ବିନ୍ଧାଣି କରିଛି କୋଟି କମ ॥୧୬୭॥
ଆପଣେ ନିରାକାର ମର୍ତିୟେକ ହୋଇଲେ
ବଶ୍ୱକର୍ମା ହୋଇଣ ସେ ପୁର ନିର୍ମାଣିଲେ ॥୧୬୮॥
ବିଚିତ୍ର ଚନ୍ଦ୍ରାତପ ହୋଇଅଛି ଟଣା
ଯାହା ଦେଖି ଜନେ ହୋଇଯିବେ[୫] ବଣା ॥୧୬୯॥
ଯହିଂକି ଦେବେ ଡରି ବ୍ରହ୍ମାଙ୍କୁ ଅଗୋଚର
ମୁଂ କିସ ଲେଖିବି ମାନବ ହୋଇ ଛାର[୬] ॥୧୭୦॥
ସିଂହାସନ ଉପରେଂ ପଲଙ୍କ ଅଛି ପଡ଼ି
ହସ୍ତିଦନ୍ତ ଗଜମୁକୁତା ହୋଇଅଛି ଧାଡ଼ି ଧାଡ଼ି ॥୧୭୧॥

---

୧ । ଖ ପୋଥି – କାହିଂକି ଆଉ କିଛି ଚନ୍ଦନର ବାରୁ ଗୋଟି
୧ । ଗ ପୋଥି – ଜଳିବାଟି
୨ । ଖ ପୋଥି – ପାଟିସୁଆ
୩ । ଖ ପୋଥି – ଫେରା
୪ । ଗ ପୋଥି – ବିଛାଇଲା
୫ । ଖ ପୋଥି –ଯୋଗୀ ଜାଗନ୍ତା ହେବେ
୬ । ଖ ପୋଥିରେ ଅଧିକ ଅଛି ମାତ୍ର ଗ ପୋଥିରେ ନାହିଁ
ଦ୍ୱିଜବର ପୁତ୍ର ମୁହିଂ ମୂରୁଖ ଅଟଇଂ
ଜନମ କାଳରୁ ମୋର ଶାସ୍ତ୍ର ଦେଖିଲା ସେ ନାହିଂ

କନେକର ଦଣ୍ଡା ହିରଣ୍ୟର ଖୁରା
ତଥିପରେ ଖଜିଂଛି ମୁକୁତାରା[1] ॥୧୭୨॥
ପାଟ ସୁତାରେ ସେ ଯେ ବେଣି ଜଟ ପ୍ରାୟେ କରି
ମୁକୁତା ମିସାଇଣ ବାନ୍ଧିଛି କେରି କେରି ॥୧୭୩॥
ସୁବର୍ଣ୍ଣର କଳସ ଚାରିଖୁରାର ଯେ ରହି
ତହିଂ ପରେ ବିମାନ ଯେ ଲାଗିଛି କମ ହୋଇ[2] ॥୧୭୪॥
ତହିଂ ପରେ ଦିବ୍ୟ ପଲଙ୍କ ସେଯ ସେଜାଇଲା
ବିଚିତ୍ର କରି ତହିଂ ପାଟରେ ବିଛାଇଲା ॥୧୭୫॥
ତହିଂ ପରେ ପଡ଼ିଛି ନେତ ତୁଳି ପାଡ଼ି
ତହିଂ ପରେ ବିଛାଇଲା ଯେ ସେବତି ପାଖୁଡ଼ି ॥୧୭୬॥
ନଳଣି ପୁଷ୍ପ ତହିଂ ପ୍ରକଟେ ବିତପନ
ଅନନ୍ତ ନାଗ ତହିଂ ଅଛଇ ସନ୍ନିଧେଣ ॥୧୭୭॥
ତହିଂ ଉପରେ ବିଜୟେ ପ୍ରଭୁ ନିରାକାର
ଆଦି ଅପର୍ଣ୍ଣା ପନି୍ ସେ ଖଟଇ ପୟର[3] ॥୧୭୮॥
ଜଳଇ ଚଉକତି ମାଣିକ ଦିପାବଳି
ଆଳତି କେରା କେରା ବସିଛି ଦିହୁଡ଼ି ॥୧୭୯॥
ସେ ପୁରରେ ରଜନି ବୋଲି ଆଉ ନାହିଂ
କୋଟି କୋଟି ଚନ୍ଦ୍ର ସୁର୍ଯ୍ୟ କିବା ଉଦେହୋଇ ॥୧୮୦॥
ଜ୍ୟୋତିସାଗର ପୁର ସେହି ସେ ବୋଲାଇ
ତହିଂ ବିଜେ କରିଛନ୍ତି ନିରାକାର ଗୋସାଇଂ ॥୧୮୧॥
ସୁଜାଣ ବୋଲି ସର୍ପ ଉତର[4] ଦୁଆରି
ତାହାର ମହିଂମା କେବା ମୁଖରେ କହିପାରି ॥୧୮୨॥
ତିନି ସତ ଯୋଜନ ଅଟଇ ଦେହ ମୋଟ
ଯୋଜନ ଚାରିସତ ଲମ୍ବ ସେହୁ ଶ୍ରେଷ୍ଟ ॥୧୮୩॥
ଲାଜଂ ପକ୍ଷି ଲୋଚନ ସର୍ବ ଯେକଠାର
ଓଷ୍ଟ କର୍ଣ୍ଣ ନାସିକା ଶ୍ରବଣ[5] ସହିତର ॥୧୮୪॥
ସିରେ ସପ୍ତଫେଣି ମଣି ବିରାଜଇ
କମଳ ସିରା ମକୁଟ ସିରରେ ସୋଭା ପାଇ ॥୧୮୫॥
ନିଳମେଘ ପ୍ରାୟେକ ଦିସଇ ରୁପ କଳା
ପାଣି ଫୁଟ ପ୍ରାୟେକ ଫେରାଇ ବେନି ଡୋଳା ॥୧୮୬॥

---

୧ । ଖ ଓ ଗ ପୋଥି – ଖୁରାରେ ଛାଉଣୀ ପରାଗ ଚଉତରା
୨ । ଖ ପୋଥି – ପଟାନ୍ତର ନାହିଂ ମହୀ
୨ । ଗ ପୋଥି – ନାହିଂ ମହୀ
୩ । ଖ ଓ ଗ ପୋଥି – ଆଦି ହୁଂ ଆଦି ପତ୍ନୀ ସେବଇ ପୟର
୪ । ଗ ପୋଥି – ଭିତର
୫ । ଗ ପୋଥି – ଚକ୍ଷୁ ସର୍ବ

ସଙ୍ଖଚକ୍ର ଚିହ୍ନ ଯେ ଦେହରେ ବିରାଜଇ
ଫୁ ଫୁ କାର କରିଣ ଯେ ନିଶ୍ୱାସ ଛାଡ଼ଇ ॥୧୮୭॥
ସିନ୍ଧୁଘୋଷ ପ୍ରାୟେକ ସୁଭଇ ଗର୍ଜନ
ସବଦେ କମ୍ପଇ[1] ଚଉଦ ଭୁବନ ॥୧୮୮॥
ନିଶ୍ଚଳ ହୋଇଣ ଯେ ଦ୍ୱାରେ ରହିଥାଇ
ସତ୍ରୁ ମିତ୍ର ତାହାର ଯେ ପରାପର ନାହିଂ ॥୧୮୯॥
ନିରାକାର ପ୍ରଭୁଙ୍କୁ ଯେ କରଇ ଦ୍ରସନ[2]
ପ୍ରବେସ ହୋୟେ ଯାଇ ତାହାଙ୍କ ନିକଟେଣ[3] ॥୧୯୦॥
ଅଳପ କରିଣ ସର୍ପ ଚାହଂଇ ମୁଖ ଟେକି
ମୋହଗତ ହୋଇଣ ସେ ପଡ଼ଇ ମହିଂ ଲୋଟି ॥୧୯୧॥
ସେହି ସର୍ପ କରଇ ତାହାକୁ ନାସ ପାନ
ନିରାକାର ଗୋସାଇଂ କି କାହିଂ କରିବ ଦ୍ରସନ ॥୧୯୨॥
ପାଚେରି ସିଂହଦ୍ୱାରେ ଅଛଇ ଯେକ ବୃକ୍ଷ
ଅଣାକାର ବୃକ୍ଷ ସେ ଅଟଇ ବଡ଼ ଶ୍ରେଷ୍ଟଂ ॥୧୯୩॥
ଚାରିସତ ଯୋଜନ ଉଛର୍ଗ ବହୁ ଯେ ଡାଳ
ସତେକ ଯୋଜନ ଯେ ଅଟଇ ତାର ମୁଳ ॥୧୯୪॥
ଦେବ ନାସନ ବୃକ୍ଷ ସେ ଆବୋରି ଦ୍ୱାରେ ଥାଇ
ଦେବ ଗନ୍ଧର୍ବ ଯେ ଦ୍ରସନ କରିଯାଇ ॥୧୯୫॥
ସେ ବୃକ୍ଷର ମୁଳେ ସେ ଯେ ବିଶ୍ରାମ[4] କରନ୍ତି
ଅଜ୍ଞାନ ହୋଇଣ ସେ ଜ୍ଞାନ ପାସୋରନ୍ତି ॥୧୯୬॥
ଦିଗପାଳ ସହିତେଣ ବ୍ରହ୍ମା ମହେସ୍ୱର
ସେହୁ ଯାଇ ମୃତ୍ୟୁ ଲଭଇ ସେ ବୃକ୍ଷ ମୁଳର ॥୧୯୭॥
ଯେମନ୍ତ ପ୍ରକାରେ ସେ ନିରାକାର ଗୋସାଇଂ
ତାହାଙ୍କର ମହିଂମା କେ ମୁଖେ ପାରେ କହି ॥୧୯୮॥
ବ୍ରହ୍ମା ସଙ୍କରଙ୍କୁ ଯେ ଦୁର୍ଲଭ ଅଗୋଚର
ମୁଂ କିସ ବର୍ଣ୍ଣିବି ଯେ ମାନେବ ହୋଇ ଛାର ॥୧୯୯॥

## ବୈବସ୍ୱତ ଅଗସ୍ତି ସମ୍ବାଦ

ଯେଥୁ ଅନ୍ୟନ୍ତରେ ସେ ବିଳଙ୍କ ଦେସ ରାଜା
ଅଗସ୍ତିଙ୍କ ପାଦତଳେ କଲେକ ଦିବ୍ୟ ପୁଜା ॥୨୦୦॥
ଭୋ ବ୍ରହ୍ମବେତ୍ତା ଯେବେ ଦୟାଅଛି ମୋର ଠାର
ଭାରତ ହରିବଂସ କହିଲେ ସୁଣିବିଂ କର୍ଣ୍ଣର ॥୨୦୧॥

---

୧ । ଖ ଓ ଗ ପୋଥି –ଚମକଇ
୨ । ଖ ଓ ଗ ପୋଥି –ଦ୍ରସନକୁ ଯେ କରେ ଗମନ
୩ । ଖ ଓ ଗ ପୋଥି – ସନିଧ୍ୟେଣ
୪ । ଖ ପୋଥି – ଦ୍ରସନ

ତୁମ୍ଭ ମୁଖୁଂ ସୁଣିଣ ପାତେକ ଖଣ୍ଡିବଇଂ
ଇହ ପର ଲୋକ ଦୁଇ କୁଳଂ[1] ଜିଣିବଇଂ ॥୨୦୨॥
ସୁଣ ବୈବସୁତ ବୋଲି ବୋଇଲେ ଅଗସ୍ତି
ତୋହପରି ଶ୍ରୋତା ଆଉ ନାହିଂ ଯେହୁ ପୃଥ୍ୱି ॥୨୦୩॥
ଅଷ୍ଟାଦସ ଭାରତ[2] କହିଲି ସୁଣିଲୁ
ଭାରଥ ହରିବଂସଠାରେ ମନ ତୁହି ଦିଲୁ ॥୨୦୪॥
ଯେବଣ ସାହାସ୍ର ସୁଣିଲେ କୋଟି କୋଟି ଗୋହତ୍ୟା ମୋଚନ
ପାର୍ବତି ଆଗେ ଯାହା କହିଲେ ତ୍ରିଲୋଚନ ॥୨୦୫॥
ଯେକ ଦିନେ ଗିରିଜା ସଦାସିବଙ୍କୁ ପଚାରିଲେ
ହରିର ଚରିତ ଯେ ସୁଣିବି କର୍ଣ୍ଣରେ ॥୨୦୬॥
ସତ୍ୟଯୁଗେଂ ମହିଂସା ସଙ୍ଗତେ କଲିଂ ଯେ ସମର
ଦୈତ୍ୟକୁ ମାରି ହତ୍ୟା ଦୋସ ମୁଂ ବହିଲିଂ କନ୍ଧର ॥୨୦୭॥
ଶ୍ରୀରାମ ଚରିତ ସୁଣିଲିଂ ମୁହିଂ କର୍ଣ୍ଣର
ତେଣୁ ହତ୍ୟା ଦୋସ ମୋଚନ ହୋଇଲା ମୋହର ॥୨୦୮॥
ଯେବେ ହରି କଥା ସେ ଯେ କହ ଦିଗବାସ
ସୁଣିଣ ଅଙ୍ଗରୁ ମୋର ଛାଡ଼ିବ କଲ୍ମସ ॥୨୦୯॥
ତ୍ରେତୟା ଯୁଗେଂ ହରି ରାମ ଅବତାରେ
ଦେବତାଙ୍କ ହିତେ ଜନ୍ମିଲେ ଦସରଥ ଘରେ ॥୨୧୦॥
ସିତ୍ୟା କମଳଣି କି ହୋଇଲେ ରାମ ବିଭା
କପଟ ଭିଆଇଲେ ବ୍ରହ୍ମାଦି ସୁରଦେବା ॥୨୧୧॥
ଲଗାଇ ଖଳବଳ ବନକୁ ପେସିଲେ
ସିରେ ଜଟା ବାନ୍ଧି ରାମ ତପସ୍ୱି ରୁପ ଧଇଲେ ॥୨୧୨॥
ଛାଡ଼ିଲେ ରାଜ୍ୟ ଭାର ପସିଲେ ବନସ୍ତର
ତେଜିଲେ ଗନ୍ଧ ଚନ୍ଦନ ବିଭୁତି ମାଖିଲେ ଅଙ୍ଗର ॥୨୧୩॥
ତେତେ଼ ଦୁଖରେ ସେ ଯେ ଦଇବ ଦୁଖ ଦେଲା
ପଞ୍ଚବଟି ବନରୁ[3] ରାବଣ ସିତ୍ୟାକୁ ହରିନେଲା ॥୨୧୪॥
ରକ୍ଷ କପି ଘେନି ରାମ ବାନ୍ଧିଲେ ସେତୁବନ୍ଧ
ଅନେକ ଯୁଦ୍ଧ କରି ରାମ ନାସିଲେ ଦସକନ୍ଧ ॥୨୧୫॥
ସିତ୍ୟାକୁ ଆଣି ରାମ ଅଯୋଧ୍ୟାରେ ହୋଇଲେ ରାଜା
କିଛି ଦିନ ଅନ୍ତେ ପୁଣି ଦଇବ କୁଟ କଲା ଯା ଯା ॥୨୧୬॥
ସିତ୍ୟାକୁ ଛାଡ଼ି ରାମ ଅଇଲେ ବନସ୍ତର
ଭାରିଯା ବିହୁନେ ରାମ ବଞ୍ଚିଲେ କିଛିକାଳ[4] ॥୨୧୭॥

୧ । ଗ ପୋଥି - ଲୋକକୁ
୨ । ଖ ପୋଥି -ପୁରାଣ
୩ । ଖ ଓ ଗ ପୋଥି - କୁଡ଼ିଆରୁ
୪ । ଖ ପୋଥି - କଷ୍ଟର

ପୁଣି ଦେବତାୟେ ଆଣିଲେ ବୈକୁଣ୍ଠକୁ
ତ୍ରେତୟା ଯୋଗେଂ ଭୋଗ ନୋହିଲା ଶ୍ରୀରାମକୁ ॥୨୧୮॥
ବହୁତ ଦୁଃଖ ପାଇଲେ ରାମ ସେହି ଅବତାର
ଆଉ କେଉଂ ଅବତାରଂ[1] ହୋଇଲେ ଚକ୍ରଧର ॥୨୧୯॥
ସେ କଥା ମୋର ଆଗେଂ କହ ହେ ସୁଳପାଣି
ପବିତ୍ର ହେବ ଦେହ ସୁଣିଲେ ହରିବାଣି ॥୨୨୦॥
ଦକ୍ଷ ପ୍ରଜାପତି ଅଟଇ ମୋହର ଯେ ପିତା
ଯଜ୍ଞ କରି ବରିଲା ସକଳ ଦେବତା ॥୨୨୧॥
ତୁମ୍ଭଙ୍କୁ ଯହୁଂ ସେ ନ କଲା ବରଣ[2]
ତେଣୁ କରି ମୁହିଂ ଯେ ପାଇଲି ଅଭିମାନ ॥୨୨୨॥
ଯଜ୍ଞ କୁଣ୍ଡ ମଧରେ ଦେଲି ମୁହିଂ ଝାସ
ତେଣୁ ସେ ପୁଣ୍ୟ ଗୋଟି ହୋଇଲା ସବୁ ନାସ ॥୨୨୩॥
ତୁମ୍ଭେ ଯାଇ ପୁଣ ଭାଜିଂଲ ଯଜ୍ଞସାଳ
ଦକ୍ଷ ପ୍ରଜାପତିର ମୋଡ଼ି ପକାଇଲ ସିର ॥୨୨୪॥
ତପି ଯପି ସନ୍ନ୍ୟାସି ଦେବତା ପିତୃଗଣ
ସମସ୍ତେ ସେ ଯଜ୍ଞରେ ହୋଇଥିଲେ ଯେ ବରଣ ॥୨୨୫॥
ଯେ ଯାହାର ହବିଭାଗ ଭୁଞ୍ଜୁଂଥିଲେ ତହିଂ ରହି
ମୋର ଯୋଗୁଂ ସେମାନେ ନିରାସ ହୋଇ ଯାଇ ॥୨୨୬॥
ଆସା ଭଗ୍ନ ଦୋସ ମୁଂ ଯେ ଅର୍ଜିଲି ଗୋସାଇଂ
କହିବ ହରି ଚରିତ ସୁଣି ପାତେକ ଖଣ୍ଡିବଇଂ ॥୨୨୭॥

## ସୃଷ୍ଟି ପ୍ରକରଣ

ପାର୍ବତିଙ୍କ ଆଗେଂ ଯାହା କହିଲେ ପସୁପତି
ସେ ଚରିତ ସୁଣ ହୋ ରାଜା ବଦୟନ୍ତି ଅଗସ୍ତି ॥୨୨୮॥
ଚାରି ଯୁଗ ବହିଗଲେ ବୋଲନ୍ତି ଗଣ୍ଡାୟେ
ଯେକସ୍ତରି ଗଣ୍ଡା ଗଲେଂ ମନୁୟେ ବୋଲାଏ ॥୨୨୯॥
ତେର ମନୁଗଲେ କଳ୍ପେକ ହୋୟେ ପୁଣି
ସାତକଳ୍ପ ବହିଗଲେ ଉନେକ ବଖାଣି ॥୨୩୦॥
ଚଉସତ ଉନେଣ[3] ଉହାଣେକ ହୋଇ
ସୋଳ ଚନ୍ଦ୍ରମାରେ ଇନ୍ଦ୍ର ଗୋଟିୟେ ନାସ ଯାଇ ॥୨୩୧॥
ତେବେ[4] ବେଦପତିଙ୍କି ଦିବସେକ ଗଣି
ତିନି ମନୁ ଯାନ୍ତେ ବ୍ରହ୍ମା ନାସ ଯାଇ ପୁଣି ॥୨୩୨॥

୧ । ଗ ପୋଥି - ଜନ୍ମ
୨ । ଗ ପୋଥି - କଳାକ ଅବରଣ
୩ । ଗ ପୋଥି - ଚଉଦ ସତରେଣ
୪ । ଖ ପୋଥି -ସେହି ତିନି ମନୁରେ

ବ୍ରହ୍ମା ନାସ ଗଲେ ବିଷ୍ଣୁଙ୍କୁ ଯେକଇ ଦିବସ
ସାତ କଳ୍ପେ ତୁଟଇ ବିଷ୍ଣୁଙ୍କର ଆୟଷ ॥୨୩୩॥
ଶ୍ରୀହରି ନାସ ଯାନ୍ତେ ରୁଦ୍ରଙ୍କୁ ଦିବସେକ ହୋଇ
ସୁଣ ବୈବସୁତ ବୋଲି ଅଗସ୍ତି ଯାନ୍ତି କହି ॥୨୩୪॥
ଚଉଦ ମନୁ ଯାୟେଂ ରୁଦ୍ରଙ୍କ ଆୟଷ
ରୁଦ୍ର ପ୍ରଳୟ ହୁଅନ୍ତେଂ ନିରାକାରଙ୍କୁ ହୋଅଇ ଦିବସ ॥୨୩୫॥
ନିଦ୍ରା ନ ଥାଇ ତାହାଙ୍କୁ ତେତେଦିନ ଯାୟେଂ
ବ୍ରହ୍ମା ବିଷ୍ଣୁ ଦିଗପାଳ ସମସ୍ତେ ଯାନ୍ତି କ୍ଷୟେ ॥୨୩୬॥
ସୃଷ୍ଟି ଯାକ ସମସ୍ତ ଘୋଟଇ ସିନ୍ଧୁ ଜଳ
ସେକାଳେ ଆନନ୍ଦ ହୋଅନ୍ତି ନିରାକାର ॥୨୩୭॥
ସୁର୍ଯ୍ୟଚନ୍ଦ୍ର ବିହୁନେ ଘୋଟଇ ରଜନି
ପଲଙ୍କରେ ନିଦ୍ରାଯାନ୍ତି ପ୍ରଭୁ ନିଳମଣି ॥୨୩୮॥
ଆଦି ଦେବି ବସିଣ ଚାପନ୍ତି ଚରଣ
କିଛିକାଳ ଗଲେଂ ରଜନି ସେସ ହୋୟେ ପୁଣ ॥୨୩୯॥
କାୟାମୋଡ଼ା[୧] ଦେଇ ଉଠନ୍ତି ଦେବ ହରି
ଦେବିଙ୍କି ଦେଖି ହୃଦେ କାମ ପିଡ଼ା କରି ॥୨୪୦॥
ଶ୍ରୀଅଙ୍ଗରୁ ରେତ ଯେ ପଡ଼ଇ ଖଳ ଖଳ
ଯେସନେ ଗଙ୍ଗା ଯମୁନା ସରସ୍ୱତି ତିନିଧାର ॥୨୪୧॥
ପ୍ରଥମେ ଭୁମିରେଂ ପଡ଼ିଲା ଯଉଂ ଧାର
ତହିଂରୁ ଜନ୍ମ ହୋଇଲେ ସଙ୍କର ॥୨୪୨॥
ପୁଣି ଯଉଂ ଧାର ଖସିଲା ଦୁତିୟରେଂ
ତହିଂରୁ ବିଷ୍ଣୁନାଥ ହୋଇଲେ ଅବତାରେ ॥୨୪୩॥
ତୃତିୟ ଧାରେକ ଯେ ପଡ଼ିଲା ଭୁମିରେଣ
ତହିଂରୁ ଜାତ[୨] ହୋଇଲା ବିଧାତା ତାର ନାମ ॥୨୪୪॥
ତିନି ଦେବତା ଯେ ଜନମ ହୋଇଣ
ପିତାଙ୍କୁ ଓଳଗିଣ ଆଜ୍ଞାମାଗି ପୁଣ ॥୨୪୫॥
ପୁତ୍ରଙ୍କୁ ଆଜ୍ଞା ଦେଲେ ଜଗତ ଅଧିକାରି
ଯାଅରେ ପୁତ୍ର ତୁମ୍ଭେ ଭିଆଅ ବସୁନ୍ଧରି ॥୨୪୬॥
ଆଜ୍ଞା ମାଗିଣ ସେ ଗମିଲେ ତିନି ଭାଇ
ଠାକୁରଙ୍କ କୋପରୁ ସେ ମେଦ ମେଦା ଜାତ ହୋଇ ॥୨୪୭॥
କୋପେଣ ଦଇତକୁ ନାସିଲେ ଚକ୍ରଧର
ତା ମାଂସ ଚକଟିଲେ ପଦ୍ମ କଢ଼ି ସମାନର ॥୨୪୮॥
ପେଣ୍ଡୁଳି କରି ଜଳେ ମେଲିଲେକ ଯହୁଂ
ସାତଗୋଟି ଦ୍ୱିପ ସେ ଯେ ହୋଇଲାକ ତହୁଂ ॥୨୪୯॥

୧ । ଖ ପୋଥି – ପାଆମୋଡ଼ା
୧ । ଗ ପୋଥି – ଗାଆମୋଡ଼ା
୨ । ଖ ପୋଥି – ପୁରୁସେ

ସାତଗୋଟା ଦ୍ୱିପ ଯହୁଂ ଭିଆଣ ସରଇ
ସାତଗୋଟା ସିନ୍ଧୁ ସେ ଯେ ଆବୋରି ରହଇ ॥୨୫୦॥
ନଦି ଗିରି କନ୍ଦର ଆଦି ଯେତେ ବନ
ଯେକା ମେରୁ ଆବୋରିଣ ରହଇ ତାକୁ ପୁଣ[୧] ॥୨୫୧॥
ପାତାଳ ମୋକ୍ଷକରି ସପତ ପୁର ହୋଇ
ନାଗ ଲୋକମାନଙ୍କର ବିଶ୍ରାମ ଅଟେ ସେହି ॥୨୫୨॥
ରୁଦ୍ରପୁର ବ୍ରହ୍ମାପୁର ଆବର ବଇକୁଣ୍ଠ
ଚନ୍ଦ୍ର ସୁର୍ଯ୍ୟ ମଣ୍ଡଳ ଆବର ଗୋଲେକ[୨] ॥୨୫୩॥
ନକ୍ଷତ୍ରଙ୍କ ଆଶ୍ରମ[୩] ସିସୁମୁନା ପୁର ସଞ୍ଜିବନି
ଯେମନ୍ତେ ସପତ ସ୍ୱର୍ଗ ଭିଆଇ ବୋଲନ୍ତି ସୁଳପାଣି ॥୨୫୪॥
କେବଳ ତିନି ଦେବେ ଥାନ୍ତି ଯେକା ହୋଇ
ଜିବ ବୋଲି ଗୋଟିଏ ନଥାଇ ସୁନ୍ୟ ମହି ॥୨୫୫॥
ସାବିତ୍ରି ପାର୍ବତି କମଳା ଘେନିଣ ଯେ ତିନି ନାରି
ବିଷ୍ଣୁ ପଦ୍ମ ବିଜରୁ ଜନ୍ମିଲେ ମୁର୍ତ୍ତି ଧରି ॥୨୫୬॥
କଦ୍ରୁ ବିନନ୍ତା ଅଗ୍ନି କୁଣ୍ଡରୁ ଜାତ ହେଲେ
କସ୍ୟପ ଋଷିଙ୍କି ଚାରି କନ୍ୟା ପ୍ରଦାନ ହେଲେ[୪] ॥୨୫୭॥
ଦିତିଠାରୁ ଦୈତ୍ୟ ଅଦିତିଠାରୁ ଦେବତା
କଦ୍ରୁଠାରୁ ନାଗ ପକ୍ଷି ଜନମ ବିନନ୍ତା ॥୨୫୮॥
ରୁଦ୍ରଠାରୁ ଗୋଧନ ପଲ ଯେ ଜାତ ହେଲେ
ସୁଣ ବୈବସୁତ ବୋଲି ଅଗସ୍ତି କହିଲେ ॥୨୫୯॥
ସପ୍ତ ପାତାଳ ରାଜା ହୋଇଲା ବାସୁକି
ମଞ୍ଚପୁର ଦେବତା[୫] ହୋଇଲେ ବେଦପତି ॥୨୬୦॥
ସ୍ୱର୍ଗପୁର ରାଜା ଯେ ହୋଇଲେ ବଜ୍ରଧର
ନୃପତି ପୁଚ୍ଛାକଲେ ସୁଣ ନୃପବର[୬] ॥୨୬୧॥
ସମସ୍ତଙ୍କ ଜନ୍ମ ଚରିତ କହିଲିଂ
ସଚିଦେବି ଜନ୍ମ ସେତ ଗୋପତେ ରଖିଲି ॥୨୬୨॥

## ଶଚୀ ଦେବୀ ଓ ଅନ୍ୟ ଦେବତାମାନଙ୍କର ସୃଷ୍ଟି

କହନ୍ତି ଅଗସ୍ତି ସୁଣ ହେ ନୃପବର
ପାର୍ବତି ଆଗେ ଯାହା କହିଲେ ସୁଳଧର[୭] ॥୨୬୩॥

୧ । ଖ ଓ ଗ ପୋଥି –ଆକଟିଣ
୨ । ଖ ପୋଥି –ଇନ୍ଦ୍ର ସଭା ଗୋଲକ
୩ । ଖ ପୋଥି – ମଣ୍ଡଳ
୪ । ଖ ପୋଥି – କନ୍ୟାକୁ ବିଭା ହେଲେ
୫ । ଗ ପୋଥି – କରଣ
୬ । ଖ ପୋଥି –ମୁନିବର
୭ । ଖ ଓ ଗ ପୋଥି –ସଙ୍କର

ଯେବଣ ଦିନେ ସୃଷ୍ଟି ହୋଇଲା ସର୍ଜନ
ନିରାକାର ଆଜ୍ଞା ଦିଲେ ଆଦିକି ଚାହିଂଣ ॥୨୬୪॥
ସୃଷ୍ଟି ସର୍ଜନାକୁ ଯେ ପୁତ୍ରେ ଗଲେ ଚଳି
ହୋଇଲା କି ନୋହିଲା ସୁଣ ଗୋ ସୁନ୍ଦସାଳି ॥୨୬୫॥
ଆଜ୍ଞାପାଇ ଦେବି ଚଳିଲେ ଧାତିକାରେ
ପୁତକୁ ଭେଟିଲେ ସେ ମେରୁ ମେଖଳାରେଂ[୧] ॥୨୬୬॥
ଆଦିକି ଦେଖି ସିବ ଅଧିର ହୋଇଲେ
କାମଦେବ ନାରାଜ ସେ ସହି ନ ପାରିଲେ ॥୨୬୭॥
ବିବେକ ଜ୍ଞାନ ସବୁ ହଜିଲା ସରିର
ଛାଡିଲେ ଲଜା ଭାବ ମାତାଙ୍କୁ କଲେ କୋଳ ॥୨୬୮॥
ମାତା ପୁତ୍ରଙ୍କର ଯହୁଂ ହୋଇଲା ସୃଙ୍ଗାର
ଦେଖି ଲଜା ପାଇଲେ ଯେ ବିଷ୍ଣୁ ବେଦବର ॥୨୬୯॥
ମାତାଙ୍କୁ ଧିକାରିଣ ଚଳିଲେ ବେନି ଭାଇ
ନିରାକାର ଆଗରେ କହିଲେ ବେଗେଂ ଯାଇ ॥୨୭୦॥
ପୁତ୍ରଙ୍କ ବୋଲ ସୁଣି ନିରାକାର କଲେ କୋପ
ପଶୁ ଜନ୍ମ ହୁଅ ବୋଲି ଆଦିକି ଦେଲେ ସାପ୍ୟ ॥୨୭୧॥
ଇଶ୍ୱର ବିଜରୁ ହୋଇଲା ଯେକ ଦୁହିତାଯେ
ତାହାକୁ ଛାଡ଼ି ଆଦିନାରି ଚଳିଯାଯେ ॥୨୭୨॥
ଠାକୁରଙ୍କ ସନ୍ନିଧେଂ ପ୍ରବେସ ହେଲେ ପୁଣ
ଲଜା ପାଇ ସିବ ଯେ ରହିଲେ ଅନ୍ତରେଣ ॥୨୭୩॥
ଭୁମିରେ ପଡ଼ି ବାଳି କରଇ ରୋଦନ
ଯହୁଂ ନ ପାଇଲା ମାତାର କ୍ଷିର ପାନ ॥୨୭୪॥
କ୍ଷୁଧାରେଂ କୁମାରି ବହୁତ କ୍ରୋଧ କଲା
ଚଉଦ ଭୁବନରେ ଚମକ[୨] ପଡ଼ିଲା ॥୨୭୫॥
ଅସି ସହସ୍ର ଯୋଜନେ ଥିଲେ ବେଦବର
କୁମାରି ରାବ ଗୋଟା ସୁଭିଲା[୩] କର୍ଣ୍ଣର ॥୨୭୬॥
ସୁଣିଣ ବେଦବର ହୋଇଲେ ଚକିତ
କି ରାବ ସଂସାରରେ ହୁଅଇ ଅଭୁତ[୪] ॥୨୭୭॥
ବାଳକି ରାବ ପ୍ରାଏ ସଂସାରେ ସୁଭିଲା
କାହାଠାରୁ ଜାତ ସେ କେମନ୍ତ ହୋଇଲା ॥୨୭୮॥
ତିନିଜଣଠାରୁ ଚାରିଜଣ ନାହିଂ
ପୁଣି କେବଣ ଦେବତା ତାହାକୁ ଅଛଇ ଭିଆଇ ॥୨୭୯॥

---

୧ । ଖ ଓ ଗ ପୋଥି – ସନିଧ୍ୟରେ
୨ । ଖ ଓ ଗ ପୋଥି – ଚହଳ
୩ । ଗ ପୋଥି – ପସିଲା
୪ । ଖ ପୋଥି – ସଂସାରେ କେ ଜନ୍ମ ହେଲା ରୋଦନ ଅଦଭୁତ

ଦେଖିବା ବୋଲି ବୋଇଲେଂ[୧] ବେଦବର
ପ୍ରବେସ ହେଲେ ଯାଇ ବାଳକି ରାବଠାର ॥୨୮୦॥
ଦେଖିଲେ ଅପୁର୍ବ ରୁପ ଦେବି ଅଛି ସୋଇ[୨]
ପୁଷ୍ପନାଡ଼ି ସହିତେ ଲାଳ ଜରଜର ହୋଇ ॥୨୮୧॥
ରବି ସସି ପ୍ରାୟେକ ଦେହ ଝଟକଇ
ସପ୍ତଦ୍ୱିପା ମେଦନିରେ ତାର[୩] ସୋଭା ପାଇ ॥୨୮୨॥
ଧ୍ୟାନେଣ ବସିଲେ ବିଧାତା ଜାଣିଲେ ତଦଅନ୍ତ
ଆଦିର ଦୁହିତା ଯେ ଇଶ୍ୱର ବିର୍ଯ୍ୟେ ଜାତ ॥୨୮୩॥
ଯେହାକୁ ଯତ୍ନକରି ରଖିବି ସମ୍ଭାଳିଣ
ଯେହାରେ ବହୁତ କାର୍ଯ୍ୟ ହୋଇବ ସଂସାରେଣ ॥୨୮୪॥
ବିଚାରିଣ କୁମାରି କି ତୋଳିଲେ ପଦ୍ମଯୋନି
ମେରୁ ଗୋଚରେ[୪] ଯେ ତାକୁ ସମର୍ପିଲେ ପୁଣି ॥୨୮୫॥
ଅତି ଯତ୍ନେ ମେରୁ ଯେ ତାହାକୁ ପ୍ରତିପାଳି
ଚଉଦ ସହସ୍ର ବରସ ବହିଗଲା ନିରୋଳି ॥୨୮୬॥
କସ୍ୟପଙ୍କ ବିର୍ଯ୍ୟେଂ ଜାତ ହୋଇଲେ ଦେବତାଯେ
ଚନ୍ଦ୍ର ସୁର୍ଯ୍ୟ ଅଗ୍ନି ପବନ ବରୁଣ ଧନପତି ହୋଯେ ॥୨୮୭॥
ରୁଦ୍ରାଦିଂ[୫] ସହିତେ ଯେ ଦିଗପାଳ ମାନେ
ଆବୋରି ରହିଲେ ସେ ଯେ ଯାହାର ସ୍ଥାନେ ॥୨୮୮॥
ସୁଣ ବୈବସୁତ ବୋଲି ବୋଲନ୍ତି ଅଗସ୍ତି
ପାର୍ବତିଙ୍କ ଆଗେ ଯାହା କହିଲେ ପସୁପତି ॥୨୮୯॥
ଯେବେଣ ଦୁହିତାକୁ ମେରୁଥିଲା ପାଳି
ଉପମା ଦେବାକୁ ନାହିଂ ଆବର ମହିଆଳି ॥୨୯୦॥
ସକଳ ଗୁଣେ ସୋଭା ପାଇଲା[୬] ପରିପୁର୍ଣ୍ଣ
ସଚି ବୋଲି ମେରୁ ଯେ ତାହାର ଦେଲେ ନାମ ॥୨୯୧॥
ଇନ୍ଦ୍ରର ଭାରିଯା ସେ ହୋଇଲା ସଚି ଦେବି
କୋଟି କୋଟି ସୁରପତି ଯାହାର ପାଦେଂ ସେବି ॥୨୯୨॥
ସ୍ୱର୍ଗର ନାଏକାଣି ସେ ହୋଇଲା ମହାମାୟି
ଲକ୍ଷ ଲକ୍ଷ ଇନ୍ଦ୍ର ଗଲେ ସଚି ନ ଚଳଇ ॥୨୯୩॥

---

୧ । ଗ ପୋଥି – ଧାଇଂଲେ
୨ । ଖ ପୋଥି – ଦୁହିତା କାନ୍ଦୁଛଇ
୨ । ଗ ପୋଥି – ଦେବତା କାନ୍ଦୁଛଇ
୩ । ଖ ଓ ଗ ପୋଥି – ତା ସୁନ୍ଦରେ
୪ । ଖ ପୋଥି –ସମୀପେଣ
୫ । ଖ ଓ ଗ ପୋଥି – ଇନ୍ଦ୍ରାଦି
୬ । ଖ ପୋଥି –ସେ ହୋଇଲା

ଦେବ ଦାନବ ମାନବ ଆଦି ନାଗବଳ
କସ୍ୟପ ରସିଠାରୁଂ ଜାତ ହୋଇଲେ ସକଳ[1] ।।୨୯୪।।
ସଙ୍କର ରହିଲେ ଯେ କପିଳାସ ପୁରି[2]
ଯସୋବନ୍ତି ପୁରେ ଯେ ରହିଲେ କୁସଧାରି ।।୨୯୫।।
କ୍ଷିରସିନ୍ଧୁ ମଧ୍ୟରେ ଯେ ପୁରେକ ହୋଇଲା
ସେ ପୁରେ ଶ୍ରୀହରି ଯେ ସୋଇଲେ ଯୋଗ ନିଦ୍ରା ।।୨୯୬।।
ଜଳ ଅଧିପତି ଯେ ହୋଇଲେ ବରୁଣ
ସମସ୍ତ ଜିବ ରକ୍ଷା କଲେକ ପବନ ।।୨୯୭।।
ନାସ୍କର ଦେବତା ସଜିଂବନି ପୁରେ ଯେ ରାଜନ
ବସିଣ ବୁଝୁଥାଇ ପ୍ରାଣିଙ୍କ ପାପ ପୁଣ୍ୟ ।।୨୯୮।।
ଦିବସରେ ରବି ନିସାରେ[3] ଚନ୍ଦ୍ରମା
ଯେ ଯାହାର ଭାଗ ଆବୋରି ରହିଲେ ମହାତମା ।।୨୯୯।।
କୁବେର ହୋଇଲା[4] ଭଣ୍ଡାର ଆଧିପତି
ପତାଳରେ ରାଜା ହୋଇଲା ବାସୁକି ।।୩୦୦।।
ବାର ବିସ୍ୱଦେବା ଦସଦିଗପାଳ
ପଞ୍ଚଦସ ତିଥି ଆବର ସପ୍ତବାର[5] ।।୩୦୧।।
ଅପକ୍ଷରି କିନ୍ନରି ଯେ ବିଦ୍ୟାଧର ଆଦି
ସେବା କରି ସର୍ବେ ଯେ ରହିଲେ ଜମ୍ବୁଭେଦି ।।୩୦୨।।
ନବଗ୍ରହ ରହିଲେ ରାସିକି ଆବୋରିଣ
ସତାଇସ ନକ୍ଷତ୍ର ଯୋଗ କରଣ ।।୩୦୩।।
କାଳବେଳା ଘଡ଼ି ବିଷ୍ଟି ବିତିପାତ
ଦଣ୍ଡ ରିଷ୍ଟ ନିତ୍ୟା ପ୍ରହର ମୁହୁର୍ତ୍ତ ।।୩୦୪।।
ଯେ ଯାହାର ଭାଗମାନ ଆବୋରି ରହିଲେ
ଯାହାକୁ ଯେଉଁ ଯୋଗ ହୁଅଇ ଯେଉଁକାଳେ ।।୩୦୫।।
ନ୍ୟାୟେ ଅନ୍ୟାୟେ ବିଚାର ଅବିଚାର
ପାପ ଅପାପ[6] ଆଚାର ଅନ୍ୟାଚାର ।।୩୦୬।।

୧ । ଖ ପୋଥିରେ ଏହାପରେ ଅଧିକ ଅଛି
ଛତିସକୋଟି ନର ଛପନ କୋଟି ଜିବ
ମଞ୍ଚପୁର ଆବୋରି ସେ ରହିଲେକ ସର୍ବ
ସପତ ପାତାଳ ଆବୋରି ରହିଲେ ନାଗବଳ
ସ୍ୱର୍ଗପୁର ଆବୋରି ରହିଲେ ଦେବତା ସକଳ
୨ । ଖ ପୋଥି – ଆବୋରି
୨ । ଗ ପୋଥି – ଗିରି
୩ । ଖ ପୋଥି – ରାତ୍ରେରେ
୪ । ଖ ପୋଥି – ଆବୋରିଲା
୫ । ଖ ଓ ଗ ପୋଥି – ସୂନ୍ୟ ଦିଗ ଆବୋରି ରହିଲେ ସକଳ
୬ । ଖ ପୋଥି – ପୁଣ୍ୟ

ସୁବୁଦ୍ଧି କୁବୁଦ୍ଧି ସନ୍ଥ ଦୁଷ୍ଟ ଜନ
କଳି କପଟ[1] ସତ୍ୟ ଅସତ୍ୟ ବଚନ ।।୩୦୭।।
ଏମନ୍ତ ପ୍ରକାରେଣ ସଂସାରେ ହୋଇଲା
ଲକ୍ଷ୍ମିର ବିହୁନେ ସୃଷ୍ଟି ଅସୋଭା ଦିସିଲା ।।୩୦୮।।

## ସମୁଦ୍ର ମନ୍ଥନ

ହତସିରି ସଂସାର ହୋଇଲାକ ଯହୁଂ
ଲକ୍ଷ୍ମି ବିନୁ ଅସୋଭା ଦିସିଲା ସର୍ବ ସେହୁ[2] ।।୩୦୯।।
ଦେବତାଙ୍କୁ ଘେନିଣ ଯେ ଭାଳନ୍ତି ସଚିକାନ୍ତ
ସମୁଦ୍ର ମନ୍ଥନ ବୋଲି ବୋଇଲେ ଚଉମାଥ ।।୩୧୦।।
ଲକ୍ଷ୍ମି ସହିତେଂ ପାଇବା ଭଲ ଭଲ ଦ୍ରବ୍ୟ
ହୋଇ ହୋଇ ଚାଲ ବୋଇଲେ ଦେବତାଯେ ସର୍ବ[3] ।।୩୧୧।।
ଦେବତାଙ୍କ ସଙ୍ଗତେ ବିଧାତା ଗମିଲେ
ଦୈତ୍ୟଙ୍କର ରାଜା ଯେ ବଳିକି କହିଲେ ।।୩୧୨।।
ମଞ୍ଚପୁର ରାଜା ଯେ ବଇଲୋଚନ ବିର[4]
ସ୍ୱର୍ଗର ନୃପତି ସେ ଯେ ଅଟଇ ବଜ୍ରଧର ।।୩୧୩।।
ବେନିରାଜା ସେ ସନମତ କଲେ
ଯେ ଯାହାର ବଳ ଘେନି ବାହାର ହୋଇଲେଂ ।।୩୧୪।।
ବ୍ରହ୍ମା ବୋଇଲେ ହୋ ଚଳସି ବିଂଝଗିରି[5]
ଅମର ମଉସଧି ଯେ ଅଛଇ ସେହୁ ଗିରି[6] ।।୩୧୫।।
ମଉସଧି ଗିରି ଯେ ଉପାଡ଼ି ଆଣିବା
ଦେବତାଙ୍କ ବଚନେ ସନମତି କଲେ ଦେବ ଦାନବା[7] ।।୩୧୬।।
ବିଂଝଗିରିମାନେ ପ୍ରବେସ ହୋଇଲେ
ହୁଂକାର ଧ୍ୱନି କରି ଗିରି ଉପାଡ଼ିଲେ[8] ।।୩୧୭।।
କାନ୍ଧେ ମୁଣ୍ଡେଂ କରିଣ ଆଣିଲେ ଗିରି ବୋହିଂ
ସାହେର ତଟରେଂ ଯେ ପ୍ରବେସ ହେଲେଂ ଯାଇ ।।୩୧୮।।

୧ । ଗ ପୋଥି – କଳହ କଷ୍ଟ
୨ । ଖ ଓ ଗ ପୋଥି –ସମସ୍ତ ଦେବତା ବସି ବିଚାର କଲେ ତହୁଂ
୩ । ଖ ପୋଥି – ହେଉ ହେଉ ଚାଲ ମନ୍ଥିବା ବୋଲି ବୋଇଲେ ଦଇବ
୩ । ଗ ପୋଥି – ହୋଇ ହୋଇ ଚାଲ ମନ୍ଥିବା ବୋଲି ବୋଇଲେ ଦଇବ
୪ । ଖ ଓ ଗ ପୋଥି – କୁମର
୫ । ଗ ପୋଥି – ବିଞ୍ଝମାଳ
୬ । ଖ ପୋଥି – ଅମ୍ଳ ମଉସଧି ଅଛି ସେହି ବନସ୍ତର
୬ । ଗ ପୋଥି – ଆମ୍ବିଳ ମଉସଧି ଅଛି ସେହି ବନସ୍ତର
୭ । ଖ ଓ ଗ ପୋଥି – ବିଧାତା ବଚନେ ଚଳିଲେ ଦେବ ଯେ ଦାନେବ
୮ । ଗ ପୋଥିରେ ଏହାପରେ ଚାରି ଧାଡ଼ି ନାହିଁ

ମଉସଧି ରସ ଜଳରେଂ ପଡ଼ିଲା
ସପତ ସିନ୍ଧୁ ଜଳ ଦଧି ପ୍ରାୟେ ହେଲା ॥୩୧୯॥
ଦଣ୍ଡକୁ ରେଜୁ ହୋଇଲା ବାସୁକି ନୃପବର
ଜଳରେଂ ପକାଇଲେ ନେଇଣ ଗିରିବର ॥୩୨୦॥
ଯେସନେ ବାଳକେ ଟେଳା ମାରି ଦେଇ
ଅଗାଦ ଜଳରେ ପଡ଼ି ବୁଡ଼ି ଯାଇ ॥୩୨୧॥
ସେହି ରୁପେ ଗିରିବର ଜଳରେ ବୁଡ଼ିଗଲା
ଦେଖିଣ ତାଟଙ୍ଗା ହୋଇଲେ ସର୍ବେ ଭଲା ॥୩୨୨॥
ତେତିସ କୋଟି ଦେବତା ଇନ୍ଦ୍ର ସହିତରେ
ବୟାସି କ୍ଷେଉଣି ବଳ[୧] ବଳି ସଂଗତରେଂ ॥୩୨୩॥
ନିର୍ମାଖି ଜନପ୍ରାୟେ ହୋଇଲେକ ଠିଆ
କି ବୁଦ୍ଧି କରିବା ଏବେ ବିଚାରନ୍ତି ଦେବା[୨] ॥୩୨୪॥
ଦେବ ଦାନବ ତହିଂ ଯେ ବିକଳ ହୋଇଲେ
ଚିନ୍ତାପାଇ ବିଧାତା ଯୋଗରେଂ ବସିଲେ ॥୩୨୫॥
ବୋଇଲେ ବିଧାତା ନ ଭାଳ ତୁମ୍ଭେ କେହି
ଯୋଗାଧିପୁରୁଷଙ୍କୁ ଯୋଗରେ ଅଛି ଧ୍ୟାଇ ॥୩୨୬॥
ଯେତେ ବୋଲି ବିଧାତା ଚିନ୍ତିଲେ ଭଗବାନ
ଜୟତୁ ଜଗବନ୍ଧୁ ଅତ୍ରାହି ଭଞ୍ଜନ ॥୩୨୭॥
ଜଗତକାରଣ ତୁ ଦିନବନ୍ଧୁ ମହାବାହୁ[୩]
ଅସାହାକୁ ସାହା ସର୍ବଦିନେ ହେଉଥାଉ ॥୩୨୮॥
ଆପଣେ ଆଜ୍ଞା ଦିଲୁଂ ରଞ୍ଜିଲି ସଂସାର
ଲକ୍ଷ୍ମିର ବିହୁନେ ଦୁଖି ହୋଇଲେ ସୁରନର ॥୩୨୯॥
ତେଣୁଂ ଜଣାଉଛିଂ ହରି ତୁମ୍ଭର ଛାମୁରେଂ
ସମୁଦ୍ର ମନ୍ଥ ବୋଲି ବୋଇଲ ଶ୍ରୀମୁଖରେ ॥୩୩୦॥
ଦେବ ଦାନବ ବଳ ସମସ୍ତେ ହୋଇ ମେଳି
ଜଳେ ଗିରିବର ପକାଇଲେ ଡୋଳି ॥୩୩୧॥
ଜଳରେଂ ବୁଡ଼ିଲା ଗିରି ସମ୍ଭାଳି ନ ପାରିଲେ
ବୁଡ଼ି ମରୁ ମରୁ ଯେହୁଂ ଜଳରେଂ ଉବୁରିଲେ ॥୩୩୨॥
ତୁହି ଯେବେ ସାହା ହୋଇବୁ ବାସୁଦେବେ
କେମନ୍ତେ ପ୍ରକାରେ ସିନ୍ଧୁ ମନ୍ଥନ ହୋଇବେ ॥୩୩୩॥
ଯେମନ୍ତେ ବୋଲି ଯହୁଂ ଭାଳିଲେ ବେଦମଣିଂ
କ୍ଷିର ସିନ୍ଧୁ ମଧ୍ୟେ ସୁଭିଲାକ ବାଣିଂ ॥୩୩୪॥

୧ । ଗ ପୋଥି – ସନ୍ୟ
୨ । ଖ ଓ ଗ ପୋଥି – ହିଆ
୩ । ଖ ଓ ଗ ପୋଥି – ଜଗତ ତାରଣ ଜଗନ୍ନାଥ ନାମ ବହୁ

ବଦୟନ୍ତି ଶ୍ରୀହରି ସୁଣ ହେ ବେଦବର[୧]
ନ ଭାଳ ତୁମ୍ଭେ କେହି ମନ୍ଥ ସିନ୍ଧୁଜଳ ॥୩୩୫॥
ଆପଣେ ଜଗନ୍ନାଥ ବ୍ରହ୍ମାକୁ ତିଆରି
ଦେବଙ୍କର ହିତେଂ କମଠ ରୁପ ଧରି ॥୩୩୬॥
ତେରସତ ଯୋଜନ ବିସ୍ତାରିଲେ କାୟା
ଗିରି ତଳେ ବିଜେ କଲେ ଚଉବାହା ॥୩୩୭॥
ସତୁରି ଯୋଜନ ଗିରି ଅଟେ ଉଞ୍ଚ
ବେନି ବୟାସି ଯୋଜନ ତାର ଦିର୍ଘ ସଞ୍ଚ ॥୩୩୮॥
ଜଳରେ ବୁଡ଼ି ପାତାଳକୁ ପସି ଯାଇଥିଲା
ଟେକନ୍ତେ ଶ୍ରୀହରି ଉପରକୁ ଯେ ଉଠିଲା ॥୩୩୯॥
ଦେଖିଣ ଦେବ ଦତ୍ୟ ହୋଇଲେ ଉସତ
ଧର ଧର ବୋଲିଣ ଡାକିଲେ ଚଉମାଥ ॥୩୪୦॥
ଭରସା ପାଇଲେ ଦେବ ଦଇତ୍ୟେ ଧଇଲେ
କୁରାଳଚକ୍ର ପ୍ରାୟେ ଗିରିକି ବୋଲାଇଲେ ॥୩୪୧॥
ଗିରିକି ବୁଲାବନ୍ତେ ହାନ୍ଦୋଳି ହେଲା ଜଳ
କୁରୁମ ପିଠିରୁଂ ଯେ ଉଠିଲା ଅନଳ ॥୩୪୨॥
ହୁଞ୍ଚୁଡି ଟାଣନ୍ତେ ବାସୁକି ସହି ନ ପାରିଲା
ସହସ୍ରେ ମୁଖରୁଂ ବାସୁକି ଗରଳ ଛାଡ଼ିଲା ॥୩୪୩॥
ତେଜ ଯେ ଲାଗନ୍ତେ ଦେବେ ହୋଇଲେ ବ୍ୟାକୁଳ
ଟାଣି ନ ପାରି ମୁର୍ଚ୍ଛାରେ[୨] ପଡ଼ିଲେ ସକଳ ॥୩୪୪॥
ରହିଲା ଗିରିବର ଟାଣି ନ ପାରି ଆଉ
ଦେବେ ଡାକ ଦିଲେ ରକ୍ଷା କରହେ ମହାବାହୁ ॥୩୪୫॥
ଦେବଙ୍କ ବିକଳଂ ଦେଖି ବୋଇଲେ ଜଗନ୍ନାଥ
ଡାକ ଯେ ବିସକୁ ଭକ୍ଷିବେ ଉମାକାନ୍ତ ॥୩୪୬॥
ସୁଣିଣ ଦେବତାୟେ ସଙ୍କରଙ୍କୁ ଡାକ ଦିଲେ
ରଖ ହେ ତ୍ରିପୁରାରି ନାସଗଲୁଂ ଆମ୍ଭେ ଭଲେ ॥୩୪୭॥
ନାସ ଯେ ଗରଳକୁ ରଖ ଆମ୍ଭ ପ୍ରାଣ
ଜୟ ହେ ସଦାସିବ ରଖ ହେ ତ୍ରିଲୋଚନ ॥୩୪୮॥
ଯେମନ୍ତେ ଦେବତାୟେ ଆକୁଳେ ଡାକ ଦିଲେ ପୁଣ
ସୁଣି ସଦାସିବ ଦେବ ତ୍ରିଲୋଚନ ॥୩୪୯॥
ସୁଣିଣ ସିନ୍ଧୁ ତଟକୁ ସେ ଚଳିଲେ ସଦାସିବେ
ପ୍ରବେସ ହୋଇଯାଇ ଦେବତାଙ୍କ ଆଗେ[୩] ॥୩୫୦॥
ସହସ୍ର ମୁଖରେ ବାସୁକି ଗରଳ ଛାଡ଼ଇ
ଆକାସ ମାର୍ଗକୁ ଯେ ସିଖା ଲାଗିଛଇ ॥୩୫୧॥

୧ । ଖ ଓ ଗ ପୋଥି – କୁଶଧର
୨ । ଗ ପୋଥି – ମୂଛାରେ
୩ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଦେବତାଙ୍କ ବିକଳ ସିବ ନ ପାରିଲେ ସହି
ସୋସିଲେ ବିସ ଗଲା ଜିହ୍ନ ହୋଇ ॥୩୫୨॥
ପୁଣି ଦେବତାୟେ ଟାଣିଲେ ଗିରିବର
ଐରାବତ ଗଜ ଭାସିଲା ଜଳର ॥୩୫୩॥
ଉଚ୍ଚସର୍ବା ଅସ୍ୱ ପୁଣି ହିଂ ଉପୁଚି ଉଠିଲା[1]
ସୁମନ୍ତକ ମଣି ଅମୃତ କୁଣ୍ଡଳ ହେମ ସର ଗଦା ॥୩୫୪॥
ନନ୍ଦିଘୋସ ରଥ ଯେ ପାରିଜାତ ବନ
ଅପସରା ବୃନ୍ଦ ଆଦି ମାୟା ସେ ବିମାନ ॥୩୫୫॥
ଦେବତାଙ୍କ ଭାଗ ସବୁ ସେ ହୋଇଲା
ଦୈତ୍ୟମାନଙ୍କୁ ଯେ ସେ ଦ୍ରବ୍ୟ ନୋହିଲା[2] ॥୩୫୬॥
ପୁଣି ହିଂ ମନ୍ଥନ୍ତେ ବାହାର ହୋଇଲେ କମଳା
ରୁପ ଦେଖି ମୋହିତ ହୋଇଲେ ଦତ୍ୟବଳା ॥୩୫୭॥
ବୋଇଲେ ଏହୁ କନ୍ୟା[3] ହୋଇଲା ଆମ୍ଭର
ଧାଇଂ ଯାଇ ଦୈତ୍ୟେ ଆବୋରି ଧାଡିକାର[4] ॥୩୫୮॥
ୟେମନ୍ତ ବୋଲିଣ ସମସ୍ତେ ଗୋଳ ତହିଂ କଲେ
ନାରାୟଣଠାବକୁ ବୋଲିଣ ସେହୁ ଗଲେ[5] ॥୩୫୯॥
ବ୍ରହ୍ମା ବୋଇଲେ ତୁମ୍ଭେ ନ ନିୟ କେହୁ
ଦେବ କନ୍ୟା ଏହୁ ସେ ଯେ ଦେବପୁର ଯାଉ[6] ॥୩୬୦॥
ନାରାୟଣଙ୍କ ଭାରିଯା ଲକ୍ଷ୍ମି ଯେ ଅଟଇ
ଯାହାର ବିହୁନେ ସଂସାର ସୋଭା ନ ଦିସଇ ॥୩୬୧॥
ସୁଣିଣ ଦୈତ୍ୟେ ଯେ ବିସ୍ମୟେ ହୋଇଲେ
ନାରାୟଣ ଠାବକୁ ଲକ୍ଷ୍ମି ଚଳିଗଲେ ॥୩୬୨॥
ୟେଣୁ ଉତପତି ସିନ୍ଧୁର କୁମାରି
ତେଣୁଂ ସଂସାରକୁ ଦିସିଲାକ ସିରି ॥୩୬୩॥
ପୁଣି ସିନ୍ଧୁ ମନ୍ଥନ୍ତେ ପୁରୁଷେ ବାହାର
କୁମ୍ଭ ଗୋଟିୟେକ ବସାଇ ସିରର ॥୩୬୪॥
ଦେଖିଣ ଦୈତ୍ୟେଂ ଯେ ଉଗାଳିଲେ[7] ଯାଇ
ଛଡ଼ାଇ ଦେଖନ୍ତେ ଯେ ଅମୃତ କୁମ୍ଭ ସେହି ॥୩୬୫॥

୧ । ଖ ଓ ଗ ପୋଥି – ଉପୁଜିଲା
୨ । ଖ ଓ ଗ ପୋଥିରେ ଏହି ଏକ ଧାଡ଼ି ନାହିଁ
୩ । ଖ ଓ ଗ ପୋଥି – ରୂପ ଦେଖି ମୋହିତ
୪ । ଖ ଓ ଗ ପୋଥିରେ ଏହି ଏକ ଧାଡ଼ି ନାହିଁ
୫ । ଖ ଓ ଗ ପୋଥିରେ ଏହି ଏକ ଧାଡ଼ି ନାହିଁ
୬ । ଖ ଓ ଗ ପୋଥିରେ ଏହି ଏକ ଧାଡ଼ି ନାହିଁ
୭ । ଗ ପୋଥି – ଆଗୁଳିଲେ

ଅମୃତ ପାଇ ଦୈତ୍ୟେ ହରସ ହୋଇଲେ
ଆତଙ୍ଗେ ଦେବତାୟେ ହରିଙ୍କି ସୁମରିଲେ[1] ॥୩୬୬॥
ଜୟତୁ ଜଗନ୍ନାଥ ଆରତ[2] ନାସନ
ଆତଙ୍ଗ ପଡ଼ିଲା ୟେବେ ରଖ ହେ ଭଗବାନ ॥୩୬୭॥
ଦେବତାଙ୍କ ନିମନ୍ତେ ଦଇତ୍ୟ ନାସ କରୁ
ସରଣ ପଞ୍ଜର ବାନା ମହିମା କଳ୍ପତରୁ ॥୩୬୮॥
ଗରଳ ଭୟରୁ ଯେ ରଖିଲୁ ପଦ୍ମନାଭ
ଆଜ୍ଞା ଦିଲୁ ବିସ ଯେ ଭକ୍ଷିଲେ ସଦାସିବ ॥୩୬୯॥
ଅମୃତ କୁମ୍ଭ ୟେବେ ଭକ୍ଷିବେ ଦଇତ୍ୟେ
କାଳକୁ ଅମର ଯେ ହୋଇବେ ଯୁଗତେ ॥୩୭୦॥
ଦଇତ୍ୟେ ୟେମନ୍ତେ ଅମର ହୋଇବେ
ଦେବତା ସ୍ୱର୍ଗପୁର ରହି ନ ପାରିବେ ॥୩୭୧॥
ପାରିଲେ ୟେବେ ରକ୍ଷା କର ହେ ନାରାୟଣ
ନୋହିଲେ ଅରକ୍ଷ ହୋଇଲେ ଯେ ଦେବଗଣ ॥୩୭୨॥
ୟେମନ୍ତେ ବୋଲି ଯହୁଂ ଦେବତା ଡାକ ଦେଲେ
ଦେବତାଙ୍କ ଆକୁଳ ଯେ ଶ୍ରୀହରି ସୁଣିଲେ[3] ॥୩୭୩॥
ରଖିଲି ବୋଲି ସୁନ୍ୟେ ଡାକିଲେ ବାସୁଦେବେ
ସେ ସବଦ ସୁଣିଲେ ଯେ ତେତିସ କୋଟି ଦେବେ[4] ॥୩୭୪॥
ମୋହନି କନ୍ୟା ୟେକ ହୋଇଲେ ଭାବଗ୍ରାହି
ସଭାରେ ମିଳନ୍ତେ ସର୍ବେ ହୋଇଲେକ ମୋହି ॥୩୭୫॥
ଆପଣେ ଜଗନ୍ନାଥ ହୋଇଲେ କାମିନି
ରୁପ ଦେଖି ଢଳିଲେ ଯତି ସିଦ୍ଧ ମୁନି ॥୩୭୬॥
ଅଳପ ହସି ମୁଖେ ଦେଇଣ ବସନ
କିପାଇଂ ଗୋଳକର ବୋଲନ୍ତି ବଚନ ॥୩୭୭॥
ଦଇତ୍ୟେ ବୋଇଲେ ତୁମ୍ଭେ ସୁଣ ଗୋ ସୁନ୍ଦରି
ଦେବତା ଦୈତ୍ୟେ ଆମ୍ଭେ ମନ୍ଥିଲୁ ସିନ୍ଧୁ ବାରି ॥୩୭୮॥
ୟେତେ ଦ୍ରବ୍ୟ ମିଳିଲା ସମସ୍ତେ ନିଲେ ଭାଗ
ଅମୃତ କୁମ୍ଭ ୟେବେ ହୋଇଲା ଆମ୍ଭ ଭାଗଂ ॥୩୭୯॥
ୟେବେ କହୁଛନ୍ତି ଆମ୍ଭଙ୍କୁ ଅମୃତ ଦିଅ ୟେହା
ତେଣୁ ଦୁଇ ବଳରେ ହେଉଛି ଉଛାହା ॥୩୮୦॥
ମୋହନି ବୋଇଲେ ତୁମ୍ଭେ ଗୋଳ ନକର କେହି
ବେନି ଭାଗ କରି ସୁଧା ବାଣ୍ଟି ଦେବି ମୁହିଂ ॥୩୮୧॥

୧ । ଖ ଓ ଗ ପୋଥି – ଡାକିଲେ
୨ । ଖ ଓ ଗ ପୋଥି – ଆତଙ୍ଗ
୩ । ଖ ଓ ଗ ପୋଥିରେ ଏହି ଏକ ଧାଡ଼ି ନାହିଁ
୪ । ଖ ଓ ଗ ପୋଥିରେ ଏହି ଏକ ଧାଡ଼ି ନାହିଁ

ସମସ୍ତେ ଗିରି ଟାଣି ହୋଇଛ ଅସକତ
ଅମୃତ ଭକ୍ଷିଣ ତୁମ୍ଭେ ହୁଅ ହୃଷ୍ଟ ଚିତ ॥୩୮୨॥
ଯେମନ୍ତ ବୋଲିଣ ଶ୍ରୀହରି ବୋଇଲେ
ମୋହନି ରୁପ ଧରି ସମସ୍ତଙ୍କୁ ମୋହିଲେ[୧] ॥୩୮୩॥
ଯାହାର ମାୟାରେ ମୋହିତ ଜଗତ
ତାହା ବୋଲ କେହ୍ନେ ଭାଙ୍ଗିବେ ଦଇତ ॥୩୮୪॥
ସମସ୍ତେ ବୋଇଲେ ହୋ ଭଲ କଥା କହିଲ
ଅମୃତ ବାଣ୍ଟିଦେବ ମଧ୍ୟସ୍ତ ଅଇଲ ॥୩୮୫॥
ରୁପ ଦେଖି ଯେ ହୋଇଲେ ସମସ୍ତ ମୋହିତ
ଶ୍ରୀହରି ବୋଇଲେ ହୋ ସଉଚ ହୋଇ ବସ ॥୩୮୬॥
ସୁଣିଣ ଦେବ ଦତ୍ୟ ସେ ହରସ ହୋଇଲେ
ସଉଚ ହୋଇଣ ପାତ୍ର ଘେନିଣ ବସିଲେ ॥୩୮୭॥
ପୁର୍ବମୁଖ ହୋଇଣ ବସିଲେ ଦେବଗଣ
ଦଇତ୍ୟ ବସିଲେ ପଶ୍ଚିମ ମୁଖ ଯେ ହୋଇଣ ॥୩୮୮॥
ଆଗେ ଦେବତାଙ୍କ ପାତ୍ରରେଂ ଅମୃତ ପରସି
ଗୁପତେ ରାହୁ ଚନ୍ଦ୍ର ସୁର୍ଯ୍ୟର ସଙ୍ଗତେ ବସି[୨] ॥୩୮୯॥
ଦେଖିଣ ଚନ୍ଦ୍ର ସୁର୍ଯ୍ୟ କହିଲେକ ଠାରି
ଯେଡ଼େ କୃତ କିପାଇଂ କଲେକ ଦଇତାରି ॥୩୯୦॥
ଦଇତ୍ୟ ମହାବଳି ରାହୁ ଯେ ଅଟଇ
ଯେହାକୁ ସୁଧା ଦିଲେ ଅମର ହେବ ଯେହି ॥୩୯୧॥
ସୁଣିଣ ଶ୍ରୀହରି ଯେ କୋପିତ ହୋଇଲେ
ଚକ୍ରରେ ରାହୁକୁ ଯେ ବେନି ଖଣ୍ଡ କଲେ ॥୩୯୨॥
ସର୍ବ ଦେବତାୟେ ଯେ ଭକ୍ଷିଲେ ଅମୃତ
ଦଇତ୍ୟେ ବସିଣ ଯେ ଚାହାନ୍ତି ମଟମଟ ॥୩୯୩॥
କୁମ୍ଭ ଗୋଟିକ ପକାଇ ହରି ଅନ୍ତର ହୋଇଲେ
ସୁଣସି ଗିରିଜା ଗୋ ସଙ୍କର କହିଲେ ॥୩୯୪॥
ଅମୃତ ଭକ୍ଷିଲା ରାହୁ ମୃତ୍ୟୁ ଯେ ଲୋହିଲା
ବେନିଖଣ୍ଡ ବେନି ପୁରୁଷ ହୋଇଣ ଗୋଡ଼ାଇଲା ॥୩୯୫॥
କିଯେ ବୋଲି ଗୋବିନ୍ଦ ପଛକୁ ଅନାଇଂ[୩]
ବେନି ଖଣ୍ଡ ହୋଇ ରାହୁ ଅଛଇ ଉଭା ହୋଇ ॥୩୯୬॥
ଦେଖି ଚମତ୍କାର ପାଇଲେ ଭାବଗ୍ରାହି
ଏତ ଦେବତା ନୋହଇ ଯେ ଦେଖଇ ॥୩୯୭॥
କିଏ ବୋଲି ଯେ ବୋଇଲେ ଭଗବାନ[୪]
ତେଣୁ ରାହୁ ଅର୍ଧେକ ହୋଇଲା କେତୁ ନାମ ॥୩୯୮॥

୧ । ଖ ପୋଥିରେ ତଳ ଚାରି ଧାଡ଼ି ନାହିଁ
୨ । ଖ ଓ ଗ ପୋଥି – ମେଳେଂ ଆସି
୩ । ଖ ଓ ଗ ପୋଥିରେ ତଳ ତିନି ଧାଡ଼ି ନାହିଁ
୪ । ଖ ପୋଥି – କିଏ ତୁ ବୋଲି ବୋଲିବାରେ କେତୁ ନାମ ପାଇ

ଅମର ହୋଇଲା ଯହୁଂ ଶ୍ରୀହରି ଦେଖିଲେ
ବରମାଗ ବରମାଗ ବୋଲି ଶ୍ରୀହରି ବୋଇଲେ ॥୩୯୯॥
କର[୧] ଯୋଡ଼ିଣ ସେ ବୋଲଇ ଅସୁର
ମୋହର ବଇରି ସେ ଚନ୍ଦ୍ର ଦିବାକର ॥୪୦୦॥
ସେ ବେନି ଦେବତାଙ୍କୁ ମୁଂ ସାଧ୍ୟ କରିବଇଂ
ଅସ୍ତୁ ହେଉ ବୋଲିଣ ବୋଇଲେ ଭାବଗ୍ରାହି[୨] ॥୪୦୧॥
ବର ପାଇ ରାହୁ କେତୁ ଗଲେ ବେଗେ ଚଳି
ଗ୍ରହ ମଣ୍ଡଳେଂ ଯାଇ ରହିଲେ ଆବୋରି ॥୪୦୨॥
ଯହୁଂ ସେ ଦଇତ୍ୟେ ଭାଗ ନ ପାଇଲେ
କୋପାନଳ ହୋଇଣ ସେ ଘୋର ଯୁଦ୍ଧ କଲେ ॥୪୦୩॥
ଅମୃତ ଭକ୍ଷି ଦେବେ ହୋଇଲେ ବଳବନ୍ତ
ଯୁଦ୍ଧରେ ଦଇତ୍ୟଙ୍କୁ କଲେ ଭଗନସ୍ତ ॥୪୦୪॥
ହାରିଣ ବଳି ନିଜ ପୁରକୁ ଚଳିଗଲା
ଯେ ଯାହାର ପୁରେ ମିଳିଲେ ସର୍ବଦେବା ॥୪୦୫॥
ଯେମନ୍ତ ପ୍ରକାରେ ସେ ଯେ ହୋଇଲା ସମର
ସୁଣଗୋ ଓମା ବୋଲି ବୋଲନ୍ତି ଶଙ୍କର ॥୪୦୬॥
ସୁଣିଣ ଓମା ଯେ ହୋଇଲେ ହରସ[୩]
ହରପାର୍ବତୀ ଚରଣେ ସରଣ ସାରୋଳା ଚଣ୍ଡି ଦାସ ॥୪୦୭॥

## ଉଗ୍ରସେନର ଜନ୍ମ

ଯେଥୁ ଅନ୍ୟନ୍ତରେ ବୈବସୁତ ପଚାରିଲେ
ଲକ୍ଷ୍ମିଂକି ଘେନି ହରି ବୈକୁଣ୍ଠକୁ ଗଲେ ॥୪୦୮॥
ଦ୍ୱାପର ଯୁଗେଂ କେହ୍ନେ ଜନ୍ମିଲେ ବାସୁଦେବ
ଯେ କଥା ମୁନିବର ମୋ ଅଗ୍ରତେ କହିବ ॥୪୦୯॥
ସୁଣ ହେ ନୃପତି ବୋଲି ବଦୟନ୍ତି ମହାମୁନି
ପାର୍ବତିଂ ଆଗେ ଯାହା କହିଲେ ସୁଳପାଣି ॥୪୧୦॥
ଭାରତ ହରିବଂସ ଯେ ଅପୁର୍ବ ଆଖ୍ୟାନ
ସୁଣନ୍ତେ ମହାପାପ ହୋଇବ ମୋଚନ ॥୪୧୧॥
ପଶ୍ଚିମ ସୋମରାଷ୍ଟ୍ରେ ମଥୁରା ନାମେ ପୁର
ସୁର୍ଯ୍ୟସୁତା ଯମୁନା ବହଇ ସେହିଠାର ॥୪୧୨॥
ଉଗ୍ରସେନ[୪] ବୋଲିଣ ତହିଂର ନୃପବର
ଧାର୍ମିକ ବିବେକ ସେ ପାଳଇ ସଂସାର ॥୪୧୩॥

୧ । ଖ ଓ ଗ ପୋଥି – କରପତ୍ର
୨ । ଖ ଓ ଗ ପୋଥି – ତ୍ରୈଲୋକ୍ୟ ଗୋସାଇଂ
୩ । ଗ ପୋଥି – ହସ ହସ
୪ । ଖ ଓ ଗ ପୋଥି – ବସୁସେନ

ଜୟେସେନ ବୋଲିଣ କୁମରେ ତାର ହେଲା
ପିତାର ଗୁଣ କର୍ମ ସେହି ସେ ଆଚରିଲା ॥୪୧୪॥
ଜୟସେନ କୁମର ଭାବସେନ ହୋୟେ
ଭାବସେନର ହୋଇଲା ତିନିଗୋଟି ପୋଏ[୧] ॥୪୧୫॥
ସୁରସେନ[୨] ମଧୁସେନ କୁରୁସେନ ବୋଲି ତିନିନାମ
ପିତାର ଅବିସେକି ହୋଇଲା ମଧୁସେନ ॥୪୧୬॥
ସୁରସେନ ବୋଲି ତାର ହୋଇଲା ତନୟେ
ଉଗ୍ରସେନ ତାହାର ବିର୍ଯ୍ୟରୁ ଜାତ ହୋୟେ ॥୪୧୭॥
ବଡ଼ାଇ ପ୍ରତାପି ସେ ହୋଇଲା ରାଜନ
ତାର ତୁଲେ ପୃଥି ରାଜା ନୋହିଲେ ସରିସମ ॥୪୧୮॥
ପୁତ୍ରସମ କରି ରାଜା ପ୍ରଜାଙ୍କୁ ପାଳଇ
ସତୃବୋଲିଣ ସେ କାହାକୁ ଭୟ ଯେ ନଥାଇ[୩] ॥୪୧୯॥
ସନ୍ୟସାଜି ସମସ୍ତ ରାଜାଙ୍କୁ ଜିଣିଲା
ବିରତୁର ବଜାଇ ସେ ପୃଥିବି କମ୍ପାଇଲା ॥୪୨୦॥
ବଡ଼ ଧାର୍ମିକ ସେ ନୃପତି ଅଟଇ
ସାତବଂସ ଯାଦବରୁ ଗରିଷ୍ଟ ଅଟଇ ॥୪୨୧॥
ଭାରିଯା ନାମ ତାର ଅଟଇ ଇନ୍ଦୁମତି
ପତିବ୍ରତା ନାରି[୪] ସେ ସ୍ୱାମିର ପ୍ରିୟବତି ॥୪୨୨॥
ପରପୁରୁଷକୁ ପିତା ସମାନେ ଦେଖଇ
ସ୍ୱାମିର ସ୍ନେହେ ତିନି ଦୁହିତା ଜାତ ହୋଇ ॥୪୨୩॥
ଦେବକି ଦୈବକି ଦମୟନ୍ତି ବୋଲି ଦୁହିତାଙ୍କର ନାମ
ଦିବ୍ୟଙ୍ଗ[୫] ବୋଲି ପୁଣି ହୋଇଲା ନନ୍ଦନ ॥୪୨୪॥
ଦିନେକ ଇନ୍ଦୁମତି ହୋଇଲା ରଜବତି
ଅଙ୍ଗସୁଦ୍ଧ ହୋଇଲା ସପତମ ରାତି ॥୪୨୫॥
ପ୍ରଭାତୁ ଉଠି ରାଣି ସ୍ନାହାନ କରିଗଲା
ଗନ୍ଧ ଯେ ଅଏଂଳା ବୋଲି ଜଳରେ ପସିଲା ॥୪୨୬॥
ସ୍ନାହାନ ସାରିଣ ଯେ ପିନ୍ଧିଲା ଝିନ ବାସ
ପୁର୍ବ ଦିଗରୁ ଉଦେ ଯେ ହୋଇଲେ ଆଦିତ୍ୟ ॥୪୨୭॥

## କଂସର ଜନ୍ମ

କହନ୍ତି ଅଗସ୍ତି ସୁଣ ହେ ଦଣ୍ଡଧାରି
ସତ୍ୟସାମଳ ବୋଲି ଏକଇ ଦୈତ୍ୟ ମହାବଳି ॥୪୨୮॥

୧ । ଖ ଓ ଗ ପୋଥି – ତନୟେ
୨ । ଖ ଓ ଗ ପୋଥି – ଦୃସେନ
୩ । ଖ ଓ ଗ ପୋଥି – ଶତୃ ବୋଲି ଆଉ ଜଣେ ତାହାର ନଥାଇ
୪ । ଖ ପୋଥି –ସାଧବୀ
୫ । ଖ ପୋଥି – ଦୈବକ
୫ । ଗ ପୋଥି – ଦୈବଙ୍କ

ତାହାର ନନ୍ଦନ ହରାନ୍ତେକ[୧] ହୋଇଲା
ଦେବତାମାନଙ୍କୁ ଯେ ଅନେକ ଦୁଖ ଦିଲା[୨] ॥୪୨୯॥
ଶ୍ରୀହରି ହସ୍ତରେଂ ସେ ହୋଇଲା ନିଧନ
ଦୁନ୍ଦୁଭି ବୋଲି ତାର ହୋଇଲା ନନ୍ଦନ ॥୪୩୦॥
ଦୁନ୍ଦୁଭିଠାରୁ ଯେ ମାରିଚ ଜନମ ହୋଇଲା
ମାରିଚର ପୁତ୍ର ଦୃମିଳା ବୋଲାଇଲା ॥୪୩୧॥
ତ୍ରେତୟା ଯୁଗେ ରାମ ମାରିଚକୁ କଲେ ହତ
ମଧୁବନେ ଲୁଚିଲା ଦୃମିଳା ଦଇତ ॥୪୩୨॥
ବିଚାରଇ କେମନ୍ତେ ହୋଇବ କୁମର
ଦେବତାଙ୍କୁ ଦଳିଣ ନାସିବ ସଂସାର ॥୪୩୩॥
ଦେବଙ୍କର ଛଳେଂ ଯୁଦ୍ଧ କରିବେ ବଜ୍ରଧର[୩]
ତାହାଙ୍କୁ ନାସିବେ ଯେ ମୋହର କୁମର ॥୪୩୪॥
ଦେବତାଙ୍କୁ ସାଧ୍ୟ କରିବ ଯେଁ[୪] ମୋହର ନନ୍ଦନ
ତେବେ ସୁଝିବି ପିତୃ ପିତାମହ ରଣ ॥୪୩୫॥
ଏମନ୍ତ ବୋଲିଣ ସେ ଦଇତ୍ୟ ଭାଳୁଥାଇ
କାହାର ଗର୍ଭରେ ମୁଂ ବିର୍ଯ୍ୟ ଦେବି ନେଇଂ ॥୪୩୬॥
ଯେଥୁ ଅନନ୍ତରେ ସେ ଦଇବ ସଂଯୋଗ
ଆସନ୍ତେ ଇନ୍ଦୁମତି ମିଳିଲା ତାର ଆଗ ॥୪୩୭॥
ଅପୁର୍ବ ମୋହନି ସେ ସୌନ୍ଦର୍ଯ୍ୟ ସୁନ୍ଦରିଂ[୫]
ଦେଖଣ୍ଡ ମୁନିମାନେ ଯେ ତପ ଯିବେ ଛାଡ଼ି ॥୪୩୮॥
ଦେଖିଣ ଦଇତ୍ୟ ଯେ କାମରେ ବସ ହେଲା
ପଥ ଓଗାଳିଣ ଯେ ଆକ୍ରୋସି କୋଳ କଲା ॥୪୩୯॥
ଛାଡ଼ ଛାଡ଼ ବୋଲି ଇନ୍ଦୁମତି ଯେ ବୋଲଇ
ସୁଦ୍ଧ ଅଙ୍ଗ ମୋହର ନ ଛୁଂଅ ପାପି ତୁହି ॥୪୪୦॥
ବହୁତ ପ୍ରକାରେ ଯେ ଇନ୍ଦୁମତି ବୋଲଇ[୬]
ନ ସୁଣି ଦଇତ୍ୟ ଯେ ଭୁମିରେ ପାଡ଼ଇ[୭] ॥୪୪୧॥
ଭୁଜରେଂ ଭୁଜ ଭିଡ଼ି[୮] ହିଆକୁ ହିଆ ଦେଇ
ବହୁତ ରଙ୍ଗ ରସେଂ[୯] ସୃଙ୍ଗାର କରଇ ॥୪୪୨॥

୧ । ଖ ଓ ଗ ପୋଥି – ନରାନ୍ତେକ
୨ । ଖ ଓ ଗ ପୋଥି – ସତ୍ୟ ଯୁଗେ ସଂଖାସୁର ସଙ୍ଗତରେ ଥିଲା
୩ । ଗ ପୋଥି – ଚକ୍ରଧର
୪ । ଖ ଓ ଗ ପୋଥି – ତାହାଙ୍କୁ ନାସିବ ଯେବେ
୫ । ଖ ପୋଥି – ଦିବ୍ୟ ମନୋହାରି
୬ । ଖ ଓ ଗ ପୋଥି – ମଣାଇଂ କହିଲା
୭ । ଖ ପୋଥି – ପାଡ଼ିଲା
୭ । ଗ ପୋଥି – ପିଡ଼ିଲା
୮ । ଗ ପୋଥି – କୁଳରେ ବସାଇ ଭିଡ଼ି
୯ । ଖ ପୋଥି – ରତି ରଙ୍ଗେ

ଯେତେବେଳେ ଦଇତ୍ୟ ଅଙ୍ଗରୁ ବିର୍ଯ୍ୟ ଛାଡ଼ି
ମୋହମାନ ହୋଇଲା ସେ ଉଗ୍ରସେନ ନାରି ।।୪୪୩।।
ରତି ସାରି ଦାନବ ସେ ବନରେଂ ପସିଗଲା
ଉଠି ଇନ୍ଦୁମତି ଜଳରେ ସ୍ନାହାନ ସାରିଲା ।।୪୪୪।।
ରାଜାର ଆଗେଂ ସବୁ କହିଲା ସମାଚାର
ସୁଣିଣ ବହୁତ ଦାନ ଦେଲା ନୃପବର ।।୪୪୫।।
ଯେତେ଼ କୃତ୍ୟ କଳୁରେ ଚାଣ୍ଡାଳ ପାପିଷ୍ଟ
ଯେହୁ ଜନ୍ମ ହୋଇବ ତାର ହସ୍ତରେ ହେବୁ ନାସ ।।୪୪୬।।
ଦଇତ୍ୟର ବିର୍ଯ୍ୟେ ଇନ୍ଦୁମତି ଗର୍ଭ ହେଲା ଭାରି
ଦସମାସ ସମ୍ପୂର୍ଣ୍ଣେ ପ୍ରସବ କଲା ନାରି ।।୪୪୭।।
କୁମର ଜନମିଣ ରଡ଼ିଯେ ଛାଡ଼ିଲା
ମଞ୍ଚପୁର ଗିରି ଆଦି କନ୍ଦର କମ୍ପିଲା ।।୪୪୮।।
ସପତ ସିନ୍ଧୁ କମ୍ପି ଚହଟି ଉଠିଲା ପାଣି
ତ୍ରାସିଲେ ନାଗ ଲୋକେ କମ୍ପିଲା ଧରଣି ।।୪୪୯।।
କମ୍ପିଲା ଆକାସ ଯେ ସଭା ହିଂ ଚମକିଲା
ନକ୍ଷତ୍ରମାନେ ଖସି ପଡ଼ିଲେକ ଭଲା ।।୪୫୦।।
ନବଗ୍ରହେ ହୋଇଲେ ଯେ ଓଲଟ ପାଲଟ
ଚମକିଲା ଧ୍ରୁବଲୋକ ଗୋଲେକ ବଇକୁଣ୍ଠ ।।୪୫୧।।
କାଳଦଣ୍ଡ ଛାଡ଼ିଲେ ଯେ ନାସ୍କର ରାଜନ
ରହିଲେ ସ୍ତମ୍ଭିଭୁତେ ନ ବହିଲା ପବନ ।।୪୫୨।।
ଯେମନ୍ତେ ହୋଅନ୍ତେ ବେନି ଘଡ଼ି ବହିଗଲା
ଦେଢ଼ ପହରେ ତହିଂ ସଂସାର ଉଚ୍ଛନ୍ନ ହୋଇଲା ।।୪୫୩।।
ଦୁତିୟ ପ୍ରହର ଯହୁଂ ହୋଇଲା ପ୍ରବେସ
ସମସ୍ତ ଦେବତାଯେ ହୋଇଲେ ଯେକପାସ ।।୪୫୪।।
ଇନ୍ଦ୍ର ଜଣାଇଲା ସୁଣ ବେଦବର
କିପାଇଂ ଉଚ୍ଛନ୍ନ ଯେ ହୋଇଲା ସଂସାର ।।୪୫୫।।
ବିଧାତା ବୋଇଲେ ହୋ ନ ଭାଳ ବସ ତୁମ୍ଭେ
କିସ ମଞ୍ଚରେ ହୋଇଲା ଯୋଗରେ ବସୁ ଆମ୍ଭେ ।।୪୫୬।।
ଯେତେ ବୋଲି ଯୋଗରେ ବସିଲେ ଚଉମାଥ
ଜାଣିଲେ ମଞ୍ଚେ ଜନ୍ମ ହୋଇଲାକ କଂସ ।।୪୫୭।।
ବ୍ରହ୍ମା ବୋଇଲେ ହୋ ନ ଭାଳ ତୁମ୍ଭେ କେହି
ଉଗ୍ରସେନର ଯେକ ପୁତ୍ର ଜନ୍ମ ହୋଇ ।।୪୫୮।।
ଭୁମିରେ ପଡ଼ି ନନ୍ଦନ ରଡ଼ିଯେ ଛାଡ଼ିଲା
ତେଣୁ ଯେ ସଂସାର ଯାକ ଚମକି ପଡ଼ିଲା ।।୪୫୯।।
ରାବଣ ସମାନେ ଯେ କରିବ ବଡ଼ଦର୍ପ
ମଞ୍ଚପୁର ସାଧିବ ଭାଜିଂବ ପୁର ସ୍ୱର୍ଗ ।।୪୬୦।।
ବେନି ଗାନ୍ତି ଯଦି ସେ ପାଡ଼ନ୍ତା ବୋବାଳି
ଆକାସ ଭାଜିଂ ଯେ ପଡ଼ନ୍ତା ମହିଆଳି ।।୪୬୧।।
ତୃତିୟ ଗାନ୍ତି[1] ଯଦି ବୋବାଳି ଛାଡ଼ନ୍ତା
ବସୁଧା ଲେଉଟିଣ ରାସାଙ୍ଗତ ହୁଅନ୍ତା ।।୪୬୨।।
ତାହାର ରଡ଼ିରେ ଯେ କମ୍ପିଲା ଆକାସ
ଆଜଠାରୁ ତାହା ନାମ ହୋଇଲାକ କଂସ ।।୪୬୩।।
ଯେବେ ଦେବତାଯେ ନିଶ୍ଚିନ୍ତ ନୋହିବ
ରାବଣ ସମାନେ ଯେ ଉପଦର୍ପ ସେ କରିବ ।।୪୬୪।।
ଯେତେ ବୋଲି ବିଧାତା ମିଳିଲେ ନିଜପୁର
ଯେବେଂ ଦେବତାଯେ ରହିଲେ ଯେଝାଘର ।।୪୬୫।।
ବୈବସ୍ୱତ ମନୁ ଅଗସ୍ତିକି କଲେ ପୁଛା
ଅସମ୍ଭବ କହିଲ ମୁନି କଂସର ବାରତା ।।୪୬୬।।
ଜନମ ହୁଅନ୍ତେ ତ ଉଛନ ସଂସାର
ବଢ଼ିଣ କେମନ୍ତ ସେ କଲାକ ମହାବିର ।।୪୬୭।।
ଯେ କଥା କହ ମୁନି ସୁଣିବି କର୍ଣ୍ଣର
ବଦୟନ୍ତି ଅଗସ୍ତି ସୁଣ ହେ ନୃପବର ।।୪୬୮।।
ହରିବଂସ ପୁରାଣ ଏ ଅପୂର୍ବ ଅଟଇ
ସୁଣିଣ ପାପ ନାସି ବଂସ ଉଦିତ ହୁଅଇ ।।୪୬୯।।
ପାର୍ବତି ଆଗେ ଯାହା କହିଲେ ତ୍ରିପୁରାରି
ତାହା ତୋତେ କହିବା ଶୁଣ ହେ ଦଣ୍ଡଧାରି ।।୪୭୦।।
କୁମର ବଢ଼ିଣ ସେ ହୋଇଲା ବଳବନ୍ତ
ଦୁଷ୍ଟ ପ୍ରକୃତିରେଂ ନ ମାନେ ତାତ ମାତ ।।୪୭୧।।
ସାଧୁ ସନ୍ନ୍ୟାସିଙ୍କି ତୁକାର ବୋଲଇ
ସୁନ୍ଦର ନାରି ଦେଖିଲେ ବଳକ୍କାରେଂ ହରଇ ।।୪୭୨।।
ଭାଜଂଇ ଦେବାଳୟ ଲଗାଇ ହୁତାସନ
ବଳେ ଉପାଡ଼ଇ ସେ ଫଳିଲା ବୃକ୍ଷମାନ ।।୪୭୩।।
ଭ୍ରମନ୍ତେ ଦିନେ ଦ୍ରୁମିଳା ଅସୁରକୁ ଭେଟିଲା
ପ୍ରଥମ ଧାଡ଼ିରେ ଆପଣା ପିତାକୁ ନାସ କଲା ।।୪୭୪।।
ଦିନକୁ ଦିନ ହୋଇଲା ବଳିୟାର
ସମସ୍ତ ରାଜାଙ୍କୁ ଜିଣିଲା ବାହୁବଳର ।।୪୭୫।।
ପ୍ରବୋଧ ବଚନ ଯେ ବୋଲଇ[2] ଉଗ୍ରସେନ
ଦୁଷ୍ଟ ପ୍ରକୃତି ତୁ କିପାଇଂ କରୁଛୁ ନନ୍ଦନ ।।୪୭୬।।
ପୁର୍ବେ ଆମ୍ଭ ବଂସରେ ଯେତେକ ରାଜା ଥିଲେ
ପୁତ୍ର ସମ କରିଣ ପ୍ରଜାନ୍ତ ପାଳିଲେ ।।୪୭୭।।
କର୍ତି ଆଚରିଲେ ତେଜିଲେ ଅନ୍ୟାଚାର
ରଖିଲେ ଯସ ସେ ଗମିଲେ ସ୍ୱର୍ଗପୁର ।।୪୭୮।।

---

୧ । ଗ ପୋଥି – ଘାନ୍ତି
୨ । ଖ ଓ ଗ ପୋଥି – ତିଆରଇ

ଛଡ଼ ସତ ବରସ ସେ ଆସି ମୋହର ହୋଇଲା
କେହି ବୋଲଣା ଯେ ଦିନେ ନ ବାଛିଲା ॥୪୭୯॥
ତୁ ଯେବେ ଦୁଷ୍ଟମତି କଲୁରେଂ କୁମର
ମୋତେ ଅପଯସ ହେଉଛି ସଂସାର ॥୪୮୦॥
ପିତାର ବଚନେ କଂସ ବୋଲଇ ବଚନ
କ୍ଷତ୍ରିୟ ଅଂସେ[୨] ମୁହିଂ ହୋଇଅଛି ଜନ୍ମ ॥୪୮୧॥
ସାଧିବି ସନ୍ୟବଳ ସାଧିବି ପରରାଷ୍ଟ୍ର
ଯେ କଥାକୁ ପିତା ତୁମ୍ଭେ ନ କର ଆକଟ ॥୪୮୨॥
ଯେତେକ ଦୁଷ୍ଟ ରାଜା ଅଛନ୍ତି ମେଦନିର
ତାହାଙ୍କୁ ଜିଣିଲେ ବଂସ ହୋଇବ ଅମର ॥୪୮୩॥
ପୁତ୍ରର ବଚନେ ସେ ଯେ ବୋଲଇ ଉଗ୍ରସେନ
ସୁବୁଦ୍ଧି ପଣ୍ଡିତ ତୁ ବିଜ୍ଞବନ୍ତ[୩] ଜନ ॥୪୮୪॥
ଅଗୁଣେ ଗୁଣଗ୍ରାହି ଅଲେଳ କୁମର
ଦୁଷ୍ଟଙ୍କୁ ହିଂସା ପଛେ ବହ ହୃଦୟର ॥୪୮୫॥
ଯତି ଦେବତାଙ୍କୁ ତୁ ଭଗତି ହୋଇଥିବୁ
ପୁନ୍ୟ ଆସ୍ରେ କଲେ ଚିରକାଳ ବ୍ରତିବୁଁ[୨] ॥୪୮୬॥
ପୁନ୍ୟକଲେ ପ୍ରାଣିଙ୍କର ସର୍ବସିଦ୍ଧି ହୋଇ
ପୁନ୍ୟରେ ଭବଜଳ ସାହେର ଲଙ୍ଘଇ ॥୪୮୭॥
ପୁନ୍ୟରେ ପରମାୟ ହୁଅଇ ଅତୁଟ
ପୁନ୍ୟରେ ଗମି ପାରଇ ଘୋର ଦୁର୍ଗମ ପଥ[୩] ॥୪୮୮॥
ପୁନ୍ୟରେ ସାଧୁ ସଙ୍ଗେ ସଙ୍ଗ ହୋଅଇ ସର୍ବକାଳ
ପୁନ୍ୟରେ ପ୍ରାଣି ପିଣ୍ଡ ହୋଅଇ ସୁଫଳ[୪] ॥୪୮୯॥
ପୁନ୍ୟରେ ଥିଲେ ନେଇ ନ ପାରଇ ଯମ
ପୁନ୍ୟରେ ଗମଇ ବୈକୁଣ୍ଠ ସନ୍ତୋସ ଭଗବାନ ॥୪୯୦॥
ପାପ ଛାଡ଼ି ବାବୁ ପୁନ୍ୟକୁ ଆସ୍ରେ କର
ପୁଣ୍ୟରେ ଜିଣିବୁ ତୁ ଜନ୍ତୁ ଯେ ନାସ୍କର ॥୪୯୧॥
ଯେମନ୍ତେ ବୋଲି ଯହୁଂ ଉଗ୍ରସେନ ବୋଇଲା
ହେଉ ହେଉ ବୋଲି କଂସ ମୁଣ୍ଡ ଯେ ହଲାଇଲା ॥୪୯୨॥

## କାଳ ବିକାଳର ଜନ୍ମ ବୃତ୍ତାନ୍ତ

ଯେଥୁ ଅନ୍ୟନ୍ତରେ ତହିଂ ଗଲା କିଛି ଦିନ
ସୁଣ ହୋ ନୃପତି ବୋଲନ୍ତି ମହାମୁନ୍ୟ ॥୪୯୩॥

୨ । ଖ ଓ ଗ ପୋଥି - ଧଇଲୁରେ
୩ । ଖ ଓ ଗ ପୋଥି - ବଂସେ
୧ । ଖ ପୋଥି - ଭାଗ୍ୟବନ୍ତ
୨ । ଖ ଓ ଗ ପୋଥି - ବଞ୍ଚିବୁ
୩ । ଖ ଓ ଗ ପୋଥି - ଦୁର୍ଗମ ଘୋର ବାଟ
୪ । ଗ ପୋଥି - ପୁଣ୍ୟରେ ପାପୀ ପିଣ୍ଡ ହୋଅଇ ଉତ୍ତମ

ଯେକ ଦିନେ କଂସ ଦିଗ ବିଜେ କଲା
ହେମାଳୟ ଗିରି ଉପରେ ଉଠିଲା ॥୪୯୪॥
ସୁନ୍ୟରେ ଯାଉଅଛି ଯେକଇ ରହୁବର
ଦକ୍ଷିଣ ମୁଖ ହୋଇ ବାହାନ୍ତି ଡଗର ॥୪୯୫॥
ଦିସଇ ନିଳବର୍ଣ୍ଣ ଲୁହାର ଟେରା ଅଖ
ଲୁହାର ସ୍ତମ୍ଭମାନ ଗଳିଛି ଲୁହା ଚକ ॥୪୯୬॥
ଲୁହାର କଳସେକ ଦିସଇ ନିଳବର୍ଣ୍ଣ ଚିରାଳ
ଉଡୁଛି ପତାକା ଲମ୍ୱିଛି ମାଳ ମାଳ ॥୪୯୭॥
ଲୁହାର ଠେଙ୍ଗା ଲୁହାର ମୁଦ୍ଗର ଚର୍ମ ଫାସି
ଅଶ୍ୱ ନାହିଁ ବ୍ୟାଘ୍ର ଟେରା ଟାଣନ୍ତି ଆକ୍ରୋସି ॥୪୯୮॥
ପବନହୁଂ ଖରେତ ଯାଉଛି ବିମାନ
କ୍ଷଣେହେଂ ସୁନ୍ୟପୁରେ ନ କରେ ବିଶ୍ରାମ ॥୪୯୯॥
ମାନବ ଗୋଟିଯେ ବନ୍ଧା ହୋଇଣ ଅଛଇ
ମଲି ମଲି ବୋଲି ବୋବାଳି ପାଡ଼ଇ ॥୫୦୦॥
କଳାମେଘ ଖଣ୍ଡ କି ଗଗନେ ଉଡ଼ିଗଲା
ସେହି ରୁପେଂ ବିମାନ କଂସକୁ ଦିସିଲା ॥୫୦୧॥
ଯେହୁ କିସ ବୋଲିଣ କଂସ ସେ ବିଚାରିଲା
ଯେମନ୍ତ ବିଚାରି କଂସ ଯେ କାୟା ବଢ଼ାଇଲା ॥୫୦୨॥
ସତର ଯୋଜନ ଗମି ରଥ ଉଗାଳଇ
ଆରେ ଆରେ କଂସ ବଚନ ବୋଲଇଂ[୧] ॥୫୦୩॥
ଦୁତକୁ ବୋଇଲା କାହାର ଡଗର ତୁମ୍ଭେ ଅଟ
କାହାଠାରୁ ଜନ୍ମି ତୁମ୍ଭେ କାହାକୁ ହୋ ଖଟ ॥୫୦୪॥
କାହାର ଆଜ୍ଞାରେ ତୁମ୍ଭେ ବାହ ରହୁବର
କିପାଂ ନର ଗୋଟିଏ ବାନ୍ଧିଛ ରଥର ॥୫୦୫॥
କାହିଂରୁ ଅଇଲ କାହିଂକି ଯାଅ ତୁମ୍ଭେ
ସ୍ୱରୁପ କହ କି ନା ସୁଣିମା ଯେବେ ଆମ୍ଭେ ॥୫୦୬॥
ମୁହିଂ ବିରବର ନାମ ମୋ କଂସାସୁର
ମୋହଠାରୁ କେ ଅଛି ବଳିଆର ॥୫୦୭॥
ଅନ୍ତରିକ୍ଷେଂ ଥାଇ ସେ ବୋଲାଇଂ ରହୁବର
ମୁହିଂ ପାଦଗତି ହୋଇ ଚାଲଇ ପୃଥିବିର ॥୫୦୮॥
ଯେମନ୍ତ କହି କଂସ ଉଠିଲା ସିର ଝୁଣି
ଦେଖି କାଳ ବିକାଳେ ଭୟେ କଲେ ପୁଣି ॥୫୦୯॥
ବୋଇଲେ କାଳବିକାଳେ ସୁଣ ହୋ କଂସ ବିର
ରଜ ବିର୍ଯ୍ୟ ବିହୁନେ ଯେ ଜନ୍ମ ଆମ୍ଭର ସରିର ॥୫୧୦॥

୧ । ଖ ପୋଥି - ଯେ ମହି ମଣ୍ଡଳେ ରଥ ବାହୁଅଛୁ ଭଲା
୧ । ଗ ପୋଥିରେ ଏହି ଧାଡ଼ି ନାହିଁ

ଯେଉଁ କାଳେ ବିଧାତା ପୃଥିବି ଭିଆଇଲେ
ଦେବ ନାଗ କିନ୍ନର ମାନବ ଜାତ କଲେ ॥୫୧୧॥
ସକଳ ଦେବତା ଯେ ହୋଇଲେ ଯେକମେଳି
ଅଷ୍ଟଯୋଜନେ[1] ମେରୁ ସନିଧେଂ କୁଣ୍ଡ ଗୋଟିଏ ଖୋଳି ॥୫୧୨॥
ମେଘେ ଯାଇ ସମୁଦ୍ରୁଂ ଘୃତ ବେଗେ ଆଣି
ଯଜ୍ଞକୁଣ୍ଡେ ବରସିଲେ ରାତ୍ର ଦିବସ ନ ଜାଣି ॥୫୧୩॥
ଘୃତ ପଡ଼ନ୍ତେ ତହୁଂ ଉଠିଲା ଅନଳ
ଅନଳୁଂ ଧୁମ ପୁଣି ହୋଇଲା ବାହାର ॥୫୧୪॥
ମାଞ୍ଚ ସ୍ୱର୍ଗପୁର ଘୋଟିଲାକ ଧୁମ
କେବଣ ଅନ୍ଧକାର ହୋଇଲା ଗଗନ ॥୫୧୫॥
ବେନି ସହସ୍ର ବରସେ ସରିଲାକ ଯାଗ
ସାରିଣ ଦେବତାୟେ ହୋଇଲେ ଆନନ୍ଦ ॥୫୧୬॥
ଜାଗ ଧୁମ ଯହୁଂ ସେ ଘୋଟିଲା ସଂସାର
ରଜନି ପ୍ରାୟେ ଦିବସ ହୋଇଲା ଅନ୍ଧାର ॥୫୧୭॥
ରାତ୍ର ଦିବସ ଯହୁଂ ବାରଣ ନୋହିଲା
ଦେଖିଣ ଦେବତାଙ୍କୁ ବଡ଼ ଭୟେ[2] ଲାଗିଲା ॥୫୧୮॥
ଦେବତାୟେ ଡାକଦିଲେ ରଖ ହେ ବେଦବର
କେବଣ କାଳପୁରୁଷ ଆକ୍ରୋସିଲା ସଂସାର ॥୫୧୯॥
ବିଧାତା ବୋଇଲେ ହୋ ନ ଭାଳ କେହି ତୁମ୍ଭେ
ଉପାୟେ କରିଣ ସେ ନିବାରିବା ଆମ୍ଭେ ॥୫୨୦॥
ଯେମନ୍ତେ ବୋଲି ବିଧାତା ବସିଲେ ମଉନ
ଚାରି ବେଦ ମୁଖରୁ କଲେକ ଉଚ୍ଚାରଣ[3] ॥୫୨୧॥
କମଣ୍ଡଳୁ ଜଳ ବ୍ରହ୍ମା କୁସରେ ବୁଡ଼ାଇଲେ
ଆକାସ ଅନ୍ଧକାର ଉପରେ ସିଞ୍ଚିଦେଲେ ॥୫୨୨॥
ବଦୟନ୍ତି ବିଧାତା ଯଦି ହିତରେ ହୋଇଥିବ
ତେବେ ସେ ବଳମାନ[4] ପୁରୁଷ ହୋଇବ ॥୫୨୩॥
ଯେମନ୍ତେ ବୋଲି ସିଞ୍ଚନ୍ତେ ଜଳ ଅନ୍ଧାରେ[5] ପଡିଲା
ସେହିକ୍ଷଣି ବେନି ଯେ ପୁରୁଷେ ହୋଇଲା ॥୫୨୪॥
ଧୁମରୁଂ ବେନି ପୁରୁଷେ ହୋଇଲେ ଅବତାର
ଦିସିଲେ ଆଦିତ୍ୟ ତୁଟିଲା ଅନ୍ଧକାର ॥୫୨୫॥

---

୧ । ଖ ଓ ଗ ପୋଥି – ଅର୍ଦ୍ଧଯୋଜନେ
୨ । ଖ ଓ ଗ ପୋଥି – ସଙ୍କା
୩ । ଖ ପୋଥି – ଧାତା ଉଚ୍ଚାରିଲେ ଚାରି ସେ ବଦନେ
୪ । ଖ ପୋଥି – ତେଜବନ୍ତ ହୋଇଣ
୫ । ଖ ପୋଥି – ଧୁମରେ
୫ । ଗ ପୋଥି – ମେରୁରେ

ସୁନ୍ୟରେଂ ଥାଇ ସେ ପୁରୁଷେ ଡାକ ହାଦେ ଦେଇ
କେବଣ ଜାଗ କଲୁ ବେଦବର ତୁହି ॥୫୨୬॥
ଯେକୋଇ ସମୁଦ୍ରେକ ଘୃତ ତୁମ୍ଭେ ଦିଲୁ
ସମ୍ପୁର୍ଣ୍ଣ କରି ଚାରିବେଦ ନ ପଢ଼ିଲୁ ॥୫୨୭॥
ସହସ୍ର ବରସେ ଯେ ଜାଗ ସମାପତ
ଯେତେକେଂ ସନ୍ତୋସ ନୋହିଲା ମୋର ଚିତ ॥୫୨୮॥
ବେନି ସହସ୍ର ବରସ ଯଜ୍ଞ ଯେବେ କର
ଚାରି ସମୁଦ୍ରୁ ଘୃତ ଯେବେଂ ନେଇ ଢାଳ ॥୫୨୯॥
ସତୁରି ଲକ୍ଷ ସତାଇସ[1] କାଣ୍ଡି ପଢ଼ ତୁହି ଏବେ ବେଦ
ଯେତେ କେଂ ସନ୍ତୋସ ହୋଇବ ମୋର ପିଣ୍ଡ ॥୫୩୦॥
ଯେମନ୍ତ ବୋଲି ସୁନ୍ୟ ପୁରୁଷ ଡାକ ଦିଲା
ଦେବତାୟେ ଭାଳିଲେ ଧୁମ ଅନ୍ଧକାର କଲା ॥୫୩୧॥
ମନ୍ତ୍ର ଜଳ ପଡ଼ନ୍ତେ ତୁଟିଲା ଅନ୍ଧକାର
ତହିଂରୁ ପୁରୁଷେକ ହୋଇଲା ଅବତାର ॥୫୩୨॥
ସେ ପୁଣି ଡାକୁଅଛି ସମୁଦ୍ର ସୋସିବିଂ
ନୋହିଲେ ଜଗତ ଜନକୁ ନାସିବିଂ ॥୫୩୩॥
ସଦାସିବ ବୋଇଲେ ନ ଭାଳ ତୁମ୍ଭେ କେହି
ଯେ କାଳପୁରୁଷକୁ ନିବାରିବିଂ ମୁହିଂ ॥୫୩୪॥
ଯେତେ ବୋଲି ସଦାସିବ ସୁନ୍ୟକୁ ଡେଇଂ ଗଲେ
ତ୍ରିସୁଳ ଘେନି କାଳ ପୁରୁଷକୁ ହାଣିଲେ ॥୫୩୫॥
ସଦାସିବ ସୁଳଘାତେ ସେ ପୁରୁଷ ବେନିଖଣ୍ଡ
ବେନି ଠାବରେ ଯେ ଯାଇ ପଡ଼ିଲା ଗଣ୍ଡିମୁଣ୍ଡ ॥୫୩୬॥
ବେନି ଖଣ୍ଡ ବେନି ପୁରୁଷ ହୋଇଲେ
ସଦାସିବ ସଙ୍ଗତରେ ସେ ବେନି ଗୋଡ଼ାଇଲେ ॥୫୩୭॥
ରହ ରହ ସିବ ତୋତେ କରିବା ଆହାର
ଯେତେ ବୋଲି ପଛରେ ଗୋଡ଼ାନ୍ତି ବେନି ବିର ॥୫୩୮॥
ଭୟେ ପାଇ ସଙ୍କର ପଳାନ୍ତି ଅନ୍ତରିକ୍ଷେଂ
ସରଣ ପସିଲେ ଯାଇ ବ୍ରହ୍ମାଙ୍କର ପଛେଂ ॥୫୩୯॥
ବଦୟନ୍ତି ସଦାସିବ ରଖ ହେ ବେଦବର
ଖାଇବ ବୋଲି କାଳପୁରୁଷ ଗୋଡ଼ାଇଛି ପଛର ॥୫୪୦॥
ବିଧାତା ବୋଇଲେ ରହ ରହ ବେନି ବିରେ
ସାନ୍ତି ହୋଇ ବସ ତୁମ୍ଭଙ୍କୁ ଦେବା ବରେ ॥୫୪୧॥
ବଦୟନ୍ତି ବେନି ପୁରୁଷେ ଯେବେଂ ଆମ୍ଭଙ୍କୁ ଦେବ ବର
ସର୍ବଜିବଠାରେ ଆମ୍ଭର ହୋଇବ ଅଧିକାର ॥୫୪୨॥
ବିଧାତା ପ୍ରତିବାକ୍ୟ ଅସ୍ତୁ ହେଉ ତୁମ୍ଭ ବାଣି
ସର୍ବଜିବଠାରେ ତୁମ୍ଭଙ୍କୁ ଅଧିକାର ଦିଲି ପୁଣିଂ ॥୫୪୩॥

---

୧ । ଗ ପୋଥି – ସତାସି

କାଳପୁରୁଷ ହୋଇ ଘୋଟିଲା ସଂସାର
ଈଶ୍ୱର ସୁଳ ବାଜି ମୃତ୍ୟୁ ନୋହିଲା ତୁମ୍ଭର ॥୫୪୪॥
ବେନିଖଣ୍ଡ ବେନି ପୁରୁଷ ହୋଇଲେ
ତେଣୁ କାଳ ବିକାଳ ନାମ ସେ ପାଇଲେ ॥୫୪୫॥
ଯେବେଂ ଚଳିଯାଅ ତୁମ୍ଭେ ସଜିଂବନି ପୁରି
ନାସ୍କର ଦେବତାଙ୍କୁ ଥାଅ ଆଶ୍ରେ କରି ॥୫୪୬॥
ସଂସାରେ ତୁମ୍ଭର ଯେ ହୋଇଲା ଅଧିକାର
ପରମାୟ ସରିବ ଯେବଣ ପ୍ରାଣିଙ୍କର ॥୫୪୭॥
ତାହାକୁ ବାନ୍ଧି ଯମ ଛାମୁରେ ନେଇ ଦେବ
ଯେମନ୍ତ ବୋଲି ଆଜ୍ଞା ଦେଲେକ ଦଇବ ॥୫୪୮॥
ସେହିଦିନୁ ଆମ୍ଭେ ରହିଲୁ ସଜିଂବନି
ଭ୍ରମୁଂ ତିନିପୁରେଂ ଯମର ଆଜ୍ଞାଘେନି ॥୫୪୯॥
ପରମାୟ ସରଇ ଯେବଣ ପ୍ରାଣିଙ୍କର
ବାନ୍ଧି ଆଣି ପକାଉଂ ମାରିଣ ନର୍କର ॥୫୫୦॥
ଆମ୍ଭର ଜନ୍ମ କଥା କହିଲୁ ବିରମଣି
କାଳ ବିକାଳଠାରୁ ଏସନ ବାକ୍ୟ ସୁଣି ॥୫୫୧॥
ଡଗରଙ୍କ ବଚନେ ବୋଇଲା କଂସାସୁର
କିପାଇଂ ଯେ ବାପୁଡ଼ାକୁ ବାନ୍ଧିଛୁ ରଥର ॥୫୫୨॥
କାହିଂକି ନେବ ତୁମ୍ଭେ କିସ ଯେ କରିବ
କେବଣ ଦୋସ ତୁମ୍ଭଙ୍କୁ କଲା ଯେ ମାନେବ ॥୫୫୩॥
କାହାର ନନ୍ଦନରେ ଏ କେଉଁ ରାଜ୍ୟେ ଥିଲା
ତୁମ୍ଭ ଚର୍ମଫାସରେ ସେ କେମନ୍ତେ ବନ୍ଧନେଂ ପଡ଼ିଲା ॥୫୫୪॥
ବୋଲନ୍ତି କାଳ ବିକାଳ ସୁଣ ବିରମଣି
ଉଜାଣିକାନ୍ତି ବୋଲି ଯେକଇ ନଗ୍ରପୁଣି ॥୫୫୫॥
ହରାନ୍ତେକ ସୁଦ୍ର ଏ ନରାନ୍ତେକ ପୁତ୍ର
ଜନମ ହୋଇ ପୁଣି ନ ମାନିଲା ତାତମାତ ॥୫୫୬॥
ମାତା ପିତା ବଚନ ହେଡ଼ିଣ ପାପ କରି
ଭାଜଂଇ ଦେବାଳୟ ହରଇ ପରନାରି ॥୫୫୭॥
ମିଥ୍ୟା ବାଣି କହଇ ପାସାଣ୍ଡ ପଣ ବହି
ଗୁରୁ ବିପ୍ର ଅତିଥି ଦେଖିଲେଂ ନିନ୍ଦଇ ॥୫୫୮॥
ଦେବା ବୋଲି ତୁଣ୍ଡରେ ନ ଆସଇ ଯେହାର
ମଳମୁତ୍ର କରଇ ଯେ ସୁସଞ୍ଚ ପଥରଂ[1] ॥୫୫୯॥
କପଟି କୁନ୍ତଳ ଦମ୍ଭପଣ ଯେ ଯେ ବହି[2]
ମାରଇ ଜିବଙ୍କୁ ବିଶ୍ୱାସଘାତକି ଯେ ହୋଇ ॥୫୬୦॥

୧ । ଖ ପୋଥି – ସ୍ଥାନର
୨ । ଖ ପୋଥି – କୁଟିଳ ଯେ ଦମ୍ଭପଣ ବହି

ନ ପଢ଼ଇ ହରିନାମ ନ ସୁଣଇ ପୁରାଣ
ମିଥ୍ୟା ଭାଣ୍ଡ କେବଳ କରଇ ବଖାଣ ॥୫୬୧॥
ଯେମନ୍ତ ପ୍ରକାରେ ସେ ଅନିତି କରଇ
ପରମାୟ ସରନ୍ତେ ବାନ୍ଧିଲୁ ଆମ୍ଭେ ଯାଇ ॥୫୬୨॥
ଜନ୍ତୁପତି ଛାମୁରେ ଯେହାକୁ ନେଇ ଦେବୁଂ
ସେ ଯାହା ବିହିବ ସେହି ଦଣ୍ଡ ଯାକୁ ଦେବୁଂ[1] ॥୫୬୩॥

## କଂସର ଯମପୁର ଆକ୍ରମଣ

ଯେମନ୍ତ ବୋଲି ଯହୁଂ ବୋଇଲେ ଡଗର
ସୁଣି ସିର ଝୁଣି ଉଠିଲା କଂସାସୁର ॥୫୬୪॥
ଆରେ କାଳ ବିକାଳେ ତୁମ୍ଭେ ଯେଡ଼େ ଗର୍ବ ବହିଲ
କାହାର ବୋଲେ ମୋର ମୈତ୍ରକୁ ବାନ୍ଧିଲ ॥୫୬୫॥
ମୁହିଂ କରୁଅଛି ସେତେକ ଆଚାର
ସେହି ନିତି ତୁମ୍ଭେ କହିଲ ଯେହାଙ୍କର ॥୫୬୬॥
ତେଣୁ ସେ ମୈତ୍ର ଯେ ହୋଇଲା ଆମ୍ଭର
ତୁମ୍ଭେ ଯେହାକୁ ବାନ୍ଧିଲ କେବଣ ଭରସାର ॥୫୬୭॥
ଆଜ ମୁଂ ନାସିବି ଯେ ତୁମ୍ଭର ରାଜା ଯମ
ଯେତେ ବୋଲି କଂସ ଯେ ହୋଇଲା ତମ ତମ ॥୫୬୮॥
ଭୟରେ ବ୍ୟାଘ୍ରମାନେ ବିମାନ ନିଲେ ଟାଣି
ଘଡ଼ିକେଂ ପ୍ରବେସ ହେଲେ ଯାଇ ସଜିଂବନି ॥୫୬୯॥
ଅପୁର୍ବ ପୁର ଗୋଟିଏ ଦେଖିଲାକ କଂସ
ଭାଜିଂଣ ପୁରମାନ କଲାକ ଭଗନସ୍ତ[2] ॥୫୭୦॥
କାଳ ବିକାଳେ କହିଲେ ଜନ୍ତୁପତି ଆଗର
ସମ୍ପଦ ସରିଲା ଯେବେ ବିଜୟେ କଲା କଂସାସୁର ॥୫୭୧॥
ଆମ୍ଭଙ୍କୁ ମାରୁଥିଲା ଅଇଲୁଂ ଉବୁରି[3]
ଯେବେଂ ପୁରେ ପସି କରୁଛି ହୁରି ଜୁରି ॥୫୭୨॥
ସୁଣିଣ ଜନ୍ତୁପତି ହୋଇଲା କୋପଭର
ଚିତ୍ରଗୁପତଙ୍କୁ ଘେନିଲା ସଙ୍ଗର ॥୫୭୩॥
କାଳକେତୁ ରସ୍ମିକେତୁ ନଳବଳି ପ୍ରଚଣ୍ଡ
ସାଲୁଂ ସିଂହିକା କାଳନଉମି ମହାଦଣ୍ଡ ॥୫୭୪॥
ରେହନ୍ତ ରଖାଉଜ କଣୟ ନଉଚେତ
ବାଡ଼ି ପେଟଟଣା ସୁଳ ବାତ ପିତ୍ତ ॥୫୭୫॥

୧ । ଗ ପୋଥି – ବିହିବୁଂ
୨ । ଖ ପୋଥି – ସେ ପୁର ଗୋଟାକ ଭାଞ୍ଜି କଲାକ ସର୍ବନାଶ
୨ । ଗ ପୋଥି – ଭାଞ୍ଜିଣ ପୁରମାନ କଲା ଧୁମାନ୍ତ
୩ । ଖ ପୋଥି – ପଳାଇ

ଜ୍ୱର ସୋକ ପାଣ୍ଡୁର ଗୁଳ୍ମ ସେଲସିମ[୧] ସନ୍ନିପାତ
ଶ୍ୱାସ ଅପସ୍ମାର ଅଜିର୍ଣ୍ଣ ଛେବର୍ଣ୍ଣ[୨] ॥୫୭୬॥
ଯେମନ୍ତେ ସେନାପତି ହୋଇଲେ ବାହାର
ଆରୋହିଲେ ଗୁଧ୍ର ସୁକର ଉପର ॥୫୭୭॥
ଅଶ୍ୱ ଗୁଞ୍ଜର ବିମାନରେଂ ବସି
ଧରିଣ ଧନୁସର ବିନ୍ଧିଣ ଆକ୍ରୋସି ॥୫୭୮॥
ଧର ଧର ମାର ମାର ବୋଲିଣ ଡାକ ଦିଲେ
କଂସାସୁର ସଙ୍ଗତେ ଘୋର ଯୁଦ୍ଧ କଲେ ॥୫୭୯॥
ଛେଲ ଚକ୍ର ଗଦା ଖଡ଼ଗ ପ୍ରହାରିଲେ
ଯେତେ ବୋଲି ଯମଗଣ ପରିଘାଇ ଯୁଝିଲେ[୩] ॥୫୮୦॥
ଆରେରେ କଂସାସୁର ନିଶ୍ଚୟ ନାସ ଗଲୁ
ଯମଠାକୁ ମୃତ୍ୟୁ ମାଗିତେ ଅଇଲୁ ॥୫୮୧॥
ଦେଖି କୋପ ବହିଲା ଯେ ଦୃମିଳାର ସୁତ
ବେନି ବାହା ବିସ୍ତାରିଲା ଯୋଜନ ସାତ ସାତ ॥୫୮୨॥
କାହାକୁ ଚାଣ୍ଡାଳ ଧରି କଚାଡ଼ିଲା
କାହାର ଭୁଜ ଧରି ବେନିଫାଳ କଲା ॥୫୮୩॥
ସାତ ପାଞ୍ଚ ସତ ଯେକା ବେଳକେ ଧରଇ
ଭୂମିରେ ପାଡ଼ିଣ ସେ ପାଦରେ ମର୍ଦ୍ଦଇ ॥୫୮୪॥
କାହାକୁ ଭୁଜଦଣ୍ଡ ସେ ମାରଇଂ ନିର୍ଘାତେଂ
ମାରିଣ ସେହି ଉଡ଼ିଯାଇ ସୁନ୍ୟପଥେ[୪] ॥୫୮୫॥
ପାଦଘାତେ ଚୂନା ଯେ କଲାକ ସଜିଂବନି
ଯେମନ୍ତେ କଂସାସୁର ମାରଇ ସଇନି[୫] ॥୫୮୬॥
କେହୁ ଛୋଟା ହୋଇଣ ପଳାଇଣ ଗଲେ
ପାପିଙ୍କ ସଙ୍ଗତେ ନର୍କ କୁଣ୍ଡରେ ଲୁଚିଲେ ॥୫୮୭॥
ଯମରାଜା ଅଗ୍ରତେ ଡଗର ଜଣାଇଂ
ସାବଧାନ ହୋଇଣ ସୁଣିମାଂ ଜନ୍ତୁସାଇଂ ॥୫୮୮॥
ଯେକା କଂସାସୁର ତୋର ସଇନି ମାଇଲା
ସୁଣିଣ ଜନ୍ତୁପତି ହୃଦେ କୋପ କଲା ॥୫୮୯॥
ଆରୋହଣ କଲା ସେ କୃତାନ୍ତେ ମହିଂସି
ହସ୍ତକେ କାଳଦଣ୍ଡ ହସ୍ତକେ କାଳଫାସି ॥୫୯୦॥

୧ । ଖ ପୋଥି – ଶୁଳୁସା
୨ । ଖ ପୋଥି – ଗୋଦର
୩ । ଖ ଓ ଗ ପୋଥିରେ ଏହିଧାଡ଼ି ନାହିଁ
୪ । ଖ ପୋଥି – ମାରିଣ ପଡ଼ନ୍ତି ସେ ଯାଇଣ ଭୂମି ଗତେ
୫ । ଖ ପୋଥି – ମାଇଲା ଅପାର
୫ । ଗ ପୋଥିରେ ଏହାର ତଳ ଚାରି ଧାଡ଼ି ନାହିଁ

ଅହିବ୍ରତେକ ଯୋଦ୍ଧା ସଙ୍ଗତରେଂ ଘେନି
ଆରେ ଆରେ ଦାନବା ବୋଲି ଉଗାଳିଲା ପୁଣି ॥୫୯୧॥
ସମସ୍ତେ ଯେକ ମୁଖେଂ ବିନ୍ଧିଲେକ ସର
ବୋଲଇ କାଳଦଣ୍ଡ ଜନ୍ତୁନାସକର ॥୫୯୨॥
କଂସ ବୋଇଲା ତୁ ଅଟୁ ପରା ଯମ
ଘେନି ଆସୁଥାଉ ପରା ମଞ୍ଚର ଜିବମାନ ॥୫୯୩॥
ସମସ୍ତଙ୍କର ପରମାୟ ତୋହର ହସ୍ତେଂ ଥାଇ
ତୋହର ପରମାୟ ମୋହର ହସ୍ତରେଂ ଅଛଇ[୧] ॥୫୯୪॥
ଯେତେ ବୋଲି କଂସ ବଜ୍ର ମୁଥେକ ପ୍ରହାରିଲା
ମହିସିର ଶୃଙ୍ଗେ ବାଜି କିଛି ବିଘାତ ନୋହିଲା ॥୫୯୫॥
ଦେଖିଣ ଜନ୍ତୁପତି ମାଇଲା କାଳଦଣ୍ଡ
ଘଡ଼ଘଡ଼ି ସବଦ ଯେ କମ୍ପିଲା ବ୍ରହ୍ମାଣ୍ଡ[୨] ॥୫୯୬॥
କଂସର ଦେହେ ବାଜି ପ୍ରାସ କଲା ଅଙ୍ଗ
ଘୁମାଇ ପଡ଼ିଲା ଯେ ମହାବଳି ଦାନବ ॥୫୯୭॥
ଆପଣେ ବିଧାତା ଯେ ଦେଖୁଥିଲେ ରହି
ନାରଦଙ୍କୁ ବୋଇଲେ ଚଳ ଯେବେ ତୁହି ॥୫୯୮॥
ଯମ କାଳଦଣ୍ଡ ଘାତେଂ କଂସ ପଡ଼ିଲା ମୋହ ଯାଇ
ଲେଉଟି ମାରିବାକୁ ଯମ ଆସେ ଧାଇଂ ॥୫୯୯॥
କଂସ ନାସ ଗଲେ ଜନ୍ମ ନୋହିବେ ଭଗବାନ
ପୃଥ୍ୱି ଭାରା କେହୁ ଉଶ୍ୱାସିବ ପୁଣ ॥୬୦୦॥
ଏମନ୍ତ କହ କଂସାସୁର ମୃତ୍ୟୁ ହାଦେ ନୋହୁ
ପ୍ରବୋଧି କହିବୁ ସେ କଂସ ଫେରିଯାଉ ॥୬୦୧॥
ପିତାର ବଚନେ ଯେ ସେ ନାରଦ ଚଳିଗଲେ
ସଂଗ୍ରାମ ଭୂମିରେ ଯାଇ ପ୍ରବେସ ହୋଇଲେ ॥୬୦୨॥
ବୋଇଲେ ଜନ୍ତୁପତି ହୋଇଲୁ କି ବାଇ
ତୋହର ହସ୍ତରେ କି ଦଇତ୍ୟ ମରଇ ॥୬୦୩॥
ସଚେତ ହୋଇ ଯେବେ ବସିବ[୩] ବିର କଂସ
ତୋତେ ଆଦିକରି ସନ୍ୟ ସବୁ କରିବ ବିନାସ[୪] ॥୬୦୪॥
ଯେହି ପୁର ଗୋଟି ତୋର ମାଡ଼ିଣ ବସିବ
ସେହୁ ନ ଉଠୁଣୁ ତୁ ପଳାଇ ଯାଅ ବେଗ ॥୬୦୫॥
ସଜିଂବନି ପୁରେ ତୁ ନିଶ୍ଚିନ୍ତେ ଥାଅ ରହି
ପ୍ରବୋଧ ବଚନେ କଂସକୁ ମୁଁ ଦେବି ବାହୁଡ଼ାଇ ॥୬୦୬॥

୧ । ଗ ପୋଥି – ତୋହର ଜିବନ ଯେବେ ମୋ ହସ୍ତେ ଅଛଇ
୨ । ଖ ପୋଥି – ଘଡ଼ଘଡ଼ି ସବଦ ପ୍ରାୟେକ ସୁଭିଲା ପ୍ରଚଣ୍ଡ
୩ । ଖ ଓ ଗ ପୋଥି – ଉଠିବ
୪ । ଖ ପୋଥି – ତୋହର ସହିତେ ସନ୍ୟ କରିବ ସବୁ ନାସ

ନାରଦଙ୍କ ବଚନେ ରହିଲା ନାସ୍କର
ସେଠାରୁ ଚଳିଗଲେ ଯେ ବ୍ରହ୍ମାଙ୍କ କୁମର ॥୬୦୭॥
ସଚେତ ହୋଇ ଯେ କଂସ ମାରଇ ଯେ ହାଇ
ହୃଦେ ବ୍ୟଥା ପାଇଣ ବିଚାର କରଇ ॥୬୦୮॥
ଆସିଥିଲିଂ ମୁହିଂ ଯେ ଜିଣିବାକୁ ଯମ
ତାହାର କାଳଦଣ୍ଡେ ହୋଇଲି ଅସାଷ୍ଟମ ॥୬୦୯॥
ପିତା କହିଥିଲେ ଯେବେ ଯମକୁ ଜିଣିପାରୁ
ତେବେ ସିନା ତୁହି ସାତ୍ୱିକ ପଣ ଧରୁ ॥୬୧୦॥
ତାହାର ହସ୍ତରେ ମୁଂ ପାଇଲିଂ ପରାଭବଂ[1]
ଯେମନ୍ତ ଭାଳନ୍ତେ ଯାଇ ମିଳିଲେ ନାରଦ ॥୬୧୧॥
ନାରଦ ବୋଇଲେ ବିର କିପାଇଂ ଅଇଲୁ ଯେଥକୁ
ଯେହିକ୍ଷଣି ନାସ୍କର ବାନ୍ଧି ନିଅନ୍ତା ତୁକୁ ॥୬୧୨॥
ସମସ୍ତଙ୍କଠାରେ ଯମ ଅଟଇ କରତା
ବଡ଼ପଣ ତାକୁ ଦେଇଛି ବିଧାତା ॥୬୧୩॥
ତେଣୁ କରି ଦୁଷ୍ଟପଣ ଅଟଇ ନାସ୍କର ରାଜନ
ତାହାର ହସ୍ତରେ ଅଛଇ ସମସ୍ତଙ୍କର ମରଣ ॥୬୧୪॥
ଯେବେ ଦୁରାତମା ଯାଅ ଯା ଯେଥୁଂ ଚଳି
ଯମରାଜା ସଙ୍ଗତେ ନ କର ଆଉ କଳି ॥୬୧୫॥
ଯେମନ୍ତ ବୋଲି ଯହୁଂ ବୋଇଲେ ନାରଦ
ହରସ ହୋଇ କଂସ ଛାଡ଼ିଲା ବିସାଦ ॥୬୧୬॥
ବୋଲଇ କିଏ ତୁମ୍ଭେ କାହାର କୁମର
ବିତକ୍ଷଣ ରୁପ ତ ଦିସୁଛି ତୁମ୍ଭର ॥୬୧୭॥
କିସ ନାମ ତୁମ୍ଭର ବିଦିତ ଅଟଇ
ଝଳିଲା କାଞ୍ଚନ ପ୍ରାୟେ ଦେହ ସୋଭାପାଇ ॥୬୧୮॥
ମୋର ମୁଖେ ଜଳଦେଇ ଆଶ୍ୱାସନା କଲ
କିସ ସେବା କରିବି ତୁମ୍ଭର ପାଦ ତଳ ॥୬୧୯॥
ଭଗତି କରି ଯହୁଂ ଦଇତ୍ୟ କହିଲା
ହରସେ ଗଦଗଦେ ବୋଲନ୍ତି ବ୍ରହ୍ମାଙ୍କର ବଳା ॥୬୨୦॥
ଯାହା ପଚାରିଲୁ ଯେବେଂ ସୁଣ ହେ ବିରମଣି
ବ୍ରହ୍ମାଙ୍କର କୁମର ମୁଂ ମୋ ନାମ ନାରଦ ମହାମୁନି ॥୬୨୧॥
ସ୍ୱର୍ଗ ମଞ୍ଚ ପାତାଳ ତିନିପୁର ଭ୍ରମଣ କରୁଥାଉଂ
ଯାହାର ଦୁଖ ଦେଖୁ ଦୟା ତାକୁ ବହୁଂ ॥୬୨୨॥
ସଂସାର ଭଲମନ୍ଦ ଦେଖୁଥାଉଂ ସିନା
କଳି କୁତୁହଳେଂ ଆମ୍ଭର ଅଟେ ବାନା ॥୬୨୩॥

୧ । ଗ ପୋଥି – ଏବେ ତୋହର ହସ୍ତେ ସେହୁ ପାଇଲା ପରାଭବ

ଦଣ୍ଡେକ ଆମ୍ଭର ଯେ ବିଶ୍ରାମ ନ ଥାଇ
ବେନି ଦଣ୍ଡେ ଚଉଦ ବ୍ରହ୍ମାଣ୍ଡ[1] ଫେରିଯାଇ ॥୬୨୪॥
ଅଳପ ତପସ୍ୟାରେ ବର୍ତୁଂ ସର୍ବକାଳ
ଆନନ୍ଦ ହେଉଥାଉଂ ଦେଖିଣ ଖଳବଳ[2] ॥୬୨୫॥
ତୁମ୍ଭ ଦୁହିଁଙ୍କର ସମର ଦେଖୁଥିଲିଂ
ତୁହି ମୋହ ହୁଅନ୍ତେ ଯେ ଏଠାରେଂ ମିଳିଲିଂ ॥୬୨୬॥
ଆଜ ମୋର ବୋଲେଂ ଯେ ଚଳିଯାଅ ତୁହିଂ
ଉତର ଅଙ୍କ ତିରେ ତପ କର ଯାଇ ॥୬୨୭॥
ତପରେ ସନ୍ତୋସ ହୋଇବେ ବେଦବର
ପ୍ରସନ୍ନ ହୋଇ ଦେବେ ଅଲୋକିତ ବର ॥୬୨୮॥
ବିଧାତା ବରପାଇ ଅଜରାମ୍ବର ହୋଇବୁ
ସପତ ବ୍ରହ୍ମାଣ୍ଡରେ ଲୋକଙ୍କୁ ଜିଣିବୁ ॥୬୨୯॥
ବିନା ତପସ୍ୟାରେ ହୋ ନ ପାଇବୁ ବର
ବର ନ ପାଇଲେଂ ହୋ ନୋହଇ ସମର ॥୬୩୦॥
ବିନା ସମରରେ ସତୃ ସାଧ୍ୟ ନୋହଇ
ସତ୍ରୁ ସାଧ୍ୟ ନୋହିଲେ ନୃପତିର ସୁଖ କାହିଂ ॥୬୩୧॥
ବିନା ନୃପତିରେ ନ ପାଇ ହୋ ଭୋଗ
ଭୋଗ ନ ଭୁଜିଂଲେ ପିଡ଼ା କରେ ରୋଗ ॥୬୩୨॥
ରୋଗ ପିଡ଼ା କରନ୍ତେ ବଳ କ୍ଷିନ ହୋଇ
ବଳ କ୍ଷିନ ହୋଇଲେ ପରମାୟ ଯେ ତୁଟଇ ॥୬୩୩॥
ପରମାୟ ସରିଲେ ବାନ୍ଧି ନେଇ ଯମ
ସୁଣ ହୋ ମହାବିର ବୋଲନ୍ତି ମହାମୁନ୍ୟ ॥୬୩୪॥
ନାରଦଙ୍କ ବଚନେ ହରସ କଂସ ହେଲା
ମୁନିଙ୍କର ପାଦଧୁଳି ସିରରେଂ ନିଉଣ୍ଡିଲା ॥୬୩୫॥
ବିନୋଇ ସତ ସତ କଲାକ ପରିଣାମ
କଲ୍ୟାଣ କରି ମୁନି ହୋଇଲେ ଅନ୍ତର୍ଦ୍ଧାନ ॥୬୩୬॥
ଆଦେସ ପାଇ କଂସ ଚଳିଲା ବନ ଘୋରେଂ
ସୁଣଗୋ ପାର୍ବତି ବୋଲି ବୋଲନ୍ତି ଦିଗାମ୍ବରେଂ ॥୬୩୭॥

## କଂସର ତପସ୍ୟା

ଉତର ଅଙ୍କ ତିରେ ଚନ୍ଦ୍ରକାନ୍ତି ବନ
ଯହିଂରେ ସର୍ବବୃକ୍ଷ ଅଟନ୍ତି ଚନ୍ଦନ ॥୬୩୮॥
ସେହି ବନରେ କଂସ ପ୍ରବେସ ହୋଇଲା
ନଦିରେ ସ୍ନାନ କରି ସଉଚବନ୍ତ ହେଲା ॥୬୩୯॥
ବସିଲା ଧ୍ୟାୟିଣ ନିରୋଳ କରି ଆସନ
ତେଜିଲା ଅର୍ଣ୍ଣଜଳ ବସିଲା ମଉନ ॥୬୪୦॥

୧ । ଗ ପୋଥି – ଭୁବନ
୨ । ଖ ପୋଥି – ଦେଖିଲେ କନ୍ଦଳ

ବାମଚରଣ ଯେକ ଅଙ୍ଗୁଷ୍ଠିରେ ରହି
କେବଳ ବିଧାତାର ରୁପକୁ ଚିନ୍ତଇ ||୬୪୧||
ନ ଚଳଇ ଚକ୍ଷୁପିଞ୍ଝା ନ ଚଳେ ନିଶ୍ୱାସ
ରହିଲା ସ୍ତମ୍ଭିଭୁତେଂ ଯେସନେ ଆକାସ ||୬୪୨||
ଯେମନ୍ତେ ଦ୍ୱାଦସ ବରସ ତପ ତହିଂ କଲା
ବ୍ରହ୍ମାଙ୍କର ଆସନ ଯେ ଘନଘନ କମ୍ପିଲା ||୬୪୩||
କମ୍ପିଲା ଆକାସ ଯେ ଘନଘନ ହୋଇ
ଇନ୍ଦ୍ର ଆଦି ଦେବେ ନ ପାରିଲେ ରହି ||୬୪୪||
ସମସ୍ତ ଦେବଗଣ ଘେନି ସଙ୍ଗତରେ
ଯସୋବନ୍ତି ପୁରେ ଯାଇ ମିଳିଲା ବଜ୍ରଧରେ ||୬୪୫||
ବିଧାତା ବୋଇଲେ ହୋ କିପେଂ ବିଜେକଲ
ଆମ୍ଭେ ଯାଉଅଛୁଂ ଯେ କଂସକୁ ଦେବୁ ବର ||୬୪୬||
ସମସ୍ତ ଦେବତାଯେ ଯୋଡ଼ିଲେ ବେନିପାଣି
କଂସକୁ ଦୟା ତୁମ୍ଭେ ନକର ବେଦମଣି ||୬୪୭||
ତୁମ୍ଭେ ବର ଦିଲେ ସେ ଯେ ହୋଇବ ବଳବାନ
ସାଧିବ ଜଗତ ଯେ ନାସିବ ପ୍ରଜାଜନ ||୬୪୮||
ସ୍ୱର୍ଗରେ ପସିଣ ସେ କରିବ ହୁରି ଜୁରି
ଜିଣିବ ଦେବତାଙ୍କୁ ହରିବ ଅପକ୍ଷରି[୧] ||୬୪୯||
ତାହାର ଭୟେ ଆମ୍ଭେ ନ ପାରିବା ରହି
ସୁଣ ହୋ ବିଧାତା ବୋଲି ବୋଇଲେ ସଚିସାଇଂ ||୬୫୦||
ତ୍ରେତୟା ଯୁଗରେ ସେ ରାବଣ କୁମ୍ଭକର୍ଣ୍ଣ
ବିସର୍ବା ରସିଙ୍କଠାରୁ ହୋଇଲେ ସେ ଜନ୍ମ ||୬୫୧||
ବଢ଼ିଣ ଅରଣ୍ୟେରେ କଲେ ଯାଇ ତପ
ତାହାଙ୍କର ତପେଂ ତୋସ ଜଗତର ବାପ ||୬୫୨||
ଯେ ସେ ଜଗତ ଜନ ବାପ ସେ ତ୍ରୈଲୋକ୍ୟ ଅଧିକାରି
ଯେ ସେ ଅଧିକାରି ସେ ପ୍ରତକ୍ଷେ କୁସଧାରି ||୬୫୩||
ଯେ ସେ କୁସଧାରି ତାହାକୁ ଧାତା କହି
ଯେହୁ ସେ ଧାତା ବିଧାତା ଅଟଇ ||୬୫୪||
ଯେ ସେ ବିଧାତା ପ୍ରତକ୍ଷେଂ ବେଦବର
ଯେ ସେ ବେଦବର ସେ ପ୍ରତକ୍ଷେଂ ଦ୍ୟନ୍ତି ବର ||୬୫୫||
ଯେ ସେ ବର ଦେନ୍ତି ସେହି ସିନା ତୁମ୍ଭେ
ତୁମ୍ଭେ ଯେ ରାବଣକୁ ବର ଦିଲ ପୁର୍ବେଂ ||୬୫୬||
ବରପାଇ ରାବଣ ତିନିପୁର ସାଧ କଲା
ଆମ୍ଭମାନଙ୍କୁ ସେବକ କରିଣ ରଖିଲା ||୬୫୭||
ଭୃତ୍ୟ ପଣେ ଖଟିଥାଉଂ ତାହାର ସଭାର
ଦିନେ ବସ ବୋଲି ନ ବୋଲଇ ଲଙ୍କବିର ||୬୫୮||
କଥାଯେ କହିବାକୁ ନ ଦିଅଇ ସେହି
ଚୌର୍ଯ୍ୟେଠାରୁ ଆମ୍ଭେ ଅଧିକେଂ ଥାଉଂ ରହି ||୬୫୯||
ସାତପାଞ୍ଚ ଦିନେ ବେଳେ ଆହାର କରୁଂ
ଛିଡ଼ା ହୋଇଥାଉଂ ଆମ୍ଭେ ଢୋଳାଇଣ ମରୁଂ ||୬୬୦||
ତୁମ୍ଭେ ସିନା ଯେକା ଆସନ ଖଣ୍ଡିଏ ପାଅ
ହୃଦେଂ ଭୟେ କରିଣ ବେଦ ପଢୁଥାଅ ||୬୬୧||
ସାସ୍ତ୍ର ପଢ଼ନ୍ତେ ଯେ ସୁଖିଯାଏ କଣ୍ଠ
କଣ୍ଠ ସୁଖିଯାଇ ଉଠଇ ଫୁଙ୍କି କାସ[୧] ||୬୬୨||
ରୋଗ ଆବୋରନ୍ତେ ନିର୍ବଳ ହେଲା ସ୍ୱରି
ଶ୍ରୀହରିଙ୍କଠାରେ କଲେ ଯେ ଗୁହାରି ||୬୬୩||
ଦସରଥ ଘରେଂ ହରି ହୋଇଲେକ ଜନ୍ମ
ଜନେକ ଦୋହିତାକୁ ବିଭା ହୋଇଲେ ଶ୍ରୀରାମ ||୬୬୪||
ବନରୁ ସିତ୍ୟାଂକୁ ରାବଣ ନିଲା ହରି
ବହୁତ ରଣେ ଦତ୍ୟକୁ ନାସିଲେ ଚାପଧାରି ||୬୬୫||
ଅଠର ଗଣ୍ଡା ପୁତ୍ର ତେର ସତ ନାତି
ଅଣାସି କୋଟି ମାହୁନ୍ତ ବାଉନ ସାଗର ମତହସ୍ତି ||୬୬୬||
ବୟାସି ସାଗର ରାଉତ ପଞ୍ଚାସ କୋଟି ରଥି
ସତୋରି ସତ ଗୁଞ୍ଜର[୨] ପୟେଦାର ବାର ହଜାର କୋଟି ||୬୬୭||
ସତୋରି କୋଟି ବାଦ୍ୟକାର ତୁରଙ୍ଗମ ଅହିବ୍ରତ ବେନି[୩]
ତେର ସତ ପାରିଦଣ୍ଡ ଉଲାଖ ସହସ୍ର ଯେ ତିନି ||୬୬୮||
ସତୁରି ମଭୁତ ହାନ୍ଦୋଳା[୪] ସତୁରି ଲକ୍ଷ ରଥ[୫]
ସ୍ତିରି ବୃନ୍ଧା ତିନି ପଦ୍ମ ସାତପଦ୍ମ ବାଳେକ ||୬୬୯||
ବାନ୍ଧବ କୁଣୁଆ ଦେଖଣାହାରି ଅହିବ୍ରତେ
ଯେତେକ ସନ୍ୟ ରାମ ମାଇଲେ ଲଙ୍କରାଷ୍ଟ୍ରେ ||୬୭୦||
ସିତ୍ୟାଙ୍କୁ ଅବିସେକ ହୋଇଲେ ରଘୁମଣିଂ[୬]
ଯେମନ୍ତ ପ୍ରକାରେ ରାମ ନାସିଲେ ବିଂସପାଣି[୭] ||୬୭୧||
ଅଯୋଧ୍ୟାରେ ଅବିସେକ ସିତା ଆଣି
କିଛିଦିନେ ବିଛେଦ କଲୁଂ ସିତା ପୁଣି ||୬୭୨||

---

୧ । ଖ ପୋଥିରେ ଏହାପରେ ଅଧିକ ଅଛି
ସମସ୍ତ ଦେବତାଙ୍କୁ ଘେନିଣ ସଙ୍ଗତର
ବ୍ରହ୍ମାଙ୍କୁ ଗୁହାରି ଯେ କରଇ ବଜ୍ରଧର

---

୧ । ଖ ପୋଥି – କାସ ଉଠଇ ପ୍ରଚଣ୍ଡ
୨ । ଖ ପୋଥି – ତୁରଙ୍ଗ
୩ । ଖ ପୋଥି – ପଦାନ୍ତି ଅଠର କ୍ଷଉଣି
୪ । ଗ ପୋଥି – ଆନ୍ଦୋଳା
୫ । ଖ ପୋଥି – ରଥମୟେ ସାରଥି
୬ । ଖ ପୋଥି – ଅଯୋଧ୍ୟା କଟକେ
୭ । ଖ ପୋଥି – ଯେଥୁ ଅନ୍ୟନ୍ତରେ ତୁମ୍ଭେ ଶୁଣ କୁଶପାଣି

ସିତୟା ବିଛେଦେଂ ହୋଇଲେ ଖଳବଳ
ରାମଙ୍କୁ ଅଣାଇଲଂ ଆକାସ ମଣ୍ଡଳ ॥୬୭୩॥
ବ୍ରହ୍ମହତ୍ୟା ଦୋସ ବାଛିଲ ବେଦମଣି
ସଭାରେ ବସିବାକୁ ନ ଦିଲୁ ଆମ୍ଭେ ପୁଣି ॥୬୭୪॥
ଶ୍ରୀରାମଚନ୍ଦ୍ର ଉଭା ହୋଇଲେ ସଭାତଳେ
ରବି ତେଜ ଲାଗିଣ କର୍ଣ୍ଣିଲା ସର୍ମଝାଳେ ॥୬୭୫॥
କୋପ କରିଣ ସେ ଶ୍ରୀରାମ ବାହୁଡ଼ିଲେ
କ୍ଷିରସିନ୍ଧୁ ମଧରେ ଅନନ୍ତ ସଯ୍ୟାରେ ସୋଇଲେ ॥୬୭୬॥
ଲକ୍ଷ୍ମି ସରସ୍ୱତି ବେନି ଖଟନ୍ତି ପାଦତଳେଂ
ଅସୁର ମାରିବାକୁ ସେହି ତ ନ ଆସି ବେଳେ[୧] ॥୬୭୭॥
ଯେବେଂ କଂସକୁ ନ ଦିଅ ତୁମ୍ଭେ ବର
ଯେମନ୍ତ ବୋଲିଣ ବୋଇଲେ ବଜ୍ରଧର ॥୬୭୮॥
ସୁରପତି ବଚନେ ବିଧାତା ହୋଇଲେ ମଉନ
ସେଠାରୁ ନାରଦେ ହୋଇଲେ ଅନ୍ତର୍ଦ୍ଧାନ ॥୬୭୯॥
ଯେଉଁଠାରେ ତପ କରୁଥିଲା କଂସ
ସେଠାରେ ନାରଦ ହୋଇଲେ ପ୍ରବେସ ॥୬୮୦॥
କଂସକୁ ବୋଇଲେ ତୁ କାହାକୁ ଅଛୁ ଧ୍ୟାଇ[୨]
ଦଇତ୍ୟ ବୋଇଲେ ମୁଂ ବ୍ରହ୍ମାଙ୍କୁ ଜପଇ ॥୬୮୧॥
ନାରଦେ ବୋଇଲେ ତୁ ଯେହୁ ତପ ଛାଡ଼
ସଦାସିବ ମନ୍ତ୍ର ଯେବେ ତୁହି ପଢ଼ ॥୬୮୨॥
ତୋହର ତପେ ବ୍ରହ୍ମା ହୋଇଲେ ପ୍ରସନ୍ନ
ଆସୁଥିଲେ ନିରୋଧି ରଖିଲେ ଦେବଗଣ ॥୬୮୩॥
ଯେତେ କହି ନାରଦେ ହୋଇଲେ ଅନ୍ତର
ସିବଙ୍କୁ ଧ୍ୟାୟେ କଲା ଦୃମିଳା କୁମର ॥୬୮୪॥
ଉପ୍ପଳା ନାମେ ବଟ ପୁଣ୍ୟ ଯେ ତରୁବର
ତହିଂର ତଳେ କୁଣ୍ଡେକ ଖୋଳିଲା କଂସାସୁର ॥୬୮୫॥
କାଷ୍ଟ ରୁଣ୍ଡ କରିଣ ଅଗ୍ନି ଯେ ଲଗାଇଲା
ଦେହରୁ ମାଂସ କାଟି ଅଗ୍ନିରେ ପକାଇଲା ॥୬୮୬॥
ପାଦରୁ ସିର ଯାୟେ ମାଏଂସ କାଟଇ[୩]
ସିବ ସିବ ବୋଲିଣ[୪] ସେ ଅଗ୍ନିରେ ପକାଇ[୫] ॥୬୮୭॥

୧ । ଖ ପୋଥି – ନ ଆସିବେ କୋପଭରେଂ
୨ । ଖ ପୋଥି – ମୁଂ ବ୍ରହ୍ମାଙ୍କୁ ଜପଇ
୩ । ଖ ପୋଥି – ମାଂସ କାଟି ଦେଇ
୪ । ଖ ଓ ଗ ପୋଥି – ସୁମରି
୫ । ଗ ପୋଥିରେ ଏହାପରେ ଅଧିକ ଅଛି –
ଶୁଣ ବୈବସୁତ ବୋଲି ଅଗସ୍ତି ଗଲେ କହି
୫ । ଗ ପୋଥିରେ ସ୍ରୁବ ହେଲା ପରଠାରୁ ଛଅ ଧାଡ଼ି ନାହିଁ

ସ୍ରୁବ ହେଲା କର ସମିଧ ହେଲା ମାଂସ
ଘୃତ ହୋଇଲା ରୋଧିର ପ୍ରୋହିତ ହେଲା କଂସ[୧] ॥୬୮୮॥
ପୁଣି ତାହା ଛାଡ଼ି କଲାକ ଉର୍ଦ୍ଧେ ତପ
ଜାଣିଲେ ସଦାସିବ କମ୍ପିଲା କପିଳାସ[୨] ॥୬୮୯॥
କପିଳାସ କନ୍ଦର ଟଳମଳ ହୋଇ
ଶୁଣ ବୈବସୁତ ବୋଲି ଅଗସ୍ତି ଗଲେ କହି ॥୬୯୦॥
ଦେବତାୟେ ରହିଥିଲେ ଯସୋବନ୍ତି ପୁର
ସେଠାରେ ମିଳିଲେ ଯାଇ ନାରଦ ମୁନିବର[୩] ॥୬୯୧॥
ବୋଇଲେ ଦେବତାୟେ ନିଶ୍ଚୟେଂ ନାସ ଗଲ
କଂସ ଯେବେ ତପରେ ତ ତୋସିଲା ସଙ୍କର[୪] ॥୬୯୨॥
ନାରଦଙ୍କ ବଚନେ ଆକୁଳ ଦେବେ ହେଲେ
ବିଧାତାକୁ[୫] ଘେନିଣ ସଙ୍କରଠାରେ ହେଲେ ॥୬୯୩॥
ସଦାସିବ ବୋଇଲେ ହୋ ଦଣ୍ଡେକ ପଠାର
କଂସ ତପ କରୁଅଛି ତାହାକୁ ଦେବା ବର ॥୬୯୪॥
ସୁଣି ଦେବତାୟେ ବୋଇଲେ ଆମ୍ଭଙ୍କୁ ରକ୍ଷାକର
ମରୁ ପଛେ କଂସ ନ ଦିଅ ତାକୁ ବର ॥୬୯୫॥
ବରପାଇ ଦଇତ୍ୟ ସାଧିବ ସଂସାର
ଯେ କଥାକୁ ଉପେକ୍ଷା ତୁମ୍ଭେ ନ କର ସୁଳଧର ॥୬୯୬॥
ଇଶ୍ୱର ବୋଇଲେ ହୋ ବସି ନ ପାରିଲୁଂ
ଆସନ ଟଳମଳ କି ଉପାଏ କରିବୁ ॥୬୯୭॥
ଇନ୍ଦ୍ର ବୋଇଲା ହୋ ଯହିଂ ତହିଂ ବସ
ଅଗ୍ନିରେ ଜଳି ମରୁ ଦତ୍ୟ ବିର କଂସ ॥୬୯୮॥
ଯେମନ୍ତ ବୋଲି ଯହୁଂ ବୋଇଲେ ଦେବଗଣ
ନ ଗଲେ କଂସଠାକୁ ରହିଲେ ତ୍ରିଲୋଚନ ॥୬୯୯॥
ଯେମନ୍ତେ କଂସାସୁର ବହୁତ ତପ କଲା
ତପ କରନ୍ତେ ଯେ ସତାଇସ[୬] ବରସ ବହିଗଲା ॥୭୦୦॥
ଦିନେ ନାରଦ ଯାଇ ଭେଟିଲେ କଂସକୁ
ସକଳ ସମାଚାର କହିଲେ ତାହାକୁ ॥୭୦୧॥

୧ । ଖ ପୋଥିରେ ଏହାପରେ ଅଧିକ ଅଛି –
ଶିବଙ୍କୁ ଆଚାର୍ଯ୍ୟ ପଣରେ ବରିଲା
ଏମନ୍ତେ ଦେହ ଦହନ ତପ କଂସ କଲା
୨ । ଖ ପୋଥି – କୈଳାସ ନାମେ ଦ୍ୱୀପ
୩ । ଖ ପୋଥି – ବ୍ରହ୍ମାଙ୍କ କୁମର
୪ । ଗ ପୋଥି – ସଦାସିବ
୫ । ଗ ପୋଥି – ଦେବତାଙ୍କୁ
୬ । ଖ ଓ ଗ ପୋଥି – ସତାସି

ବୋଇଲେ ସଦାସିବ ନ ଦେବେ ତୋତେ ବର
ଆସୁଥିଲେ ଲେଉଟାଇ ନେଲେ ବଜ୍ରଧର ||୭୦୨||
ସର୍ବ ଦେବତାୟେ ବ୍ରହ୍ମାଙ୍କୁ ଘେନିଣ
କପିଳାସ ପୁରେ କରିଛନ୍ତି ବେହରଣ ||୭୦୩||
ଅକାରଣେ କିପାଇଂ ଦେହକୁ ଦେଉ ଦୁଖ
ସୌର୍ଯ୍ୟ ବଳ ଥିଲେ ତୁ କପିଳାସ ଦେଖ ||୭୦୪||
ୟେମନ୍ତ କହି ନାରଦେ ହୋଇଲେ ଅନ୍ତର୍ଦ୍ଧାନ
ସୁଣି ତପ ଛାଡ଼ିଲା କଂସାସୁର ରାଜନ[୧] ||୭୦୫||
ବିଚାରିଲା ସଦାସିବ ନ ଦିଲେ ମୋତେ ବର
ବ୍ରହ୍ମାଙ୍କୁ ନିରୋଧିଣ ରଖିଲେ ସୁରେସ୍ୱର ||୭୦୬||
କପିଳାସ ଗିରିକି ୟେବେଂ ଉପାଡ଼ିଣ ନେବିଂ
ସାହେର ଭିତରେ ଏବେ ନେଇଣ ପକାଇବି[୨] ||୭୦୭||
ହରବ୍ରହ୍ମା ଇନ୍ଦ୍ର ସହିତେ ଦିଗପାଳ
ସମସ୍ତେ ବୁଡ଼ି ମରନ୍ତୁ ସାହେର ସିନ୍ଧୁ ଜଳ[୩] ||୭୦୮||
ହୁଙ୍କାର ସବଦ କରିଣ ଅତି ରାଗେଂ
କପିଳାସ ଗିରିକି ମୁଂ ଉପାଡ଼ି ଭୁଜଦଣ୍ଡେ ||୭୦୯||
ଗିରିକି ଉପାଡ଼ନ୍ତେ ସୁଭିଲା ସବଦ
ଦେବ ଡାକ ଦେଲେ ରଖ ହେ ସଦାନନ୍ଦ ||୭୧୦||
ଦେବତା ସହିତେ ତୁମ୍ଭେ ଯିବ ନାସ
କୋପ ବହି ଦଇତ୍ୟ ଯେ ଉପାଡ଼େ କପିଳାସ ||୭୧୧||
ବୋଇଲେ ସଦାସିବ ଦଣ୍ଡେକ ପଠାର
ଉପାଡୁ କପିଳାସ ଜାଣିମା କେତେ ବଳ ||୭୧୨||
ୟେମନ୍ତ ବୋଲି ସିବ ଚାପିଲେ ଯେ ଗିରି
ବାମ ପାଦ ଅଙ୍ଗୁଷ୍ଟି ଅଗ୍ରେ ଦୃଢ଼ କରି ||୭୧୩||
କପିଳାସ ଗିରି ବସିଲା ପୃଥିବୀର[୪]
ସମ୍ଭାଳି ନ ପାରି କଂସ ପସିଲା ପାତାଳର ||୭୧୪||
ମଞ୍ଚକୁ ପାତାଳ ଯେ ତିରିସ ସହସ୍ର ଯୋଜନ ଅଟଇ
ଅତି ଅଗୋଚର ସେ ଗୋଚର ନୁହଇ[୫] ||୭୧୫||

---

୧ । ଖ ଓ ଗ ପୋଥି – ଶୁଣି ତପ ଛାଡ଼ି ଗମିଲା କଂସ ପୁଣ
୨ । ଖ ପୋଥି – ଫିଙ୍ଗି ପକାଇବି
୩ । ଖ ପୋଥି – ସମସ୍ତେ ମରନ୍ତୁ ବୋଲି କୋପିଲା ଦୃମିଳାର ବାଳ
୩ । ଗ ପୋଥି – ସମସ୍ତେ ମରନ୍ତୁ ବୋଲି କୋପେ ଚଳିଲା ବିକରାଳ
୪ । ଖ ପୋଥି – ପସିଲାକ ପୃଥିର
୪ । ଗ ପୋଥି – ଧଂସିଲା ପୃଥିର
୫ । ଖ ପୋଥିରେ ଏହି ଧାଡ଼ି ନାହିଁ

ପାତାଳକୁ ସୁତାଳ ସହସ୍ର ଯୋଜନ
ଦେବତାଳ ବୋଲି ନାମ ତାକୁ ଦୁର କୋଡ଼ିଏ ଯୋଜନ[୧] ||୭୧୬||
ସେ ପୁରକୁ ରାସାନ୍ତଳ କୋଡ଼ିଏ ଲକ୍ଷ ଯୋଜନ
ସତସହସ୍ର ଯୋଜନ ସେ ପୁର ଆୟତନ[୨] ||୭୧୭||
ଅତିତାଳ ପୁର ବୋଲିଣ ତହିଂର ତଳେ ଅଛି
ଅନନ୍ତ କୋଟି ଭଣ୍ଡାର ସାର ସେହି ପୁର ଗୋଟି[୩] ||୭୧୮||
ମହାତାଳ ପୁର ତାକୁ ଯୋଜନ ଛଡ଼ା ଦସ
ଦେବତାଳ ନାମେ ତାକୁ ଦୁର କୋଡ଼ିୟେ କୋସ ||୭୧୯||
ସେ ପୁରକୁ ରସାନ୍ତଳ କୋଡ଼ିୟେ ଲକ୍ଷ ଯୋଜନ
ସତ ସହସ୍ର ଯୋଜନ ସେ ପୁର ଆୟତନ ||୭୨୦||
ଭୁତାଳ ବୋଲି ତହିଂ ପୁରେକ ଅଛି
ଅନନ୍ତ କୋଟି ବ୍ରହ୍ମାଣ୍ଡର ସାର ସେହି ପୁର ଗୋଟି ||୭୨୧||
ବ୍ରହ୍ମାଙ୍କୁ ଦୁର୍ଲଭ ସେ ନ ପାଇ ତହିଂ ଅନ୍ତ
ଯହିଂରେ ବିଜୟେ ସେ ଯେ ବଳି ନୃପନାଥ[୪] ||୭୨୨||
ଆପଣେ ବଳି ସେ ଯେ ମୁର୍ତ୍ତିୟେକ ହୋଇ
ବସିଅଛି ମହାତ୍ମା ନିରାକାରଂଙ୍କୁ ସେ ଧ୍ୟାୟି ||୭୨୩||
ଜ୍ୟୋତି ବିରାଜଇ କୋଟିୟେ ରବି ଜିଣି
ଅନୁକ୍ଷଣେ ଦିବସ ତହିଂ ନାହିଂ ଯେ ରୟଣି ||୭୨୪||
ସେ ପୁରୁଷକୁ ଦେଖି ହୃଦରେ ଭୟେ କଲା
ଡର ଡର ହୋଇଣ ଯାଇ ପାସରେ ମିଳିଲା ||୭୨୫||
ନ କହି ନ ପୁଛି ବସିଲା ସେହିଠାରେ
ଅଗ୍ନି କୁଣ୍ଡେକ ଆରୋହିଂ[୫] ବସିଲା ତତପରେ ||୭୨୬||
ଆହାର ମଇଥୁନ ନିଦ୍ରା ସହିତେଂ
ସକଳ ତେଜ୍ୟା କରି ବସିଲା ଏକାନ୍ତେ ||୭୨୭||
ତପ କରନ୍ତେ ସେ ଦେହକୁ କଲା କ୍ଷିନ
କିଛି କାଳ ଯାନ୍ତେ ସେ ପୁରୁଷ ହୋଇଲେ ପ୍ରସନ୍ନ ||୭୨୮||
ଗଭିର ମେଘ ପ୍ରାୟେ ବଚନ ପ୍ରକାସିଲେଂ
କିପାଇଂ ମହାତମା ତୁ ତପ କରୁ ୟେଡ଼େଂ ||୭୨୯||
କିସ ତୋର କାର୍ଯ୍ୟ[୬] କାହିଂକି ତପ କରୁ
ହାନି ଅପଚୟେ କିଛି ହିଂ ନ ବିଚାରୁ ||୭୩୦||

---

୧ । ଖ ଓ ଗ ପୋଥିରେ ଏହି ଦୁଇଧାଡ଼ି ନାହିଁ
୨ । ଖ ପୋଥି – ଅଟଇ ଦୀର୍ଘ ପ୍ରତି
୩ । ଖ ପୋଥି – ବେନି ସତ ପଦ୍ମ ଛଡ଼ା ସେ ଅଟଇ
୪ । ଗ ପୋଥି – ବିଷ୍ଣୁନାଥ
୫ । ଖ ଓ ଗ ପୋଥି – ଆରୋପି
୬ । ଖ ଓ ଗ ପୋଥି – ନାମ

ସୁଣିଣ କଂସାସୁର ଆନନ୍ଦ ହୋଇଲା
ସିରେ କର ଯୋଡ଼ିଣ ପ୍ରଣମିତ ହେଲା ॥୭୩୧॥
ଭୋ ପ୍ରଭୁ ପୁରୁଷ ଯୋଗାରୁଢ଼ ମୃତି
ସପତ ପାତାଳେଂ ଅଲୋକିତ ଗତି ॥୭୩୨॥
ତୁମ୍ଭ ଚରଣେ ମୁଂ ପସିଲିଂ ସରଣ
ନାମ ମୋ କଂସାସୁର ବିନୟ ମୋର ଘେନ ॥୭୩୩॥
ପ୍ରସନ୍ନ ହୋଇଣ ପ୍ରଭୁ ଦିଅ ମୋତେ ବର
ଜିଣିବିଂ ସମସ୍ତଙ୍କୁ ନୋହିବି ଅପହାର ॥୭୩୪॥
ବଳିବିଷ୍ଣୁ ବୋଇଲେ କେହୁ ତୋର ବଇରି
କହ କିପାଇଂ ତୁ ବିଳମ୍ବ ଅଛୁ କରି ॥୭୩୫॥
କଂସ ବୋଇଲା ମୋ ବଇରି ଦେବତାୟେ
ତାହାଙ୍କୁ ଜିଣିବଇଂ ବର ଦେବ କରିଣ ସଦୟେ ॥୭୩୬॥
ବାଣ କୋଦଣ୍ଡ ଯେ ଛେଲ ଚକ୍ରକାତି
ଗଦା ମୁଦ୍ଗର ପରିଘ ପାସ ସୁଳ ଯେ ସକତି ॥୭୩୭॥
ଏ ମାନ ମୋର ଦେହେ ନୋହିବ ବିଘାତ
ମୃତ୍ୟୁ ନ ପାଇବିଂ ମୁହିଂ କେବଣ ସହସ୍ରେ ତ ॥୭୩୮॥
ଏମନ୍ତ ବର ମୋତେ ଦେବାକ ଗୋସାଇଂ
ଅସ୍ତୁ ହେଉ ବୋଲି ବୋଇଲେ ପାତାଳର ସାଇଂ[1] ॥୭୩୯॥
ସେ ପୁରୁଷ ବୋଇଲେ ତୁହି ସୁଣରେ କୁମର
କେବଣ ହି ସହସ୍ରେ ନୋହିବୁଂ ଅପହାର ॥୭୪୦॥
କାହାରି ହସ୍ତରେ ତୁହି ଯେ ନୋହିବୁ ମରଣ
ଏକାମାତ୍ର ବଇରି ନୋହିବୁ ନାରାୟଣ ॥୭୪୧॥
ନାରାୟଣ ବଇରି ତୁ ହୋଇବୁ ଯେଉଂ କାଳେଂ
ଦେଖିବା ମାତ୍ରେ ପ୍ରାଣ ଛାଡ଼ିବୁ ତେତେବେଳେଂ ॥୭୪୨॥
ଦେବତାୟେ ମୋହର ଅଟନ୍ତି ବଇରି
ତାହାଙ୍କ ଲାଗି ମୁଂ ପସିଛି ବସୁନ୍ଦରି ॥୭୪୩॥
ୟେମନ୍ତ କହି ବଳି ହୋଇଲା ମଉନ[2]
ବରପାଇ କଂସ ସେ ଯେ ପ୍ରବେସ ମଞ୍ଚ ସ୍ଥାନ ॥୭୪୪॥

## କଂସର ସ୍ୱର୍ଗରାଜ୍ୟ ଆକ୍ରମଣ

ବାଟେ ଯାଉଂ ଯାଉଂ ନେପାଳ ଦେସରେ ମିଳିଲା
ଭୃକୁଟି ରାଜା ସଙ୍ଗେ ସଙ୍ଗେ ଘୋର ଯୁଦ୍ଧ କଲା ॥୭୪୫॥
ଯୁଦ୍ଧରେ ନୃପତିକି କଲାକ ମୋହମାନ
ଛଡ଼ାଇଲା ପବନା ଅନଳ ବିମାନ ॥୭୪୬॥

୧ । ଗ ପୋଥି – ପାତାଳ ଗୋସାଇଂ
୨ । ଖ ଓ ଗ ପୋଥି – ୟେମନ୍ତ ବୋଲି ସେ ପୁରୁସ ହୋଇଲେ ମଉନ

ପବନ ଅନଳ ସେ ବିମାନ ଅଟଇ
ଅଗ୍ନିକି ସେବା କରି ସେ ନୃପତି ଥିଲା ପାଇ ॥୭୪୭॥
କ୍ଷଣକେ ଗମଇ ସେ ଚଉଦ ଭୁବନ
ଆପଣେ କଂସାସୁର ବସିଲା ସେହୁ ବିମାନ ॥୭୪୮॥
ସେ ରଥେ ବସି କଂସ ଭ୍ରମିଲା ତିନିପୁର
କ୍ଷତ୍ରିପଣ କରିଣ ଯେ ଜିଣିଲା ନୃପବର ॥୭୪୯॥
ଦିନେ ବିଜେକଲା ଆକାସ ମଣ୍ଡଳ
ବିଚାରଇ ଆଜ ମୁଂ ଜିଣିବିଂ ଆଖଣ୍ଡଳ ॥୭୫୦॥
ସୁଧର୍ମା ସଭାରେ ବିଜେକଲା ଦଇତ୍ୟ
ଡଗର ଜଣାଇଲା ଯାଇଣ ସଚିକାନ୍ତ ॥୭୫୧॥
ସାବଧାନ ହୋଇ ସୁଣ ହେ ବଜ୍ରଧର
ଦଇତ୍ୟ କଂସ ଆସି ଭାଜିଂଲା ସ୍ୱର୍ଗପୁର ॥୭୫୨॥
ସୁଣିଣ ଇନ୍ଦ୍ର ଦେବତା ଗଜ ଉପରେ ଆରୋହିଲେ
ଦେବଗଣ ଘେନିଣ ଯୁଦ୍ଧକୁ ସଜ ହେଲେ ॥୭୫୩॥
ସୁଣି ବୃହସ୍ପତି ନିରୋଧିଲେ ଇନ୍ଦ୍ରକୁ
ତୁମ୍ଭରେ ଜିଣନ୍ତା ସେ ନୋହିବ କଂସକୁ ॥୭୫୪॥
ଯହୁଂ ହର ବ୍ରହ୍ମା ନ ଦିଲେ ତାକୁ ବର
ତପ କଲା ଯାଇଣ ସେ ପାତାଳ ବୈକୁଣ୍ଠର ॥୭୫୫॥
ଭୁତଳ ବ୍ରହ୍ମପୁରୁଷ ସନ୍ତୋସଂ[1] ତାକୁ ହୋଇ
ଅକ୍ରାମ୍ଭର ପଦ ସେ ଦେଲା ତାହାକଇ ॥୭୫୬॥
କାହାରି ହସ୍ତେ କଂସ କ୍ଷୟ ଯେ ନୋହିବ
ୟେବେଂ ଚାଲ କହିବା ବ୍ରହ୍ମାଙ୍କର ଆଗ ॥୭୫୭॥
ସୁଣିଣ ସଚିପତି ଗୁରୁଙ୍କୁ ସଙ୍ଗେ ଘେନି
ଦେବଗଣ ସହିତେ ଗମନ କଲେ ପୁଣି ॥୭୫୮॥
ଯସୋବନ୍ତି ପୁରରେ ପ୍ରବେସ ହୋଇଲେ
ଦଇବର ଚରଣେ ସେ ନିଉଛାଳି କଲେ ॥୭୫୯॥
ବିଧାତା ବୋଇଲେ ହୋ କି କାରଣେ ଅଇଲ
ଇନ୍ଦ୍ରରାଜା ବୋଇଲା ସ୍ୱର୍ଗକୁ ବାହିଲା କଂସାସୁର ॥୭୬୦॥
ପାତାଳବଳିଠାରୁ ବର ପାଇ ସେହି
ବୋଲଇ ଦେବତାଙ୍କୁ ଜିଣିବଇଂ ମୁହିଂ ॥୭୬୧॥
ମଞ୍ଚପୁରେ ସମସ୍ତ ରାଜାଙ୍କୁ ଜିଣିଲା
ୟେବେ ସ୍ୱର୍ଗପୁରକୁ ସେ ମଣ୍ଡିବାକୁ ଅଇଲା ॥୭୬୨॥
ବ୍ରହ୍ମା ବୋଇଲେ ତାକୁ ନ ଦିଲୁ ଆମ୍ଭେ ବର
ୟେବେ କିପେଂ ଦେବ ତାହାକୁ ଭୟ କର ॥୭୬୩॥

୧ । ଖ ପୋଥି – ପ୍ରସନ୍ନ
୧ । ଗ ପୋଥି – ତୋଷ

ଆମ୍ଭେ ତ ତୁମ୍ଭେ ସଙ୍ଗେ ହୋଇଲୁ ଏକ ଜଣ
କେହୁ ପୁଅ ତାହାକୁ କରିବ ସ୍ୟାନ୍ତିଂ ପୁଣ ॥୭୬୪॥
ଯେମନ୍ତ ବୋଲନ୍ତେ ଯେ ନାରଦେ ମିଳିଲେ
ବୋଇଲେ କିସ ପୁଣି ତୁମ୍ଭେ ଭାଳୁଛ ଭଲେ ॥୭୬୫॥
ଅପାର କାଳରୁ ଭାଳୁଣି ନଥିଲା ତୁମ୍ଭର
ଯେଉଂ ଦିନୁ ନାସଗଲା ବିସର୍ବା କୁମର ॥୭୬୬॥
ଯେବେଂ ଆସି କଂସର ତ ପ୍ରତାପ ହୋଇଲା
ତାହାଠାରେ ତୁମ୍ଭେ ଯାଇ କରିବ ଯେ ସେବା ॥୭୬୭॥
ଉଭା ହୋଇଥିବ ତୁମ୍ଭେ ବସି ନ ପାରିବ
ଯେକର ମୁଖକୁ ତୁମ୍ଭେ ଆରେକ ଚାହୁଂଥିବ ॥୭୬୮॥
ବାସେବ ବୋଇଲେ ତୁମ୍ଭେ ସୁଣହେ ପିତାମହ
ଆମ୍ଭର ହରସ ଯେ ବିରସ ତୁମ୍ଭ ପୁଅ ॥୭୬୯॥
କୁଟ କପଟ ଯେ ଛିଦ୍ର କଥା ଯେ ଆମ୍ଭର
ସମସ୍ତ କହଇ ଯାଇଣ ଶତୃର ଆଗର ॥୭୭୦॥
କଳି ଧୁକୁଡ଼ି ପେଡ଼ି ଖଣ୍ଡେ କାଖରେ ଜାକି ଥାଇ
କନ୍ଦଳ ଦେଖିଲେ ହୃଦେ ଆନନ୍ଦ ହୋଅଇ ॥୭୭୧॥
ଯେତେ ବୋଲଣା ଅର୍ଜନ୍ତା ଯଉଂ ଠାବେଂ
ତୁମ୍ଭର ପୁଅ ବୋଲି ସହୁଂ ସିନା ଆମ୍ଭେ ॥୭୭୨॥
ବାସେବ ବଚନେ ବୋଇଲେ ବେଦବର
ଯେହାର କାର୍ଯ୍ୟ ଆମ୍ଭେ ପାଇବା ଯେ ବେଳର ॥୭୭୩॥
ପିତାମହ ବୋଇଲେ ଯାଅରେ ନନ୍ଦନ
ଦୁଷ୍ଟ କଂସକୁ ଯାଇ କହ ପ୍ରବୋଧିଣ ॥୭୭୪॥
ନାରଦେ ବୋଇଲେ ଯେବେ ତୁମ୍ଭ ଆଜ୍ଞା ହେବ
ଦୁଷ୍ଟ ଦାନବକୁ ମୁଂ ଯେ କରିବି ସ୍ୟାନ୍ତି ବୋଧ ॥୭୭୫॥
ସର୍ବ ଦେବତାୟେଂ ଯେକା ମୋହର ବୋଲେ ଥିବେ
ଯେତେ କହିଣ ନାରଦ ଚଳିଲେକ ବେଗେଂ ॥୭୭୬॥
ଯେଥୁ ଅନ୍ୟନ୍ତରେ ସୁଣ ହେ ଦଣ୍ଡଧାରି
ସ୍ୱର୍ଗରେ ପସି କଂସ କରଇ ହୁରି ଜୁରି ॥୭୭୭॥
ଭାଜଂଇ ଦେବାଳୟ ମାରଇ ଗନ୍ଧର୍ବଙ୍କୁ
କେହୁ ପଳାଇଯାନ୍ତି ଦେଖା ନ ଦେଇ କଂସକୁ ॥୭୭୮॥
ଯେକାୟେଂ ଦାନବ ଯେ ବିହରେ ସ୍ୱର୍ଗପୁରେ
କେହି ରହମାନ ଯେ ନୋହିଲେ ଆଗରେ ॥୭୭୯॥

## ଶାନ୍ତି ରକ୍ଷା କରିବାକୁ ନାରଦଙ୍କର କଂସକୁ ପରାମର୍ଶ

ଯେମନ୍ତ ସମୟେ ଯେ ନାରଦ ମିଳିଲେ
କଂସ ଉଳଗନ୍ତେଣ ଆସିର୍ବାଦ କଲେ ॥୭୮୦॥
ବୋଇଲେ ବୀର କଂସ କିପାଇଂ କୋପ ବହୁ
ଦେବତାଙ୍କର ସିରି କେମନ୍ତେ ହରାଉ ॥୭୮୧॥
ଆମ୍ଭେ କହୁଅଛୁ ସ୍ୟାନ୍ତି କର ତମ
ଯେମନ୍ତେ କାର୍ଯ୍ୟ ତୋର ହୋଇବ ଆଗମ ॥୭୮୨॥
ତପ କରିଣ ଯେବେ ପାଇଲୁ ତୁହି ବର
ମଥୁରା କଟକରେ ଭିଆଅ ତୁହି ଗଡ଼[1] ॥୭୮୩॥
ଜଗତି ଉପରେଂ ଯେ ତୁହି ଥିବୁ ବସି
ତଳେ ସର୍ବ ଦେବତାୟେ ଖଟିଥିବେ ଆସି[2] ॥୭୮୪॥
ରାଜ୍ୟରେ ରାଜା ହୋଇ ପାଳିବୁ ପ୍ରଜାମାନ
ସତ୍ତ ସାଧ୍ୟ କରି ଆକଟି ଥିବୁ ପୁଣ ॥୭୮୫॥
ଯେ କଥା ନ ବିଚାରି ତୁ ଅକାରଣେ ଭ୍ରମୁ
ହାନିଲାଭ ଅପଚୟେ କିଛି ହିଂ ନ ପ୍ରମାଣୁଂ ॥୭୮୬॥
ଯେବେ ଦେବତାୟେ ଗଲେଣି ପଳାଇ
କି କି ଖଳ ବିଚାର କରିବେ ପୁଣ ସେହି ॥୭୮୭॥
ବିଚାରୁଂ ବ୍ରହ୍ମପୁରୁଷ ହୋଇବ ଜାତ
ସେ ପୁରୁଷ ତୋହର ହୋଇବ ହନ୍ତକ ॥୭୮୮॥
କାଳକୁ ପଠାରିଣ ଥାଅ ଯେବେ ତୁହି
ନାରଦଙ୍କ ବଚନେ କଂସାସୁର ଯେ ବୋଲଇ ॥୭୮୯॥
ଯେବେ ଦେବତାୟେ ହୋଇଲେ ମୋହୋର
ତେବେଂ ମୁହିଂ ଯେବେ ତେଜିବିଂ ସମର ॥୭୯୦॥
ଦେବତାଙ୍କୁ ଜିଣିବିଂ ବୋଲି କରୁଥିଲି ତପ
ସେ ଯେବେ ମୋହୋର ହୋଇଲେ ସେବକ ॥୭୯୧॥
ଆଉ ସ୍ୱର୍ଗପୁରେଂ ମୋହର କାର୍ଯ୍ୟ ନାହିଂ
ଯମ ଆଦି ଦିଗପାଳ ଦେଖାଇବ ନେଇ ॥୭୯୨॥
ନାରଦେ ବୋଇଲେ ତୁ ଯେତେବେଳେ ଲୋଡ଼ିବୁ
ତେତେବେଳେ ସମସ୍ତଙ୍କୁ ତୋ ଆଗେ ଦେବିଂ ବାବୁ ॥୭୯୩॥
ଯେବେ ବିଶ୍ୱକର୍ମାଙ୍କୁ ପଠିଆଇ ଦେବୁଂ ଆମ୍ଭେ
ଯେକା ଦିବସକେ ତୋ ପୁର ନିର୍ମାଣିବେ ॥୭୯୪॥
ନାରଦଙ୍କ ବଚନେ ବାହୁଡ଼ିଲା କଂସାସୁର
ପ୍ରବେସ ହୋଇଲା ଯାଇ ଆପଣା ରାଜ୍ୟର ॥୭୯୫॥

## କଂସର ବିବାହ

ବେଦବର ଅଗ୍ରତେଂ ନାରଦେ କହିଲେ
ପୁଣି ବିଶ୍ୱକର୍ମାଙ୍କୁ ବିଧାତା ପ୍ରବର୍ତ୍ତିଲେ ॥୭୯୬॥
ଆଜ୍ଞାପାଇ ବିନ୍ଧାଣି ଚଳିଲେ ମଞ୍ଚପୁର
ଅଜୟେ ଗଡ଼ ଭିଆଇଲେ ମଥୁରା କଟକର[3] ॥୭୯୭॥

---

୧ । ଖ ପୋଥି – ନବର
୨ । ଖ ଓ ଗ ପୋଥି – ଥିବେ ଉଭା ହୋଇ
୩ । ଗ ପୋଥି – ମଞ୍ଚପୁର

ଯେକଇ ରାତ୍ରକେଂ ସେ ପୁର ନିର୍ମାଣିଲେ
ଘର ଘରକେଂ ପାଣିଦ୍ରବ୍ୟ ସତେ ଭାର ଯେ ଖଞ୍ଜିଲେ ॥୭୯୮॥
ମୁକୁତା ପ୍ରବାଳ ବଇଦୁର୍ଯ୍ୟ ହରିତାଳ
ହିଙ୍ଗୁଳ ପାଟସୁତା ରସାଣ କୁରୁବିନ୍ଦ ମାଳ ॥୭୯୯॥
ମାଣିକ୍ୟ ଦିପାବଳିଚଉକତି ଜଳି
ଦୁରରୁ ସତ୍ବ ଦେଖି ଯେ ପଡ଼ିଯିବେ ଢଳି ॥୮୦୦॥
ଦେଖିଣ କଂସାସୁର ହରସ ଯେ ହୋଇ
ଛପନ କୋଟି ଯାଦବଙ୍କୁ ଘେନି ବିହରଣ କରଇ ॥୮୦୧॥
ଅକୃର ନାମେ ମନ୍ତ୍ରି କହଇ ସଦବୁଦ୍ଧି
ତାହାର ବୁଦ୍ଧି ବଳେ ସମସ୍ତଙ୍କୁ ସାଧି ॥୮୦୨॥
ଚନ୍ଦ୍ର ସୁର୍ଯ୍ୟ ବରୁଣ କୁବେର ହୁତାସନ
ନାସ୍କର ପୁରନ୍ଦର ବୃହସ୍ପତି ପବନ[୧] ॥୮୦୩॥
ସଙ୍କର ବେଦବର ଗନ୍ଧର୍ବ ଆଦି ଯେତେ
ସମସ୍ତଙ୍କୁ ବୈସ୍ୟାବୃତି କଲାକ ଦଇତେଂ ॥୮୦୪॥
ଯହୁଂ କଂସାସୁର ଯେ ହୋଇଲା ରାଜନ
ବହୁତ ରାକ୍ଷସ ମିଳିଲେ ଆସି ପୁଣ ॥୮୦୫॥
ଜାରା ନାରକା ଧେନୁକା ଅର୍ଘାସୁର
ବଛା ବକା ଯାମଳା ଅର୍ଜୁନ ସହିତର ॥୮୦୬॥
ବିବିଧ ରୁପ ଧରି ଯେ ଗଧ ବାନର[୨]
କେସି ପ୍ରଳମ୍ବା ସଣ୍ଢା ଅନେକ ଅସୁର ॥୮୦୭॥
ଯେ ବିଧିରେ ଦଇତ୍ୟ ମିଳିଲେକ ଆସି
ଯେହାଙ୍କ ପାଦ ଭରେଂ କମ୍ପଇ ବସୁମତି ॥୮୦୮॥
ମଗଧ ଦେସ ରାଜା ଅଟଇ ଜରାସନ୍ଧ ରାଜନ
ହେତି ପ୍ରହେତି ଦୁଇ ଦୋହିତା କଲାକ ପ୍ରଦାନ ॥୮୦୯॥
ବେନି କୁମାରି କି ପ୍ରଦାନ ସେହି କଲା
ବହୁତ ଉଛବେଂ କଂସ କନ୍ୟାକୁ ବିଭା ହେଲା ॥୮୧୦॥

## ଶେତ ରାଜାର ପଶୁନାସ୍ତି ଯଜ୍ଞ

ବଦୟନ୍ତି ସଦାସିବ ସୁଣଗୋ ଦେବି ଓମା
ଯେମନ୍ତ ପ୍ରକାରେ ସେ କଂସର ମହିମା ॥୮୧୧॥
ସୁଣିଣ ପାର୍ବତି ଯେ ଯୋଡ଼ି ବେନି କର[୩]
ଅପୁର୍ବ କଥା ତ କହିଲ ସୁଳଧର ॥୮୧୨॥
ବଳି ବୋଲି କରିଣ କେବଣ ପୁରୁଷ ଯେ ସେହି
ତାହାର ପ୍ରସାଦେ କଂସ ପ୍ରତିଜ୍ଞା ଅଛି ବହି ॥୮୧୩॥

୧ । ଗ ପୋଥି – ରାଜନ
୨ । ଗ ପୋଥି – ବିରୁଧ ବିରୁପ ଯେ ମଗଧ ବାନର
୩ । ଗ ପୋଥି – ଶୁଣି ମନସୁତ ଯୋଡ଼ିଲା ବେନି କର

ନୋହନ୍ତି ଚନ୍ଦ୍ର ସୁର୍ଯ୍ୟ ନୋହନ୍ତି ବେଦବର
ନୋହନ୍ତି ନାରାୟଣ ନୋହନ୍ତି ନିରାକାର ॥୮୧୪॥
କଂସ ବରଦାତା ସେହି ତ ନୋହନ୍ତି
ଯେ କଥା ମୋର ଆଗେ କହ ହେ ଅଗସ୍ତି[୧] ॥୮୧୫॥
ବଦୟନ୍ତି ବ୍ରହ୍ମବେତ୍ତା ସୁଣ ହେ ନୃପବର[୨]
ପାର୍ବତି ଆଗେ ଯାହା କହିଲେ ସଙ୍କର ॥୮୧୬॥
ଅନୁଭବ ନାମେ ଯେକଇ ମନୁଯେ
ଅନୁମତ[୩] ବୋଲିଣ ସତ୍ୟ ଯୁଗ ହୋଯେ ॥୮୧୭॥
ନଉଚେତ ବୋଲିଣ ଯେକଇ ରାଜନ
ସେତ ବୋଲିଣ ସେ ତାହାର ନନ୍ଦନ ॥୮୧୮॥
ମହାଧାର୍ମିକ ସେ ବଳବନ୍ତ ଯେ ଅଟଇ
ସତ୍ୟ ଆଚରି ସେ ଯେ ପ୍ରଜାଙ୍କୁ ପାଳଇ ॥୮୧୯॥
ତାହାର ରାଜ୍ୟରେ ଯେତେକ ନରନାରି
ସମସ୍ତେ ରାମ ରାମ ଘୋସନ୍ତି ହରି ହରି[୪] ॥୮୨୦॥
ମଧୁବତି ବୋଲିଣ ଭାରିଯାର ନାମ
ମାଧବଙ୍କଠାରେ ମନ ରସଇ[୫] କହନ୍ତେ ବଚନ ॥୮୨୧॥
ବିବେକ ନାରି[୬] ସେ ସାଧବି ପତିବ୍ରତା
ସୌନ୍ଦର୍ଯ୍ୟ ସୋଭାବନ ସ୍ୱତିରେ ଗଣିତା ॥୮୨୨॥
ନୃପତିର ମହିମାଂ ଦେବଙ୍କୁ ଆଗୋଚର
ଶ୍ରୀହରି ଭଗତ ସେ ଯୁଗ ଯୁଗାନ୍ତର ॥୮୨୩॥
ମନ୍ତ୍ରିର ନାମ ସେ ଯେ ସୁବୁଦ୍ଧି ପଣ୍ଡିତ ମନୁମଥ
ଗୁରୁ ଗଙ୍ଗାଧର ଗୌତମେ ପୁରୋହିତ ॥୮୨୪॥
ଦିନେ ପ୍ରୋହିତଙ୍କୁ ପଚାରିଲେ ସେ ରାଜନ
କେବଣ ଯାଗ ଆମ୍ଭେ କରିବା ହୋ ଭିଆଣ ॥୮୨୫॥
ଯାଗ କଲେ ସିନା ବଢ଼ଇ ଯେ ପଉରୁସ
ପଉରୁସ ବଢ଼ିଲେ ଯେ ପାପ ହୋଯେ ଧ୍ୱଂସ ॥୮୨୬॥
ପାପ ନାସ ଗଲେ ପୁନ୍ୟ ସେ ବଢ଼ଇ
ପୁନ୍ୟ ବଢ଼ନ୍ତେଣ ପରମାୟସ ହୁଅଇ ॥୮୨୭॥

୧ । ଖ ପୋଥି – ପଶୁପତି
୨ । ଖ ପୋଥିରେ ଏହି ଧାଡ଼ି ପୂର୍ବରୁ ଅଧିକ ଅଛି
ବୈବସୁତ ପୁଚ୍ଛା କଲେ ଅଗସ୍ତି ଆଗର
ଏହା ମୋତେ ଫେଡ଼ି କହ ହେ ମୁନିବର
୩ । ଖ ଓ ଗ ପୋଥି – ଅନୁସତ୍ୟ
୪ । ଖ ଓ ଗ ପୋଥି – ସମସ୍ତେ ବୈଷ୍ଣବ ଘୋସନ୍ତି ରାମ ହରି
୫ । ଖ ଓ ଗ ପୋଥି – ମଧୁ ବରଷଇ ତାର
୬ । ଖ ଓ ଗ ପୋଥି – ବିବେକି ଚାତୁରି

ବହୁତ ପୁନ୍ୟ ହୋଅଇ କେବଣ ଯଜ୍ଞ କଲେ
ନାରାୟଣ ପ୍ରସନ୍ନ ହୋଅନ୍ତି ସର୍ବକାଳେ ॥୮୨୮॥
ବଦୟନ୍ତି ଗୌତମ ଯେବେ ନାରାୟଣଙ୍କୁ ପାଇବୁ
ପସୁନାସ୍ତି ଯଜ୍ଞ କର ହୋ ଯେବେଂ ବାବୁ ॥୮୨୯॥
ରାଜୁସି ଯଜ୍ଞ କଲେ ବ୍ରହ୍ମ ହତ୍ୟା ପାପ ନାସ ଯାଇ
ନରମେଧ ଯଜ୍ଞ କଲେଂ ସ୍ୱର୍ଗରେ ଇନ୍ଦ୍ର ହୋଇ ॥୮୩୦॥
ଅହି ଯଜ୍ଞ କଲେ ନ ଲାଗେ ସର୍ପ ତ୍ରାସ
ଅଶ୍ୱମେଧ ଯାଗ କଲେ ଖଣ୍ଡଇ ଗୋତ୍ର ପାପ ॥୮୩୧॥
ଯାଗ ଯଜ୍ଞ[1] କଲେ ଗଙ୍ଗାପୁରେଂ ବିଶ୍ରାମଇଂ
ସ୍ତ୍ରିହୋତ୍ରି ଯଜ୍ଞ କଲେଂ ସ୍ତିରି ହତ୍ୟା ପାତକ ଖଣ୍ଡଇଂ ॥୮୩୨॥
ପସୁନାସ୍ତି ଯଜ୍ଞ କଲେ ପାଆନ୍ତି ନାରାୟଣ
ସେହି ସେ ବିଷ୍ଣୁ ଅଙ୍ଗ କହନ୍ତି ଗୌତମ ॥୮୩୩॥
ଜିବ ସେ ନାରାୟଣ ଯେକଇ ଭିନ୍ନ ନୋହି
ଜିବ ନାସିଣ ଯେ ଯଜ୍ଞ ଆରମ୍ଭଇ ॥୮୩୪॥
ତାହାକୁ ବିମୁଖ ହୋଅନ୍ତି ନାରାୟଣ
ନୋହନ୍ତି ସନ୍ତୋସ ସେ ହରସ ଦେବଗଣ[2] ॥୮୩୫॥
ତୁ ଯେ ବିଷ୍ଣୁଦେହ ହରି ହୋଇବେ ପ୍ରାପତ
ଯେମନ୍ତ ବୋଲିଣ ଯେ ବୋଇଲେ ମୁନି ସନ୍ଥ ॥୮୩୬॥
ସୁଣିଣ ହରସ ହୋଇଲା ଦଣ୍ଡଧାରି
ନଗର ଇସାନ୍ୟେ ଯାଗ ସାଳ ତୋଳି ॥୮୩୭॥
ବ୍ରହ୍ମାଙ୍କୁ ଜଣାଇଂ ବସିଷ୍ଠ ରସିଙ୍କି ଆଣିଲେ
ଘୃତ ସମୁଦ୍ରକୁ ନୃପତି ସେବା କଲେ ॥୮୩୮॥
ନୃପତି ସେବାରେଂ ଜଳଧି ତୋସ ହେଲା
ଦେବଇଂ ଘୃତ ତୋତେ ତୋହର ଯେତେ ଲୋଡ଼ା ॥୮୩୯॥
ଆବ୍ରତେକ ସଂବ୍ରତେକ ଦ୍ରୋଣ ଯେ ପୁସ୍କର
ଯେହାଙ୍କୁ ପ୍ରବୋଧି କହିଲା ନୃପବର ॥୮୪୦॥
ସେହି ସନମତ କଲେକ ନୃପତିକି
ଯେତେକ ଘୃତ ଲୋଡ଼ିବ ବରସିବୁ ତେତିକି ॥୮୪୧॥
ମୁନିମାନଙ୍କୁ ନିମନ୍ତ୍ରଣ କଲାକ ନୃପବର
ସମସ୍ତ ମୁନି ବିଜେ କରିବ ମୋହର ଯଜ୍ଞଠାର ॥୮୪୨॥
ଅଗସ୍ତି ମାରକଣ୍ଡ ଗୌତମ ଅଙ୍ଗିରା
ବସିଷ୍ଠ ଚେବନ ବିଭାଣ୍ଡେକ ପାରେସ୍ୱରା ॥୮୪୩॥
ସାଠିୟେ ସହସ୍ର ବାଳଖିଲା ଘେନି
ସେତ ରାଜା ନବରେ ପ୍ରବେସ ହୋଇଲେ ପୁଣି ॥୮୪୪॥

୧ । ଖ ଓ ଗ ପୋଥି – ଜଳଯଜ୍ଞ
୨ । ଖ ପୋଥି – ନୋହଇ ଭଗତି ହସନ୍ତି ଦେବଗଣ

ଅଷ୍ଟ ରତ୍ନେ ନିର୍ମାଣି ତୋଳିଲେ ଯାଗସାଳ
ଛାଉଣି ପାଣିଦ୍ରବ୍ୟ ଗଣ୍ଠି ହରତାଳ[1] ॥୮୪୫॥
ଜଟି ବଟି ହଟି ସ୍ୱାହା ଏ ଚାରିବୃକ୍ଷଟି
ଚାରି ବୃକ୍ଷେ ହୋଇଲେ ଚାରିଦ୍ୱାରେ ଖମ୍ବଟି ॥୮୪୬॥
ବବ ନାମେ କରଣ ସିଦ୍ଧି ନାମେ ଯୋଗ[2]
ତୁଳ ସଙ୍କରାନ୍ତି କି ସତର ଦିନ ଭୋଗ ॥୮୪୭॥
ସ୍ୱାତି ନାମେ ନକ୍ଷତ୍ର ତାର ଚନ୍ଦ୍ର ଯୋଗର
କୃଷ୍ଣପକ୍ଷ ଚତୁର୍ଥି ଆଦିତ୍ୟ ନାମେ ବାର ॥୮୪୮॥
ପ୍ରହରକ ଭିତରେ ଅଗ୍ନିକୁଣ୍ଡ ଖୋଳି
ସତେ ହାଥ ଗଭିର ବେନି ସହସ୍ର ଅଙ୍ଗୁଳି ॥୮୪୯॥
ଯଜ୍ଞରେ ଜାଗନିକ ଗୌତମ ଅଗିଂରା
ବସିଷ୍ଠ ସ୍ୱାହା କର୍ମାଣି ପକାନ୍ତି ଘୃତଧାରା ॥୮୫୦॥
ଇଦଂ ବ୍ରହ୍ମଣେ ସ୍ୱାହା
ଇଦମଗ୍ନୟେ ନବଗ୍ରହେ ଦଦାମି
ପୁଣ୍ୟାହ ଇଦଂ ଅଷ୍ଟକୁଳା ନାଗମିଦଂ ଦଦାମି
ଇଦଂ ରୁଦ୍ରଗଣ ନାଗ ଗନ୍ଧର୍ବ ଦଦାମି
ଇଦଂ ପୁଣ୍ୟ ପୁଣ୍ୟାହଂ ସର୍ବଂ ଦଦାମି
ଇଦଂ ବାକ୍ୟେ କୁଣ୍ଡେ ସ୍ଥାପିଲେକ ଅଗ୍ନିଂ[3] ॥୮୫୧॥
କୁସାଣ୍ଡି ବିଧି ସାରିଣ ଆଚାର୍ଯ୍ୟ ବସିଲେ
ସମିଧ ସମର୍ପିଣ ସୁନ୍ୟକୁ ଚାହିଂଲେ ॥୮୫୨॥
ଚାରିମେଘେ ଅଗ୍ନିକୁଣ୍ଡେ ଘୃତ ବରସିଲେ
ଦେବଙ୍କ ନାମ ଧରି ସ୍ୱାହା ଯେ ଉଚ୍ଚାରିଲେ[4] ॥୮୫୩॥
ପଡ଼ିଲା ଘୃତଧାରା ଉଠିଲା ଅନଳ
ସଉଚବନ୍ତ ହୋଇ ବସିଲା ନୃପବର ॥୮୫୪॥
ପାଣି ପଣା ଅର୍ଣ୍ଣ ବସ୍ତ୍ର ଦାନ ଦିଲେ
ଯେ ଯାହା ମାଗଇ ସେ ବୋହି ନିୟେ ଭଲେ ॥୮୫୫॥
ସହସ୍ରେ ବରସ ଯାଗ କଲେ ସେହି ମତେଂ
ନଇଲେ ଦେବତାୟେ ହବିର୍ଭାଗ ଭୁଜିଂତେ ॥୮୫୬॥
ଇନ୍ଦ୍ରାଦି ସହିତେଂ ନବ ଗ୍ରହ ଦସ ଦିଗପାଳେ
ବାର ବିଶ୍ୱଦେବା ଆଦିତ୍ୟ ସହିତରେ ॥୮୫୭॥
ଦେବ ଲୋକ ବ୍ରହ୍ମ ଲୋକ ରୁଦ୍ର ଲୋକ ଆଦି
ଭୁବଲୋକ ଧ୍ରୁବଲୋକ ଗୋଲେକ ସିସୁମୁନା ସନ୍ଧାଦି ॥୮୫୮॥

୧ । ଖ ଓ ଗ ପୋଥି – ଛାଡ଼ିଣ ପାଣିଦ୍ରବ୍ୟ ଘଟି ହରତାଳ
୨ । ଖ ପୋଥି – ବାୟବ ନାମେ କରଣ କଉସ୍ତୁଭ ନାମେ ଯୋଗ
୨ । ଗ ପୋଥି – ବାଇବ ନାମେ କରଣ କଉସ୍ତୁଭ ନାମେ ଯୋଗ
୩ । ଉପର ୬ ଧାଡ଼ି ଖ ପୋଥିରେ ନାହିଁ
୪ । ଗ ପୋଥିରେ ଏହି ଧାଡ଼ି ନାହିଁ

ଯେମାନେ କେହି ସର୍ବେ ହବିଭାଗ ନ ଭୁଞ୍ଜିଲେ
ସେତ ରାଜା ଯଜ୍ଞରେ ଯହୁଂ ପସୁ ନ ଦେଖିଲେ ॥୮୫୯॥
ରାଜା ବୋଇଲା ହୋ ସୁଣ ମୁନି ଜନ
କିପାଇଂ ଯଜ୍ଞକୁ ନଇଲେ ମୁନି ଦେବଗଣ ॥୮୬୦॥
ବସିଷ୍ଟେ ପ୍ରତିବାଚ ଯହୁଂ ନ ପଢ଼ିଲା ପସୁ
ଦେଖି ଦେବତାୟେ ନଇଲେ ଯଜ୍ଞକୁ ॥୮୬୧॥
ଯେବେଂ ଅଗ୍ନିକୁଣ୍ଡେ ପସୁ ସମର୍ପିବୁ
ତେବେ ଯଜ୍ଞେ ପ୍ରାପତ ଦେବତାଙ୍କୁ ଦେଖିବୁ ॥୮୬୨॥
ବିନା ପସୁରେ ଦେବତା ନ ଆସିବେ
ଯେମନ୍ତ ବୋଲି ଯେ ବସିଷ୍ଟ କହିଲେ ॥୮୬୩॥
ନୃପତି ବୋଇଲା ହୋ ପସୁ ବୋଲୁଛ ତୁଣ୍ଡରେ
ତାହାର ଦେହରେଂ ରହିଥାନ୍ତି ବାସୁଦେବେ ॥୮୬୪॥
ଜିବନାସ ଗଲେ ହତ୍ୟା ହୋଇବେ ନାରାୟଣ
ନାରାୟଣ ବିମୁଖେଂ ମୋ ଯଜ୍ଞ ଅକାରଣ ॥୮୬୫॥
ଯେତେଦିନେ ପ୍ରସନ୍ନ ହୋଇବେ ନାରାୟଣ
ତେତେଦିନ ଯାୟେଂ ମୁଂ କରୁଥିବି ପୁଣ ଯଜ୍ଞ ॥୮୬୬॥
ଘୃତ ସମୁଦ୍ରୁଂ ଘୃତ ନ ଅଣ୍ଟିବ ଯେବେ
ଆପଣାର ରୋଧିର ଢାଳିବିଂ ମୁହିଂ ତେବେ ॥୮୬୭॥
ଯେମନ୍ତେ ବୋଲିଣ ଯହୁଂ ବୋଇଲେ ନୃପବର
ବାକ୍ୟ ପଢ଼ି ଘୃତ ଦିଲେକ ମୁନିବର ॥୮୬୮॥
ସଗଡ଼ ସ୍ତମ୍ଭ ପ୍ରମାଣେ[୧] ସୁନ୍ୟରୁଂ[୨] ଘୃତଧାରା ପଡ଼ି
ବସିଷ୍ଟେ ମାରକଣ୍ଡେ ଯଥା ଉଚିତେଂ ବାକ୍ୟ ପଢ଼ି ॥୮୬୯॥
ପିଙ୍ଗଳ କରାଳ ପ୍ରଚଣ୍ଡ ତେଜ ବହ୍ନି
ବୈଶ୍ୱାନର ଖାଙ୍କର ଯେ କ୍ରୋଟକର ଅଗ୍ନି ॥୮୭୦॥
ଯେମନ୍ତେ ଦସଅଗ୍ନି ଜଳିଲେ କୁଣ୍ଡରେ
ସୁଣ ଗୋ ସାକାମ୍ବରି ବୋଲନ୍ତି ସୁଳଧରେ ॥୮୭୧॥
ଛଡ଼ ନିଶ୍ୱାସରେଂ ମୁହୁର୍ତ୍ତ ଅଟଇ
ତିରିସି ମୁହୁର୍ତ୍ତେ ନିତାୟେ ହୋଅଇ ॥୮୭୨॥
ସାଠିୟେ ନିତାୟେ ଦଣ୍ଡେ ବୋଲି ଜାଣ
ବେନି ଦଣ୍ଡରେ ଯେ ଘଡ଼ିୟେ ପ୍ରମାଣ ॥୮୭୩॥
ଚତୁର୍ଥ ଘଡ଼ିରେ ପ୍ରହରେକ ହୋଇ
ଚତୁର୍ଥ ପ୍ରହରେ ଦିବସେ ଭୋଗ ଯାଇ ॥୮୭୪॥
ପନ୍ଦର ଦିବସରେ ହୋଅଇ ପକ୍ଷେକ
ବେନି ପକ୍ଷେକ ସରିଲେ ବୋଲାଇ ମାସେକ ॥୮୭୫॥

୧ । ଖ ପୋଥି – ହସ୍ତୀ ଥୋଡ଼ ପ୍ରାଏ
୨ । ଖ ପୋଥି – ସ୍ୱର୍ଗରୁ

ବାରମାସ ଗଲେ ବରସେକ ହୋଇ
କେତେ ବରସରେ କୋଡ଼ିୟେ ବୋଲାଇ ॥୮୭୬॥
ପଞ୍ଚବିଂସ ବହିଗଲେ ହୋଅଇ ୟେକ ସତ
ଦଶ ସତ ବହିଗଲେ ସହସ୍ରେ ଉଚିତ ॥୮୭୭॥
ସତେ ସହସ୍ରେ ହୋଇଲେ ଯେ ହୋଅଇ ୟେକ ଲକ୍ଷ
ସୁଣସି ଭବାନି ଗୋ ବୋଲନ୍ତି ତ୍ରିୟମ୍ବେକ ॥୮୭୮॥
ସତରଲକ୍ଷ ଛୟାଣ୍ଡୋଇ ସହସ୍ର ବରସ ହୋଇଲେ
ୟେତେକେ ସତ୍ୟଯୁଗ ଭୋଗ ଯାଇ ଭଲେଂ ॥୮୭୯॥
ତ୍ରେତୟାରେ ତେରଲକ୍ଷ ସତର ସହସ୍ର ବରସ
ୟେତେକ ଭୋଗେଣ ସେ ଦ୍ୱାପର ପରବେସ ॥୮୮୦॥
ବାରଲକ୍ଷ ଛଡ଼ ସହସ୍ର ବରସ ଯେବେ ହୋଇ
ୟେତେକ ଦ୍ୱାପର ଯୁଗ ସେ ସରଇ ॥୮୮୧॥
ଚାରିଲକ୍ଷ ବତିସ ସହସ୍ର ବରସ
ୟେତେକ ସରିଲେ କଳିଯୁଗ ହୋୟେ ସେସ ॥୮୮୨॥
ଛୟାଳିସ ସହସ୍ର ଲକ୍ଷ ବେନି ସତ ସାଠିୟେ ସହସ୍ର ବରସ ପଞ୍ଚଦସ ଦିନ
ୟେତେକେଂ ଚାରିଯୁଗ ସେସ ହୋୟେ ପୁଣ ॥୮୮୩॥
ଚାରିଯୁଗ ସରିଲେ ବୋଲନ୍ତି ଗଣ୍ଡାୟେ
ୟେକସ୍ତରି ଗଣ୍ଡା ଗଲେ ମନୁୟେକ ହୋୟେ ॥୮୮୪॥
ତେରଦସ ମନୁରେ କଳ୍ପେକ ବଖାଣି
ୟେମନ୍ତେ ସାତକଳ୍ପ ଯାଗ କଲା ନୃପମଣି ॥୮୮୫॥
ଯହୁଂ ସାତ କଳ୍ପ ଯଜ୍ଞ ସେହି କଲା
ତେଣୁ ସାତକଳ୍ପ ନାମ ରାଜା ସେ ପାଇଲା ॥୮୮୬॥
ସାତକଳ୍ପ ଯାୟେଂ ଯଜ୍ଞ କଲା ନୃପରାୟେ
ତେବେ ଯଜ୍ଞକୁ ନ ଗମିଲେ ଦେବତାୟେ ॥୮୮୭॥
ଯଜ୍ଞ ପୁରୁଷକୁ ଦ୍ରସନ ନ ପାଇଲା
ଘୃତ ପରସନ୍ତେ ସାହେର ସୁଖିଗଲା ॥୮୮୮॥
ମହାତେଜ[୧] ହୋଇଣ ଜଳିଲା ହୁତାସନ
ଘୁମାଇଂ ରହିଲେ ସକଳ ମୁନିଜନ ॥୮୮୯॥
ମହାଘୃତ[୨] ନ ବରସି ନିରସ୍ତ ହୋଇ ରହିଂ
ସ୍ତୃବ ସ୍ତୃଚ ଧରି ନ ପାରନ୍ତି ବସିଷ୍ଟଇ ॥୮୯୦॥
ବସିଷ୍ଟେ ବୋଇଲେ ହେ ସୁଣ ନୃପବର
କଣ୍ଠରୁ ବାକ୍ୟ ଆମ୍ଭର ନୋହିଲା ବାହାର ॥୮୯୧॥
ସାତକଳ୍ପ ବହିଗଲା ଯଜ୍ଞ କଲୁଂ ଏବେ
ଯଜ୍ଞ ହବିର୍ଭାଗ ଦେବତାୟେ ନ ଭୁଞ୍ଜିଲେ ॥୮୯୨॥

୧ । ଗ ପୋଥି – ମନ୍ଦା ଅଗ୍ନି
୨ । ଖ ଓ ଗ ପୋଥି – ମେଘ ଘୃତ

ତୁହିଂତ ବୋଇଲୁ ମୁହିଂ ପସୁ ନ ଦେବଇଂ
କେବଳ ଆମ୍ଭ ସରିରେ ସର୍ମ ହୋଇ ।।୮୯୩।।
ନୃପତି ବୋଇଲା ପ୍ରାଣ ମୋର ଯିବ
ଇନ୍ଦ୍ର ଦେବତା ପଛେ ହବି ନ ପାଇବ ।।୮୯୪।।
ପଶ୍ଚିମେ ଯେବେ ଉଦୟେ ହୋଇବେ ସସିଧର[୧]
ଆଦିତ୍ୟ ଯଦି ଅସ୍ତ ହୋଇବେ ସାହେର ଭିତର[୨] ।।୮୯୫।।
ପର୍ବତ ଉପରେ ଯେବେ ଫୁଟିବ ନଳଣି
ଅମୃତ ହୋଇବ ଯେବେ ସାହେର ଲବଣ ପାଣି ।।୮୯୬।।
ସ୍ତିରି ପୁରୁଷ ହୋଇବ ଦିବସ ହୋଇବ ରଜନି
ଜଳ ଯେବେ ତପତ ସିତଳ ବହନି ।।୮୯୭।।
ଝଡ଼ନ୍ତା ପତ୍ର ଯେବେ ବୃକ୍ଷରେ ଲାଗିବ
ଯେତେ କଥା ଯେବେ ସଂସାରେ ହୋଇବ ।।୮୯୮।।
ତେବେଂ ସେ ଯଜ୍ଞରେ ପସୁ ନ ଦେବଇଂ
ଜିବହତ୍ୟା କଲେ ମହାପାତକି ହେବି ମୁହିଂ ।।୮୯୯।।
ପସୁନାସ୍ତି ଯଜ୍ଞ ଯେବେ ମୁହିଂ କରୁଅଛି
ପ୍ରସନ୍ନ ହୋଇବେ ହରି ଗୁରୁ କହିଛନ୍ତି ।।୯୦୦।।
ଯେବେଂ ହେ ମୁନିମାନେ କଲ୍ୟାଣ ମୋତେ କର
ଯେମନ୍ତେ ପ୍ରସନ୍ନ ହୋଅନ୍ତି ଚକ୍ରଧର ।।୯୦୧।।
ସମସ୍ତ ମୁନିମାନଙ୍କୁ ସିତଳ ସଞ୍ଜା ଦିଲା
ନମସ୍କାର କରନ୍ତେ କଲ୍ୟାଣ ପାଇଲା ।।୯୦୨।।
ତତୁଲ୍ୟ ନାମେ କରଣ ସୁଭ ନାମେ ଯୋଗ
ବିଛା ସଂକରାନ୍ତି କି ତେଇସ ଦିନ ଭୋଗ ।।୯୦୩।।
ପୁସ୍ୟା ନାମେ ନକ୍ଷତ୍ର ବୃହସ୍ପତି ବାର
ସୁଭ ନାମେ ଚନ୍ଦ୍ର ଭୋଗ ସେ ଦିନର ।।୯୦୪।।
ସର୍ବସୁଭ ଅଟଇ ପ୍ରତିପଦା ତିଥି
ସେଦିନେ କୁସ ସଯ୍ୟା କଲାକ ନୃପତି ।।୯୦୫।।
ସାତଦିନ ଉପବାସ କ୍ଷିନ୍ନ ତା ସରିର
ଅସକତେଂ ହୋଇଲା[୩] ନୃପବର ।।୯୦୬।।
ବିଚାରେ ଯଦ୍ୟପି ମୁଂ ନ ଦେଖଇ ଭଗବାନ
ତଦ୍ୟପି ଯେହିଠାରେଂ ଛାଡ଼ିବଇଂ ପ୍ରାଣ ।।୯୦୭।।
ଯେମନ୍ତ ବିଚାରିଣ ସୋଇଲା ନୃପବର
ରାତ୍ର ହୋଇଲା ଯହୁଂ ଅଢ଼ାଇ ପ୍ରହର ।।୯୦୮।।
ଆପଣେ ଭଗବାନ ବିଜୟ ତହିଂ କଲେ
ସଙ୍ଖ ଚକ୍ର ଗଦା କମଳ ଚାରି କରେ ।।୯୦୯।।

୧ । ଖ ପୋଥି - ଉଦେ ଆଦିତ୍ୟ ହୋଇବ
୨ । ଖ ପୋଥି - ଚନ୍ଦ୍ର ଦେବତା ଯେବେ ପୂର୍ବରେ ବୁଡ଼ିବ
୩ । ଖ ଓ ଗ ପୋଥି - କୁଶରେଂ ଶୋଇଲା

ଶ୍ୱେତ ପଦ୍ମଡୋଳା ଓଷ୍ଠ ବିମ୍ବଫଳ
ବେନି ସ୍ରବଣରେ ମକର କୁଣ୍ଡଳ ।।୯୧୦।।
ଗଣ୍ଡସ୍ଥଳେ ପଦେକ କଉସ୍ତୁଭ ମଣି
ଗଳାରେ ସୁନା ସୁତା ପ୍ରବାଳ ମିସାଣିଂ[୧] ।।୯୧୧।।
ନବଗୁଣ ପଇତା ପଡ଼ିଅଛି କନ୍ଧର
ତଥି ଉପରେ ଉଭରି ସାଜିଛି[୨] ହିରଣ୍ୟକ ଡୋର[୩] ।।୯୧୨।।
ପୟରେଂ ସୋଭାବନ ପାଦୁକା ଯୋଡ଼ିୟେ
ଯେ ପାଦକୁ ଲକ୍ଷ୍ୟ ନୋହନ୍ତି କୋଟିଏ ଦେବତାୟେ ।।୯୧୩।।
ସ୍ୟାମବର୍ଣ୍ଣ ପ୍ରାୟେ ପାଦ ସ୍ରୋଣିତ ଅଙ୍ଗୁଳି
ସେ ପାଦ ଲାଗି ମୁକତ ମହିୟାଳି ।।୯୧୪।।
ଯାହାଙ୍କ ଗର୍ଭରେ ଅଛି ଅସେସ ବ୍ରହ୍ମାଣ୍ଡ
ଯେକ ରୋମକେଂ ଅଛନ୍ତି ଦେବତା ଯେକ ବୃନ୍ଦ ।।୯୧୫।।
ନବିନ ମେଘ ପ୍ରାଏ ଅଳପ ଘୁମୁରଇ ଯେହ୍ନେ
ତେମନ୍ତ ପ୍ରାଏ ବୟାଣ ସୁଭଇ ବଚନେ ।।୯୧୬।।
ଯେମନ୍ତ ରୁପ ସେ ଅଟଇ ଯୋଗେଶ୍ୱର
ବଦୟନ୍ତି କେସବ ଉଠ ହେ ନୃପବର ।।୯୧୭।।
କିପାଇଂ ଅଷ୍ଟାଙ୍ଗ ଯୋଗେଂ[୪] ସୋଇଅଛୁ ତୁହି
ତୁହି ଦୁଖ ପାଇଲେ ମୋ ଅଙ୍ଗରେ କ୍ଲେସ ହୋଇ ।।୯୧୮।।
ଯେବେଂ ସୋକ ସନ୍ତାପ ସବୁ ତେଜ୍ୟାକର
ଯାହାତୁ ମାଗିବୁ ତୋ ଇଛାୟେଂ ମାଗ ବର ।।୯୧୯।।
ଯେମନ୍ତ ବୋଲିଣ ଯହୁଂ ବୋଇଲେ ଭଗବାନ
ସଚେତ ହୋଇ ଉଠି ବସିଲା ରାଜନ ।।୯୨୦।।
ଦେଖିଲା ଅନାଦି ମାଧବ ରୁପ ରାସି
ଅଶ୍ରୁ ନୟନରେଂ[୫] ସେ ଗଦ ଗଦ ଭାସି ।।୯୨୧।।
ବୋଇଲା କିସ ମୁଂ ମାଗିବିଂ ଗୋସାଇଂ
ମୋହଠାରୁ ପାପି ସଂସାରେ ଆଉ ନାହିଁ ।।୯୨୨।।
ଜଗତ ମଙ୍ଗଳ ତୁ ଅନାଦି ପୁରୁଷ
ଜୟତୁ ଶ୍ରୀହରି ସର୍ବ ଦେହେ ବାସ ।।୯୨୩।।
ଜୟତୁ ଶ୍ରୀହରି ସଂସାର ପାଳଣ
ଜୟତୁ ଶ୍ରୀହରି ଅନନ୍ତ ସୟନ[୬] ।।୯୨୪।।

୧ । ଖ ପୋଥି - ପିତ ବସନ କଛେଡ଼ି
୨ । ଗ ପୋଥି - ସାଜୋଇ
୩ । ଖ ପୋଥି - ତଥିପରେ ସୋହଇ ଯେ ହିରଣ୍ୟକ ଡୋର
୪ । ଖ ଓ ଗ ପୋଥି - ଅସାଷ୍ଟମେ
୫ । ଖ ପୋଥି - ଅମୃତ ବଚନେ
୬ । ଗ ପୋଥି - ଜୟତୁ ଶ୍ରୀହରି ହୋ ଭାରା ନିବାରଣ

ଲକ୍ଷ୍ମି ସରସ୍ୱତି ଖଟିଥାନ୍ତି ଯାହାର ଚରଣ
ଜୟତୁ ଶ୍ରୀହରି ହୋ ସ୍ୱୟଂ ନାରାୟଣ ॥୯୨୫॥
ଅନନ୍ତ ମହିମା ତୋ ସର୍ବଠାରେଂ ବ୍ୟାପି
ଯୋଗିଙ୍କି ଜାଗନ୍ତା ତପିଙ୍କି ବ୍ରହ୍ମରୁପି ॥୯୨୬॥
ସିଦ୍ଧଙ୍କ ସାଧନ କାମିନିକି କାମରୁପି[୧]
ଭକ୍ତମାନଙ୍କୁ ଅଟୁ ଜ୍ଞାନଦିପ ସ୍ୱରୁପି[୨] ॥୯୨୭॥
ମୁଂ ହିନ ପାପି ବହୁତ କରିଅଛି ପାପ ଦୋସ
ଶ୍ରୀହରି ଚରଣେ ସରଣ ମାଗେ ସାରୋଳା ଚଣ୍ଡି ଦାସ ॥୯୨୮॥

## ବଳୀ ରାଜାର ଜନ୍ମ ବୃତ୍ତାନ୍ତ

ପୁନ ପୁନ ଚରଣେ ପଡ଼ଇ ରାଜନ
ଯଦ୍ୟପି ହରି ମୋତେ ହୋଇଲ ପ୍ରସନ୍ନ ॥୯୨୯॥
ଦେବତାମାନେ ମୋର ଯଜ୍ଞକୁ ନଇଲେ
ତାହାଙ୍କୁ ସାଧ କରିବିଂ ତୁମ୍ଭ ଆଜ୍ଞା ହୋଇଲେ ॥୯୩୦॥
ତୁମ୍ଭର ଶ୍ରୀଅଙ୍ଗରେ ମୋତେ କରିବାକ ଲିନ
ଜନ୍ମେ ଜନ୍ମେ ସେବକ ମୁଂ ହୋଇବି ଭଗବାନ ॥୯୩୧॥
ଅଗ୍ନିକି ଆସ୍ରେ କରି ହେମରେ ମରିବିଂ କେମନ୍ତେ
ଯେ କଥା ବିଚାରି ବର ଦିଅ ହେ ଜଗନ୍ନାଥେ ॥୯୩୨॥
ବଦୟନ୍ତି ଶ୍ରୀହରି ସୁଣ ହୋ ନୃପନାଥ
ଯାହାତୁ ମାଗିବୁ ତୋତେ ହୋଇବ ପ୍ରାପତ ॥୯୩୩॥
ତୁ ମୋହର ଭଗତ ଜିବରେଂ ଦୟାପର[୩]
ଭଗତ ପରେଂ ଶ୍ରେଷ୍ଠ ତୁ ସଂସାରରେ ସାର ॥୯୩୪॥
ତୁ ମୋହର ଅଙ୍ଗ ଅନ୍ୟ ନୋହେ କାୟା
ତୋହର ଠାରେ ମୋହର ନାହିଂ ମାୟା ॥୯୩୫॥
ପସୁନାସ୍ତି ଯଜ୍ଞରେ ତୋସ ମୁଂ ହୋଇଲଇଂ
ଦେବତା ଗର୍ବ କଲେ ତୋ ହସ୍ତରେ ଗଞ୍ଜିବଇଂ ॥୯୩୬॥
ନିରଞ୍ଜନ ବୋଲିଣ ମନୁୟେ ପ୍ରବେସ
ରୁଦ୍ରପିଙ୍ଗଳ ବୋଲିଣ ହୋଇବ ଯୁଗ ସତ୍ୟ ॥୯୩୭॥
ଯେହି ଜମ୍ବୁଭେଦିବ ବସିଥିବ ସ୍ୱର୍ଗେଣ
ସେହିକାଳେ ମାତି ତୁ ହୋଇବୁ ଦୃଷ୍ଟ ପଣ ॥୯୩୮॥
କସ୍ୟପ ରସିଠାରୁ ହିରଣ୍ୟ ଜାତ ହେବ
ଦୃଷ୍ଟ ପଣ ଆଚରିଣ ପ୍ରତାପି ହୋଇବ ॥୯୩୯॥
ତାହାର ନନ୍ଦନ ଯେ ପ୍ରହଲାଦ ନାମ
ସେ ମୋହର ଭଗତ ତିନିପୁରେ ଧନ୍ୟ ॥୯୪୦॥

୧ । ଖ ପୋଥି – ଜ୍ଞାନିଙ୍କ ଜ୍ଞାନଦିପ
୨ । ଖ ଓ ଗ ପୋଥିରେ ନାହିଁ
୩ । ଗ ପୋଥି – ଅମର

ପ୍ରହଲାଦର ପୁତ୍ର ବୈଲୋଚନ ମହାବିର
ପୃଥବିକୁ ସେହି ପୁଣି ହୋଇବ ମହାଭାର ॥୯୪୧॥
ତାହାର ପୁତ୍ର ନାମ ମିଥିଳାସୁର ହୋଇ[୧]
ତାହାର ବିର୍ଯେ ହୁଅ ଜନ୍ମ ଯାଇ ॥୯୪୨॥
ଆମ୍ଭର କଳା ଘେନି ହୋଇବୁ ବଳମାନ
ଦାନରେ ସାଚା ହୋଇ ଜିଣିବୁ ଦେବଗଣ ॥୯୪୩॥
ଯେମନ୍ତ କହି ହରି ଅନ୍ତର୍ଦ୍ଧାନ ହୋଇଗଲେ
ରାତ୍ର ପାହାନ୍ତେ ନୃପତି ସ୍ନାହାନ କଲା ଜଳେଂ ॥୯୪୪॥
ସୁଚିବନ୍ତ ହୋଇଣ ବହୁତ ଦାନ ଦିଲା
ଦକ୍ଷିଣା ଦେଇ ମୁନିମାନଙ୍କୁ ତୋସ କଲା ॥୯୪୫॥
କଲ୍ୟାଣ କରି ମୁନି ଚଳିଲେ ଯେ ଯାହା ସ୍ଥାନ
ସୁଣଗୋ ପାର୍ବତି ବୋଲି ବୋଲନ୍ତି ତ୍ରିଲୋଚନ ॥୯୪୬॥
ଯେଥୁ ଅନ୍ୟନ୍ତରେ କିଛିଦିନ ଗଲା
ପରମାୟ ସରନ୍ତେ ରାଜା ପଞ୍ଚତ୍ୱ ହୋଇଲା ॥୯୪୭॥
ବଇକୁଣ୍ଠ ପୁରକୁ ଦୁତେ ଘେନି ନେଲେ
ନିଜ ଆତ୍ମା କରିଣ ଶ୍ରୀହରି ରଖିଲେ ॥୯୪୮॥
ସତ୍ୟଯୁଗ ତେରଲକ୍ଷ ସେସ ହେଲାପୁଣ
ତଦଅନ୍ତେ ବିଚାର କଲେ ନାରାୟଣ ॥୯୪୯॥
ସେତକଳ୍ପକୁ ହରି ଆପଣା ତେଜ ଦିଲେ
ବଇଲୋଚନ ଭାରିଯା ସସିକା ଗର୍ଭରେଂ ଜନ୍ମାଇଲେ ॥୯୫୦॥
ଶ୍ରୀହରି କଳାରେ ସେ କୁମର ବଳମାନ
ଦିନକୁ ଦିନ ବଢ଼େ ଆକାସେ ଯେହ୍ନେ ଜହ୍ନ ॥୯୫୧॥
ଦୃଷ୍ଟ ପଣେ ସେ ହୋଇଲା ବଳବନ୍ତ
ତେଣୁ ସେ ବଳି ନାମ ପାଇଲା ଯୁଗତ ॥୯୫୨॥
ପୁର୍ବହେତୁ ଘେନିଣ ଦାନରେ ସାଚା ପୁଣ
ନିତି ପ୍ରତି ଦିଅଇ ସହସ୍ରେ ଗୋଧନ ॥୯୫୩॥
ସତେକ ଅଶ୍ୱ ବେନି ସତେକ କରିବର
ସୁବର୍ଣ୍ଣ ଦିଅଇ ସେ ବେନି ସତେ ମାଢ଼[୨] ॥୯୫୪॥
ମଞ୍ଚରାଜାମାନଙ୍କୁ ସେ ବାହୁବଳେ ସାଧି
ଦେବତାଙ୍କ ତୁଲେଣ ହୋଇଲା ବିବାଦି ॥୯୫୫॥
ସ୍ୱର୍ଗପୁର ଜୁର କଲେକ ସତ ବାର[୩]
ଡରେ ଦେବତାୟେ ହୋଇଲେ ସ୍ଥରହର ॥୯୫୬॥
ସ୍ୱର୍ଗପୁର ଛାଡ଼ି ଇନ୍ଦ୍ର ଗଲା ପଳାଇ
ମେରୁସ୍ଥଳି ଅସ୍କନ୍ଦ ବନରେ ଲୁଚିଲେକ ଯାଇ ॥୯୫୭॥

୧ । ଖ ପୋଥି – ତାହାର ପତ୍ନି ନାମ ସସି ଥିବ ହୋଇ
୨ । ଖ ଓ ଗ ପୋଥି – ବେନିଲକ୍ଷ ମାଢ଼
୩ । ଖ ଓ ଗ ପୋଥି – ସହସ୍ରେକ ବାର

ଚନ୍ଦ୍ର ସୂର୍ଯ୍ୟ ଦିଗ ଭ୍ରମି ନ ପାରିଲେ
ଦିଗପାଳ ମାନେ ଗୁପତେ ରହିଲେ ॥୯୫୮॥
ନବଗ୍ରହ ତେଜ୍ୟା କରି ଗଲେକ ନିରାସି
ବିଶ୍ୱଦେବା ସେ ପୁରେ ଯେ ନ ପାରିଲେ ବସି ॥୯୫୯॥
ଯେମନ୍ତେ ଦେବପୁର କଲା ହୁରି ଜୁରି
ବିକଳେ ଶ୍ରୀହରିଙ୍କି କଲେକ ଗୁହାରି ॥୯୬୦॥

## ବାମନଙ୍କର ଜନ୍ମ ଓ ବଳୀଙ୍କର ପାତାଳ ପ୍ରବେଶ

ଇନ୍ଦ୍ରର ଜନନି ଯେ ଅଦିତି ଅଟଇ
କସ୍ୟପ ରସିଙ୍କର ଗରୁହସି ସେହି ॥୯୬୧॥
ସ୍ୱାମିକି ବରମାଗି କଲାକ ପୟୋବ୍ରତ
ବ୍ରତରେ ସନ୍ତୋସ ଯେ ହୋଇଲେ ଗୋପିନାଥ ॥୯୬୨॥
କସ୍ୟପ ରସି ବିର୍ଯେ ଅଦିତି ଗର୍ଭ ହୋଇ
ବାମନ ଗୋଟିୟେ ଜାତ କଲା ମହାମାଇଂ ॥୯୬୩॥
ବିଚକ୍ଷଣ[୧] ରୁପ ଯେ ବିରାଜଇ ତେଜ
ବିସ୍ତାର ଦ୍ୱାଦସ ଅଙ୍ଗୁଳି ଅଟଇ ଦେହ ରାଜ ॥୯୬୪॥
ଦେହଯାକଂ ଦିସଇ ସଙ୍ଖ ଚକ୍ର ଚିହ୍ନ
ବେନି କରେଂ ଗଦା କମଳ ସୋଭାବନ ॥୯୬୫॥
ବାମକନ୍ଧେଂ ସୋହଇ ନବ ଗୁଣ ପଇତା
ହସ୍ତକେଂ କରଚୁଲି ହସ୍ତକେଂ ଖଣତା ॥୯୬୬॥
କପୋଳରେ ଚିତା ସେ ଯେ କନ୍ଧରେଂ ଉତରି
କୁସ ତମ୍ବା ପାତ୍ରି ପୋଥି ହୋଇଛି ଯାଉଂଳି ॥୯୬୭॥
ରୁଦ୍ରାକ୍ଷର ଫଳ କଣ୍ଠରେଂ ଯେ ସୋହଇ ଯେ ମାଳି
କୁସ ଗଣ୍ଠି ବାଳ ବାନ୍ଧିଣ ସିରରେ ସୋହଇ ॥୯୬୮॥
ଯେମନ୍ତ ରୁପଗୋଟି ଧରିଣ ଦଇତାରି
ପ୍ରବେସ ହୋଇଲେ ବଳିର ନିଜପୁରି ॥୯୬୯॥
ଗହ ଗହ ଚାରିବେଦ ଉଚ୍ଚାରିଲେ ମୁଖେଂ
ସବଦେ ଚମକ ଯେ ପାଇଲେ ସର୍ବଲୋକେଂ ॥୯୭୦॥
ମଳା ତରୁମାନେ ପୁଣି ହୋଇଲେ ପଲମ୍ବିତ
ଝଡ଼ନ୍ତା ବୃକ୍ଷରେ ଯେ ରହିଲା[୨] ଫଳ ପୁଷ୍ପ ॥୯୭୧॥
ଯଜ୍ଞରେ ବସିଲା ବଳି ନୃପବର
ବାମନ ବେଦଧ୍ୱନି ସୁଣିଲା କର୍ଣ୍ଣର ॥୯୭୨॥
ଦ୍ୱାରେ ଯାଇ ମିଳିଲା ବୈଲୋଚନ ନନ୍ଦନ
ଏମନ୍ତ ଦ୍ୱିଜବର ଦେଖିଲା ନାହିଂ ନୟନ[୩] ॥୯୭୩॥

୧ । ଗ ପୋଥି – ବିତକ୍ଷଣ
୨ । ଖ ପୋଥି – ପଲ୍ଲବିଲା
୩ । ଖ ଓ ଗ ପୋଥିରେ ଏହି ୨ ଧାଡ଼ି ନାହିଁ

ସିଂହଦ୍ୱାରେ ମିଳି ବୋଇଲା ରହ ରହ ହେ ଗୋସାଇଂ
ଯେଡ଼େ କଷ୍ଟରେ ବେଦ ପଢୁଛ କିସ ପାଇଂ ॥୯୭୪॥
ତୁମ୍ଭର ବେଦସୁଣି ଅଥିର ମୋର ଦେହ
କେବଣ ବେଦ ତୁମ୍ଭର କିସ ନାମ କହ ॥୯୭୫॥
କେବଣ ରାଜ୍ୟରେ କରିଛ ସାସନ
କେବଣ ରାଜ୍ୟ ତୁମ୍ଭର ଅଟଇ ଯଜମାନ ॥୯୭୬॥
ତୋହର ସଙ୍ଗତେ ସାହା କେହି ନାହିଂ
ମୁହିଂ ଧନ ଦିଲେ ତୁ କେମନ୍ତେ ନେବୁ ବହି ॥୯୭୭॥
ଆଗହୁଂ ଦ୍ୱିଜବର ଆସିଥାନ୍ତ ଯେବେ
ଅନେକ ଧନରତ୍ନ ପାଇଥାନ୍ତ ଯେହି ଠାବେଂ ॥୯୭୮॥
ଉଦୟଠାରୁ ଦୁଇ ପ୍ରହର[୧] ପରିଯନ୍ତେ
ଭଣ୍ଡାର ମେଲା କଲି କେହୁ ନିଲା କେତେ ॥୯୭୯॥
ବୃସଭ ବେନି କୋଟି ଧେନୁ ଯେ ବେନି ଲକ୍ଷ[୨]
ଦୋହଳ ଯେକ ପଦ୍ମ ବରଡ଼ିଆ ସାତ[୩] ମେବଛ ॥୯୮୦॥
ବେନି କୋଟି ହସ୍ତି ଚାରିକୋଟି ଘୋଡ଼ା
ଉତ୍ତମ ବସ୍ତ୍ର ଦେଲି ବେନି ଲକ୍ଷ ଯୋଡ଼ା ॥୯୮୧॥
ବେନି କୋଟି ଛାଗ[୪] ରଥ ଅହିବ୍ରତେ
ଖଟ ସେଯ ହାନ୍ଦୋଳା ଦେଲି ସଡ଼ ଲକ୍ଷେକ ସହିତେ ॥୯୮୨॥
କମଣ୍ଡଳ ପାତ୍ର କମଳ କୃଷ୍ଣାଜିନ[୫]
ଝରି ପାନ କିଆ ତୋଟା ବାସ୍ତୁ ଦିଲି ଦାନ[୬] ॥୯୮୩॥
ଖଣତା କରଚୁଲି ଛତା ଧୋତି ପାଣ୍ଡୋଇ
ଯେଥିଂରୁ ଦିଲି କିୟେ କେତେ ନେଲା ବହି ॥୯୮୪॥
ଖଡୁ ଗଢ଼ାଇ ଦେଲି ସତର ମାଢ଼ ସୁନା
ଦକ୍ଷିଣା ଦିଲି ଲେଖି ମାଢ଼କେ ସଏ ଚିନା[୭] ॥୯୮୫॥
ବିସାସତେ ପଉଟି ତଣ୍ଡୁଳ ରାନ୍ଧି ଅର୍ଣ୍ଣ
ସ୍ନାହାନ କରି ସର୍ବେ କଲେକ ଭୋଜନ ॥୯୮୬॥
ଯେମନ୍ତେ ଯେତେକ ଦାନ ମୁହିଂ ସେ ଦିଲଇ
ଆହାର୍ଣ୍ଣିକ ବେଳ ହେଲା ଆଜକ ଥାଅ ରହି ॥୯୮୭॥

୧ । ଗ ପୋଥି – ଦେଢ଼ ପ୍ରହର
୨ । ଖ ଓ ଗ ପୋଥି – ବୃଷଭ ବେନି କୋଟି ବେନି ଲକ୍ଷ ରଥ
୩ । ଖ ପୋଥି – ସତୁରି
୩ । ଗ ପୋଥି – ସତର
୪ । ଗ ପୋଥି – ଗଜ
୫ । ଖ ପୋଥି – କୃଷ୍ଣାଜିନର ଅଜିନ
୬ । ଖ ପୋଥି – ଝରି ଗଡୁ ତମ୍ବାପାତ୍ରୀ ବଟ କେତେକ ଦେଲି ଦାନ
୭ । ଖ ପୋଥି – ଯେକ ସୁନା
୭ । ଗ ପୋଥି – ଯେକ ଚିନା

ଏମନ୍ତ ବଳି ରାଜା ବଚନ ବୋଲଇ
କାଲି ଉଦୟ ବେଳ ହେଲେ ଦାନ ଦେବି ମୁହିଂ[1] ||୯୮୮||
ତୁମ୍ଭେ ଯେବେ ଆସିଥାନ୍ତ ସେହିବେଳ
କିସ ଅବା ନିଅନ୍ତ ନୋହ ତୁମ୍ଭେ ବୃସାଳ ||୯୮୯||
ଆଜକ ଦ୍ୱିଜବର ପଠାରିଣ ଥାଅ
କାଲି ପ୍ରଭାତରେ ଦାନ ଘେନିଣ ବହି ନିଅ ||୯୯୦||
ବଳିର ବଚନେ ସେ ବଦୟନ୍ତି ଭଗବାନ[2]
ତୁ ଯାହା ବୋଇଲୁ ହୋ ପ୍ରତାପି ରାଜନ ||୯୯୧||
ବୈତରଣି ନଦି ତିରେ ସାସନରେ ଘର
କସ୍ୟପ ପଣ୍ଡା ପିତା ଅଦିତି ନାମ ଜନନିର ||୯୯୨||
ଯଜୁର୍ବେଦି ଗୋତ୍ର ଅଟଇ ଶ୍ରେଷ୍ଠତର
ଚାରିଖାନି ଜିବେ ଯେ ବୈସ୍ୟାବୃତି ଆମ୍ଭର ||୯୯୩||
ବ୍ରହ୍ମାଣ୍ଡ ଭିତରେ ଅଛନ୍ତି ଯେତେ ଜନ
ସମସ୍ତେ ଆମ୍ଭର ଅଟନ୍ତି ଯଜମାନ ||୯୯୪|
ସମସ୍ତମାନଙ୍କୁ କଲ୍ୟାଣ ଆମ୍ଭେ ଦେଉ[3]
ରେଣୁ ପ୍ରମାଣେ ଦିଲେ ବହୁତ ବୋଲି ନେଉଂ ||୯୯୫||
ଶ୍ରଦ୍ଧା ଚିତେ ଯେହୁ ଦିଅଇ ଏକ ମୁଷ୍ଟି
ମୁଂ ତାହା ମଣଇ ଭଣ୍ଡାର ତିନି କୋଟି ||୯୯୬||
ଯାହାର ହୃଦରେ ଶ୍ରଦ୍ଧା ଭାବ ନ ଥାଇ
ମେରୁ ତୁଲେ ଦିଲେ ରେଣୁ ସମାନେ ମଣଇଂ ||୯୯୭||
ଏବେଂ ହୋ ରାଜା ତୋତେ କରଇଂ ପ୍ରାର୍ଥନା
ଶ୍ରଦ୍ଧାରେ ଦିଲେଂ ଦାନ ସୁଚିତ୍ତେ ନେବିଂ ସିନା ||୯୯୮||
ତୁ ଯେ ବୋଇଲୁ ଆଜକ ରହ ପୁଣ
ଆଜକ ବ୍ରତିଥିଲେ ସିନା କାଲି ନେବି ଦାନ ||୯୯୯||
ଅଗ୍ରରେ ଉପବାସ କରନ୍ତେ ପ୍ରାଣ ହାଦେ ଯିବ
ପଶ୍ଚାତେ ଅର୍ଣ୍ଣ ମୁଷ୍ଟି କେ ପୁଣି ଖାଇବ[4] ||୧୦୦୦||
ଅଗ୍ରତେ ଜିହ୍ୱାକୁ ଯେବେ ପକାଇବୁ ଛେଦି
ପଶ୍ଚାତେ ସୁସ୍ୱାଦୁ ଅର୍ଣ୍ଣ ଦ୍ରବ୍ୟ କେହୁ ଭୁଞ୍ଜି ||୧୦୦୧||
ଅଗ୍ରତେ ବୃକ୍ଷକୁ ଯେବେ ପକାଇବୁ ହାଣି
ପଶ୍ଚାନ୍ତେ ଜିଅଇଂ କି ଢାଳିଲେ ମୁଳେ ପାଣି ||୧୦୦୨||
ତୁହି ଯଦି ଆଜ ନଦେବୁ ମୋତେ ଦାନ
ଆନ ଘରେ ମାଗିଣ ଖାଇ ବଞ୍ଚିବିଟି ଦିନ ||୧୦୦୩||

୧ । ଖ ଓ ଗ ପୋଥିରେ ଏହି ୨ ଧାଡ଼ି ନାହିଁ
୨ । ଖ ଓ ଗ ପୋଥି – ବାମନ
୩ । ଖ ଓ ଗ ପୋଥି – ବାଞ୍ଛା ହେଉ
୪ । ଖ ପୋଥି – ପଛେ ଅର୍ଣ୍ଣ ମୁଠେ ଖାଇଲେ ସେହି କି ଜୀଇବ
୪ । ଗ ପୋଥି – ପଛରେ ଅର୍ଣ୍ଣ ମୁଠି କିପରି ଖାଇବ

ସ୍ୱର୍ଗ ମର୍ତ୍ତ୍ୟ ପୁରେ ତୁ ବୋଲାଉ ନୃପବର
ବଳବନ୍ତ ପଣେ ବଳି ନାମ ଯେ ତୋହର ||୧୦୦୪||
ଦାନିପଣେ ସାଚା ମାନରେ ମହିପାଳ
ଯେଡ଼େ ଜଣେ ହୋଇ ଦାନ ନ ଦେଉ ବିପ୍ରବର ||୧୦୦୫||
ଯେମନ୍ତ ବୋଲି ଯହୁଂ ବାମନ କହିଲେ
ଦେବିଂ ଦାନ ବୋଲି ବଳି ସନମତ କଲେ ||୧୦୦୬||
ବୋଇଲେ ବାମନ ହୋ ସଙ୍ଗେ ଘେନ ପାଣି
ଯାହାତୁ ମାଗିବୁ ତୋତେ ଦେବି ଯେହିକ୍ଷଣି ||୧୦୦୭||
ସୁଣିଣ ସୁକ୍ର ମନ୍ତ୍ରି ନିରୋଧିଲା ଯାଇ
ବ୍ରାହ୍ମଣେ ନୋହଇ ଯେ ଶ୍ରୀହରି ଅଟଇ ||୧୦୦୮||
ଯେଣୁ ମନ୍ତ୍ରି ବୋଲ ସେ ଯେ ନୃପତି ନକଲା
ତେଣୁ ମନ୍ତ୍ରି ଯାଇ ପାଣିଂ ଝରିରେଂ ପସିଲା ||୧୦୦୯||
ସତ୍ୟବାକ୍ୟେଂ ବଳି ଢାଳିଲା ଯେତେବେଳେଂ
ନ ପଡ଼ିଲା ଜଳ ତାହା ବାମନ ଜାଣିଲେ ||୧୦୧୦||
କୋପରେଂ ଜଗନ୍ନାଥ ହଲାଇଲେ କୁସ
ପାଇଲା ଦଣ୍ଡ ମନ୍ତ୍ରି ଚକ୍ଷୁ ଗୋଟି ହେଲା ନାସ ||୧୦୧୧||
ସୁକ୍ର ପଳାବନ୍ତେ ପଡ଼ିଲାକ ଜଳ
ବାମନ ସାକ୍ଷି ଦିଲେ ଦସ ଦିଗପାଳ ||୧୦୧୨||
ସମସ୍ତ ଦେବତାୟେ ସାକ୍ଷି ଥାଅ ହୋଇ
ଯାହା ମୁଂ ମାଗିବିଂ ଅବସ୍ୟ ଦେବ ଯେହି ||୧୦୧୩||
ବଳି ବୋଇଲା ହୋ ନିଲଜ ଦ୍ୱିଜବର
କେତେକ ଦାନ ନେବୁ ସାକ୍ଷି କରୁଛୁ ଦିଗପାଳ ||୧୦୧୪||
ଦାରିଦ୍ର ହୋଇଲେ ବୁଦ୍ଧି ବିବେକ ନାସ ଯାଇ
ଯାହାତୁ ମାଗିବୁ ମାଗ ବିଳମ୍ବ କର ନାହିଂ ||୧୦୧୫||
ବଦୟନ୍ତି ବାମନ ଧନରେ ଯେ କାର୍ଯ୍ୟ ନାହିଂ
ଖଣ୍ଡିଏ ଭୁମି ଦେବୁ ମାପିଣ ତିନିପାଦ ମହି ||୧୦୧୬||
ଶୁଣିଣ ନୃପତି ଯେ ଅଳପ ତେଜ ବହି
ଦାରିଦ୍ର ହୋଇଲେ ବିବେକ ନାସ ଯାଇ ||୧୦୧୭||
ଧନ ବସ୍ତ୍ର ଅର୍ଣ୍ଣ ତୁହୋ ନ ମାଗିଲୁ କିଛି
ତିନି ପାଦ ମହିରେ କେବଣ କାର୍ଯ୍ୟ ଅଛି ||୧୦୧୮||
ମୋହର ହସ୍ତରେ ଯାହାକୁ ଦାନ ଦେଇ
ଯୁଗାନ୍ତେକ କାଳକୁ ତାର ଦରିଦ୍ର ନ ରହଇ[2] ||୧୦୧୯||
ଆଜ ମୋହରଠାରୁ ଦାନ ନେବୁ ତୁହି
ପୁଣି ଅନ୍ୟ ଘରେଂ ଯାଇ ମାଗିବୁ କିପାଂଇ ||୧୦୨୦||

୧ । ଗ ପୋଥି – ସଙ୍ଗ
୨ । ଗ ପୋଥିରେ ଏହି ଧାଡ଼ି ନାହିଁ

ସୁଣି ଜନେ ଉପହାସ୍ୟ କରିବେ ଯେ ମୋତେ
ବଳି ଦାତା ବୋଲି ନ ବୋଲିବେ ସେ ଜଗତେଂ ॥୧୦୨୧॥
ବଳିର ବଚନେ ଯେ ବୋଲନ୍ତି ଭାବଗ୍ରାହି
ତୁ ଯାହା ବୋଇଲୁ ସେ ଉଚିତ ଅଟଇ ॥୧୦୨୨॥
କୁଟୁମ୍ବ ପୋସଣେ ଯାହାର ଇଛା ଥାଇ
ସେହି ସିନା ଧନ ବସ୍ତ୍ର ମାଗିଣ ନିଅଇ ॥୧୦୨୩॥
ଗର୍ଭ ପୁରୋଇତେ ଯାହାର ଥାଇ ମନ
ସେହି ତ ତଣ୍ଡୁଳ ନେଇ କରଇ ରନ୍ଧନ ॥୧୦୨୪॥
ଅଙ୍ଗ ସୋଭା କରିବାକୁ ଯା ଚିତ୍ତ ବଳାୟେ
ସେହି ଦାନ ଘେନଇଂ ଅଳଙ୍କାର ଗୁଡ଼ାୟେ ॥୧୦୨୫॥
ଯେତେ ଦିଲେ ତୁହି ଯେଥିରେ ସଧ ନାହିଂ
କରିବି ବାସ୍ତୁ ଖଣ୍ଡିୟେ ତିନି ପାଦ ମହି ॥୧୦୨୬॥
ବହୁତ ମାଗିଲେଂ ହୋ ଲୋଭି ବୋଲି କହି
ଲୋଭ ବଢ଼ିଲେ ସେ ପାତେକ ଆକ୍ରୋସଇ[1] ॥୧୦୨୭॥
ପାତେକ ବଢ଼ିଲେ ଯେ ପିଡ଼ା କରେ ରୋଗ
ରୋଗ ପିଡ଼ାକରନ୍ତେ ମୃତ୍ୟୁ କରଇ ଦଇବ ॥୧୦୨୮॥
ବହୁତରେ ମୋର ପ୍ରୟୋଜନ ନାହିଂ
କେବଳ ମାଗୁଅଛି ତିନିପାଦ ମହି ॥୧୦୨୯॥
ରାଜାଙ୍କର ଆହାଲାଦେଂ ବ୍ରାହ୍ମଣେ ବର୍ତନ୍ତି
ସୋସ୍ତ ହୋଇ ବଞ୍ଚିଲେ ସେ କଲ୍ୟାଣ କରନ୍ତି ॥୧୦୩୦॥
ବ୍ରାହ୍ମଣ ଆସିର୍ବାଦେଂ ନୃପତି ସୁଖ ପାଇ
ବଢ଼ଇ ପରମାୟ ଭଗତି ଉପୁଜଇ ॥୧୦୩୧॥
ବଳି ପ୍ରତିବାଚ ସୁଣ ହେ ଦ୍ୱିଜବର
କସଣ ପ୍ରାୟେ ଲାଗୁଛି ଉତର ତୋହର ॥୧୦୩୨॥
ଦିଲି ତିନିପାଦ ମାପିଣ ନିଅ ମହି
ସୁଣିଣ ବାମନ ଯେ ପାଦେକ ବଢ଼ାଇ ॥୧୦୩୩॥
ୟେକୋଇ ପାଦକେଂ ମଞ୍ଚପୁର ଗଲା
ଆଉ ପାଦେ କାହିଂ ଦିଅ ବୋଲି ବାମନ କହିଲା ॥୧୦୩୪॥
ବଳି ବୋଇଲା ତୁ ନିଅ ସ୍ୱର୍ଗପୁର
ଦେବତାମାନଙ୍କ ସ୍ଥାନ ଯେ ଅଟଇ ମୋହର ॥୧୦୩୫॥
ସୁଣିଣ ବାମନ ଯେ ପାଦେକ ବଢ଼ାଇଲେ
ସ୍ୱର୍ଗ ମଞ୍ଚ ବେନି ପାଦରେ ଘୋଡ଼ାଇଲେ ॥୧୦୩୬॥
ବାମନ ଡାକ ଦିଲେ ଆଉ ପାଦେକ ଦିଅ ମହି
ବଳି ବୋଇଲା ଆଉ ମୋହର କିଛି ନାହିଂ ॥୧୦୩୭॥

୧ । ଖ ପୋଥି - ଅଟଇ
୧ । ଗ ପୋଥି - ବଢ଼ଇ

ଜାଣିଲି ଅଟୁ ତୁ ହୋ ଛନ୍ଦ୍ରମ ଦ୍ୱିଜବର
ବେନି ପାଦରେ ନିଲୁ ସ୍ୱର୍ଗମଞ୍ଚ ସହିତର[1] ॥୧୦୩୮॥
ବେନିପାଦ ମହିକି ଯେବେ ନେଲୁ ବେନି ପୁର
ଆହୁରି ମାଗୁଅଛୁ ଲୋଭରେ ୟେକ ପାଦ ପୁର ॥୧୦୩୯॥
ସୁକ ମନ୍ତ୍ରି ବୋଇଲା ମୁଂ କହୁଥିଲି ତୋତେ
ବୋଲ ନ କରି ଦାନ ଦିଲୁ କପଟି ଦ୍ୱିଜ ହସ୍ତେଂ ॥୧୦୪୦॥
ଯେହି ସେ ବାମନ ଅଟନ୍ତି ମାୟାଧର
ମାୟାରେ ଭଣ୍ଡି ମାଗିଲେ ତିନି ପାଦ ଭୁମି ମୋର ॥୧୦୪୧॥
ବେନି ପାଦେ ଘେନିଲେ ସ୍ୱର୍ଗ ମଞ୍ଚ ମହି
ଆଉ ପାଦକେଂ ହରିବେ ବିଭୁତି ତୋର ଯେହି ॥୧୦୪୨॥
ମନ୍ତ୍ରିର ବଚନ ସୁଣି ମଉନେ ବଳି ରହି
ଅଳପ ମଠ ଦେଖି କୋପିତ ଭାବଗ୍ରାହି ॥୧୦୪୩॥
ସୁମରଣା କଲେ ଅଇଲା ଜଳଫାସ[2]
ବନ୍ଧନ ହୋଇଲା ବଇଲୋଚନ ସିସ ॥୧୦୪୪॥
ଯେତେକ ଦୃଷ୍ଟ ଦଇତ୍ୟ ତାହାର ଯେ ଥିଲେ
ବାମନ ମାର ବୋଲି ଗୋଳ କରି ଉଠିଲେ ॥୧୦୪୫॥
ବଳି ପ୍ରତିବାଚ ନ କର ତୁମ୍ଭେ ଗୋଳ
ଆମ୍ଭର ହୋଇଅଛି ଅପ୍ରାଜୟେ କାଳ ॥୧୦୪୬॥
କର୍ମରେ ଯାହାଥିବ ସେ କଥା ହୋଇବ
ଯେତେକ ଦିନକୁ ଯାହା ସେ ଲେଖିଛି ଦଇବ ॥୧୦୪୭॥
ଯେହି ସେ ବାମନ ଯେ ଅଟନ୍ତି ନାରାୟଣ
ଯେହାକୁ ଦାନ ଦିଲି ଜିବନ ମୋର ଧନ୍ୟ[3] ॥୧୦୪୮॥
ଚେତିଲା ବଳି ପୁର୍ବ ଜନ୍ମକୁ ସୁମରି
ବୋଲନ୍ତି ସଦାସିବ ସୁଣ ଗୋ ସାକାମ୍ବେରି ॥୧୦୪୯॥
ବଳିର ପ୍ରପିତାମହ ଅଟଇ ପ୍ରହଲାଦ
ସେହି ଆସି ବନ୍ଦିଲା ପ୍ରଭୁଙ୍କ ପଦ୍ମପାଦ ॥୧୦୫୦॥
ଦେଖିଣ ହରସ ଯେ ହୋଇଲେ ଭଗବାନ
ବୋଇଲେ ନୃପତି ଆଉ ପାଦେକ ଦିଅ ଦାନ ॥୧୦୫୧॥

୧ । ଖ ଓ ଗ ପୋଥିରେ ଏହି ଧାଡ଼ି ପରେ ଅଧିକ ଅଛି-
ମିଥ୍ୟାଭାଷୀ ପଣ୍ଡିତ ଅସନ୍ତୋଷୀଗ ଯୋଗୀ
ଅନ୍ୟାଚାରୀ ଗୁରୁ ଦ୍ୱିଜବର ଲୋଭୀ
କଳହୀ ଭାରିଯା ନନ୍ଦନ ହୋଇ ଦୁଷ୍ଟ
ଖଳ ମନ୍ତ୍ରୀ କପଟୀ ବଇଦ୍ୟ ହିଂସକ
ଯେ ଅଷ୍ଟ ଜଣକୁ ହୋ ବିଶ୍ୱାସ ନାହିଂ କ୍ଷିତି
ବିଶ୍ୱାସଘାତକୀ ଯେହୁ ପରେ ପୀଡ଼ା କରନ୍ତି
୨ । ଖ ପୋଥି - ନାଗଫାଶ
୩ । ଖ ପୋଥି - ଧନ୍ୟ ଧନ୍ୟ ମୋ ଜୀବନ

ବଳି ବୋଇଲା ଦେବଙ୍କଂ ଆଉ ପାଦେ
ଆଉ ପାଦେ କାହିଂ ଅଛି ଦେଖାଅ ମୋର ଆଗେ ॥୧୦୫୨॥
ବଳିର ବାକ୍ୟେଂ ସେ ଯେ ଆନନ୍ଦ ବନମାଳି
ନାଭିରୁ ଯେକ ପାଦ କାଢ଼ିଲେ ଦଇତାରି ॥୧୦୫୩॥
ନାଗ ନାମେ କରଣ ବିପ୍ରାତ ନାମେ ଯୋଗ
ବୃସ ସଙ୍କରାନ୍ତି କି ସତର ଦିନ ଭୋଗ ॥୧୦୫୪॥
ବଳିର ରାସି ହସ୍ତା କନ୍ୟା ସେ ଅଟଇ
ସପ୍ତମରେ ବସି ଅଛି ସୁର୍ଯ୍ୟର ତନଇ ॥୧୦୫୫॥
ଦସମରେ ଚନ୍ଦ୍ର ବୃହସ୍ପତି ଜନମ[୧]
ଦୁତୀୟେଂ ମଙ୍ଗଳ ରାହୁ କେତୁ ଯେ ଅଷ୍ଟମ ॥୧୦୫୬॥
ବିଘ୍ନ ନାମେ ଲିତା କାଳ ନାମେ ଘଡ଼ି
କୃତିକାରେ ମଘା ଅସ୍ୱନି ଅଛି ଜଡ଼ି ॥୧୦୫୭॥
ବେଳା ବିତିପାତ ଅରଷ୍ଟି ସଙ୍ଗ ହୋଇ
ସେଦିନେ ଦାନ ବଳି ବାମନକୁ ଦିଅଇ[୨] ॥୧୦୫୮॥
ଯେତେବେଳେ ହରି ନାଭିରୁ ପାଦେକ କାଢ଼ିଲେ
ଦିଅ ମହି ବୋଲି ବୋଲନ୍ତି ବାସୁଦେବେ ॥୧୦୫୯॥
ବଳି ପ୍ରତିବାଚ ନାହିଂ ଯେ ମୋର ମହି
ଦିଅ ତୁମ୍ଭ ପାଦ ପାତିଲି ସିର ମୁହିଂ ॥୧୦୬୦॥
ଯେମନ୍ତ ବୋଲି ବଳି ବିଷ୍ଣୁଙ୍କୁ ସୁମରଇ
ବାମନ ପାଦ ତଳେ ସିର ଦିଲା ନେଇ ॥୧୦୬୧॥
ଦେଖୁଣ ବଳି ସିରେ ପାଦ ଦେଲେକ ଦେବ ହରି
ଅଳପ ଚାପିଲେ ସେ ପସିଲା ବସୁନ୍ଧରି ॥୧୦୬୨॥
ପାତାଳ ବଇକୁଣ୍ଠେ ସେ ବସିଲାକ ବଳି
ଶ୍ରୀହରିର ପାଦ ଚିହ୍ନ ସିରରେଂ ଅଛି ଧରି ॥୧୦୬୩॥
ଅତିହିଂ ପୁଣ୍ୟେ ବଳି ପାଇଲା ପଦ୍ମପାଦ
ବଦୟନ୍ତି ଅଗସ୍ତି ସୁଣ ହୋ ନୃପବର ॥୧୦୬୪॥
ଭାରତ ହରିବଂସ ଯେ ଅପୁର୍ବ ସମାଚାର
ପାର୍ବତି ଆଗେ ଯାହା କହିଲେ ସଙ୍କର ॥୧୦୬୫॥
ଅତିହିଂ ପୁଣ୍ୟ କଲେ ପାଇବ ବଡ଼ ପଣ
ଯେ ସେ ବଡ଼ ପଣ ସେହି ସେ ରାଜନ ॥୧୦୬୬॥
ଯେ ସେ ସେତରାଜା ପସୁ ନାସ୍ତି ଯଜ୍ଞ କଲା
ତେଣୁ ଶ୍ରୀହରିଙ୍କ ଠାରୁ ବଳ ସେ ପାଇଲା ॥୧୦୬୭॥
ଯହୁଂ ପସୁ ନାସ୍ତି ଯଜ୍ଞ କଲା ସେହି
ତେଣୁ ଦେବତାୟେ ନ ଗଲେ ହବି ଖାଇ ॥୧୦୬୮॥

---

୧ । ଖ ପୋଥି – ନବମେ
୨ । ଖ ପୋଥି – ହସ୍ତରେ ଦାନ ଦେଇ

ଯେଣୁ ଦେବତାୟେ ଯେ ହବି ନ ଖାଇଲେ
ତେଣୁ ସାତକକ୍ଷ ଯାଗ ସେ କଲା ଭଲେ ॥୧୦୬୯॥
ଯେଣୁ ସେ ସାତକକ୍ଷ ଯାଗ ଯହୁଂ ସେ ରାଜା କଲା
ତେଣୁ ସେ ସେତକକ୍ଷ ନାମ ରାଜା ପାଇଲା ॥୧୦୭୦॥
ଯେଣୁ ସେତରାଜା ଚିନ୍ତିଲା ନାରାୟଣ
ତେଣୁ ତାକୁ ପ୍ରସନ୍ନ ହୋଇଲେ ଭଗବାନ ॥୧୦୭୧॥
ଯେଣୁ ଭଗବାନ ତାକୁ ପ୍ରସନ୍ନ ହୋଇଲେ
ଆପଣା କଳା ଦେଇ ମଞ୍ଚରେ ଜନ୍ମାଇଲେ ॥୧୦୭୨॥
ଯେଣୁ ଜାତ ମଞ୍ଚରେ ପାଇଲା ନାମ ବଳି
ବଳବନ୍ତ ପଣେ ସେ ଦେବତାଙ୍କୁ ଦଳି ॥୧୦୭୩॥
ଯେଣୁ ଦେବତାୟେ ଦଳିତ ହୋଇଲେ
ତେଣୁ ଶ୍ରୀହରିର ଚିନ୍ତା ସେହୁ କଲେ ॥୧୦୭୪॥
ଯେଣୁ ଶ୍ରୀହରିକି ଚିନ୍ତା କଲେ ପୁଣ
ତେଣୁ ସେ ଶ୍ରୀହରି ହୋଇଲେ ବାମନ[୧] ॥୧୦୭୫॥
ଯେଣୁ ସେ ବାମନ ମୁନିଙ୍କ ତନଇ
ତେଣୁ ଦାନ ମାଗିଲେ ବଳି ଦ୍ୱାରେ ଯାଇ ॥୧୦୭୬॥
ଯେଣୁ ବଳି ବାମନ ହସ୍ତରେ ଦାନ ଦିଲା
ତେଣୁ ବାମନ ତିନିପାଦ ଭୁମି ମାଗିଲା ॥୧୦୭୭॥
ବେନି ପାଦେଂ ବେନିପୁର ଢାଙ୍କିଲେ ବନମାଳି
ବଦୟନ୍ତି ସୁଳଧର ଶୁଣଗୋ ସାକାମ୍ଭେରି ॥୧୦୭୮॥
ଯେଣୁଂ ବେନିପାଦେଂ ବେନିପୁର ଗଲା
ତେଣୁ ଯେକ ପାଦ ସେ ଯେ ଭୁମି ନ ଅଣ୍ଟିଲା ॥୧୦୭୯॥
ଯେଣୁ ନ ଅଣ୍ଟିଲା ସଚରାଚର ମହି
ତେଣୁ ସେ ବାମନ ଆଉ ପାଦେକ ମାଗଇ ॥୧୦୮୦॥
ଯେଣୁ ସେ ବାମନ ଆଉ ପାଦେକ ମାଗିଲେ
ତେଣୁ ସେ ବଳି ଆପଣା ସିର ସମର୍ପିଲେ ॥୧୦୮୧॥
ଯେଣୁ ବଳିରାଜା ସମର୍ପିଲା ସିର
ତେଣୁ ସେ ବାମନ ଯେ ଚାପିଲେ ପାତାଳର ॥୧୦୮୨॥

---

୧ । ଖ ପୋଥିରେ ଉପର ଚାରି ଧାଡ଼ି ବଦଳରେ
ନିମ୍ନ ଲିଖିତ ଛଅ ଧାଡ଼ି ରହିଛି
ଯେଣୁ ଭଗବାନ ପ୍ରସନ୍ନ ହେଲେ
ତେଣୁ ଦେବତାୟେ ତାକୁ ମହାଭୟ କଲେ
ଯେଣୁ ଦେବତାୟେ ତାକୁ ମହାଭୟ କଲେ
ତେଣୁ ବେଦପତି ବିଷ୍ଣୁଙ୍କୁ ସ୍ତୁତି ଆରମ୍ଭିଲେ
ଯେଣୁ ସ୍ତୁତି ବେଦବର କଲାକ ସେ ପୁଣ
ତେଣୁ ସ୍ରୀହରି ମଞ୍ଚେ ହୋଇଲେ ବାମନ

ଯେଣୁ ସେ ପାତାଳେ ଯେ ରହିଲାକ ବଳିଂ
ତେଣୁ ସଙ୍ଖଚକ୍ର ଚିହ୍ନ ଦିଲେ ସେ ବନମାଳିଂ ॥୧୦୮୩॥
ଯେଣୁଂ ସେ ପାଇଲା ସଙ୍ଖଚକ୍ର ଚିହ୍ନ
ତେଣୁ ସେ ହୋଇଲା ପୁରୁଷଙ୍କ ଉତ୍ତମ ॥୧୦୮୪॥
ଯହୁଂ ପୁରୁଷ ଉତ୍ତମ ହୋଇଲାକ ସେହିଂ
ତେଣୁଂ ସେ ବ୍ରହ୍ମପୁରୁଷ ବୋଲାଇଂ ॥୧୦୮୫॥
ଯେଣୁ ସେ ବ୍ରହ୍ମପୁରୁଷ ହୋଇଲା ବୈକୁଣ୍ଠେଂ
ତେଣୁ କଂସାସୁର ସେବା କଲା ତା ନିକଟେଂ ॥୧୦୮୬॥
ସେବା କରି କଂସ ଅଭୟ ବରପାଇ
ବର ପାଇଣ ସେ ତ୍ରୈଲୋକ୍ୟ ସାଧଇ ॥୧୦୮୭॥
ବଦୟନ୍ତି ସଦାସିବ ସୁଣ ଗୋ ଦେବି ଓମା
ଯେମନ୍ତ ପ୍ରକାରେ ବଳି ବାମନର ମହିମା ॥୧୦୮୮॥
ବୟାଳିସ ଅବତାରେ ଅବତାର ସେହି
ସେହି ସେ ଦେବତା ବାମନ ଅଟଇ ॥୧୦୮୯॥
ସେହି ସେ ଦିଗପାଳ ଅଟନ୍ତି ରବି ସସି
ସେହି ସେ ଦେବଗୁରୁ ଅଟନ୍ତି ବୃହସ୍ପତି ॥୧୦୯୦॥
ସେହି ସନ୍ଥ ଦୃଷ୍ଟ ଭଲମନ୍ଦ ଜାଣ
ଗ୍ରାମ ଦେବୀ ରୁପେଂ ପୁଜାପାଇ ସର୍ବସ୍ଥାନ ॥୧୦୯୧॥
ସେହି ସେ ରାତ୍ର ଦିବା ତିର୍ଥ ବାର ନକ୍ଷତ୍ର
ସେହି ସେ ତାରନ୍ତା ହରନ୍ତା ଆତଯାତ ॥୧୦୯୨॥
ସେହି ସେ ଅସତି ସତି ଯତି ସେହି
ସେହି ସେ ତପସ୍ୱି ଦିଗାମ୍ବରି ବୋଲାଇ ॥୧୦୯୩॥
ସେହି ସେ ହରିହର ଚତୁର ବଦନ
ପ୍ରାଣିଙ୍କି ଭଲମନ୍ଦ ଦିଅଇ ସେହୁ ପୁଣ ॥୧୦୯୪॥
ତାରଇ ମାରଇ ହଟ କୁଟ ଦେଖେ ପୁଣ
ସେହି ରଜ ତମ ସତ୍ତ୍ୱ ତିନି ଗୁଣ ॥୧୦୯୫॥
ଅନେକ ରୁପେଂ ସେହୁ ହୋଇଲାକ ଜନ୍ମ
ତେଣୁ ସେ ବୋଲାଇ ଅନନ୍ତ ପୃସୋତ୍ତମ ॥୧୦୯୬॥
ସେ ଅନନ୍ତ ଚରଣେ ସରଣ ନରେ ପସ
ଶ୍ରୀହରି ଚରଣେ ସରଣ ସାରୋଳା ଚଣ୍ଡି ଦାସ ॥୧୦୯୭॥

## ଦେବକୀର ବିବାହ, କଂସର ଦେବବାଣୀ ଶ୍ରବଣ, ଦେବକୀ ଓ ବସୁଦେବଙ୍କୁ ବନ୍ଦୀ

ବଦୟନ୍ତି ମନୁ ଅଗସ୍ତି ପାଦେଂ ପଡ଼ି
କେମନ୍ତ ପ୍ରକାରେ ଜନ୍ମ ହୋଇଲେ ଦେବହରି ॥୧୦୯୮॥
ମହିରେ କେମନ୍ତେ ସେ ପାଇଲେ ଦେବଭୋଗ
ଏ କଥା ମୁନିବର କହ ହେ ମୋର ଆଗ ॥୧୦୯୯॥
କହନ୍ତି ଅଗସ୍ତି ସୁଣ ହେ ଦଣ୍ଡଧାରି
ଗିରିଜା ଆଗେଂ ଯାହା କହିଲେ ତ୍ରିପୁରାରି ॥୧୧୦୦॥
ବରପାଇ କଂସାସୁର ଉପଦର୍ପ କଲା
ମଞ୍ଚ ରାଜାମାନଙ୍କୁ ସେ ଚରଣେ ଖଟାଇଲା ॥୧୧୦୧॥
ଦେବତାମାନେ ସବୁ ହୋଇଲେ ବୈସ୍ୟାବୃତି
ମେରୁକୁ ଜିଣିତେ ଗଲା ଦୃମିଳା ସନ୍ତତି ॥୧୧୦୨॥
ଦେବକି ବୋଲିଥିଲା ଉଗ୍ରସେନର ଦୁଲଣି
ବସୁଦେବକୁ ସେ ବିଭା ଦିଲା ପୁଣିଂ ॥୧୧୦୩॥
ବାଜଇ ବିଜିଘୋସ ଟମକ ନିସାଣ
ଉଛବ ଭିଆଇଲେ ମଥୁରା ରାଜନ ॥୧୧୦୪॥
ବଦୟନ୍ତି ଅଗସ୍ତି ସୁଣ ହେ ନୃପବର
ସେହିକାଳେ ରାଜ୍ୟରେ ମିଳିଲା କଂସାସୁର[2] ॥୧୧୦୫॥
ବିଭାବିଧି ଦେଖି କୋପିତ କଂସ ହେଲା
ବସୁଦେବଙ୍କୁ ସେ ହାଣିବାକୁ ମନ କଲା ॥୧୧୦୬॥
କଂସ କୋପ ଦେଖିଣ ଭାଳିଲା ଉଗ୍ରସେନ
ପ୍ରବୋଧିଣ ସ୍ୟାନ୍ତି ସେ ଯେ କଲାକ କଂସ ମନ ॥୧୧୦୭॥
ଉଗ୍ରସେନକୁ ଚାହିଂ ବୋଲଇ କଂସାସୁର
ତିନିପୁରେ ମୁହିଂ ସେ ଯେ ଅଟଇ ନୃପବର ॥୧୧୦୮॥
ମୋହ ସରି ଜଣକୁ ବହେଣିକି କରନ୍ତି ପ୍ରଦାନ
ଦରିଦ୍ର ଅଟଇ ସେ ସୁଦେବର ନନ୍ଦନ ॥୧୧୦୯॥
କଂସର ବଚନ ସୁଣି ଉଗ୍ରସେନ ବୋଲଇ
ଦୁଲଣି କପୋଳେ ଯାହା ଦଇବ ଲେଖିଛଇ ॥୧୧୧୦॥
ତୋହର ମୋହର ବିଚାର ନୋହଇରେ କୁମର
ଦେବକି କପୋଳେଂ ବସୁଦେବ ବର ॥୧୧୧୧॥
ଦୁହିତା ଜନ୍ମିଥିଲେ ଯେ ପରକୁ ପ୍ରାପତ
ଯେକଥା ବିଚାରି ପୁତ୍ର ସ୍ୟାନ୍ତି କର ଚିତ୍ତ ॥୧୧୧୨॥
ଉଗ୍ରସେନ ବଚନେ ହରସ ହୋଇ କଂସ
ଆସ୍ୱାସି ବରକନ୍ୟାଙ୍କୁ ଦିଅଇ ଯଉତୁକ ବିସେସ ॥୧୧୧୩॥
ସେହିକାଳେ ଆକାସୁଂ ଯେ ସୁଭିଲା ଦେବବାଣି
ବସୁଦେବକୁ କଂସ ଦିଲୁ ଯେ ବହେଣି ॥୧୧୧୪॥
ତାହାର ଗର୍ଭରେ ଯେବଣ ପୁତ୍ର ହେବ
ତାହାର ହସ୍ତରେ ଯେ ତୋହର ପ୍ରାଣ ଯିବ[3] ॥୧୧୧୫॥
ଅଦ୍ଭୁତ ଡାକସୁଣି କଂସାସୁର ଦୁଖି
ହାଣିବ ବୋଲି କଂସ ଧଇଲା ଦେବକିକି ॥୧୧୧୬॥

---

୧ । ଖ ପୋଥିରେ ଏହି ଧାଡ଼ିଟି ନାହିଁ
୨ । ଖ ପୋଥିରେ ଏହି ଧାଡ଼ିଟି ନାହିଁ
୩ । ଖ ଓ ଗ ପୋଥି – ତୁ ମରିବୁ ବୀରମଣି

ଖଡ଼ଗ ହସ୍ତେଂ ଧରି ଝମକାଇ ବିର
ଦେଖି ବସୁଦେବ ସେ ଧଇଲା କଂସ କର ॥୧୧୧୭॥
ବୋଇଲା ଯେ ତୋହର ନୋହଇ ବଇରି
ଯେହାର ପୁତ୍ର ହସ୍ତେ ତୁହି ସିନା ମରି ॥୧୧୧୮॥
ଯେଉଂ କାଳେ ଜନ୍ମିବ ଯେହାର କୁମର
ତୋତେ ନେଇ ସମର୍ପିବି ସତ୍ୟ ହୋଇଲା ମୋହର ॥୧୧୧୯॥
କଂସ ବୋଇଲା ମୁଂ ତୁମ୍ଭଙ୍କୁ ଛାଡ଼ିବି କେମନ୍ତେ
ଧରି ରଖିଥିବି ପୁତ୍ର ମାରିବା ପରିଯନ୍ତେ ॥୧୧୨୦॥
ଯେତେକ କହି କଂସ ବସୁଦେବ ଦେବକିକୁ ବନ୍ଦିକଲା
ହସ୍ତ ପାଦେ ସାଙ୍କୁଳି ଦେଇ ବନ୍ଦିଘରେ ରଖିଲା ॥୧୧୨୧॥
ଡଗରକୁ ବୋଇଲାଂ[୧] ରାତ୍ର ଦିବସେ ଜଗିଥିବ
ଯେଉଁ କାଳେ ଦେବକି ପୁତ୍ର ପ୍ରସବିବ[୨]
କହିବ ମୋର ଆଗେଂ ନାସ କରିବିଂ ମୁହି ଆସି ॥୧୧୨୨॥
ଉଗ୍ରସେନକୁ ସାଢ଼ି ଦିଲା ନଗ୍ରରେ ଦଣ୍ଡୁଆସି ॥୧୧୨୩॥
ରଣରାହୁ ମୁକୁଟ ବାନ୍ଧିଛି ସିରରେ
ସତ୍ରୁ ବୋଲି ଆଉ ଯେ ନାହିଂ ମେଦନିରେ ॥୧୧୨୪॥
ଯେମନ୍ତେ ଅସ୍ତ ଯହୁଂ ହୋଇଲେ ନିରଞ୍ଜନ
ଭାଜିଲାକ କଂସ ସଭା ଉଠିଗଲେ ସର୍ବଜନ ॥୧୧୨୫॥
କଂସାସୁର ଅନ୍ତପୁରେ ବିଜୟେ ଯାଇ କଲା
ପହଣ୍ଡ ମଣାଇଂ ମୁଦୁସୁଲି ଘେନିଗଲା ॥୧୧୨୬॥
ହେତି ପ୍ରହେତି ଦୁଇପତ୍ନି ଆସି ଦ୍ରସନ କଲେ
ଆବର ଯେତେକ ସେ କନ୍ୟା ତହିଂ ଥିଲେ ॥୧୧୨୭॥
ସନ୍ତୋସ ହୋଇ କଂସ ଭୋଜନେ ବିଜେ କଲା
ସୁପକାର ଆଣିଣ ଅର୍ଣ୍ଣ ଯେ ଯୋଗାଇଲା[୩] ॥୧୧୨୮॥
ଖିରି ସାକର ପାପୁଂଡ଼ି ପୁରି ଛେନା
ଦୁଧ ଦହି ସାକର ଆବର ଚେନିପଣା ॥୧୧୨୯॥
ଭୋଜନ ସାରିଣ ଆଞ୍ଚୋବନ କଲା
ତାମ୍ବୁଳ ଚୋବାଇ ପଲଙ୍କେ ବିଜେକଲା ॥୧୧୩୦॥
ସିତଳ ପାଟିରେ[୪] ଯେ ପହୁଡ଼ିଲା ବିର
ବିସ୍ୱାସ ସେବକ ଯେ ଖଟିଲେ ପାରୁସର ॥୧୧୩୧॥

---

୧ । ଖ ପୋଥି – ପାହାରିମାନଙ୍କୁ ଆଜ୍ଞା ଦିଲା
୧ । ଗ ପୋଥି – ଚାଣ୍ଡାଳକୁ ଆଜ୍ଞା ଦିଲା
୨ । ଖ ପୋଥି – ଯେହାର ପୁତ୍ର ଜନ୍ମ ହେଲେ ମୋ ଆଗେଂ ଜଣାଇବ
୨ । ଏହାପରେ ଖ ପୋଥିରେ ଅଧିକ –
ଯେଉଂ କାଳେ ଜନ୍ମିବ ଏହାର କୁମର
ତାହାକୁ ନେଇ ଦେବ ମୋହର ଛାମୁର
୩ । ଖ ପୋଥି – ବ୍ୟଞ୍ଜନ ପରଶିଲା
୪ । ଗ ପୋଥି – ପାଟିଆରେ

ନିଦ୍ରା କରନ୍ତେ ଯେ ରଜନି ସେସ ହୋଇ
ଦିବସ ହୋଇଲେ ସେ ରାଜ୍ୟରେ ଭ୍ରମଇଂ ॥୧୧୩୨॥
ଯେହି ରୁପେଂ ତୋସ ସେ କରଇ କଂସାସୁର
ସୁଣସି ଗଉରି ଗୋ ବଦନ୍ତି ଦିଗାମ୍ବର ॥୧୧୩୩॥

## କ୍ଷୀରସିନ୍ଧୁ ନିକଟରେ ବ୍ରହ୍ମାଙ୍କର ବିଷ୍ଣୁଙ୍କୁ ସ୍ତୁତି ଓ ମର୍ତ୍ତ୍ୟରେ ଜନ୍ମ ହେବାକୁ ଶ୍ରୀହରିଙ୍କ ସମ୍ମତି

କିଛିଦିନ ଅନ୍ତେ ଦେବକି ଗର୍ଭବାସ ହୋଇଲା
ଦସମାସ ସମ୍ପୁର୍ଣ୍ଣେ ପୁତ୍ରେକ ପ୍ରସବିଲାଂ[୧] ॥୧୧୩୪॥
କହିଲେ ପାହାରି ଅଇଲା କଂସାସୁର
ହାଣିଲା ଖଡ଼ଗେ ଯେ ନାସ ଗଲା ସେ କୁମର ॥୧୧୩୫॥
ବଦୟନ୍ତି ମୁନିବର ସୁଣ ହେ ନୃପତି
ପାର୍ବତି ଆଗେ ଯାହା କହିଲେ ପସୁପତି ॥୧୧୩୬॥
ଦେବକିର ଛଅ ତନୟ ଜାତ ହୋଇଲା
କୋପ କରିଣ କଂସ ସକଳ ନାସ କଲା ॥୧୧୩୭॥
ବହୁତ ଅନିତି କରଇ କଂସାସୁର
କଂସର ଅର୍ଦ୍ଧଳି ପୃଥିବିକି ମହାଭାର[୨] ॥୧୧୩୮॥
ଦେବତାୟେ ସଭାତଳେ ଥାନ୍ତି ଉଭାହୋଇ
ବସ ବୋଲିଣ ନ ବୋଲଇ ଇନ୍ଦୁମତିର ତନଇ ॥୧୧୩୯॥
ଇନ୍ଦ୍ର ଜଣାଇଲା ଯାଇ ବିଧାତା ଛାମୁର
କେମନ୍ତେ ନାସ ଯିବ ପ୍ରତାପି କଂସାସୁର ॥୧୧୪୦॥
କଂସ ନାସ ନ ଗଲେ ଆମ୍ଭର ସୁଖ ନାହିଂ
ଯାଅସି ସିନ୍ଧୁ ମଧ୍ୟେ ଜଣାଅ[୩] ଭାବଗ୍ରାହି ॥୧୧୪୧॥
କଂସର ଭାରାଭର ବସୁଧା ନ ପାରିଲା ସହି
ରାସାଙ୍ଗତ ହୋଇଲେ ସମସ୍ତେ ନାସ ଯାଇ ॥୧୧୪୨॥
ତାହାର ପାଦଭରେ ପୃଥିବି କମ୍ପଇ
କେତେକାଳ ସହିବା ଯେ ଆମ୍ଭ ଦେହି[୪] ॥୧୧୪୩॥
ଆଗହୁଂ ଜଣାଇବା ଚାଲ ହୋ ଚକ୍ରଧର
ଯେମନ୍ତେ ନାସ ଯାଇ ଦୃମିଳା କୁମର ॥୧୧୪୪॥
ଯେମନ୍ତ ବୋଲି ଯହୁଂ ବୋଇଲେ ବଜ୍ରଧର[୫]
ଆନନ୍ଦ ଚିତ ହୋଇ ବୋଲନ୍ତି ବେଦବର[୬] ॥୧୧୪୫॥

---

୧ । ଖ ଓ ଗ ପୋଥି – କୁମର ଜନମିଲା
୨ । ଖ ପୋଥି – ସହି ନ ପାରିଲା ବସୁଧା ତାହାର ପାପ ଭାର
୩ । ଖ ଓ ଗ ପୋଥି – ତୁମ୍ଭେ ସିନ୍ଧୁ ତଟକୁ ଯାଅ
୪ । ଖ ଓ ଗ ପୋଥିରେ ଏ ଦୁଇ ଧାଡ଼ି ନାହିଁ
୫ । ଖ ଓ ଗ ପୋଥି – ବଜ୍ରପାଣି
୬ । ଖ ଓ ଗ ପୋଥି – ବେଦମଣି

ଆସହୋ ସମସ୍ତେ ଏବେ ଶ୍ରୀହରିଠାକୁ ଯିବା
କଂସର ଉପଦର୍ପ ଆମ୍ଭେଂ ଜଣାଇବା ॥୧୧୪୬॥
ଯେମନ୍ତେ ବୋଲି ବିଧାତା ଅନକୁଳ କଲେ
ସକଳ ଦେବତାୟେ ସଙ୍ଗତରେ ଗଲେଂ ॥୧୧୪୭॥
ମହୋଦଧି ତଟେ ସେ ମିଳିଲେକ ଯାଇ
ସ୍ତୁତି ଆରମ୍ଭିଲେ କ୍ଷିରସିନ୍ଧୁକୁ ଚାହିଂ ॥୧୧୪୮॥
ଜୟତୁ ଜଗବନ୍ଧୁ ସକଳ କରତା
ଯୋଗି ଜନମାନେ ତୋତେ କରିଥାନ୍ତି ଚିନ୍ତା ॥୧୧୪୯॥
ଅସେସ ବ୍ରହ୍ମାଣ୍ଡରେ ଠାକୁର ଶ୍ରୀହରି
ଅଂସ କଳା ଘେନିଣ କଂସ ମହିରେଂ ଅବତରି ॥୧୧୫୦॥
ପୃଥ୍ୱି ଭାରା ନାସି ଦଇତ୍ୟ ନିସୋଧନ
ତେଣୁ ଦଇତାରି ଅଟେ ତୋହର ନାମ ॥୧୧୫୧॥
ସ୍ୟାମ କଳେବର ହରି ମୁକୁନ୍ଦ ମୁରାରି
ଆରତ ନାସନ ତୁ ଯେ ସଙ୍ଖଚକ୍ରଧାରି ॥୧୧୫୨॥
ଯାହାକୁ ସୁଦୟା କରୁ ସେ ହୃଦୟର
ତାହାକୁ ଠାବ ଦେଉ ପ୍ରଭୁ ଅଭୟ ପଞ୍ଜୀର[୨] ॥୧୧୫୩॥
ଭଗତମାସ୍ଳଳ ବାନା ତୁହି ସିନା ବହୁ
ଭିନ୍ନ ଭିନ୍ନ ରୁପ ତୁହି ସଂସାରେ ବୋଲାଉ ॥୧୧୫୪॥
ଦେବତାଙ୍କ ଛଳେଂ ତୁ ଯେ ସଂହାରୁ ଦଇତ୍ୟ
ତୋହର ସଞ୍ଝିଲା ସିନା ଯେ ତିନି ଜଗତ[୩] ॥୧୧୫୫॥
ହରିଣ ହରିଣ୍ୟାକ୍ଷ ବଜ୍ରନାଭି ବାଣାସୁର
ସଂଖା ଦୃମୁଖା ବଳି ବୈଲୋଚନ ବିର ॥୧୧୫୬॥
ତ୍ରିମୁଖ[୪] ତ୍ରିୟମ୍ବକ କଙ୍କାସୁର କୁମ୍ଭେକ
ସ୍ରବଣା ମହିସାସୁର ଜପା ମୁଢ଼ା ଦଇତ୍ୟ ॥୧୧୫୭॥
ସତ୍ୟ ଯୁଗେଂ ଥିଲେ ଯେ ଯେଡ଼େ ଯେଡ଼େ ଅସୁର
ଆମ୍ଭର ପାଇଂ ବଧ କଲୁ ଯେମାନଙ୍କୁ ଗଦାଧର ॥୧୧୫୮॥
ତ୍ରେତୟାରେଂ ରାବଣ କୁମ୍ଭକର୍ଣ୍ଣ ମେଘନାଦ
ଆବର ଦତ୍ୟ ଥିଲେ ବିସାସତେ ଖର୍ବ ॥୧୧୫୯॥
ଖର ଦୁସଣ ତାଡ଼କି ସୁବାହୁ ବିରାଧି
ସନ୍ଥଜନ ରକ୍ଷା ନିମନ୍ତେ ଯାଙ୍କୁ ରାମଚନ୍ଦ୍ର ବଧି ॥୧୧୬୦॥
ଯେବେ କଂସାସୁର ସେ ଜନ୍ମ ହୋଇଲା
ଉପଦର୍ପ ବହିଣ ଆମ୍ଭମାନଙ୍କୁ ଦଳିଲା ॥୧୧୬୧॥
ଉପାୟେ କରିଣ ତୁମ୍ଭେ ଯେହାକୁ ମାରିବ
ତେବେ ସେ ତିନିପୁର ଭାରା ଉସ୍ୱାସ ହୋଇବ ॥୧୧୬୨॥

୧ । ଖ ଓ ଗ ପୋଥି – ବେଦନା
୨ । ଖ ପୋଥି – ଯେ ବର
୩ । ଗ ପୋଥି – ତିନି ତ୍ରୟ ଲୋକ
୪ । ଖ ଓ ଗ ପୋଥି – ତ୍ରିପୁରା

ଯେତେ ବୋଲି ଦେବେ ପଡ଼ିଲେ ଗଡ଼ଘାଲି
ନିର୍ମାଖି ଜନପ୍ରାୟେ ପଡ଼ିଲେ ମହିଆଳି ॥୧୧୬୩॥
ତେବେଂ ଭଗବାନ ସମସ୍ୟା ନ ଦେଲେ
ଦେଖିଣ ବେଦବର ଦେବତାଙ୍କୁ ଚାହିଂଲେ ॥୧୧୬୪॥
ତୁମ୍ଭେ ସମସ୍ତେ ଏଥେଂ ନିବୃତେଂ ଏଠାରେ ଥାଅ ରହି
ବୋବାଳି ପାଡୁଅଛ ସୁଣନ୍ତା କେହି ନାହିଂ ॥୧୧୬୫॥
ଜାଣିଲୁଂ ଶ୍ରୀହରି ନିର୍ଦ୍ଦୟା ଆମ୍ଭଙ୍କୁ କଲେ
କଂସର ହସ୍ତରେ ଆମ୍ଭଙ୍କୁ ମରାଇଲେ ॥୧୧୬୬॥
ଶ୍ରୀହରି ଦୟାଥିଲେ ପ୍ରସନ୍ନ ହେବେ ମୋତେ
ନୋହିଲେଂ ବାହୁଡ଼ି ଏଥୁଂ ଯିବାକ ସମସ୍ତେଂ ॥୧୧୬୭॥
ଯେତେ ବୋଲି ବିଧାତା ଯେ କୁସସେଯ୍ୟା କରି
ହୃଦଗତେ ସୁମରିଲେ ପ୍ରସନ୍ନ ହୁଅ ହରି ॥୧୧୬୮॥
ଭୋ ନାଥ ଜଗବନ୍ଧୁ କୃପାଜଳ ନୟନ
କୃପାରୁ କୃପାଜଳ ହୋଅଇ ଉତପନ ॥୧୧୬୯॥
ସେହି ଜଳ ତିନି ଦଣ୍ଡରେ ବଢ଼ିଲାକ ଯାଇ
ସପ୍ତ ଦ୍ୱିପ ସପ୍ତ ସାଗର ଘୋଟଇଂ ॥୧୧୭୦॥
ସପ୍ତ ସ୍ୱର୍ଗ ସପ୍ତ ପାତାଳ ଯାଇ ନାସ
କେବଳ ବେନି ଜନେ ରହନ୍ତି ଅବସେସ ॥୧୧୭୧॥
ତାହାଙ୍କ ଠାରୁ ତିନି ଦେବତା ଉତପତି
ବିଷ୍ଣୁ ସଦାସିବ ମୁହିଂ ବେଦପତି ॥୧୧୭୨॥
ପିତାର ଆଜ୍ଞାରେଂ ମୁଂ ରଞ୍ଜିଲି ସଂସାର
ଯେହୁଂ ସେ ହୋଇଲା ଯାହାର ଭାଗର ॥୧୧୭୩॥
ଯହୁଂ ସେ ନବସୃଷ୍ଟି ସର୍ଜନା ସରିଲା
ଯୋଗ ଆରମ୍ଭିଣ ରହିଲେ ସିବ ଭୋଳା ॥୧୧୭୪॥
ଅନନ୍ତ ସଯ୍ୟା କରି ତୁମ୍ଭେ ଯେ ରହିଲ
ସଂସାର ଭଲମନ୍ଦ ମୋତେ ସମର୍ପିଲ ॥୧୧୭୫॥
ରାତ୍ର ଦିବସରେଂ ମୋତେ ଅପସର ନାହିଂ
ଯାହାକୁ ଯଉଂ କଥା ସେ କଥା କରଇ ॥୧୧୭୬॥
ଯାହାର ଦେହରେ ଦୁଖ ଜନମଇଂ
ସେହି ପୁଣି ମୋତେ ବହୁତ ଗାଳିଦେଇ ॥୧୧୭୭॥
ଯେତେ ଦୁଖରେ ମୁଂ ସାରୁଅଛି ଦିନ
ମୁହିଂ କିସ କହିବିଂ ତୁମ୍ଭେ ଜାଣୁଛ ଭଗବାନ ॥୧୧୭୮॥
କଂସାସୁର ଯେବେ ତ ଉପଦର୍ପ କଲା
ତାହାର ଭୟରେ ମୋର ସକଳ ପାସୋରଗଲା ॥୧୧୭୯॥
ଯେବେ ତୋର ସଞ୍ଝିଲା ସଂସାର ତୁ ସମ୍ଭାଳ
ନୋହିଲେ ବସୁମତି ପଡ଼ିବ ରାସାତଳ ॥୧୧୮୦॥

୧ । ଗ ପୋଥି – ନିଦ୍ରିତେ

ଯେମନ୍ତ ପ୍ରକାରେଂ ସେ ହୃଦରେ କଲେ ଚିନ୍ତା
ଧ୍ୟାଏ କରି ରହିଲେ ସେ ଜଗତଜନ ପିତା ॥୧୧୮୧॥
ଜଗବନ୍ଧୁ ନାଥ ହୃଦରେ ଦୟା କଲେ
କୋମଳ ଗଭିରେଂ ବଚନ ପ୍ରକାସିଲେ ॥୧୧୮୨॥
ତ୍ରେତୟା ଯୁଗରେ ଯେ ରାବଣ ଜାତ ହେଲା
ପାଦତଳେ ତୁମ୍ଭମାନଙ୍କୁ ଖଟାଇଲା ॥୧୧୮୩॥
ଯେହି ରୁପେ ଆସି ବୋବାଳି ପାଡ଼ିଲ
ଦସରଥ ଘରେ ମୋତେ ଜନ୍ମ କରାଇଲ ॥୧୧୮୪॥
ଭୋଗ ବୟସ କାଳେ ପେସିଲ ବନସ୍ତକୁ
ରାବଣର ଘରେ ବନ୍ଦି କଲ ସିତ୍ୟାକୁ ॥୧୧୮୫॥
ରକ୍ଷ ବାନର ଘେନି ବାନ୍ଧିଲି ସେତୁବନ୍ଧ
ରାବଣ ସଙ୍ଗତେ ବଢ଼ାଇଲିଂ ବାଦ ॥୧୧୮୬॥
ବହୁତ ଯୁଦ୍ଧ କରି ବଧିଲି ରାବଣ
ସିତ୍ୟାଙ୍କୁ ଘେନି ଅବିସେକ ହୋଇଲି ଅଯୋଧ୍ୟାରେ ପୁଣ ॥୧୧୮୭॥
ପୁଣ କୁଟ କରିଣ ଭାରିଯାକୁ ଛଡ଼ାଇଲ
ଖଳବଳ ଲଗାଇ ବୈକୁଣ୍ଠକୁ ଅଣାଇଲ ॥୧୧୮୮॥
ବ୍ରହ୍ମହତ୍ୟା ଦୋସ ପୁଣି ବାଛିଲ ମଘବାନ
ବସିବାକୁ ସଭାରେ ନ ଦେଲ ଆସନ ॥୧୧୮୯॥
ପ୍ରହରେ ଉଭା ହେଲିଂ କର୍ଣ୍ଣିଲା ସର୍ମଝାଳ
ପ୍ରବେସ ହୋଇଲିଂ ଆସି ସାହେର ଭିତର ॥୧୧୯୦॥
ବରୁଣ ବାପୁଡ଼ା ଦୟା ମୋତେ କଲା
ରହିବାକୁ ଆସ୍ତାନ ଖଣ୍ଡିଏ ଛାଡ଼ିଦେଲା ॥୧୧୯୧॥
ସକଳ ଭୋଗତ ଭୁଜୁଂଛୁ ବେଦବର
ଯେବେ କିଂପା ଆସି ଲୋଡୁଛ ସିନ୍ଧୁତିର ॥୧୧୯୨॥
ଯେବେ କି ଉପାୟେ ଭିଆଉଛୁ ତୁହି
ଯେଠାରୁ କି ଆମ୍ଭଙ୍କୁ ଦେବୁ ଘଉଡ଼ାଇ ॥୧୧୯୩॥
ଯେମନ୍ତ କହି ପ୍ରଭୁ ହୋଇଲେ ମଉନ
ସୁଣି ଉର୍ଦ୍ଧକୁ ଚାହିଂଲା ଚତୁର ବଦନ ॥୧୧୯୪॥
ଯେତେକ କହିଲେ ଯେ ଅନ୍ୟାୟେ ନୋହଇ
ସେହି ଦୋସୁ ଗଜିଂ ଯେ ହୋଇଲୁଂ ଗୋସାଇଂ ॥୧୧୯୫॥
ତୁମ୍ଭେ ଯେ ବୋଇଲ ତ୍ରେତୟାରେ ଦୁଖ ହୋଇଲା
ଯେବେ ବହୁତ ସୁଖ ଭୋଗଦେବିଂ[୧] ଭଲା ॥୧୧୯୬॥
ଯେକ ଭାରିଯା ଗୋଟେକ ଥିଲା ସେହି ଯୁଗେଂ
ଅଷ୍ଟ ଗୋଟି କନ୍ୟା ବିଭା କରାଇବିଂ ଯେବେଂ ॥୧୧୯୭॥
ସୋଳ ସହସ୍ର କନ୍ୟା ଅଷ୍ଟ ପାଟବଂସି
ଯେଥିରୁଂ ଅଧିକ ଯେ ସୋଳ ସହସ୍ର ଯେ ଗୋପି ॥୧୧୯୮॥

୧ । ଖ ଓ ଗ ପୋଥି – ସମର୍ପିବି

ନଳଣି ବନଜାଣି ବଂସ ବଢ଼ିବ ତୋହରି
ବେନିଯୁଗ ଭୋଗ ତୁ ଭୁଜିଂବୁ ଦେବହରି ॥୧୧୯୯॥
ସଂସାରେ ଯସ ଧର୍ମ ରହିବ ହାଦେ ତୋର
ଅନେକ ସୁଖ ଯେ ଭୁିଜଂବୁ ଏ ଯୁଗରଂ[୧] ॥୧୨୦୦॥
ବିଧାତା ବଚନେ ଯେ ବୋଲନ୍ତି ଚକ୍ରଧର
ହୋଇବି ଜାତ ମୁହିଂ ଦେବକି ଉଦର ॥୧୨୦୧॥
ସତ୍ୟ ମୁଂ ଯେବେ ମଞ୍ଚରେ ହେବି ଜନ୍ମ
ଦେବତାଙ୍କୁ ଘେନି ତୁମ୍ଭେ ଯାଅ ହେ ବହନ ॥୧୨୦୨॥
ଦେବକନ୍ୟା ରାଜକନ୍ୟା ଗୋପକନ୍ୟା ଘେନି
ଯେହା ଯେବେ ଯାଚିଲୁ ତୁହିଂ ସେ ବେଦମଣି ॥୧୨୦୩॥
ଯେମନ୍ତ କହି ହରି ହୋଇଲେ ମଉନ
ସନ୍ତୋସ ଚିତେ ଧାତା ଗମିଲେ ବହନ ॥୧୨୦୪॥
ସମସ୍ତ କହିଲେ ସେ ଦେବତାଙ୍କ ଠାର
ସୁଣସି ଭବାନି ଗୋ କହନ୍ତି ଦିଗାମ୍ବର ॥୧୨୦୫॥
ଆସନୁଂ ଉଠି ହରି ଦୁର୍ଗାଙ୍କୁ ଆଜ୍ଞାଦିଲେ
ମଞ୍ଚ ପୁରକଇ ମାଗୋ ଚଳସି ସିଘ୍ରେଂ ॥୧୨୦୬॥
ଦେବକି ଗର୍ଭରେ ଯେ ଅଛଇ ନନ୍ଦନ
ତାହାକୁ ଗର୍ଭରୁଂ ତୁ ହରି ନେବୁ ପୁଣ ॥୧୨୦୭॥
ବସୁଦେବ ଭାରିଯା ନାମ ତା ରୋହିଣି
ଗାଇ ରୁପେ ନନ୍ଦ ଗୋଗୋଷ୍ଟେ ରହିଅଛି ପୁଣି ॥୧୨୦୮॥
ତାହାର ଗର୍ଭରେ ନେଇ ଭରିବୁ ନନ୍ଦନ
ତୁହି ପୁଣି ଯସୋଦା ଗର୍ଭରେ ହେବୁ ଜନ୍ମ ॥୧୨୦୯॥
ମୋହର ଜନ୍ମକାଳେ ବସୁଦେବ ନେଇ
ମୋତେ ରଖି ତୋତେ ଆଣିବ ପାଲଟାଇ ॥୧୨୧୦॥
କଂସ କଚାଡ଼ନ୍ତେ ସୁନ୍ୟେ ଖେପି ଯିବୁ
ଅନେକ ରୁପେ ମଞ୍ଚରେଂ ପୁଜା ତୁ ପାଇବୁ ॥୧୨୧୧॥
ମଞ୍ଚପୁର ଜନେ କରିବେ ସେ ତୋତେ ପୁଜା
ଦଧି ଗୁଡ଼ ଛେନା ଛାଗଳ ପୋଡ଼ ବୋଦା ॥୧୨୧୨॥
ଶ୍ରୀହରି ବଚନେ ଚଳିଲେ ମହାମାଇ
କଂସ ବନ୍ଦି ଘରେ ପ୍ରବେସ ହେଲେ ଯାଇ ॥୧୨୧୩॥
ରାତ୍ରରେ ଦେବକି ଗର୍ଭରୁ ବାଳେକ ହରିନେଇ
ରୋହିଣି ଗର୍ଭରେ ସେ ଭରିଲାକ ନେଇ ॥୧୨୧୪॥
ଯସୋଦା ଗର୍ଭରେ ଦୁର୍ଗା ହୋଇଲେ ପ୍ରବେସ
ସେ ଦୁର୍ଗା ଚରଣେ ସରଣ ସାରୋଳା ଚଣ୍ଡି ଦାସ ॥୧୨୧୫॥
ଜୟତୁ ଦୁର୍ଗା ମାଗୋ ପାଳୁ ତୁ ସଂସାର
ପ୍ରାଣିମାନଙ୍କୁ ସାହା ହେଉ ତୁ ସର୍ବକାଳର ॥୧୨୧୬॥

୧ । ଖ ଓ ଗ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଯେଣୁ ସର୍ବଦା କାଳେ ପ୍ରାଣିଙ୍କି ସାହାହେଉ
ତେଣୁ ସର୍ବମଙ୍ଗଳା ନାମ ଗୋଟି ବହୁ ॥୧୨୧୭॥
ସର୍ବସୁଭ ଦାୟେନି ରୁପ ତୋ ପିଙ୍ଗଳାଖି
ଅସାହି ଜନମାନଙ୍କୁ ହେଉଥାଉ ସାକ୍ଷି ॥୧୨୧୮॥
ଲହ ଲହ ଜିହ୍ୱା ତୋ ଭୟାକାର ରୁପ
ଦୃଷ୍ଟକୁ ଭଇରୋବି ସନ୍ଥ ଜନଙ୍କର ମାତ ॥୧୨୧୯॥
ଡାକ ଡମ୍ବରୁ ଯେ ବାଜୁଥାଇ ପାସେଂ
ଚଉସଠି ଯୋଗ୍ନିଗଣ ଖଟିଥାନ୍ତି ନିତ୍ୟେଂ ସେ ॥୧୨୨୦॥
ମୁହିଂ ତୋହର ଚରଣେ କରୁଛି ଆରାଧନ
ସାହାସ୍ର ଲେଖିବି ମୁଂ ମୋତେ ହୋଇବୁ ପ୍ରସନ୍ନ ॥୧୨୨୧॥
ହରିବଂସ ପୁରାଣ ଯେ ଅପୁର୍ବ ଗ୍ରନ୍ଥସାର
ଯେହା ଲେଖିବାକୁ ମୁଂ କରଇ ବିଚାର ॥୧୨୨୨॥
ଯେଥକୁ ସାହା ମୋତେ ହୋଇବ ମହାମାଇ
ଯାହା କହିଦେବୁ ତାହା ପତ୍ରେ ଲେଖିବଇଂ ॥୧୨୨୩॥
ତୋହର ଚରଣେ ମୁଂ କରଇ ଦଇନି
ସରଣ ପସିଲା ସାରୋଳା ଦାସ ଶୁଦ୍ରମୁନି ॥୧୨୨୪॥
ଅଗସ୍ତି ମୁନିକିଂ ନୃପତି ପୁଛା କଲେଂ
ଶ୍ରୀହରି ଚରିତ ମୁନି କହ ମୋ ଆଗରେ ॥୧୨୨୫॥
ଦେବକି ଗର୍ଭେ କୃଷ୍ଣ ଜନ୍ମ ହେଲେ କି ନୋହିଲେ
କେତେ କାଳେ ପୁଣି କଂସକୁ ବଧ କଲେ ॥୧୨୨୬॥
ନୃପତିର ବଚନେ ବଦୟନ୍ତି ମହାମୁନି
ଶ୍ରୀହରି ଚରିତ ଯେହୁ ପବିତ୍ର ପୁଣ୍ୟଧୁନି ॥୧୨୨୭॥
ଯେବଣ ଜନ ଯେହା ଶ୍ରଦ୍ଧାରେ ସୁଣଇଂ
କୋଟିଏ ପୁରୁଷ ନିସ୍ତାରି ଶ୍ରୀହରି ଦାସ ହୋଇ ॥୧୨୨୮॥
ପାର୍ବତି ଆଗେଂ ଯାହା କହିଲେ ସଙ୍କର
ତାହା ତୋତେ କହିବା ସୁଣ ହେ ନୃପବର ॥୧୨୨୯॥
ଯହୁ ସେ ଦେବକି ଗର୍ଭରୁ ପୁତ୍ର ଗଲା
ହୃଦଗତେ ନାରି ଯେ ବହୁତ ଚିନ୍ତା କଲା ॥୧୨୩୦॥
ସମସ୍ତ ଜନ ସୁଣି କଲେ ହାହାକାର
ଗର୍ଭରୁ କେହୁ ହରି ନେଲା କୁମର ତାହାର ॥୧୨୩୧॥
ନିର୍ଦ୍ଦୟା କରି ଯହୁଂ କଂସ କଚାଡ଼ିଲା
ଡରେ ଗର୍ଭୁ ବାଳକ ବାହୁଡ଼ିଣ ଗଲା ॥୧୨୩୨॥
କେହୁ ବୋଲନ୍ତି ତାହା ନ କୁହ ତୁଣ୍ଡର
କର୍ଣ୍ଣେ ସୁଣିଲେ ପାତେକ ହୋଇବ ଆମ୍ଭର ॥୧୨୩୩॥
ଯେମନ୍ତ ବୋଲି ଯହୁଂ ବୋଇଲେ ନର ନାରି
ଦେବକିର କସଣ ଜାଣିଲେ ଦଇତାରି ॥୧୨୩୪॥
ଅନନ୍ତ ସଯ୍ୟାରୁ ଯେ ଉଠିଲେ ଭାବଗ୍ରାହି
କଂସର ବନ୍ଦିଘରେ ପ୍ରବେସ ହେଲେ ଯାଇ ॥୧୨୩୫॥
ବସୁଦେବ ବିର୍ଯ୍ୟେ ଦେବକି ଗର୍ଭେ ରହି
ସୁଣସି ପ୍ରିୟା ବୋଲି ବୋଲନ୍ତି ସୁଳସାଇଂ ॥୧୨୩୬॥
ନନ୍ଦର ଗୋଷ୍ଠରେ ଯେ ରୋହିଣି ଗାଇଥିଲା
କୁମର ଗୋଟିଯେ ସେହି ପ୍ରସବିଲା ॥୧୨୩୭॥
ତତୁଲ୍ୟ ନାମେ କରଣ ପରିଘ ନାମେ ଯୋଗ
କକଡ଼ା ମାସରୁଂ ଯେ ସତର[1] ଦିନ ଭୋଗ ॥୧୨୩୮॥
ସ୍ରବଣା ନାମେ ନକ୍ଷତ୍ର ପୌର୍ଣ୍ଣମିର ତିଥି
ତାର ଚନ୍ଦ୍ର ସୁଭ ବାର ଯେ ବୃହସ୍ପତି ॥୧୨୩୯॥
ସେହିଦିନେ ରୋହିଣି ପ୍ରସବିଲା କୁମର
ସିରରେ ସପ୍ତଫେଣି ରୁପ ସୁକ୍ଳାମ୍ବର ॥୧୨୪୦॥
ଅତ୍ୟନ୍ତ ସୁନ୍ଦର ସେ ଅନନ୍ତ ମହିଂମା
ତୁଲ୍ୟ ଯେ ନୋହଇ ରୁପ ଯେ ସଂସାରେ ଉପମା ॥୧୨୪୧॥
ଦେଖିଣ ନନ୍ଦ ସେ ଯେ ହୋଇଲା ହରସ
ସୁଣିସି ଓମା ବୋଲି ବୋଲନ୍ତି ମହେସ ॥୧୨୪୨॥

## ଶ୍ରୀକୃଷ୍ଣ ଜନ୍ମ

ଶ୍ରୀକୃଷ୍ଣ ନାଥ ଯେ ଦେବକି ଗର୍ଭେଂ ରହି
ଯେଥୁ ଅନ୍ୟନ୍ତରେ ଗୋ ଅଷ୍ଟମାସ ହୋଇ ॥୧୨୪୩॥
ଦେବକିର ଗର୍ଭକୁ ଲାଗିଲା ଯହୁଂ ଭାରି
ବୋଲଇ ଏହି ଗର୍ଭେ ଯେବେ ଶ୍ରୀହରି[2] ॥୧୨୪୪॥
ବୋଲଇ ଯେତେ ଗର୍ଭ ପ୍ରସବିଲିଂ ମୁହିଂ
କୋଳରେ ଧରିବାକୁ ଗୋଟିଯେ ଆଉ ନାହିଂ ॥୧୨୪୫॥
ବିଧାତା ମୋର ସଙ୍ଗେ ଲଗାଇଛି ହଟ
ପୁତ୍ରଙ୍କର ମରଣ ମୁଂ ଦେଖୁଛି ନିକଟ ॥୧୨୪୬॥
ଭୋ ଧର୍ମ ଦେବତା ମୋତେ ହୁଅ ତୁହି ସାହି
ଯେମନ୍ତେ ଯେ ଗର୍ଭ ମୋର ସୁଫଳେ ବ୍ରତଇ ॥୧୨୪୭॥
ଯେମନ୍ତେ ଦେବକି ଯେ ନିତି ଭାଳୁଥାଇ
ଉଠନ୍ତେ ବସନ୍ତେ ଯେ ସ୍ରମେ ମାରେ ହାଇ ॥୧୨୪୮॥
ଯେସନେ ଚଢ଼ାଇ ପଞ୍ଜରିରେଂ ଥାଇ
ସେହି ରୁପେ ବନ୍ଦିରେ ବସୁଦେବ ଦେବକଇ ॥୧୨୪୯॥
ସୁଣିସି ପାର୍ବତି ବୋଲି ବୋଲନ୍ତି ଦିଗାମ୍ବର
ବହୁତ ଉପଦର୍ପ କଲାକ କଂସାସୁର ॥୧୨୫୦॥

---

୧ । ଖ ଓ ଗ ପୋଥି – ସପ୍ତ
୨ । ଖ ଓ ଗ ପୋଥି – ଆତଙ୍ଗେ ଭାଳୁଥାଇ ବସୁଦେବର ନାରୀ

ଦେବତାମାନେ ଯହୁଂ ସହି ନ ପାରିଲେ
ପିତାମହ ଅଗ୍ରତେ ଯାଇ ଜଣାଇଲେ ॥୧୨୫୧॥
ଭୋ ବିଧାତା ଆଉ କି ବୁଦ୍ଧି କରିବା
କଂସର ଅର୍ଦ୍ଦଳି ଆଉ ସହି ନ ପାରିବା ॥୧୨୫୨॥
କେତେକାଳେଂ କଷ୍ଟ ଯିବଟି ଆମ୍ଭର
ଦେବତାଙ୍କ ବଚନେ ବୋଇଲେ ବେଦବର ॥୧୨୫୩॥
ଅଳପ ଦିନେ କଂସ ଲଭିବ ମରଣ
ଦେବକି ଗର୍ଭେ ଜାତ ହୋଇବେ ନାରାୟଣ ॥୧୨୫୪॥
ଶ୍ରୀହରି ଅବତାର ଦେବକି ଗର୍ଭେ ରହିଂ
ନାସିବେ ଦୃଷ୍ଟ ଦଇତ ଉସ୍ୱାସିବେ ମହି ॥୧୨୫୫॥
ସୁଣିଣ ଦେବତାୟେ ଆନନ୍ଦ ହୋଇଲେ
ହୃଦରେ ଗୋବିନ୍ଦଙ୍କୁ ବହୁତ ସ୍ତୁତି କଲେ ॥୧୨୫୬॥
ସୁଣସି ଗିରିଜା ବୋଲି ବୋଲନ୍ତି ତ୍ରିଲୋଚନ
ଦେବକିର ଦସମାସ ହୋଇଲା ସମ୍ପୂର୍ଣ୍ଣ ॥୧୨୫୭॥
ଶ୍ରୀକୃଷ୍ଣ ନାଥ ଜନ୍ମିବେ ଦେବତାୟେ ହୋଇଲେ ଆନନ୍ଦ
ବହଇ ମଳୟ ପବନ ଆଚ୍ଛାଦିଲା ମେଘବୃନ୍ଦ ॥୧୨୫୮॥
ଦେବକିର ଅଳସେଂ ଯେ ବଥାଇଲା ପେଟ
ବିକଳେ ହାଇମାରି ହୋଅଇ ଛଟପଟ ॥୧୨୫୯॥
ବସୁଦେବଙ୍କୁ ଚାହିଂ ଦେବକି ବୋଲଇ
ବଥାଇଲା ପେଟ ମୋର କି ବୁଦ୍ଧି କରିବଇ ॥୧୨୬୦॥
ହସ୍ତପଦ ଅଙ୍ଗରେ ଝଞ୍ଜିଂର ଲାଗିଛଇ
ନ ପାରେ ଉଠି ବସି ଦେହ ନ ଚଳଇ ॥୧୨୬୧॥
ବସୁଦେବ ବୋଇଲେ ଗୋ କେହି ନାହିଂ ସାହି
ହରି ନାମେ ଆସ୍ରେ କର ଦୃଗତି ହେବ ଦହି[2] ॥୧୨୬୨॥
ଯହୁଂ ସେ ବସୁଦେବ ସୁମରିଲା ହରି
ଦେବକିର କଷ୍ଟ ସେ ସକଳ ହେଲା ପାରି ॥୧୨୬୩॥
ହରିନାମ ସୁମର ମାତ୍ରେ ହୋଇବ ପାପ ଧ୍ୱଂସ
ହରିପାଦେଂ ସରଣ ସାରୋଳା ଚଣ୍ଡି ଦାସ ॥୧୨୬୪॥

୧ । ଗ ପୋଥି – ଦେବକୀ ଗର୍ଭରେ ଅଛନ୍ତି ଦେବ ରହି
୨ । ଖ ପୋଥି – ବନ୍ଦୀ କଲା ପକ୍ଷୀ ପ୍ରାୟେ ଗୋ ଆମ୍ଭେ ଅଛୁ ରହି
୨ । ଖ ପୋଥିରେ ଏହା ପରେ ଅଧିକ ୬ଧାଡ଼ି ରହିଛି
ହରି ହରି ବୋଲିଣ ହୃଦ ଗଟେଂ ଧର
ହରି ସେ ଯେ କସଣୁଂ କରିବେ ଉଦ୍ଧାର
ହରିବିନୁ କେହି ନାହିଂ ଗୋ ରଖନ୍ତା
ହରି ସେ ଆମ୍ଭର ଗୁରୁ ପିତାମାତା
ହରିନାମ ସୁମର କରିବେ ଆମ୍ଭୁଂ ତ୍ରାହି
ହରିନାମ ସୁମର ଦୃଗତି ହେବ ନାହିଂ

ସୁଣ ହୋ ସ୍ୱାମି ବୋଲି ବୋଲନ୍ତି ଦେବି ଓମା
ଦେବକି ବୈକୁଲ୍ୟ ଦେଖି କଷ୍ଟ ମୋର ଆତ୍ମା ॥୧୨୬୫॥
ଯେତେବେଳେ ଷ୍ଟିରିଙ୍କର ପେଟ ସେ ବଥାଇ
ଅର୍ଣ୍ଣ ଜଳ ଅମୃତ ବିସ ସେ ହୁଅଇ ॥୧୨୬୬॥
ବନ୍ଦି ଘରେ ଦେବକି ପେଟ ସେ ବଥାଇଲା
କେହି ନାହିଂ କେମନ୍ତେ କୁମର ପ୍ରସବିଲା ॥୧୨୬୭॥
ଯେ କଥା ମୋର ଆଗେଂ କହହେ ସୁଳହସ୍ତ
ସୁଣଗୋ ଓମା ବୋଲି ବୋଲନ୍ତି ବିସ୍ୱନାଥ ॥୧୨୬୮॥
ବାଣିଜ ନାମେ କରଣ ବୈଧୃତି ନାମେ ଯୋଗ
ସିଂଘ ସଙ୍କରାନ୍ତି କି ପଞ୍ଚିସ ଦିନ ଭୋଗ ॥୧୨୬୯॥
ରୋହଣି ନାମେ ନକ୍ଷତ୍ର ଅଷ୍ଟମିର ତିଥି
ତାର ଚନ୍ଦ୍ର ସୁଭ ବାର ଅଟଇ ବୃହସ୍ପତି ॥୧୨୭୦॥
ରଜନି ହୋଇଲା ଯେ ଦ୍ୱିତିୟ ପ୍ରହର
ପୁର୍ବଦିଗେ ଉଦୟ ଯେ ହୋଇଲେ ସସିଧର ॥୧୨୭୧॥
ଦେବକି ବସୁଦେବ ବୋଲନ୍ତି ହରିହରି
ତକ୍ଷଣେ କୃଷ୍ଣନାଥ ଗର୍ଭରୁ ଉତରି[1] ॥୧୨୭୨॥
ସ୍ୟାମ କଳେବର ଅଭିନବ କାମ
ଦିସୁଛି ଦେହ ଯାକ ସଙ୍ଖ ଚକ୍ର ଚିହ୍ନ ॥୧୨୭୩॥
କଟିରେ ପିତ ବସ୍ତ୍ର କର୍ଣ୍ଣରେ କୁଣ୍ଡଳ ବିରାଜେ[2]
ପୟରେ ନୁପୁର ଯେ ରୁଣୁ ଝୁଣୁ ବାଜେ ॥୧୨୭୪॥
ହୃଦରେ ରତ୍ନପଦୁକ ଯେ କଟିରେ ସୁନାସୁତା
କଣ୍ଠେ କଉସ୍ତୁଭ ମଣି ପାଟ ସଙ୍ଗେ[3] ଗୁନ୍ଥା ॥୧୨୭୫॥
ରସାଣିଲା ପ୍ରାଏ ଅଙ୍ଗୁଷ୍ଠି[4] ମୁକୁତା ପନ୍ତି ଲଖ
ଓଷ୍ଟ ବିମ୍ବଫଳ ନିଳ ମେଘ ପ୍ରାୟେ ରୁପ ॥୧୨୭୬॥
ଆଜାନୁ ଭୁଜ ଲମ୍ବିତ ମୃଣାଳ ପ୍ରାଏ ଜାଣି[5]
ବିକଚ ସେ ତ ଡୋଳା ପଦ୍ମ କେସ ପିଞ୍ଛା ପୁଣି ॥୧୨୭୭॥
ଚଉଦ ବ୍ରହ୍ମାଣ୍ଡରେ ଯେ ପ୍ରଭୁ ଠାକୁର
ସେ ରୁପ ବର୍ଣ୍ଣିବ କିସ ମାନବ ହୋଇ ଛାର ॥୧୨୭୮॥
ବସୁଦେବ ଶ୍ରୀକୃଷ୍ଣ ରୁପକୁ ଅନାଇଲେ
ଅପୁର୍ବ ଯୋଗେସ୍ୱର ରୁପକୁ ଦେଖିଲେ ॥୧୨୭୯॥

୧ । ଖ ଓ ଗ ପୋଥି – ଅବତରି
୨ । ଖ ଓ ଗ ପୋଥି – କିରିଟି କୁଣ୍ଡଳ କଟିରେଣେ ପୀତବସ୍ତ୍ର ଦେହ ଯାକ ସାଜେ
୩ । ଖ ଓ ଗ ପୋଥି – ମାଣିକ୍ୟ ହାର ଗୁନ୍ଥା
୪ । ଖ ପୋଥି – ଶ୍ୱେତ ପଦ୍ମ ଅଙ୍ଗୁଳି
୪ । ଗ ପୋଥି – ଛଣ ପୁଷ୍ପ ଅଙ୍ଗୁଷ୍ଠି
୫ । ଖ ଓ ଗ ପୋଥି – ଆଜାନୁ ଚାରି ଭୁଜ ମୃଣାଳ ସୋଭା ଜିଣି

ଚକିତ ଚିତେଂ ବସୁଦେବ ବିଚାରଇ
ଅନାଦି ମାଧବ ସେ ମୋ ଘରେଂ ଜାତ ହୋଇ ॥୧୨୮୦॥
ଯେତେ ବୋଲି ବସୁଦେବ ଗଡ଼ଘାଲି ସୋଇ
ଭୋ କୃଷ୍ଣନାଥ ମୋତେ ତୁମ୍ଭେ କର ତ୍ରାହି ॥୧୨୮୧॥
ଦେଖିଣ ଦେବକି ଯେ ପାଇଲା ଚେତନ[1]
ଜ୍ୟୋତି ବିରାଜଇ ଯେତ ପୁରୁଷ ଉତ୍ତମ[2] ॥୧୨୮୨॥
ବିଚାରେ ଯାହାକୁ ଯୋଗିଜନେ ଚିନ୍ତା କରିଥାନ୍ତି
ସେହି ତ ମୋହାର କୁଳେଂ ହୋଇଲେ ଉତପତି ॥୧୨୮୩॥
ଯୋଡ଼ିଲା ବେନିକର ଭଣିଲା ସ୍ତୁତି ବାଚ
ଜୟତୁ ଜଗନ୍ନାଥ ଜଗତ ଜନ ତାତ ॥୧୨୮୪॥
ଯୋଗିଜନ ସାଧେକ ତାରେକ[3] ସନ୍ଥଜନ
ଉସ୍ୱାସୁ ମହିଭାରା ଦୃଷ୍ଟଙ୍କୁ ନିସୋଧନ ॥୧୨୮୫॥
କରୁଣା ସାଗର ଭକ୍ତ ଜନ ଭାବଗ୍ରାହି
ଯାହାକୁ ଅନୁଗ୍ରହ କରୁ ଦୁଖ ତା ନଥାଇ ॥୧୨୮୬॥
ଅଗତି କି ଗତି ସରଣ ସୋଦର
ମୁହିଂ ଦୁଖି ଜନ ମୋତେ କର ପ୍ରତିକାର ॥୧୨୮୭॥
ଭାଇ କଂସାସୁର ଅନ୍ୟାୟ ବିଚାରିଲା
ବନ୍ଦିଘରେଂ ରଖିଣ ପାହାରି ଜଣାଇଲା ॥୧୨୮୮॥
ଦେଖ ହସ୍ତେ ଗୋଡ଼େ ସାଙ୍କୁଳି ଲାଗିଅଛି
ନ ପାରଇ ଅଳି ଚଳି ଯେକଠାବେ ବସିଅଛି ॥୧୨୮୯॥
ଛଡ଼ ଗର୍ଭ ନନ୍ଦନ କଂସ କଚାଡ଼ିଲା
ସପତମ ଗର୍ଭ ଅଦଭୁତେ ଗଲା ॥୧୨୯୦॥
ଅଷ୍ଟମ ଗର୍ଭେଂ ତୁ ହୋଇଲୁ ଅବତାର
ଯେହିକ୍ଷଣି ଜାଣିଲେଂ ତୋତେ ମାରିବ କଂସାସୁର ॥୧୨୯୧॥
ମୋ ଛାର ପାମରକୁ ତୁ ହୋଇଲୁ ପ୍ରସନ୍ନ
ମୁହିଂ ଦେଖୁ ଦେଖୁ ତୁ ହୋଇବୁ ନିଧନ ॥୧୨୯୨॥
ତୁମ୍ଭ ଦେହ ଗୋଟି ତୁମ୍ଭେ ରଖ ଦେବହରି
ଯେମନ୍ତେ କଂସ ଦୁଷ୍ଟ ନ ପାରେ ତୁମ୍ଭକୁ ମାରି ॥୧୨୯୩॥
ନୟନରୁ ନିର ସେ ବହଇ ଝରଝର
ସୁଣସି ଓମା ବୋଲି ବୋଲନ୍ତି ଦିଗାମ୍ବର ॥୧୨୯୪॥

୧ । ଖ ଓ ଗ ପୋଥି - ଦେବକୀ ଦେଖିଣ ହୋଇଲା ସଚେତ
୨ । ଖ ପୋଥି - ଜ୍ୟୋତି ବିରାଜଇ ଯେତ କୋଟିଏ ଆଦିତ୍ୟ
୩ । ଖ ପୋଥି - ନିସ୍ତାରଣ ପାଳନ

## କୃଷ୍ଣଙ୍କୁ ଘେନି ବସୁଦେବର ଗୋପପୁର ଗମନ, ଉଗ୍ରସେନ ସଙ୍ଗେ ଭେଟ ଓ ନବଜାତ କନ୍ୟାକୁ ଧରି ମଥୁରା ପ୍ରତ୍ୟାବର୍ତ୍ତନ

ମାତା ପିତାଙ୍କର ଯହୁଂ ଦେଖିଲେ ଭଗତି
ମାୟା ଫାସରେ ତାଙ୍କୁ ମୋହିଲେ ଦାସରଥି ॥୧୨୯୫॥
ବଦୟନ୍ତି ଦଇତାରି ସୁଣଗୋ ଜନନି
ତୁମ୍ଭ ଲାଗି ଜନମ ମୁଂ ହୋଇଲି ମେଦନି ॥୧୨୯୬॥
ନାସିବି ଦୃଷ୍ଟ ଜନ ଖଣ୍ଡିବି ମହିଭାର
ତୁମ୍ଭର ଦୁଃଖ ହରିବିଂ ବଢ଼ିବିଂ ଗୋପପୁର ॥୧୨୯୭॥
ଚାଲ ପିତା ଯେବେଂ ବିଳମ୍ବ ନକର
ମୋତେ ଛାଡ଼ି ଆସ ନନ୍ଦ ଗୋପାଳର ଘର ॥୧୨୯୮॥
ଯେତେ ବୋଲି ସମାସ୍ୟା ଦିଲେ ବନମାଳି
ବସୁଦେବ ଗୋଡ଼ରୁ ସେ ଫିଟିଲା ସାଙ୍କୁଳି ॥୧୨୯୯॥
ପାହାରିମାନେ ସବୁ ନିଦ୍ରାରେ ଥିଲେ ସୋଇ
ଫିଟିଲା କପାଟ ଦ୍ୱାର ମେଲା ହୋଇ ॥୧୩୦୦॥
ଆଛାଦିଣ ମେଘ ବରସନ୍ତି ଜଳ
ମନ୍ଦ ମନ୍ଦ ହୋଇ ଯେ ବହଇ ସମିର ॥୧୩୦୧॥
ଜୁଳୁଜୁଳା ପୋକ ସେ ଯେ କଢ଼ାଇଲେ ବାଟ
ପୁତ୍ରକୁ ଘେନି ଚଳଇ ସେ ସୁଦେବର ଚାଟ ॥୧୩୦୨॥
ଥୋକାଯେକ ଦୁରପଥ ତହୁଂ ବହିଯାନ୍ତେ
ଚଳନ୍ତେଂ ଉଗ୍ରସେନ ଦେଖିଲାକ ପଥେଂ ॥୧୩୦୩॥
ଦନ୍ତ ରଟମଟ ମୁଖେଂ କରେ ତମ
ଯେସନେ ମାନବକୁ ଆକ୍ରୋସଇ ଯମ ॥୧୩୦୪॥
ବୋଲଇ ଉଗ୍ରସେନ ଶୁଣରେ ବସୁଦେବ
ନିସାକାଳେଂ କିପାଂ ଚଳୁ ହୋଇଣ ଉଦବେଗ ॥୧୩୦୫॥
ବସୁଦେବ ବୋଇଲା ବାଭିଯେ ଚହଳ ନକର
ପୁତ୍ରକୁ ଘେନି ମୁହିଂ ଯାଉଅଛି ଗୋପପୁର ॥୧୩୦୬॥
ଛଡ଼ ଗୋଟି ପୁତ୍ର ମୋର କଂସ ନାସ କଲା
ମୋତେ ପୁତ୍ର କଷ୍ଟ ତୁମ୍ଭକୁ କି ନୋହିଲା ॥୧୩୦୭॥
ମାତୁଳ ଗୁରୁ ତୁମ୍ଭେ ଅଟଯେ କୁମରର
ଯେହାର ହାନି ଲାଭ ଲାଗଇ ତୁମ୍ଭ ଠାର ॥୧୩୦୮॥
କହି ବସୁଦେବ ହୃଦଗତେଂ ସୁମରେ ହରି ହରି
ପିତାର ବିକଳ ଜାଣିଲେ ଦଇତାରି ॥୧୩୦୯॥

୧ । ଖ ପୋଥି - ଜୁଳୁଥିଲା
୧ । ଗ ପୋଥି - ଫେରନ୍ତେ

ବଦୟନ୍ତି ବାସୁଦେବ ସୁଣ ହେ ଉଗ୍ରସେନ
ମୁହିଂ ସେ ଭାବଗ୍ରାହି ହୋଇଛି ଉତପନ ॥୧୩୧୦॥
ନାସିବିଂ କଂସ କେସି ଖଣ୍ଡିବିଂ ମୁହିଂ ଭାର
ତୋତେ ମଥୁରାରେ କରିବି ନୃପବର ॥୧୩୧୧॥
କହୁ କହୁ ସ୍ୱର୍ଗରୁ ପଡ଼ିଲା ଦେବବସ୍ତ୍ର
ଉଗ୍ରସେନ ସିରେ ବାନ୍ଧିଲେ ଶ୍ରୀବସ୍ତ୍ର ॥୧୩୧୨॥
ହରି ହରି ବୋଲି ନମିଲା ଉଗ୍ରସେନ
ସେଠାରୁ ବସୁଦେବ କଲାକ ଗମନ ॥୧୩୧୩॥
ଯମୁନା ପାରି ହୋଇ ଗୋପରେ ମିଳିଲା
କାହାଘରେ ବାଳେକ ଜନ୍ମିଛି ଖୋଜିଲା ॥୧୩୧୪॥
ନନ୍ଦ ବୋଲି ଗଉଡ଼େକ ଗ୍ରାମର ବାହାରେଂ
କରିଅଛି ଘର ସ୍ମସାନ ଭୁମିରେ ॥୧୩୧୫॥
ଲତାଙ୍କ ମଧ୍ୟରେ ଘର କରି ଅଛି ରହି
ବସୁଦେବ ତାହା କଳି ନ ପାରଇ ॥୧୩୧୬॥
କେହୁ ଗୃହ ଅଟଇ କେହୁ ତରୁବର
ସୁଣସି ଗଉରି ବୋଲି ବୋଲନ୍ତି ସଙ୍କର ॥୧୩୧୭॥
ସେହି ରାତ୍ରେ ଯସୋଦା ପ୍ରସବି ଅଛଇ
ଦୁହିତା ଭୁମିରେ ପଡ଼ି ବୋବାଳି ପାଡ଼ଇ ॥୧୩୧୮॥
ନିଦ୍ରାରେ ଅଚେତନ ହୋଇଛି ଗୋପାଳୁଣି
ନନ୍ଦ ମହାକୁଡ଼ ସେ ଯାଇଛି ଲୋକ ଆଣି ॥୧୩୧୯॥
ସେହି ସମୟରେ ବସୁଦେବ ଯେ ମିଳିଲା
ଭାଙ୍ଗି ଦୁଆର ଖଣ୍ଡ ଫିଙ୍ଗିଣ ପକାଇଲା ॥୧୩୨୦॥
କୃଷ୍ଣଙ୍କୁ ସୁଆଇ ଦୁହିତା କୋଳେଂ ଘେନି
ବନ୍ଦିଘରେ ବସୁଦେବ ମିଳିଲାକ ପୁଣି ॥୧୩୨୧॥
ଦେବକି କୋଳରେ ଦୁହିତା ଦିଲା ନେଇ
କୁଆଁ କୁଆଁ ରାବ ଦେଲା ବାଳେକି ଯେ ତହିଂ[୧] ॥୧୩୨୨॥
ପାହାରି କହିଲେ କଂସ ଆଗେ ଯାଇ
ସୁଣି କୋପଭର ହେଲା ଦୃମିଳା ତନଇ[୨] ॥୧୩୨୩॥
କୋପଭରେ କଂସାସୁର ମିଳିଲା ବନ୍ଦିଘର
ବାଳକି ହିଞ୍ଚୁଡ଼ି ଫିଙ୍ଗି ଦେଲାକ ଗଗନର[୩] ॥୧୩୨୪॥
ଜଗତତାରେଣି ଦେବି ସେ ଯେ ଅଟଇ
କଂସର ହସ୍ତରେ ସେହି କି ନାସଯାଇ ॥୧୩୨୫॥
ଡାକ ଦିଲେ ଦେବି କଂସ ତୁହି ହୋଇଲୁକି ବାଇ
ତୋହାର ବଇରି ଜନ୍ମ ହୋଇଲାଣି ମହି ॥୧୩୨୬॥

୧ । ଗ ପୋଥିରେ ଏହି ଧାଡ଼ି ନାହିଁ
୨ । ଗ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ପୋଥିରେ ତଳ ଦୁଇଧାଡ଼ି ନାହିଁ

କିପାଇଂ ଛଡ଼ ପୁତ୍ର ମାଇଲୁ ଯେହାର
ଅଧର୍ମ ଆଚରିଲୁ ମରିବୁ କଂସାସୁର ॥୧୩୨୭॥
ଦେବିଙ୍କର ବଚନେ ବିରସ ମନ ହୋଇ
ଦେବକି ବସୁଦେବକୁ ବନ୍ଧନ ଫେଡ଼ି ଦେଇ ॥୧୩୨୮॥

## ଗୋପପୁରରେ ବିଶ୍ୱକର୍ମାଙ୍କଦ୍ୱାରା ନନ୍ଦଙ୍କର ନୂତନ ପୁର ନିର୍ମାଣ

ପାର୍ବତି ପୁଚ୍ଛା କଲେ ସୁଣ ହେ ସଦାନନ୍ଦ
ନନ୍ଦଘରେ ବସୁଦେବ ଛାଡ଼ି ଅଇଲା ଗୋବିନ୍ଦ ॥୧୩୨୯॥
ନନ୍ଦ ଯସୋଦା ତାଙ୍କୁ କେତେବେଳେ ଦେଖିଲେ
ଯେ କଥା ପ୍ରାଣନାଥ କହ ମୋର ଆଗେଂ ॥୧୩୩୦॥
କହନ୍ତି ସଦାସିବ ସୁଣଗୋ ପାର୍ବତି
ବୈବସୁତ ଆଗେ ଯାହା କହିଲେ ଅଗସ୍ତି ॥୧୩୩୧॥
ତାହା ଆମ୍ଭେ କହିବା ସୁଣ ଯେକଚିତ୍ତେଂ
ଯେଉଂ ସାହାସ୍ର ସୁଣିଲେ ପାପ ନ ରହଇ ଗାତ୍ରେଂ[୧] ॥୧୩୩୨॥
ନନ୍ଦଘରେ ଉତାନେ ସୋଇଅଛନ୍ତି ଶ୍ରୀପତି[୨]
ଦେଖିଲେ ଛାଉଣିରେ ନକ୍ଷତ୍ରମାନ ଦିଶୁଅଛି ॥୧୩୩୩॥
ଯେବଣ ଗୃହ କରିଅଛି ନନ୍ଦ ମହାକୁଡ଼
ପୁରୁଣା ସ୍ତମ୍ଭରେ ଯେ ରହିଅଛି ଭଙ୍ଗାଚାଳ ॥୧୩୩୪॥
ରୁଅ ପାଞ୍ଚଖଣ୍ଡି ବତା ସାତଗୋଟି
ଛଉଣି ବାନ୍ଧିଲେ ହୋଇବ ଯେକ ଗୋଛିଟି ॥୧୩୩୫॥
ଘରଭୁମି ଖାଲ ଟିକର ଅଛି ହୋଇ
ଗୃହର ସଂଖାଳି ଯେକା ପସରା କୁଣ୍ଡୋଇ ॥୧୩୩୬॥
କହନ୍ତି ତ୍ରିଲୋଚନ ସୁଣଗୋ ଗଉରି
ଯେମନ୍ତ ଘର ଯହୁଂ ଦେଖିଲେ ଦେବହରି ॥୧୩୩୭॥
ବିଶ୍ୱକର୍ମା ରାଇ ଆଜ୍ଞା ଦିଲେ ଭଗବାନ
ଯେହିକ୍ଷଣି ପୁର ଗୋଟି କରହୋ ନିର୍ମାଣ ॥୧୩୩୮॥
ଶ୍ରୀହରି ଆଜ୍ଞାପାଇ ଲାଗିଲେ ବିନ୍ଧାଣି
ଅଷ୍ଟରତ୍ନେ ପୁର ଗୋଟିଯେ ନିର୍ମାଣି ॥୧୩୩୯॥
ରୁପାର କାନ୍ଥମାନ ହିରଣ୍ୟର ସେଣି
କୁରୁବିନ୍ଦ ରୁଅ ତେଜପତ୍ର ଛାଉଣି ॥୧୩୪୦॥
ସୁବର୍ଣ୍ଣର ଉରା[୩] ପୋୟେଳାର ଗୁରୁଜ
ମାଣିକ୍ୟର କଳାକାଣ୍ଡ ମୁକୁତାର ସ୍ତମ୍ଭ ॥୧୩୪୧॥

୧ । ଖ ଓ ଗ – ହୃଦଗତେ
୨ । ଖ ଓ ଗ – ଶିରିବଛି
୩ । ଖ ପୋଥି – କଣୟର ଚଉରା

ସୁବର୍ଣ୍ଣର ଟେରା ସ୍ଫଟିକର ବତା
ମାଣିକ୍ୟ ଥୋପି ଥୋପି ଗଣ୍ଠି ପାଟସୁତା ॥୧୩୪୨॥
କାନ୍ଥ ପରେ ବସିଅଛି ହିଙ୍ଗୁଳର ପଟା
ତହିଂପରେ ବସିଅଛି ଗେରୁ ଟୋପା ଟୋପା ॥୧୩୪୩॥
ଗୁରୁଜ ଉପରେ ବସିଛି କାଚର[1] ଝାଳ
ଝାଳ ଉପରେ ସେ ଝଟକେ ବିରୋଳ[2] ॥୧୩୪୪॥
ତମ୍ବାର ପାଟିଆରେ ହିରାର ପାଣିପାଟି
ଚଉପାସେ ବସିଅଛି ଜଡ଼ାଉର ଖୁଣ୍ଟି ॥୧୩୪୫॥
ତହିଂ ଆଉଜିଛି କଣୟ ପାଟିଆ
ଅଗର ଟୋପି ଟୋପି ବସିଅଛି ନୁଆ ॥୧୩୪୬॥
କେଉଂଠାରେ କମଳ ବନ ଅଛି ଫୋଟି
ତହିଂରେ ଅଷ୍ଟରତ୍ନ ଅଛି ଘୋଟି ॥୧୩୪୭॥
ତହିଂପରେ କଳା ଭ୍ରମର ରାଉ ରାଉ
ପୁଷ୍ପଲିଙ୍ଗ କେସର ଦିସେ ଦାଉ ଦାଉ ॥୧୩୪୮॥
ପଦ୍ମବନେ ମାଣିକନାଗ[3] ଫୁ ଫୁ କାର କରି
ସତେକ ମଭୁତେକ ଫେଣାଛନ୍ତି ଧରି ॥୧୩୪୯॥
କେଉଂଠାରେ ଗଙ୍ଗା ଯମୁନା ସରସ୍ୱତି
ଯେକଠାରୁଂ ବାହାରି ତିନିଧାର ହୋଇଯାନ୍ତି ॥୧୩୫୦॥
କେଉଂଠାରେ ଅଛି ଗୋଲେକ ବୃନ୍ଦାବନ
ରାଧିକା ସଙ୍ଗତେ ମାଧବ କରନ୍ତି ରମଣ ॥୧୩୫୧॥
କାହିଂ ରୁଦ୍ରଗଣ ସେ ସଙ୍କର ପାର୍ବତି
କାହିଂ ମୁନି ଜନେ ତପ ଯେ କରୁଛନ୍ତି ॥୧୩୫୨॥
କାହିଂ ବୈଷ୍ଣବେ କରନ୍ତି ସଂକିର୍ତ୍ତନ
ରାହାସ ଦେଖୁଛନ୍ତି ବସିଣ ସାଧୁଜନ ॥୧୩୫୩॥
କାହିଂ ନିର୍ବାଣନ୍ତି ଯେ ସୁବର୍ଣ୍ଣ ପ୍ରତିମା
ଅପୁର୍ବ ରୁପକୁ କି ଦେବି ଉପମା ॥୧୩୫୪॥
ଗୁରୁଜ ଚୁଳିରେ[4] ଯେ ସୁଧର୍ମାର ସଭା
ସୁରପତି ସହିତେଂ ଯେ ତେତିସ କୋଟି ଦେବା ॥୧୩୫୫॥
ଗନ୍ଧର୍ବ ସହିତେଂ ଅଛନ୍ତି ଅପକ୍ଷରି
ହସନ୍ତି ନ କହନ୍ତି ଆଖି ଯେ ଠରାଠରି ॥୧୩୫୬॥
ଦେବଲୋକ ବ୍ରହ୍ମଲୋକ ଗୋଲକ ଅପକ୍ଷରା
ଭାନୁସସି ପବନ ସଙ୍ଗତେ ଅଛନ୍ତି ତାରା ॥୧୩୫୭॥

୧ । ଖ ପୋଥି – ମୁକୁତାର
୨ । ଖ ଓ ଗ ପୋଥି – ଝାଳ ପରେ ଦିଶୁଅଛି ଝଟକ ତରଳ
୩ । ଖ ପୋଥି – କାଳୀନାଗ
୪ । ଖ ପୋଥି – ଦୋଳିରେ

କେହୁ ସ୍ତିରି ସ୍ୱାମି ଚରଣ ଚାପଇ
କେହୁ ପତ୍ନି ମୁଖ ଚାହିଂ ହସୁଥାଇ ॥୧୩୫୮॥
କାହିଂ ମହିସା ସଙ୍ଗତେ ଦୁର୍ଗାକରେ ରଣ
କାହିଂ ରାବଣ ସହିତେଂ ଯୁଝନ୍ତି ଶ୍ରୀରାମ ॥୧୩୫୯॥
ଲକ୍ଷଣ ଇନ୍ଦ୍ରଜିତ କରନ୍ତି ସମର
କାହିଂ ହନୁମନ୍ତ ସିରେ ଗିରିବର ॥୧୩୬୦॥
କାହିଂ ନନ୍ଦଘରେ ଜନ୍ମି ଅଛନ୍ତି ଭଗବାନ
ଯସୋଦା କୋଳେଂ ଧରି ଦେଉଛନ୍ତି କ୍ଷିର ପାନ ॥୧୩୬୧॥
କେଉଂଠାରେ ଯସୋଦା ଯାଉଛନ୍ତି ନିଦ
କାହିଂ ବସୁଦେବ ଛାଡ଼ି ଆସଇ ଗୋବିନ୍ଦ ॥୧୩୬୨॥
କାହିଂ ପୁତନାକୁ ସୋସିଲେ ଭଗବାନ[1]
କେଉଂଠାରେ ନନ୍ଦ ଦୁହୁଛନ୍ତି ଗୋଧନ[2] ॥୧୩୬୩॥
କାହିଂ ପଦ୍ମପୁଷ୍ପ ତୋଳନ୍ତି ବନମାଳି
ସିରରେ ନୃତ୍ୟ କରନ୍ତେ ମୋହ ଯାଉଅଛି କାଳି ॥୧୩୬୪॥
କେଉଂଠାରେ ଅକ୍ରୁର ସଜକରେ ରଥ
କୃଷ୍ଣଙ୍କୁ ଘେନିଣ ଯାଉଅଛନ୍ତି ରାଜପଥ ॥୧୩୬୫॥
କେଉଂଠାରେ କଂସ ଯେ ମଞ୍ଚାରୁ ଗଡ଼ି ପଡ଼ି
ଗୋପାଳ ପୁଅ ସଙ୍ଗତେ କୃଷ୍ଣ ଅଛନ୍ତି ଉଭାରି ॥୧୩୬୬॥
କାହିଂ ଦାରୁବ୍ରହ୍ମ ଲାଗିଅଛି ଦରିଆରେ
କାହିଂ ଇନ୍ଦ୍ରଦ୍ୟୁମନ ନେଉଅଛି ସଗଡ଼ରେ ॥୧୩୬୭॥
କାହିଂ ହୋଇଛି କୋଟିଯେ ଦେଉଳ
ଗୁପତେଂ ରହିଛନ୍ତି ଦେବତା ସକଳ ॥୧୩୬୮॥
ଭୃତ୍ୟ ଜନମାନେ ତହିଂ କରନ୍ତି ଗୁହାରି
ବିଜେ କରି ଅଛନ୍ତି ଅନନ୍ତ ମୁରାରି ॥୧୩୬୯॥
କାହିଂ ବ୍ରହ୍ମା ବିଷ୍ଣୁ ରୁଦ୍ର ଦେବତା ତିନିଜଣ
ନବତନ ସୃଷ୍ଟି ସେ କରନ୍ତି ଭିଆଣ[3] ॥୧୩୭୦॥
କାହିଂ ଚନ୍ଦ୍ରାତପ ହୋଇଅଛି ଟଣା
ଦେଖିଲେ ପୁର ଜନେ ହୋଇବେକ ବଣା ॥୧୩୭୧॥
ଘରେଂ ଘରେଂ ଚକ୍ର ଚିରାଳ ଉଡ଼ଇ
ଦେଖି ତିନିପୁର ଲୋକେ ହୋଇବେକ ମୋହି ॥୧୩୭୨॥
ଯେମନ୍ତେ ବିଶ୍ୱକର୍ମା ପୁର ନିର୍ମାଣିଲେ
କୃଷ୍ଣଙ୍କୁ ଓଳଗିଣ ନିଜପୁର ଗଲେ ॥୧୩୭୩॥
ହରିବଂସ ଚରିତ ଯେ ଅପୁର୍ବ ଅଟଇ
ହରିନାମ ସୁମର ନରେ ମୁକତି ଯିବ ହୋଇ ॥୧୩୭୪॥

୧ । ଖ ଓ ଗ ପୋଥି – ଭାବଗ୍ରାହି
୨ । ଖ ଓ ଗ ପୋଥି – ଗାଈ
୩ । ଖ ପୋଥି – ସର୍ଜନ

ହରିନାମ ସୁମରଂ ନରେ ଫିଟିବ କାଳଫାସ
ହରିପାଦେ ସରଣ ସାରୋଳା ଚଣ୍ଡି ଦାସ ॥୧୩୭୫॥

## ନନ୍ଦର ଦାରିଦ୍ର୍ୟ ବର୍ଣ୍ଣନା

ଯେଥୁ ଅନ୍ୟନ୍ତରେ ପାର୍ବତି ପୁଚ୍ଛା କଲେ
ଶ୍ରୀହରି ଜନ୍ମ କଥା କହିଲ ମୋର ଆଗରେ ॥୧୩୭୬॥
ନନ୍ଦର ଚରିତ ଯେବେ କହ ପ୍ରାଣ ନାଥ
ଗୋପରେ ଥାଇ କି ରୁପେ ପାଇଲେ ଯେତେ ଦୁଖ ॥୧୩୭୭॥
ସୁଣଗୋ ପାର୍ବତି ବୋଲି ବୋଲନ୍ତି ସଙ୍କର
ଅପୁତ୍ରି ହେବାରୁ ଗୋପାଳେ ଗ୍ରାମରୁ କଲେ ଦୁର ॥୧୩୭୮॥
ଦାରିଦ୍ର ହୋଇ ନନ୍ଦ ବଞ୍ଚୁଥାଇ ଦିନ
ଗାଇ ତିନିଗୋଟି ତାର କରଇ ଦୋହନ ॥୧୩୭୯॥
ପୋସେକ ହୋଅଇ ସେ ତିନି ଗାଇ ଦୁଧ
କେ ଆନ କରିବ ସେ ଦଇବର ଯୋଗ ॥୧୩୮୦॥
ବନରୁ ଯାଇ ନନ୍ଦ ମିଳଇ ଗୃହର
ଭଜଂ ଛତା ଲଉଡ଼ି ରଖଇ ଅଗଣାର ॥୧୩୮୧॥
ପଣସପତ୍ର ଗୋଟିଏ ଠୋଲା କରିଥାଇ
ଯେଥୁଅନ୍ତେ ଯସୋବନ୍ତି ଯେ ତରଣ ଢାଳି ଦେଇ ॥୧୩୮୨॥
ହସ୍ତ ଆଣ୍ଠୁ ପାଡ଼ି ତଳକୁ ଦୃଷ୍ଟି ଦେଇ
ମୁଖ ମାଡ଼ି ନନ୍ଦ ଥୋକାୟେ ପିଅଇ ॥୧୩୮୩॥
ନିସ ଜର ଜର ଥୋର ଯାଏ ବୁଡ଼ି
ପୁଣି ଥୋକାୟେ ନନ୍ଦ ଖାଅଇ ହାଂପୋଡ଼ି ॥୧୩୮୪॥
ଥୋଡ଼ରୁଂ ତୋରାଣି ପଡ଼ଇ ଥୋପି ଥୋପି
ହୃଦରେ ପଡ଼ନ୍ତେ ତିନ୍ତଇ କର୍ପଟି ॥୧୩୮୫॥
ଆଞ୍ଚୋବନ ସାରିଣ ସେ ଯେ ପେଟ ଆଉଂସଇ
ପୁର୍ବ ମୁଖ କରିଣ ଛାଡ଼ଇ ଯେକ ହାଇ ॥୧୩୮୬॥
ଯେବଣ ବସ୍ତ୍ର ପିନ୍ଧିଥାଇ ଯସୋବନ୍ତି
ସାତଖଣ୍ଡି କନା ତାର ସୋଳ ଗୋଟି ଗଣ୍ଠି[1] ॥୧୩୮୭॥
ଚର୍ମଲୋଳି ଲୋଳି ଫାଟିଥାଇ ଚରଣ
ଅଧେ ଦନ୍ତ ଠିଆ ଅଧେ ନଥାଇ ପୁଣ ॥୧୩୮୮॥
ବେନି ନୟନରୁ ତାର ବହଇ ଚିପୁଡ଼ା[3]
କଥା କହୁଂ ଲାଳ ବହଇ ହୋଇଅଛି ବୋଢ଼ା[4] ॥୧୩୮୯॥

---

୧ । ଗ ପୋଥି – ଧର
୨ । ଖ ଓ ଗ ପୋଥି – ସାତ ଖଣ୍ଡି ଜଡ଼ିଣ ଗଣ୍ଠି ପରେ ଗଣ୍ଠି
୩ । ଖ ଓ ଗ ପୋଥି – ବହି ପଡ଼ଇ ପିଛଡ଼ା
୪ । ଖ ଓ ଗ ପୋଥି – ତାହାଠାରୁ ଅତ୍ୟନ୍ତ ମହାକୁଢ଼ ବୁଢ଼ା

ସିରେଂ ବାଳ ଢାଙ୍କି ମୁଖରେଂ ବେନି ଦନ୍ତ
ଦୁରକୁ ଦିସୁଥାଇ ଯେହ୍ନେ ତାଳ ବୃକ୍ଷ ମତ ॥୧୩୯୦॥
ଦିନଯାକ ଚାଲିଲେ ପ୍ରବେସ ବେନି କୋସ
ବେନି ଭୋଡ଼ା ଗମନ୍ତେ ଘଡ଼ିୟେ ହୋୟେ କାସ ॥୧୩୯୧॥
ଯେମନ୍ତ ପ୍ରକାରେ ସେ ନନ୍ଦ ଯସୋବନ୍ତି
କହନ୍ତି ସଦାସିବ ସୁଣଗୋ ହେମବନ୍ତି ॥୧୩୯୨॥

## ବିଶ୍ୱକର୍ମାଦ୍ୱାରା ନୂତନ ଗୋପପୁର ନିର୍ମାଣ ଓ ଉତ୍ସବ ପାଳନ

ଅଗସ୍ତି କହିଲେ ଯାହା ବୈବସୁତ ଆଗେଂ
ସେହି କଥା କହୁଅଛୁ ଆମ୍ଭେ ତୋର ଆଗେ ॥୧୩୯୩॥
ଶ୍ରୀକୃଷ୍ଣନାଥ ଯହୁଂ ନନ୍ଦଘରେ ମିଳିଲେ
ଦୁତି ବାରସ୍ୱତି ଭଜଂ କୁଡ଼ିଆକୁ କଲେ ॥୧୩୯୪॥
ଯେତେବେଳେ ପାହି ଗଲାକ ରଜନି
ନିଦ୍ରା ଉପେକ୍ଷିଣ ଉଠିଲେ ଗୋପାଳୁଣି ॥୧୩୯୫॥
ଦେଖିଲା ଜନମି ଯେ ଅଛଇ କୁମର
ହେମା ରାବ ସବଦ କରଇ ଉଚ୍ଚସ୍ୱରଂ[1] ॥୧୩୯୬॥
ଦେଖିଣ ଯସୋବନ୍ତି ହରସ ହୋଇଲା
ମୁଦୁସୁଲିମାନଙ୍କୁ ଛାମୁକୁ ହକାରିଲା ॥୧୩୯୭॥
ପୁତ୍ରକୁ ଦେଖିଣ ହରସ ମନ କଲେ
ନାଭି କାଟି ପୁଣି ଅନ୍ତୁଡ଼ି ଲଗାଇଲେ ॥୧୩୯୮॥
ନଡ଼ପ ଲଗାଇ ଦେଇ ପତନିରେ ଦେହ ପୋଛି ଦିଲେ[2]
ସୁପାତି ସେଯରେ ପୁତ୍ରକୁ ସୁଆଇଲେ[3] ॥୧୩୯୯॥
ସାତ ପାଞ୍ଚ ନାରିମାନ ମିଳିଲେ ସେହିଠାର
କେହୁ କୋଳେ ଘେନି କୃଷ୍ଣଙ୍କୁ ଦିଅନ୍ତି ଯେ କ୍ଷିର ॥୧୪୦୦॥
ଯେଥୁ ଅନନ୍ତରେ ସୁଣଗୋ ହେମବନ୍ତି
ନନ୍ଦ ଯାଇଥିଲା ଗୋପକୁ ଲୋକ ଡାକି ॥୧୪୦୧॥
ମାଗିଣ ସାତ ପାଞ୍ଚ ଲେକୁଡ଼ି କନା ଘେନି
ବିଚାରଇ କି କରୁଥିବେ ମୋ ଗୋପାଳୁଣି ॥୧୪୦୨॥

---

୧ । ଖ ପୋଥି – କୁଆଂ କୁଆଂ ଶବଦେ କରଇ ରୋଦନ
୨ । ଖ ପୋଥି – ନୀଳ ପୀତ ପତନିରେ ଦେହ ପୋଛି ଦେଇ
୩ । ଏହା ପରେ ଖ ପୋଥିରେ ଅଧିକ –
ଗନ୍ଧ ଅୟେଂଳା ସୁବାସ ତଇଳ ଅଙ୍ଗେ ଦେଇ
ଯଶୋଦା ବସିଣ ଯେ ବୋଲଇ ଅଇ ଅଇ
୩ । ଏହା ପରେ ଗ ପୋଥିରେ ଅଧିକ –
ଅଗର କାଠ ଆଣି ଅନ୍ତୁଡ଼ି ଉଛାଇଲେ

ଯେମନ୍ତ ନିଜ ଘରଠାରେ ଯାଇ ପ୍ରବେସ ହୋଇଲା
କୋଡ଼ିଆ ଖଣ୍ଡି ନାହିଂ ନୟନେ ଦେଖିଲା ॥୧୪୦୩॥
ବିଚାରଇ ମୋତେ ଯେ ଦଇବ ବାମ ହେଲା
ଗୃହ ଖଣ୍ଡିକ ମୋର ଛଡ଼ାଇ କେହୁ ନିଲା ॥୧୪୦୪॥
କେବଣ ସାଧେବ ସେ ମୋତେ ବାଦ କଲା
ସେହି ତ ରହିଲା ମୋର ଯସୋବନ୍ତି କେଣେ ଗଲା ॥୧୪୦୫॥
ବଥାଉ ଥିଲା ପେଟ ମୁହିଂତ ଗଲି ଛାଡ଼ି
ସେହିକି ନାସ ଗଲା ଲୋକେ ଦିଲେ ମାଡ଼ି ॥୧୪୦୬॥
ଅନେକ ନାରି ତ ଆସୁଛନ୍ତି ଯାଉଛନ୍ତି
ତୁଣ୍ଡର ସବଦେଂ ନବର ଚମକନ୍ତି ॥୧୪୦୭॥
ମୁହିଂ ଗଲେ ମୋତେ ବାନ୍ଧି ପକାଇବେ
ଯାଉଛିଂ ପଳାଇ ନ ରହିବି ଯେହି ଠାବେଂ ॥୧୪୦୮॥
ଯେତେ ବୋଲି ନନ୍ଦ ହେଉଛି ତରତର
ଯସୋଦା ପରିବାରି ମିଳିଲେ ସେଠାର ॥୧୪୦୯॥
ହଳଦିର ସଙ୍ଗେ ମିସାଇ ଲବଣି
ନନ୍ଦର ମୁଖରେଂ ନେଇ ଲେପିଲେ ତରୁଣି ॥୧୪୧୦॥
ବୋଇଲେ ଯେବେ ଯେ ହୋଇଲା ତୋର ସୁତ
ଆମ୍ଭଙ୍କୁ ବଧାଇ ଦେବା ତୋହର ଉଚିତ ॥୧୪୧୧॥
ଯେମନ୍ତେ ନାରିମାନେ ନନ୍ଦକୁ ହିଞ୍ଚୁଡ଼ନ୍ତି
ମାଗିନେଲା ଲୁଗାଖଣ୍ଡି ପଡ଼ିଯାଇ କ୍ଷିତି ॥୧୪୧୨॥
ସାଉଟିଂ ନେବାକୁ ନାହିଂ ଅପସର
ତବଦ[୧] ହୋଇ ନନ୍ଦ ଚାହିଂଇ ନୟନର ॥୧୪୧୩॥
ଯସୋବନ୍ତି ଠାରେଂ ପ୍ରବେସ ନେଇ କଲେ
ଦେଖ ଦେଖ ବୋଲି ପୁତ୍ରକୁ ଦେଖାଇଲେଂ ॥୧୪୧୪॥
ଯେତେବେଳେ କୃଷ୍ଣକୁ ଦେଖିଲା ମହାକୁଢ଼
ଦରିଦ୍ର ଅବସ୍ଥା ତାର ସକଳ ଗଲା ଦୁର ॥୧୪୧୫॥
ବୃଦ୍ଧା ରୁପ ଯାଇ ହୋଇଲା ନବଯୁବା
ଆକାସ ଇନ୍ଦ୍ର ପ୍ରାୟେ ଦିସିଲାକ ସୋଭା ॥୧୪୧୬॥
ଦେହରେ ଅଳଙ୍କାର ଅଷ୍ଟରତ୍ନେ ଜଡ଼ି
ସୁବର୍ଣ୍ଣର କଠାଉ ବେନି ପାଦେଂ ମାଡ଼ି ॥୧୪୧୭॥
କାମଦେବ ପ୍ରାୟେ ନନ୍ଦ ହୋଇଣ ଅଛଇ
ଯସୋଦାର ରୁପ ସେ ଅପୁର୍ବ ଅଟଇ ॥୧୪୧୮॥
ବୃଦ୍ଧା ରୁପ ଯାଇ ହୋଇଲା ସୋଳସା
ଦେଖିଲେ ବସ ହୋଇବେ ମୁନି ଯତି ପୁରୁଷା ॥୧୪୧୯॥
ପାଟେକ ପିନ୍ଧିଣ ପାଟେ ଉପୁରାଣ ଦେଇ
ଅନ୍ତୁଡ଼ିର ସାଳେ ବସିଛି ମହାମାଇ ॥୧୪୨୦॥

୧ । ଖ ପୋଥି – ଧୀର ଧୀର

ଯାହାର କୋଳେଂ ଜାତ ହୋଇଲେ ଚକ୍ରଧର
ଅଳଙ୍କାରମାନ ତାକୁ କେତେକ ଅଗୋଚର[୧] ॥୧୪୨୧॥
ଗୋପାଳ ଗୋପାଳୁଣି ମିଳିଲେ ନନ୍ଦଘରେ
ଭାଟ ଜଉତିସ ମାଗନ୍ତି ବିପ୍ରବରେ ॥୧୪୨୨॥
ସମସ୍ତେ ନନ୍ଦକୁ ଜଜାଂଳ କଲେ ଯାଇ
ପୁତ୍ର ଜାତ ହୋଇଲା ଦିଅ ତୁ ବଧାଇ ॥୧୪୨୩॥
ମୁଦୁସୁଲିମାନେ ଯେ ପୁତ୍ରକୁ ତୋଳି ନେଲେ
ପୁତ୍ରକୁ ଘେନ ବୋଲି ନନ୍ଦକୁ କହିଲେ ॥୧୪୨୪॥
ନନ୍ଦ ଡାକ ଦିଅଇ ଦଣ୍ଡେକ ତୁମ୍ଭେ ରହ
ଜଜାଂଳ ସାରିଣଂ ଘେନିବିଂ ପଛେ ପୁଅ ॥୧୪୨୫॥
ଅଗ୍ରେ ତୋସ କରଇ ମାଗନ୍ତା ଜନଙ୍କୁ
ଧନ ବସ୍ତ୍ର ଦାନ ଦିଅଇଂ ବିପ୍ରଙ୍କୁ ॥୧୪୨୬॥
ଯେମନ୍ତ ବୋଲି ନନ୍ଦ ସୁଚିବନ୍ତ ହେଲେ
ବ୍ରାହ୍ମଣଙ୍କୁ ବସାଇ ହସ୍ତରେ ବହୁତ ଦାନ ଦିଲେ ॥୧୪୨୭॥
ସତେ ସତେ ଧେନୁ ଦିଲା ସେହୁ ଦାନ
ପର୍ବତ ସମାନେ ତିଳ ବହୁତ କାଞ୍ଚନ ॥୧୪୨୮॥
ପାଟବସ୍ତ୍ର ଅସ୍ୱ ବହୁତ ଦାନ ଦିଲା
ପ୍ରହରେ ପରିଯନ୍ତେ ଭଣ୍ଡାର ମେଲାକଲା ॥୧୪୨୯॥
ଚଉଦ ବ୍ରହ୍ମାଣ୍ଡରେ ଯେ ପ୍ରଭୁ ଠାକୁର
ପୁତ୍ର ପ୍ରାୟେ ମଣି ନନ୍ଦ ଘେନଇ କୋଳର ॥୧୪୩୦॥
ଗ୍ରହପୁତ୍ର ବୁଝିଲେ ପୁତ୍ରର ଜାତକର୍ମ
ବୋଇଲେ ସର୍ବସୁଭେ ଜନ୍ମିଛି ନନ୍ଦନ ॥୧୪୩୧॥
ଗୋପପୁରେଂ ଯେତେ ଗୋପାଳୁଣି ଥିଲେ
ନନ୍ଦର ମନ୍ଦିରେଂ ଯାଇ ପ୍ରବେସ ହୋଇଲେ ॥୧୪୩୨॥
ପୁତ୍ରର ସିରେଂ ଅକ୍ଷତ ଦିଅନ୍ତି ଗୁଆଳି
ମଙ୍ଗଳ ଗିତ ଗାଇ ଦିଅନ୍ତି ହୁଳ ହୁଳି ॥୧୪୩୩॥
କେହୁ ଅଗଣା ଖରକନ୍ତି ଘେନିଣ ପୟେଂରା
ଚନ୍ଦନ ଘେନି କେହୁ ପକାଉଛି ଛଡ଼ା ॥୧୪୩୪॥
ଦୁତିୟ ପହର ଆସି ଆଦିତ୍ୟ ହୋଇଲାକ ଯହୁଂ
ନନ୍ଦପାସେ ସେବକେ ମିଳିଗଲେ ତହୁଂ ॥୧୪୩୫॥
ସୁଗନ୍ଧ ତଇଳ ତା ଅଙ୍ଗରେ ଲେପି ଦିଲେ
ମର୍ଦ୍ଦନ ମାଜଣା ସାରିଲେ ମହାକୁଢ଼େ ॥୧୪୩୬॥
ଯମୁନା ଜଳରେଂ ସଉଚବନ୍ତ ହୋଇ
ମଣୋହିରେଂ ବିଜେ କଲେ ପାଦଧୋଇ ॥୧୪୩୭॥
ସୁବର୍ଣ୍ଣ ସ୍ଥାଳିରେ ଦିବ୍ୟସାଳି ଅର୍ଣ୍ଣ[୨]
ଭୁଜିଂଲେ ସଡ଼ରସେ ନାନା ବର୍ଣ୍ଣେ ବ୍ୟଜଂନ ॥୧୪୩୮॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ
୨ । ଗ ପୋଥି – ସୁବର୍ଣ୍ଣ ଥାଳିରେ ବସି ଭୁଞ୍ଜିଲେକ ଅର୍ଣ୍ଣ

ଆଞ୍ଚୋବନ ସାରିଣ ଯେ ତାମ୍ବୁଳ ଭୁଞ୍ଜିଲେ
ଗଜଦନ୍ତ ପଲଙ୍କରେ ଯାଇଣ ପହୁଡ଼ିଲେ ॥୧୪୩୯॥

## ପୂତନା ବଧ ଓ ତାର ପୂର୍ବଜନ୍ମ ବୃତ୍ତାନ୍ତ

ଯେମନ୍ତେ ତିନିଦିନ ଗଲାକ ଯେ ବହି
କଂସର ଡଗର ମିଳିଲା ଗୋପେଂ ଯାଇ ॥୧୪୪୦॥
ଗୋପପୁର ଉଛବ ଦେଖିଲା ନୟନର
ଯାଇଣ କହିଲା କଂସ ରାଜାର ଆଗର ॥୧୪୪୧॥
ନନ୍ଦ ବୋଲି ଗୋପାଳେ ଗୋପରେ ଥିଲା ରହି
ଅପୁତ୍ରିକ ହୋଇଥିଲା ଜନ୍ମ ହୋଇଲା ତନଇ ॥୧୪୪୨॥
ତେଣୁ ବଡ଼ ଉଛବ ଗୋପରେ ହୋଇଅଛି
କଂସ ବୋଇଲା ମୋ ବଇରି ଯେ ଶ୍ରୀବଛି ॥୧୪୪୩॥
କେହୁ ଯାଇ ବାଳକକୁ ପକାଇବ ମାରି
ସୁଣିଣ ସଜ ହୋଇଲା ପୁତୁନା ଅସୁରି ॥୧୪୪୪॥
ଚଳିଲା ଅସୁରି କଂସ ଆଜ୍ଞାପାଇ
ବହୁତ ବାଳେକ ଯେ ନାସିଲାକ ସେହି ॥୧୪୪୫॥
ବେନି କୁଚରେ ସେ ଭରିଅଛି ବିସ
ଗୋପପୁରେ ନନ୍ଦ ମନ୍ଦିରେ ଯାଇଣ ପରବେସ ॥୧୪୪୬॥
କାହାଘରେ ବାଳେକ ଅଛି ବୋଲିଣ ଡାକଦେଇ
ଆଣ ଲୋ ବାଳେକ ବହୁତ କ୍ଷିର ମୁଂ ଦେବଇଂ ॥୧୪୪୭॥
ସୁଣି ଗୋପି ଭିତରକୁ ଘେନିଗଲେ ଦଇତୁଣିଂ
ପୁତୁନା କୋଳେ ନେଇ ଦିଲେ ଚକ୍ରପାଣି ॥୧୪୪୮॥
ହୃଦରେ ବିଚାରି ଦେବ ଭାବଗ୍ରାହି
ଯେହିକ୍ଷଣି ଯେହାର ପ୍ରାଣ ନାସିବଇଂ ॥୧୪୪୯॥
ପୁତୁନି କୋଳେ ଧରି ତୁଣ୍ଡରେ କ୍ଷିର ଦିଲା
ଗାଢ଼େଂ ସ୍ତନ ଚାପିଲେ ଦେବକିର ବଳା ॥୧୪୫୦॥
କ୍ଷିର ସଙ୍ଗେ ପ୍ରାଣ ଯେ ସୋସିଲେ ଦଇତାରି
ପଡ଼ିଲା ମୃତୁପିଣ୍ଡ ଯୋଜନେକ ମାଡ଼ି ॥୧୪୫୧॥
ଗୋବିନ୍ଦଙ୍କ ତୁଣ୍ଡରେ ଯହୁଂ ଦିଲାକ ହାଦେ କ୍ଷିର
ଗତିପାଇ ଅସୁରି ଗଲା ସ୍ୱର୍ଗପୁର ॥୧୪୫୨।
ପୁତୁନା ପିଣ୍ଡ ପଡ଼ି ସବଦ ସୁଭିଲା
ଅସମ୍ଭାଳ ହୋଇଣ ଯସୋଦା ଧାଇଂଣ ସେ ଗଲା ॥୧୪୫୩॥
ଦେଖିଲା ମେରୁ ପ୍ରାୟେ ମୃତୁ ପିଣ୍ଡ ପଡ଼ି
ପଡ଼ି ମିଟିମିଟି ଚାହାନ୍ତି ଦଇତାରି ॥୧୪୫୪॥
ଯସୋଦା ରୋହେଣିଂ ଯେ ହାହାକାର କଲେ
କୃଷ୍ଣକୁ ଘେନିଣ ଆଶ୍ୱାସି ଚୁମ୍ବ ଦେଲେ ॥୧୪୫୫॥
ଗୋବଛା ଗୋଟିୟେକ ଆଣିଲେକ ବେଗେଂ ଧରି
ତାହାର ଲାଙ୍ଗଂ ଧୁଳି ଗୋବିନ୍ଦ ଅଙ୍ଗେ ଝାଡ଼ି ॥୧୪୫୬॥
ଗୋମୁତ୍ରେ ସ୍ନାହାନ ଗୋରଜରେ ଚିତା
ଯେବଣ ଜଗନ୍ନାଥ ଗୋ ବ୍ରାହ୍ମଣରେ ହିତା ॥୧୪୫୭॥
ବ୍ରାହ୍ମଣେ ଦାନ ଦେଇ ରିଷ୍ଟ ସ୍ୟାନ୍ତି କଲେ
ସହସ୍ରେ ନାମ ପଢ଼ି ଦେହେ କବଚ ବାନ୍ଧିଲେ ॥୧୪୫୮॥
ବୋଇଲେ ମଙ୍ଗଳା କରନ୍ତୁ ତୋତେ ପାରି
ଖେଳନ୍ତେ ବାସୁଦେବ ସୟନେ ବନମାଳି ॥୧୪୫୯॥
ପାଦ ରଖୁ ଗୋବିନ୍ଦ ଅନନ୍ତ ରଖୁ ଜଙ୍ଘ
କଟି ରଖୁ ବାମନ ନାଭି ରଖନ୍ତୁ ନରସିଂହ ॥୧୪୬୦॥
ଭୁଜ ରଖୁ ମୁକୁନ୍ଦ କଣ୍ଠ ରଖୁ ସରସ୍ୱତି
ସିର ରଖୁ କେସବ ସୟନେ ଦାସରଥି ॥୧୪୬୧॥
ହୃଦରେଂ ହୟଗ୍ରିବ ତାଳୁରେଂ ବାସୁଦେବ
ମହିରେଂ ବାସୁକି ଆକାସରେ ସଦାସିବ ॥୧୪୬୨॥
ଜଳରେଂ ବରୁଣ ସ୍ଥଳରେଂ ଆଦ୍ୟମାତା
ଚାରିପାସେଂ ରଖନ୍ତୁ ସେ ଦିଗପାଳ ଦେବତା ॥୧୪୬୩॥
ଯେମନ୍ତେ ପୁତ୍ର ଅଙ୍ଗ ନାରିୟେ କବଚିଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୧୪୬୪॥
ନନ୍ଦ ଯେ ଗୋପପୁରେ ଗୋବଛା ରଖିଥିଲା
ସନ୍ଧ୍ୟାକାଳେ ଭୁବନରେଂ ପ୍ରବେସ ହୋଇଲା ॥୧୪୬୫॥
ଦେଖିଲା ଜଗତି ଅଟାଳି ତରୁବର
ଭଗନସ୍ତ ହୋଇଣ ପଡ଼ିଛି ମହିରଂ[1] ॥୧୪୬୬॥
କିସ କିସ ବୋଲିଣ ନନ୍ଦ ପଚାରଇ
ପୁତନାର ଚରିତ ଯେ ଗୋପିଏ[2] ଗଲେ କହି ॥୧୪୬୭॥
ପୁତନାର ପିଣ୍ଡ ଦେଖି ନନ୍ଦ ଆଶ୍ଚର୍ଯ୍ୟ ହୋଇଲା
ଦହନ କର ହୋ ବୋଲି ନନ୍ଦ ଆଜ୍ଞା ଦିଲା ॥୧୪୬୮॥
କୋଟିୟେ ଗୋପାଳେ ଯେ ଆଜ୍ଞା ପାଇଗଲେ
ଅସୁରିର ପିଣ୍ଡକୁ ଯେ ଘୋସରାଇ ନେଲେ ॥୧୪୬୯॥
ଯମୁନାର କୁଳେ ନେଇ କଲେକ ଦହନ
ଯାହାର କ୍ଷିର ସେ ଭକ୍ଷିଲେ ଭଗବାନ ॥୧୪୭୦॥
ସକଳ ପାତେକ ତାର ହୋଇଲାକ ହର
ବଦୟନ୍ତି ପାର୍ବତି ସୁଣ ହେ ସଙ୍କର ॥୧୪୭୧॥
ପୁର୍ବେ ସେ ଦଇତୁଣି କିସ ଜନ୍ମ ହୋଇଥିଲା
ଶ୍ରୀକୃଷ୍ଣ ହସ୍ତରେଂ ମରି ମୁକତି ଲଭିଲା ॥୧୪୭୨॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି
ପୁର୍ବେ ପୁତନା ଯେ ଜୟମାଳା ଅପକ୍ଷରି ॥୧୪୭୩॥

---

୧ । ଖ ଓ ଗ ପୋଥି – ସମସ୍ତ ଭାଙ୍ଗି ଚୁନା ହୋଇଛି ନବର
୨ । ଖ ଓ ଗ ପୋଥି – ଗୋପାଳେ

ଇନ୍ଦ୍ରର ମନୋହାରି ସେ ଯେ ସ୍ୱର୍ଗର ନାୟେକା
ଦିନେ ତାହା ସଙ୍ଗେ ଇନ୍ଦ୍ର ରମଣ କଲେ ଯେକା ॥୧୪୭୪॥
ଗାଢ଼ ସୃଙ୍ଗାରେ ଦେବି ଅସୁଖ ପାଇଲା
ଛାଡ଼ ଛାଡ଼ ବୋଲିଣ ପାଦ ପ୍ରହାରିଲା ॥୧୪୭୫॥
ପାଦ ପାଇ ତ୍ରାସ ପାଇଲା ବଜ୍ରଧାରି
ବୋଇଲା ଯେଡ଼େ ଗର୍ବ ବହିଲୁ ଅପକ୍ଷରି ॥୧୪୭୬॥
ମୁହିଂ ସେ ସୁରପତି ପାଦ ପ୍ରହାରିଲୁ
ମୋହର ସୃଙ୍ଗାରକୁ ଅସୁଖ ପାଇଲୁ ॥୧୪୭୭॥
ଯାଅ ଯେବେଂ ଜାତ ହୁଅ ମଞ୍ଚପୁରି
ଦଇତ ବିର୍ଯ୍ୟେଂ ଜନ୍ମି ତୁ ହୋଇବୁ ଅସୁରି ॥୧୪୭୮॥
ସୁଣିଣ ଅପକ୍ଷରି କାକୁସ୍ତ ହୋଇଲା
ଇନ୍ଦ୍ର ପାଦେଂ ପଡ଼ି ବଚନ ପ୍ରକାସିଲା ॥୧୪୭୯॥
ଅଳପ ଦୋସକୁ ଯେ ବହୁତ କୋପ କଲ
ସାପ୍ୟକୁ ଗତି ଯେବେଂ ଦିଅ ହୋ ବଜ୍ରଧର ॥୧୪୮୦॥
ଅପକ୍ଷରି ବଚନେ ଯେ ବୋଇଲେ ସୁରପତି
ଦ୍ୱାପର ଯୁଗେଂ ଜାତ ହୋଇବେ ଦାସରଥି ॥୧୪୮୧॥
ତୁହି ରହିଥିବୁ ସେ ଯେ ମଥୁରା କଟକର
କୃଷ୍ଣର ବାଳକ ରୁପ ତୁଣ୍ଡରେଂ ଦେବୁ କ୍ଷିର ॥୧୪୮୨॥
କ୍ଷିର ସଙ୍ଗତେ ପ୍ରାଣକୁ ତୋହର ସୋସିବେ
ସାପ୍ୟ ପାର କରିଣ ଆସିବୁ ଯେହି ସ୍ୱର୍ଗେ ॥୧୪୮୩॥
କହନ୍ତି ମହେସ ସୁଣଗୋ ଦେବି ଓମା
ସାପ୍ୟରେ ଅପକ୍ଷରି ହୋଇଥିଲା ପୁତନା ॥୧୪୮୪॥
ଶ୍ରୀହରି ହସ୍ତେ ମରି ସାପ୍ୟ କଲା ପାରି
ପୁନରପି ଇନ୍ଦ୍ରର ହୋଇଲା ମନୋହାରିଂ[୧] ॥୧୪୮୫॥

## ଶ୍ରୀକୃଷ୍ଣଙ୍କ ପଞ୍ଚୁଆତି ଓ ଉଠିଆରି

ପାଞ୍ଚ ଦିନେ ନନ୍ଦ କଲା ପଞ୍ଚୁଆତି
କ୍ଷୀର ଫଳ ଭୁଞ୍ଜାଇ ସନ୍ତୋସ କଲା ଜ୍ଞାତି ॥୧୪୮୬॥
ଷଷ୍ଟମ ଦିନରେଂ ଯେ କଲେକ ସଠିଘର
ସୁବର୍ଣ୍ଣର କଉଡ଼ି ସେ ମଣ୍ଡିଲେ ତହିଂର ॥୧୪୮୭॥
ନାନା ଦ୍ରବ୍ୟମାନ ସେ ଯେ ବାଢ଼ିଲେକ ତହିଂ
ସଠି ଜିଉଂଛିକି ଯେ ଭୋଗ ଲଗାଇ ॥୧୪୮୮॥
ସମସ୍ତ ନାରିମାନ ସୋଇଲେ ନିଦ୍ରାର
ରଜନି ହୋଇଲା ଯହୁଂ ଦୁତିୟ ପ୍ରହର ॥୧୪୮୯॥
ସଠି ଜିଉଛି ଯାଇ ମିଳିଲା ସେଠାବରେଂ
ଜୟ ଜୟ ସ୍ତୁତି ଭଣିଲେ ମୁଖରେଂ ॥୧୪୯୦॥

୧ । ଖ ପୋଥି – ଲେଉଟି ଇନ୍ଦ୍ରର ମନୋହାରୀ ହୋଇଲା

ଜୟତୁ ଜଗବନ୍ଧୁ ଜଗତ ତାରଣ
ଜଗତ ନିସ୍ତାରିତେ ହୋଇଅଛୁ ଜନମ ॥୧୪୯୧॥
ଅତ୍ରାହିଭଞ୍ଜନ ନାମ ଅଟଇ ତୁମ୍ଭରଂ[୧]
ଯେ ଦେଖେ ନୟନେ ପାତେକ ହୋୟେ ଦୁର ॥୧୪୯୨॥
ତୋହର ନର ରୁପ ଆମ୍ଭେ ସେ ଦେଖିଲୁଂ
ଗତ ଆଗତର ପାତେକ ନାସିଲୁଂ ॥୧୪୯୩॥
ଆମ୍ଭକୁ ତୁମ୍ଭେ ସିନା ଦେଇଛ ଅଧିକାର
ଭଲ ମନ୍ଦ ଲେଖୁ ଆମ୍ଭେ ପ୍ରାଣିଙ୍କ କପୋଳର ॥୧୪୯୪॥
ତୋହର କପୋଳେ ଲେଖିବୁ କିସ ଆମ୍ଭେ
ଯେତେ ବୋଲି ସଠି ଜିଉଛି ପଡ଼ିଲେ ହରିପାଦେ[୨] ॥୧୪୯୫॥
ବଦୟନ୍ତି ହରି ବିହି ମୋର ବୋଲ ତୁହି ସୁଣ
କିଛି ହିଂ ନ ବିଚାରି ତୁମ୍ଭେ କର ହେ ଲେଖନ ॥୧୪୯୬॥
ଉଦେ ଅସ୍ତ ଯାହା ଅଛି ମୋ କର୍ମର
ଅନ୍ୟସ୍ତା ନୋହିବ ସେ ଲେଖ ତୁ କପୋଳର ॥୧୪୯୭॥
ଯେମନ୍ତ କହି ହରି କପୋଳ ଦେଖାଇଲେ
ବିହି ବିଧାତାୟେ ଲେଖନ ସେ କଲେ[୩] ॥୧୪୯୮॥
ବୋଇଲେ ଅନେକ ସମ୍ପଦ ହୋଇବ ତୁମ୍ଭର
ଯେସନେ ପଦ୍ମବନ ବଢ଼ଇ ଜଳର ॥୧୪୯୯॥
ଅନେକ ଦଇତ୍ୟ ମରିବେ ତୁମ୍ଭର ହସ୍ତ
ଲକ୍ଷେ ସାଠିଏ ସହସ୍ର ଅସିୟେ ହେବ ସୁତ ॥୧୫୦୦॥
ସମୟେଂ ଜାଣି ତୁମ୍ଭେ ମରାଇବ ସକଳ
ଯେକା ବିଶ୍ରାମିବ ଯାଇ ଅଶ୍ୱସ୍ତ ବୃକ୍ଷମୁଳ ॥୧୫୦୧॥
ଜାରା ସବର ନାରାଜ ବାଜିବ ତୁମ୍ଭ ପାଦର
ଅର୍ଜୁନ ଛୁଅନ୍ତେ ପ୍ରାଣ ଯିବ ତୁମ୍ଭର ॥୧୫୦୨॥
ଯେହି କଥା ଅଛି ଲେଖିଲୁଂ ଆମ୍ଭେ ଜାଣି
ନ କରିବ କୋପ ଆମ୍ଭେ ହୋଇଲୁଂ ମେଲାଣି ॥୧୫୦୩॥
ଯେତେ ବୋଲି ସଠି ଜିଉଛି ଗଲେ ହାଦେ ଚଳି
ଅନ୍ତୁଡ଼ିସାଳେ ସୋଇଣଛନ୍ତି ବନମାଳି ॥୧୫୦୪॥
ପାହିଲାକ ନିସି ସେ ଉଠିଲେ ନରନାରି
ସପ୍ତଦିନେଂ ହୋଇଲା ଉଠିଆରି ॥୧୫୦୫॥
ପରିବାରିମାନେ ଅନ୍ତୁଡ଼ି ଉଠାଇଲେ
ଗୋମୟ ଲେପିଣ[୪] ଗୃହ ସମାର୍ଜନା କଲେ ॥୧୫୦୬॥

୧ । ଖ ପୋଥି – ବାନା ଅଟେ ଯେ ତୋହର
୨ । ଗ ପୋଥି – ଯେତେ ବୋଲି ବିହି ପଡ଼ିଲା ହରିପାଦେ
୩ । ଖ ପୋଥି – ଅଢ଼ାଇ ପନ୍ତି ଯେ ଅକ୍ଷର ଲେଖିଲେ
୪ । ଗ ପୋଥି – ବୋଳିଣ

ମଣ୍ଡିଲେ ନବର ଅତି ଯତ୍ନ କରି
ସ୍ନାହାନ କରାଇଲେ ଯସୋଦା ଦଇତାରି ॥୧୫୦୭॥
ତଦଅନ୍ତରେ ଦୋଳି ସୁଆଣି ନନ୍ଦ କଲା
ବହୁତ ଗୋଧନ ସେ ବ୍ରାହ୍ମଣେ ଦାନ ଦିଲା ॥୧୫୦୮॥
ତଦଅନ୍ତରେ ଦିନ ଯେ ହୋଇଲା ଅବସେସ
ଯସୋଦା ସ୍ନାନସାରି ପିନ୍ଧିଲା ଝିନବାସ ॥୧୫୦୯॥
ଶ୍ରୀହରି ଅଙ୍ଗରେ ତୈଳ ହଳଦି ଲେପିଲେ
ସ୍ନାହାନ କରାଇଣ ଶ୍ରୀଅଙ୍ଗ[୧] ପୋଛିଦେଲେ ॥୧୫୧୦॥
ନାନା ଅଳଙ୍କାର ତାଙ୍କର ମଣ୍ଡିଲେ ଅଙ୍ଗର
କୋଳେ ଧରି ଧାଇ ପିଆଇଲେ କ୍ଷିର[୨] ॥୧୫୧୧॥
ଯସୋଦା ରୋହେଣି ପୁତ୍ରକୁ କୋଳରେ ଘେନିଲେ
ମୁଖରେ ଚୁମ୍ବନ ଦେଇ ଦୋଳିରେ ସୁଆଇଲେ ॥୧୫୧୨॥

## ଗାର୍ଗବମୁନିଙ୍କଦ୍ୱାରା ରୋହିଣୀ ପୁତ୍ର ଓ ଯଶୋଦା ପୁତ୍ରଙ୍କର ନାମକରଣ

ଯେଥୁ ଅନ୍ୟନ୍ତରେ ବସୁଦେବ ଯାଇ
ଗାର୍ଗବ ମୁନିଙ୍କି ସେ ଦିଲେକ ପଠିଆଇ ॥୧୫୧୩॥
ନନ୍ଦର ମନ୍ଦିରେ ମୁନି ପ୍ରବେସ ହୋଇଲେ
ଗୁପତ କଥା କହି ପୁତ୍ରକୁ ନାମ ଦିଲେ[୩] ॥୧୫୧୪॥
ବୋଇଲେ ରୋହେଣି କୁମର ବଳମାନ
ଧବଳ କମଳ ଯେ ଏହାର ବଦନ ॥୧୫୧୫॥
ସିରେ ସପ୍ତଫେଣି ନାଗଙ୍କର ଚିହ୍ନ
ତେଣୁ ନାମ ଏହାର ହୋଇଲା ବଳରାମ ॥୧୫୧୬॥
ଯେ ସାନ କୁମର ଅଟଇ ଯସୋଦାର
ଆଜାନୁ ବେନି ଭୁଜ ବିରାଜେ ଚକ୍ରଧର[୪] ॥୧୫୧୭॥
ସକଳଗୁଣେ ପରିପୁର୍ଣ୍ଣ ଅଟଇ ଗରିଷ୍ଟ
ତେଣୁ ଯେହାର ନାମ ହୋଇଲା ସେ କୃଷ୍ଣ ॥୧୫୧୮॥
ଅନେକ ଦଇତ ଯେ ସଂହାରିବ ଯେହି
ତେଣୁ ଦଇତାରି ନାମ ଯେ ଏହୁ ପାଇ ॥୧୫୧୯॥
ସଙ୍ଖ ଚକ୍ର ଚିହ୍ନ ବିରାଜେ ଦେହର
ତେଣୁ ଯେହାର ନାମ ହୋଇଲା ଚକ୍ରଧର ॥୧୫୨୦॥
ଭଗତ ଭାବେ ଏବେଂ ଭାବଗ୍ରାହି ନାମ
ପୁରୁଷଙ୍କ ସିରୋମଣି ନାମ ପୃସୋତମ ॥୧୫୨୧॥
ସ୍ୟାମ କଳେବର ଏ ଯେ ଜ୍ୟୋତି ବିରାଜଇ
ତେଣୁ ଜଗନ୍ନାଥ ନାମ ଏହୁ ପାଇ ॥୧୫୨୨॥
ଅନେକ ନାମ ତ ଅଛି ଯେହାଙ୍କର
ତାହା କିସ କହିବିଂ ମାନବ ହୋଇ ଛାର ॥୧୫୨୩॥
ନାମ ଦେଇଣ ମୁନିବର ଚଳିଗଲେ
ସୁଣଗୋ ସାକାମ୍ଭେରି ସଙ୍କର କହିଲେ ॥୧୫୨୪॥

## ତୃଣାବର୍ତ୍ତ ବଧ

ବଦୟନ୍ତି ଓମା ସଙ୍କର ଘରଣି
ଗୋପପୁରେଂ ନାସ ଗଲା ଯେ ପୁତନି ॥୧୫୨୫॥
ସେ କଥା କଂସ ଜାଣିଲାକି ନ ଜାଣିଲା
ଯେ କଥା କହ ନାଥ ସୁଣିବି ମୁହିଂ ଭଲା ॥୧୫୨୬॥
ବଦୟନ୍ତି ସଦାସିବ ସୁଣ ଗୋ ଗଉରା
ଭ୍ରମିଣ ଗୋପପୁରେ[୨] ମିଳିଲା ଡଗରା ॥୧୫୨୭॥
ବୋଇଲା ସାବଧାନେ ସୁଣ ନୃପବର
ଯାହାର ନାମେ ଚମକ ପଡ଼ଇ ମେଦନିର ॥୧୫୨୮॥
ରଣ ରାହୁ ବାନା ଉଡ଼ଇ ମସ୍ତକରେ
ଦେବେ ଭୟେ କରନ୍ତି ଥାଇଣ ସ୍ୱର୍ଗପୁରେ ॥୧୫୨୯॥
ତୋହର ଆଗରେ କିସ କହିବି ବଚନ
ଆଜ୍ଞାପାଇ ପୃଥିବିରେଂ କରୁଥିଲିଂ ଯେ ଭ୍ରମଣ ॥୧୫୩୦॥
ତୋହର ଆଜ୍ଞାପାଇ ପୁତୁନି ଗଲା ଚଳି
ଅନେକ ବାଳେକ ମାଇଲା ବିସ ଭରି ॥୧୫୩୧॥
ନନ୍ଦ ଗଉଡ଼ର କୁମରେ ଜନ୍ମିଥିଲା
କ୍ଷିର ଖାଇ ପୁତୁନିର ପ୍ରାଣ ନିଲା ॥୧୫୩୨॥
ସୁଣିଣ କଂସାସୁର ବୋଲଇ ହାହାକାର
ଆହା ଲୋ ପୋତୁନି ବହେଣି ମୋହର[୩] ॥୧୫୩୩॥
ମୋହର ବେଦନା ଯେ କହଇ ଯେ ତୋତେ
କ୍ଷଣେ ନ ସହୁ ଫେଡୁ ଅଭିମାନ ମୋର ଚିତେ[୪] ॥୧୫୩୪॥

---

୧ । ଗ ପୋଥି – ଦେହ
୨ । ଏହା ପରେ ଖ ପୋଥିରେ ଦୁଇ ଧାଡ଼ି ଅଧିକ ଅଛି –
ହରିନାମ ଘୋସ ନରେ ହରିନାମ ରସ
ହରିନାମ ସୁମରେ ନିତ୍ୟେ ସାରୋଳା ଚଣ୍ଡୀ ଦାସ
୩ । ଏହା ପରେ ଖ ପୋଥିରେ ଦୁଇ ଧାଡ଼ି ଅଧିକ ଅଛି –
ଗାର୍ଗବ ନନ୍ଦକୁ କହି ପୁତ୍ରକୁ ଅଣାଇଲେ
ଶ୍ରୀକୃଷ୍ଣ ରୂପ ଦେଖି ଆନନ୍ଦ ହୋଇଲେ
୪ । ଖ ପୋଥି – କମଳ ଆକାର
୪ । ଗ ପୋଥି – କମଳର

---

୧ । ଖ ପୋଥି – ଭଗତ ଜନଙ୍କ ଭେଳା
୨ । ଗ ପୋଥି – କଂସଠାରେ
୩ । ଉପର ଚାରି ଧାଡ଼ି ଖ ପୋଥିରେ ନାହିଁ
୪ । ଖ ପୋଥି – ମୋହର ବେଦନା କହଇଂ ମୁହିଂ ତୋତେ
କ୍ଷଣେକ ନ ସହିଣ ଫେଡୁ ଯେ ତୁରିତେ

ମଣ୍ଡୁକ ହୋଇ ନନ୍ଦସୁତ ହୋଇଲା ଯେଡ଼େ ଭଳି
ହସ୍ତିନି ପୁତୁନିକୁ ଦିଲା ସେହୁ ଗିଳି ॥୧୫୩୫॥
କାଳ କଣ୍ଟକ ମୋତେ ହୋଇଲା ନନ୍ଦବାଳ[୧]
କେହୁ ଯାଇ ତାହାକୁ କରିବ ସଂଘାର[୨] ॥୧୫୩୬॥
ଯେମନ୍ତ ବୋଲି ଯହୁଁ ଦାନେବ ଭାଳିଲା
ଦଇତ୍ୟ ତୃଣାବ୍ରତ ଅଗ୍ରତେଂ ମିଳିଲା ॥୧୫୩୭॥
ମୋତେ ଯେବେ ଆଜ୍ଞା ଦେବୁ ନୃପବର
ଯେହିକ୍ଷଣି ମାରି ଆସିବି ନନ୍ଦର କୁମର ॥୧୫୩୮॥
ଯାଅ ବୋଲି ଆଜ୍ଞା ଦିଲା ଉଗ୍ରସେନ ସୁତ
ଆଜ୍ଞାପାଇ ଗୋପରେ ମିଳିଲା ତୃଣାବ୍ରତ ॥୧୫୩୯॥
ମାୟାରେ ଦଇତ ସେ ସୁନ୍ୟରେ ଅଛି ରହି
ଜାଣିଲେ ଦଇତାରି ଜନନି କୋଳେ ଥାଇ ॥୧୫୪୦॥
ମେରୁଠାରୁ ଭାରି ସେ ଯେ ହୋଇଲେ ଚକ୍ରଧର
ସହି ନ ପାରି ଯସୋଦା ଥୋଇଲେ ମେଦନିର ॥୧୫୪୧॥
ଦଇତ ମାୟା ସେ ଯେ ରଞ୍ଜିଲାକ ସେହି
ଦସ ଦିଗ ଯାକ ଯେ କୁହୁଡ଼ି ଗଲା ହୋଇ ॥୧୫୪୨॥
ଅଣଆଁସ ପବନ ବହିଲା ଖରତର
ଧୁଳି ଉଡ଼ି ଅଦୃସ୍ୟ ହୋଇଲେ ଦିନକର ॥୧୫୪୩॥
ଝାମ୍ପିଣ ଦଇତ କୃଷ୍ଣଙ୍କୁ ନେଲା ଟୋଳି
ସୁନ୍ୟରେ ଯାଆନ୍ତେ ତାହା ଜାଣିଲେ ବନମାଳି ॥୧୫୪୪॥
ଦଇତର କଣ୍ଠ ଯେ ଚାପିଲେ ଭଗବାନ
ଭୁମିରେ ପଡ଼ି ରାକ୍ଷସ ହାରିଲାକ ପ୍ରାଣ ॥୧୫୪୫॥
ଘଡ଼ଘଡ଼ି ପ୍ରାୟେକ ଯେ ସବଦ ସୁଭିଲା
ଗୋପପୁର ଯାକଂ ଚହଳ ପଡ଼ିଲା ॥୧୫୪୬॥
ଧାଇଂଲେ ଗୋପାଳୁଣି କହିଲେ ଯସୋଦାକୁ
ଆପଦ ପଡ଼ିଲା କି ଗୋ ତୋହର ପୁତ୍ରକୁ ॥୧୫୪୭॥
ସୁଣିଣ ଯସୋଦା ଯେ ପାଇଲେ ବିସାଦ
କେଉଂଠାରେ ପୁତ୍ର ଅଛି ବହନେ ଯାଇ ଖୋଜ ॥୧୫୪୮॥
ସୁଣିଲେ ମୁଦୁସୁଲି ଖୋଜିଲେ ତାର ଘର
ଦେଖିଲେ ଗୋପିନାଥ ପଡ଼ିଛନ୍ତି ସିଳାର ଉପର ॥୧୫୪୯॥
ଦଇତର ପିଣ୍ଡ ସେ ପଡ଼ିଛି ଛଟୁହୋଇ
ରୋଧିର ଲୋଚାୟେ ଯାଉଅଛି ବହି ॥୧୫୫୦॥
ଗୋପିୟେ କୃଷ୍ଣଙ୍କୁ ଟୋଳି ଘେନିଗଲେ
ଯସୋଦା କୋଳେଂ ଦେଇ ବଚନ ପ୍ରକାସିଲେ[୩] ॥୧୫୫୧॥

୧ । ଗ ପୋଥି – ନନ୍ଦସୁତ
୨ । ଗ ପୋଥି – ପ୍ରାଣ ହତ
୩ । ଖ ପୋଥିରେ ତଳ ଦୁଇ ଧାଡ଼ି ନାହିଁ

ଯେକୋଇ ପୁତ୍ରକୁ ହେଳା ତୁହି କରୁଥାଉ
ଅପାଦ ପଡ଼ିଲେ ଯେ ନ ପାଇବୁ ଆଉ ॥୧୫୫୨॥
ଯେଣୁ ଗର୍ଭ ଗୋଟି ତୋର ସିତଳ ହୋଇଥିଲା
ତେଣୁ ଦତ୍ୟଠାରୁ କୁମର ଉବୁରିଲା ॥୧୫୫୩॥

## ଯଶୋଦାଙ୍କ ନିକଟରେ ଶ୍ରୀକୃଷ୍ଣଙ୍କ ଜଞ୍ଜାଳ

ନନ୍ଦ ଆଗେ କହିଲେ ଥୋକାୟେକ ଯାଇ
ଗ୍ରହ ସ୍ୟାନ୍ତି ନିମନ୍ତେ ବ୍ରାହ୍ମଣ ଡକାଇ ॥୧୫୫୪॥
ଗୋମୁତ୍ରେ ଶ୍ରୀକୃଷ୍ଣକୁ କରାଇ ସ୍ନାହାନ
ବ୍ରାହ୍ମଣଙ୍କୁ ଦିଲେ ନନ୍ଦ ବହୁତ ଅନ୍ନ ବସ୍ତ୍ର ଦାନ ॥୧୫୫୫॥
କୋଳରେ ମହାକୁଢ଼ ଘେନିଲେ ଭଗବାନ
ହରସ ଚିତ୍ତେଂ ମୁଖେ ଦେଲେକ ଚୁମ୍ବନ ॥୧୫୫୬॥
ଆହାରେ ଦୁଖିଧନ ଅନ୍ଧର ଲଉଡ଼ି
ବୃଦ୍ଧ କାଳକୁ ମୋର ତୁହି ଯେ ସଞ୍ଚାଳି ॥୧୫୫୭॥
କୃଷ୍ଣଙ୍କୁ ନନ୍ଦ ପୁଣି ଯସୋଦା କୋଳେ ଦେଇ
ରୋହିଣି ପୁତ୍ରକୁ କୋଳରେ ଚାପଇ[୧] ॥୧୫୫୮॥
ଯେମନ୍ତେ ଅସ୍ତ ଯେ ହୋଇଲେ ଦିନକର
ଦୋହଳ ଧେନୁ ମିଳିଲେ ଗୋଗୋଷ୍ଟର ॥୧୫୫୯॥
ହେମାଂ ରାବେ ବାଛୁରି ପିଉଛନ୍ତି ଖିର
ଲେଙ୍କା ସେନାପତି ଯେ ବାରିକ ମହାକୁଢ଼ ॥୧୫୬୦॥
ପଳାଇ ବେହେରା ମାହୁନ୍ତ ରାଉଳ
ଯେ ବିଧିରେ ଗୋପାଳ ମିଳିଲେକ ଯାଇ ଗୋଗୋଷ୍ଟର ॥୧୫୬୧॥
ବଂସି ଧ୍ୱନି କରି ସେ ଯେ ଦୁହୁଛନ୍ତି ଗାଇ
ଦୁଧ ଦହି କୁରାଇରେ ପୁରାବନ୍ତି ନେଇ[୨] ॥୧୫୬୨॥
ଭାର ଭାର କରି ନନ୍ଦ ଦୁଧ ବୋହି ନେଲା
ଆପଣାର ଦୁଧ ନେଇ କୋଠରେ ରଖିଲା ॥୧୫୬୩॥
ରାତ୍ରକାଳେ ନୃପତି ଗୃହରେ ମିଳିଲା
ପହଣ୍ଡ ମଣାଇଂ ମୁଦୁସୁଲି ଘେନିଗଲା ॥୧୫୬୪॥
ପାଦ ଧୋଇ ନନ୍ଦ ସେ ଯେ ମଣୋହିରେ ବିଜେ କଲେ
ସୁବର୍ଣ୍ଣ ଥାଳିରେ ଯସୋଦା ଅର୍ଣ୍ଣ ପରସିଲେ ॥୧୫୬୫॥
ପିତାକୁ ଦେଖିଣ ସେ ଧାଇଂଲେ ଗୋବିନ୍ଦ
ଅର୍ଣ୍ଣ ଫିଙ୍ଗି ଦିଅନ୍ତି ହୋଇଣ ଆନନ୍ଦ[୩] ॥୧୫୬୬॥
ନନ୍ଦ ଡାକ ଦିଅନ୍ତି କାଢ଼ି ନିଅଗୋ ଏହାକୁ
ସୁଣିଣ ଯସୋଦା ସମ୍ଭାଳିଲେ ଶ୍ରୀକୃଷ୍ଣଙ୍କୁ ॥୧୫୬୭॥

୧ । ଖ ପୋଥି – ଶୁଣଗୋ ହେମବତୀ ତ୍ରିଲୋଚନ କହି
୨ । ଗ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ଓ ଗ ପୋଥି – ଅର୍ଣ୍ଣ ମୁଠା ମୁଠା କରି ଫିଙ୍ଗନ୍ତି ଆଦିକନ୍ଦ

ଘେନନ୍ତେ କୋଳରେ ନ ରହନ୍ତି ବାଳ
ଧାଇଁ ଯାଇ ଧରନ୍ତି ଯେ ଜଳନ୍ତା ଅନଳ ॥୧୫୬୮॥
ପୁଣି ଯସୋଦା ପୁତ୍ରକୁ ଘେନି ଯାଇ
ତର ତର ହୋଇ ନନ୍ଦ ଅର୍ଣ୍ଣ ଦିଲା ଖାଇ ॥୧୫୬୯॥
ଆଞ୍ଚୋବନ ସାରିଣ ନନ୍ଦ ତାମ୍ବୁଳ ଭୁଞ୍ଜିଲା
ବେନି କୁମରଙ୍କୁ ନନ୍ଦ କୋଳରେଂ ଘେନିଲା ॥୧୫୭୦॥
ନନ୍ଦ ଯସୋଦାର ଭାଗ୍ୟ କି କହିବି ପୁଣି
ନିଦ୍ରା କରାଇଲେ ନନ୍ଦ ହରି ଯେ ହଳପାଣି ॥୧୫୭୧॥
ସୟନ କରନ୍ତେ ରଜନି ସେସ ହୋଇ
ଡାହୁକ କୋକିଳ ମୟର ଡାକ ଦେଇଂ[୧] ॥୧୫୭୨॥
ଦେବତାଙ୍କ ଆଳେଂ ସୁଭିଲା ସଙ୍ଖଧ୍ୱନି
ଉଠିଲେ ନରନାରି ପାହିଲା ରଜନି ॥୧୫୭୩॥
ଗୃହର ଚରଚାମାନ ସେ ରୋହେଣି କରଇ
ଯସୋଦା ସଜ ହୋଇ ଦଧି ହାଣ୍ଡି ମନ୍ଥଇ ॥୧୫୭୪॥
ଶ୍ରୀକୃଷ୍ଣ ନାଥ ସୋଇଥାନ୍ତି ସେଜର ଉପର
ସଯ୍ୟାରୁ ଛାଡ଼ିଯାଇ ପଡ଼ନ୍ତି ଭୁମିର ॥୧୫୭୫॥
ପୁଣି ଯାଇ ଯସୋଦା ପାଦକୁ ଧରନ୍ତି
ଦଧି ହାଣ୍ଡିକି ସେ ମୁଖ ବଢ଼ାବନ୍ତି ॥୧୫୭୬॥
ଯେମନ୍ତେ ଯସୋଦାଙ୍କୁ କରନ୍ତି ଜଜାଂଳ
ଅଳିକରି କାନ୍ଦନ୍ତି ସେ ଯସୋଦାଙ୍କର ବାଳ[୨] ॥୧୫୭୭॥
ଯେମନ୍ତେ କୃଷ୍ଣନାଥ ନନ୍ଦ ମନ୍ଦିରେ ରହି
ପାଟିରେ ନବମାସେ ବେନି ଦନ୍ତ ଉଠଇ ॥୧୫୭୮॥
ଦେଖିଣ ଯସୋବନ୍ତି ହରସ ହୋଇଲା
ହରି ହରି ବୋଲିଣ ମୁଖରେ ଚୁମ୍ବନ ଦିଲା[୩] ॥୧୫୭୯॥
ହରି ଆସ୍ରେ କର ନରେ ହୋଇବ ଭଗତି
ହରି ଆସ୍ରେ କଲେ ଫିଟିବ ଦୃଗତି ॥୧୫୮୦॥
ହରି ଆସ୍ରେ କରି ନନ୍ଦ ସମ୍ପଦ ପାଇଛଇ
ପୁତ୍ର ପ୍ରାୟେ କରିଣ ହରିଙ୍କି ପାଳୁଥାଇ ॥୧୫୮୧॥
ହରିଙ୍କି ଭଜ ନରେ ଫିଟିବ କାଳଫାସ
ହରି ପାଦେ ସେବେ ନିତ୍ୟେଂ ସାରୋଳା ଚଣ୍ଡି ଦାସ ॥୧୫୮୨॥

## ଶକଟାସୁର ବଧ ଓ ତାର ପୂର୍ବଜନ୍ମ ବୃତ୍ତାନ୍ତ

ସଙ୍କର ମୁଖ ଚାହିଂ ପାର୍ବତି ପୁଛା କଲେ
ନନ୍ଦର ଘରେ କୃଷ୍ଣନାଥ ଯେ ରହିଲେ ॥୧୫୮୩॥

---

୧ । ଗ ପୋଥି – ରାବ ଦେଇ
୨ । ଖ ପୋଥି – ଯଶୋଦା ପାଦତଳ
୩ । ଖ ପୋଥି – ସୁମରିଲା

ଶ୍ରୀକୃଷ୍ଣଙ୍କ ହସ୍ତେ ଯେ ତୃଣାବ୍ରତ ନାସଗଲା
ସେ କଥା କଂସ ବାରତା ପାଇଲା କି ନ ପାଇଲା ॥୧୫୮୪॥
ଯେ କଥା ମୋର ଆଗେ କହ ହେ ପସୁପତି
ବଦୟନ୍ତି ସଦାସିବ ସୁଣଗୋ ପାର୍ବତି ॥୧୫୮୫॥
ଯେତେବେଳେ ତୃଣାବ୍ରତ ହାଦେ ନାସ ଗଲା
କଂସର ଡଗର ଯେ ଗୋପରେ ଭ୍ରମୁଥିଲା ॥୧୫୮୬॥
କଂସର ଆଗେ ଯାଇ କହିଲା ବାରତ[୧]
ଆଜ୍ଞା ପାଇ ତୃଣାବ୍ରତ ଗୋପକୁ ଗଲା ସେ ତୁରିତ[୨] ॥୧୫୮୭॥
ମାୟା କରିଣ ସେ ଯେ ଆସୁଥିଲା ଘେନି
ଅଧବାଟେ ନିରୋଧି ଧରିଲେ ଚକ୍ରପାଣି ॥୧୫୮୮॥
ଧରାଧରି ହୋଇଣ ପଡ଼ିଲେ ବେନି ଜନ
ସମ୍ଭାଳି ନ ପାରି ତୃଣା ଛାଡ଼ିଲା ଜିବନ ॥୧୫୮୯॥
ସୁଣିଣ ଦାନେବ ଯେ ବିସ୍ମୟ ହୋଇଲା
କାହାକୁ କହିବିଂ ମୋ ବହେଣି ଯେହା କଲା[୩] ॥୧୫୯୦॥
ମାୟା କରି ଉପାୟେ କଲାକ ବହୁତ
ନିସାୟେଣ ଘେନିଗଲା ସେ ତାର ପୁତ୍ର ॥୧୫୯୧॥
ପୁତ୍ରକୁ ବସୁଦେବ ଅଇଲା ଲୁଚାଇ
ସେ ମୋତେ ମାରିବ ଦୁର୍ଗା ଗଲେ କହି ॥୧୫୯୨॥
ଆହାରେ ସଖା ମୋର ଅଟୁରେ ତୃଣାବ୍ରତ
ଯାହାର ନାମ ସୁଣି ତିନିପୁରେ ପଡ଼ଇ ଚମକ ॥୧୫୯୩॥
ଭୁଜ ଦଣ୍ଡ ମାରନ୍ତେ ମନ୍ଦର[୪] ହୋୟେ ଚୁରି
ସେ ବଳ କାହିଂ ଗଲା ବାଳକ ହସ୍ତେ ମରି ॥୧୫୯୪॥
ଯେମନ୍ତ ବୋଲି ଭାଳିଲା ଦୃମିଲା କୁମର
କରଯୋଡ଼ି କହୁଅଛି ସକଟା ଅସୁର ॥୧୫୯୫॥
ମୋତେ ଆଜ୍ଞା ଦିଅ ମଥୁରା ନରସାଇଂ[୫]
ମାରି ପକାଇବି ନନ୍ଦର କହ୍ନାଇଂ[୬] ॥୧୫୯୬।
ଯାଅ ବୋଲି ତାକୁ ବୋଇଲାକ କଂସ
ରାଜାଠାରୁ ଅସୁର ପାଇଣ ଆଦେସ[୭] ॥୧୫୯୭॥

---

୧ । ଗ ପୋଥି – ବାରତା ଜଣାଇଲା କଂସର ଅଗ୍ରତ
୨ । ଗ ପୋଥି – ତୋ ଆଜ୍ଞା ପାଇ ଗୋପକୁ ଗଲା ତୃଣାବ୍ରତ
୨ । ଖ ପୋଥିରେ ଏହି ଦୁଇ ଧାଡ଼ି ଅଧିକ ଅଛି
ନନ୍ଦର ନନ୍ଦନକୁ ଆକାସେ ଆଣୁଥିଲା
ତାହାର ତଣ୍ଟିଚିପି ଶ୍ରୀକୃଷ୍ଣ ମାଇଲା
୩ । ଖ ଓ ଗ ପୋଥିରେ ତଳ ଦୁଇ ଧାଡ଼ି ନାହିଁ
୪ । ଖ ପୋଥି – ପର୍ବତ
୫ । ଖ ଓ ଗ ପୋଥି – ମୋତେ ଆଜ୍ଞା ହୋଇଲେ ମାରିବି ନନ୍ଦସୁତ
୬ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ
୭ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ

କଂସର ଆଜ୍ଞାରେ ମିଳିଲା ଅସୁର
ମାୟାରେ ସକଟା ରହିଲା ନନ୍ଦଘର ॥୧୫୯୮॥
ଯସୋଦା ଦ୍ରବ୍ୟମାନ ରଖିଲା ତହିଂର
ସକଟ ତଳେ ସୋଇ କାନ୍ଦୁଛନ୍ତି ଚକ୍ରଧର ॥୧୫୯୯॥
ଶ୍ରୀକୃଷ୍ଣ ପାଦ ବାଜି ଭାଜିଲା ସକଟ
ଦଇତର ପ୍ରାଣ ସେ ଗମିଲା ସୁନ୍ୟବାଟ[୧] ॥୧୬୦୦॥
ସକଟ ଭାଜଂନ୍ତେ ଭୁବନ ଚମକନ୍ତି
ସବଦ ସୁଣିଣ ବିକଳେ ଧାମନ୍ତି ଯସୋବନ୍ତି ॥୧୬୦୧॥
ସକଟ ତଳେ ପଡ଼ି ଅଛନ୍ତି ଭାବଗ୍ରାହି
ଦେଖିଣ ଯସୋଦା କୋଳ କରି ଧରଇ ॥୧୬୦୨॥
ଧାଇଂଲେ ମୁଦୁସୁଲି ମିଳିଲେ ସେଠାର
ବୋଇଲେ ଅପାଦୁ ତରିଲା ତୋ କୁମର ॥୧୬୦୩॥
ସବଦ ସୁଣିଣ ସେ ନନ୍ଦ ଆସେ ଧାଇଂ
ଆଦିଅନ୍ତ କଥା ଗୋପିଏ ଗଲେ କହିଂ ॥୧୬୦୪॥
ବଦୟନ୍ତି ଗିରିଜା ସୁଣ ହେ ପ୍ରାଣନାଥ
ଶ୍ରୀକୃଷ୍ଣ ପାଦବାଜି ମଲା ଯେ ଦଇତ ॥୧୬୦୫॥
ଦିବ୍ୟରୁପ ହୋଇଣ ସେ ସ୍ୱର୍ଗପୁର ଗଲା
ପୁର୍ବେ ସେହୁ କିସ ଜନ୍ମ ହୋଇଥିଲା ॥୧୬୦୬॥
ପୁର୍ବେ ହୋଇଥିଲା ସେ ବିଶ୍ୱାବସୁଙ୍କ କୁମର
ସୁଣସି ପ୍ରିୟା ବୋଲି ବୋଲନ୍ତି ସଙ୍କର ॥୧୬୦୭॥
ନାରଦ ସ୍ନାହାନ କରନ୍ତେ ଯେ ଗଙ୍ଗା ଜଳେଂ
କୁସ ତମ୍ବାପାତ୍ରି ଥୋଇଣ ଥିଲେ କୁଳେ[୨] ॥୧୬୦୮॥
ବିଶ୍ୱାବସୁ ଗନ୍ଧର୍ବ ଚୋରାଇଣ ନିଲା
ଖୋଜନ୍ତେ ନ ପାଇଲେ ବ୍ରହ୍ମାଙ୍କର ବଳା ॥୧୬୦୯॥
ଯୋଗରେଂ ଜାଣିଲେ ସେ ଗନ୍ଧର୍ବ ନିଲା ହରି
କୋପରେଂ ସାପ୍ୟ ତାକୁ ଦେଲେ ବ୍ରହ୍ମଚାରି ॥୧୬୧୦॥
ସୁଣିଣ ଗନ୍ଧର୍ବ ଯେ ପାଦରେ ପଡ଼ଇ
ସାପ୍ୟକୁ ଗତି ମୋତେ ଦିଅ ତପସାଇଂ[୩] ॥୧୬୧୧॥
ମଞ୍ଚେ ଜାତ ହୋଇବୁ ନାମ ସକଟାସୁର
କୃଷ୍ଣଙ୍କୁ ମାରିତେ ତୁହି ଯିବୁ ନନ୍ଦ ଘର ॥୧୬୧୨॥
ଶ୍ରୀକୃଷ୍ଣ ପାଦ ବାଜି ପ୍ରାଣ ତୋର ଯିବ
ଲେଉଟି ହୋଇବୁ ତୁ ବିଶ୍ୱାବସୁ ଗନ୍ଧର୍ବ ॥୧୬୧୩॥
ୟେମନ୍ତେ ଅସୁର ସେ ହୋଇଥିଲା ଗନ୍ଧର୍ବ ବିର
ସୁଣସି ସଖି ବୋଲି ବୋଲନ୍ତି ସଙ୍କର[୪] ॥୧୬୧୪॥

୧ । ଖ ପୋଥି – ସ୍ୱର୍ଗବାଟ
୨ । ଗ ପୋଥି – କୁସ ତୁମ୍ବୁରା ସେ ରଖିଗଲେ କୁଳେ
୩ । ଖ ଓ ଗ ପୋଥି – ସାପ୍ୟକୁ ଗତି ଦେଲେ ବ୍ରହ୍ମାଙ୍କର ତନଇ
୪ । ଖ ଓ ଗ ପୋଥି – ଦିଗାମ୍ବର

## ଶ୍ରୀକୃଷ୍ଣଙ୍କ ବାଳକେଳି

ନନ୍ଦର ଦ୍ୱାରେଂ ଯେ ରହିଲେ ବନମାଳି
ଅପୁର୍ବ ଚରିତ ଯେ ଶ୍ରୀକୃଷ୍ଣ ବାଳକେଳି ॥୧୬୧୫॥
ୟେକାନ୍ତ ମନ୍ଦିରେ ଯେ ସୋଇଲେ ବନମାଳି
ଯସୋଦା ଗଲେ ଦଧି ହାଣ୍ଡି ଭାଜଂନ୍ତି ନରହରି[୧] ॥୧୬୧୬॥
ପୁଣି ଯସୋଦାଙ୍କୁ କୃଷ୍ଣ କରୁଛନ୍ତି ଅଳି
ବ୍ୟଥା ପାଇଣ ନନ୍ଦରାଣି ଦେଉଛନ୍ତି ଗାଳି ॥୧୬୧୭॥
କେତେବେଳେଂ ଶ୍ରୀହରି ଯେ ସିକାରେଂ ଉଠନ୍ତି
ଥୋକାୟେ ଭୁଜିଂ ଥୋକାୟେ ମଜାଂରିକି ଦଅନ୍ତି ॥୧୬୧୮॥
କେତେବେଳେ ଗୃହରୁଂ ଯାଆନ୍ତି ନରହରି
ଯସୋଦା ଗଲେ ଦଧି ହାଣ୍ଡି ଭକ୍ଷନ୍ତି ଚୋରିକରି ॥୧୬୧୯॥
ଗୋପାଳଙ୍କ ଘରେଂ ପସନ୍ତି କେତେବେଳେଂ
ଭକ୍ଷନ୍ତି ଲବଣି ସେ ଯେତେ ଥାଇ ଘରେଂ ॥୧୬୨୦॥
କେତେବେଳେ ଯାଇ ବଛାଙ୍କ ଲାଜଂଧରି
ଘୁରାବନ୍ତେ ବଛାମାନେ ପଡ଼ନ୍ତି ମୁଖମାଡ଼ି ॥୧୬୨୧॥
କେତେବେଳେ ଯସୋଦା ଘେନିଣ ଭଗବାନ
ରୋହେଣି କୋଳେ ସେ ଅଛନ୍ତି ବଳରାମ ॥୧୬୨୨॥
ତଇଳ ଜର ଜର ତାଳୁରେ ଜଟପାଡ଼ି
ଲବଣି ଲୋଟିୟେ ନେଇ ଦିଅନ୍ତି ନନ୍ଦନାରି ॥୧୬୨୩॥
ଭୁଜିଂଣ ରାମ ଗୋବିନ୍ଦ ଦାଣ୍ଡରେ ଖେଳୁଥାନ୍ତି
କହନ୍ତି ଦେବି ଓମା ସୁଣହେ ପସୁପତି ॥୧୬୨୪॥

## ଯାମଳାର୍ଜ୍ଜୁନ ବଧ ଓ ତାର ପୂର୍ବଜନ୍ମ ବୃତ୍ତାନ୍ତ

ଶ୍ରୀକୃଷ୍ଣ ପାଦ ବାଜି ସକଟାସୁର ମଲା
ସେହି ବାରତା କଂସ ପାଇଲାକି ନ ପାଇଲା ॥୧୬୨୫॥
ବୋଲନ୍ତି ତ୍ରିଲୋଚନ ସୁଣଗୋ ଗଉରା
କଂସର ଅଗ୍ରତେ ସେ କହିଲା ଡଗରା ॥୧୬୨୬॥
ତୁମ୍ଭର ଆଜ୍ଞାରେଂ ସେ ଯେ ସକଟାସୁର ଗଲା
ଶ୍ରୀକୃଷ୍ଣ ପାଦବାଜି ପ୍ରାଣ ବିସର୍ଜିଲା ॥୧୬୨୭॥
ସୁଣିଣ କଂସାସୁର ପଡ଼ିଲା ମୋହ ହୋଇ
ପ୍ରତିଜ୍ଞା କରିଣ ଯାମଳା ଅର୍ଜୁନ ବୋଲଇ ॥୧୬୨୮॥
ମୋତେ ଆଜ୍ଞା ହେଲେ ମୁଁ ମାରିବିଂ ନନ୍ଦସୁତ
କରୁଅଛ ହେଳା ଭାଳୁଅଛ ନୃପନାଥ ॥୧୬୨୯॥
କଂସାସୁର ବୋଇଲା ଆସତୁ ଯାଇ ମାରି
ମଥୁରା କଟକରେ କରିବି ଦଣ୍ଡଧାରି ॥୧୬୩୦॥

୧ । ଖ ପୋଥି – ଭୁଞ୍ଜନ୍ତି ଚୋରି କରି
୧ । ଗ ପୋଥି – ଦଧି ମନ୍ଥି ଭକ୍ଷନ୍ତି ଚୋରି କରି

ଆଜ୍ଞାପାଇ ଯାମଳା ଅର୍ଜୁନ ଗଲା ଚଳି
ନନ୍ଦ ସିଂଘଦ୍ୱାରେ ବୃକ୍ଷ ରୁପେଂ ମିଳି ॥୧୬୩୧॥
ବୃସାଳ ବେନି ବୃକ୍ଷ ହୋଇଲେ ସେହିଠାର
ଯସୋଦା ଗୃହେ କରୁଥିଲେ ବ୍ୟାପାର ॥୧୬୩୨॥
ଦଧି ମନ୍ଥନ୍ତେ ଶ୍ରୀକୃଷ୍ଣ କଲେ ଅଳି
ଖୁଆ ଦଉଡ଼ି ଯସୋଦା ନ ପାରିଲେ ଚାଳି ॥୧୬୩୩॥
କୋପେଣ ଯସୋଦା ରଜୁ ଘେନି ଆସେ ଧାଇଂ
ଯାମଳା ଅର୍ଜୁନ ବୃକ୍ଷରେ ବାନ୍ଧିଲାକ ଯାଇ ॥୧୬୩୪॥
ମଧ୍ୟରେ ପସି ହରି ଟାଣିଲେ ତରୁବର
ଭାଜିଂଣ ବେନି ବୃକ୍ଷ ପଡ଼ିଲା ଭୁମିର ॥୧୬୩୫॥
ବେନି ବୃକ୍ଷରୁ ବେନି ପୁରୁଷ ବାହାରିଲେ
ମୁକତି ପାଇଣ ସେ ସ୍ୱର୍ଗକଇ ଗଲେ ॥୧୬୩୬॥
ଯେତେବେଳେ ଭାଜିଂ ପଡ଼ିଲା ଯାମଳା ତରୁବର
ମଡ଼ ମଡ଼ ସବଦେଂ ଚମକିଲା ଗୋପପୁର[1] ॥୧୬୩୭॥
କିସ କିସ ସବଦ ବୋଲି ଧାଉଂଛନ୍ତି ଲୋକେ
ଯାମଳା ଭାଜିଂଲା ବୋଲି କହୁଛନ୍ତି ଥୋକେ ॥୧୬୩୮॥
ଧାଇଂଯାଇ ପୁତ୍ରକୁ ଲୋଡ଼ନ୍ତି ଯସୋବନ୍ତି
ଦେଖିଲା ମେରୁ ପ୍ରାୟେ ବୃକ୍ଷେ ପଡ଼ିଛନ୍ତି ॥୧୬୩୯॥
ବେନି ବୃକ୍ଷ ମଧ୍ୟରେ ଅଛନ୍ତି ଚକ୍ରପାଣି
ସୁକୁ ସୁକୁ ହୋଇ କାନ୍ଦନ୍ତି ଦେଖି ତୋଳିଲା ନନ୍ଦରାଣି ॥୧୬୪୦॥
ମୁଖରେ ଚୁମ୍ବନ ଦେଇ ଘରକୁ ଘେନିଯାଇ
ହାହାକାର କଲେ ସେ ସକଳ ଗୋପ ଗୋଇ ॥୧୬୪୧॥
ବୋଲନ୍ତି ଯସୋଦା ତୁ ହୋଇଲୁ ଯେଡ଼େ ବାଇ
ଅଣହେଳା କରିଣ ପଛେ କାନ୍ଦୁ ତୁହି ॥୧୬୪୨॥
ବୃକ୍ଷରଠାରେ ବାନ୍ଧି ଅଇଲୁ କୁମର
ପୁତ୍ର ନାସ ନ ଗଲା ଭାଜିଂଲା ତରୁବର ॥୧୬୪୩॥
କି ଅବା ମଜଂରା ବୃକ୍ଷକୁ ଥିଲା ଖାଇ
ଯେମନ୍ତ ବୋଲି ଗୋପେଂ ହୁଅନ୍ତି କୁହାକୁହି ॥୧୬୪୪॥
ନନ୍ଦ ଆଦି ଗୋପାଳେ ସମସ୍ତେ ଭାଳିଲେ
ସୁଣଗୋ ସାକାମ୍ବେରି ସଙ୍କର କହିଲେ ॥୧୬୪୫॥
ଯେକ ଦିନେ ନନ୍ଦଙ୍କୁ ବୋଲନ୍ତି ଦଇତାରି
ଆଜ କୁଜଂବନକୁ ଚରାଇ ଯିବି ମୁଂ ବାଛୁରି ॥୧୬୪୬॥
ନନ୍ଦ ବୋଇଲା ତୁ ମୋହର ଦୁଖି ଧନ
କଣ୍ଟା ଖୁଞ୍ଚ ବାଜିବ ତୁ ଗଲେ କୁଜଂବନ ॥୧୬୪୭॥
ବଦୟନ୍ତି ଦୁର୍ଗା ସୁଣ ହେ ତ୍ରିପୁରାରି
ଯାମଳା ଅର୍ଜୁନକୁ ନାସିଲେ ଦଇତାରି ॥୧୬୪୮॥

୧ । ଗ ପୋଥି – ଚମକେ ତିନିପୁର

ପୁର୍ବେ ହୋଇଥିଲା ସେ ଯେ କେବଣ ହାଦେ ଜନ୍ମ
ସୁଣସି ଗିରିଜା ବୋଲି ବୋଲନ୍ତି ତ୍ରିଲୋଚନ ॥୧୬୪୯॥
ପୁର୍ବେ ହୋଇଥିଲା ସେ କୁବେର କୁମର
ଦ୍ରୋହ କର୍ମ ଅରଜିଲେ ଜନନି ପିତାଠାର ॥୧୬୫୦॥
ଦୁଷ୍ଟପଣ ଆଚରିଲେ କଲେକ ଜିବହିଂସା[1]
ପାସଣ୍ଡ ପଣ ହୋଇ ନ ମାନିଲେ ପିତାମାତା ॥୪୬୫୧॥
ପୁତ୍ରଙ୍କର ଅନିତି ସେ ଦେଖିଲେ କୁବେର
ବୋଇଲେ ଚାଣ୍ଡାଳରେ ଅସୁର ତନୁ ଧର ॥୧୬୫୨॥
ସମୟ ପରିଯନ୍ତେ ଥିବ ତନୁ ଧରି[2]
ଦ୍ୱାପର ଯୁଗରେ ଜାତ ହୋଇବେ ମୁରାରି[3] ॥୧୬୫୩॥
ଦେବକି ଗର୍ଭରୁ ସେ ହୋଇବେ ଅବତାର
ବଢ଼ିବେ ନନ୍ଦ ଘରେ ଯସୋଦା ଦେବେ କ୍ଷିର ॥୧୬୫୪॥
ତୁମ୍ଭେ ସେହିକାଳେ ହୋଇବ ତରୁବର
ଯାମଳା ଅର୍ଜୁନ ନାମ ସେ ହୋଇବ ତୁମ୍ଭର ॥୧୬୫୫॥
ତୁମ୍ଭକୁ କୃଷ୍ଣନାଥ ପକାଇବେ ଉପାଡ଼ି
ସାପ ପାରି କରି ଆସିବ ନିଜ ପୁରି ॥୧୬୫୬॥
ଯେମନ୍ତ ସାପ ସେ ଯେ ପୁର୍ବରେ ପାଇଥିଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୧୪୫୭॥

## ଅଘାସୁର ବଧ ଓ ତାର ପୂର୍ବଜନ୍ମ ବୃତ୍ତାନ୍ତ

ନନ୍ଦର ଘରେ ଯାଇ ରହିଲେ ବନମାଳି
ଦେଖିଣ ସନ୍ଥ ଦୁଷ୍ଟଜନ ଯାନ୍ତି ତରି ॥୧୬୫୮॥
ଗୋରୁ ଗୋପାଳେ ପର୍ବତ ନଦ ନଦି
ବୃକ୍ଷ ଲତା ତୃଣ କୀଟ ଚଢ଼ାଇ ଆଦି ॥୧୬୫୯॥
ସମସ୍ତ ଯେକାବେଳେ ତାରିଲେ[4] ଚକ୍ରଧର
ବାଛୁରି ଚରାବନ୍ତି କାଳନ୍ଦି କୋଳର[5] ॥୧୬୬୦॥
ଗୋପାଳ ସୁତ ସଙ୍ଗେ ଖେଳୁଥାନ୍ତି ହରି
ସନ୍ଧ୍ୟାକାଳ ହୋଇଲେ ମିଳନ୍ତି ଦଇତାରି ॥୧୬୬୧॥
ପାର୍ବତି ପଚାରିଲେ ସୁଣ ହେ ତ୍ରିଲୋଚନ
ଗୋବିନ୍ଦ ଯେ ନାସ କଲେ ଯାମଳା ଅର୍ଜୁନ ॥୧୬୬୨॥
ସେ କଥା କଂସ ଜାଣିଲା କି ନ ଜାଣିଲା
ଜାଣିଣ ଦଇତ ସେ କିସ ବିଚାରିଲା ॥୧୬୬୩॥

୧ । ଖ ପୋଥି – କରିଣ ଜୀବହତ୍ୟା
୨ । ଖ ଓ ଗ ପୋଥି – ଦେହ ବହି
୩ । ଖ ଓ ଗ ପୋଥି – ଭାବଗ୍ରାହୀ
୪ । ଗ ପୋଥି – ସୁମରିଲେ
୫ । ଗ ପୋଥି – କୁଞ୍ଜର

କଥୟନ୍ତି ସସିଧର ସୁଣଗୋ ଗଉରି
କଂସର ଡଗର ଯେ ଥିଲା ଗୋପପୁରି ॥୧୬୬୪॥
ଯାମଳା ହତ କଥା କହିଲା କଂସ ଆଗେ
ସୁଣିଣ କଂସାସୁର[1] ପଡ଼ିଲା ଭୁମିଭାଗେ ॥୧୬୬୫॥
ମନ୍ଦର ହୁଂ ଆଷ୍ଟ ଅଟଇ ତାର ଦେହ
କେମନ୍ତେ ନାସ କଲା ଗଉଡ଼ର ପୁଅ ॥୧୬୬୬॥
ଯେମନ୍ତ ସୁଣି କଂସ ବହୁତ ଭାଳିଲା
ଅର୍ଘାସୁର ଆସିଣ ସେ ଆଗରେ ଉଭା ହେଲା ॥୧୬୬୭॥
ବୋଇଲା କାହିଂପାଇଂ ନ ଦେଉ ମୋତେ ଆଜ୍ଞା
ଯେହିକ୍ଷଣି ମାରି ଆସିବି ନନ୍ଦ କାହ୍ନା ॥୧୬୬୮॥
କଂସାସୁର ବୋଇଲା ଯାଅ ଯେହିକ୍ଷଣି
ମାରିଆସ ମଇତ୍ର ତୁ ନନ୍ଦସୁତେ ବେନି ॥୧୬୬୯॥
ଆଜ୍ଞା ପାଇଣ ସେ ଚଳିଲା ଦଇତ
ଗୋପ ବୃନ୍ଦାବନେ ସେ ହୋଇଲା ଉପଗତ ॥୧୬୭୦॥
ସଦାସିବ ମୁଖ ଚାହିଂ ପଚାରିଲେ ଗଉରି
ଦେବକି ଗର୍ଭରେ ଯେ ରହିଲେ ଦେବହରି ॥୧୬୭୧॥
ବସୁଦେବ ଛାଡ଼ି ଅଇଲା ନନ୍ଦଘର
ଯେକଥା ଜାଣିଣ କିମ୍ପା ନ ଗଲା କଂସାସୁର ॥୧୬୭୨॥
ଯେତେ ଦଇତକୁ ଅଛଇ ପ୍ରବର୍ତାଇଣ
ସଂସୟ ଯାଉ ମୋର କହହେ ତ୍ରିଲୋଚନ ॥୧୬୭୩॥
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି
ବଇବସୁତ ଆଗେ ଯାହା କହିଲେ ଅଗସ୍ତି ॥୧୬୭୪॥
ରୋହିଣି ଗାଇ ରୁପେ କୁମର ପ୍ରସବିଲା
ଦେଖିବ ବୋଲିଣ ସେ କଂସ ବିଚାରିଲା ॥୧୬୭୫॥
ଅକ୍ରୁର ବୋଇଲା ଯେ ନୁହଇ ନୁହଇ
ମନୁସ୍ୟ ଗୋଟିୟେ ତ ଜନ୍ମ କଲା ଗାଇ ॥୧୬୭୬॥
ତୁମ୍ଭେ ଯେବେ ନୃପତି ଦେଖିବାକୁ ଯିବ
ଅଳପ ଦିନେ ରାଜା ପ୍ରାଣ ବିସର୍ଜିବ[2] ॥୧୬୭୭॥
ରାଜ୍ୟର ପାପ ସିନା ଲାଗଇ ରାଜାକୁ
ସୁଣି କଂସ ସେଦିନୁଂ ନଗଲା ଗୋପକୁ ॥୧୬୭୮॥
ଯେଥୁ ଅନ୍ୟନ୍ତରେ ସୁଣଗୋ ମହାମାଇ
ଅର୍ଘାସୁର ଦୈତ୍ୟ ବୃନ୍ଦାବନେ ମିଳଇ ॥୧୬୭୯॥
ସର୍ପ ଗୋଟାୟେକ ହୋଇଲାକ ସେହି
ଆକାସ ମଞ୍ଚରେ ବେନି ପାଟି ଦେଇ ॥୧୬୮୦॥

୧ । ଖ ଓ ଗ ପୋଥି – କଂସ ମୁର୍ଛା ଯାଇ
୨ । ଖ ପୋଥି – ଅଳ୍ପ ଦିନେଣ ଯେ ନାଶ ଯିବୁ ତୁହି

ଯେଥୁ ଅନ୍ୟନ୍ତରେ ଦେବ ଦଇତାରି
ଓଟାଇଂରୁ କାଢ଼ି ଦିଲାକ ବାଛୁରି ॥୧୬୮୧॥
ଗୋପାଳ ପୁଅଙ୍କୁ ସେ ସଙ୍ଗତରେ ଘେନି
ବନକୁ ଯାଉଛନ୍ତି ଶ୍ରୀକୃଷ୍ଣ[1] ହଳପାଣି ॥୧୬୮୨॥
ଜାଣିଣ ଜଗନ୍ନାଥ ପଛରେ ରହିଲେ
ଅଗ୍ରଭରେ ଗୋପସୁତ ବେଗେ ଚଳିଗଲେ ॥୧୬୮୩॥
ଅସୁର ଗର୍ଭେ ପସିଲେ ସର୍ବେ ଯାଇ
ରହ ରହ ବୋଲିଣ ଡାକନ୍ତି ଭାବଗ୍ରାହି ॥୧୬୮୪॥
ଦଇତ୍ୟ ପାଟି ସେ ଯେ କରିଛି ବିସ୍ତାର
ଗର୍ଭରେ ପସିଗଲେ ଦେବ ଚକ୍ରଧର ॥୧୬୮୫॥
ଅର୍ଘାସୁର ପାଟି ପାଡ଼ିଲାକ ତହିଂ
ଗର୍ଭରେ ବିଶ୍ୱରୁପ ଧଇଲେ ଭାବଗ୍ରାହି[2] ॥୧୬୮୬॥
କାୟା ବିସ୍ତାରନ୍ତେ ଦଇତ୍ୟ ପ୍ରାଣ ଛାଡ଼ି
ପ୍ରାଣଛାଡ଼ି ଦଇତ୍ୟ ପଡ଼ିଲା ମହିଆଳି ॥୧୬୮୭॥
ତାହାର ତହୁଂ ପୁରୁଷେ ଜାତ ହେଲା
ଶ୍ରୀକୃଷ୍ଣ ଦର୍ସନେ[3] ସ୍ୱର୍ଗକଇ ଗଲା ॥୧୬୮୮॥
ଗୋପସୁତ ବାଛୁରି ସମସ୍ତେ ଜିବ ପାଇ
ବେନି ଗିରି ପ୍ରାୟେ ଦଇତ ପଡ଼ିଛଇ ॥୧୬୮୯॥
ଯେମନ୍ତେ ବନରେ ବଛା ଚରାବନ୍ତି
ଦ୍ୱିତିୟ ପ୍ରହର ଯେ ଦିନକର ଜ୍ୟୋତି ॥୧୬୯୦॥
ଗୋବିନ୍ଦେ ବୋଇଲେ କେ କିସ ଆଣିଅଛ
ଯେଠାରେ ଭୁଜିଂବା ବାବୁ ବସିଣ ପ୍ରତକ୍ଷ ॥୧୬୯୧॥
ସମସ୍ତେ ଫେଡ଼ିଲେ ଯେ ଯାହା ଆଣିଥିଲେ
ଭୁଜିଂଣ ବସିଲେ ଯେ ଗୋବିନ୍ଦ ଗୋପାଳେ ॥୧୬୯୨॥
ପାର୍ବତି ପୁଛା କଲେ ସୁଣ ହେ ସୁଳଧାରି
ଅର୍ଘାସୁରକୁ ଯେ ମାଇଲେ ଦଇତାରି ॥୧୬୯୩॥
ଶ୍ରୀକୃଷ୍ଣ ହସ୍ତେ ମରି ମୁକତି ପାଇଲା
ପୁର୍ବେ ସେ କେବଣ ଜନ୍ମ ହୋଇଥିଲା ॥୧୬୯୪॥
ସୁଣଗୋ ସଖି ବୋଲି ବୋଲନ୍ତି ଦିଗବାସ
ପୁର୍ବେ ସେ ହୋଇଥିଲା ଇନ୍ଦ୍ରରାଜ ସିସ ॥୧୬୯୫॥
କୁବେର ହୋଇଲା ଗୁରୁ ସେ ତାହାର
ଦିନେ ବିଜେ କଲା ଯାଇ ଆକାସ ମଣ୍ଡଳର ॥୧୬୯୬॥
ଇନ୍ଦ୍ରସୁତ ଗର୍ବି ହୋଇତ ନ ଉଠିଲା
ଗୁରୁ ବୋଲି ନ ମାନି ନମସ୍କାର ନ କଲା ॥୧୬୯୭॥

୧ । ଖ ଓ ଗ ପୋଥି – ଗୋବିନ୍ଦ
୨ । ଗ ପୋଥି – ଗୋସାଇଂ
୩ । ଖ ଓ ଗ ପୋଥି – ପୁଷ୍ପ ଯାନ ଚଢ଼ି

ଦେଖିଣ କୋପିତ ହୋଇଲେ କୁବେର
ସାପ୍ୟ ଦେଲେ ଗନ୍ଧର୍ବ ତୁ ଅସୁର ତନୁଧର ॥୧୬୯୮॥
ଗୁରୁ ବୋଲି ମୋତେ ନ ମାନିଲୁ ତୁହି
ମଞ୍ଚପୁର ଯାଅ ଯେବେଂ ଅସୁର ତନୁ ବହି ॥୧୬୯୯॥
କହୁଂ କହୁଂ ଗନ୍ଧର୍ବ ରାକ୍ଷସ ହୋଇଲା
କୁବେର ପାଦେଂ ପଡ଼ିଣ ମୁକତି ମାଗିଲା ॥୧୭୦୦॥
ବୋଲନ୍ତି ଧନପତି ମଞ୍ଚରେ ଥାଅ ରହି
ସୁବାହୁ ଦ୍ୱାପର ଯୁଗେଂ ଭଗବାନ ଜନ୍ମ ହୋଇ ॥୧୭୦୧॥
କଂସର ସେନାପତି ତୁହି ହୋଇଥିବୁ
ବୃନ୍ଦାବନେ ଗୋବିନ୍ଦ ହସ୍ତରେ ମରିବୁ ॥୧୭୦୨॥
ସେହିକାଳେ ପାପ ଯିବ ତୋର ପାର
ଗନ୍ଧର୍ବ ହୋଇଣ ଆସିବୁ ସ୍ୱର୍ଗପୁର ॥୧୭୦୩॥
ଏମନ୍ତ ବୋଲିଣ ଯହୁଂ ବୋଇଲେ କୁବେର
ମୁକତି ଗତି ସେ ଯେ ସୁଣିଲା କର୍ଣ୍ଣର ॥୧୭୦୪॥

## କେଶୀ ଦୈତ୍ୟ ବଧ ଓ ତାର ପୂର୍ବଜନ୍ମ ବୃତ୍ତାନ୍ତ

ସୁଣସି ଭବାନି ଗୋ ସଦାସିବ କହି
ଗୋପାଳ ମେଳେ ବସି ଭୁଜଂନ୍ତି ଭାବଗ୍ରାହି ॥୧୭୦୫॥
ଦେଖିଣ ବେଦପତି ବିକାର ମନ ବହି
ବଛା ବାଳେକ ସକଳ ହରି ଘେନି ଯାଇ ॥୧୭୦୬॥
ନ ଦେଖି ହରି ଖୋଜି ନ ପାଇଲେ ବଛା
ନନ୍ଦ ଗାଳି ଦେବ ବୋଲି ଶ୍ରୀହରି ଗଲେ ମୁର୍ଚ୍ଛା ॥୧୭୦୭॥
ବିଧାତା ନେଲା ବୋଲିଣ ଧ୍ୟାନରେ ଜାଣିଲେ
ବଛା ବାଳେକ ହରି ଦେହରୁଂ ଜାତ କଲେ ॥୧୭୦୮॥
ସନ୍ଧ୍ୟାକାଳେ ଗୃହରେ ମିଳିଲେ ବନମାଳି
ନନ୍ଦର ଆଗରେ ସମର୍ପିଲେ ବଛା ପଲି ॥୧୭୦୯॥
ଯେ ଯାହା ଘରକୁ ଗୋପସୁତ ଗଲେ
ଗାଇଙ୍କ ସ୍ତନରୁ ଦୁଧ ବଛାୟେ ପିଇଲେ ॥୧୭୧୦॥
ପୁର୍ବହୁଂ ଦୁଗୁଣ ହୋଇ ସ୍ନେହ ତାହାଙ୍କର
ବଦୟନ୍ତି ହେମବନ୍ତି ସୁଣ ହେ ଦିଗାମ୍ବର ॥୧୭୧୧॥
ବୃନ୍ଦାବନରେ ଯେ ଅର୍ଘା ଦଇତ ନାସଗଲା
ସେ କଥା କଂସାସୁର ଜାଣିଲା କି ନ ଜାଣିଲା ॥୧୭୧୨॥
ଯେକଥା ମୋର ଆଗେ କହ ହେ ପ୍ରାଣନାଥ
ଓମା ଦେବିର ବଚନେ ବୋଲନ୍ତି ମହେସ ॥୧୭୧୩॥
ଡଗର ଜଣାଇଲା ସୁଣ ନୃପବର
ଆଜ୍ଞା ପାଇ ଗୋପକୁ ଯେ ଗଲା ଅର୍ଘାସୁର ॥୧୭୧୪॥
ଗୋପାଳ ସହିତେଂ ଯେ କୃଷ୍ଣଙ୍କୁ ଗିଳିଲା
ପଜଂରା ବିଦାରି ବାହାର ହୋଇଲେ ନନ୍ଦବଳା ॥୧୭୧୫॥
ନନ୍ଦ ସୁତ ଲାଗି ଯେ ସମସ୍ତେ ଜିବ ପାଇଂ
ମଲା ଅର୍ଘାସୁର କହିଲି ମୋହର ଦୋସ ନାହିଂ ॥୧୭୧୬॥
ସୁଣିଣ ସୋକ କଲା ହେତି ପ୍ରହେତିର ନାହା
ଅର୍ଘାସୁର ମୋର ଯେ ହୋଇଥିଲା ବାହା ॥୧୭୧୭॥
ଚାଲନ୍ତେ ପୃଥିବିରେ ବାସୁକି କରେ ଡକା
ଧନୁହି ଆମଞ୍ଚିଲେ ଇନ୍ଦ୍ର କରେ ସଙ୍କା ॥୧୭୧୮॥
ମେରୁର ସମାନେ ସେ ଦୁରକୁ ଦିସୁଥାଇ
ତେଡ଼େ ବିର ଗୋଟା ବାଳକ ହସ୍ତରେଂ ନାସଯାଇ ॥୧୭୧୯॥
ଯେତେକ ସେନାପତି ଗୋପପୁର ଗଲେ
ଜିବନ୍ତା ହୋଇ କେହି ଗୋଟିୟେ ନଇଲେ ॥୧୭୨୦॥
କେହୁ ସେ ତାହାକୁ ଆସିବ ବିନାସି
ଯେମନ୍ତେ କହନ୍ତେ[୧] ଉଠିଲା ବିରକେସି ॥୧୭୨୧॥
ବୋଇଲା ମୁହିଂ ପୁଣି କରିବି ଉପାୟେ
ମାରିବିଂ ନନ୍ଦସୁତ ଆଜ୍ଞା ଦିଅ ରାୟେ ॥୧୭୨୨॥
କଂସ ବୋଇଲା ବାବୁ ପାରିବୁ ଯେବେ ମାରି
ସମର୍ପିବି[୨] ରାଜ୍ୟ ଭାର ହୋଇବୁ ଅଧିକାରି ॥୧୭୨୩॥
ଆଜ୍ଞା ପାଇଣ କେସି ଦଇତ କଲା ଧାପ
ଗୋପରେ ମିଳିଣ ସେ ହୋଇଲା ଅଶ୍ୱ ରୁପ ॥୧୭୨୪॥
ହ୍ରେସା ରାବ କରିଣ ସେ ଗର୍ଜନ କରଇ
ରୁପ ଭୟଙ୍କର ତାର କୁହୁଡ଼ି ଆଛାଦଇ ॥୧୭୨୫॥
କ୍ଷଣକେ ମୁତଇ କ୍ଷଣକେ କରେ ଖୁରି
ଭାଜଂଇ ତରୁବର ଗୋପରେ ପଡ଼େ ହୁରି ॥୧୭୨୬॥
କେସି ଅଇଲା ବୋଲି ଗୋବିନ୍ଦ ଜାଣିଲେ
ବାଳକ ସଙ୍ଗତେ ଯେ ଗମନ କରିଗଲେ[୩] ॥୧୭୨୭॥
ଦଇତ ଅଗ୍ରତେ ମିଳିଲେ ଚକ୍ରଧର
ଗୋବିନ୍ଦକୁ ଦେଖି ଧାଇଂଲା ଅସୁର ॥୧୭୨୮॥
ଉର୍ଦ୍ଧକୁ ଟେକିଅଛି ଦଇତ ବେନି ଯେ ଚରଣ
ଡେଇଂଣ ବେନି ଗୋଡ଼ ଧଇଲେ ଭଗବାନ ॥୧୭୨୯॥
ବାଳକେ ଯେମନ୍ତେ ବୁଲାନ୍ତି ଲଉଡ଼ି
ସେହିରୁପେ ବୁଲାବନ୍ତେ ଦାନବ ପ୍ରାଣ ଛାଡ଼ି ॥୧୭୩୦॥
ମୁଖବାଟେଂ ରୋଧିର ବହଇ ଖଳ ଖଳ
ଦଇତ ଦେହରୁ ପୁରୁଷେ ହୋଇଲା ବାହାର ॥୧୭୩୧॥
ହରିଙ୍କି ଓଳଗିଣ ସ୍ୱର୍ଗକଇ ଗଲା
ଗିରିବର ସମାନେ ମୃତ୍ୟୁ ପିଣ୍ଡ ସେ ପଡ଼ିଲା ॥୧୭୩୨॥

---

୧ । ଖ ପୋଥି – ଯେହା ସୁଣି ସିର ଝୁଣି
୨ । ଗ ପୋଥି – ସଂସର୍ପି
୩ । ଖ ପୋଥି – ବାଳକ ସଙ୍ଗ ଉପେକ୍ଷି ଗମନ କରିଲେ

ସଦାସିବ ଆଗେ ବଦୟନ୍ତି ଗଉରି
ପୁର୍ବରେ କେସି କେହୁ ଶ୍ରୀକୃଷ୍ଣ ହସ୍ତେଂ ମରି ॥୧୭୩୩॥
ବଦୟନ୍ତି ସଦାସିବ ତ୍ରେତୟା ଯୁଗର
ହୁହୁ ଗନ୍ଧର୍ବ ଯେ କୁହୁ ନାମ ତାହାର ॥୧୭୩୪॥
ଭ୍ରମନ୍ତେ ଆଦିତ୍ୟ ମଣ୍ଡଳେ ମିଳିଲା
ଅଶ୍ୱ ଗୋଟିୟେ ଚୋରାଇଣ ନିଲା ॥୧୭୩୫॥
ଆଦିତ୍ୟ ଦେଖିଲେ ଯେ ସାଳରେ ଅଶ୍ୱ ନାହିଂ
ହୁହୁ ଗନ୍ଧର୍ବ ସେ ଆକାସେ ଭ୍ରମୁଛଇ ॥୧୭୩୬॥
ଦେଖିଣ କୋପିତ ଯେ ହୋଇଲେ ଦିନକର
ବୋଇଲେ ଗନ୍ଧର୍ବରେ ହୋଇଲୁ ଅଶ୍ୱଚୋର ॥୧୭୩୭॥
ରାକ୍ଷସର ପ୍ରକୃତି ତୁହି ସେ ଧଇଲୁ
ଦେବତାଙ୍କ ଅଶ୍ୱକୁ ତୁ ଚୋରାଇଣ ନେଲୁ ॥୧୭୩୮॥
ଯାଅରେ ମଞ୍ଚରେ ତୁ ହୋଅରେ ରାକ୍ଷସତ
ସୁଣିଣ ଗନ୍ଧର୍ବ ପଡ଼ିଲା ପାଦ ଗତ ॥୧୭୩୯॥
ସାପ୍ୟକୁ କାରଣ ଯେବେଂ[1] କହ ହେ ଦିନମଣି
ଦିବାକର[2] ବୋଇଲେ ତୁ ଯାଅ ଯା ମେଦିନି ॥୧୭୪୦॥
ତ୍ରେତୟା ସମ୍ପୁର୍ଣ୍ଣେ ଦ୍ୱାପର ହୋଇବ
କଂସର ସେନାପତି କେସି ନାମ ହୋଇବ ॥୧୭୪୧॥
ବାସୁଦେବ ଜନ୍ମିବେ ସେ ଦେବକି ଉଦର
ଅଶ୍ୱ ରୁପ ଧରି ତୁ ମିଳିବୁ ସେହିଠାର ॥୧୭୪୨॥
ଯେଣୁ ଆମ୍ଭ ଅଶ୍ୱ ତୁ ଯେ ଚୋରାଇଣ ନେଲୁ
ତେଣୁ ଅଶ୍ୱରୁପ ଗୋଟି ଧରିବୁରେ ବାବୁ ॥୧୭୪୩॥
ଶ୍ରୀହରି ହସ୍ତେ ମରି ମେଣ୍ଟିବୁ ଆମ୍ଭ ସାପ୍ୟ
ପୁଣି ଗନ୍ଧର୍ବ ହୋଇବୁ ବୋଲି ବୋଇଲେ ଆଦିତ୍ୟ ॥୧୭୪୪॥

## ବ୍ରହ୍ମାଙ୍କର ଶ୍ରୀକୃଷ୍ଣଙ୍କୁ ଗୋବତ୍ସାଦି ପ୍ରତ୍ୟର୍ପଣ

ସଙ୍କର ମୁଖ ଚାହିଂ ବଦୟନ୍ତି ପାର୍ବତି
ବଛା ବାଳେକ ଯେବେ ହରି ନିଲା ବେଦପତି ॥୧୭୪୫॥
ନବତନ ରୁପ ତ ଶ୍ରୀହରି ଭିଆଇଲେ
ପୁରାତନ ବଛା ବ୍ରହ୍ମା ଦିଲେ କି ନ ଦିଲେ ॥୧୭୪୬॥
ପାର୍ବତିଙ୍କ ବଚନେ ବଦୟନ୍ତି ତ୍ରିପୁରାରି
ଯେକଦିନେ ବିଜୟେ କଲେକ[3] କୁସଧାରି ॥୧୭୪୭॥
ଦେଖିଲେ ଶ୍ରୀହରି ଯେ ବାଛୋରି ଚରାବନ୍ତି
ଗୋପାଳଙ୍କ ପୋୟେ ଯେ ସଙ୍ଗତେ ଅଛନ୍ତି ॥୧୭୪୮॥

---

୧ । ଖ ପୋଥି – ଗତି ଯେବେ
୨ । ଖ ଓ ଗ ପୋଥି – କରତା
୩ । ଖ ପୋଥି – ବୃନ୍ଦାବନେ ପ୍ରବେସ

ବିଧାତା ବୋଇଲେ ମୁଂ ଅପୁର୍ବଂ ଦେଖିଲିଂ
ବୃନ୍ଦାବନେ ଶ୍ରୀକୃଷ୍ଣ ଚରାବନ୍ତି ବଛା ପଲିଂ[1] ॥୧୭୪୯॥
ଆନ ବିଧାତାଏ କଲେ ଚକ୍ରଧର
ଏମନ୍ତ ବିଚାରି ଭାଳଇ ଯେ ବେଦବର[2] ॥୧୭୫୦॥
ପୁଣି ନିଜ ନବରେ ବଛା ବାଳକକୁ ଦେଖି
ଆରତ ହୋଇ ଧାତା ହୋଇଲେ ଅଶ୍ରୁମୁଖି ॥୧୭୫୧॥
ଭୟରେ ସ୍ମରହର ଶ୍ରୀକୃଷ୍ଣଠାରେ ମିଳି
ବେନି କର ଯୋଡ଼ି ସ୍ତୁତିବାଚ ପଢ଼ି ॥୧୭୫୨॥
ଚାରିମୁଖରେ ବିଧାତା ସ୍ତୁତି ବୋଲନ୍ତି ହରି ହରି
କୃପାଜଳ ନୟନ କର ହେ ମୋତେ ପାରି ॥୧୭୫୩॥
ତୋହର ମାୟା ଦେବ ଜାଣି ତ ନପାରିଲି
ଅଜ୍ଞାନେ ବଛା ବାଳେକ ହରି ନିଲି ॥୧୭୫୪॥
ନବତନ ବଛା ଯେ ବାଳେକ ଭିଆଇ
ମୋହର ବଡ଼ ପଣ ସାରିଲୁ ଭାବଗ୍ରାହି ॥୧୭୫୫॥
ଯେତେ କହି ବିଧାତା ଶ୍ରୀହରି ପାଦେଂ ସୋଇ
ନିଳ[3] ପାସାଣ କି ଜଡ଼ିତ ଗଲା ହୋଇ ॥୧୭୫୬॥
କୋପ ସ୍ୟାନ୍ତି କରିଣ ବୋଲନ୍ତି ଗଦାଧର
ଉଠ ଉଠ ବୋଲି ଡାକନ୍ତି କିପାଂ ପଡ଼ିଛୁ ବେଦବର ॥୧୭୫୭॥
ଯେତେକ ଦ୍ରୋହ କଲୁ ସକଳ ତେଜିଲିଂ
ଯେବେ ତୁ ଆଣିଦିଅ ଏ ବାଳେକ ବଛା ପଲିଂ ॥୧୭୫୮॥
ଆଜ୍ଞା ପାଇଣ ସେ ବିଧାତା ଚଳିଗଲା
ବଛା ବାଳେକ ହରି ଛାମୁରେ ସମର୍ପିଲା ॥୧୭୫୯॥
ମାୟା ବଛାକୁ ହରି ଗର୍ଭରେ ସଂହରିଲେ
ସୁଣସି ଗିରିଜା ଗୋ ସଙ୍କର କହିଲେ ॥୧୭୬୦॥
ବ୍ରହ୍ମା ଦିଲା ବଛା ମିଳିଲା ନବର
ମାତା ଆଗେଂ କହିଲେ ଯେତେ ମଲେ ନିସାଚର ॥୧୭୬୧॥
ବ୍ରହ୍ମାର ପୁରେଂ ବଛା ବାଳେକ ବରସେ ରହିଥିଲେ
ଅର୍ଘାସୁର ମଲା କଥା ସେଦିନ କହିଲେ ॥୧୭୬୨॥

## ଶ୍ରୀକୃଷ୍ଣଙ୍କ ଦୁଷ୍ଟାମି, ଯଶୋଦାଙ୍କ ନିକଟରେ ଗୋପୀମାନଙ୍କ ଅଭିଯୋଗ ଓ ଯଶୋଦାଙ୍କୁ ଶ୍ରୀକୃଷ୍ଣଙ୍କ ବିଶ୍ୱରୂପ ଦର୍ଶନ

ସୁଣଗୋ ପ୍ରିୟା ବୋଲିଣ ବୋଲନ୍ତି ଦେବସୁଳି
ଅପୁର୍ବ ଚରିତ ଯେ ଶ୍ରୀକୃଷ୍ଣ ବାଳକେଳି ॥୧୭୬୩॥

---

୧ । ଏହି ଧାଡ଼ି ଖ ଓ ଗ ପୋଥିରେ ନାହିଁ
୨ । ଏହି ଧାଡ଼ି ଖ ଓ ଗ ପୋଥିରେ ନାହିଁ
୩ । ଗ ପୋଥି – ସୁବର୍ଣ୍ଣରେ ନିକି

ଯେ ଯେହା ଶ୍ରଦ୍ଧା ଚିତେ ପଢ଼ନ୍ତି ସୁଣନ୍ତି
ଗତ ଆଗତର ପାତକମାନ ନାଶନ୍ତି ॥୧୭୬୪॥
ଯେକଦିନେ ଯସୋଦା ଯେ କରୁଥିଲେ ବ୍ୟାପାର
ସମସ୍ତ ଗୋପି ଯାଇ ମିଳିଲେ ସେଠାର ॥୧୭୬୫॥
କେ ବୋଲଇ ତୋର କୁମର ମନ୍ଦ କଲା
ମୋହର କୁମରକୁ ବିଧାଯେ ମାଇଲା ॥୧୭୬୬॥
କେ ବୋଲେ ମୋ ପୁତ୍ରକୁ ବସଇ କାହ୍ନୁ ମାଡ଼ି
ରୋଧିର ବହୁଅଛି ଆଣ୍ଠୁ ଗଣ୍ଠି ଛିଡ଼ି ॥୧୭୬୭॥
କେ ବୋଲେ ବହୁ ମୋର ଜଳକୁ ଯାଉଥିଲା
ଲଉଡ଼ି ମାରିଣ ତାର କଳସି ଚୁନାକଲା ॥୧୭୬୮॥
କେ ବୋଲଇ ମୁହିଂ ନଥିଲଇଂ ଘର
ଦଧିରୁ କାଢ଼ି ଖାଇଲା ସବୁ ଦୁଧ ସର[୧] ॥୧୭୬୯॥
କେ ବୋଲଇ ମୋର ଲବଣି ଚୋରିକଲା
ଅଧେକ ଖାଇ ଅଧେ ମର୍କଟିକିଂ ଦେଲା ॥୧୭୭୦॥
କେ ବୋଲଇ ମୋର ଭାଜିଂଲା ଦଧି ହାଣ୍ଡି
ମୋତେ ଦେଖି ବୋଲଇ ତୋ ଘର ଅଛି ମୁଂ ଜଗି ॥୧୭୭୧॥
ମୁହିଂ ଯେତେବେଳେ ଯାଇ ପସିଲଇଂ ଘରେ
ତେତେବେଳେ ପଳାଇଗଲାକ ଦାଣ୍ଡରେ ॥୧୭୭୨॥
କେ ବୋଲଇ ଅନ୍ଧାର ଘରେ ଦଧି ରଖିଥିଲି ନେଇ
କି ମନ୍ତ୍ର ଜାଣେ ଯେ ଗଲାକ ଆଲୁଅ ହୋଇ ॥୧୭୭୩॥
ଯେତେକ ରଖିଥିଲି ସକଳ ଖାଇଲା
ମାରିବାକୁ ମୋହର ସତ ନ ବଳିଲା ॥୧୭୭୪॥
କେ ବୋଲେ ବାଛୁରି ମୋର ଥିଲେ ଓଟାଇ
ପିଇଲେ ଗାଇ ସ୍ତନ ଦିଲାକ ଫିଟାଇ ॥୧୭୭୫॥
କେ ବୋଲଇ ମୋହର ଉପରେ ମୁତି ଦିଲା
ମେଘ ବରସିଲା ବୋଲି ଯେ କହିଲା ॥୧୭୭୬॥
କେ ବୋଲଇ ମୋର ଘରେ ଲଗାଇଲା ଯୁଇ
ଧାଇଂ ଆସ ବୋଲିଣ ଜଳ ସେ ଢାଳି ଦେଇ ॥୧୭୭୭॥
କେ ବୋଲଇ ବାଳେକ ମୋ ସେଯରେ ସୋଇଥିଲା
ସେଯ ମସୁଣି ସହିତ ପୁଅକୁ ବାନ୍ଧିଲା ॥୧୭୭୮॥
ମୋତେ ଦେଖି ଫିଟାଉଅଛି ତରତର
ବୋଲଇ ବାନ୍ଧିଲା କେହୁ ତୋହର କୁମର ॥୧୭୭୯॥
କେ ବୋଲଇ ମୋର ଘରେ ଥିଲାକ ସାସୁବୁଢ଼ି
ଟେକି ଫିଙ୍ଗି ଦେଲା ସେ ପଡ଼ିଲା ମୁଖ ମାଡ଼ି ॥୧୭୮୦॥
ଦେହ ଆଉଂସିଣ କରନ୍ତି ରୋଦନ
ମୁଂ ସ୍ୟାନ୍ତି କଲି ନିକି କରନ୍ତି ଅକଲ୍ୟାଣ ॥୧୭୮୧॥

୧ । ଖ ପୋଥି – ଦୁଧ ସର ଲବଣୀ ଖାଇଲା ମୋହର

କେ ବୋଲେ ମୋ ପୁତ୍ରକୁ ଦୋଳିରୁ ଫିଙ୍ଗିଦେଇ
ଦୋଳିରେ ଯେହୁ ବସି ହେଉଛି ପଞ୍ଚାଇ ॥୧୭୮୨॥
ମୋତେ ଦେଖି ମାଧୋଇ ଓହ୍ଲାଇ ଅଇଲା
ବୋଲନ୍ତି ତୋର ପୁତ୍ର କାହିଂ ଆଜ ଗଲା ॥୧୭୮୩॥
କେ ବୋଲେ ଦିନେ ଯାଇ ମିଳିଲା ମୋର ଘର
ବୋଇଲା ମାଉସି ଗୋ ଟିକାଯେ ଦିଅ ସର ॥୧୭୮୪॥
ସୁଣିଣ ସର ଲୋଚିଯେ ମୁହିଂ ଦିଲି ଆଣି
ଖାଇ ଦେଇ ବୋଇଲା ଆହୁରି ଦିଅ ପୁଣି ॥୧୭୮୫॥
ପୁଣି ଆଟିକାଯେ ଆଣି ଦେଲି ଦଧି
ପୁଣି ଡାକ ଦେଲା ମୋର ପେଟ ପୁରି ନାହିଂ ଗୋ ଅବଧି ॥୧୭୮୬॥
ସତେକ ନଉତି ଲବଣି ଦଧି ଥିଲା
ମୁହିଂ ଦିଲି ବଢ଼ାଇ ସବୁ ଯେ ଖାଇଲା ॥୧୭୮୭॥
କେ ବୋଲଇ ମୋର ପୁଅ ସଙ୍ଗତେ ଖେଳୁଥିଲା
ଧୂଳିରେ ପୋତି ଦେଇ ପଳାଇ ଅଇଲା ॥୧୭୮୮॥
କେ ବୋଲଇ ମୋର ପୁତ୍ରକୁ ସଙ୍ଗତେ ଡାକିନେଇ
ଦେଖିଲି ଜଳରେ ସେ ମାରୁଥିଲା ବୁଡ଼ାଇ ॥୧୭୮୯।
କେ ବୋଲଇ ତୋର ପୁଅ ବଟ ବୃକ୍ଷରେ ଥିଲା ବସି
ମୋ ଝିଅ ଯାଉଥିଲା ଘେନିଣ କଳସି ॥୧୭୯୦॥
ତାହାର ଉପରେ ସେ ମୁତି ପକାଇଲା
ପଡ଼ିଲି ପଡ଼ିଲି ବୋଲି ବୃକ୍ଷ ହଲାଇଲା ॥୧୭୯୧॥
ବୋଇଲା ପତ୍ରେ ଥିଲା ବରସାର ଜଳ
ମୁହିଂ ପଡ଼ନ୍ତେଣ ହଲିଲା ଯହୁଂ ଡାଳ ॥୧୭୯୨॥
ତେଣୁ ପାଣି ଝରଝର ତୋ ଉପରେ ପଡ଼ିଲା
ଟାଟଙ୍ଗା ହୋଇ ଝିଅ ଜଳ ଆଣିଗଲା ॥୧୭୯୩॥
କେ ବୋଲଇ ଦୁଧ ମୋର ଚୁଲିରେ ବସିଥିଲା
ତୃଣ ଜାଳି ଦିଲା ସେ ଉତୁରି[୧] ପଡ଼ିଲା ॥୧୭୯୪॥
କେ ବୋଲଇ ତୋର ପୁତ୍ର ଗୋପରେ କରେ ଡକା
ଆମ୍ଭେ ଯାଉ ଅଛୁ ତୁ ରହି ଥାଅ ଯେକା ॥୧୭୯୫॥
କେ ବୋଲଇ କେତେଦିନୁଂ ହୋଇଲୁ ଯେଡ଼େଲୋକ
ସମ୍ଭାଳି ନ ପାରିଲୁ ଯେକଇ ବାଳେକ ॥୧୭୯୬॥
କେ ବୋଲଇ ଦଧି ଖାଇ ଘରେ ଥିଲା ମୋର ବସି
ମୋତେ ଦେଖନ୍ତେଣ ପଳାଇଲା ରସି ॥୧୭୯୭॥
ଯେହି ରୁପେ ଯହୁଂ କହିଲେ ଗୋପାଳୁଣି
ସୁଣିଣ କୋପିତ ହୋଇଲେ ନନ୍ଦରାଣି ॥୧୭୯୮॥
ବୋଇଲା କହ୍ନେଇକିଂ ପକାଇବିଂ ମାରି
କେତେ ବୋଲଣା ସୁଣିବି ମୁଂ ଯେହାରି ॥୧୭୯୯॥

୧ । ଗ ପୋଥି – ଚୁଲିରେ

ଲବଣି ଟିକାଯେ ଯେବେ ଗୋ ଦେଇଥିଲ
ଦେଇଣ ପଛେ ଯେ ବୋବାଳି ପାଡ଼ିଲ ॥୧୮୦୦॥
ଯେତେ ବୋଲି ଯସୋଦା ହସ୍ତରେ ଛାଟ ଘେନି
ମାରିବ ବୋଲି ଗୋଡ଼ାଇ ଅଛଇ ନନ୍ଦରାଣି[1] ॥୧୮୦୧॥
ଭୟରେ ଶ୍ରୀକୃଷ୍ଣ ପଳାଇ ଯାଉଛନ୍ତି
ଛାଟ ଘେନି ପଛରେ ଗୋଡ଼ାଇ ଯସୋବନ୍ତି ॥୧୮୦୨॥
ବହୁତ ଦୂରକୁ ଯେ ପଳାଇଲେ ହରି
ନପାଇ ଯସୋଦା ଯେ ଅଇଲେ ବାହୁଡ଼ି ॥୧୮୦୩॥
ଯେଉଂ ହରି ଜଗତେ ଅଧିକାରି ଅଟଇ
ତାହାକୁ ଯସୋଦା ପାରିବ କି ଗୋଡ଼ାଇ ॥୧୮୦୪॥
ଯେମନ୍ତେ ଦିବସ ହୋଇଲା ଦୁତିୟ ପ୍ରହର
ଭୋଜନରେ ବସିଲା ଯେ ନନ୍ଦ ମହାକୁଡ଼ ॥୧୮୦୫॥
ବୋଇଲେ କେଣେ ଗଲେ ଅଲେଳ ମାଧୋଇ
ସୁଣିଣ ଯସୋଦା ରୋହିଣି ଗଲେ ଧାଇଂ ॥୧୮୦୬॥
ଗୋପପୁର ଦାଣ୍ଡରେ ସେ ଖୋଜିଯାନ୍ତି ସେହି
କହ୍ନାଇ କହ୍ନାଇ ବୋଲିଣ ଡାକ ଦେଇ ॥୧୮୦୭॥
ବାଳକମାନଙ୍କୁ ଦେଖିଣ ପଚାରନ୍ତି
ଦେଖିଲକି ମୋହର ଅଲେଳ ଶ୍ରୀପତି ॥୧୮୦୮॥
ଥୋକାଯେ ବୋଇଲେ ଯେ ଦେଖିନାହୁଂ କାହ୍ନ[2]
ଥୋକାଯେ ବୋଇଲେ ସେ ଅଛି ଘୋରବନ[3] ॥୧୮୦୯॥
ସୁଣିଣ ଯସୋଦା ରୋହିଣି ଗଲେ ଚଳି
ମାଧବି ଲତା ତଳେ ଦେଖିଲେ ବନମାଳି ॥୧୮୧୦॥
ଯସୋଦା କୋଳ କରି ଧଇଲେକ ଯାଇ
ଝାଳ ଧୁଳି ଲୋତେକ ରୋହିଣି ପୋଛି ଦେଇ ॥୧୮୧୧॥
ଆହାରେ ଦୁଖିଧନ ରହିଲ ଯେତେବେଳେଂ
ଗୋପାଳୁଣି ରାଣ୍ଡେ ତୋତେ ଗାଳି ଖୁଆଇଲେ ॥୧୮୧୨॥
ଯେତେକ ମୋହୋର ଦଧି ହେଉଅଛି
ତାହା ମୁଂ ସବୁ ଦେବି ଭୁଜିଂବୁ ଶ୍ରୀବଛି ॥୧୮୧୩॥
ଭୁଜିଂ ବସିଛନ୍ତି ତୋର ପିତା ଯେ ରାଜନ
ତୋତେ ନ ଦେଖିଣ ସେ ନ କରନ୍ତି ଭୋଜନ ॥୧୮୧୪॥
ଯେତେ ବୋଲିଣ ଯସୋଦା ରୋହିଣି ଗଲେ ଘେନି
ତେଣେ ଯେ ବାଟ ଚାହିଁଛନ୍ତି ନନ୍ଦ ନୃପମଣି[4] ॥୧୮୧୫॥

---

୧ । ଖ ପୋଥି – ପଳାନ୍ତି ଚକ୍ରପାଣି
୨ । ଖ ଓ ଗ ପୋଥି – ଆମ୍ଭେ ନୟନେ
୩ । ଖ ପୋଥି – ପଶିଛି କୁଞ୍ଜବନେ
୪ । ଏହା ପରେ ଖ ପୋଥିରେ ଅଧିକ ଅଛି –
କୃଷ୍ଣଙ୍କୁ ଘେନିଣ ମିଳିଲା ଯସୋବନ୍ତୀ
ଦେଖିଣ ନନ୍ଦ କୃଷ୍ଣଙ୍କୁ ଆସ୍ୱାସନା ଯେ କରନ୍ତି

ପୁତ୍ରକୁ ଘେନି ନନ୍ଦ ଚୁମ୍ବନ ମୁଖେ ଦେଇ
ପିତାର ସଙ୍ଗତେ ଭୁଜିଂ ବସନ୍ତି ଭାବଗ୍ରାହି ॥୧୮୧୬॥
ନବଣି ଘୃତ ଛେନା ଦଧି ନଟିକାଳ[1]
ମୁଗ ସାକର ଅମୃତପାନି କଦିଳ ॥୧୮୧୭॥
ପିଷ୍ଟକ ଆରିସା ଯେ ପୁରି ଲୁଚି ଫେଣି
ଦିଅନ୍ତି ଯସୋବନ୍ତି ଭୁଜଂନ୍ତି ଚକ୍ରପାଣି ॥୧୮୧୮॥
ଆଞ୍ଚୋବନ ସାରିଣ ସୋଇଲେ ପିତା କୋଳେ
ପୁଣି ଯାଇ ଖେଳନ୍ତି ସଙ୍ଗେ ହଳଧରେ ॥୧୮୧୯॥
ଯେହିରୁପେ ଶ୍ରୀକୃଷ୍ଣ କରନ୍ତି ବାଳକେଳି
ମୃତିକା ଭକ୍ଷିଲେ ହରି ଦେଖିଲେକ ହଳି ॥୧୮୨୦॥
କହିଲେ ମାତା ଆଗେଂ ଧାଇଂଲେ ଯସୋଦେଂ
ଛାଟ ଘେନି ମିଳିଲେ ଶ୍ରୀକୃଷ୍ଣଙ୍କ ଆଗେଂ ॥୧୮୨୧॥
ଶ୍ରୀକୃଷ୍ଣ ବୋଲନ୍ତି ଜନନି ଛାଟ ପକା
ଯସୋଦା ବୋଇଲେ ଯେବେ ତୋହର ତୁଣ୍ଡ ଦେଖା ॥୧୮୨୨॥
ମାତାର ବଚନେ ପାଟି ବିସ୍ତାରିଲେ ଚକ୍ରପାଣି
ଅସେସ ବ୍ରହ୍ମାଣ୍ଡ ଦେଖିଲେ ନନ୍ଦରାଣି ॥୧୮୨୩॥
ଦେଖି ଥୁ ଥୁ କରି କୃଷ୍ଣ ସିରରେ ପକାଇ
ବୋଇଲେ ପିତଚେଷ୍ଟା ପୁତ୍ରକୁ ମୋର ହୋଇ ॥୧୮୨୪॥
ସ୍ନାହାନ କରାଇ ଆଣିଲେ ଜଳରେ
ଭୁଜାଂଇଲା ଦଧି ଲବଣି ଛେନା ସରେ ॥୧୮୨୫॥

## ଧେନୁକାସୁର ବଧ

ସଦାସିବ ମୁଖ ଚାହିଂ ବୋଲନ୍ତି ଦେବି ଉମା
କେସି ଯେ ନାସ ଗଲା ପୁର୍ବେଂ ସେ କେହୁ ସିନା ॥୧୮୨୬॥
ଶ୍ରୀକୃଷ୍ଣ ହସ୍ତେମରି ପାଇଲା ସଦଗତି
ଦୁର୍ଗାଙ୍କର ବଚନେ ଯେ ବଦୟନ୍ତି ପସୁପତି ॥୧୮୨୭॥
ସତ୍ୟଯୁଗରେ ସେ ସତସିରା[2] ଗନ୍ଧର୍ବ
ନାଚନ୍ତି ଅପକ୍ଷରି ଧରିଥାନ୍ତି ମୃଦଙ୍ଗ ॥୧୮୨୮॥
ଅପକ୍ଷରି କି ଦେଖନ୍ତେ ମଦନେ ହେଲା ବାଇ
ଦେଖିଣ ଇନ୍ଦ୍ରରାଜା କୋପରେ ସାପ୍ୟ ଦେଇ ॥୧୮୨୯॥
ଶ୍ରୀକୃଷ୍ଣ ହସ୍ତେ ମରି ସ୍ୱର୍ଗକଇ ଗଲା
ଡଗର ଦେଖି ଯାଇ କଂସ ଆଗରେ କହିଲା ॥୧୮୩୦॥
ସୁଣିଣ ସୋକ କଲା ଦୃମିଳାର ସିସି
ଆହାରେ କେଣେ ଛାଡ଼ିଗଲୁ ତୁ ବିରକେସି ॥୧୮୩୧॥
କଂସ ସୋକ କରନ୍ତେ ଧେନୁକାସୁର ଉଠି ବସି
ଆଜ୍ଞା ଦିଲେ ଗୋପାଳଙ୍କୁ ଆସିବି ମୁହିଂ ନାସି ॥୧୮୩୨॥

---

୧ । ଖ ପୋଥି – ନଡ଼ିଆଳି
୨ । ଖ ଓ ଗ ପୋଥି – ଜୟସିରା

କଂସର ଆଜ୍ଞାରେ ଦଇତ ପବନୁ ହୁଂ ଗଲା
ଯମୁନା ତଟରେ ତାଳ ବନରେ ମିଳିଲା ॥୧୮୩୩॥
ଧେନୁରୂପ ଧରିଣ ଭାଜଂଇ ତାଳବନ
ସୁଣସି ସାକାମ୍ବେରି ଗୋ ବଦନ୍ତି ତ୍ରିଲୋଚନ ॥୧୮୩୪॥
ଓଟାଇଂରୁ ବାଛୁରି କାଢ଼ିଲେ ଦେବହରି
ବଳରାମକୁ ବୋଇଲେ ଆଗେ ଯାଅ ଚଳି ॥୧୮୩୫॥
ଗୋପାଳ ସୁତ ମେଳେଂ ଚଳିଲେ ନିଳାମ୍ବର
ପ୍ରବେସ ହୋଇଲେ ଯମୁନା ତଟର ॥୧୮୩୬॥
ଚରିଚରି ବାଛୁରି ପସିଲେ ତାଳବନ
ଧେନୁକା ଭ୍ରମୁଅଛି ଦେଖିଲେ ବଳରାମ ॥୧୮୩୭॥
ପୁଅଙ୍କ ମେଳରୁ ସେ ଆଗ ହୋଇଗଲେ
ଦେଖିଣ ଦଇତ୍ୟ ଉଠିଲା କୋପ ଭରେଂ ॥୧୮୩୮॥
ବେନିଗୋଡ଼ ଟେକିଣ ଧାଇଂଲା ଅତିଖରେଂ
ବଳରାମ ପିଟିଲେ ଧରିଣ ପର୍ବତରେ ॥୧୮୩୯॥
ଯେସନେ ବାଳକେ ଛତୁ ପିଣ୍ଡ ଧରି
ଫିଙ୍ଗି ଦ୍ୟନ୍ତେ ଭାଜିଣ ପଡ଼ଇ ବିଛୁଡ଼ି ॥୧୮୪୦॥
ସେହି ରୂପେଂ ଦଇତ ସେ ମିଳାଇ ପଡ଼ିଲା
ସାପ୍ୟ ପାର କରିଣ ମୁକତି ହୋଇଲା ॥୧୮୪୧॥
ଗୋପାଳ ପୋୟେ ଦେଖି ତବଦ ହୋଇଲେ
ମାତା ପିତା ଆଗେଂ ଯାଇ ସକଳ କହିଲେ ॥୧୮୪୨॥

## ଅଜଗରର ମୃତ୍ୟୁ ଓ ତାର ପୂର୍ବଜନ୍ମ କଥନ

ଯେକଦିନେ ନନ୍ଦ ଯେ ଥିଲେ ଗୋଗୋଷ୍ଟରେ
ବନରୁ ଆସି ତାକୁ ଗିଳିଲା ଅଜଗରେ ॥୧୮୪୩॥
ଦେଖିଣ ଗୋପାଳେ ଯେ ତରସ୍ତ ହୋଇଲେ
ଯସୋଦାଙ୍କୁ କହନ୍ତେ ସେ ଶ୍ରୀକୃଷ୍ଣ ଅଇଲେ ॥୧୮୪୪॥
ଦେଖିଲେ ସର୍ପ ରୂପ ଦିସଇ ଗିରିବର
ନନ୍ଦକୁ ଗିଳିଦେଇ କରଇ ଫୁ ଫୁ କାର ॥୧୮୪୫॥
ସର୍ପର ଉପରେ ହରି ନଦିଲେ ଚରଣ
ଅଳପ ଟିପନ୍ତେ ଛାଡ଼ିଲା ଜିବନ ॥୧୮୪୬॥
ପ୍ରାଣ ଯିବା ବେଳେ ନନ୍ଦକୁ ଉଦ୍‌ଗାରି ପକାଇଲା
ସାପ୍ୟରୁ ଗତି ପାଇ ମୁକତି ହୋଇଗଲା[୨] ॥୧୮୪୭॥
ନନ୍ଦକୁ ସାଷ୍ଟାମ ଯେ କଲେ ଦଇତାରି
ହାହାକାର କଲେ ଯେ ଗୋପ ନରନାରି ॥୧୮୪୮॥

୧ । ଖ ଓ ଗ ପୋଥି – କୋପଭର
୨ । ଖ ପୋଥି – ଶାପ୍ୟରୁ ପାର ହୋଇ ସ୍ୱର୍ଗକଇ ଗଲା

ବଦୟନ୍ତି ଗିରିଜା ସୁଣ ହେ ଦିଗାମ୍ବର
ନନ୍ଦକୁ ଗିଳି ଗତି ପାଇଲା ଅଜଗର ॥୧୮୪୯॥
ପୁର୍ବେ ସେ ହୋଇଥିଲା କେବଣ ସେ ଜନ୍ମ
ପାର୍ବତିର ବଚନେ ବଦୟନ୍ତି ତ୍ରିଲୋଚନ ॥୧୮୫୦॥
ପୁର୍ବେ ସେ ସଦାନନ୍ଦ[୧] ଋସିଙ୍କ ନନ୍ଦନ
ଦୃଷ୍ଟ ପଣ ଆଚରି ମଦିରା କଲା ପାନ ॥୧୮୫୧॥
ଦେଖିଣ ବୃହସ୍ପତି କୋପିତ ହୋଇଲେ
ସର୍ପ ହୋଅ ବୋଲିଣ ତାହାକୁ ସାପ୍ୟଦିଲେ ॥୧୮୫୨॥
ଋସି ପୁତ୍ର ବଚନେ ବୋଇଲେ ବୃହସ୍ପତି
ସର୍ପ ହୋଇଣ ତୁ ରହିଥିବୁ ପୃଥି[୨] ॥୧୮୫୩॥
ନନ୍ଦକୁ ଗିଳିବୁ ତୁ ଦେଖି ଧାଇଂବେ ଭଗବାନ
ପାଦ ପ୍ରହାରିବେ ତୁ ହାରିବୁ ଜିବନ ॥୧୮୫୪॥
ସାପ୍ୟ ପାର କରି ନିଜ ତନୁ ପାଇବୁ ସେହିକାଳେ
ଯେମନ୍ତ ବୋଲି ଦେବଗୁରୁ କହିଥିଲେ ॥୧୮୫୫॥

## କାଳୀୟ ଦଳନ ଓ ବରୁଣ ଭୁବନରୁ ନନ୍ଦଙ୍କ ମୁକ୍ତି

ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର
ଦିନେ ପୁଷ୍ପ ତୋଳି ହରି ପସିଲେ କାଳିନ୍ଦିର ॥୧୮୫୬॥
କୋପେ କାଳିୟ ସେ ପଦ୍ମ ଚରଣେ ଦଂସିଲା
ସହସ୍ର ମୁଖରେ ଗରଳ ଉଦ୍‌ଗାରିଲା ॥୧୮୫୭॥
ଗରଳ ଘାରିଲା ହରି ହୋଇଲେ ମୋହମାନ
ଗରୁଡ଼ ଅଇଲା ଯେ ଚିନ୍ତିଲେ ବଳରାମ ॥୧୮୫୮॥
ଅମୃତ ଢାଳନ୍ତେ ସେ ଗୋବିନ୍ଦ ଜ୍ଞାନ ପାଇ
କାଳିୟ ସିରେଂ ହରି ନୃତ୍ୟ କରନ୍ତି ରହି ॥୧୮୫୯॥
କାଳିୟ ବର ପାଇ ନିଜ ସ୍ଥାନ ଗଲା
ଅମୃତ ହୋଇଲା ଜଳ ସୁଣଗୋ ଗଉରା ॥୧୮୬୦॥
ଯେକଦିନେ ନନ୍ଦ ସେ ଯେ କଲେ ଯେକାଦସି
ଦ୍ୱାଦସି ସ୍ନାନରେ ଯମୁନା ଜଳେ ପସି ॥୧୮୬୧॥
ବରୁଣର ଦୁତେ ନନ୍ଦକୁ ଘେନିଗଲେ
ନ ଦେଖିଣ ଯସୋଦା ସେ ବହୁତ କାନ୍ଦିଲେ ॥୧୮୬୨॥
ବୋଲନ୍ତି ଭୋ କାନ୍ତ କେଣେ ଛାଡ଼ିଗଲ
ଯୁବା କାଳେ ମୋତେ ବିଧବା କଷ୍ଟ ଦିଲ ॥୧୮୬୩॥
କାହା ମୁଖ ଚାହିଂ ମୁଂ ସାରିବଇଂ ଦିନ
ପୁତ୍ର ବେନି ଗୋଟା ଅଟନ୍ତି ସାନ ସାନ ॥୧୮୬୪॥

୧ । ଖ ପୋଥି – ସନନ୍ଦ
୨ । ଖ ପୋଥି – ସର୍ପ ରୂପେ ଥିବୁ ତୁହି ବୃନ୍ଦାବନ କତି

ପିତାଙ୍କୁ ଖୋଜି ଆଣ ଯାଇରେ କହ୍ନାଇ
ସ୍ୱାମିକି ନ ଦେଖିଣ ମରିବି ବିସ ଖାଇ ॥୧୮୬୫॥
ମାତାର ବିକଳେ ସେ ଧାଇଂଲେ ଦଇତାରି
କୁଳରେ ଚିହ୍ନ ଦେଖି ଜଳରେ ଗଲେ ବୁଡ଼ି ॥୧୮୬୬॥
ବରୁଣ ଭୁବନରେ ମିଳିଲେ ଦାସରଥି
ବହୁତ ପୁଜାକଲା ଦେଖିଣ ଜଳପତି ॥୧୮୬୭॥
ନନ୍ଦକୁ ମୁକୁଳାଇ ଆଣିଲେ ଚକ୍ରଧର
ବଦୟନ୍ତି ଗିରିଜା ଗୋ ବୋଲନ୍ତି ସୁଳଧର ॥୧୮୬୮॥
ଶ୍ରୀକୃଷ୍ଣ ଚରିତ ଯେ ଅପୁର୍ବ ବାଳକେଳି
ଯାହା ସୁଣନ୍ତେ ଗତି ପାଇବେ ନରନାରି ॥୧୮୬୯॥

## ଷଣ୍ଢାସୁର ବଧ

ବଦୟନ୍ତି ହେମବନ୍ତି ସୁଣ ହେ ପ୍ରାଣନାଥ
ତାଳବନେ ମଲା ଯେ ଧେନୁକା ଦଇତ ॥୧୮୭୦॥
ରାମର ହସ୍ତେ ମରି ମୁକତି ପାଇଲା
ସେ କଥା କଂସ ଜାଣିଲା କି ନ ଜାଣିଲା ॥୧୮୭୧॥
ପାର୍ବତି ବଚନେ ଯେ ବୋଲନ୍ତି ଦେବହରି
କଂସର ଡଗର ଯେ ବୁଲୁଥିଲା ଗୋପପୁରି ॥୧୮୭୨॥
ଧେନୁକା ହତ ଦେଖି କଂସକୁ କହିଲା
ସୁଣିଣ କଂସ ସେ ଯେ ବହୁତ ଚିନ୍ତାକଲା ॥୧୮୭୩॥
କଂସର ବିକଳ ଦେଖି ଉଠିଲା ସଣ୍ଢାସୁର
ବୋଇଲା କିପାଇଂ ଭାଳୁଛୁ ନୃପବର ॥୧୮୭୪॥
ମାରିବି ନନ୍ଦସୁତ ଭାଜିଂବି ଗୋପପୁର
ଯାଆ ବୋଲି ଆଜ୍ଞା ଦିଲା ଦଣ୍ଡଧର ॥୧୮୭୫॥
ଚଳିଲା ସଣ୍ଢାସୁର ମିଳିଲା ଗୋପପୁର
ଜାଣିଲେ ଦଇତାରି ମିଳିଲା ଅସୁର ॥୧୮୭୬॥
ଚଳିଲେ ଭଗବାନ ବାଳେକ ସଙ୍ଗ ଛାଡ଼ି
ଦେଖିଲେ ସଣ୍ଢାସୁର ପାଦେ କରେ ଖୋରି ॥୧୮୭୭॥
ଭାଜଂଇ ତରୁବର ପିଟଇ ନେଇ ଶୃଙ୍ଗ
ଦେହ ଦିସୁଅଛି ତାର ଆସାଢ଼ କଳାମେଘ ॥୧୮୭୮॥
ଦେଖିଣ ଦଇତାରି ବେନି ସୃଙ୍ଗକୁ ଧରି
ନିଳା ମାତ୍ର କରି ସେ ଆଣିଲେ ଓଟାରି ॥୧୮୭୯॥
ପଛକୁ ପେଲିଦେଇ ଛାଡ଼ିଲେକ ଶୃଙ୍ଗ
ପଡ଼ିଲାକ ମୁଖ ମାଡ଼ି ଚୁନା ହେଲା ପିଣ୍ଡ ॥୧୮୮୦॥
ମେରୁ ସମାନେ ଅସୁର ମୃତ୍ୟୁ ପିଣ୍ଡ ପଡ଼ି
ଗତି ପାଇଣ ସେ ଗମିଲା ସ୍ୱର୍ଗପୁରି ॥୧୮୮୧॥
ଶ୍ରୀହରି ହସ୍ତେ ମରି ପାଇଲା ସଦଗତି
ସ୍ୱର୍ଗରେ ଦେବତାଯେ କଲେ ପୁଷ୍ପ ବୃଷ୍ଟି ॥୧୮୮୨॥
ସଣ୍ଢାସୁର ଯହୁଂ ଶ୍ରୀକୃଷ୍ଣ ହସ୍ତେଂ ମଲା
ଥୋକାୟେ ମହିଭାରା ଉଶ୍ୱାସ ହୋଇଲା ॥୧୮୮୩॥
କଂସଠାରୁ ବଡ଼ ବଳିଷ୍ଟ ଅଟେ ସେହିଂ
ସ୍ୱର୍ଗକୁ ଧାଡ଼ି ଦିଏ ଆମ୍ଭଙ୍କୁ ଗୋଡ଼ାଇଂ ॥୧୮୮୪॥
କଂସଠାରୁ ବଡ଼ ଯେ ଯେ ଯେହାକୁ ଆମ୍ଭେ ଡରି
ଜାଣିଲୁ ଯେହାକୁ ନାସିଲେ ଦଇତାରି ॥୧୮୮୫॥
ଆଉ କଂସାସୁର ଯେବେ ପ୍ରାଣ ନ ପାଇବ
ଯେତେ ବୋଲି ହରସ ହୋଇଲେ ଦେବବୃନ୍ଦ ॥୧୮୮୬॥
ଜୟ ତୁ ଜଗବନ୍ଧୁ ଜଗତ କରତା
ତୋହର ଆହାଲାଦେଂ ସିନା ବର୍ତନ୍ତି ଦେବତା ॥୧୮୮୭॥
ଦେବେ ସ୍ତୁତି କରିଣ ବୋଲନ୍ତି ହରିହରି
କଂସାସୁର ଭୟରୁଂ ରଖହେ ଦଇତାରି ॥୧୮୮୮॥
ହରି ଆସ୍ରେ କର ହୃଦେ ନରେ ସଂସାରୁ ତରିବ
ହରିଙ୍କି ଭଜ ନରେ ଗତି ମୁକ୍ତି ପାଇବ ॥୧୮୮୯॥
ହରିଙ୍କି ଭଜ ନରେ ନଥିବ ତମ
ହରିଙ୍କି ଆସ୍ରେକଲେ ନ ଦଣ୍ଡିବ ଯମ ॥୧୮୯୦॥
ହରିଙ୍କି ଭଜ ନରେ ନ ଥିବ ରୋଗ ବ୍ୟାଧି
ହରିଙ୍କି ଆସ୍ରେ କଲେ ତରିବ ଏ ଭବ ଜଳଧି ॥୧୮୯୧॥
ହରିଙ୍କି ଆସ୍ରେ କଲେ ଅପୁତ୍ରିକ ପୁତ୍ରପାଇ
ଖଣ୍ଡିବ ପାପ ଭାରା ବହୁତ ପୁନ୍ୟ ହୋଇ ॥୧୮୯୨॥
ହରିଙ୍କି ଭଜ ନରେ ଫିଟିବ କାଳଫାସ
ହରି ରକ୍ଷାକରିବେ ସାରୋଳା ଚଣ୍ଡି ଦାସ ॥୧୮୯୩॥

## ଶ୍ରୀକୃଷ୍ଣଙ୍କର ରାଧାପୁରେ ପ୍ରବେଶ

ଯେଥୁ ଅନ୍ୟନ୍ତରେ ଯେ ବୋଲନ୍ତି ହେମବନ୍ତ ଦୁଲାଳି[1]
କହହେ ପ୍ରାଣନାଥ ଶ୍ରୀକୃଷ୍ଣ ବାଳକେଳି ॥୧୮୯୪॥
ଅନେକ ଦାନବଙ୍କୁ ନାସିଲେ ଦଇତାରି
ତଦନ୍ତେ କିସ କ୍ରିଡ଼ା କଲେକ ବନମାଳି ॥୧୮୯୫॥
ସୁଣସି ପ୍ରିୟା ବୋଲି ବୋଲନ୍ତି ସଦାନନ୍ଦ
ରାଧାକୃଷ୍ଣ ପ୍ରସଙ୍ଗ ଯେ ପଦ ମକରନ୍ଦ ॥୧୮୯୬॥
ଯେକଦିନେ ହୃଦରେ ବିଚାରିଲେ ଆଦିକନ୍ଦ
ଗୋପପୁରେ ବାଳକେଳି କରନ୍ତି ଗୋବିନ୍ଦ ॥୧୮୯୭॥
ସୁଣଗୋ ସାକାମ୍ଭେରି ବୋଲନ୍ତି ଦିଗାମ୍ବର
ଶ୍ରୀକୃଷ୍ଣ କେଳିକଥା କହିବା ତୋରଠାର[2] ॥୧୮୯୮॥

---

୧ । ଖ ଓ ଗ ପୋଥି – ଯେଥୁ ଅନ୍ୟନ୍ତରେ ଯେ ପୁଛନ୍ତି ଗଉରୀ
୨ । ଖ ଓ ଗ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ରାହାସ କେଳି ଯେବେ ସୁଣଗୋ ସାକାମ୍ଯେରି
ଯେକଦିନେ ବିଚାର କଲେକ ବନମାଳି ॥୧୮୯୯॥
ଗୋପପୁରେ ଜନ୍ମ ହୋଇ ରମ୍ଯିବି ଗୋପାଳୁଣି
ରାଧିକା ମୋହର ତ ଅଟଇ ତରୁଣିଂ ॥୧୯୦୦॥
ରାଧିକା ଠାବକୁ ହାଦେ ମୁହିଂ ଯିବି ପୁଣିଂ
ବିଚାରନ୍ତେ ରବି ଅସ୍ତହେଲା ଘୋଟିଲା ରଜନି ॥୧୯୦୧॥
ଚନ୍ଦ୍ରସେଣା ମନ୍ଦିରେ ବିଜୟେ ଚକ୍ରଧର
ରଜନି ହୋଇଲା ସେ ଦୁତିୟ ପ୍ରହର ॥୧୯୦୨॥
ଚନ୍ଦ୍ରସେଣା ଗଉଡ଼ ଗୋଗୋଷ୍ଟେ ଅଛି ରହି
ଯେକା ଗୋପାଳୁଣି ପଲଙ୍କେ ଅଛି ସୋଇଂ ॥୧୯୦୩॥
କୋଟିୟେ ଚନ୍ଦ୍ରକିରଣ ବିରାଜଇ ରୁପ
କ୍ଷିନମଝା କଟି ନାଭି ରସ କୁପ ॥୧୯୦୪॥
ଓଷ୍ଟ ବିମ୍ବଫଳ ନାସିକା ତିଳ ଫୁଲ
ହସ୍ତି ଥୋର ହସ୍ତ ଗଣ୍ଡ ସେ କସ୍ତୁରି ପଟ ଭାଲ ॥୧୯୦୫॥
ସୁବର୍ଣ୍ଣର ଲିଙ୍ଗ ଜାଣି ହୃଦରେଂ ବେନି କୁଚ
ଦେଇଛି ନିଳ ମୁଦ ପୁରୋଇ ଅମୃତ ॥୧୯୦୬॥
ପଦ୍ମଦଳ ନୟନ ଅଳତା ରଙ୍ଗ ପାଦେଂ
ମୁଖର ଉଜ୍ଜ୍ୱଳ ସରଦସସି ଗଜେଂ ॥୧୯୦୭॥
ଯେତେକ ଅଳଙ୍କାର ଅଛଇ ଦେହର
ସଂସର୍ପି ହୋଇ କହିବ କେ ମାନେବ ହୋଇ ଛାର ॥୧୯୦୮॥
ତ୍ରୈଲୋକ୍ୟରେ ତୁଲାଇ ତ ନାହିଂନା ଉପମା
ଆଗହୁଂ ଯାହା ସଞ୍ଚି ଅଛଇ ବେଦବ୍ରହ୍ମା ॥୧୯୦୯॥
ଦେଖିଣ ଶ୍ରୀହରି ଯେ ମଦନେ ବିହ୍ୱଳିତ
ରାଧିକା ଉପରେ ନେଇ ପକାଇଲେ ଶ୍ରୀହସ୍ତ ॥୧୯୧୦॥
ଦେଖିଣ ରାଧିକା ହୋଇଲେ ବଇଗୁନ୍ୟ
ପାଦେକ ପ୍ରହାରନ୍ତେ ଯେ ପଡ଼ିଲେ ଭଗବାନ ॥୧୯୧୧॥
କବାଟର କଣ୍ଟା ଯେ ବାଜିଲା ମସ୍ତକର
କଣ୍ଟାବାଜି ରୋଧିର ବହଇ ଝର ଝର ॥୧୯୧୨॥
ଘଡ଼ିକେ ଶ୍ରୀହରି ଯେ ହୋଇଲେ ସଚେତ
ନୟନ ଥନ ଥନ କୋପ ବହିଲେ ଗୋପିନାଥ ॥୧୯୧୩॥
ବିଚାରିଲେ ବିଧାତା ମୋତେ ସେ ଯେହା କଲା
ଦଇତ ମାରିବାକୁ ମହିରେ ଜନ୍ମାଇଲା ॥୧୯୧୪॥
ଅନେକ ଚାଟୁକଥା କହିଲେକ ସେହି
ବୋଇଲେ ଗୋପିଙ୍କି ରମ୍ଯିବୁ ଭାବଗ୍ରାହି ॥୧୯୧୫॥

୧ । ଖ ଓ ଗ ପୋଥିରେ ଏହାପରେ ଅଧିକ ଅଛି –
କବାଟ ଫିଟାଇଣ ପସିଲେ ଭାବଗ୍ରାହୀ
ଜଳୁଅଛି ଦୀପାବଳୀ ପଲଙ୍କେ ରାଧାସୋଇ

ଯେବେ ସେ ଗୋପାଳୁଣି ନୋହିଲା ବସ ମୋତେ
ବିନୋୟି କହନ୍ତେଣ ପ୍ରହାର କଲା ଯେତେ ॥୧୯୧୬॥
ପୃଥିବିରେ ନ ରହିବିଂ ନ ମାରିବିଂ କଂସ
ରହନ୍ତୁ ଦୃଷ୍ଟଜନେ ନରହୁ ମୋର ଯସ ॥୧୯୧୭॥
ଯେମନ୍ତେ ବୋଲି ପ୍ରଭୁ ନିଷ୍ଟିନ୍ତେ କୋପ ବହି
ଯସୋବନ୍ତି ପୁରେ ଜାଣିଲା ବେଦ ସାଇଂ ॥୧୯୧୮॥

## କୃଷ୍ଣଙ୍କର ବିରହମୁରଲୀ ପ୍ରାପ୍ତି ଓ ଖଣତ୍କାର ଜନ୍ମ ବୃତ୍ତାନ୍ତ

ମରୁଳ ବାହାନେ ବିଜେ କରିଣ ବିଧାତା
ହରିଠାରେ ମିଳିଲେ ଜଗତ କରତା ॥୧୯୧୯॥
ସିରରେ ବେନିକର ମୁଖରେ ବୋଲେ ହରି
ମୁରଲି ଦେଇ ପାଦେଂ ପଡ଼ିଲେ କୁସଧାରି ॥୧୯୨୦॥
ମଉନେ ବସିଛନ୍ତି ତ୍ରୈଲୋକ୍ୟ ଗୋସାଇଂ
ଚାରିମୁଖେ ବିଧାତା ସ୍ତୁତି ପଢୁଛଇ ॥୧୯୨୧॥
ଯେ ମୁରଲି ଗୋଟି ଦେଉଛି ନିଅ ତୁମ୍ଭେ
ଯା ନାମ ଧରି ଡାକିବ ସେ ମିଳିବ ତୁମ୍ଭ ଆଗେଂ ॥୧୯୨୨॥
ଯେ ମୁରଲି ଯେବେ ତୁମ୍ଭେ ଚୁମ୍ବିବ ଭଗବାନ
ଗୋପିୟେ ବସ ହେବେ ଗୋପାଳେ ମୋହମାନ ॥୧୯୨୩॥
ବଦୟନ୍ତି ଶ୍ରୀହରି ସୁଣ ହେ ବିଧାତା
ପୁର୍ବେ କହୁଥିଲ ତୁମ୍ଭେ ଯେହିରୁପେଂ କଥା ॥୧୯୨୪॥
ଲୋଭରେ ଆସି ମୁହିଂ ଲବ୍ଧ ହରାଇଲିଂ
ଖାଇଲଇ ମାଡ଼ ଯେ ମାରିଲା ଗୋପାଳୁଣି ॥୧୯୨୫॥
ସୁବର୍ଣ୍ଣ ଯାଚୁଥିଲୁ ନ ପାଇଲି କଂସା
ଯେବେ ତୁ କାଷ୍ଟ ଖଣ୍ଡେ ଯାଚୁଛୁ ବିଧାତା ॥୧୯୨୬॥
ବାୟେଂସ ଖଣ୍ଡିକରେ ନାନା ରତ୍ନ ଜଡ଼ି
ଯେହା ଦେଲେକି ମୋତେ ପାଇବୁ କୁସଧାରି ॥୧୯୨୭॥
ବଦୟନ୍ତି କୁସକେତୁ ସୁଣହେ ଦଇତାରି
ବିରହ ମୁରଲି ନାମ ସେ ଅଟଇ ଯେହାରି ॥୧୯୨୮॥
ଯାହାର କର୍ଣ୍ଣେ ଯେହାର ସବଦ ସୁଭିବ
ବାଳ ବୃଦ୍ଧ ହୋଇଥିଲେ ଯୁବା ସେ ହୋଇବ ॥୧୯୨୯॥
ଯେତେ କହି ଧାତା ଚଳିଲେ ନିଜପୁର
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ॥୧୯୩୦॥
ମୁରଲି ପାଇ ହରି ହରସ ହୋଇଲେ
ବିଚାରିଲେ ରାଧିକାକୁ ଆଗେ ଡାକିବି ମୁହିଂ ଭଲେ ॥୧୯୩୧॥
ଯେମନ୍ତ ବିଚାରନ୍ତେ ଦେବକି ନନ୍ଦନ
ମେରୁ ଉହାଡ଼େ ଅସ୍ତ ହୋଇଲେ ନିରଞ୍ଜନ ॥୧୯୩୨॥

ଛେନା ଗୁଟିକା ସର ସାକର ଭଜିଂଲେ
ବଳରାମ ସଙ୍ଗତେ ହରି ପଲଙ୍କେ ପହୁଡ଼ିଲେ ||୧୯୩୩||
ଦେଢ଼ ପ୍ରହର ସେ ଯେ ହୋଇଲା ରଜନି
ଗର୍ଭରୁ ମାୟା କୃଷ୍ଣ ଭିଆଇଲେ ଚକ୍ରପାଣିଂ ||୧୯୩୪||
ବଳରାମ ସଙ୍ଗତରେ ସୋଇଲା ମାୟାରୁପ
ଯମୁନା ତଟକୁ ବୁଲି ଗଲେକ ଗୋପିନାଥ ||୧୯୩୫||
କଦମ୍ବ ବୃକ୍ଷ ତଳେ ମିଳିଲେ ଭାବଗ୍ରାହି
ସରଦ କାଳ ନିସି ଅନ୍ଧାର ଘୋଟିଛଇ ||୧୯୩୬||
ବହଇ ବସନ୍ତ ସେ ସିତଳଂ[୧] ପରିମଳ
ମଦନେ ଉନମତ ହୋଇଛି ନନ୍ଦବାଳ ||୧୯୩୭||
ଅଧରେ ବଇଂସି ଦେଇ ଚୁମ୍ବିଲେ ଭଗବାନ
ସବଦେ ଚମକିଲା ଚଉଦ ଭୁବନ ||୧୯୩୮||
ସ୍ୱର୍ଗପୁରେ ଚମକିଲା ବଜ୍ରଧର
ବୋଇଲେ ଯେ ସବଦ ଅଟଇ ଗରୁତର ||୧୯୩୯||
ଦେବଗୁରୁ ବୃହସ୍ପତି ସକଳ କହିଲେ
ଗୋପିଙ୍କ ନିମନ୍ତେ ହରି ବଂସି ଧ୍ୱନି କଲେ ||୧୯୪୦||
ସଜିଂବନି ପୁରେ ତ୍ରାସିଲା ଜନ୍ତୁପତି
ହସ୍ତରୁ ଖସି ପଡ଼ିଲାକ କାଳଦଣ୍ଡ ଫାସି ||୧୯୪୧||
ଦେଇଥିଲେ ବ୍ରହ୍ମା ବଂସି ସେହୁ ଚମକିଲେ
ପଢୁଥିଲେ ବେଦ ପୋଥି ପଡ଼ିଲା ଖସିତଳେ ||୧୯୪୨||
ଆମ୍ଭେ ହେଂ ସୁଣି ପୁଣି ପାସୋରିଲୁଂ ଜ୍ଞାନ
ଡରେଂ ତୁମ୍ଭେ ଡାକ ଦିଲ ରଖହେ ତ୍ରିଲୋଚନ[୨] ||୧୯୪୩||
ବାସୁକି ସ୍ଥରହରେ ଛାଡୁଥିଲା ମହି
ମଞ୍ଚରେ ନର ଲୋକେ ଚମକି ଗଲେ ରହି[୩] ||୧୯୪୪||
ପୁଣି ଆଉ ବେଳେ ଚୁମ୍ବିଲେ ଭଗବାନ
ବୋଇଲେ ରାଧିକା ଗୋ ଆସ କୁଜଂବନ ||୧୯୪୫||
ରାଧା ରାଧା ବୋଲଇ ଯହୁଂ ମୁରଲି ଡାକ ଦେଇ
ସୁଣିଣ ରାଧିକା ଯେ ମଦନେ ଭୋଳ ହୋଇ ||୧୯୪୬||
ଗରଳ ଭକ୍ଷିଲେ ଯେହ୍ନେ ଆକୁଳ ହୋୟେ ପ୍ରାଣି
ସେହି ରୁପେ ରାଧିକା ସେ ମୁରଲି ଧ୍ୱନି ସୁଣି ||୧୯୪୭||
କେହୁ ବା ଯାଇ କହିବ ନନ୍ଦସୁତ ଆଗେଂ
ମୁରଲି ଧ୍ୱନି ଦେଇ ଡାକୁଚି ବୈରାଗେଂ[୪] ||୧୯୪୮||

୧ । ଖ ଓ ଗ ପୋଥି – ସୁଗନ୍ଧ
୨ । ଗ ପୋଥି – ଭଗବାନ
୩ । ଖ ପୋଥି – ଚମକେ ନିଦ୍ରା ଯାଇ
୪ । ଖ ପୋଥି – ଯେତେ ବୋଲି ରାଧିକା ଦୂତିକି ରାଇ ବେଗେଂ

ରାଧିକାର ବଚନେ ଦୁତିକା ବୋଲଇ
କିପାଇଂ ଆକୁଳ ଗୋ ହେଉଛ ପ୍ରାଣସହିଂ ||୧୯୪୯||
ଆସଗୋ ମୋର ସଙ୍ଗେ ଯିବାସି ଚଳାଇ
ବେନି ସଖି ପ୍ରବୋଧି କହିବା ଭାବଗ୍ରାହି ||୧୯୫୦||
ରାଧିକା ବୋଇଲେ ସେ ମୋଠାକୁ ଆସିଥିଲେ
ନାସ୍ତି କଲି ଯହୁଂ ମୁହିଂ ବାହୁଡ଼ିଣ ଗଲେ ||୧୯୫୧||
ଅପ୍ରାଧ ଗୋଟିୟେ ଗୋ କରିଛି ତାହାଠାରେଂ
ତେଣୁ ତୋତେ କହୁଛି ଚଳସି ସିଘ୍ରରେଂ[୧] ||୧୯୫୨||
ମୋହ ଲାଗି କହିବୁ ଦୟା କରିବେ ସେହି
ତେବେ ତୁ ଆସିବୁ ତୋ ସଙ୍ଗେ ଯିବିଂ ମୁହିଂ ||୧୯୫୩||
ସୁଭ ଅନକୁଳେ ଦୁତିକା ଗଲା ଚଳି
କୁଜଂବନେ କଦମ୍ବ ମୁଳେ ଦେଖିଲା ବନମାଳି ||୧୯୫୪||
ଶ୍ରୀକୃଷ୍ଣ ପାଦ ତଳେ ପଡ଼ିଲାକ ଶୋଇ
ସଙ୍କର ସିରେ ଯେହ୍ନେ ଚନ୍ଦ୍ରମା ଥିଲେ ରହି ||୧୯୫୫||
ବଦୟନ୍ତି ଶ୍ରୀହରି ଉଠ ଉଠ ସଖି
ଅବଳା ନାରି କିପେଂ ଅଇଲୁ ଘୋର ନିସି ||୧୯୫୬||
ଦୁତିକା ବୋଇଲେ ତୁମ୍ଭ ମୁରଲି ଧ୍ୱନି ସୁଣି
ଆକୁଳ ହୋଇ ରାଧା ପେସିଲା ମୋତେ ପୁଣି ||୧୯୫୭||
ମୋତେ ପେସି ଦିଲା ମୁଂ କହିଲିଂ ତୁମ୍ଭ ଆଗ
ମୋହ ରାଣ ତୋତେ ଛାଡ଼ ହୋ ବଇରାଗ ||୧୯୫୮||
ଯେମନ୍ତେ କହି ସୁନ୍ଦରି କୃଷ୍ଣଙ୍କୁ କୋଳ କଲା
ମଦନେ ଅସାଷ୍ଟମ ହୋଇଲେ ନନ୍ଦବଳା ||୧୯୫୯||
ଭୁଜରେଂ ଭୁଜଭିଡ଼ି କଲେକ ବିବସନ
ଦେହକୁ ଦେହ ଦେଇ କଲେକ ଆଲିଙ୍ଗନ ||୧୯୬୦||
ମୁଖକୁ ମୁଖ ଦେଇ ପାଦକୁ ପାଦ ଛନ୍ଦି
ପାଟସୁତା ଗଳିତେ ମଧ୍ୟରେ ନାହିଂ ସନ୍ଧି ||୧୯୬୧||
ପ୍ରଥମେ ଶୃଙ୍ଗାର ଯେ କରନ୍ତି ଦେବହରି
କହନ୍ତି ସଦାସିବ ସୁଣଗୋ ଗଉରି ||୧୯୬୨||
ଖସିଲାକ ରେତ ସରିଲା ଶୃଙ୍ଗାର
ଦୁତିକା ଗର୍ଭରୁ ଜାତ ହୋଇଲାକ କୁମର ||୧୯୬୩||
କାମଦେବ ସମାନେ ବିରାଜେ ତାର ବପୁ
ଦେଖିଣ ଆଶ୍ଚର୍ଯ୍ୟ ଯେ ଜଗତ ଆଧିପୁ ||୧୯୬୪||
ବୋଇଲେ ଚୋର ରତିରେ ଜନ୍ମତୁ ହୋଇଲୁ
ସବୁଦିନେ ଚୋରପଣ ତୁହି ଆଚରିବୁ ||୧୯୬୫||
ସୁଣିଣ ଆନନ୍ଦେ ଯେ ହୋଇଲା ଖଣତ୍କାର
ଯିବ ବୋଲି ଦୁତିକା ହୋଇଲା ତରତର ||୧୯୬୬||

୧ । ଖ ପୋଥି – ଚଳତୁ ଶୀଘ୍ରରେ

ଆପଣାର ସାଢ଼ି ପାସୋରିଲା ସେହି
ଶ୍ରୀକୃଷ୍ଣ ଖଦି ପିନ୍ଧି ଗମନ କରି ଯାଇ ॥୧୯୬୭॥

## କୃଷ୍ଣଙ୍କ ସହିତ ରାଧାଙ୍କର ମିଳନ ଓ ଶିଞ୍ଜୀକାର ଜନ୍ମ

ଯେଣେ ଚନ୍ଦ୍ରାବଳି ଯେ ଚାହିଁଅଛି ବାଟ
ସତେ ନିକି ଦୟା କରିବେ ନନ୍ଦଚାଟ ॥୧୯୬୮॥
ଯେମନ୍ତ ଭାଳନ୍ତେ ସେ ଦୁତିକା ମିଳଇଂ[୧]
ବୋଇଲା ସଜ ହୁଅ ଯିବା ଗୋ ପ୍ରାଣସହି ॥୧୯୬୯॥
ଶ୍ରୀକୃଷ୍ଣ ନାଥ ଆଗେଂ କହିଲି ତୋର ପାଇଂ
ବୋଇଲି ଅପମାନେ ରହିଅଛି ରାହି ॥୧୯୭୦॥
ତୁମ୍ଭର ଆଜ୍ଞା ହେଲେ ଆଣିବି ଯେହିକ୍ଷଣି
ଆଣ ବୋଲି ଆଜ୍ଞା ଦିଲେ ଚକ୍ରପାଣି ॥୧୯୭୧॥
ଆସ ଆସ ସଖି ଗୋ ବହନ ହୋଇଯିବା
ବଦୟନ୍ତି ସଦାସିବ ସୁଣଗୋ ଗିରିଜା ॥୧୯୭୨॥
ଦୁତିକାର ବଚନେ ଦୁହେଁ ଗଲେ ଚଳି[୨]
ବେନି ସଖି ଯାଇ ଭେଟିଲେ ବନମାଳି ॥୧୯୭୩॥
ସଲଜିତ ବଚନେ କହଇ ରାହି ବାଣି[୩]
ଆସ ଆସ ବୋଲିଣ ବୋଲନ୍ତି ଚକ୍ରପାଣି ॥୧୯୭୪॥
ଭୂମିକି ଦୃଷ୍ଟି ଦେଇ ହୋଇଛି ଉଭା ରାହି
ଆକାସ ଚନ୍ଦ୍ରମା କି ପସିଣ ଯିବ ମହି ॥୧୯୭୫॥
କି ଅବା ନିଳ ମେଘ ତେଜିଣ ଦିବାକର
ଉଦୟେ ହୋଅନ୍ତେ ଯେହ୍ନେ ତୁଟଇ ଅନ୍ଧକାର ॥୧୯୭୬॥
ସେହି ରୁପେ ରାଧିକାର ଦେହ ବିରାଜଇ
ବୃକ୍ଷଲତା ନକ୍ଷତ୍ର ଅନ୍ଧାର ତୁଟିଯାଇ ॥୧୯୭୭॥
ଦେଖିଣ କୃଷ୍ଣନାଥ ଆନନ୍ଦ ହୋଇଲେ
ମଦନ ଅସାଷ୍ଟମେ ଦେହକୁ ପାସୋରିଲେ ॥୧୯୭୮॥
ବିଚାରିଲେ ବିଧାତା ଧନ୍ୟ ତୋ ଜିବନ
କେତେକାଳ ବସିଣ ଗଢ଼ିଲୁ ସ୍ତିରିରତ୍ନ ॥୧୯୭୯॥
ରୁପ ବର୍ଣ୍ଣିବାକୁ ତ ସକତି ପାଉ ନାହିଁ
ଚଉଦ ବ୍ରହ୍ମାଣ୍ଡରେ ରୁପକୁ ସରି କାହିଁ ॥୧୯୮୦॥
ଯେତେ ବୋଲି ଶ୍ରୀକୃଷ୍ଣ ବିସ୍ତାରିଲେ ବେନିଭୁଜ
ଆସ ଆସ ରାହି ବୋଲି କୋଳ କଲେକ ଦେବରାଜ ॥୧୯୮୧॥
ବିଦାରିଲେ ବେନି କୁଚ କଲେକ ବିବସନ
ହିଆକୁ ହିଆ ଦେଇ ଗାଢ଼େ କରନ୍ତି ଆଲିଙ୍ଗନ[୪] ॥୧୯୮୨॥

୧ । ଖ ପୋଥି – ମିଳିଲା ଦୁତୀ ଯାଇ
୨ । ଖ ପୋଥି – ଦୂତିକାର ବଚନେ ଯିବାକୁ ସଜ ବାଳୀ
୩ । ଖ ପୋଥି – ସଲଜଂ ଚିତ୍ତେ ରାହୀ ନ କହଇ ବାଣୀ
୪ । ଖ ପୋଥି – ଗାଢ଼େ କରନ୍ତି ଆଲିଙ୍ଗନ

ମୁଖରେ ମୁଖ ଦେଇ ଅଧର ପାନ କଲେ
ଚଉସଠି ପରିବନ୍ଧେ ସୁରତି ଲଗାଇଲେ ॥୧୯୮୩॥
ହାସ୍ୟ ପରିହାସ୍ୟ କରନ୍ତି ବେନିଜନ
ରାଧିକା ଗର୍ଭରେ ରେତ ରଖିଲେ ଭଗବାନଂ[୧] ॥୧୯୮୪॥
ସେହିକ୍ଷଣି ଗର୍ଭରୁ ପଡ଼ିଲା ବାଳପୋଇ
ସିଞ୍ଜିକାର ନାମ ତାର ଦିଲେକ ଭାବଗ୍ରାହି ॥୧୯୮୫॥
ରାଧିକା ଦୁତିକା ମିଳିଲେ ନିଜ ପୁର
ବଳରାମ ସଙ୍ଗତେ ସୋଇଲେ ଚକ୍ରଧର ॥୧୯୮୬॥

## ବିରହ ମୁରଲୀ ସୃଷ୍ଟି ବୃତ୍ତାନ୍ତ

ଯେମନ୍ତ ସମୟେ ଯହୁଂ ପାହିଲା ରଜନି
ଦେବାଳୟମାନଙ୍କରେ[୨] ସୁଭିଲା ସଙ୍ଖ ଧ୍ୱନି ॥୧୯୮୭॥
ପ୍ରଭାତୁ ଉଠି କୃଷ୍ଣ ବଇସିଂ ଧ୍ୱନି କଲେ
ଗୋବଛା ଘେନିଣ ସେ ଗୋପସୁତ ବାହାରିଲେ ॥୧୯୮୮॥
ଶ୍ରୀକୃଷ୍ଣ ବଛା ଘେନି ହୋଇଲେ ବାହାର
ଚରାନ୍ତି କୁଜଂବନେ ଆସନ୍ତି ସନ୍ଧ୍ୟାକାଳ ॥୧୯୮୯॥
ପାର୍ବତି ପଚାରିଲେ ସୁଣ ହେ ଦିଗାମ୍ବର
ଯେବଣ ମୁରଲି ସେ ଦିଲେ ବେଦବର ॥୧୯୯୦॥
ଶ୍ରୀକୃଷ୍ଣ ନାଥ ଯେ ଚୁମ୍ବିଲେ ତାହା ଘେନି
ତ୍ରାସିଲେ ତିନିପୁର ବସ ହୋଇଲେ ଗୋପାଳୁଣି ॥୧୯୯୧॥
କାହିଁରୁ ଜାତ ସେ କାହିଂ ରଖିଥିଲେ
କେତେକାଳେ ଶ୍ରୀକୃଷ୍ଣ ହସ୍ତେ ନେଇ ଦେଲେ ॥୧୯୯୨॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ଯେଉଂକାଳେ ସୃଷ୍ଟି ସେ ହୋଇଲା ସର୍ଜନ ॥୧୯୯୩॥
ବ୍ରହ୍ମା ସହିତେ ସର୍ବ ଦେବତାୟେ ଏକମେଳ ହେଲେ
ମେରୁ ସିଖରେ[୩] ଯାଇ ଯଜ୍ଞ ଆରମ୍ଭିଲେ ॥୧୯୯୪॥
ବେଣୁ ବୃକ୍ଷ ଗୋଟିୟେ ଯଜ୍ଞରୁ ଜାତ ହୋଇ
କୁଠାରରେ ଛେଦିଲେ ତାହାକୁ ବେଦସାଇଂ ॥୧୯୯୫॥
ଅଦ୍ରାବଳି ପିନାକି ଅଜଙ୍ଗ ସାରଙ୍ଗ
ବୈଷ୍ଣବି ଗାଣ୍ଡିମ ହୋଇଲା ଛଡ଼ଖଣ୍ଡ ॥୧୯୯୬॥
ଅଗ୍ର ଯେକ ପବ ଯେ ହୋଇଲା ବଇଂସିଟି
ରଖିଥିଲେ କୃଷ୍ଣଙ୍କୁ ଦିଲେକ ବେଦପତି ॥୧୯୯୭॥
ଅଷ୍ଟାଦସ ଅଙ୍ଗୁଳି ଯେ ସପ୍ତମ ରନ୍ଧ୍ର
ନିର୍ବାଣିଲେ ବିଧାତା ଲାଗିଛି ପାଣିଦ୍ରବ୍ୟ ॥୧୯୯୮॥

୧ । ଖ ପୋଥି – ଖସାଇ ନାରାୟଣ
୨ । ଖ ପୋଥି – ଦେବତାଙ୍କ ଆଳେ
୩ । ଖ ଓ ଗ ପୋଥି – ମେଖଳରେ

ଯାହାର ନାମଧରି ଚୁମ୍ବିଲେ ଭଗବାନ
ଛାଡ଼ଇ ଘର ପତି ଧାମଇଂ ସେହିକ୍ଷଣ ॥୧୯୯୯॥

## ଶ୍ରୀକୃଷ୍ଣଙ୍କ ଘାଟସଧା ଓ ରାସକ୍ରୀଡ଼ା

ଯେକଦିନେ ଶ୍ରୀହରି ଯେ ନନ୍ଦକୁ କହିଲେ
ଘାଟିଆ ପଣ ତାତ ହୋଅସି ଗୋପପୁରେ ॥୨୦୦୦॥
କଂସ ଯେ ତୁମ୍ଭଠାରେ ରାଜ୍ୟ ସମର୍ପିଲା
ଘାଟ ନ ସାଧୁଣୁ ସୁନିଆଂ କାହୁଂ ଦେବା ॥୨୦୦୧॥
ନନ୍ଦ ବୋଇଲା ମୁଂତ ଅତ୍ୟନ୍ତ ବିସୋୟି
କେମନ୍ତେ ଘାଟ ଜଗି ବସିବି ନିତି ମୁହିଂ ॥୨୦୦୨॥
ଗୋବିନ୍ଦ ବୋଇଲେ ତାତ ନ ଭାଳ ତୁମ୍ଭେ ପୁଣି
ମୁହିଂ ବସି ଘାଟ ବାଟ ସାଧିବଇଂ ଜାଣି[1] ॥୨୦୦୩॥
ମଥୁରା ହାଟକୁ ଯେ ଗମନ୍ତି ଗୋପାଳୁଣି
ପସରା କେ ପଣେ ଲେଖେଂ ଆଣିବି ମୁହିଂ ଗଣି ॥୨୦୦୪॥
ବୋଲନ୍ତି ନନ୍ଦ ନୃପ ତୁ ଅଟୁ ମୋର ଅଲେଳ
ଘାଟ ସାଧିଲେ ହେବ ଉଛୁର ସକାଳ[2] ॥୨୦୦୫॥
ରୋଗ ପିଡ଼ା କରନ୍ତେ ସୁଖିବ ବଦନ
ନୋହୁ ପଛେ ମୋହର ଘାଟସଧା ଧନ ମାନ ॥୨୦୦୬॥
ଶ୍ରୀକୃଷ୍ଣ ବୋଇଲେ ତାତ ହୋଇଲକି ବାଇ
ଗୃହ କରିଥିଲେ ଧନ ସଞ୍ଚିବା ଅଟଇ ॥୨୦୦୭॥
ଧନ ସଞ୍ଚିଥିଲେ ସେ ଯେ ନ ପଡ଼େ ପରମାଦ
ଗୋବିନ୍ଦ ବଚନେ ସେ ସନମତ କଲା ନନ୍ଦ ॥୨୦୦୮॥
ପିତାର ସନମତେଂ ଗୋବିନ୍ଦେ ଗମିଲେ
ଯମୁନା ତଟ ବାଟେ[3] ଜଗିଣ ବସିଲେ ॥୨୦୦୯॥
କହନ୍ତି ଦିଗାମ୍ବର ସୁଣଗୋ ଗଉରି
ହାଟକୁ ଯିବେ ବୋଲି ସଜ ହୋଇଲେ ଗୋପନାରି ॥୨୦୧୦॥
ପସରାମାନ ଘେନି[4] ହୋଇଲେ ବାହାର
ପ୍ରବେସ ହୋଇଲେ ଯମ ବହେଣି ନିକଟର ॥୨୦୧୧॥
ଲଉଡ଼ି ଘେନି କୃଷ୍ଣ ବସିଛନ୍ତି ଜଗି
ରହ ରହ ବୋଲିଣ ଗୋପିଙ୍କି ଉଗାଳି ॥୨୦୧୨॥
ସବୁଦିନେ ତୁମ୍ଭେ ଯାଉଥିଲ ହାଟ
ଯେବେ ଦିଅ ମୋତେ ଗୋପପୁର ଘାଟ ॥୨୦୧୩॥

୧ । ଖ ଓ ଗ ପୋଥି – ମୁହିଂ ବାଟ ଜଗି ଘାଟକୁ ସାଧିବଇଂ ପୁଣି
୨ । ଖ ପୋଥି – ସାଧିଲେ ବେଳ ହୋଇବ ଉଛୁର
୩ । ଖ ପୋଥି – ଘାଟ ବାଟ
୪ । ଖ ପୋଥି – ମୁଣ୍ଡାଇଣ

ଘାଟ ନ ଦିଲେ ବାଟ ନ ଛାଡ଼ଇଂ ମୁହିଂ
ଶ୍ରୀକୃଷ୍ଣଙ୍କ ବଚନେ ବୋଲନ୍ତି ସର୍ବଗୋଇ ॥୨୦୧୪॥
ବାଇ କି ବାତୁଳ ତୁ ହୋଇଲୁ ନନ୍ଦ ଚାଟ
ପ୍ରଥମେ ଯିବାବେଳେ ଉଗାଳୁଛୁ ବାଟ ॥୨୦୧୫॥
ଯେବେ ବିକା ନ ଯିବ ଆମ୍ଭର ଦୁଧ ଦହି
ସବୁ ତୋର ଦୁଆରେ କଚାଡ଼ିବୁ ନେଇ ॥୨୦୧୬॥
କେତେଦିନ ଅବା ରାଜା ହୋଇଛି ମହାକୁଢ଼
ଆମ୍ଭ କଉଡ଼ି କି ନ ଅଣ୍ଟିଲା ଭଣ୍ଡାର[1] ॥୨୦୧୭॥
କଂସ ରାଜା ଅଗ୍ରତେଂ କରିବୁଂ ଗୁହାରି
ଗୋପିଙ୍କ ବଚନେ ବୋଲନ୍ତି ନରହରି ॥୨୦୧୮॥
ତୁମ୍ଭର ଯେମନ୍ତ ଅଟଇ କଂସ ରାଜା
ସେ ମୋର ମଉଳା ମୁଂ ତାର ଭଣଜା ॥୨୦୧୯॥
ଘାଟିଆ ପଣ ମୋତେ ଦେଇଅଛି ସେହି
ତୁମ୍ଭଠାରୁ ଘାଟ ନେଇ ତାହାଙ୍କୁ ଦେବଇଂ[2] ॥୨୦୨୦॥
ଯେବେ ତୁମ୍ଭେ ତଳେ ପସରାମାନ ଥୁଅ
ସବୁଦିନେ ଦାନ କଉଡ଼ି ବୁଝିଦିଅ ॥୨୦୨୧॥
ରାଧିକା ବୋଇଲେ ଯେବେ ନ ଛାଡ଼ିବୁ ବାଟ
ନେଉଟି ଯିବୁ ଆମ୍ଭେ କିପାଇଂ ଦେବୁଂ ଘାଟ ॥୨୦୨୨॥
ଯେମନ୍ତେ ବୋଲିଣ ସେ ଘରକୁ ଲେଉଟିଲେ
ଲଉଡ଼ି ଧରି କୃଷ୍ଣନାଥ ପଥ ଉଗାଳିଲେ ॥୨୦୨୩॥
ଥୋକାୟେ ଦଧିହାଣ୍ଡି ଭାଜିଂଣ ଚୁନା କଲେ
ଡକା ହୋଇଲା ବୋଲି ଗୋପିୟେ ଗୋଳକଲେ ॥୨୦୨୪॥
ସର୍ବ ଗୋପି ବସିଲେ ଯେକଠାବ ହୋଇ
ଚନ୍ଦ୍ରାବଳି ପାସରେ ବସିଲେ ଭାବଗ୍ରାହି ॥୨୦୨୫॥
ବୋଇଲେ ଗୋ ରାହି ତୋର ପସରା ଏ ଅଟଇ
ଦଧିହାଣ୍ଡି ମୁଚୁଳା ଆବର କୁଣ୍ଡୋଇ ॥୨୦୨୬॥
ତୁହି ଗୋପାଳୁଣି ଏ ଅଟଇ ପାଣିଦ୍ରବ୍ୟ
ଯେଥିକି ଦାନ ମୋର ବିସାସତେ ମାଢ଼ ॥୨୦୨୭॥
ଯେବଣ ଖୋସା ତୁ ଖୋସିଅଛୁ ସିରେ
ଅଷ୍ଟରତ୍ନ ପୁଷ୍ପ ତୁ ଗୋ ଖୋସିଛୁ ତହିଂରେ ॥୨୦୨୮॥
ଯେଥିକି ଧନ ହୋଇଲା ସହସ୍ରେ ମାଢ଼ ମୋର
ଗଳାରେ ଲମ୍ବିଅଛି ମୁକୁତାର ହାର[3] ॥୨୦୨୯॥
ଗୋପାଳୁଣି ହୋଇ ଦେବଦ୍ରବ୍ୟ ଆଭରଣ ହେଉ[4]
ଯେଥିକି ସତେ ମାଢ଼ ସୁବର୍ଣ୍ଣ ଦେବୁ ଆଉ ॥୨୦୩୦॥

୧ । ଖ ପୋଥି – ସେ ନେଇ ଗଣାଇବ ରାଜାର ଭଣ୍ଡାର
୨ । ଗ ପୋଥି – ପେସିବଇଂ
୩ । ଖ ଓ ଗ ପୋଥି – ସୁବର୍ଣ୍ଣ ସୁତା ହାର
୪ । ଖ ଓ ଗ ପୋଥି – ରାଣୀଙ୍କ ଦ୍ରବ୍ୟ ନାଉ

ନାସାରେ ଅଛି ତୋର ଜଡ଼ାଉର ବସଣି
ଯେଥିକି ସତେ ମାଢ଼ ସୁନିଆ ଦେବୁ ଗଣି ॥୨୦୩୧॥
ଯେ ତୋର ବେନି କୁଚ ମର୍କତର ଲିଙ୍ଗ
ରଖିଅଛୁ ଅମୃତ ଦେଇଣ ନିଳ ମୁଦ ॥୨୦୩୨॥
ଯେଥିକି ଦାନ ମୋହର ହୋଇଲା ସତସଠି
ଜଡ଼ାଉର ମୁଦ୍ରିକା ଯେ ଭରିଅଛୁ ଅଙ୍ଗୁଷ୍ଠି ॥୨୦୩୩॥
ପିନ୍ଧୁଛୁ ନିଳ ସାଢ଼ି ପଠନି ଉପୁରାଣ
ଯେଥିକି ହେବ ମୋର ସତସଠି ଧନ ॥୨୦୩୪॥
ଯେ ତୋର ଜାନୁ ଜଙ୍ଘ ଓଲଟ କଦଳି
କୁଙ୍କୁମ ଅଙ୍ଗରେ[1] ଲେଖିଛୁ ପତ୍ରାବଳି ॥୨୦୩୫॥
ହସ୍ତରେ ପୁରୋଇଛୁ ସୁବର୍ଣ୍ଣର ବାହି
ସୁର୍ଯ୍ୟର ତେଜପ୍ରାୟେ ଝଟକି ଦିସଇ ॥୨୦୩୬॥
ଆଉ ଯେତେ ଅଛି ଦେହରେ ଅଳଙ୍କାରମାନ
ଯେଥିକି ଦାନ ମୋର ସତର ଲକ୍ଷ ମାଢ଼ ଧନ ॥୨୦୩୭॥
ଯେମନ୍ତ ବୋଲି ଯହୁଁ ବୋଇଲେ ଗୋବିନ୍ଦ
ରାଧିକା ବୋଇଲେ ଯେତ କରୁଛି ପରମାଦ ॥୨୦୩୮॥
କେବଣ ନାରି ଯେହାକୁ ଦେଇଥିଲା ଜନ୍ମ
ଯେଡ଼େ ଅଲାଜୁକ ଯେ ଦେହକୁ ମାଗେ ଦାନ ॥୨୦୩୯॥
ଯେଣିକି ଯିବା ତେଣିକି[2] ଉଗାଳେ ଯେ ବାଟ
ଯେଡ଼େକ ହଟିଆ ଗୋ ଅଟଇ ନନ୍ଦଚାଟ ॥୨୦୪୦॥
ଯେବେଂ ଜାଣିଥାନ୍ତୁ ବାଟ ଘାଟ ସନ୍ଧି
ପଣନ୍ତରେ ଧନ ଆମ୍ଭେ ଆଣିଥାନ୍ତୁ ବାନ୍ଧି ॥୨୦୪୧॥
ହସ୍ତରେ ଧନ ନାହିଁ ଦିଅତୁ ମେଲାଣି
କାଲି ସବୁ କଉଡ଼ି ତୋର ଦେବୁ ଗଣି ॥୨୦୪୨॥
ଶ୍ରୀକୃଷ୍ଣ ବୋଇଲେ ଯେବେ ନାହିଁ ତୁମ୍ଭର ଧନ
ଇଛା ମୋର ହୋଇଛି ଦିଅ ରତିଦାନ ॥୨୦୪୩॥
ଶ୍ରୀକୃଷ୍ଣର ବଚନେ ଆଶ୍ଚାର୍ଯ୍ୟ ହେଲେ ଗୋପି
ରାଧିକା ବୋଇଲେ ହୋ ତୁ ଯିବୁ ଯେ କାହିଁକି ॥୨୦୪୪॥
ବାଳେକ ହୋଇ କେହ୍ନେ କରିବୁ ଶୃଙ୍ଗାର
ଆସ ଆସ ବୋଲିଣ ଧଇଲେ କୃଷ୍ଣ କର ॥୨୦୪୫॥
ଅଳପ ହସିଣ ଯହୁଁ ବୋଇଲେ ଚନ୍ଦ୍ରାବଳି
ସଲଜିତ ଚିତେ ଯେ ଉଠିଲେ ବନମାଳି ॥୨୦୪୬॥
ସମସ୍ତ ଗୋପିଙ୍କି ବସ୍ୟ କଲେ ଭଗବାନ
କ୍ରିଡ଼ା କଲେ ଯାଇ କାଳନ୍ଦି କୁଜଂବନ ॥୨୦୪୭॥

୧ । ଖ ପୋଥି – କସ୍ତୁରୀରେ
୨ । ଖ ପୋଥି – ଗଲେ ତେଣେ

ବୃକ୍ଷଙ୍କର ତଳେ ବନ୍ଧା ହୋଇଛି ରତ୍ନବେଦି
ତହିଂପରେ ପଲଙ୍କମାନ ଯେ ଅଛି ପଡ଼ି ॥୨୦୪୮॥
ତହିଂପରେ ବିଜୟେ କରିଛନ୍ତି ଭାବଗ୍ରାହି
ଯେକ ଯେକ ଗୋପିକି ଯେକ ଯେକ କୃଷ୍ଣ ହୋଇ ॥୨୦୪୯॥
ସପତ ସ୍ୱର୍ଗ ଲୋକେ ଯେ ଦେଖୁଛନ୍ତି ରହି
ଗୋପିଙ୍କ ସଙ୍ଗେ ରମଣ କରନ୍ତି ଭାବଗ୍ରାହି ॥୨୦୫୦॥
ହରସ କଲେ ସେ ଯେ ଗୋପିଙ୍କର ମନଂ
ରତିକ୍ରିଡ଼ା ସାରିଣ ସେ ପିନ୍ଧିଲେ ବସନ ॥୨୦୫୧॥
ଶ୍ରୀକୃଷ୍ଣ ନାଥ ତହୁଂ ଅନ୍ତର ହୋଇଗଲେ
ପିନ୍ଧିଲାର ବସନ ଯେ ସମ୍ଭାଳି ପିନ୍ଧିଲେ[2] ॥୨୦୫୨॥
ହସ୍ତରେ ଯଷ୍ଟି ଘେନି ପସରାଠାରେ ବସି
ଦେଖିଣ ଗୋପିମାନେ ହୋଇଲେ ହସାହସି ॥୨୦୫୩॥
ଯେବେ କୃଷ୍ଣ ଛାଡ଼ି ଦେବୁ କି ନ ଦେବୁ
ଆମ୍ଭଠାରେ ଦୟା ସବୁଦିନେ କରିଥିବୁ[3] ॥୨୦୫୪॥
ହାଣ୍ଡି କୁଣ୍ଡୋଇ ସବୁ ସୁବର୍ଣ୍ଣ ହୋଇଅଛି
ସୁବର୍ଣ୍ଣ କଉଡ଼ିରେ ସବୁ ପସରା ପୁରିଅଛି ॥୨୦୫୫॥
ହରସ ହୋଇ ଗୋପି ଘରକୁ ଗମିଲେ
ସୁଣସି ଓମା ବୋଲି ସଙ୍କର କହିଲେ ॥୨୦୫୬॥

## ନନ୍ଦଙ୍କର ଶାଳଗ୍ରାମ ପୂଜା

ଯେକଦିନେ ନନ୍ଦ ଯେ ଯସୋଦାକୁ ବୋଲଇ
ସ୍ନାହାନ କରି ଯିବ ପୁଜିବିଂ ଦିଅଂ ମୁହିଂ ॥୨୦୫୭॥
ଯେମନ୍ତ କହି ନନ୍ଦ ସ୍ନାହାନ କରିଗଲେ
ସାରିଣ ଦେବାର୍ଚ୍ଚନ ମନ୍ଦିରେ ମିଳିଲେ ॥୨୦୫୮॥
ଯେ ବିଧି ପୁଜା ସେ କରଇ ନନ୍ଦ ନୃପବର[4]
ଶ୍ରୀକୃଷ୍ଣ ନାଥ ଯାଇ ମିଳିଲେ ସେଠାବର ॥୨୦୫୯॥
ବୋଇଲେ ପିତା ଆହେ ଦିଅଂ ତୋର ଯେ କାହିଂ
ପଥର ଲୋଚାୟେ ତ ଖଟୁଳିଂରେ ଅଛଇ ॥୨୦୬୦॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ
୨ । ଖ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ପୋଥିରେ ଏହାର ପରେ ଦୁଇଧାଡ଼ି ଅଧିକ ଅଛି –
କହ ଯେବେ କେଣିକି ଆମ୍ଭେ ଯିବୁଂ ବାବୁ
ଶ୍ରୀକୃଷ୍ଣନାଥ ଯେ ଉଠିଣ ଚାହିଂ ଦେଇ
୪ । ଖ ଓ ଗ ପୋଥି – ମହାକୁଢ଼

କାହିଂ ତାଙ୍କର ବର୍ଣ୍ଣଂ[1] ଚିହ୍ନ ସମାସ୍ୟା ନ ଦିଅଇ
ଅଜିବ ପଥରକୁ ପୁଜ କାହିଂପାଇଂ ॥୨୦୬୧॥
ଯେହାକୁ ପୁଜିଲେ କିସ ବର ଦେବେ ତୁମ୍ଭକଇ
ତୁମ୍ଭେ ରାଜା ହୋଇ ବଡ଼ ଅଜ୍ଞାନଇ[2] ॥୨୦୬୨॥
ଯେତେ ବୋଲି ସିଳାକୁ ଘେନିଲେ ଗୋବିନ୍ଦ
ପାଦେ ମରଦନ୍ତେ ଯାଇ ଧଇଲେକ ନନ୍ଦ ॥୨୦୬୩॥
ବୋଇଲେ ବାଇ କି ହୋଇଲୁ କହ୍ନାଇ
ଦେବତାଙ୍କୁ ତୁକାର ବୋଇଲୁ କାହିଂପାଇଂ[3] ॥୨୦୬୪॥
କୁଳର ଦେବତାୟେ ପୁଜୁଅଛି ମୁହିଂ
ଯେହାଙ୍କର ପ୍ରସାଦେ ତୋତେ ଅଛି ପାଇ ॥୨୦୬୫॥
ଆଡ଼େ ହୋଇ ଯାଅରେ କହ୍ନାଇ କର ଯା ସ୍ନାହାନ
ଜପ କରଇ ନନ୍ଦ ବୁଜିଣ ନୟନ ॥୨୦୬୬॥
ଧାଇଂ ଯାଇ ଯସୋଦାକୁ କହିଲେ ଗୋବିନ୍ଦ
ପିତା ମୋର ଢୋଳାଇଲେ ପାଡ଼ିଣ ଦିଅ ସେଯ ॥୨୦୬୭॥
ଖଟୁଳି ଉପରେ ଗୋ ପଡ଼ିବେ ମୁଖ ମାଡ଼ି
ପଥର ବାଜି ନିକି ବୁକୁ ଯାଏ ଛିଡ଼ି ॥୨୦୬୮॥
ଆସ ଆସ ଜନନି ଗୋ ଆଣିବା ଉଠାଇ
କି ଅବା ଚେଡ଼ି ଚାମଡ଼ା ପିତାକୁ ଲାଗିଛଇ ॥୨୦୬୯॥
ଯସୋଦା ବୋଇଲେ ବାଇ ହୋଇଲୁ କି ନନ୍ଦନ
ସେ ଦିଅଂ ପୁଜୁଛନ୍ତି ମୁଂ ଭିଆଇଂ ଦ୍ରବ୍ୟମାନ ॥୨୦୭୦॥
ଯେମନ୍ତେ ବୋଲନ୍ତେଣ ନନ୍ଦ ମିଳିଲା ସେ ଠାବର
ଯସୋଦାକୁ ବୋଇଲା ଭୋଗ ଦିଅ ତତପର ॥୨୦୭୧॥
ନନ୍ଦକୁ ଦେଖି କୃଷ୍ଣ ଅନ୍ତର ହୋଇଗଲେ
ଖଟୁଳି ଉହାଡ଼େ ଯାଇ ଲୁଚିଣ ବସିଲେ ॥୨୦୭୨॥
ସୁଣସି ଓମା ବୋଲି ବୋଲନ୍ତି ସୁଳପାଣି
ଏମନ୍ତେ ଭୋଗ ବଢ଼ାଇ ଦିଅନ୍ତି ଯସୋବନ୍ତି ରାଣି ॥୨୦୭୩॥
ପୁରି ଲୁଚି ସାକର ନଟିକାଳ ଛେନା
ମୁଗ ପିଷ୍ଟକ ଯେ ନବାତ ଚେନି ପଣା ॥୨୦୭୪॥
ଛେନା ଗୁଡ଼ ମିଶ୍ରିତ ଖଣ୍ଡ ଖଜା ମିଠାଇ
ଅମୃତ ପାନି କଦଳି ସଙ୍ଗତେ ଦୁଧ ଦହି ॥୨୦୭୫॥
ସମସ୍ତ ଦ୍ରବ୍ୟମାନ ନନ୍ଦ ଘେନିଗଲେ
ଦିଅଂ ଆଗେ ବାଢ଼ିଣ ପାଣି ଛଡ଼ାଇଲେ ॥୨୦୭୬॥

---

୧ । ଖ ଓ ଗ ପୋଥି – ସବଦ
୨ । ଖ ପୋଥି – ଯେ ତୋତେ ବର ଦେବେ ନ ଚିହ୍ନ ତାହାଙ୍କୁ
୩ । ଖ ପୋଥି – ବୋଲୁଛୁ କିପାଇଂ

କବାଟ ଦେଇ ନନ୍ଦ ଅନ୍ତର ହୋଇଯାଇ
ଶ୍ରୀକୃଷ୍ଣ ନାଥ ଉଠି ଭୋଗ ସେ ଗଲେ ଖାଇ ॥୨୦୭୭॥
ସାଳଗ୍ରାମ ସିଳା ସେ ପ୍ରତିମା ଆଦିମାନ
ସବୁ ଫିଙ୍ଗି ଦେଇ ସେ ବସିଲେ ସିଂହାସନ ॥୨୦୭୮॥
କବାଟ ଫେଇ ନନ୍ଦ ମିଳିଲେ ସେଠାର
ଦେଖିଲେ ଭୋଗମାନ ନାହିଂ ସେ ସ୍ଥାଳିର ॥୨୦୭୯॥
ଦେଖିଲେ ଖଟୁଳିରେ ବିଜୟେ ଭଗବାନ
ବିରାଜି ଦିସୁଅଛି ସଙ୍ଖଚକ୍ର ଚିହ୍ନ ॥୨୦୮୦॥
ଧାଇଂ ଯାଇ ନନ୍ଦ ଯସୋଦାଙ୍କୁ କହି
ଯେତେ କାଳେ ଦୟା ମୋତେ କଲେ ଭାବଗ୍ରାହି ॥୨୦୮୧॥
ଚତୁର୍ଭୁଜ ରୁପ ମୁଂ ଯେ ଦେଖିଲି ତାହାଙ୍କର
ଯେହିକ୍ଷଣି ମୋତେ ଯାଚିଣ ଦେବେ ବର ॥୨୦୮୨॥
କିସ ମୁଂ ମାଗିବି ମୋହର ମନେ ନାହିଂ
ତୁହି ଆସ ସଙ୍ଗତେ ଦେବୁ ମୋତେ କହି ॥୨୦୮୩॥
ଯସୋଦାଙ୍କୁ ଘେନିଣ ନନ୍ଦ ଆସେ ଚଳି
ଦେଖିଲେ ଖଟୁଳିରେ ବିଜୟେ ବନମାଳି ॥୨୦୮୪॥
ଦେଖିଣ ପତିପତ୍ନି ସିରରେ କରଦେଲେ
ତ୍ରାହିକର ବୋଲିଣ ପାଦରେ ପଡ଼ିଲେ ॥୨୦୮୫॥
ପ୍ରସନ୍ନ ହୋଇଲୁ କର ମୋତେ ଦୟା
ଯେମନ୍ତେ ନ ଲାଗିବ ତୋହର ବିଷ୍ଣୁମାୟା ॥୨୦୮୬॥
ସଂସାର ବିସୟାରେ ପଡ଼ି ବଣା ମୁଂ ହୋଇଲିଂ
ତୁମ୍ଭ ପାଦେ ସେବା କରି ନ ପାରିଲି ॥୨୦୮୭॥
ଯେମନ୍ତ ବୋଲିଣ ଯହୁଂ କହିଲାକ ନନ୍ଦ
ସୁଣିଣ କୋପିତ ଯେ ହୋଇଲେ ଆଦିକନ୍ଦ ॥୨୦୮୮॥
ରଟମଟ କରି ଦନ୍ତ ଭୟଙ୍କର ହୋଇ
ଆପଣେ ନନ୍ଦକୁ ଡରାନ୍ତି ଭାବଗ୍ରାହିଂ ॥୨୦୮୯॥
ନନ୍ଦ ବୋଇଲା ଯେ ଯସୋଦା ମୁଖଚାହିଂ
ଦିଅଂ ଠାରେ ଦ୍ରୋହ ଅର୍ଜିଲା କହ୍ନାଇଂ ॥୨୦୯୦॥
ତେଣୁ କରି କୋପିତ ହୋଇଲେ ଭଗବାନ
କାହିଂଅଛି ଡାକି ଆଣ ଲୋ ମୋହର ନନ୍ଦନ ॥୨୦୯୧॥
ଠାକୁରଙ୍କ ପାଦତଳେ କୃଷ୍ଣକୁ ପକାଇବା
ବାଳେକର ଦୋସ ଆମ୍ଭେ ଘେନିଣ ମାଗିବା[2] ॥୨୦୯୨॥
ଯେହାଙ୍କର ଦିଲା ପୁତ୍ର ମୋର ଅର୍ଜିଲା ସେହି[1]
ନନ୍ଦର ବଚନେ ଯେ ଯସୋଦା ଗଲା ଧାଇଂ ॥୨୦୯୩॥

---

୧ । ଖ ପୋଥିରେ ଏହି ଧାଡ଼ି ନାହିଁ
୨ । ଖ ପୋଥି – କ୍ଷମା କରାଇବା

ଗମ୍ଭିରି ଘରଦ୍ୱାରେ ଯାଇଣ ଖୋଜିଲା
କୃଷ୍ଣକୁ ନ ପାଇଣ ଲେଉଟି ଅଇଲା ॥୨୦୯୪॥
କହ୍ନାଇ କହ୍ନାଇ ବୋଲିଣ ଡାକ ଦେଇ
ସୁଣିଲେ କୃଷ୍ଣନାଥ ଖଟୁଳିରେ ଥାଇ ॥୨୦୯୫॥
ବୋଇଲେ ମାତା ଗୋ କିପାଂ ଡାକୁଛ ଆମ୍ଭକୁଂ[୧]
ମୁହିଂ ଯେଥେ ବସିଣ ପୁଜୁଛି ଦିଅଂଙ୍କୁଂ[୨] ॥୨୦୯୬॥
ପୁଜା ବେଳେ ପିତାଙ୍କୁ ଡୋଳ ଯେ ମାଡ଼ିଲା
ଥୋକାଯେକ ପୁଜା ମନ୍ତ୍ର ପିତା ଯେ ପାସୋରିଲା ॥୨୦୯୭॥
ତାହା ଯେବେ ସମ୍ପୁର୍ଣ୍ଣେ ପଢ଼ି ପୁଜୁଅଛି ମୁହିଂ
ଯେ କଥା ନ ବିଚାରି ଡାକୁଛ କାହିଂ ପାଇଂ ॥୨୦୯୮॥
ଯେମନ୍ତ ବୋଲି ଯହୁଂ ଶ୍ରୀକୃଷ୍ଣ କହିଲେ
ଡକା ହୋଇଲା ବୋଲି ନନ୍ଦ ଯସୋଦା ଧାଇଂଲେ ॥୨୦୯୯॥
ବିମାନ ଉପରୁ ସେ କୃଷ୍ଣଙ୍କୁ ଆଣିଲେ ଓହ୍ଲାଇ
ଦିଅଂ ତ ନୋହଇ ଯେହୁ ଆମ୍ଭର କହ୍ନାଇ ॥୨୧୦୦॥
ଦିଅଂଙ୍କୁ ଫିଙ୍ଗି ଦେଇ ବସିଲା ବିମାନର
ଆମ୍ଭେ ମାତା ପିତା କଲୁଂ ଯେ ନମସ୍କାର ॥୨୧୦୧॥
ଆଉ କି ଜିଇଂବ ଆୟୁସ କ୍ଷୟେ ଗଲା
ପ୍ରାପତ ହେଲା ନିଧି ଆମ୍ଭର ଦଇବ ବୁଡ଼ାଇଲା ॥୨୧୦୨॥
ସରିଲା ସମ୍ପଦ ଆଉ ବ୍ରତିବାକୁ ନାହିଂ
ମାରିବାକୁ କହ୍ନାଇକି ବୋଲିଣ ଗୋଡ଼ାଇ ॥୨୧୦୩॥
ପଳାଇଲେ କୃଷ୍ଣଚନ୍ଦ୍ର ନନ୍ଦ ଲେଉଟିଣ ଆସି
ଫିଙ୍ଗି ଦିଲା ସିଳାମାନ[୩] ଖଟୁଳିରେ ରଖି ॥୨୧୦୪॥
ନବତନ ଦ୍ରବ୍ୟମାନ ବାଢ଼ିଲେକ ନେଇ
ଦେବତାଙ୍କୁ ସାନ୍ତି କରି ଭୋଗରାଗ ଦେଇ ॥୨୧୦୫॥
କାଞ୍ଚନ ସ୍ଥାଳିରେ ପ୍ରତି ପ୍ରତି କରି
ଭୁଜଂାଇ ମହାତ୍ମା ଭୋଜନ ସ୍ଥାଳି ଆବୋରି[୪] ॥୨୧୦୬॥
ବୋଇଲା ଯସୋଦା ଗୋ ପୁତ୍ର ଗଲା କାହିଂ
ଖୋଜିଣ ଆଣ ମୋ ସଙ୍ଗେ ବସି ଭୁଜିଂବ ସେହି ॥୨୧୦୭॥
ନନ୍ଦର ବଚନେ ଯସୋଦା ଗଲା ଖର
କହ୍ନାଇ କହ୍ନାଇ ବୋଲି ଡାକିଲା ଦାଣ୍ଡର ॥୨୧୦୮॥
ଗୋପ ବାଳକଙ୍କୁ ସେ ଡାକିଣ ପୁଛଇ
ଦେଖିଲକି କେଣେ ଗଲା ମୋହର ମାଧୋଇ[୫] ॥୨୧୦୯॥

---

୧ । ଖ ଓ ଗ ପୋଥି – ଡାକୁଛ କିପେଂ ମୁକୁ
୨ । ଗ ପୋଥି – ଭୁଞ୍ଜାଉଛି ଦିଅଙ୍କୁ
୩ । ଖ ପୋଥି – ଫେଙ୍ଗି ଦେଲା ଦିଅଂ ସାଉଣ୍ଟି ଖଟୁଳିରେ ରଖି
୪ । ଖ ଓ ଗ ପୋଥି – ଭୁଞ୍ଜଇ ମହାକୁଢ଼ ବସିଣ ଆବୋରି
୫. ଖ ପୋଥିରେ ଏହାର ତଳେ ଦୁଇ ଧାଡ଼ି ଅଧିକ ଅଛି–
ଯଶୋଦା ଡାକ ଶୁଣି ମିଳିଲେ କହ୍ନାଇ
ଧୂଳି ଧୂସର ଯେ ତାଙ୍କ ଅଙ୍ଗ ହୋଇଛଇ

ମାତାଙ୍କୁ ଦେଖି କୃଷ୍ଣ ଥନ ଥନ କଲେ ଆଖି
ନୟନରୁ ଲୋତକ ହୃଦରେ ପଡ଼େ ଖସି ॥୨୧୧୦॥
କଳା ଦେହ ଗୋଟି ଧୁଳିରେ ଧୁସର
ପଣନ୍ତେ ପୋଛି ଦେଇ ନେଇ ଧଇଲେ କୋଳର ॥୨୧୧୧॥
କାଖରେ ବସାଇ ଘରକୁ ଘେନି ଯାଇ
ନନ୍ଦର ସଙ୍ଗତେ ଭୁଜିଂ ବସିଲେ ଭାବଗ୍ରାହି ॥୨୧୧୨॥
ସଢ଼ ରସେ ଭୁଜିଂ ଆଞ୍ଚୋବନ କଲେ
ଦଣ୍ଡେକ ରହି ଗୃହେ ଖେଳିବାକୁ ଗଲେ ॥୨୧୧୩॥
ସାତ ପାଞ୍ଚ ବାଳକ ସଙ୍ଗତେଂ କୃଷ୍ଣ ଘେନି
କାହାକୁ ପେଲି ଦେଇ କାହାକୁ ବିଧାମାରି ପୁଣି ॥୨୧୧୪॥
ସାତ ପାଞ୍ଚ ବାଳକେକୁ ଘେନିଣ କୃଷ୍ଣ କରେ
ମାଡ଼ିଣ ବସନ୍ତି କୃଷ୍ଣ ଯେକ ଆରେକ ଉପରେ ॥୨୧୧୫॥
ଥୋକାଯେ ବାଳକ ସେ କାନ୍ଦିଲେ ମାଡ଼ଖାଇ
ଯମୁନା ତଟରେ ମିଳିଲେ କୃଷ୍ଣ ଯାଇ ॥୨୧୧୬॥

## ଶ୍ରୀକୃଷ୍ଣଙ୍କର କୋକୁଆ ଭୟ ପ୍ରଦର୍ଶନ ଓ ରାଧାଙ୍କ ସହ କେଳି

ଗ୍ରାମର ପ୍ରାନ୍ତରେ ଚନ୍ଦ୍ରସେଣା ଘର
ସେଠାରେ ମିଳିଲେ ଯାଇ ଯସୋଦା କୁମର ॥୨୧୧୭॥
ଦେଖିଲେ ଦ୍ୱାର ଆବୋରି ବସିଅଛି ବୁଢ଼ି
ଦ୍ୱାର ଛାଡ଼ ବୋଲିଣ ଡାକନ୍ତି ଦେବହରି ॥୨୧୧୮॥
ବୋଇଲେ ଆଇ ଗୋ ଛାଡ଼ ତୁହି ଦ୍ୱାର
କୋକୁଆ ଗୋଡ଼ାଉଛି ପସିବି ଭିତର ॥୨୧୧୯॥
ବୁଢ଼ି ବୋଇଲା କାହ୍ନୁ କାହିଂ ଅଛିରେ କୋକୁଆ
ଶ୍ରୀକୃଷ୍ଣ ବୋଇଲେ ଦେଖ ହୋଇଅଛି ଠିଆ ॥୨୧୨୦॥
ଚାହିଂଣ ବୁଢ଼ି ଦେଖିଲା ଭୟଙ୍କର ରୁପ
ଝାଡୁଅଛି ଡେଣା ବିସ୍ତାରି ଅଛି ଥୁଣ୍ଟ ॥୨୧୨୧॥
ଆଖି ମିଟି ମିଟି କରି କରଇ ଗର୍ଜନ
ବୁଢ଼ିକି ଦିସିଲା କୋକୁଆ ଦୁତିୟ ହାଦେ ଯମ ॥୨୧୨୨॥
ବୁଢ଼ି ବୋଇଲା ଝିଅାଣିରେ ଯିବାକ ପଳାଇ
ଯେହିକ୍ଷଣି ନିକି ଦୁହିଙ୍କି ଗିଳିଣ ଦିଅଇ ॥୨୧୨୩॥
ଶ୍ରୀକୃଷ୍ଣ ବୋଇଲେ ଗୋ ଆସ ଆସ ଆଇ
ଗମ୍ଭିରି ଭିତରେଂ ତୋତେ ଲୁଚାଇବିଂ ମୁହିଂ ॥୨୧୨୪॥
ଉଠିଲାକ ବୁଢ଼ି ଶ୍ରୀକୃଷ୍ଣ କଥା ଶୁଣି
କୋକୁଆ ଡାକ ଦିଏ ବୁଢ଼ିକି ଖାଇବିଂ ପୁଣି ॥୨୧୨୫॥
ଯେତେ କହି ମାୟା କୋକୁଆ ଝାମ୍ପ ଦେଲା
ମୁଖ କାନ ଅଣ୍ଡାଳିଣ ବୁଢ଼ି ପଳାଇଲା ॥୨୧୨୬॥

ଗମ୍ଭିରି ଭିତରେ ବୁଢ଼ି ପସିଲାକ ଯାଇ
ମସୁଣି[1] ଢାଙ୍କି ମୋତେ ପକାରେ ମାଧୋଇ ॥୨୧୨୭॥
ଭୟରେ ବୁଢି ସେ ପଡ଼ିଲା ମୁଖ ମାଡ଼ି
ଶ୍ରୀକୃଷ୍ଣ ଘୋଡ଼ାଇ ପକାଇଲେ ମନ୍ଦୋରି[1] ॥୨୧୨୮॥
ରେଜୁ ଆଣି ତାହାକୁ ବାନ୍ଧିଲେ ଯତ୍ନକରି
ବୋଇଲେ ଆଇ ଗୋ ରହିଥାଅ ପଡ଼ି ॥୨୧୨୯॥
କୋକୁଆ କେଣେ ଗଲା ଦେଖଇ ମୁହିଂ ଯାଇ
ତାକୁ ନ ଦେଖିଲେ ତୋତେ ଦେବି ଯେ ଫିଟାଇ ॥୨୧୩୦॥
ବୁଢ଼ିକି ବାନ୍ଧିଣ କୃଷ୍ଣନାଥ ଚଳିଗଲେ
ରାଧିକା ମନ୍ଦିରେ ଯାଇ ପ୍ରବେସ ହୋଇଲେ ॥୨୧୩୧॥
ବୋଇଲେ ସଖି ଗୋ ଉଦ୍ଧରିଣ ଧର
ଦେଇ ମଉସୋଧି ଲିଭାଅ କାମଜ୍ୱର ॥୨୧୩୨॥
ସୁଣିଣ ରାଧିକା ହରସ ହୋଇଲେ
ଶ୍ରୀକୃଷ୍ଣନାଥଙ୍କୁ କୋଳରେ ବସାଇଲେ ॥୨୧୩୩॥
ଭୁଜକୁ ଭୁଜ ଭିଡ଼ି ମୁଖରେ ଚୁମ୍ବ ଦେଇ
ପଲଙ୍କେ ପହୁଡ଼ିଲେ ରାଧିକା ଭାବଗ୍ରାହି ॥୨୧୩୪॥
ହିଆକୁ ହିଆ ଦେଇ ସେ ରମଣ କରନ୍ତି
ପାଦକୁ ପାଦ ଛନ୍ଦି ଭିଡ଼ାଭିଡ଼ି ହୋନ୍ତି ॥୨୧୩୫॥
କଲେକ ରମଣ[2] ଚଉସଠି ପରିବନ୍ଧ
ସାରିଣ ବେନି ଜନେ ପଲଙ୍କେ ଗଲେ ନିଦ ॥୨୧୩୬॥
ବଦୟନ୍ତି ସଦାସିବ ସୁଣ ହେମବନ୍ତ ଜେମା
ସେହି ସମୟରେ ଆସି ମିଳିଲା ଚନ୍ଦ୍ରସେଣା ॥୨୧୩୭॥
ଦେଖିଲା ପଲଙ୍କରେ ସୋଇଅଛି ରାହି
କୋଳରେ ନିଦ୍ରା ଯାଇଅଛନ୍ତି ଭାବଗ୍ରାହି ॥୨୧୩୮॥
ହିଆକୁ ହିଆ ଦେଇ କୁଚରେ ବେନି ହସ୍ତ
ଦେଖିଣ ଚନ୍ଦ୍ରସେଣା ହୋଇଲା ଚକିତ ॥୨୧୩୯॥
ମାଆ ମାଆ ବୋଲିଣ ଡାକ ଚାରି ଦେଲା
ମସୁଣି ଭିତରେ ଥାଇ ବୁଢ଼ି ସେ ସୁଣିଲା ॥୨୧୪୦॥
ଚନ୍ଦ୍ରସେଣା ବୋଇଲା କି କରୁଅଛୁ ତୁହି
ବୁଢ଼ି ବୋଇଲା ବନ୍ଧନରେ ପଡିଛଇଂ ॥୨୧୪୧॥
କାହୁଂ ଆସି କୋକୁଆ ଯେ ଉପସ୍ଥିତ ହୋଇଲା
ଡରୁଥିଲିଂ ମୁହିଂ କହ୍ନାଇ ରଖିଗଲା ॥୨୧୪୨॥
ମସୁଣିରେ ଢାଙ୍କି ମୋତେ ବାନ୍ଧିଲା ଯତ୍ନକରି
ନପାରେ ଅଳିଚଳି ଯେଠାରେ ଅଛି ପଡ଼ି ॥୨୧୪୩॥

୧ । ଖ ପୋଥି – ମଶିଣି
୧ । ଗ ପୋଥି – ମଶୁଣି
୨ । ଖ ପୋଥି – ରତିରଙ୍ଗ

କହ୍ନାଇ କେଣେ ଗଲା ନ ଦେଖିଲି ମୁହିଂ
ବୁଢ଼ିର ବଚନେ ଚନ୍ଦ୍ରସେଣା ଗଲା ଧାଇଂ ॥୨୧୪୪॥
ଦେଖିଲା ବୁଢ଼ିର ଛାଡୁଅଛି ଜିବନ
କଇବର୍ତ୍ତ ଜାଲରେ ଯେସନେ ବନ୍ଧା ମିନ ॥୨୧୪୫॥
ଖରତରେ ଚନ୍ଦ୍ରସେଣା ଫିଟାଇଲା ଫାସ
ଦେହ ଅଣ୍ଡାଳିଣ ବୁଢ଼ି ଛାଡ଼ଇ ନିଶ୍ୱାସ ॥୨୧୪୬॥
ବୁଢ଼ିକି ଚନ୍ଦ୍ରସେଣା ଘେନିଗଲା ଘରେ
ବୋଇଲା ଦେଖ ରାଧା ସୋଇଛି ପଲଙ୍କରେ ॥୨୧୪୭॥
ସୋଇଅଛି ନନ୍ଦସୁତ ହିଆକୁ ହିଆ ଦେଇ
ବେନି ଜନଙ୍କର ତ ହୃଦରେ ବସ୍ତ୍ର ନାହିଂ ॥୨୧୪୮॥
ମିଥ୍ୟା କରୁଥିଲି ମୁଂ ବଚନ ତୋହର
ଯେବେ ମୁଂ ଦେଖିଲି ଯାଉଛି ନନ୍ଦଘର ॥୨୧୪୯॥
ନନ୍ଦ ଯସୋଦାଙ୍କୁ ଦେଖାଇବି ଆଣି
ଦୁଆର ମାଡ଼ିଣ ବସି ଥାଅ ଗୋ ଜନନି ॥୨୧୫୦॥
ବୁଢ଼ିକି ଜଗାଇ ଗୋପାଳ ଗଲା ଚଳି
ସୁଣଗୋ ସଖି ବୋଲି ବୋଲନ୍ତି ଦେବସୁଳି ॥୨୧୫୧॥
ଚନ୍ଦ୍ରସେଣା ଯାଆନ୍ତେଣ ଜାଣିଲେ ଗୋବିନ୍ଦ
ବିଚାରିଲେ କଥା ତ ହେଉଛି ପରମାଦ ॥୨୧୫୨॥
ପିତାର ଆଗେ ଯାଇ କହିବ ଚନ୍ଦ୍ରସେଣା
ମାତା ପିତା ଦେଖିଲେ ହୋଇବ ବୋଲଣା ॥୨୧୫୩॥
ଯେମନ୍ତ ବିଚାରି ବୋଇଲେ ଦଇତାରି
ଦେଖିଲେ ଦୋଳାରେ ଅଛଇ ପାଟସାଢ଼ି ॥୨୧୫୪॥
ଚଉତି ସୁଆଇଲେ ରାଧିକା କୋଳର
ମାଇଂ ସୋଇଥିବୁଟି ଯେହି ପରକାର ॥୨୧୫୫॥
ରାଧିକା ତିଆରି ଚଳିଲେ ଭାବଗ୍ରାହି
ବୁଢ଼ି ଥିଲା ଦୁଆରେ ତା ମୁଣ୍ଡ ଗଲେ ଡେଇଂ ॥୨୧୫୬॥
ସେହିକ୍ଷଣି ମିଳିଲେ ଆପଣା ମନ୍ଦିର
ଝାଳେ ଜର ଜର ଅଙ୍ଗ ଧୂଳିରେ ଧୁସର ॥୨୧୫୭॥
ପୋୟେ ମାଇଲେ ବୋଲି ଆପଣେ[1] କାନ୍ଦୁଛନ୍ତି
ଦେଖିଣ କୋଳକରି ଧଇଲେ ଯସୋବନ୍ତି ॥୨୧୫୮॥
ଅଞ୍ଚଳେ ଦେହ ପୋଛି ଧୂଳି ଝାଡ଼ି ଦିଲେ
ଦଣ୍ଡେକ ରହି କୃଷ୍ଣ ପିତାଠାକୁ ଗଲେ ॥୨୧୫୯॥
ଚୁମ୍ବନ ଦେଇ ନନ୍ଦ ବସାଇଲେ କୋଳେ
ସୁଣସି ଗିରିଜା ଗୋ ବଦୟନ୍ତି ସଙ୍କରେ ॥୨୧୬୦॥
ନନ୍ଦକୁ ଡାକିବାକୁ ଗଲା ଚନ୍ଦ୍ରସେଣା
ଶ୍ରୀକୃଷ୍ଣ ମାୟାକଲେ ପଥ ହେଲା ବଣା ॥୨୧୬୧॥

୧ । ଗ ପୋଥି – ଅଳପ

ବୁଲି ବୁଲି ଚନ୍ଦ୍ରସେଣା ମିଳିଲା ନନ୍ଦ ଘର
ଦେଖିଲା ନନ୍ଦ କୋଳେ ଅଛନ୍ତି ଚକ୍ରଧର ॥୨୧୬୨॥
ଚନ୍ଦ୍ରମାକୁ ଦେଖିଣ କହନ୍ତି ଭାବଗ୍ରାହି
ଭୋ ତାତ କହ ତୁମ୍ଭେ ଯେ କେବଣ ଅଟଇ ॥୨୧୬୩॥
ନନ୍ଦ ବୋଇଲା ବାବୁରେ ଅଟଇ ଜହ୍ନମାମୁଂ
ମାମୁଂ ଘର ଯିବି ବୋଲି ଅଳି କରନ୍ତି ନନ୍ଦକାହ୍ନୁ ॥୨୧୬୪॥
ପିତା ମୋତେ ଘେନି ଯାଅ ମାମୁଂ ଘର
ଯେତେ ବୋଲି କୃଷ୍ଣ ଧଇଲେ ପିତା ଥୋଡ଼ ॥୨୧୬୫॥
ନନ୍ଦ ବୋଇଲା ବାବୁରେ ତୋହର ଯେକା ସେ ଲୋହଇ
ଜଗତ ଜନଙ୍କର ମାମୁଂ ସେ ଅଟଇ ॥୨୧୬୬॥
ଦେଖିଣ ଚନ୍ଦ୍ରସେଣା ହୋଇଲା ଆଚମ୍ଭିତ
ଦେଖିଲା ନନ୍ଦକୋଳେ ଅଛନ୍ତି ଅଚ୍ୟୁତ ॥୨୧୬୭॥
ଦେଖିଲି ରାଧା କୋଳେ ସୋଇଅଛନ୍ତି ବନମାଳି
ପୁଣି ଦେଖିଲି କୃଷ୍ଣ ନନ୍ଦକୁ କରେ ଅଳି ॥୨୧୬୮॥
ମୁହିଂତ ଆସୁଅଛି ସେ କେଉଂ ବାଟେ ଆସି
ଦୁଆର ମାଡ଼ିଣ ଜନନି ଅଛି ବସି ॥୨୧୬୯॥
ନନ୍ଦକୁ ନ କହିବି ଦେଖିବି ଯାଇ ଘର
ଯେତେ ବୋଲି ପଛକୁ ଚାହଇଂ ଗୋପାଳ[୧] ॥୨୧୭୦॥
ବାହୁଡ଼ନ୍ତେ ଚନ୍ଦ୍ରସେଣାକୁ ନନ୍ଦ ଡାକି
ଆସିଥିଲୁ କାହିଂକି ଯାଉଛୁ ଲେଉଟି ॥୨୧୭୧॥
କାହିଂକି ଆସିଥିଲୁ କହ ସମାଚାର
ଛନ ଛନ ମନତ ହେଉଛି ଖରତର ॥୨୧୭୨॥
ଚନ୍ଦ୍ରସେଣା ବୋଇଲା ମୁଂ ଆସିଥିଲି ଯହିଂକି
ପାସୋରିଣ ଗଲା ଯେବେ ଘରକୁ ଯାଉଅଛି ॥୨୧୭୩॥
ଯେତେ ବୋଲି ଚନ୍ଦ୍ରସେଣା ଅଇଲା ବାହୁଡ଼ି
ଦେଖିଲା ଦ୍ୱାର ଜଗି ବସିଅଛି ବୁଢ଼ି ॥୨୧୭୪॥
ବୋଇଲା ଜନନି ଗୋ କହ୍ନାଇ ଗଲା କାହିଂ
ବୁଢ଼ି ବୋଇଲା ସେ ପଲଙ୍କେ ଥିବ ସୋଇ ॥୨୧୭୫॥
ଦେଖିଲା ଚନ୍ଦ୍ରସେଣା ସେହି ପରକାର
ସୋଇ ଅଛନ୍ତି ରାଧା କୁଚରେ ଦେଇ କର ॥୨୧୭୬॥
ଦେଖିଣ ଚନ୍ଦ୍ରସେଣା ହୋଇଲା ତାଟଙ୍ଗା
ବୁଢ଼ି ଡାକଦେଲା ଉଠରେ ରାଧିକା ॥୨୧୭୭॥
ମିଛେଂ ହେଂ ଅଚେତନେ ସୋଇଥିଲା ଗୋପାଳୁଣି
ଧାତିକାରେ ଉଠିଲା ରାଧିକା ବୁଢ଼ି ଡାକଶୁଣି ॥୨୧୭୮॥
ଅଳପ ହାଇ ମାରି ଛାଡ଼ଇ ନିଶ୍ୱାସ[୨]
ସମ୍ଭାଳି ହୋଇଣ ପିନ୍ଧିଲା ଝିନବାସ ॥୨୧୭୯॥

୧ । ଖ ଓ ଗ ପୋଥି – ଯେମନ୍ତ ବିଚାରି ପଛକୁ ଲେଉଟିଲା ଗୋପାଳ
୨ । ଖ ଓ ଗ ପୋଥି – ଅଳସ

ଚଉତିଲା ସାଢ଼ି ଦୋଳାରେ ରଖିଲା
ଦେଖିଣ ଗୋପାଳ ଆଶ୍ଚର୍ଯ୍ୟ ହୋଇଲା ॥୨୧୮୦॥
ବିଚାରିଲା ବସ୍ତ୍ର ଯେତ ଲୋହଇ କହ୍ନାଇ
ଭଲା ନନ୍ଦ ଆଗେ ମୁଂ କହିତ ନ ଥିଲଇଂ ॥୨୧୮୧॥
ସୁଣିଣ ଯସୋଦା ଦିଅନ୍ତା ମୋତେ ଗାଳି
ଯେମନ୍ତ ବୋଲି ଚନ୍ଦ୍ରସେଣା ମନେ ମନେ ଭାଳି ॥୨୧୮୨॥
ସୁଣସି ଓମା ବୋଲି ବୋଲନ୍ତି ସଙ୍କର
ଗୋପପୁରେ ଲିଳା ଯେ କରନ୍ତି ଚକ୍ରଧର ॥୨୧୮୩॥

## ଚିତ୍ରରେଖା ସହିତ ଶ୍ରୀକୃଷ୍ଣଙ୍କ ମିଳନ

ଯେକଦିନେ ଶ୍ରୀକୃଷ୍ଣ ଯେ ଦାଣ୍ଡରେ ଖେଳୁଥିଲେ
ଚିତ୍ରରେଖା ଗୋପାଳୁଣି ନବରେ ମିଳିଲେ ॥୨୧୮୪॥
ଦେଖିଲେ ସେ ଗୋପି ଯେକା ରହିଅଛି
ହସ ହସ ହୋଇଣ ମିଳିଲେ ଶ୍ରୀପତି ॥୨୧୮୫॥
ବୋଇଲେ ସଖି ଆଗୋ ଦିଅସି ରମଣ
ତୋତେ ଦେଖି ମୋତେ ଦହୁଛି ମଦନ ॥୨୧୮୬॥
ଶ୍ରୀକୃଷ୍ଣର ବଚନେ ସେ ମୋହିତ ଚିତ୍ରରେଖା
ହାସ୍ୟ ପରିହାସ୍ୟ ଲଗାଇ ବାଳି ଯେକା ॥୨୧୮୭॥
ଗୋପି ଗୋବିନ୍ଦର ପିରତି ରସେ ରସୁଂ
ସେହି ସମୟରେ ଆସି ମିଳିଲା ତାର ସାସୁ ॥୨୧୮୮॥
ଦେଖିଲା ବଧୁସଙ୍ଗେ ପିରତି ନନ୍ଦପୋଇ
ବିଚାରିଲା ଯେହାକୁ ବାନ୍ଧି ରଖିବଇଂ ॥୨୧୮୯॥
କହିଲେ ଯସୋଦା ସେ ମଣଇ ସବୁ ମିଛ
ଯେବେ ଆସି ପୁତ୍ରକୁ ଦେଖୁ ସେ ପ୍ରତକ୍ଷ ॥୨୧୯୦॥
ଯେମନ୍ତ ବିଚାରିଣ ସେ ଆଣିଲା ଦଉଡ଼ି
ବଧୁ ସଙ୍ଗେ ପୁତ୍ରକୁ ବାନ୍ଧିଲା ଯତ୍ନକରି ॥୨୧୯୧॥
କବାଟ କିଳି ଦେଇ ହୋଇଲା ବାହାର
ଦେଖିଲା କୃଷ୍ଣନାଥ ଖେଳୁଛନ୍ତି ଦାଣ୍ଡର ॥୨୧୯୨॥
ବାଳକଙ୍କ ସଙ୍ଗତରେ ଖେଳୁଛନ୍ତି ଚକ୍ରପାଣି
ଦେଖିଣ ଆଶ୍ଚର୍ଯ୍ୟ ଯେ ହୋଇଲା ଗୋପାଳୁଣି ॥୨୧୯୩॥
ବିଚାରଇ କୃଷ୍ଣକୁ ବାନ୍ଧିଣ ମୁଂ ଅଇଲଇଂ
କେଉଂବାଟେ ଅଇଲା ନୟନେ ନ ଦେଖିଲିଂ ॥୨୧୯୪॥
ନେଉଟି ଯାଇ ମୁହିଂ ଦେଖିବଇଂ ଘର
ବିଚାରି ବାହୁଡ଼ନ୍ତେ ଡାକିଲା କୁମର ॥୨୧୯୫॥
ଆଲୋ ଆଲୋ ବୁଢ଼ି ଡାକୁଣି ହେଲୁ ଏଡ଼େ ବାଇ
ଭାରିଯା ସଙ୍ଗତେ ମୋତେ ବାନ୍ଧିଣ ଗଲୁ ତୁହି ॥୨୧୯୬॥

ସୁଣିଣ ଗୋପାଳୁଣି ଚକିତ ହୋଇଲା
ସଙ୍କୋଚ ପାଇ ବୁଢ଼ି ମୁଖରେ ବସ୍ତ୍ର ଦେଲା[1] ॥୨୧୯୭॥
ଉଲଗ୍ନ ହୋଇ ପୁତ୍ରବଧୂ ଅଛନ୍ତି ସେ ରହି
ସଙ୍କୋଚ ପାଇ ବୁଢ଼ି ବନ୍ଧନ ଫେଡ଼ି ଦେଇ[2] ॥୨୧୯୮॥
ବନ୍ଧନରୁ ଉତୁରି ବସନ ପିନ୍ଧି ବେଗେ
ମାତା ମୁଖ ଚାହିଂଣ ପୁତ୍ର କହଇ ସେ ରାଗେ ॥୨୧୯୯॥
ବୋଇଲା ଗୋ ଜନନି ଶତୃ ହେଲୁ ମୋର
ଯାଅ ତୁ ବାହାରି ନ ଥାଅ ମୋର ଘର ॥୨୨୦୦॥
ଲଉଡ଼ି ଘେନିଣ ସେ ଅନେକ ମାଡ଼ ମାରି
କାନ ମୁଣ୍ଡ ଆଉଂସିଣ ପଳାଇଲା ବୁଢ଼ି ॥୨୨୦୧॥

## କୃଷ୍ଣଙ୍କର କୁଞ୍ଜବନ ଭ୍ରମଣ ଓ ରାଧାଙ୍କର ନଟୁଚୋରୀ

କହନ୍ତି ସଦାସିବ ସୁଣଗୋ ଦେବି ଓମା
ଯେମନ୍ତ ପ୍ରକାରେ ଯେ ଶ୍ରୀହରି ମହିଂମା ॥୨୨୦୨॥
ଯେକଦିନେ ଶ୍ରୀହରି ବୁଲନ୍ତେ କୁଜଂବନେ
ତୋଳନ୍ତି ପୁଷ୍ପକଢ଼ି ଗୁନ୍ଥନ୍ତି ମାଳମାନେ ॥୨୨୦୩॥
ମୟୁର ପୁଛ ସୋହେ ଚନ୍ଦ୍ରିକା ଚୁଳରେ
ତଥିପରେ ଖଜିଂଲେ ନାନାଦି ପୁଷ୍ପହାରେ ॥୨୨୦୪॥
ହୃଦରେ ସୋଭିତ ନାନା ରତ୍ନମଣିଂ
ତଡ଼ିତ ମେଘେ କି ଗଗନେ[3] ନିସାମଣିଂ ॥୨୨୦୫॥
ଯେକାଯେ କୃଷ୍ଣନାଥ ବିହରନ୍ତି ବନ
ଯାହା ଲାଗି ବିଧାତା କରିଛି ରଞ୍ଜନ ॥୨୨୦୬॥
କୁଜଂବନକୁ ଗଳି ସେ ହୋଅନ୍ତି ବାହାର
କେତେବେଳେ ଉଠନ୍ତି ବୃକ୍ଷର ଉପର ॥୨୨୦୭॥
ମାଧବିଲତାରେ ସେ ଯେ ଉକୁଚାନ୍ତି ଦୋଳି
ହଂସପଲ ମଧ୍ୟରେ ପୁଣିହିଂ ଯାଇ ମିଳି ॥୨୨୦୮॥
ଧରିବେ ବୋଲି ସେ ଯେ ଗୋଡ଼ାବନ୍ତି ଦେବହରି
କୃଷ୍ଣଙ୍କୁ ଦେଖିଣ ପକ୍ଷି ପଳାବନ୍ତି ଉଡ଼ି ॥୨୨୦୯॥
ପୁଣି ମୃଗ ପଲରେ ଯେ ମିଳନ୍ତି ଗୋପିନାଥ
ଧରିବେ ବୋଲି ଯାଇ ପ୍ରସାରନ୍ତି ହସ୍ତ ॥୨୨୧୦॥
ଯେକ ପଳାନ୍ତେ ସେ ଆରେକକୁ ଗୋଡ଼ାଇ
ଗୋଟିଯେ ନ ପାଇଲେ ଶ୍ରୀକୃଷ୍ଣ ବୋବି ଦେଇ ॥୨୨୧୧॥
କେତେବେଳେ ମିଳନ୍ତି ସରୋବରଠାରେ
ଆଣିବେ ବୋଲି ପୁଷ୍ପ ପସନ୍ତି ଜଳରେ[4] ॥୨୨୧୨॥

୧ । ଖ ଓ ଗ ପୋଥି – କବାଟ ଫିଟାଇ ପୁତ୍ର ବନ୍ଧନ ଫେଇଲା
୨ । ଖ ଓ ଗ ପୋଥି – ସମାସ୍ୟା ନଦେଇ
୩ । ଖ ପୋଥି – ଝଟକ ବିରାଜେ
୪ । ଏହା ପରେ ଚାରି ଧାଡ଼ି ଖ ପୋଥିରେ ନାହିଁ

ମୟୁର ପୁଛ ସୋହେ ଚନ୍ଦ୍ରିକା ଚୁଳରେ
ତଥିପରେ ଖଜିଂଲେ ନାନାଦି ପୁଷ୍ପହାରେ ॥୨୨୧୩॥
ପୁଣି ପ୍ରବେସ ହୋନ୍ତି ଯାଇ ଗିରିପରେ
ଯେହି ରୁପେ ଶ୍ରୀକୃଷ୍ଣ ଯାଇ ବୋଲନ୍ତି କୁଜଂଘୋରେ ॥୨୨୧୪॥
ପୁଣିଯାଇ ଉଠନ୍ତି କଦମ୍ବ ବୃକ୍ଷରେ
ତୋଳନ୍ତି ପୁଷ୍ପକଢ଼ି ବୋଲନ୍ତି ଡାଳେ ଡାଳେ ॥୨୨୧୫॥
ସୁଣଗୋ ହେମବନ୍ତି ବଦନ୍ତି ସୁଳଧରେ
ପ୍ରବେସ ହେଲେ ଯାଇ ରାଧା ଯମୁନା ଜଳରେ ॥୨୨୧୬॥
ତଟରେ ଦେଖିଲା ଉଞ୍ଚ ଡାଳେ ବସିଛନ୍ତି ନରହରି
ଓହ୍ଲାଇ ଆସ ବୋଲି ଡାକଇ ଚତୁରି ॥୨୨୧୭॥
ରାହିକି ଦେଖିଣ କୃଷ୍ଣ ବୃକ୍ଷରୁ ଓହ୍ଲାଇଲେ
ରାଧିକା ଆଗେ ମିଳି କର ପ୍ରସାରିଲେ ॥୨୨୧୮॥
ବୋଇଲେ ମାଇଂ ମୋତେ ଦିଅ ଗୋ ସୁରତି
ମଦନେ ବଇକୁଳ ଆତ୍ମା ହେଉଅଛି ॥୨୨୧୯॥
ବୋଧ ନ ଘେନିଲା ଯହୁଂ ଚନ୍ଦ୍ରାବଳି
ରାହିର ପାଦତଳେ ପଡ଼ିଲେ ବନମାଳି ॥୨୨୨୦॥
କୁମ୍ଭ ଘେନି ଉଭା ବୃସଭାନୁ ଜେମା
ପାଦେ ପଡ଼ିଛନ୍ତି ସେ ନନ୍ଦସୁତ କାହ୍ନା ॥୨୨୨୧॥
ଯେମନ୍ତେ ବେଳ ଯହୁଂ ଉଛୁର ହୋଇଲା
ଶ୍ରୀକୃଷ୍ଣନାଥଙ୍କୁ ଯେ ଯସୋଦା ଖୋଜିଗଲା ॥୨୨୨୨॥
କହ୍ନାଇ କହ୍ନାଇ ବୋଲିଣ ଡାକ ଦେଇ
ଖୋଜି ଖୋଜି ଯମୁନା ତଟରେ ମିଳଇ ॥୨୨୨୩॥
ଦେଖିଲା ରାହି ଉଭା ଜଳକୁମ୍ଭ ଘେନି
ତାର ପାଦତଳେ ପଡ଼ିଛି ଚକ୍ରପାଣି ॥୨୨୨୪॥
ଯସୋଦା ବୋଇଲେ ଲୋ ରାଧିକା ଯେଡ଼େ ଭଳି
ତୋର ପାଦତଳେ ଲୋ ପଡ଼ିଛି ବନମାଳି ॥୨୨୨୫॥
କିସ ନେଇଅଛୁ ଲୋ ମାଗିଲେ ନ ଦେଉ
କଅଂଳା ପୁଅକୁ ତୁ ଭଣ୍ଡାଉଣ ଥାଉ ॥୨୨୨୬॥
କହଇ ଚନ୍ଦ୍ରାବଳି ସୁଣଗୋ ନଣନ୍ଦେ
କହ୍ନାଇ ଉଠିଲା କଦମ୍ବ ବୃକ୍ଷ ଡାଳେ ॥୨୨୨୭॥
ମୁହିଂ ଯାଇ କହିବି ଯସୋଦାଙ୍କ ଆଗ
କହ୍ନାଇ ବୋଇଲା ମୁଂ ପଡୁଛି ତୋର ପାଦ ॥୨୨୨୮॥
ଯେକଥା ନ କହିବୁ ମାତାଙ୍କୁ ତୁହିଂ
ତେଣୁ କରି ପାଦତଳେ ପଡ଼ିଛି କହ୍ନାଇ ॥୨୨୨୯॥
ରାଧିକା ବଚନେ ଯସୋଦା କୋପ କଲା
ଛାଟ ଘେନି କୃଷ୍ଣକୁ ମାରିତେ ଗୋଡ଼ାଇଲା ॥୨୨୩୦॥

୧ । ଗ ପୋଥି – ମାତାଙ୍କ ଆଗେ ଯାଇ

ଡରେ ଶ୍ରୀକୃଷ୍ଣ ସେ ହୋଇଲେ ସ୍ଥିରହର
ଧାଇଂ ଯାଇ ଯସୋଦାର ଧଇଲେ ବେନି କର ॥୨୨୩୧॥
ବୋଇଲେ ଛାଟ ପକା କହଇ ମାୟେ ତୋତେ
କଥା ତୁ ନ ବିଚାରି ମାରିତେ ଲୋଡୁ ମୋତେ ॥୨୨୩୨॥
ଲାଟ ଖେଳୁଥିଲି ମୁଂ ଦୁରକୁ ଗଡ଼ିଗଲା
ସାଉଣ୍ଟିଣ ନେଇ ମାଇଂ ଅଣ୍ଟିରେ ଖୋସିଲା ॥୨୨୩୩॥
ୟେଥିକି ପାଦତଳେ ପଡ଼ିଥିଲି ମୁହିଂ
ମାଗିଲେ ମୋତେ ସେ ଦିଅଇ ଆଉ ନାହିଂ ॥୨୨୩୪॥
ସୁଣିଣ ରାଧିକାକୁ ଯସୋଦା ହେଲେ ଚଳି
ରାଡୁଣି ମନ୍ଦ ଲୋ ହେଲୁ ଚନ୍ଦ୍ରାବଳି ॥୨୨୩୫॥
ଚତୁରି ରାଧିକା ତୁ ବହୁତ କଥା ଜାଣୁ
ଦୁଷ୍ଟ ପଣେ ତୁ ସାସୁ ଶ୍ୱସୁରଙ୍କୁ ନ ଗଣୁ ॥୨୨୩୬॥
ନିତି ବେସ୍ୟା ପ୍ରକାରେ ତୁ ସଜ ହୋଇ ଥାଉ
ବାଳକଙ୍କୁ ଦେଖିଣ ଦୟାତୁ ନ ବହୁ ॥୨୨୩୭॥
ସେ ତୋହର ଭଣଜା ଅଟଇ ମୋର ଚାଟ
ୟେହାର ସଙ୍ଗେ ୟେଡ଼େ ଲଗାଇଛୁ ହଟ ॥୨୨୩୮॥
ଯସୋଦା ଚଳି ହେଲେ କୋପିତ ହେଲା ରାହି
ବୋଇଲା କେହୁ ଲାଟ ନେଇଛି ଚୋରାଇ ॥୨୨୩୯॥
ୟେତେ ବୋଲି ଝାଡ଼ି ଦିଲାକ ଅଞ୍ଚଳ
ଶ୍ରୀକୃଷ୍ଣ ବୋଇଲେ ଗୋ ରଖିଛି ଅଣ୍ଟିର ॥୨୨୪୦॥
ସୁଣିଣ ରାଧିକା ଯେ ତମ ତମ ହେଲା
ବସନ ଫିଙ୍ଗି ଦେଇ ଝାଡ଼ିଣ ସେ ଦିଲା[1] ॥୨୨୪୧॥
ଅଣ୍ଟିରୁ ନାଟ ଗୋଟି ପଡ଼ିଲାକ ଝଡ଼ି
ଶ୍ରୀକୃଷ୍ଣ ବୋଇଲେ ୟେଥେ ନାହିଂ ତ ଦଉଡି ॥୨୨୪୨॥
ଖୋସାର ଭିତରେ ମାଇଂ ରଖିଛ ଲୁଚାଇ
ଦିଅଗୋ ବୋଲି ଅଳି କରନ୍ତି ମାଧୋଇ ॥୨୨୪୩॥
ରାଧିକା ବୋଇଲେ ୟେତ ଅପୁର୍ବ କହଇ
ଲାଟ ଦେଲି ପୁଣି ଦଉଡ଼ି ମାଗଇ ॥୨୨୪୪॥
ଖୋସା ଫିଟାଇଣ କୋପେଂ ଦେଲାକ ସେ ଝାଡ଼ି
ଶ୍ରୀକୃଷ୍ଣ ଅଗ୍ରତେ ପଡ଼ିଲା ଲେନ୍ତି ଯେ ଦଉଡ଼ି ॥୨୨୪୫॥
ଦେଖିଣ ଆଶ୍ଚାର୍ଯ୍ୟ ହୋଇଲେକ ରାହି
ବସନ ତଳେ ରଖି ଅଛଇ ଉଭା ସେହି ॥୨୨୪୬॥
ଜାନୁ ଜଉବନ ଯୋନି ସହିତେ ଦିସୁଅଛି
ନୟନ ପୁରାଇଣ ଦେଖନ୍ତି ଶ୍ରୀବଛି ॥୨୨୪୭॥
ଯସୋଦା ନାଟ ଦେଖି ଆଶ୍ଚାର୍ଯ୍ୟ ହୋଅଇ
ବୋଇଲା ବସନ ପିନ୍ଧଗୋ ବେଗେ ରାହି ॥୨୨୪୮॥

୧ । ଖ ପୋଥି – ଉଲଗ୍ନ ହୋଇଣ ସେ ବସନ ଫିଙ୍ଗିଦିଲା

ଜାଣିଲଇଂ ତୁହି ଯେ ଅଟୁ ୟେଡ଼େ ଲୋକ
ଦେଖିଲା ଦ୍ରବ୍ୟ ନେଇ କନ୍ଦାଇଲୁ ବାଳେକ ॥୨୨୪୯॥
ୟେ କଥା ନ ବୁଝଇ ମୋ ଭାଇ ଚନ୍ଦ୍ରସେଣା
କହିବି ୟେ କଥା ଯେବେ ତୋତେ ହୋଇବ ବୋଲଣା ॥୨୨୫୦॥
ୟେତେ ବୋଲି ଯସୋଦା ଘେନିଲେ ଦେବହରି
କାଖରେ ବସାଇଣ ଚଳିଲେ ନିଜପୁରି ॥୨୨୫୧॥
ଜଳକୁମ୍ଭ ଘେନିଣ ରାଧା ମିଳିଲେ ନବର
ୟେମନ୍ତ ଲିଳା ସେ ଯେ କରନ୍ତି ଚକ୍ରଧର ॥୨୨୫୨॥

## ମାୟାଗ୍ରସ୍ତ ହୋଇ ନାରଦଙ୍କର ସଂସାର ଲୀଳା

ଅଦଭୁତେ ରାଧିକା ଦେହରୁ ନାଟ କାଢ଼ି
ମାୟାଧର ପୁରୁଷ ସେ ଜନ୍ମିଛି ଗୋପପୁରି[1] ॥୨୨୫୩॥
ଯାହାର ମାୟା ସେ ଦେବଙ୍କୁ ଅଗୋଚର
ମାୟାରେ ପଡ଼ି ବଣା ହୋଇଲେ ଚକ୍ରଧର[2] ॥୨୨୫୪॥
ବଛା ହରିନେଇ ସାରିଲେ ବଡ଼ପଣ
ନବତନ ବଛା ଭିଆଇଲେ ଭଗବାନ ॥୨୨୫୫॥
ମୋତେ ଦିନେ ମାୟା ଦେଖାଇଲେ ସେହି
ମୁହିଂ ଦେଖୁ ଦେଖୁ ମୋହନି କନ୍ୟା ହୋଇ ॥୨୨୫୬॥
ବିଷ୍ଣୁମାୟାରେ ପଡ଼ିଣ ମୋହିତ ମୁହିଂ ହେଲି
ସ୍ତିରି ପ୍ରାୟେ ମଣି ହରିଙ୍କି ଗୋଡ଼ାଇଲିଂ ॥୨୨୫୭॥
ଚଉଦ ବ୍ରହ୍ମାଣ୍ଡ ଭ୍ରମିଲେ ଏକାକ୍ଷଣେଂ
ମୁହିଂ ଧାଇଂ ଫୁଟିଲି ଅକାରଣେ ॥୨୨୫୮॥
ୟେକଦିନେ ନାରଦ ହୃଦରେ ବିଚାରିଲେ
ବିଷ୍ଣୁଙ୍କର ମାୟା କେହ୍ନେ ଜାଣିବିଂ ବୋଇଲେ ॥୨୨୫୯॥
ସ୍ନାହାନ କରିବାକୁ ଗମିଲେ ମୁନିବର
ବିଣା କମଣ୍ଡଳୁ କୁସ ରଖିଲେ କୁଳର ॥୨୨୬୦॥
ଟବ ହୋଇ ଜଳରେ ବୁଡ଼ିଲେ ବ୍ରହ୍ମାସୁତ
ମାୟାରେ ତେଣେ କୁଳେ ଲାଗିଲେ ତୁରିତ ॥୨୨୬୧॥
ସ୍ନାହାନ ସାରିଣ ବସନ ଚିପୁଡ଼ିଲେ
ଉତର ଦିଗକୁ ବ୍ରହ୍ମଚାରି ଚଳିଗଲେ ॥୨୨୬୨॥
କନାଉଜ ଦେସରେ ମିଳିଲେ ମୁନି ଯାଇ
ସୁକେସି ଚାଣ୍ଡାଳୁଣି ଦାଣ୍ଡରେ ଆସୁଛଇ ॥୨୨୬୩॥
ସମସ୍ତଙ୍କ ବିଷ୍ଠା ସେ ଯେ କାଢ଼ଇ ଚାଣ୍ଡାଳୁଣି
କୁଣ୍ଢୋଇ ପୟେଂରା ଘେନି ଆସଇ ତରୁଣି ॥୨୨୬୪॥
ଦେଖିଣ କାମେ ଯେ ନାରଦେ ବସ ହୋଇ
ବୋଇଲେ ସୁନ୍ଦରି ଗୋ ସୁରତି ଦିଅ ତୁହି ॥୨୨୬୫॥

୧ । ଖ ଓ ଗ ପୋଥି – ବସୁନ୍ଧରୀ
୨ । ଖ ଓ ଗ ପୋଥି – ବେଦବର

ଆଗରେ ଉଗାଳିଲେ ବେନି ହସ୍ତ ପ୍ରସାରି
ଦେଖିଣ ଚାଣ୍ଡାଲୁଣି ରହିଲା ଅପସରି ॥୨୨୬୬॥
ବୋଇଲା ଗୋସାଇଂ ତୁମ୍ଭେ ତ ବ୍ରାହ୍ମଣ
ମୁହିଂ ଚାଣ୍ଡାଲୁଣି ଅଟଇ ନେଚ ଜନ ॥୨୨୬୭॥
ଖଟଇଂ ବାଡ଼ ତାଟି ଭକ୍ଷଇଂ ଅଇଣ୍ଠା
ଦେଖ କୁଣ୍ଢୋଇରେ ମୋର ଲାଗିଅଛି ବିଷ୍ଠା ॥୨୨୬୮॥
ତୁମ୍ଭେ ତ ଅଟ ଦ୍ୱିଜ ସ୍ୱରୁପେ ବିଚକ୍ଷଣ
ଚରଣ ଛୁଇଂବାକୁ ମୁଂ ନୁହଇ ଭାର୍ଜନ ॥୨୨୬୯॥
ଛାଡ଼ ଛାଡ଼ ବାଟ ଗୋସାଇଂ ମୁଂ ଯିବି ନଦି ଜଳ
ତାହା କଥା ନ ସୁଣିଣ ନାରଦ ତାକୁ କଲେ କୋଳ ॥୨୨୭୦॥
ବୋଇଲେ ସଖିଗୋ ନ କର ଅଭିମାନ
ସୁରତି ଦାନ ଦେଇ ରଖ ମୋ ଜିବନ ॥୨୨୭୧॥
ପୟୋଂରା କୁଣ୍ଢୋଇ ଛଡ଼ାଇ ପକାଇଲେ
ଭୁଜରେ ଭୁଜ ଭିଡ଼ି ବିବସନ କଲେ ॥୨୨୭୨॥
ବେନି କୁଚ ମର୍ଦ୍ଦିଲେ ଜାନୁକୁ ଜାନୁ ଦେଇ
କଲେକ ଗାଢ଼ ରତି ବ୍ରହ୍ମାଙ୍କ ତନଇ ॥୨୨୭୩॥
ଶୃଙ୍ଗାର ସାରିଣ ସେ ଘରକଇ ଗଲେ
ଚାଣ୍ଡାଲୁଣି ଘରେ ସେ ଯେ ନାରଦ ରହିଲେ ॥୨୨୭୪॥
ସୁକେସି ସଙ୍ଗତେ ରମଣ କରନ୍ତେ
ନାରଦର ବିର୍ଯ୍ୟରୁ ଜନ୍ମିଲା ଯେକ ପୁତ୍ରେ ॥୨୨୭୫॥
ଦସ ବରସ ସେ ରହିଲେ ବ୍ରହ୍ମା ବଛି
ଜନ୍ମ ହୋଇଲେ ସେ ନନ୍ଦନ ଦସଗୋଟି ॥୨୨୭୬॥
ସୁଣଗୋ ସାକାମ୍ଭେରି ବୋଲନ୍ତି ସଙ୍କର
ନାସଗଲା ତହିଂ ଯେକଇ କୁମର ॥୨୨୭୭॥
ଯେହି ରୁପେ ଦସ ଯେ ନନ୍ଦନ ନାସ ଗଲେ
ତାହାଙ୍କର କ୍ରିୟାକର୍ମ ନାରଦ ମୁନି କଲେ ॥୨୨୭୮॥
ବିଷ୍ଣୁର ମାୟାରେ ସେ ନାରଦ ରହିଛନ୍ତି
ତନୟ ଦାରା ଧନ ମୋହରି ବୋଲନ୍ତି ॥୨୨୭୯॥
ଆପଣା ନାରି ପ୍ରାୟେ ଚାଣ୍ଡାଳୁଣି ଅଛି ହୋଇ
ବହୁତ ବିଶ୍ୱାସ ନାରଦ ତାର ତହିଂ ॥୨୨୮୦॥
ପୁଣି ହିଂ ନାସ ଗଲା ଯେକଇ ତନଇ
ଦେଖିଣ ନାରଦ ଯେ ବହୁତ ସୋକ ବହି ॥୨୨୮୧॥
ସାତ ପାଞ୍ଚ ଡାକିଣ ଅଗ୍ନି ଦାହ କଲେ
ସ୍ନାହାନ କରିବାକୁ ନଦିକି ତହିଂ ଗଲେ ॥୨୨୮୨॥
ବୁଡ଼ିଲେକ ଜଳେ ଉଠିଲେ ଆରତୁଠେ
ସ୍ନାନ ସନ୍ଧ୍ୟା ସାରି ବ୍ରହ୍ମାଙ୍କର ଚାଟେ ॥୨୨୮୩॥
କୂଳରେ ଦେଖିଲେ ସେ କୁସ କମଣ୍ଡଳ
ଦେଖିଣ ଆଶ୍ଚାର୍ଯ୍ୟ ଯେ ବିଧାତାର ବାଳ ॥୨୨୮୪॥
ବିଚାରିଲେ ଯେହା ରଖି କଲଇ ସ୍ନାହାନ
ଚାଣ୍ଡାଳୁଣି ଘରେ ତ ରହିଲି ଯେତେ ଦିନ ॥୨୨୮୫॥
ଜାଣିଲି ମାୟା ମୋତେ କଲେକ ଚକ୍ରଧର
ରଖିଲେ ଖଜାଂଇଣ ଚାଣ୍ଡାଲୁଣି ଘର ॥୨୨୮୬॥
ଯେତେ ବୋଲି ମୁନି ପାଇଲେ ଦିବ୍ୟଜ୍ଞାନ
ପ୍ରବେସ ହୋଇଲେ ସେ ଆପଣାର ସ୍ଥାନ ॥୨୨୮୭॥
ମାୟାବି ପୁରୁଷ ସେ ଯେ ଜଗତ ମୋହଇ
ତାହାର ମାୟାରୁ କେହି ଉବୁରି ନଯାଇ ॥୨୨୮୮॥
ମୁହିଂ ସେ ମାନବ ଅଟଇ ଅଜ୍ଞାନ
ତାହାର ମାୟାରୁ କି ଉବୁରି ଯିବି ପୁଣ ॥୨୨୮୯॥
ଜୟ ଜୟ ଜଗତ କରତା ନରହରି
ତୋହାର ମାୟାରେ ଯେ ଅଛଇ ମୁହିଂ ପଡ଼ି ॥୨୨୯୦॥
ଜ୍ଞାନ ଧ୍ୟାନ ଗୋଚର ମୋହର କିଛି ନାହିଂ
କେବଳ ମାୟା ମୋହ ଜାଲରେ ବନ୍ଧା ହୋଇ ॥୨୨୯୧॥
ତିର୍ଥ ନ ଗମଇଂ ନାହିଂ ସାଧୁଗୋଷ୍ଠି
ନପାରେଂ ଅଳି ଚଳି ଲାଗିଛି ଜାଲ ଗଣ୍ଠି ॥୨୨୯୨॥
ତୋହର ମାୟାକୁ ତୁହି ପାରୁ କାଟି
ମୁହିଂ କି ପାରିବି ମାନବ ଛାର ଗୋଟି ॥୨୨୯୩॥
ତୁହି ମୋହର ବନ୍ଧୁ ତୁହି ମୋହର ସାହି
ତୁହି ମୋହ ବନ୍ଧନରୁ ଦେବୁ ମୁକୁଳାଇ ॥୨୨୯୪॥
ନ ପଢ଼ଇ ହରି ନାମ ନ ସାଧଇ ଜ୍ଞାନ
ଅଧମ ଅପାଣ୍ଡୁକ[1] ମୁଂ ଝଗଡ଼େ ନିୟେ ଦିନ ॥୨୨୯୫॥
ଯେଣୁ ତୋର ଦୟା ହୋଇଲା ଭାବଗ୍ରାହି
ତେଣୁ ମୋର ହୃଦରେ ଉଲ୍ଲସିତ ହୋଇ ॥୨୨୯୬॥
ସାହାସ୍ର ଲେଖିବାକୁ ବଳିଛି ମୋର ମନ
ଆଦୃସ୍ୟ ନ ପାଇଲି ଯେହୁ ରାଜ୍ୟେ ପୁଣ[2] ॥୨୨୯୭॥
ଯାହା କହିଦେବ ମୁଂ ଲେଖିବି ପତ୍ରେ ଜାଣ
କୃପା କରି କହି ଦିଅ ପ୍ରଭୁ ଭଗବାନ ॥୨୨୯୮॥
ଭାରତ ହରିବଂସ ଯେ ଅଗାଦ ସାଗର
ଯେହା ମନ୍ଥିବାକୁ ହୋ ଭରସା କାହାର ॥୨୨୯୯॥
ତୁମ୍ଭେ ଯେବେ ମୋତେ ସାହା ହୋଇବ ଚକ୍ରପାଣି
ଅଗାଦ ହରିବଂସ ମୁଂ ଲେଖିବଇଂ ପୁଣି ॥୨୩୦୦॥

୧ । ଖ ପୋଥି – ଅପଣ୍ଡିତ
୨ । ଖ ପୋଥି – ଯେଣୁ ତୁମ୍ଭ ଦୟା ମୋତେ ଥିଲାକ ଭଗବାନ
୨ । ଗ ପୋଥି – ତୁମ୍ଭକୁ ଆଦୃଶ୍ୟ କରି ସ୍ଥାପିଛି ହୃଦୟର

କ୍ଷମା ସାଗର ନାଥ କ୍ଷମାକର ମୋତେ
କ୍ଷମା କର ଦୋସ ମୋହର ଅଛି ଯେତେ ॥୨୩୦୧॥
ଯେଣୁ ଲେଖୁଅଛି ମୁଂ ହରିବଂସ ପୁରାଣ
ତେଣୁ ଦୋସ ମୋହର ସେ ଅତି ଅପ୍ରମାଣ[1] ॥୨୩୦୨॥
ବହୁତ ଦୋସ ପ୍ରଭୁ କରିଅଛି ମୁହିଂ
ଯେଥିକି ପରିତ୍ରାଣ କର ହେ ଗୋସାଇଂ ॥୨୩୦୩॥
ଚଞ୍ଚଳ ହୃଦୟ ମୋର ଅଥିର ହିଂ ଚିତ
ନାହିଂ ସଦବୁଦ୍ଧି ପଢ଼ିନାହିଂ ସଂସ୍କାର ଗ୍ରନ୍ଥ[2] ॥୨୩୦୪॥
ତୋହର ଚରଣେ ମୋହର ନମସ୍କାର
ଭୋ ଜଗବନ୍ଧୁ ମୋତେ ଉଦ୍ଧରିଣ ଧର ॥୨୩୦୫॥
ତୁମ୍ଭ ଚରଣକୁ ମୋହର ବଡ଼ ଆସ
ଭଣଇ ପୁନ୍ୟଧୁନି ସୁଦ୍ରମୁନି ସାରୋଳା ଚଣ୍ଡି ଦାସ ॥୨୩୦୬॥

## ରାଧିକା ଓ ଚନ୍ଦ୍ରସେଣାଙ୍କ ପୂର୍ବଜନ୍ମ କଥନ

ବଦୟନ୍ତି ପାର୍ବତି ସୁଣ ହେ ସଦାସିବ
ଶ୍ରୀକୃଷ୍ଣ ଚରିତ ଯେ ଅପୁର୍ବ ଦୁର୍ଲଭ ॥୨୩୦୭॥
ତୁମ୍ଭେ ତ କହିଲ ହେ ସାଧୁ ତୁମ୍ଭର ବାଣି
ମୁହିଂ ଯେଣୁ ସୁଣିଲି ଜିବନ ମୋର ଧନି ॥୨୩୦୮॥
ରାଧିକା ଅଟଇ ସେ ଚନ୍ଦ୍ରସେଣା ନାରି
ତାହାକୁ ଯେଡ଼େ ସ୍ନେହ କିମ୍ପାଇ କଲେ ଦଇତାରି ॥୨୩୦୯॥
ପୁର୍ବେ କେଉଂ ଜନମ କାହାର ତନଇ
ଗୋପାଳୁଣି ହୋଇ ତୋସିଲା ଭାବଗ୍ରାହି ॥୨୩୧୦॥
ଯେ କଥା ମୋର ଆଗେ କହ ହେ ପ୍ରାଣନାଥ
ପାର୍ବତିର ବଚନେ ଯେ ବୋଲନ୍ତି ବିଶ୍ୱନାଥ ॥୨୩୧୧॥
ଅନୁଭବ ବୋଲିଣ ମନୁଯେକ ହୋଇ
ମନୁମତ ନାମ ଯେ ସତ୍ୟ ଯୁଗର ଅଟଇ ॥୨୩୧୨॥
ନୈରତ ବୋଲିଣ ଯେକଇ ନଗ୍ରେ ପୁଣ
ସେ ପୁରେ ନିଳସେନ ଅଟଇ ରାଜନ ॥୨୩୧୩॥
ନିଳାବନ୍ତି[3] ବୋଲିଣ ତାହାର ଯୁବତି
ଦୁହିତା ଗୋଟିଯେ ନାମ ଅଟଇ ନିଳକାନ୍ତି ॥୨୩୧୪॥
ଦୁଲଣି ଯୁବା ହୋଇ ବଢ଼ିଲା ପିତାଘର
କନ୍ୟା ଅନୁରୁପେ ଯେ ନ ମିଳିଲା ବର ॥୨୩୧୫॥

୧ । ଖ ପୋଥି – ତେଣୁ ମୋହର ଦୋଷ ଅନେକ ଯେ ପୁଣ
୨ । ଖ ପୋଥି – ନାହିଂ ସଦବୁଦ୍ଧି ସେବିନାହିଂ ସନ୍ଥ
୨ । ଗ ପୋଥି – ନ ଦିଶଇ ବୁଦ୍ଧି ସେବିନାହିଂ ସନ୍ଥ
୩ । ଖ ପୋଥି – ନୀଳସେନ

ବିବେକି ସୁବୁଦ୍ଧି ସେ ପଣ୍ଡିତା ନାଗେରି
ସାଧୁ ବୈଷ୍ଣବ ଭକ୍ତ ସେ ମନୋହାରିଂ ॥୨୩୧୬॥
ବିଚାରଇ ଗୃହରେ ମୋ ପ୍ରୟୋଜନ ନାହିଂ
କରିବିଂ ବନେ ତପ ତୋସିବିଂ ଭାବଗ୍ରାହି ॥୨୩୧୭॥
ଯେମନ୍ତ ବିଚାରିଣ ସେ ଚଳିଲା ତିର୍ଥ ସେବି
ଉତର ଅଙ୍କଠାରେ ସେ ସେବିଲା ଜାହ୍ନବି ॥୨୩୧୮॥
ତେଜିଲା[2] ଆହାର ସେ ନ କଲା ସୟନ
ନିଷ୍ଟଳେ ବସିଣ ସେବିଲା ଭଗବାନ[3] ॥୨୩୧୯॥
କଠୋର ତପ ଯହୁଂ କଲାକ ନିଳକାନ୍ତି
ବେନି ଲକ୍ଷ ବର ସେ ପ୍ରସନ୍ନ ଦାସରଥି ॥୨୩୨୦॥
ସଙ୍ଖଚକ୍ର ଚିହ୍ନ ଗରୁଡ଼ ପୃଷ୍ଟେ ରହି
କିପାଇଂ ତପ କରୁ କନ୍ୟାକୁ ଡାକ ଦେଇ[4] ॥୨୩୨୧॥
ମାଗ ତୁ ବରଯେବେ ବିଳମ୍ୱ କର ନାହିଂ
ନ କରିବି ନାସ୍ତି ଅବସ୍ୟ ଦେବଇଂ ॥୨୩୨୨॥
ନିଳକାନ୍ତି ବୋଇଲା ଅନ୍ୟରେ ନାହିଂ ପ୍ରୟୋଜନ
ତୁମ୍ଭେ ମୋର ସ୍ୱାମି ସେ ହୋଇବ ଭଗବାନ ॥୨୩୨୩॥
ବଦୟନ୍ତି ଶ୍ରୀହରି କହିଲୁ ଯାହା ସତ୍ୟ
ଯେହି ଯୁଗେଂ ତୋତେ ମୁଂ ନୋହିବି ପ୍ରାପତ ॥୨୩୨୪॥
ସତ୍ୟ ତ୍ରେତୟା ଯାଇ ଦ୍ୱାପର ହୋଇବ
ମୁହିଂ ଜାତ ହୋଇବି ଦେବକିର ଗର୍ଭ ॥୨୩୨୫॥
ପିତା ବସୁଦେବ ସେ ଯେ ଛାଡ଼ିବ ଗୋପପୁରେ
ଯସୋଦା ଦେବେ ଖିର ବଢ଼ିବିଂ ତାର ଘରେ ॥୨୩୨୬॥
ବୃସଭାନୁ ଘରେ ତୁ ଜନମ ହୋଇବୁ
ସେ କାଳେ ରମଣ ଗୋ ତୁହି ସେ ମୋତେ ଦେବୁ ॥୨୩୨୭॥
କରିବଇଂ ନାରି ତୋତେ ଦ୍ୱାପର ଯୁଗର
ଯେତେ ବୋଲି ହରି ସେ ଯେ ହୋଇଲେ ଅନ୍ତର ॥୨୩୨୮॥
ବରପାଇ ନିଳକାନ୍ତି ଆସଇ ବହନ
ସୁଣସି ଗିରିଜା ଗୋ ବଦୟନ୍ତି ତ୍ରିଲୋଚନ ॥୨୩୨୯॥

୧ । ଗ ପୋଥିରେ ତଳ ଦୁଇ ଧାଡ଼ି ନାହିଁ
୨ । ଖ ଓ ଗ ପୋଥି – ନ ଭକ୍ଷିଲା
୩ । ଗ ପୋଥି – ନିରୋଳେ ବସିଣ ସେ ଚିନ୍ତିଲା ଭଗବାନ
୪ । ଖ ପୋଥିରେ ଏହି ଧାଡ଼ି ନାହିଁ
୪ । ଖ ପୋଥିରେ ତଳ ତିନିଧାଡ଼ି ଅଧିକ ଅଛି –
ପ୍ରବେଶ ହେଲେ ଯହିଂ ତପ କରଇ ନୀଳକାନ୍ତି
କିପାଇଂ ତପକରୁ ତାହାକୁ ପଚାରିଲେ
ସେ ବୋଇଲା ସେବେ ମୁଂ ନାରାୟଣଙ୍କ ପୟରେ

ସୌନକ ରସି ସେ ଯେ କନ୍ୟାକୁ ଦେଖିଲେ
କାମେ ଅଧୈର୍ଯ୍ୟ ହୋଇ ବିବେକ ଛାଡ଼ିଲେ ॥୨୩୩୦॥
ବୋଇଲେ ସୁନ୍ଦରି ଗୋ ଦିଅସି ରମଣ
ତୋର ରୁପ ଦେଖି ମୋତେ ସେ ଘାରିଲା ମଦନ ॥୨୩୩୧॥
ଯେମନ୍ତ ବୋଲି ହସ୍ତ ଧଇଲେକ ଯତି
ମୁନିଙ୍କର ବଚନେ ବୋଲନ୍ତି ନିଳକାନ୍ତି ॥୨୩୩୨॥
ଛାଡ଼ ମୁନି ତୁମ୍ଭେ ନ ଛୁଅଂ ମୋର ଅଙ୍ଗ
ତପସ୍ଵି ହୋଇ ମଦନେ ହୋଇଛ ବିଭଙ୍ଗ ॥୨୩୩୩॥
ଅସଉଚ ଅମାର୍ଗ ଅନାଚାରି ଯେ କର୍ମ
ଅକୁଳ[1] ଅସତ୍ୟ କ୍ରୋଧିତ ଲୋଭିଜନ ॥୨୩୩୪॥
ଯେତେ ଲୋକମାନେ ହୋ ପଡ଼ନ୍ତି ନର୍କର
ତପି ହୋଇ କିପାଇଂ କରୁଛୁ ବଳକ୍ରାର ॥୨୩୩୫॥
ଯେ ମୋହୋର ଦେହ ଯେ ଅଗ୍ନିର ସମାନ
ତୁହି ସେ କାଷ୍ଠ ପଡ଼ି ହୋଇବୁ ଦହନ ॥୨୩୩୬॥
କାଷ୍ଠ ପାସାଣ ଲୁହା ମୃତିକା ଆଦିକରି
ଅଗ୍ନିରେ ପଡ଼ି ଯେହୁ ଯାନ୍ତି ଜଳି[2] ॥୨୩୩୭॥
ସୁବର୍ଣ୍ଣ ସେ ଅଗ୍ନିରେ ପଡ଼ିଲେ ହୁଅନ୍ତି ଉଜ୍ଵଳ
ମୁହିଂ ସେ ସୁବର୍ଣ୍ଣ ତୁହି ସେ ପିତଳ ॥୨୩୩୮॥
ତୁହି ଛାର ପିତଳ ଅଟୁଂ ତପିବର
ଅର୍ଜିଲୁ ଅପଯସ ଯେ ଭବ ସଂସାର ॥୨୩୩୯॥
ଯେମନ୍ତେ ରସିଙ୍କି ସେ ତୁକାର ବୋଇଲା
ସୁଣିଣ ସୌନକ ଯେ କୋପିତ ହୋଇଲା ॥୨୩୪୦॥
ବୋଇଲେ ସୁନ୍ଦରି ଗୋ ଯେଡ଼େ ଗର୍ବ ବହୁ
ମୁହିଂ ବ୍ରହ୍ମରସି ତୁକାର ଭାସା କହୁ ॥୨୩୪୧॥
ଯେ ଯୁବା ଯୌବନ ତୋହର ହେଉ ଧିକ
ହୋଇଅଛୁ ଯୁବା ରୁପ ସେବିନାହୁଂ ପୁରୁଷ ॥୨୩୪୨॥
ମୋହର ବଚନ ସେ ହୋଇବ ନିରାଧାର
ଯେହି ଯଉବନ ତୋର ଥିବ ସର୍ବକାଳ ॥୨୩୪୩॥
ଯେହି ରୁପେ ସଉର୍ଯ୍ୟ ହୋଇଥିବ ସରିର
ଜନ୍ମ ହୋଇବୁ ତୁ ଇତର ଜନ ଘର ॥୨୩୪୪॥
ହାଟ ପେଣ୍ଠ ଦାଣ୍ଡରେ ବୁଲିବୁ ବହୁତ ଗ୍ରାମ
ସମସ୍ତେ ଦେଖିବେ ତୋ ରୁପ ଯଉବନ ॥୨୩୪୫॥
ସାପ୍ୟ ଦିଲେ ମୁନି ସୁଣଗୋ ଗଉରି
ଅପମାନ ପାଇ ମୁନି ନଦିରେ ସ୍ନାନ ସାରି ॥୨୩୪୬॥

ସୌଚବନ୍ତ ହୋଇ ତପ ଆଚରିଲେ
ଚଉପାସେଂ ଅଗ୍ନି ଜାଳି ମଧ୍ୟରେ ବସିଲେ ॥୨୩୪୭॥
ହୋଇଲେ ନିରାହାର ଜପିଲେ ହରିନାମ
ନିଷ୍ଚଳେ ବସିଲେ ସେ ଛାଡ଼ିଲେ ଆସ୍ଥାନ ॥୨୩୪୮॥
ସତର ସହସ୍ର ବରସ ତପରେ ବସି ରହି
ଜାଣିଲେ ଭଗବାନ ପ୍ରସନ୍ନ ହେଲେ ଯାଇ ॥୨୩୪୯॥
ବଦୟନ୍ତି ଶ୍ରୀହରି ସୁଣ ହେ ମୁନିବର
କିପାଇଂ ଯେଡ଼େ କଷ୍ଟ ସହୁଛୁ ତୋ ହୃଦୟର ॥୨୩୫୦॥
ଅବସ୍ୟ ଦେବିଂ ବର ମାଗସି ହୋ ଯତି
ରସି ବୋଇଲେ ଭାରିଯା ହୋଇବ ନିଳକାନ୍ତି ॥୨୩୫୧॥
ତାହାର ରୁପ ଦେଖି ମୋହିତ ହେଲି ମୁହିଂ
ଶୃଙ୍ଗାର ମାଗନ୍ତେ ନାସ୍ତି କଲା ସେହି ॥୨୩୫୨॥
ଧିକାରିଣ ସେହି ବହୁତ ଗାଳି ଦେଲା
ମର୍କଟ ହୁଅ ବୋଲି ପୁଣି ହିଂ ସାପ୍ୟ ଦିଲା ॥୨୩୫୩॥
ଯେବେ ତାହାର ପାଇଂ କରୁଅଛି ତପ
ସେ ମୋର ହେବ ପତ୍ନି ମୁଂ ତାର ହେବି କାନ୍ତ ॥୨୩୫୪॥
ଯେମନ୍ତ ବୋଲି ଯହୁଂ ବୋଇଲେକ ମୁନି
ସୁଣିଣ ଆସିର୍ଯ୍ୟ ହୋଇଲେ ଚକ୍ରପାଣି ॥୨୩୫୫॥
ମୋହର ଭାରିଯା ତ ଅଟଇ ନିଳକାନ୍ତି
ତାହାକୁ ନାରି କରିତେ ଲୋଡ଼ଇ ଯେହି ଯତି ॥୨୩୫୬॥
ଯେହି ମୋର ଭଗତ ଯେ ମାଗଇ ଯେହୁ ବର
କେମନ୍ତେ ନାସ୍ତି କରିବି ଯେ ହେଉ ତାର ବର ॥୨୩୫୭॥
ଯେମନ୍ତ ବିଚାରିଣ ବୋଇଲେ ଶ୍ରୀପତି
ଯେ ଜନ୍ମେ ଭାରିଯା ତୋର ନୋହିବ ନିଳକାନ୍ତି ॥୨୩୫୮॥
ତୋତେ ଯେ ବୋଇଲା ହୋଇବୁ ମର୍କଟ
ତ୍ରେତୟା ଯୁଗରେ ତୁ ହେବୁ ହନୁମତ ॥୨୩୫୯॥
ସଦାସିବ ବିର୍ଯ୍ୟେ ପବନ ଜିବ ଘେନି
ଭକ୍ଷିବ ଅଜଂନା ତୁ ଜନ୍ମ ହେବୁ ପୁଣି ॥୨୩୬୦॥
ନାମ ହନୁମତ ସବୁଠାରୁ ହେବୁ ବଳି[1]
ଯତି ପଣେ ଆଚରି ନ ହରିବୁ ନାରି ॥୨୩୬୧॥
ତ୍ରେତୟା ସେସରେ ଦ୍ଵାପର ଯୁଗରେ
ଜନମ ହୋଇବୁ ତୁ ଯାଇଣ ଗୋପପୁରେ[2] ॥୨୩୬୨॥
ଅଙ୍ଗସେଣା ବୋଲିଣ ସେ ଯେକଇ ଗୋପାଳ
ଅଙ୍ଗସେଣି ବୋଲିଣ ଯେ ଭାରିଯା ତାହାର ॥୨୩୬୩॥

---

୧ । ଖ ପୋଥି – ଅକୃତ
୨ । ଖ ପୋଥି – ଦହିଜ୍ୟ ହୋନ୍ତି କାଳି

୧ । ଖ ଓ ଗ ପୋଥି – ନାମ ତୋ ହନୁମତ ବୀରପଣେ ବଳୀ
୨ । ଖ ପୋଥି – ଗୋପ ନାମେ ନଗ୍ର

ତାହାର ଗର୍ଭରେ ଯେ ଜନ୍ମ ତୁ ହୋଇବୁଂ
ଚନ୍ଦ୍ରସେଣା ନାମ ଗୋଟି ସେ କାଳେ ପାଇଥିବୁ ॥୨୩୬୪॥
ନିଳକାନ୍ତି ଜାତ ହେବ ବୃସଭାନୁ ଘର
ରାଧିକା ନାମ ବହି ଭାରିଯା ହେବ ତୋର ॥୨୩୬୫॥
ନଥିବ ଅଙ୍ଗ ସଙ୍ଗ କେବଳ ହେବ ନାରି
ଯେତେ କହି ଅନ୍ତର ହେଲେ ଦେବହରି ॥୨୩୬୬॥

## ରାଧାଙ୍କର ଜନ୍ମ ଓ ଚନ୍ଦ୍ରସେଣାଙ୍କୁ ପତିରୂପେ ଗ୍ରହଣ

କହନ୍ତି ସଦାସିବ ସୁଣଗୋ ଗିରିଜା
ନିଳକାନ୍ତି ଜନ୍ମ ଯେବେ ଗୋ କହିବା ॥୨୩୬୭॥
ଯେକଦିନେ ଦୁର୍ଗା ହୃଦରେ ବିଚାରିଲେ
ଅତରଳ ହୋଇକେ ଅଛଇ ସଂସାରରେ ॥୨୩୬୮॥
ବଇସାଖ ସୁକ୍ଳପକ୍ଷ ଯେ ପୌର୍ଣ୍ଣମିର ଦିନ
ଦୁର୍ଗା ନିମନ୍ତିଲେ ସକଳ ମୁନି ଜନ ॥୨୩୬୯॥
ସାଠିଯେ ସହସ୍ର ଯେ ବାଳଖିଲ୍ୟା ଆଦି
ଯେତେ ଯତି ମୁନି ପୃଥିବି ଥିଲେ ଭେଦି ॥୨୩୭୦॥
ଚନ୍ଦ୍ରସୁର୍ଯ ବରୁଣ କୁବେର ହୁତାସନ
ନୈରୁତ ନାସ୍କର ବୃହସ୍ପତି ଯେ ପବନ ॥୨୩୭୧॥
ନାରଦ ବସିଷ୍ଟ ଯେ ଆବର ସପ୍ତ ରସି
ବାର ବିଶ୍ୱଦେବା ନବଗ୍ରହ ତିଥି ॥୨୩୭୨॥
ବିଧାତା ସହିତେ ଯେ ମିଳିଲେ ସେ ଠାବର
ସୁଣସି ଗିରିଜା ଗୋ ବୋଲନ୍ତି ସଙ୍କର ॥୨୩୭୩॥
ଅପୁର୍ବ ମୋହନି ସେ ଦୁର୍ଗା ଗଲେ ହୋଇ
ଚାହିଂବା ଛଟକରେ ସମସ୍ତେ ହେଲେ ମୋହି ॥୨୩୭୪॥
ଜଗତ ମୋହନି ସେ ଅଟନ୍ତି ଦୁର୍ଗାଯେଣିଂ
ଦେବତାଙ୍କୁ ମୋହିତେ ହୋଇଛି ମୋହନି ॥୨୩୭୫॥
ରାଜରସି ବ୍ରହ୍ମରସି ଦିଗପାଳ ଗନ୍ଧର୍ବ
ଆସନ ପାଇଣ ସେ ବସିଲେକ ସର୍ବ ॥୨୩୭୬॥
ଅମୃତ ପରସନ୍ତି ସେ ଜଗତର ମାତ
ସମସ୍ତେ ସୁଧାଭକ୍ଷି ହୋଇଲେ ଉସତ ॥୨୩୭୭॥
ଦୁର୍ଗାରୁପ ଦେଖି ଯେ ଘାରିଲା ମଦନ
ଅଙ୍ଗରୁ ରେତ ଖସି ତିନ୍ତିଲା ବସନ ॥୨୩୭୮॥
ସମସ୍ତଙ୍କ ଅଙ୍ଗ ସେ ଯେ ତରଳ ହୋଇଲା
ଜର ଜର ହୋଇ ବିର୍ଯ୍ୟ ବସନ ତିନ୍ତିଲା ॥୨୩୭୯॥
ଯେକା ସୁକଯତି ସେ ଯେ ହୋଇଲେ ଅତରଳ
ଦେଖିଲେ ମହାମାଇ ଫେରାଇ ନିଲେ ବେନି ଡୋଳ ॥୨୩୮୦॥

୧ । ଖ ପୋଥି – ଜନମ ହେବୁ ତୁହି

ଭୋଜନ ସାରିଲେ ସମସ୍ତେ ବସିଣ
ପାଇଲେକ ଲଜା କେହି ନ କହନ୍ତି ବଚନ ॥୨୩୮୧॥
ସୁକ ଯତିକି ଦେଖିଣ ଦୁର୍ଗା ହେଲେ ତୁଷ୍ଟ
ବୋଇଲେ ସୁକ ଯତି ତୁ ସମସ୍ତ ପରେ ଶ୍ରେଷ୍ଟ ॥୨୩୮୨॥
ମୁହିଂ ଯେବେ ତୋତେ ଯେ ହୋଇଲି ପ୍ରସନ୍ନ
ସର୍ବଦା ଯତି ରୁପେ ଥିବ ତୋ ଜିବନ ॥୨୩୮୩॥
ପଦ ଅର୍ଥ ପୁରାଣ ସାହସ୍ର ଆଦି ଯେତେ
ସମସ୍ତ ବଖାଣିବୁ ସୁଣିବେ ସମସ୍ତେ ॥୨୩୮୪॥
ଯେମନ୍ତେ ସୁକଙ୍କୁ ଦୁର୍ଗା ବରଦେଇ
ସୁଣଗୋ ଭବାନି ବୋଲି ସଙ୍କର ଗଲେ କହି ॥୨୩୮୫॥
ତପି ଯତି ସନ୍ନ୍ୟାସି ଦେବଗଣ ଆଦି
ସମସ୍ତେ ତରଳିଲେ ଦେଖିଲେ ଭଇରୋବି ॥୨୩୮୬॥
ଅପମାନ ପାଇଣ ଚଳିଲେ ଯେ ଯାହା ସ୍ଥାନ
ଯମୁନା ନଦିରେ ଯାଇ କଲେକ ସ୍ନାହାନ ॥୨୩୮୭॥
ବସନ ଫିଟାଇଣ ଧୋଇବାର ବେଳେ
ବିର୍ଯ୍ୟ ଭାସିଯାଇ ଲାଗିଲା ପଦ୍ମଦଳେ ॥୨୩୮୮॥
ସେ ପଦ୍ମ ପତ୍ରରେ ପଡ଼ିଲା ଯହୁଂ ବିର୍ଯ୍ୟ
ଜ୍ୟୋତି ବିକାସିଣ ସେ ବିରାଜିଲା ତେଜ ॥୨୩୮୯॥
ସେହୁ ବିର୍ଯ୍ୟ ଯେ ହୋଇଲା ଅଜ କଢ଼ି
ଯହୁଂ ସେ ବିରାଜିଣ ଝଟକିଲା ଜ୍ୟୋତି ॥୨୩୯୦॥
ତହୁଂ ସେ ନିଳକାନ୍ତି ନିଳାମ୍ବର ଜ୍ୟୋତି
ତେଣୁ ବୃଷଭାନୁ ଗୋପାଳ ଗଲାକ ଯେ ଧାତି ॥୨୩୯୧॥
ଯହୁଂ ସେ ନିଳକାନ୍ତି ଜନ୍ମିଲା ପଦ୍ମଦଳ
ତେଣୁ ପଦ୍ମମୁଖି ବୋଲନ୍ତି ସକଳ ॥୨୩୯୨॥
ଯେଣୁଂ ସେ ସକଳ କଲେକ କଲ୍ୟାଣ
ତେଣୁ ବୃସଭାନୁ କଲାକ ଗମନ ॥୨୩୯୩॥
ଯେଣୁ ଗମନ ସେ କଲାକ ନଦିଜଳ
ଦେଖିଲା ନନ୍ଦନି ଯେକ ପଡ଼ିଛି ପଦ୍ମଦଳ ॥୨୩୯୪॥
ଯହୁଂ ସେ ପଦ୍ମଦଳେ ନନ୍ଦନି ଦେଖିଲା
ଦେଖି ସେ କୋଳ କରି ଘରକୁ ଘେନିଗଲା ॥୨୩୯୫॥
ଯହୁଂ ସେ ଗୋପାଳ ଘରକୁ ଗଲା ଘେନି
ବୃସାଳି ବୋଲି ତାହାର ନିଜ ପତ୍ନି ॥୨୩୯୬॥
ଯହୁଂ ସେ ତାର ପତ୍ନି ଦେଖିଲା କୁମାରି
ପୁତ୍ରଠାରୁ ଅତି ସ୍ନେହେ ଦୁହିତାକୁ ପାଳିଂ ॥୨୩୯୭॥
ଯହୁଂ ସେ ପାଳିଲା ଅତି ସେ ଯତନ
ତେଣୁ ରୁପେ ତାର କେହି ନୋହିଲେକ ସମ ॥୨୩୯୮॥

୧ । ଗ ପୋଥି –ପୁତ୍ରଠାରୁ ଦୁହିତାକୁ ଅତ୍ୟନ୍ତ କରି ପାଳି

ଯେଣୁଂ ସମ ତାକୁ ନୋହିଲେ ରାଜ୍ୟର
ତେଣୁ ରାଧିକା ନାମ ହୋଇଲା ତାହାର ॥୨୩୯୯॥
ଯହୁଂ ତିନି ପୁରେ ନୋହିଲେ ସରି ସମ
କେହି ବର ପଣେ ତାକୁ ନୋହିଲେ ଭାର୍ଜନ ॥୨୪୦୦॥
ଯେଣୁ ତାକୁ ଭାର୍ଜନ ନୋହିଲେକ ବର
ତେଣୁ ତାକୁ ବରିଲା ଚନ୍ଦ୍ରସେଣା ଗୋପାଳ ॥୨୪୦୧॥
ଯେଣୁ ସେ ଚନ୍ଦ୍ରସେଣା ପୁର୍ବର ତପ କରି
ତେଣୁ ରାଧିକାକୁ ପାଇଲା ସେହୁ ନାରି ॥୨୪୦୨॥
ଯେଣୁଂ ସେ ତାର ହୋଇଲା ଭାରିଯା ରାଧିକା
ତେଣୁ ଚନ୍ଦ୍ରସେଣା ହୋଇଲା ନପୁଂସକା ॥୨୪୦୩॥
ତେଣୁ ରାଧିକାକୁ ଘାରିଲା ମଦନ
ଶ୍ରୀକୃଷ୍ଣ ଶୃଙ୍ଗାରକୁ ବଳିଲା ତାର ମନ ॥୨୪୦୪॥
ଯେଣୁଂ ସେ ରାଧିକା ମାଗିଅଛି ପୁର୍ବେ ବର
ତେଣୁ କରି ଶ୍ରୀକୃଷ୍ଣ ତାକୁ କରନ୍ତି ଶୃଙ୍ଗାର ॥୨୪୦୫॥
ଚନ୍ଦ୍ରସେଣା ରାଧିକାର ଅଙ୍ଗ ନ ଛୁଅଇଂ
ଆପଣେ ଶ୍ରୀହରି ତାକୁ ବର ଛନ୍ତି ଦେଇ ॥୨୪୦୬॥
ଭଗତ ବଛଳ ସେ ଅଟନ୍ତି ଦଇତାରି
ଭଗତ ଭାବକୁ ସେ ଦେଇ ଅଛନ୍ତି ନିଜ ନାରି ॥୨୪୦୭॥
ଭଗତ ବଛଳ ବାନା ଅଟଇ ତୁମ୍ଭର
ଭାବଗ୍ରାହି ନାଥ ମୋତେ କରହେ ପ୍ରତିକାର ॥୨୪୦୮॥
ଦୃଷ୍ଟକୁ ନିସୋଧନ ଭକ୍ତଙ୍କୁ ଭାବ ଭୋଳା
ତୁ ଯାହାକୁ ଦୟା କରୁ ସର୍ବକାର୍ଯ୍ୟ ସୁଫଳା ॥୨୪୦୯॥
ମୁହିଂ ସେ ମାନବ ଅଟଇ ଅଜ୍ଞାନ ମୁଢ଼ ଛାର
ତୁମ୍ଭେ ଦୟା କଲେ ସର୍ବ ସୁଭ ଯେ ମୋହର ॥୨୪୧୦॥
ସେ ରାଧାକାନ୍ତ ଚରଣ ପଙ୍କଜରେ
ସାରୋଳା ଚଣ୍ଡି ଦାସ ସରଣ ବାରେ ବାରେ ॥୨୪୧୧॥

## ଗୋପପୁରରେ ଗିରି ଗୋବର୍ଦ୍ଧନ ପୂଜା ଓ ଇନ୍ଦ୍ରଙ୍କର କୋପ

ବଦୟନ୍ତି ଓମା ସଙ୍କର ମୁଖ ଚାହିଂ
କହିଲ ରାଧିକା ଜନ୍ମ ସୁଣିଲଇଂ ମୁହିଂ ॥୨୪୧୨॥
ତଦଅନ୍ତେ କିସ କଲେକ ଭଗବାନ
ତବ ମୁଖୁଂ ସୁଣି ହୋଇଲି ମୁଞ୍ଚମାନ[୧] ॥୨୪୧୩॥
କହନ୍ତି ସଦାସିବ ସୁଣଗୋ ହେମବନ୍ତି
ବୈବସୁତ ଆଗେ ଯାହା କହିଲେ ଅଗସ୍ତି ॥୨୪୧୪॥
ତାହା ତୋର ଆଗେଂ କହିବା ବିସ୍ତାରି
ନନ୍ଦ ଘରେ ଶ୍ରୀକୃଷ୍ଣ କରନ୍ତି ବାଳକେଳି ॥୨୪୧୫॥

୧ । ଖ ଓ ଗ ପୋଥି – ସୁଣିବି କହ ତ୍ରିଲୋଚନ

ଯେକଦିନେ ମେଳି ହୋଇ ବସିଲେ ଗୋପବୃନ୍ଦ
ନନ୍ଦ ଉପନନ୍ଦ ସୁନନ୍ଦ ସେ କୁନନ୍ଦ[୧] ॥୨୪୧୬॥
କେଳିନନ୍ଦ କମଳନନ୍ଦ[୨] ଆବର ଜୟନ୍ତିକ ନନ୍ଦ
କୁରୁନନ୍ଦ ସହିତେ ଯେ ଅଷ୍ଟ ମହାକୁଢ଼ ବୃନ୍ଦ ॥୨୪୧୭॥
ବସିଣ ବିଚାର ସେ କରନ୍ତି ସର୍ବଜନ
ଭିଆଅ ସାମଗ୍ରି ହୋ ପୁଜିବା ଗୋବର୍ଦ୍ଧନ ॥୨୪୧୮॥
ଯେମନ୍ତ ବିଚାରି ସର୍ବେ ସାମଗ୍ରି ଭିଆଇଲେ
ସତେ ସତେ ଭାର କରି ସିତଳ[୩] ବହିନେଲେ ॥୨୪୧୯॥
ପାଣି ପଣା ଘୃତ ସାକର ଦୁଧ ଦହି
ଛେନା ନଟିକାଳ[୪] ନିଅନ୍ତି ଭାର ଭାର ବହି ॥୨୪୨୦॥
ଗୋବିନ୍ଦ ବୋଇଲେ ହୋ କାହିଂକି ନେଉଅଛ
ଗୋପାଳ ବୋଇଲେ ହେ ପୁଜିବା ପର୍ବତ ॥୨୪୨୧॥
ବଦୟନ୍ତି ଗୋପିନାଥ ଗୋପାଳେ ହେଲ ବାଇ
ଗିରିକି ପୁଜାକଲେ କିସ ବର ପାଇ ॥୨୪୨୨॥
ତାହାର ନିଜ ଦେହ ଗୋଟିକ ସେ ନ ପାରେ ସମ୍ଭାଳି
ବୃକ୍ଷଲତା ତୃଣ ସିଖରେ ସେ ଯାଇଅଛି ଗଳି ॥୨୪୨୩॥
ଯେହୁ ପୁଣି ସମ୍ଭାଳି ନ ପାରେ ଦେହକୁ
ସେହି ପୁଣି କାହୁଂ ରଖିବ ଅନ୍ୟକୁ ॥୨୪୨୪॥
ଅଜିବ ଗିରି ସେ କେମନ୍ତେ ଦ୍ରବ୍ୟ ଖାଇ
ଖାଇଲେ ବର ଦେନ୍ତା ତୁମ୍ଭଙ୍କୁ ହୃଷ୍ଟ ହୋଇ ॥୨୪୨୫॥
ଗୋପାଳେ ବୋଇଲେ କାହ୍ନୁ ଯେକଥା ନୋହଇ
ଗିରିକି ପୁଜାକଲେ ଯେ ଇନ୍ଦ୍ର ବରସଇ ॥୨୪୨୬॥
ଇନ୍ଦ୍ରବୃଷ୍ଟି କଲେ ଯେ ବହୁତ ବଢ଼େ ତୃଣ
ବହୁତ କ୍ଷିରଦେନ୍ତି ଭକ୍ଷିଣ ଗୋଧନ ॥୨୪୨୭॥
ବଦୟନ୍ତି କେସବ ତୁମ୍ଭେ ଦେଖ ଯେହିଠାର
ମୁହିଂ ପୁଜି ତୋସିବି ସ୍ୱର୍ଗର ଆଖଣ୍ଡଳ[୫] ॥୨୪୨୮॥
ଯେତେ ଇଛା ତେତେ ଜଳ ବରସିବ
କ୍ଷଣକରେ ଗୋପପୁର ଭସାଇଣ ନେବ ॥୨୪୨୯॥
ଶ୍ରୀକୃଷ୍ଣ ମାୟା କଥା ଗୋପାଳେ ନ ଜାଣିଲେ
ହରସ ହୋଇଣ ପୁଜା ବିଧି କଲେ[୬] ॥୨୪୩୦॥

୧ । ଖ ପୋଥି – କୁଳବୃଦ୍ଧ ନନ୍ଦ
୨ । ଖ ପୋଥି – କାମ ନନ୍ଦ
୩ । ଖ ପୋଥି – ସାମଗ୍ରୀ
୪ । ଖ ପୋଥି – ନଡ଼ିଆ ଆବର
୪ । ଗ ପୋଥି – ନଡ଼ିକାଳ
୫ । ଖ ଓ ଗ ପୋଥି – ବଜ୍ରଧର
୬ । ଖ ଓ ଗ ପୋଥି – ସଉଚ କରିଣ ଭୂମିରେ ଦ୍ରବ୍ୟନ୍ତ ବାଡ଼ିଲେ

ସାମଗ୍ରି ଗଦା ହେଲା ଯେସନେ ଗିରିବର
ଅନ୍ତର ହୋଅ ବୋଲି ଡାକିଲେ ଗଦାଧର ॥୨୪୩୧॥
ଶ୍ରୀକୃଷ୍ଣର ବଚନେ ସମସ୍ତେ ଗଲେ ଚଳି
ଗୋପାଳେ ଦିଲେ ଭୋଗ ଭୁଞ୍ଜିଲେ ବନମାଳି ॥୨୪୩୨॥
ସନ୍ତୋସ ଚିତ୍ତେ ହରି ମିଳିଲେ ନବର
ସୁଣଗୋ ସଖି ବୋଲି ବୋଲନ୍ତି ଗଙ୍ଗାଧର ॥୨୪୩୩॥
ତେଣୁ ସେ ହୃଦେଂ କୋପ ବହିଲେ ସଚିସାଇଂ
ଯହୁଂ ଇନ୍ଦ୍ର ଭୋଗ ଭୁଜିଂଲେ ଭାବଗ୍ରାହି ॥୨୪୩୪॥
ବିଚାରିଲେ ଗୋପାଳେ ଯେତ୍ଡେକ କର୍ମ କଲେ
ନନ୍ଦ ପୁଅ ବାଳକ ବୋଲରେ ପଡ଼ିଲେ ॥୨୪୩୫॥
ଦେଉଥିଲେ ମୋତେ ପୁଜା ଖାଇଲା ନନ୍ଦସୁତ
ଆଜ ଗୋପପୁର ମୁଂ କରିବି ଭଗନସ୍ତଂ ॥୨୪୩୬॥
ଯେମନ୍ତ ବୋଲି ଚାରି ମେଘକୁ ରାଇଣ
ବରସ ଗୋପପୁରେ ସଙ୍ଗତେ ଘେନିଣ ପବନ ॥୨୪୩୭॥
ଯେମନ୍ତେ ଗୋପପୁର ରାସାଙ୍ଗତ ହୋଇ
ଚଳିଲେ ଚାରିମେଘ ଇନ୍ଦ୍ର ଆଜ୍ଞା ପାଇ ॥୨୪୩୮॥
ଅଠର ଖଣ୍ଡ ମେଘ ଅଣଞ୍ଚାସ ପବନ
ଝଟକେ ବିଜୁଳି ଆଚ୍ଛାଦି ଗଗନ ॥୨୪୩୯॥
କରିଣ ଘୋର ରଡ଼ି ମାରନ୍ତି ବଜ୍ରସୁଚି
ତଡ଼ିତ ତରଳ ପୃଥିବି ଯାଇ କମ୍ପି ॥୨୪୪୦॥
ପବନର ସଙ୍ଗତେ ବରସନ୍ତି ଜଳ
ଦେଖିଣ ଆନନ୍ଦିତ ହୋଇଲେ ସକଳ ଗୋପାଳ ॥୨୪୪୧॥
ବୋଇଲେ ଯେମନ୍ତ ପୁଜା କୃଷ୍ଣନାଥ କଲା
ଦିନକ ଯାଇ ନାହିଂ ଇନ୍ଦ୍ର ବରସିଲା ॥୨୪୪୨॥
ସବୁଦିନେ ହରି ପୁଜିବେ ଗିରିବର
ସନ୍ତୋସ ହୋଇଣ ଇନ୍ଦ୍ର ବରସିବ ନିର ॥୨୪୪୩॥
ଆଜଦିନ ସମ୍ପୁର୍ଣ୍ଣେ ବରସିବ ଜଳ
ଧନ୍ୟ ଗୋପିନାଥ ବୋଲି ପ୍ରସଂସା କରନ୍ତି ଗୋପାଳ ॥୨୪୪୪॥
ଯେଥୁ ଅନ୍ୟନ୍ତରେ ତୁମ୍ଭେ ସୁଣଗୋ ଗଉରି
ମୁସଳ ପ୍ରମାଣେ ଜଳଧାରା ପଡ଼ି ॥୨୪୪୫॥
ତତକ୍ଷଣେ ଜଳମୟ ହୋଇଲା ଗୋପପୁର
ପୁରିଲା ପୁଷ୍କରଣି ନଦି ସରୋବର ॥୨୪୪୬॥
ନଗର ଚୁନା ହେଲା ବଜ୍ରସୁଚି ମାରି
ଦେଖିଣ ଆରତ ହୋଇଲେ ଗୋପ ନର ନାରି ॥୨୪୪୭॥
ଡାକିଲେ କୃଷ୍ଣନାଥ ଆମ୍ଭଙ୍କୁ ଉଦ୍ଧାର
ତୋହର ସଞ୍ଚିଲା ଯେ ଅଟଇ ଗୋପପୁର ॥୨୪୪୮॥

୧ । ଖ ଓ ଗ ପୋଥି – ଧୂମାନ୍ତ

ଗିରିପୁଜା ଆମ୍ଭେ ସେ ଯେ ନକଲୁଂ ତୋର ବୋଲେ
ଯେବେ ଇନ୍ଦ୍ର କୋପରେ ନାସ ଗଲୁ ଯେ ସକଳେ ॥୨୪୪୯॥
ଯେମନ୍ତେ ଗୋପାଳେ ଯେ ଆତଙ୍ଗ ମନ ହୋଇ
ଗୋ ବଛା ବିକଳ ଶ୍ରୀକୃଷ୍ଣ ମୁଖ ଚାହିଂ ॥୨୪୫୦॥
ଯହୁଂ ସେ ଗୋପ ପୁରେ ପଡ଼ିଲା ଭାଲୁଣି
ରଖିଲି ବୋଲି ଡାକ ଦିଲେ ଚକ୍ରପାଣି ॥୨୪୫୧॥
ତତକ୍ଷଣେ ଉପାଡ଼ିଲେ ଗୋବର୍ଦ୍ଧନ ଗିରି
ବସାଇଲେ ବାମହସ୍ତେ ତର୍ଜନି ଅଙ୍ଗୁଳି ॥୨୪୫୨॥
ବୋଇଲେ ହୋ ଗୋପି ଗୋପାଳ ତୁମ୍ଭେ ଯେତେ ଅଛ
ଭୟ ଉପେକ୍ଷିଣ ତୁମ୍ଭେ ଗିରିତଳେ ପସ ॥୨୪୫୩॥
ଧେନୁ ଧନ ସମ୍ପଦ ବାଳକ ଯୁବା ବୃଦ୍ଧ
ସମସ୍ତେ ପସ ଏବେ ଆସିଣ ଗିରି ଗର୍ଭ ॥୨୪୫୪॥
ସମସ୍ତେ ଗିରିତଳେ ପସିଲେକ ଯାଇ
ଦେଖିଲେ କୃଷ୍ଣକରେ ପର୍ବତ ଅଛଇ ॥୨୪୫୫॥
ବିଚାରିଲେ ମାଡ଼ି ନିକି ପଡ଼ଇ ଉପର
ନୟନେ ହସ୍ତ ଦେଇ ବସିଲେକ ସ୍ଥିର ॥୨୪୫୬॥

## ଶ୍ରୀକୃଷ୍ଣଙ୍କର ଗିରି ଗୋବର୍ଦ୍ଧନ ଧାରଣ ଓ ଇନ୍ଦ୍ରର ଦର୍ପ ଚୂର୍ଣ୍ଣ

ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରା
ମୁସଳ ପ୍ରମାଣେ ବରସିଲା ଜଳଧାରା ॥୨୪୫୭॥
ବରସିଣ ମେଘମାନେ ସ୍ଥକିତ ହୋଇଲେ
ଇନ୍ଦ୍ରରାଜା ଆଗରେ ଯାଇଣ ଜଣାଇଲେ ॥୨୪୫୮॥
ବରସା ଦେଖିଣ କୃଷ୍ଣ ଉପାଡ଼ି ପର୍ବତ
ରହିଲେ ସମସ୍ତେ ଗିରି ହୋଇଲା ଛତ୍ର ॥୨୪୫୯॥
ସମସ୍ତେ ବ୍ରତିଲେ ରଖିଲେ ନନ୍ଦସୁତ
ଯେମନ୍ତ ସୁଣି କୋପ ବହିଲା ସଚିକାନ୍ତଂ ॥୨୪୬୦॥
ଗଜ ଉପରେ ବସି ଧାଇଂଲାକ ଖରେ
ବଜ୍ର ପ୍ରହାରିଲା ନେଇ ଗୋବର୍ଦ୍ଧନ ଉପରେ ॥୨୪୬୧॥
ତିଳେ ନ ଭେଦିଲା ବଜ୍ର ପଡ଼ିଲା ଉପୁଡି
ତେଣୁ ଲଜ୍ୟା ପାଇଣ ବାହୁଡ଼ି ବଜ୍ରଧାରି ॥୨୪୬୨॥
ଇନ୍ଦ୍ରର ସଙ୍ଗେ ମେଘ ପବନ ବାହୁଡ଼ିଲେ
ସୁଣସି ଓମା ବୋଲି ସଙ୍କର କହିଲେ ॥୨୪୬୩॥

୧ । ଗ ପୋଥିରେ ଏହି ଧାଡ଼ି ନାହିଁ

ଶ୍ରୀକୃଷ୍ଣ ବୋଇଲେ ହୋ ବାହାର ହୋଅ ତୁମ୍ଭେ
ପର୍ବତ ଭାରି ମୋତେ ଲାଗିଲାତ ଯେବେ ॥୨୪୬୪॥
ପଡ଼ିଲା ପଡ଼ିଲା ଗିରି ବୋଲି ଶ୍ରୀହରି ଡାକ ଦେଲେ
ଡରେ ଗୋପି ଗୋପାଳ ବାହାର ହୋଇଗଲେ ॥୨୪୬୫॥
ଯେଝାରେ ସମ୍ଭାଳିଲେ ଗୋପର ସମ୍ପଦ
ସୁରପତିର ଗର୍ବ ଭାଞ୍ଜିଲେ ଗୋବିନ୍ଦ ॥୨୪୬୬॥

## ବ୍ୟୋମାସୁର ବଧ

ବଦୟନ୍ତି ସଙ୍କର ସୁଣଗୋ ଗଉରି
କଂସର ଡଗର ଯେ ଥିଲା ଗୋପପୁରି ॥୨୪୬୭॥
କଂସର ଆଗେ ଯାଇ କହିଲା ବାରତା
ସାବଧାନ ହୋଇ ସୁଣ ପ୍ରତାପି କଂସ ରାଜା ॥୨୪୬୮॥
ଗୋପପୁର କଥା ତୁମ୍ଭେ ସୁଣ ହେ ରାଜନ
ଗୋପାଳେ ପୁଜୁଥିଲେ ଗିରି ଗୋବର୍ଦ୍ଧନ ॥୨୪୬୯॥
ଗିରିପୁଜା ଦ୍ରବ୍ୟ ସବୁ ଖାଇଲା ନନ୍ଦସୁତ
ଦେଖିଣ କୋପ ଯେ ବହିଲା ପୁରୋହିତ ॥୨୪୭୦॥
ଅଠାର ଖଣ୍ଡ ମେଘ ଅଣଞ୍ଚାସ ଖଣ୍ଡ ପବନ
ଯେତକ ଘେନିଣ ମିଳିଲା ମଘବାନ ॥୨୪୭୧॥
ବରସନ୍ତେ ପାଣି ସେ ଗୋପାଳେ ବିକଳ
ଗୋବର୍ଦ୍ଧନ ଗିରି ଉପାଡ଼ି ନନ୍ଦବାଳ ॥୨୪୭୨॥
ଗୋରୁ ଗୋପାଳେ ଯେ ସମ୍ପଦ ସହିତେ
ଗିରିକି ଛତ୍ର କରି ରହିଲେ ସମସ୍ତେ ॥୨୪୭୩॥
ସପତ ଦିନ ଯାଏ ରହିଲେ ଗିରିତଳେ
ହାରିଣ ବାହୁଡ଼ି ସେ ଗଲା ଆଖଣ୍ଡଳେ ॥୨୪୭୪॥
ଯେମନ୍ତ ଚରିତ ଯେ କଲା ନନ୍ଦବଳା
କହିଲି ଯେବେ ମୁହିଂ ନକର ତୁମ୍ଭେ ହେଳା ॥୨୪୭୫॥
ସୁଣିଣ କଂସାସୁର ଚକିତ ହୋଇଲା
କାଳ କଣ୍ଟକ ବ୍ୟାଧି କହ୍ନାଇ ହୋଇଲା ॥୨୪୭୬॥
ଯେତେକ ସେନାପତି ଗଲେ ତାକୁ ମାରି
ସର୍ବେ ନାସ ଗଲେ ଗୋଟିଯେ ନୋଇଲେ ଉବୁରି ॥୨୪୭୭॥
କେହୁ ଯାଇ ତାହାକୁ ମାରିଣ ଆସିବ
ମୋହର ରାଜ୍ୟରେ ସେ ଅଧିକାରି ହୋଇବ ॥୨୪୭୮॥
ଯେମନ୍ତେ ଦଇତ ଯେ ଭାଳିଲା ଅପାର
ସିରଝୁଣି ଉଠିଲା ସେ ଦୈତ୍ୟ ବ୍ୟୋମାସୁର ॥୨୪୭୯॥
ମୋତେ ଆଜ୍ଞା କିପାଇଂ ନ ଦେଉ ରାଜନ
ଯେହିକ୍ଷଣି ନାସି ମୁଂ ଆସିବି ନନ୍ଦ କାହ୍ନ ॥୨୪୮୦॥
ସପତ ବରସ ପୁଅ ଅଟଇ କେଡ଼େ ବଳି
ଯେକା ପ୍ରହାରକେଂ ହୋଇବ ଧ୍ୱଂସ ଧୁଳି ॥୨୪୮୧॥
କଂସାସୁର ବୋଇଲା ଯାଅ ହୋ ମଇତ୍ର
ତୋହୋର ବିନୁ ମୋର ନାହିଂଟି ବିସ୍ୱାସ ତ ॥୨୪୮୨॥
ଆଜ୍ଞାପାଇ ବ୍ୟୋମାସୁର ବହନ ଚଳିଗଲା
ବୃନ୍ଦାବନରେ ଯାଇ ଗୁପତେ ରହିଲା ॥୨୪୮୩॥
କହନ୍ତି ସଦାସିବ ସୁଣ ଗୋ ଗଉରି
ବଛା ଘେନି କୁଜଂବନେ ବିଜଏ ଦଇତାରି ॥୨୪୮୪॥
ବଦୟନ୍ତି ଶ୍ରୀହରି ଗୋପାଳ ପୁଅଙ୍କୁ
ଆଜ ଖେଡ଼ ରଞ୍ଚିବା ଆସ ମୋ ଠାବକୁ ॥୨୪୮୫॥
ଥୋକାଯେକ ପ୍ରଜା ଥୋକାଯେକ ହୋଅ ନୃପତି
ଥୋକାଯେ ହୋଅ ଚୋର ଥୋକାଯେ ଦଣ୍ଡୁଆସି ॥୨୪୮୬॥
ଯେମନ୍ତ ବୋଲି ଯହୁଂ ବୋଲଇ ନନ୍ଦବଳା
ସୁଣିଣ ରାକ୍ଷସ ଗୋପାଳ ପୁଅ ହୋଇଲା ॥୨୪୮୭॥
ଶ୍ରୀହରି ବସିଲେ ହୋଇଣ ରାଜନ
ଦଇତ ପୁଅଙ୍କୁ ନିଲା ଚୋରାଇଣ ॥୨୪୮୮॥
ପର୍ବତ କ୍ରୋଟରେ ସେ ରଖିଲାକ ନେଇ
ରହିଲେ ସାତପାଞ୍ଚ ଦେଖିଲେ ଭାବଗ୍ରାହି ॥୨୪୮୯॥
ବିଚାରିଲେ ଦଇତ ସକଳ ନିଲା ବାଛି
ମାରିବ ବୋଲି ମୋତେ ହୃଦରେ ଅଛି ପାଞ୍ଚି ॥୨୪୯୦॥
ଯେମନ୍ତ ବିଚାରିଣ ଗୋବିନ୍ଦ ଗଲେ ଧାଇଂ
ଦାନେବ ଗଳା ସେ ଯେ ଚାପିଲେ ଭାବଗ୍ରାହି ॥୨୪୯୧॥
ପକାଇଲେ ମୋଡ଼ି ହୋଇଲା ବେନିଖଣ୍ଡ
ଛାଡ଼ିଲା ଦିର୍ଘ ରଡ଼ି ମାଡ଼ି ପଡିଲା ଭୁମିଖଣ୍ଡ ॥୨୪୯୨॥
ଦଇତ ପିଣ୍ଡରୁ ଯେ ପୁରୁଷେ ବାହାର
ମୁକତି ପାଇଣ ଗମିଲା ସ୍ୱର୍ଗପୁର ॥୨୪୯୩॥
ଯହୁଂ ନାସଗଲା ଦଇତ ବ୍ୟୋମାସୁର
ଆନନ୍ଦ ହୋଇଲେ ସେ ଦେବତା ସକଳ ॥୨୪୯୪॥
ଶ୍ରୀକୃଷ୍ଣର ଶିରେ ଦେବେ ପୁଷ୍ପ ବୃଷ୍ଟିକଲେ
ସୁଣସି ଗିରିଜା ଗୋ ସଙ୍କର କହିଲେ ॥୨୪୯୫॥
ଯେତେକ ବାଳକ ସେ ରଖିଥିଲା ନେଇ
ସମସ୍ତଙ୍କୁ ଗୋବିନ୍ଦ ଆଣିଲେ ମୁକୁଳାଇ ॥୨୪୯୬॥
ଦେଖିଲେ ପଡ଼ିଅଛି ଦାନେବର ପିଣ୍ଡ
ମେରୁ ଉହାଡ଼ରେ ରହିଲେ ମାରତଣ୍ଡ ॥୨୪୯୭॥
ଗୋବିନ୍ଦ ଗୋପସୁତ ପ୍ରବେସ ନବର
ଦଇତ ମଲାକଥା କହିଲେ ମାତାଠାର ॥୨୪୯୮॥
ସଡ଼ରସେ ଭୋଜନ ସାରିଣ ପିତବାସ
ସୋଇଲେ ମାତାକୋଳେ ହୋଇଣ ହରସ ॥୨୪୯୯॥

ଯହୁଂ ରଜନି ହୋଇଲା ପାହାନ୍ତି
ପ୍ରଭାତୁ ଉଠି ଦଧି ମନ୍ଥନ୍ତି ଯସୋବନ୍ତି ॥୨୫୦୦॥
ମାତାର ଅଞ୍ଚଳ ଧଇଲେ କୃଷ୍ଣ ଯାଇ
ଲବଣି ଟିକାୟେ ଦିଅଗୋ ମାତା ତୁହି ॥୨୫୦୧॥
ସୁଣିଣ ଯସୋବନ୍ତି ଟିକାୟେ ଦେଲେ ସର
ଭୁଜିଂଣ ପୁଣ ଗୋଳ କରନ୍ତି ଚକ୍ରଧର ॥୨୫୦୨॥
ଯସୋଦା ବୋଇଲେ ରେ ନ କର ଜଞ୍ଜାଳ
ଘୋଳ ବିକି ସୁଝିବୁ କଂସ ରାଜା କର ॥୨୫୦୩॥
ନଦେଲା ନନ୍ଦ ନାରି କୃଷ୍ଣପାଇ ଚିଟା
ଦଧି ହାଣ୍ଡି ଉପରେ କଚାଡ଼ିଲେ ସିଳପୁତା ॥୨୫୦୪॥
ଭାଜିଂଣ ଦଧିହାଣ୍ଡି ଶ୍ରୀକୃଷ୍ଣ ପଳାଇଲେ
ଚନ୍ଦ୍ରସେଣା ନବରେ ପ୍ରବେସ ହୋଇଲେ ॥୨୫୦୫॥

## ଭୂତକେଳି

ବୋଇଲେ ମାଇଂ ଗୋ କି କରୁଅଛୁ ତହିଂ
ରାଧିକା ବୋଇଲେ ମୁଂ ମନ୍ଥୁଅଛି ଦହି ॥୨୫୦୬॥
ଶ୍ରୀକୃଷ୍ଣ ବୋଇଲେ ଦେବୁ ଲବଣି ଟିକାୟେ
କ୍ଷୁଧାରେ ଆରତ ଯେ ହେଉଛି ମୋର କାୟେ ॥୨୫୦୭॥
ଏହା ସୁଣି ହରସ ଯେ ହୋଇଲେ ଚନ୍ଦ୍ରାବଳି
ଦିଲା ସର ଲବଣି ଭକ୍ଷିଲେ ବନମାଳି ॥୨୫୦୮॥
ଉଠିଣ ରାହି ଦେହରୁ କାଢ଼ିଲେ ବସନ
ବେନି ହସ୍ତେ କୁଚ ମର୍ଦ୍ଦନ୍ତି ଜନାର୍ଦ୍ଦନ ॥୨୫୦୯॥
ବୋଇଲେ ମାଇଂ ୟେହା କାହୁଂ ତୁ ପାଇଲୁ
କେତେଦିନେ ବସି ୟେ ବେନିକି ନିର୍ବାଣିଲୁ ॥୨୫୧୦॥
ସିବ ସକତି କି ୟେ ମର୍କତର ଲିଙ୍ଗ
କିଅବା ଦେବତାଙ୍କର ୟେ ଅଟଇ ସୁଧାକୁମ୍ଭ ॥୨୫୧୧॥
ଅମୃତ ପୁରୋଇଣ ନିଳମୁଦ ଦେଇ
କହ ମାଇଂ ମୋତେ କେ ତୋତେ ୟେହା ଦେଇ ॥୨୫୧୨॥
ରାଧିକା ବୋଇଲେ ସୁଣ ହେ ମାଧୋଇ
ସ୍ତିରିଙ୍କର ଅର୍ଜିଲା ଫଳ ଏ ଅଟଇ ॥୨୫୧୩॥
ୟେବଣ ବିଧାତା ଆମ୍ଭଙ୍କୁ କଲା ଜନ୍ମ
ଦୟା କରି ଦେଲା ସେ ଜାନୁ ଯଉବନ ॥୨୫୧୪॥
ବାଳକ କାଳରେ ୟେ ଗୋପତେଂ ଥାଇ ରହି
ଯୁବା କାଳକୁ ୟେ ବଢ଼ିଣ ସୋଭା ପାଇ ॥୨୫୧୫॥
ୟେମନ୍ତେ କଲେ ରାଧାକୃଷ୍ଣ ହାସ୍ୟ ପରିହାସ୍ୟ
ମଦନ ମୁରତି ୟେ ହୋଇଲେ ପିତବାସ ॥୨୫୧୬॥
ରାଧିକାକୁ କୋଳରେ ସେ ଭିଡ଼ିଲେ ଭଗବାନ
କଲେକ ବିବସନ ଦେଲେକ ଚୁମ୍ବନ ॥୨୫୧୭॥
ଭୁଜରେ ଭୁଜ ଭିଡ଼ି ସୃଙ୍ଗାର ଦେବ କଲେ
ଅଙ୍ଗରୁ ରଜ ସ୍ଖଳିତ ସକଳ ତାପ ପାସୋରିଲେ[1] ॥୨୫୧୮॥
ସାରିଲେ ରତି ରସ ପିନ୍ଧିଲେ ବସନ
ପଦ୍ମିନି ମୁଖ ଚାହିଂ ବୋଲନ୍ତି ବଚନ ॥୨୫୧୯॥
ୟେବେ ଗୋ ଚୋରି ରତି ଆଉ ନ କରିବା
ସମସ୍ତେ ଦେଖୁଥିବେ ରମଣ କରିବା ॥୨୫୨୦॥
ତୁହି ସେ ଯମୁନାକୁ ଯିବୁ ନିର ଆଣି
ଭୁତ ଲାଗିଲା ବୋଲି ପଡ଼ିବୁ ଧରଣି ॥୨୫୨୧॥
ବସ୍ତ୍ର ଫିଙ୍ଗିଦେଇ ହୋଇବୁ ବାଉଆଳି
ଗୁରୁ ଗଉରୋବ ନ ମାନି ଦେବୁ ଅନେକ ଗାଳି ॥୨୫୨୨॥
ଗୋପାଳେ ଝାଡ଼ିଲେ ସ୍ୟାନ୍ତି ତୁ ନୋହିବୁ
ତଦଅନ୍ତେ ଉପାୟ କରିବି ମୁହିଂ ସବୁ ॥୨୫୨୩॥
ତୋତେ ମୋତେ ଗୋପାଳେ ବସାଇ ହାନ୍ଦୋଳାର
କନ୍ଧରେ ବହିଥିବେ କରିବା ସୃଙ୍ଗାର ॥୨୫୨୪॥
ରାଧିକାକୁ ବୁଝାଇ ଚଳିଲେ ଭଗବାନ
ସୁଣସି ପ୍ରିୟାବୋଲି ବୋଲନ୍ତି ତ୍ରିଲୋଚନ ॥୨୫୨୫॥
ୟେଥୁ ଅନ୍ୟନ୍ତରେ ଯେ ବୃସଭାନୁ ଜେମା
ଜଳ ଆଣିବାକୁ ସେ ଯେ ଗଲେକ ଯମୁନା ॥୨୫୨୬॥
ସାତପାଞ୍ଚ ସଖି ସେ ଯେ ଅଛନ୍ତି ସଙ୍ଗତର
ପ୍ରବେସ ହୋଇଲେ ଯାଇ ଯମୁନା ତଟର ॥୨୫୨୭॥
ରାଧିକାର ଅଙ୍ଗ ହୋଇଲାକ ଥରହର
ଜଳ କଳସି ଫିଙ୍ଗିଦେଇ ହୋଇଲା ଅଥିର ॥୨୫୨୮॥
ଦନ୍ତ ରଟମଟ ମୁଖ କରଇ ତମ ତମ
ଖରତର ନିସ୍ୱାସେ ଛାତି କରଇ ଦମ ଦମ ॥୨୫୨୯॥
ଦେଖିଣ ଗୋପିୟେ ଯେ ଧାଇଂଲେ ଖରତର
କହିଲେ ଯାଇ ଚନ୍ଦ୍ରସେଣା ମାତାର ଆଗର ॥୨୫୩୦॥
ଗୋପିଙ୍କ ମୁଖୁଂ ସୁଣି ଧାଇଂଲା ଉଠିପଡ଼ି ବୁଢ଼ି
ବୋହୁକୁ ଦେଖିଣ ସେ ବୁକୁରେଂ ହସ୍ତ କୋଡ଼ି ॥୨୫୩୧॥
ଘରକୁ ନେବ ବୋଲି ତୋଳିଲାକ ଯାଇ
ପଡ଼ିଲା ଖଣ୍ଡେ ଦୁରେ ଫିଙ୍ଗି ଦେଲା ରାହି ॥୨୫୩୨॥
ଛିଡ଼ିଲା ଆଣ୍ଠୁଗଣ୍ଠି ବହିଲା ରୋଧିର
ରୋଦନ କରି ବୁଢି ପଳାଇଲା ନଡ଼ବଡ଼ ॥୨୫୩୩॥
ଚନ୍ଦ୍ରସେଣା ଚନ୍ଦ୍ରସେଣା ବୋଲିଣ ଡାକ ଦେଇ
ଜନନି ଡାକ ସୁଣି ଚନ୍ଦ୍ରଶେଣା ଆସେ ଧାଇଂ ॥୨୫୩୪॥
ବୁଢ଼ି ବୋଇଲା ଘର ବୁଡ଼ିଲାରେ ପୁତ୍ର
ରାଧିକାକୁ ତୋହର ଲାଗିଅଛି ଭୁତ ॥୨୫୩୫॥

---

୧ । ଖ ପୋଥି – କାମ ଜ୍ୱର ତାପ ସକଳ ଛଡ଼ାଇଲେ

ଧାଇଂଲା ଚନ୍ଦ୍ରସେଣା ସିରରେ କରତାଡ଼ି
ରାଧିକା ଦେଖିଣ ତାକୁ ଗୋଡ଼ାୟେ କାମୋଡ଼ି ॥୨୫୩୬॥
ଯହୁଂ ବିଭଳିତ ମତି ଦେଖିଲା ରାଧିକାର
ଭୟରେ ଖଣ୍ଡେ ଦୁରେ ସେ ରହିଲା ଗୋପାଳ ॥୨୫୩୭॥
ତରସ୍ତ ହୋଇଣ ସେ ପଳାଇଲା ପୁଣି
ମିଳିଲା ନନ୍ଦ ଘରେ ଡାକିଲା ନାନି ନାନି ॥୨୫୩୮॥
ଯସୋଦା ବୋଇଲାରେ କେ ମାଇଲା ତୋତେ
କିପାଇଂ ଡାକୁଅଛୁ କହ କିନା ମୋତେ ॥୨୫୩୯॥
ଚନ୍ଦ୍ରସେଣା ବୋଇଲା ଗୋ କିସ କହିବଇଂ ତୁମ୍ଭକୁ
ଭୁତ ଲାଗିଅଛି ଗୋ ତୋହର ଭାଉଜକୁ ॥୨୫୪୦॥
ଜିଇବା ପ୍ରାୟେତ ମୋତେ ଲାଗୁନାହିଂ
ତେଣୁ ତୋତେ କହିତେ ଅଇଲି ମୁହିଂଧାଇଂ ॥୨୫୪୧॥
ୟେମନ୍ତ କହନ୍ତେ ସେ ମିଳିଲା ଆସି ନନ୍ଦ
ରାଧିକାର ହତଜ୍ଞାନ ସୁଣିଣ ବିସାଦ ॥୨୫୪୨॥
ରାଉଳିଆ ଗୋପାଳଙ୍କୁ ନନ୍ଦ ଆଣେ ଡାକି
ଦେଖିଲେ ଉଲଗ୍ନ ହୋଇଛି ସସିମୁଖି ॥୨୫୪୩॥
ଆରତ ହୋଇଣ ଘରକୁ ଅଇଲେ[1]
ଭୁତଝଡ଼ା ମନ୍ତ୍ର ରାଉଳେ ପଢ଼ିଲେ ॥୨୫୪୪॥
ମାଇଲେ ଅଛାଡ଼ ଥାପିଲେକ ମୁଦ୍ରା
କୋପରେ ଚନ୍ଦ୍ରାବଳି ତାହାକୁ କାମୋଡ଼ିଲା ॥୨୫୪୫॥
କେବଣ ରାଉଳିଆକୁ ବସିଲାକ ମାଡ଼ି
କାହାକୁ ମାରିଲା ସେ ପଳାଇଲା ଛାଡ଼ି ॥୨୫୪୬॥
ସମସ୍ତେଂ ଆଚମ୍ବିତ ହୋଇଲେ ତାହା ଦେଖି
ବଦୟନ୍ତି ସୁଳଧର ସୁଣଗୋ ସସିମୁଖି ॥୨୫୪୭॥
ୟେମନ୍ତେ ଗୋପପୁରେ ପଡ଼ିଲା ଚହଳ
ଜନନି ମୁଖଚାହିଂ ବୋଲନ୍ତି ଚକ୍ରଧର ॥୨୫୪୮॥
ଗୋପପୁରେ କିପାଇଂ ଚହଳ ମୁଖ ଧ୍ୱନି
ଯସୋଦା ବୋଇଲେ ତୋର ମରୁଛି ମଉଳାଣି ॥୨୫୪୯॥
ଚତୁରି ସୁନ୍ଦରି ସେ ଅଟଇ ତୋର ମାଇଂ
ତେଣୁ କରି ତାହାକୁ ଭୁତ ଲାଗିଛଇ ॥୨୫୫୦॥
ଶ୍ରୀକୃଷ୍ଣ ବୋଇଲେ ଗୋ ଦେଖିବି ତାହାଙ୍କୁ
ମନ୍ତ୍ର ପଢ଼ିଣ ଝାଡ଼ି ବାନ୍ଧିବିଂ ଭୁତକୁ ॥୨୫୫୧॥
ଯସୋଦା ବୋଇଲା ତୁ ଅଲେଳ ବାଳକ ହରିହର[2]
ତୋହର ଉପରେ ନିକି ପଡ଼ଇ ନଜର ॥୨୫୫୨॥

୧ । ଖ ପୋଥି – ଆୟେତ କରିଣ ତାକୁ ଘରକୁ ଆଣିଲେ
୨ । ଖ ପୋଥି – ଦରିଦ୍ରର

ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ସୁଣ ଗୋ ଜନନି
ସିଖିଅଛି ମନ୍ତ୍ର ଭୁତକୁ ବାନ୍ଧିବି ମୁହିଂ ପୁଣି ॥୨୫୫୩॥
ଯସୋଦା ବୋଇଲେ ତେବେ ଯାଅରେ କହ୍ନାଇଂ
ତୁହିଗଲେ ଅବା ଜିଇଂବ ତୋର ମାଇଂ ॥୨୫୫୪॥
ଶ୍ରୀକୃଷ୍ଣନାଥ ଯେ ହୋଇଲେ ବାହାର
ଥୁ ଥୁ କରି ମାତା ପକାଇଲେ ସିରର ॥୨୫୫୫॥
ରାଧିକା ଠାବରେ ଯାଇ ମିଳିଲେ ଦଇତାରି
ନନ୍ଦ ଆଦି ଗୋପାଳେ ହୋଇ ଅଛନ୍ତି ଉଭାରି ॥୨୫୫୬॥
କିସ ବୋଲି ପଚାରିଲେ ଭାବ ବିନୋଦିଆ
ନନ୍ଦ ବୋଇଲେ ତୋ ମାମୁଂ ହେଉଛି ରାଣ୍ଡିଆ ॥୨୫୫୭॥
ଭୁତ ଲାଗିଅଛି ଅସାସ୍ତମ ହୋଇଛି ରାଧିକା
ଶ୍ରୀକୃଷ୍ଣ ବୋଇଲେ ଭୁତ ଛଡ଼ାଇବି ମୁହିଂ ବାବା ॥୨୫୫୮॥
ସମସ୍ତ ରାଉଳିଆ ଯେ ବସିଛନ୍ତି ତାର
ସମସ୍ତ ରାଉଳିଆଙ୍କୁ କଲେକ ବାହାର[1] ॥୨୫୫୯॥
ଚଉପାସେ ଅନ୍ତ ବାଡ଼ ଦିଅ ତୁମ୍ଭେ[2]
ଭୁତ ଛଡ଼ାଇବିଂ ମୁଂ ମାଇଂଙ୍କର ଅଙ୍ଗେ ॥୨୫୬୦॥
ସୁଣିଣ ନନ୍ଦ ଗୋପାଳ ସମସ୍ତଙ୍କୁ ଆଜ୍ଞାଦିଲେ
ରାଧିକାର ଚଉପାସେ ପାଟ ବେଢ଼ାଇଲେ ॥୨୫୬୧॥
ଭାବ ବିନୋଦିଆ ହରି ପସିଲେ ଭିତର
ଶ୍ରୀକୃଷ୍ଣଙ୍କୁ ଚାହିଂ ରାହି ହସିଲେ କରକର ॥୨୫୬୨॥
ଗୋପିନାଥ ଦେଖିଣ ହୋଇଲେ ହସ ହସ
ରାଧାମାଧବ କଲେ ପଲଙ୍କ ଅଧିବାସ ॥୨୫୬୩॥
ହାସ୍ୟ ପରିହାସ ବହୁତ କ୍ରିଡ଼ା କଲେ
ଚଉସଠି ପରିବନ୍ଧେ ରମଣ ସାରିଲେ ॥୨୫୬୪॥
ଭୁତ ପଳାଇଲା ବୋଲି ଡାକିଲେ ନନ୍ଦକାହ୍ନୁ
ଅଛାଡ଼ ମାରିଣ ଭୁତକୁ ସ୍ୟାନ୍ତି କଲୁଂ ॥୨୫୬୫॥
ଯମୁନା ତଟରେ ୟେହାକୁ ଛାଡ଼ି ମୁଂ ଆସିବିଂ
ଉପହାର ଭିଆଅ ଯେ ଭୁତକୁ ବଳି ସେବିଂ[3] ॥୨୫୬୬॥
ଛେନା ନଟିକାଳ ସାକର ଗଜା ଯେ ମିଠାଇ[4]
ଯମୁନା ତଟରେ ଟେରା ବାଡ଼ କର ନେଇ
ଆମ୍ଭଙ୍କୁ ଘେନିଯାଅ କନ୍ଧରେ ବସାଇ ॥୨୫୬୭॥
ୟେମନ୍ତ ବୋଲି ଯହୁଂ ବୋଇଲେ ନନ୍ଦ କାହ୍ନ
ନନ୍ଦ ବୋଇଲା ହେ ସାମଗ୍ରି ବହି ଆଣ ॥୨୫୬୮॥

୧ । ଖ ଓ ଗ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୨ । ଖ ପୋଥି – ରାଉଳିଆଙ୍କୁ କାଢ଼ି ଚଉପାଶରେ ଟେରାବାଡ଼ ଦିଅ ତୁମ୍ଭେ
୩ । ଖ ପୋଥି – ଭୁତ କହୁଅଛି ମୁଂ ରାଧିକାକୁ ନ ଛାଡ଼ିବିଂ
୪ । ଖ ପୋଥିରେ ଅଧିକ– ଘୃତ ମଧୁ ନବାତ ଖଜା ଯେ ମିଠାଇ

ଆଜ୍ଞା ପ୍ରମାଣେ ସିତଳ ସଞ୍ଚା ବାଢ଼ିଲେ
ଶ୍ରୀକୃଷ୍ଣ ରାଧିକା ଯେ ଅଛନ୍ତି ହାନ୍ଦୋଳାରେ ॥୨୫୬୯॥
ଥୋକାୟେକ ଗୋପାଳେ ହାନ୍ଦୋଳା ବୁହାଇଲେ
ଥୋକାୟେକ ଉପରେ ଛତ୍ର ଉହାଡ଼ିଲେ ॥୨୫୭୦॥
ଆଗେ ପଛେ ଗୋପାଳେ ଅଛନ୍ତି ଉଭାରି
ରାଧିକାକୁ ରମଣ କରନ୍ତି ଦଇତାରି ॥୨୫୭୧॥
ମଡ଼ ମଡ଼ ସବଦ ସୁଭଇ ଖଟ ଦଣ୍ଡା
ଶ୍ରୀକୃଷ୍ଣ ବୋଇଲେ ଯେହାକୁ ଝିଙ୍କିଲା ଭୁତଚଣ୍ଡା ॥୨୫୭୨॥
ସମସ୍ତେ ମିଳିଛନ୍ତି ଗୋବିନ୍ଦ କଲେ କେଳି
ସୁଣଗୋ ଓମା ବୋଲି ବୋଲନ୍ତି ଦେବଶୁଳି ॥୨୫୭୩॥
ଯମୁନା ତଟରେଂ ହୋଇଲେ ପରବେସ
ଶ୍ରୀକୃଷ୍ଣ ବୋଇଲେ ହୋ ଯେହିଠାରେ ରଖ ॥୨୫୭୪॥
ସମସ୍ତେ ଯେହିଠାରୁ ହୁଅ ମେଲାଣିଂ[୧]
ଆଜ୍ଞାପାଇ ସବୁ ଲୁଚିଲେ ଗୋପାଳ ଗୋପାଳୁଣିଂ[୨] ॥୨୫୭୫॥
ଯେତେକ ଦ୍ରବ୍ୟ ତହିଂ ଗୋପାଳେ ବାଢ଼ିଥିଲେ
ଶ୍ରୀକୃଷ୍ଣନାଥ ତାହା ଗ୍ରାସକେ ଭକ୍ଷିଲେ ॥୨୫୭୬॥
ସଚେତ ହୋଇଣ ଯେ ବସିଲାକ ରାହି
ଗୋପାଳଙ୍କୁ ଦେଖିଣ ଉଡୁଣା ମୁଖେ ଦେଇ ॥୨୫୭୭॥
ସମସ୍ତେ ସାଧୁ ସାଧୁ କଲେକ ବନମାଳି
ଶ୍ରୀକୃଷ୍ଣ ନ ଝାଡ଼ିଲେ ନ ବଞ୍ଚନ୍ତା ଚନ୍ଦ୍ରାବଳି ॥୨୫୭୮॥
କୃଷ୍ଣଙ୍କୁ ଘେନିଣ ନନ୍ଦ ଗୃହକୁ ଚଳିଗଲା
ଯସୋଦା ଅଗ୍ରତେ ନନ୍ଦ ସକଳ କହିଲା ॥୨୫୭୯॥
ରାଧା ମାଧବଙ୍କର ଅମୃତ ରସ କେଳି
ପଢ଼ି ସୁଣିଲେ ପାପମାନ ହୋଇବ ପଖାଳି ॥୨୫୮୦॥

## ଧନୁ ଉତ୍ସବ କରିବାକୁ କଂସକୁ ଅକ୍ରୂରଙ୍କ ପରାମର୍ଶ

ବଦୟନ୍ତି ଗିରିଜା ସୁଣ ହେ ସୁଳଧର
ଗୋପପୁରେ ମଲା ଯେ ଦଇତ ବ୍ୟୋମାସୁର ॥୨୫୮୧॥
ସେ ବାରତା କଂସ ପାଇଲାକି ନ ପାଇଲା
ଯେ କଥା ପ୍ରାଣନାଥ କହ ହେ ତୁମ୍ଭେ ଭଲା ॥୨୫୮୨॥
ସୁଣଗୋ ଓମା ବୋଲି ବୋଲନ୍ତି ଧୂର୍ଜଟି
ଶ୍ରୀକୃଷ୍ଣ ମୋଡ଼ିଲେ ଯେ ଦଇତର ତଣ୍ଟି ॥୨୫୮୩॥
ପିଣ୍ଡରୁ ପ୍ରାଣ ଛାଡ଼ି ସାପ୍ୟ ପାର ହେଲା
ଡଗର ଦେଖି କଂସ ଆଗରେ କହିଲା ॥୨୫୮୪॥

୧ । ଖ ଓ ଗ ପୋଥି – ହୁଅସି ଅନ୍ତର
୨ । ଖ ପୋଥି – ଗୋପାଳେ ଗଲେ କିଛି ଦୂର

ସାବଧାନେ ସୁଣ ତୁମ୍ଭେ ନୃପତି ମହାବଳି
ବ୍ୟୋମାସୁରକୁ ତୋର ବଧିଲା ବନମାଳି ॥୨୫୮୫॥
ସୁଣିଣ ମୁର୍ଚ୍ଛାଗତେ ସେ ଦାନେବ ପଡ଼ିଲା
ଆହାରେ ବ୍ୟୋମାସୁର ବୋଲିଣ ବୋଇଲା ॥୨୫୮୬॥
ତୋହର ଭୁଜକୁ ଯେ ଆସ ଥିଲା ମୋହର
ନ କହିଣ ଛାଡ଼ିଗଲୁ କରିଣ ମୋତେ ପର ॥୨୫୮୭॥
କାହା ଆଗେଂ କହିବି ଯେ ମୋର ଅଭିମାନ
ଆଉ କି ମୋତେ ସେ ଡରିବେ ଦେବଗଣ ॥୨୫୮୮॥
କି ବୁଦ୍ଧି କରିବି ଯେ ସରିଲା ବିଭୁତି
ହେଲାୟେ ନାସଗଲେ ସକଳ ସେନାପତି ॥୨୫୮୯॥
ଯାହାର ଦିଗବିଜେ ଡରନ୍ତି ତିନିପୁର
ତାହାକୁ ନାସକଲା ନନ୍ଦର କୁମର ॥୨୫୯୦॥
ୟେମନ୍ତେ କଂସାସୁର ବହୁତ ଚିନ୍ତାକଲା
ଅକୃର ମନ୍ତ୍ରି ତାକୁ ବହୁତ ପ୍ରବୋଧିଲା ॥୨୫୯୧॥
ବୋଇଲା ଯହିଂ କି ତୁ ଭାଳୁଛୁ ରାଜନ
ଉପାୟେ କରିଣ ମାରିବା ନନ୍ଦର ନନ୍ଦନ ॥୨୫୯୨॥
ବାଳେକ ପୁତ୍ର କାହିଂ ୟେଡ଼େକ ବଳିୟାର
ସୁଣସି ଗଉରିଗୋ ବୋଲନ୍ତି ସଙ୍କର ॥୨୫୯୩॥
ଅକୃର ହୃଦଗତେ ବିଚାର କରଇ
ଅଷ୍ଟ ଯେ ବରସ ତ ହୋଇଲା ନନ୍ଦ ପୋଇ ॥୨୫୯୪॥
ନିକଟ ହୋଇଲା ଆସି କଂସର ମରଣ
ସଂସ୍କାର ହୋଇବେ ପୁତ୍ରେ ବେଦୋକ୍ତ ଭାବେଣ ॥୨୫୯୫॥
ୟେମନ୍ତ ବିଚାରିଣ ବୋଇଲା ଅକୃର
ରାମକୃଷ୍ଣଙ୍କୁ ତୁମ୍ଭେ ମାରିବ ୟେହିଠାର ॥୨୫୯୬॥
ଧନୁଘର ଭିଆଇ ଉଛବ କରାଅ
ଅଣାଇଂ ରାମକୃଷ୍ଣକୁ ଏହିଠାରେ ମରାଅ ॥୨୫୯୭॥
ରଙ୍ଗସଭା କେବଳ କରିଣଥିବୁ ତୁହି
ଦେଖିବାକୁ ସମସ୍ତେ ଆସିବେ ନୃପସାଇଂ ॥୨୫୯୮॥
ୟେମନ୍ତ ବୋଲିଣ ଯହୁଂ ଅକୃର କହିଲା
କଂସାସୁର ମନକୁ ସେକଥା ଯୋଗାଇଲା ॥୨୫୯୯॥
ବୋଇଲା ମନ୍ତ୍ରି ତୁ ହୋ ଯାଅ ଚଳି
ଧନୁଯାତ୍ରା ବୋଲିଣ ଆଣିବୁ ବନମାଳି ॥୨୬୦୦॥
ଲେଖାୟେକ ଲେଖ ମୋହୋର ନିମନ୍ତେ
ରାମକୃଷ୍ଣ ଘେନି ଆସିବେ ସମସ୍ତେ ॥୨୬୦୧॥
ସୁଣିଣ ଅକୃର ଲେଖନ ହସ୍ତେ ଘେନି
ନନ୍ଦଠାକୁ ଲେଖିଲା ମନ୍ତ୍ରି ସିରୋମଣି ॥୨୬୦୨॥

## କଂସର ଚିଟାଉ

ମଥୁରା ନୃପତି କଂସାସୁର ମୁଂ ଅଟଇ
ଅଇରି ଦଳଣ ବାନା ମଉଡ଼ମଣି ମୁହିଂ ॥୨୬୦୩॥
ମଞ୍ଚ ରାଜାମାନେ ସେ ଯେ ଖଟନ୍ତି ପୟର
ଭୟରେ ବାସୁକି ସେ ଯେ ଉଦ୍‌ଗାରେ ରୋଧିର ॥୨୬୦୪॥
ଇନ୍ଦ୍ର ସହିତରେ ତେତିସ କୋଟି ଦେବେ
ଡରେ ଉଭା ହୋଇଥାନ୍ତି ମୋହର ଆଗେଂ ॥୨୬୦୫॥
ବ୍ରହ୍ମା ସିବ ଯାଆନ୍ତି ମୋତେ ଅପସରି
ସିନ୍ଧୁର ଭିତରେ ଲୁଚି ରହିଛନ୍ତି ଶ୍ରୀହରି ॥୨୬୦୬॥
ଯେମନ୍ତ ମହିମା ଅଟଇ ମୋହୋର
କରିଅଛି ମୁହିଂ ଧନୁ ସ୍ୱୟମ୍ୱର ॥୨୬୦୭॥
ତଦନ୍ତରେ ମୁଂ ରଙ୍ଗସଭା ଅଛିଂ କରି
ଦେଖିବାକୁ ଆସନ୍ତି ସକଳ ଦଣ୍ଡଧାରି ॥୨୬୦୮॥
ତୁହି ନନ୍ଦ ଗୋପରେ ହୋଇଅଛୁ ନୃପବର
ଗୋରସ ଆଣିବୁ ତୁ ବେନି ସତେଭାର ॥୨୬୦୯॥
ସକଳ ଗୋପାଳେ ତୋର ସଙ୍ଗେ ଥିବେ
ରାମକୃଷ୍ଣ ବେନି ଭାଇ ତୋ ସଙ୍ଗେ ଆସିବେଂ[1] ॥୨୬୧୦॥
ଲେଖାରେ ମୋର ସେ ଅଟନ୍ତି ଭଣଜାଂ
ଆସିବେ ଯେଠାବକୁ ତାଙ୍କୁ ଦେଖିବେ ସର୍ବରାଜା ॥୨୬୧୧॥
ଦେଖିବାକୁ ଶ୍ରଦ୍ଧା ହୋଇଛି ମୋହର
ବିଳମ୍ୱ ନ କରିଣ ଆସିବ ତତପର ॥୨୬୧୨॥
ଯେମନ୍ତ ପ୍ରକାରେ ଅକୃର ଲେଖ ସେ ଲେଖିଲା
ପଢ଼ନ୍ତେ କଂସାସୁର ସୁଣି ହରସ ହୋଇଲା ॥୨୬୧୩॥

## କଂସର ଚିଟାଉ ଘେନି ଅକ୍ରୂରର ଗୋପପୁର ଯାତ୍ରା

ବୋଇଲା ଯାଅ ମନ୍ତ୍ରି ଆଣଗୋ ନନ୍ଦ ଚାଟ
ସେହି ନାସ ଗଲେ ଯେ ଯିବ ମୋର କଷ୍ଟ ॥୨୬୧୪॥
କଂସର ବଚନେ ଚଳିଲା ଅକୃର
ହିରଣ୍ୟମୟ ଜ୍ୟୋତି ସାଜିଲା ରହୁବର ॥୨୬୧୫॥
ସୁଭବେଳ ଜାଣିଣ ସେ ରଥରେ ବସିଲା
ଅସ୍ୱକୁ ଟିପିଣ ସେ ପବନ ଗତି ଗଲା ॥୨୬୧୬॥
ଗୋପପୁରେ ଯାଇ ହୋଇଲା ପରବେସ
ଆଦିତ୍ୟ ଦେବତା ଯେ ହେଉଅଛି ଅସ୍ତ ॥୨୬୧୭॥
ଅକୃର ଦେଖିଲା ତହିଂ ଗୋପାଳଙ୍କ ଘର
ସୁବର୍ଣ୍ଣମଏ ପୁର ଅଟଇ ନବର[2] ॥୨୬୧୮॥

୧ । ଖ ପୋଥି – ରାମକୃଷ୍ଣ ବେନି ପୁତ୍ରକୁ ଆଣିବୁ
୨ । ଖ ଓ ଗ ପୋଥି – ଜଗତି ଅଟ୍ଟାଳିକା ଅଛଇ ଅପାର

ଘରେ ଘରେ ଚିରାଳ ଉଡ଼ଇ ବିତପନ
କି ଅବା ଅଟଇ ସେ ବାରସ୍ୱତି ଭୁବନ ॥୨୬୧୯॥
ଅକୃର ପ୍ରସଂସଇ ଦେଖିଣ ନବର
ଧନ୍ୟରେ ଗୋପାଳେ ତୁମ୍ଭ ତପସ୍ୟା ଅପାର ॥୨୬୨୦॥
କେତେକାଳ ସେବିଲ ତୁମ୍ଭେ ଦେବ ତ୍ରିପୁରାରି
ତେଣୁ କରି ତୁମ୍ଭେ ପାଇଲ ନରହରି ॥୨୬୨୧॥
ଶ୍ରୀହରି ପ୍ରସନ୍ନେ ତୁମ୍ଭେ ଯେତେକ ଭୋଗ ପାଇ
ଅଣିମାଦି ଅଷ୍ଟନିଧି ଅଛି ରହି ॥୨୬୨୨॥
ଧନ୍ୟ ସେ ଜିବନ ଅଟଇ ମୋହର
ନୟନେ ଦେଖିବି ମୁଂ ଦେବ ଚକ୍ରଧର ॥୨୬୨୩॥
ରାମକୃଷ୍ଣ ମୋତେ ଯେ କରିବେ ଆଲିଙ୍ଗନ
କୁସଳ ପଚାରିବେ ଦେଇଣ ଆସନ ॥୨୬୨୪॥
ଯେମନ୍ତ ବୋଲି ମନ୍ତ୍ରି ବିଚାରଇ ଚିତ୍ତେ
ନନ୍ଦ ସିଂହଦ୍ୱାରେ ନେଇ ରୁହାଇଲା ରଥେ ॥୨୬୨୫॥
ଅକୃର କହନ୍ତେ ଦ୍ୱାରି ଚଳିଗଲା
ନନ୍ଦକୁ କହିଣ ସେଠାକୁ ଅଣାଇଲା ॥୨୬୨୬॥
କଂସର ଚିଟାଉ ଅକୃର ସମର୍ପିଲା
ମସ୍ତକେଂ ଲଗାଇଣ ନନ୍ଦ ପାଠକଲା ॥୨୬୨୭॥
ଅସ୍ତି ନାସ୍ତି ନ କରିଣ ଯୋଗାଇଲାକ ଆସନ
ଅକୃର ଆଣ୍ଠକରି ବସିଲାକ ପୁଣ ॥୨୬୨୮॥
କହନ୍ତି ସଦାସିବ ସୁଣ ଗୋ ଗଉରି
ସେହି ସମୟରେ ଆସି ମିଳିଲେ ରାମ ନରହରି ॥୨୬୨୯॥
ବାଛୁରି ଗୋଡ଼ାକ ସବୁ ଖୁଆଡ଼ରେ ପୁରୋଇ
କେନ୍ଦୁ ସର ଲଉଡ଼ି ଥିର କରି ଥୋଇ ॥୨୬୩୦॥
ଦୋଳାରେ ରଖିଲେ ନେଇ ବିରହ ମୁରଲିଟି
ସିରରୁ କାଢ଼ିଣ ରଖିଲେ ଖୋଲାଟି ॥୨୬୩୧॥
କଠାଉ ମସିଣି ଥୋଇଲେ ପିଣ୍ଡାର
କାତି ସଙ୍ଗତେ ଛତା ରଖିଲେ ଅଗଣାର ॥୨୬୩୨॥
ଅର୍ଣ୍ଣ ବନ୍ଧା ବସ୍ତ୍ର ଖଣ୍ଡି ଘେନିଣ ହସ୍ତର
ଝାଳ ସଙ୍ଗତେ ଧୁଳି ପୋଛିଲେ ଦେହର ॥୨୬୩୩॥
ପିଣ୍ଡାରେ ବସିଣ ସେ ମାରନ୍ତି ଦେହ ସର୍ମ
ନନ୍ଦ ବୋଇଲା ଘରେ ଲୁଚରେ ନନ୍ଦନ ॥୨୬୩୪॥
ସିଂହଦ୍ୱାରେ କଂସର ଡଗର ଅଛି ରହି
ଅକୃର ନାମ ତାର ମନ୍ତ୍ରି ସେ ଅଟଇ ॥୨୬୩୫॥
ଚିଟାଉ ଲେଖି କଂସ ତାହାକୁ ପ୍ରବର୍ତ୍ତିଲା
ବହନ ଚଳି ଯାଇ ଆଣସି ବୋଇଲାଂ[1] ॥୨୬୩୬॥

୧ । ଖ ଓ ଗ ପୋଥି – ବହନେ ଯାଇ ଘେନିଆସ ନନ୍ଦବଳା

ଚିଟାଉ ଖଣ୍ଡି ନନ୍ଦ ଶ୍ରୀକରେ ଦେଇ[1]
ପଢ଼ିଣ ହରସ ହୋଇଲେ ଭାବଗ୍ରାହି ॥୨୬୩୭॥
ନନ୍ଦର ବଚନେ ବୋଲନ୍ତି ଚକ୍ରଧର
କେତେଦିନ ଲୁଚି ରହିବା ଆମ୍ଭେ ଘର ଭିତର ॥୨୬୩୮॥
ରାଜା ଲୁଚିଲେ ପ୍ରଜାଙ୍କର ସୁଖ ନାହିଁ
ବହୁତ କୋପ ତାକୁ କରନ୍ତି ନୃପସାଇଂ ॥୨୬୩୯॥
କିଛି ନ ବିଚାର ଅକ୍ରୁର ସଙ୍ଗେଯିବା
ରାଜ୍ୟର ଭଲମନ୍ଦ ରାଜାକୁ କହିବା ॥୨୬୪୦॥
ଏମନ୍ତ କହି ଉଠିଲେ ଭଗବାନ
ଅକ୍ରୁର ଠାରେ ମିଳି କଲେକ ପରିଣାମ ॥୨୬୪୧॥
ଅକ୍ରୁର ଆଲିଙ୍ଗନ କରଇ ଭୁଜ ଧରି
ନୟନୁଂ ଅକ୍ରୁର ସେ ଗଡ଼ାଇଲା ବାରି ॥୨୬୪୨॥
ସହଜେ ଅକ୍ରୁର ଯେ ଖୁଡୁତା ଅଟଇ
କୁସଳ ପଚାରନ୍ତି ସେ ପ୍ରଭୁ ଭାବଗ୍ରାହି ॥୨୬୪୩॥
ଆଦି ଅନ୍ତ ଚରିତ ଅକ୍ରୁର ଗଲା କହି
ବସୁଦେବ ଦେବକି ଯେତେ କଷ୍ଟପାଇ ॥୨୬୪୪॥
ଅକ୍ରୁର ବଚନେ ବୋଲନ୍ତି ଚକ୍ରଧର
ସେବକ ପ୍ରାୟେ ଆମ୍ଭେ ଅଛୁ ନନ୍ଦ ଘର ॥୨୬୪୫॥
ଯେତେ କଷ୍ଟେ ଆମ୍ଭେ ପୋସୁଅଛୁଂ ଦେହି
ନିତି କୁଞ୍ଜବନେ ଚରାଉ ଅଛୁ ଗାଇ ॥୨୬୪୬॥
ଖରା ଯେ ବରସା ସିତ ବଞ୍ଚୁ ସେ ବନସ୍ତର
ପିତଚେଷ୍ଟା ଲାଗିଲେ ମୁଣ୍ଡ ହୋଅଇ ସ୍ଥରହର ॥୨୬୪୭॥
ଯେତେ ଦୁଖେ ଆମ୍ଭେ ସେ ବଞ୍ଚୁଥାଉଂ ଦିନ
ତେଣେ ମାତା ପିତାଙ୍କର ସୁଣିଲୁଂ ବନ୍ଧନ ॥୨୬୪୮॥
କଂସ ନାସ ଗଲେ ସିନା ସମସ୍ତ ସୁଖ ପାଇ
ବିଳମ୍ବ ନକର ତାତ ଯିବାକ ଚଳାଇ ॥୨୬୪୯॥
ବଳରାମ ବହୁତ ଯେ କରନ୍ତି ପୃସାର୍ଥି
ରୋସାଇ ସଞ୍ଚା ଆଣି ଦିଲେକ ଗୋପିନାଥ ॥୨୬୫୦॥
ରନ୍ଧନ ସାରି ମନ୍ତି କଲେକ ଭୋଜନ
ଆଞ୍ଚୋବନ ସାରିଣ ଭୁଞ୍ଜିଲେ ଗୁଆପାନ ॥୨୬୫୧॥
ସଡ଼ରସେ ଭୋଜନ ସାରିଲେ ରାମ ଭଗବାନ
ଅକ୍ରୁର ଦେଖିଣ ଉଛୁକ ତାଙ୍କ ମନ ॥୨୬୫୨॥
କରିବର ଦନ୍ତ ପଲଙ୍କେ ପହୁଡ଼ିଲେ
ଏକରଙ୍ଗି କମଳ ସତରଜିଂ[2] ତଥିରେ ବିଛାଇଲେ ॥୨୬୫୩॥

୧ । ଖ ପୋଥି – ଶ୍ରୀକୃଷ୍ଣ ହାତେଂ ଦେଇ
୧ । ଗ ପୋଥି – ଶ୍ରୀକୃଷ୍ଣ ହସ୍ତେ ଦେଇ
୨ । ଖ ପୋଥିରେ ସତରଞ୍ଜି ଶବ୍ଦ ନାହିଁ

ତଥି ଉପରେ ବିଛାଇଲେ ବିଚିତ୍ର ଜରିପାଟ
ଅକ୍ରୁରକୁ ଘେନିଣ ସୋଇଲେ ନନ୍ଦଚାଟ ॥୨୬୫୪॥
ମଥୁରା ପୁର କଥା ପଚାରନ୍ତି ହରି
କୁସଳେ ଅଛନ୍ତିଟିକି ମଥୁରା ନରନାରି ॥୨୬୫୫॥
କେମନ୍ତ ବିଚାର କରନ୍ତି କଂସାସୁର
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ॥୨୬୫୬॥
ରଜନି ଅର୍ଦ୍ଧ ହେଲା କଥା କୁହାକୁହି
ସୟନ କରନ୍ତେ ତିମିର ତୁଟିଯାଇ ॥୨୬୫୭॥

## ରାମକୃଷ୍ଣଙ୍କର ମଥୁରା ଯାତ୍ରା

ପାହିଲା ରଜନୀ ଯେ ତୁଟିଲା ଅନ୍ଧକାର[1]
ପୁର୍ବଦିଗେ ଉଦୟ ଯେ ହୋଇଲେ ଦିନକର[2] ॥୨୬୫୮॥
ନିଦ୍ରା ଉପେକ୍ଷିଣ ଯେ ଉଠିଲେ ସମସ୍ତ
ଅକ୍ରୁର ସଜ ହୋଇ ଲୋଡ଼ଇ ଗୋପିନାଥ ॥୨୬୫୯॥
ନନ୍ଦକୁ ବୋଇଲା ବିଳମ୍ବ କରନାହିଁ
ଘେନିଯିବି ପଠିଆଅ ବେନଗୋଟି ଭାଇ[3] ॥୨୬୬୦॥
ସୁଣିଣ ଚକିତ ହୋଇଲା ମହାକୁଢ଼
ଜ୍ଞାନହାରି ପଡ଼ିଲା ଅକ୍ରୁର ପାଦତଳ ॥୨୬୬୧॥
ଯସୋଦା ସହିତେଂ ଯେ ବିକଳ ହୋଇଲେ
ଆମ୍ଭେ ଯିବୁଂ ଘରେ ରହିଥାନ୍ତୁ କୁମରେ ॥୨୬୬୨॥
ଗୋପି ଗୋପାଳେ ସବୁ ହୋଇଲେ ସୋକଭର
ନ ଯାଆନ୍ତୁ ରାମକୃଷ୍ଣ ଲେଉଟି ଯାଉ ଅକ୍ରୁର ॥୨୬୬୩॥
ସୁଣିଣ ଅକ୍ରୁର ମୁଖ ତମ ତମ କଲା
ଯିବା ଆସ ରାମକୃଷ୍ଣଙ୍କୁ ଡାକିଲା ॥୨୬୬୪॥
ଯିବାକୁ ସଜ ସେ ହୋଇଲେ ରାମହରି
ନନ୍ଦକୁ ବୋଇଲେ ଆମ୍ଭେ ଚଳିବୁ ଦିନାଚାରି ॥୨୬୬୫॥
ରାଜାକୁ ବୋଧକରି ଆସିବୁଂ ଗୋପପୁର
ଗୋରସ ସଜ କର ସତସଠି ଭାର[4] ॥୨୬୬୬॥
ସୁଣି ମହାକୁଢ଼ ମନ ବିସ୍ମୟେ ହୋଇଲା
ଗୋରସ ଭାର ଭାର ଗୋପାଳେ ପୁରୋଇଲା[5] ॥୨୬୬୭॥

୧ । ଖ ପୋଥି –ପାହିଲାକ ରଜନୀ ପୂର୍ବେ ଦିଗେଂ ଉଦୟେ ହୋଇଲେ ଦିନକର
୨ । ଖ ପୋଥି – ଶୁଣ ଗୋ ଉମା ବୋଲି ବୋଲନ୍ତି ଶୂଳଧର
୩ । ଖ ଓ ଗ ପୋଥି – ବେନି ପୋଇ
୪ । ଖ ପୋଥି – ଗୋରସ ଭାର ଭାର ଗଲାକ ପୂରୋଇ
୫ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଯସୋଦା ବିକଳ କହିତ କି ପାରି[୧]
କେମନ୍ତେ ମୁରୁଛିବି ନ ଦେଖି ରାମହରି ॥୨୬୬୮॥
ଶ୍ରୀମୁଖରେ ଚୁମ୍ବନ ଦେଇଣ ଯସୋବନ୍ତି
ତାଳୁରେ ଜଟପାଡ଼ି ଥୁ ଥୁ କରି ପକାବନ୍ତି ॥୨୬୬୯॥
ସର୍ବ ମଙ୍ଗଳା ବାବୁ ହୋଇବେ ତୋତେ ସାହା
ତୋତେ ଦେଖି ହରସ ହୋଇବେ ନରନାହା ॥୨୬୭୦॥
ରାଜାକୁ ସେ ଜିଣି ଆସିବୁ ଚଳାଇ[୨]
ଇଶ୍ୱର ସିରେ କ୍ଷିର ଢାଳୁଣ ଅଛି ନିଉଣ୍ଡାଇ ॥୨୬୭୧॥
ଯସୋଦା ରୋହିଣି ସେ ଷୋଳ ସହସ୍ର ଗୋପନାରି
ରାଧିକା ସହିତେ ଯେ ସ୍ତକିତ ହୋଇ ଭାଳି[୩] ॥୨୬୭୨॥
ଚହଳ ପଡ଼ିଲା ଯେ ଗୋପ ପାଟଣାରେ
ମଥୁରାକୁ ବିଜେ କରିବେ କୃଷ୍ଣ ଯେ ହଳଧରେ ॥୨୬୭୩॥
ଅକୃର ସଜ କରି ଯୋଗାଇଲା ରଥ
ସଜ ହୋଇ ବସିଲେ ହରି ହଳହସ୍ତ ॥୨୬୭୪॥
ରୋଦନ କଲେ ଯସୋଦା କୁମର କୁମାରି
ରଥ ବାହା ଅକୃରକୁ ବୋଇଲେ ନରହରି ॥୨୬୭୫॥

## ସାତ୍ୟକି ଓ ସୁଭଦ୍ରାଙ୍କ ଜନ୍ମ

ସଙ୍କର ମୁଖ ଚାହିଂ ଗିରିଜା ପଚାରିଲେ
ଅପୁର୍ବ କଥାଯେତ କହିଲ ପ୍ରଭୁ ଭଲେ ॥୨୬୭୬॥
ବୋଇଲ ଯେ ଯସୋଦାର କୁମର କୁମାରି
ଶ୍ରୀକୃଷ୍ଣ ସଙ୍ଗ ତ୍ୟାଗେଂ ରୋଦନ ଫୁକାରି ॥୨୬୭୭॥
ଦୁର୍ଗା ଜନ୍ମିଥିଲେ ଯେ କଂସ କଚାଡ଼ିଲା
ଗୋପରେ ଶ୍ରୀକୃଷ୍ଣଙ୍କୁ ନନ୍ଦ ପାଳୁଥିଲା ॥୨୬୭୮॥
ପୁଣି ତାର କେହୁ କୁମର କୁମାରି
କହନ୍ତି ସଦାସିବ ସୁଣ ଗୋ ଗଉରି ॥୨୬୭୯॥
ନନ୍ଦ ଘରେ ଯହୁଂ ମିଳିଲେ ଦାସରଥି
ବୃଦ୍ଧା ରୁପ ଯାଇଂ ଯୁବା ରୁପ ହୋଇଲେ ନନ୍ଦ ଯସୋବନ୍ତି ॥୨୬୮୦॥
ନନ୍ଦ ରୁପ ଦିସଇ ବୟସ ଏଗାର[୪]
ପତି ପତ୍ନିଙ୍କର ହୋଇଲା ସୃଙ୍ଗାର ॥୨୬୮୧॥
ଯସୋଦା ଗର୍ଭ ହୋଇ କୁମର ଜନ୍ମାଇଂ
ସାତ୍ୱିକ ଚିତ୍ତେ ପାଇଂ ସାତ୍ୱିକି ନାମ ବହିଂ ॥୨୬୮୨॥

୧ । ଖ ପୋଥି – କାନ୍ଦନ୍ତି ଡକା ପାରି
୨ । ଖ ପୋଥି – ରାଜା ସଙ୍ଗେ ମିଳିଣ ଆସିବୁ ପଳାଇ
୩ । ଖ ପୋଥି – ରାଧିକା ସହିତେଣ ଶୋକେ ବିଳପନ୍ତି ମୁଣ୍ଡ କୋଡ଼ି
୪ । ଖ ପୋଥି – ବରଷ ସତର

ପୁଣି ଦୋହିତାୟେ ପ୍ରସବିଲା ଯସୋଦା
ସୁଭ ବେଳେ ଜନ୍ମ ତା ନାମ ସୁଭଦ୍ରା ॥୨୬୮୩॥
ଯେମନ୍ତେ ଜନ୍ମିଲେ କୁମର କୁମାରିଂ[୧]
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି[୨] ॥୨୬୮୪॥
ରାମକୃଷ୍ଣଙ୍କୁ ଘେନି ଅକୃର ଚଳିଗଲା
ଯମୁନା ତଟେ ମିଳି ରଥ ରୁହାଇଲା ॥୨୬୮୫॥
ସ୍ନାହାନ ସଟକର୍ମ ସାରିଣ ଜଳର
ଶ୍ରୀକୃଷ୍ଣ ନିଜରୁପ ଦେଖିଲା ଅକୃର ॥୧୬୮୬॥
ପୁଣି ଯାଇ ରଥରେ ବିଜୟେ ତିନି ଜଣ
ମଥୁରା କଟକରେ ପ୍ରବେସ ହେଲେ ପୁଣ ॥୨୬୮୭॥

## ସୁଦାମା ମାଳୀର ପୁଷ୍ପମାଲ୍ୟ ପ୍ରଦାନ ଓ ରାମକୃଷ୍ଣଙ୍କୁ ଦେଖିବା ପାଇଁ ମଥୁରା ନାରୀମାନଙ୍କର ଉଦ୍‌ବେଗ

ସୁଦାମା ନାମେ ମାଳି କୃଷ୍ଣଙ୍କୁ ଘରେ ନେଇ
ଦେଇଣ ପୁଷ୍ପହାର ପୁଜିଲା ଭାବଗ୍ରାହି ॥୨୬୮୮॥
ବେନି ଭାଇ ପୁଷ୍ପହାର ତାହାଠାରୁ ଘେନି[୩]
ସନ୍ତୋସେ ଦୟା ତାକୁ କଲେକ ଚକ୍ରପାଣି ॥୨୬୮୯॥
ବେନି ଜନେ ପୁଷ୍ପ ମଣ୍ଡିଲେ ଅଙ୍ଗରେ[୪]
ଅକୃର ଚଳିଯାଇ କହିଲା କଂସଠାରେ ॥୨୬୯୦॥
ବୋଇଲା ରାମକୃଷ୍ଣଙ୍କୁ ଘେନିଣ ଅଇଲିଂ
ଧନୁଘର ନିକଟେ ତାହାଙ୍କୁ ରଖାଇଲିଂ ॥୨୬୯୧॥
ସୁଣିଣ କଂସାସୁର ଆନନ୍ଦ ହୋଇଲା
ବିର ତୁର ଟମକ ବାଦ୍ୟ ସେ ବଜାଇଲା[୫] ॥୨୬୯୨॥
ମଥୁରା ନାରିମାନେ ଦେଖିବାକୁ ଧାଇଂଲେ
ଯେକକୁ ଆରେକ ଯେ ଡକାଡକି ହେଲେ ॥୨୬୯୩॥
କେ ବୋଲଇ ସହି ସଙ୍ଗାତ ଆସ ଯିବା
ରାମକୃଷ୍ଣ ବେନି ଭାଇଙ୍କି ଦେଖିଣ ଆସିବା ॥୨୬୯୪॥
କେହୁ ଧାଉଂଅଛି କେସ ଯେ ଅସମ୍ଭାଳ
ପୁଷ୍ପ ଗଭା ଲୋଟିଣ ଯେ ଯାଉଛି ମହିତଳ ॥୨୬୯୫॥
କେହୁ ଧାଉଂଅଛି ପିନ୍ଧୁଣ ଥିଲା ସାଢ଼ି
ପଣନ୍ତେ ଧରିଅଛି ପଣନ୍ତେ ଯାଏ ଉଡ଼ି[୬] ॥୨୬୯୬॥

୧ । ଖ ଓ ଗ ପୋଥି – ଯେକ କୁମର ଯେକାବାଳୀ
୨ । ଖ ଓ ଗ ପୋଥି – ଦେବସୂଳି
୩ । ଖ ପୋଥି – ବେନି ଭାଇକି ପୁଷ୍ପ ମଣ୍ଡିଲା ଅଙ୍ଗର
୪ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୫ । ଖ ପୋଥି – ବୀର ତୁର ଟମକ ନିଶାଣ ଉଡ଼ାଇଲା
୬ । ଖ ଓ ଗ ପୋଥି – ପଣନ୍ତେ ପିନ୍ଧିଅଛି ପଣନ୍ତେ ଅଛି ଧରି

କେହୁ କୁମରକୁ ଧରି ଥିଲା କୋଳେ
କୃଷ୍ଣଙ୍କୁ ଦେଖି ଯାଇ ପକାଇଲା ତଳେ ॥୨୬୯୭॥
କେହୁ ସ୍ତିରି ଧାମନ୍ତେ ନାସାରୁ ଝଡ଼େ ଗୁଣା[୧]
ଡାକନ୍ତି ସ୍ୱସୁରଙ୍କୁ କେଣିକି ଗଲ କିନା ॥୨୬୯୮॥
କେହୁ ଗମିଯାନ୍ତେ ମଳାସୁରକୁ ହାବୋଡ଼ଇ
ତା ତହୁଂ ଆଡ଼ ହୋଇ ବସନ ମୁଖେ ଦେଇ ॥୨୬୯୯॥
କେବଣ ଯୁବତିର ଯଉବନ ଭାରି
ଧାମନ୍ତେ ହଲଇ ସ୍ତନ ହସ୍ତରେ ଅଛି ଧରି ॥୨୭୦୦॥
କେହୁ ଗହଳେ ଜେଠାସୁରକୁ ହାବୋଡ଼ଇ
କହନ୍ତି ରାମକୃଷ୍ଣ ଦେଖିଲକି ବେନି ଭାଇ ॥୨୭୦୧॥
ଚିହ୍ନିଣ ବେନିହସ୍ତ ଜାକନ୍ତି ଗାଲର
ବିଚାରନ୍ତି ଯେତ ଅଟନ୍ତି ଜେଠାସୁର ॥୨୭୦୨॥
କେହୁ ସ୍ତିରି ପ୍ରସବି ଥିଲାକ ନନ୍ଦନ
ଅନ୍ତୁଡ଼ିସାଲୁ ଉଠି ଧାଇଂଲାକ ପୁଣ ॥୨୭୦୩॥
ସାସୁ ଗୋଡ଼ାଇଛି ନେଉଟି ଆସ ତୁହି
ବୋଲେ ମୁଂ ଦେଖି ଆସେ ନନ୍ଦର କହ୍ନାଇ[୨] ॥୨୭୦୪॥
ଯେମନ୍ତେ ଧାଉଂଛନ୍ତି ମଥୁରା ନାରିମାନ
କୃଷ୍ଣଙ୍କୁ ଦେଖିଣ ଯେ ତାଙ୍କର ପିଡ଼ଇ ମଦନ ॥୨୭୦୫॥
ବୋଲନ୍ତି ଧନ୍ୟ ଯେ ରାମକୃଷ୍ଣ ବେନି
କଉଂ ପୁଣ୍ୟେ ଯାକୁ ଜାତ କଲା ତା ଜନନି ॥୨୭୦୬॥
ଧନ୍ୟ ସେ ଯେହାଙ୍କୁ କୋଳରେ ଧରିଲା
ଧନ୍ୟ ସେ ଯେହୁ ପୁଣି  ମୁଖରେ ଚୁମ୍ବ ଦିଲା ॥୨୭୦୭॥
ଧନ୍ୟ ସେ ଯେଉଂ ଜନ ସଙ୍ଗ ଯେହାଙ୍କର
ଧନ୍ୟ ସେ ଯେହୁ ସ୍ତିରି ଯେହାଙ୍କୁ ଦେବଟି ଶୃଙ୍ଗାର ॥୨୭୦୮॥
ଧନ୍ୟ ସେ ଯେହୁ ନାରି[୩] କହିବ ଯେହାଙ୍କୁ କଥା
ଯେହୁ ପୁଣି ଓଳଗିବ ଧନ୍ୟ ତାର ମଥା ॥୨୭୦୯॥
ଧନ୍ୟ ସେ ଅକ୍ରୁର ଆଣିଲାକ ରଥର
ଧନ୍ୟ ସେ ଯେହୁ ପୁଷ୍ପ ମଣ୍ଡିଲା ଅଙ୍ଗର ॥୨୭୧୦॥
କେ ବୋଇଲେ ଧନ୍ୟ ସେ ଯେ ଆଣିଲା କଂସାସୁର
କେ ବୋଲଇ ଧନ୍ୟ ଯେ ସେ ମଥୁରା ନଗର ॥୨୭୧୧॥
କେ ବୋଲଇ ଧନ୍ୟ ସେ ଆମ୍ଭର ଜିବନ
ଯେ ବେନି ଭାଇଙ୍କୁ ଯେ ଦେଖିଲୁଂ ନୟନ ॥୨୭୧୨॥
କେ ବୋଲଇ ସଖି ଆଗୋ ଯେମନ୍ତ ନୋହଇ
ଧନୁଯାତ୍ରା କଂସ ମିଛେହେଂ କରିଅଛଇ ॥୨୭୧୩॥

୧ । ଖ ପୋଥି – କେହୁ ଝାମ୍ପ ଦିଅନ୍ତେ ନାଶାରୁ ଟଳେ ଗୁଣା
୨ । ଖ ପୋଥି – ସେ ବୋଇଲା ରାମକୃଷ୍ଣଙ୍କୁ ଦେଖିବଇଂ
୩ । ଖ ଓ ଗ ପୋଥି – ଜନ

ମିଛେ ରଙ୍ଗସଭା କରିଛି ନୃପବର
ଯେହାଙ୍କୁ ଯୁଝାଇବ ମାଲଙ୍କ ସଙ୍ଗତର ॥୨୭୧୪॥
କୁବଳୟା ହସ୍ତି ସେ ହୋଇଛି ଦୁଆରି
ଯେହାଙ୍କୁ ଥୋରଂ ହସ୍ତେ ପକାଇବ ମାରି ॥୨୭୧୫॥
କେ ବୋଲଇ ଆସ ହୋ ଗୃହରେ ଲୁଚିବା
ରାମକୃଷ୍ଣଙ୍କର ମରଣ ନ ଦେଖିବା ॥୨୭୧୬॥
କେ ବୋଲଇ ସଖି ଗୋ ଥିବା ଯେହିଠାର
ମରିବେ କି ମାରିବେ ଦେଖିବା ନୟନର ॥୨୭୧୭॥
ଯେମନ୍ତ ବୋଲି ସେ ଯେ ମଥୁରା ପୁର ନରନାରି
କହନ୍ତି ସଦାସିବ ସୁଣଗୋ ଗଉରି ॥୨୭୧୮॥

## କୁବ୍‌ଜାକୁ ସୁନ୍ଦର ରୂପ ପ୍ରଦାନ ଓ ଧନୁଭଙ୍ଗ

କୁବୁଜି ଗନ୍ଧଘେନି ଯାଉଥିଲା ପଥ
ଗନ୍ଧ ଘେନି ଲେପି ହୋଇଲେ ଗୋପିନାଥ ॥୨୭୧୯॥
ଅସୁନ୍ଦର ରୁପ ଦିସିଲା ସେ ଯେ ହୋଇଲା ସୁନ୍ଦର
ପ୍ରବେସ ହୋଇଲେ ଯାଇ ରାଜା ସିଂହଦ୍ୱାର[୧] ॥୨୭୨୦॥
ଦେଖିଲେ ଧନୁଘର ଅତିହିଂ କୋଟି କମ
ତାଳ ଯେ କଂସାଳ ବିଣା ବାଜଇ ଝମ ଝମ ॥୨୭୨୧॥
କୋଟିଏ ମାଲେ ଦ୍ୱାରେ ଯେ ଅଛନ୍ତି ରହି
ଦ୍ୱାର ନ ଛାଡ଼ିଲେ କୋପିଲେ ଭାବଗ୍ରାହି ॥୨୭୨୨॥
ପାହାରିକିଂ ନାସି ଯେ ଧନୁଠାରେ ମିଳି
ଗିରି ପ୍ରାୟେ ପଡ଼ିଛି ଦେଖିଲେ ବନମାଳି ॥୨୭୨୩॥
ବଦୟନ୍ତି ବଳରାମ[୨] ସୁଣ ହୋ ଭଗବାନ
କେତେକ ବଳ ଧନୁରେ ଅଛି ଚଢ଼ାଇବା ଗୁଣ ॥୨୭୨୪॥
ସୁଣିଣ କୃଷ୍ଣନାଥ ଧନୁକୁ ଧଇଲେ
ବାମ ଆଣ୍ଠୁ ଦେଇଣ ଗୁଣ ଚଢ଼ାଇଲେ ॥୨୭୨୫॥
ହୁଞ୍ଚୁଡ଼ି ଟାଣନ୍ତେ ଯେ ଧନୁ ହୋଇଲା ବେନିଖଣ୍ଡ
ସବଦେ ଚମକିଲା ଚଉଦ ବ୍ରହ୍ମାଣ୍ଡ[୩] ॥୨୭୨୬॥
ଧନୁଖଣ୍ଡ ଘେନିଣ ପିଟିଲେ ହଳଧର
ଯେତେକ ସନ୍ୟ ଥିଲେ ପେସିଲେ ଯମପୁର ॥୨୭୨୭॥
ଧନୁ ଭାଜିଂ ରାମକୃଷ୍ଣ ତହିଂ ବିହରନ୍ତି
ସୁଣସି ଭଗବତି ଗୋ ବଦୟନ୍ତି ପସୁପତି ॥୨୭୨୮॥
ଶ୍ରୀକୃଷ୍ଣ ଆସିବାରେ ନନ୍ଦ ବୈମୁନ୍ୟ
ଗୋପାଳଙ୍କୁ ଡାକି ପୁଚ୍ଛଇ ବଚନ ॥୨୭୨୯॥

୧ । ଖ ଓ ଗ ପୋଥି – ଧନୁଘର
୨ । ଖ ଓ ଗ ପୋଥି – ହଳଧର
୩ । ଖ ପୋଥି – ସବଦେ ଶୁଭିଲା ତାର ମେଦିନୀ ନବଖଣ୍ଡ
୩ । ଗ ପୋଥି – ସବଦେ ଉଛୁଳିଲା ମେଦିନୀ ନବଖଣ୍ଡ

ବୋଲଇ କଂସ ସେ ଆଜ୍ଞା ଦେଇଥିଲା
ସାମଗ୍ରି ଘେନି ଆମ୍ଭେ ସମସ୍ତେ ଚଳିଯିବା ॥୨୭୩୦॥
ନ ଦେଖି ରାମକୃଷ୍ଣ ଜିବନ ନ ରହଇ
ଯେତେ ବୋଲି ନନ୍ଦ ଗୋରସ ଭିଆଇଂ ॥୨୭୩୧॥
ଗୋରସ ଭାର ଭାର ଘେନି ଗଲେ ଗୋପାଳ
ଯସୋଦା ରୋହିଣି ଯେ ନନ୍ଦ ମହାକୁଡ଼ ॥୨୭୩୨॥
ମଧୁବନ ତୋଟାରେ ଯେ ମିଳିଲେ ସମସ୍ତ
ଧନୁଭାଜିଂ ପ୍ରବେସ ରାମ ଗୋପିନାଥ ॥୨୭୩୩॥
ସ୍ନାହାନ ସାରିଣ ସର ଭୁଞ୍ଜିଲେ ଭାବଗ୍ରାହି
କଂସାସୁରର ଚରିତ ଯେ ଯେ ସୁଣଗୋ ପ୍ରାଣସହି ॥୨୭୩୪॥
ଡଗର ମୁଖରୁ ଧନୁଭଗ୍ନ କଥା ସୁଣି
ବହୁତ ବିରସ ଯେ ହୋଇଲା ନୃପମଣି ॥୨୭୩୫॥
ସୟନ କରନ୍ତେ ସେ ଯେ ସ୍ୱପନ ଦେଖଇ
ଯେକ ଦିପ ଗୋଟି ତାକୁ ଦିସଇ ଦୁଇଦୁଇ ॥୨୭୩୬॥
ଯେକ ଚନ୍ଦ୍ରଗୋଟି ଦିସଇ ଭିନ୍ନ ଭିନ୍ନ
ଉଲୁକାପାତ ହେଉଅଛି ତାରାଗଣମାନ ॥୨୭୩୭॥
ତଇଳ ଅଙ୍ଗେ ଘେନି ଦକ୍ଷିଣ ମୁଖେ ଯାଇ
ହୃଦରେଂ ରଙ୍ଗପୁଷ୍ପ କନ୍ଧରେ ସିର ନାହିଂ ॥୨୭୩୮॥
ମୁକୁଳିତ କେସ ଉଲଗ୍ନ ବେନ୍ତାଳି
ହସ୍ତରେ ମୁଣ୍ଡ ଘେନି ଦିଅନ୍ତି ହୁଳୁହୁଳି ॥୨୭୩୯॥
ଯେମନ୍ତ ସ୍ୱପ୍ନ ଯେ ଦେଖିଲା କଂସାସୁର
ପାହିଲା ରଜନି ସେ ଉଦୟ ଦିନକର ॥୨୭୪୦॥
ସମସ୍ତ ଜନମାନ ନିଦ୍ରାରୁଂ ଉଠିଲେ
ସୌଚବନ୍ତ ହୋଇ ସଭାରେ ବିଜେକଲେ ॥୨୭୪୧॥
ରଙ୍ଗସଭାରେ ଯାଇ ବସିଲା ଭୋଜସାଇଂ
ସ୍ୱସୁର ଜାରାସନ୍ଧ ମଞ୍ଚାରେ ବସିଛଇଂ ॥୨୭୪୨॥
ବାଣା ବଜ୍ରନାଭ ସାଲୁ ଆବର ସିସୁପାଳ
ପୁଣ୍ଡରିକ ଦନ୍ତବକ୍ର କଳିଙ୍ଗ ଭୋପାଳ ॥୨୭୪୩॥
ସମସ୍ତଙ୍କୁ କଂସାସୁର କୁହଇ ଯେ ଡାକି
ମୋର ଶତୃ ରାମକୃଷ୍ଣ ପକାଇବ ନାସି ॥୨୭୪୪॥
ଦେବକି ବସୁଦେବ ଦେଖିବେ ମରଣ
ସହସ୍ରେ ମାଲଙ୍କୁ ଯେ କହଇ କଂସରାଣ ॥୨୭୪୫॥
ରଣ କରି ମାରିବ ଯେ ନ କରିବ ଦୟା
ତହୁଂ ଉବୁରିଲେ ଅଛି ମୋ ଗଜ କୁବଳୟା ॥୨୭୪୬॥
ତହୁଂ ଉବୁରିଲେ ଅଛଇ ଯେ ମୁହିଂ
ମାରିବି ଖଡ଼ଗେ ଯେ ପଡ଼ିବେ ବେନି ଭାଇ[1] ॥୨୭୪୭॥

୧ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ

ମୋତେ ଯେବେଂ ବିଧାତା ବାମ ଯେବେ ହୋଇବ
ବାଳକ ହସ୍ତେ ଯେବେ ମୋର ପ୍ରାଣଯିବ[1] ॥୨୭୪୮॥
ତଦଅନ୍ତରେ ଅଛନ୍ତି ସ୍ୱସୁର ଜାରାସନ୍ଧ
ବହୁତ ପ୍ରକାରେ ସେ ପାଞ୍ଚିବେ ପରମାଦ ॥୨୭୪୯॥
ତହୁଂ ଯେବେ ଉବୁରି ବ୍ରତିବେ ବେନିଭାଇ
ତଦଅନ୍ତେ ଭୋଗ ସିନା କରିବେ ଯେହୁ ମହି ॥୨୭୫୦॥
ଯେମନ୍ତ ବୋଲିଣ ସେ ଯେ ବୋଇଲା କଂସାସୁର
ବାଜଇ ବିରତୁର ବିବିଧ ପ୍ରକାର ॥୨୭୫୧॥
ଦୁତଙ୍କୁ ଆଜ୍ଞା ଦିଲା ଆଣରେ ନରହରି
ବିଳମ୍ବ ନ କରିଣ ପକାଇବି ମାରି ॥୨୭୫୨॥
କଂସର ଆଜ୍ଞା ପାଇ ଡଗରେ ଗଲେ ଚଳି
ମଧୁବନ ତୋଟାରେ ଭେଟିଲେ ବନମାଳି ॥୨୭୫୩॥

## ଚଣୂର, ମୁଷ୍ଟିକ ବଧ ଓ ତାଙ୍କର ପୂର୍ବଜନ୍ମ କଥା

ଡଗର କହନ୍ତେ ସେ ବାହାର ବେନି ଭାଇ
ଦେଖିଲେ ଦାଣ୍ଡରେ ରଜକ ଯାଉଛଇ ॥୨୭୫୪॥
ରାଜାଙ୍କର ମଡ଼ିଆଳ ଓଟ ପରେ ଲଦି
ଶ୍ରୀହରି ବୋଇଲେ ହୋ ବସ୍ତ୍ର ଦିଅ ବେଗି ॥୨୭୫୫॥
ଯେତେକ ପ୍ରକାରେ ଡାକିଲେ ନନ୍ଦବଳା
ରଜକ କାଳ ହୋ ସୁଣି ତା ନ ସୁଣିଲା ॥୨୭୫୬॥
ଶ୍ରୀକୃଷ୍ଣ ରୋସ ବହି ପକାଇଲେ ଚାପୋଡ଼େ
ପ୍ରାଣଛାଡ଼ି ପଡ଼ିଲା ରଜକ କାଲ ମୁଡ଼େ ॥୨୭୫୭॥
ପାପ ନାସି ପ୍ରାଣ ପୁରୁସ ସ୍ୱର୍ଗଗଲା
ଭଲ ଭଲ ମଡ଼ିଆଳ ବାଛିଲେ ନନ୍ଦବଳା ॥୨୭୫୮॥
ରାଜାର ଗନ୍ତାଇତ କଲାକ ଦ୍ରସନ
ରାମକୃଷ୍ଣଙ୍କୁ ସେ ପିନ୍ଧାଇ ବସନ ॥୨୭୫୯॥
ବସନ ପିନ୍ଧିଣ ସେ ଗମିଲେ ବେନି ଭାଇ
ମଥୁରା ଦାଣ୍ଡରେ ସେ ଅତି ହିଂ ସୋଭାପାଇ[2] ॥୨୭୬୦॥
ମଥୁରା ନରନାରି ଦେଖନ୍ତି ଉଭା ହୋଇ
ଚଣୁର ମୁଷ୍ଟିକ ଯେ କୋପେଂ ଗଲେ ଧାଇଂ ॥୨୭୬୧॥
ଆଗରେ ଓଗାଳିଲେ ରାଜାର ଆଜ୍ଞା ପାଇ
ତୁମ୍ଭର ମୃତ୍ୟୁରେ ଅଛଇ ଆମ୍ଭ ତହିଂ ॥୨୭୬୨॥
କାହିଂକି ଗଉଡ଼ରେ କରୁଛ ଗମନ[3]
ଆମ୍ଭର ସଙ୍ଗତେ କର ଘୋର ରଣ ॥୨୭୬୩॥

୧ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ
୨ । ଖ ପୋଥି – ମଥୁରା ନରନାରୀ ଦେଖନ୍ତି ଉଭା ହୋଇ
୩ । ଖ ପୋଥିରେ ଉପର ତିନି ଧାଡ଼ି ନାହିଁ

ଶ୍ରୀହରି ବୋଇଲେ ରେ ତୁମ୍ଭେ ଅବିବେକ
ତୁମ୍ଭେ ତ ଗିରି ସମାନେ ଆମ୍ଭେ ତ ବାଳେକ[୧] ॥୨୭୬୪॥
କେମନ୍ତେ ଆମ୍ଭ ସଙ୍ଗେ ତୁମ୍ଭେ କରିବ ସମର[୨]
ପଉରୁଷ ନ ପାଇବ ତୁମ୍ଭେ ଏ ଭବ ସଂସାରର ॥୨୭୬୫॥
ସହସ୍ର ସାହାସ୍ର ବିଦ୍ୟାଇ ସେ ନ ଜାଣୁ
କେବଳ ରାଜାର ଭଣଂଜା ପରିମାଣୁଂ ॥୨୭୬୬॥
ବାଟ ଛାଡ଼ି ଦିଅ ଆମ୍ଭେ ରାଜାଠାକୁ ଯିବୁ
ରଙ୍ଗସଭା ଯାତ୍ରା ଆମ୍ଭେ ସେ ଦେଖିବୁ[୩] ॥୨୭୬୭॥
ସୁଣିଣ ଦଇତ ଯେ ଉତ୍ତର କୋପେ ଦେଲା
ତୁମ୍ଭକୁ ଲାଜ ନାହିଂରେ କହୁ ଅଛ ଭଲା[୪] ॥୨୭୬୮॥
ବାଳକ ବୋଲି ତୁମ୍ଭେ ବୋଇଲ ଲାଜ ମୁଖେ ନାହିଂ
କେଡ଼େ ଦାନବଙ୍କୁ ନାସିଲ ଗୋପେଂ ରହି ॥୨୭୬୯॥
ଯେ ଯେ ରାମ ତୁମ୍ଭର ବଳେ ବଳିୟାର
ମୋହୋର ସଙ୍ଗତେ ଯେହୁ କରିବ ସମର ॥୨୭୭୦॥
ଯେତେ ବୋଲି ଚାଣୁର ରାମକୁ ଧଇଲା
କୃଷ୍ଣକୁ ଧର ବୋଲି ମୁଷ୍ଟିକକୁ କହିଲା ॥୨୭୭୧॥
ଋଣୁର ମୁଷ୍ଟିକ ସେ ମାଲ ଯୁଦ୍ଧ କରି
ଋଣୁର ସଙ୍ଗେ ରାମ ମୁଷ୍ଟିକ ତୁଳେ ହରି ॥୨୭୭୨॥
ଗଡ଼ାଗଡ଼ି ପଡ଼ାପଡ଼ି ସେ ଲାଗନ୍ତି ମେଦନିର
ମୁଣ୍ଡକୁ ମୁଣ୍ଡ ଦିଅନ୍ତି ପରିତାଳ ॥୨୭୭୩॥
କେହୁ ବିଧା ମାରଇ କେହୁ ହୃଦରେଂ ବସେ ମାଡ଼ି
କେହୁ ବ୍ୟଥା ପାଇଣ ଛାଡ଼େ ଦିର୍ଘ ରଡ଼ି ॥୨୭୭୪॥
ଦେଖିଣ ନରନାରି କରନ୍ତି ହାହାକାର
ମୁଷ୍ଟିକକୁ ମାଡ଼ିଣ ବସିଲେ ଚକ୍ରଧର ॥୨୭୭୫॥
ନିର୍ଘାତ କରିଣ ପ୍ରହାରିଣ ବିଧା
ମୁଷ୍ଟିକ ପ୍ରାଣଛାଡ଼ି ସ୍ୱର୍ଗକଇ ଗଲା ॥୨୭୭୬॥
ଦେଖିଲେ ବଳରାମ ହୋଇଲେ କୋପଭର
ପ୍ରହାର କଲେ ମୃତ୍ୟୁ ପାଇଲା ଚାଣୁର ॥୨୭୭୭॥
ବଦୟନ୍ତି ମହାମାଇ ସୁଣ ହେ ଦେବକାସି
ଋଣୁର ମୁଷ୍ଟିକକୁ ରାମକୃଷ୍ଣ ନାସି ॥୨୭୭୮॥
ଅମରକୁ ଗଲେ ସେ ଯେ ପୁର୍ବରେ ଥିଲେ କେହୁ
ଯେକଥା ମୋର ଆଗେ କହ ହେ ମହାବାହୁ ॥୨୭୭୯॥

୧ । ଖ ପୋଥି – ତୁମ୍ଭ ସରି ସମ ନୋହୁ ଅଟୁ ଯେ ବାଳକ
୨ । ଖ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ପୋଥିରେ ଏହି ଧାଡ଼ି ନାହିଁ
୪ । ଖ ପୋଥିରେ ଏହି ଧାଡ଼ି ନାହିଁ

ବଦୟନ୍ତି ସଦାସିବ ସୁଣଗୋ ଗଉରି
ଚନ୍ଦ୍ରନଉମି ବୋଲି ଯେକଇ ଦଣ୍ଡଧାରି ॥୨୭୮୦॥
ଚନ୍ଦ୍ରଭାଗା ତିର୍ଥରେ ଅଟଇ ତାହାର ଭୁବନ
ଚନ୍ଦ୍ରାବତି ବୋଲିଣ ତାର ଭାରିଯାର ନାମ ॥୨୭୮୧॥
ବୃତ୍ତ ମୁତ୍ତ ବୋଲିଣ କୁମର ନାମ ବେନି
ମୃଗୟା ନିମନ୍ତେ ତାଙ୍କୁ ପେସିଲେ ନୃପମଣି ॥୨୭୮୨॥
ସେ ବେନି ବିରେ ଚଳିଲେ ଚଢ଼ି ବେନି ଘୋଡ଼ା
ମାରନ୍ତି ବନ ଜିବ ଭୋଜନକୁ ହୋଏ ଯେତେ ଲୋଡ଼ା ॥୨୭୮୩॥
ଯାଉଂ ଯାଉଂ ବଡ଼କ୍ଷୁଧା ଲାଗିଲାକ ଯହୁଂ
କୁରଙ୍ଗ ଜିବ ଗୋଟିୟେ ପୋଡ଼ି ଭକ୍ଷିଲେକ ତହୁଂ ॥୨୭୮୪॥
ଚଇତନ ମହାମୁନି ଦେଖିଲେ ନୟନର
ବୋଇଲେ ରାକ୍ଷାସ ହୋଅରେ ରାଜାର କୁମର ॥୨୭୮୫॥
କୁରଙ୍ଗ ଜିବ ଭକ୍ଷିଲ ମାନବ ତନୁ ବହି
ତୁମ୍ଭର ବଦନରେ ଚାହିଂ ତ ନ ଯୋଗାଇ ॥୨୭୮୬॥
ରାକ୍ଷାସ ପ୍ରକୃତିର ଧଇଲ ଭାଇ ବେନି
ତେଣୁ ଯେବେଂ ରାକ୍ଷାସ ହୋଅରେ ମେଦନି ॥୨୭୮୭॥
ସୁଣିଣ ବେନି ଭାଇ ପଡ଼ିଲେ ପାଦ ତଳର
ସାପ୍ୟକୁ ଗତି ଯେବେଂ ଦିଅ ହେ ମୁନିବର ॥୨୭୮୮॥
ମୁନି ବୋଇଲେ ଯେ ତ୍ରେତୟା ଯୁଗ ଯିବ
ସୁବାହୁ ଦ୍ୱାପର ଯୁଗ ନାମ ତା ହୋଇବ ॥୨୭୮୯॥
ରାକ୍ଷାସ ରୁପେ ତୁମ୍ଭେ କରିବ ଭ୍ରମଣ
ଚାଣୁର ମୁଷ୍ଟିକ ବୋଲି ହୋଇବ ତୁମ୍ଭ ନାମ ॥୨୭୯୦॥
କଂସାସୁର ନାମେ ଦଇତ୍ୟ ମହାବଳି
ମାଲପଣେ ତୁମ୍ଭେ ଥିବ ତାହାର ନଗରି ॥୨୭୯୧॥
ମେଦନିରେ ଜନ୍ମ ହୋଇବେ ଭାବଗ୍ରାହି
ତାହାଙ୍କର ତୁଳେଂ ତୁମ୍ଭେ ସଂଗ୍ରାମ କରିବ ବେନି ଭାଇ ॥୨୭୯୨॥
ମରିବ ତାଙ୍କ ହସ୍ତେ ସାପ୍ୟରୁ ହେବ ପାର
ଯେମନ୍ତ ବୋଲିଣ କହିଲେ ମୁନିବର ॥୨୭୯୩॥
ତେଣୁ କରି ଋଣୁର ମୁଷ୍ଟିକ ମୁକ୍ତି ହୋଇ
ସୁଣଗୋ ଓମା ବୋଲି ସଦାସିବ କହି ॥୨୭୯୪॥

## କଂସର ଦୁଇଶତ ମଲ୍ଲ ଓ କୁବଳୟା ହସ୍ତୀ ବଧ

ଯହୁଂ ସେ ପ୍ରାଣ ହାରି ପଡ଼ିଲେ ବେନିବିରେ
ତେଣୁ ବେନି ସତ ମାଲ ଆସିଣ ଯୁଦ୍ଧ କଲେ ॥୨୭୯୫॥
କେହୁ ଗଦା ତ୍ରିସୁଳ ଖଡଗ କରେଂ ଘେନି
ମାରନ୍ତି ଗୁରୁଜ ମୁଦ୍ଗର ଯଷ୍ଟି ପୁଣି ॥୨୭୯୬॥
ରାମକୃଷ୍ଣ ବେନିଭାଇ କରନ୍ତି ମାଲ ବନ୍ଧ
ଯେକର ଉପରେ ଆରେକକୁ କଚାଡ଼ନ୍ତି ଗୋବିନ୍ଦ ॥୨୭୯୭॥

ସମସ୍ତ ରାକ୍ଷସଙ୍କୁ ମାରିଣ ପଦା କଲେ
କୁବଳୟା ହସ୍ତି ଠାବରେ ମିଳିଲେ ||୨୭୯୮||
ରାମକୃଷ୍ଣଙ୍କୁ ଦେଖିଣ ମାହୁନ୍ତ ଟିପଇ
ଥୋର ବୁଲାଇଣ ସେ ହସ୍ତି ଆସେ ଧାଇଂ ||୨୭୯୯||
ଦେଖିଣ ହସ୍ତି ଜବ ଧଇଲେ ନିଳାମ୍ବର
ପଛକୁ ଓଟାରିଣ ଫିଙ୍ଗି ଦେଲେ ଚକ୍ରଧର ||୨୮୦୦||
ଖଣ୍ଡେ ଦୁରେ ଗର୍ଜି ଗଜ ପଡ଼ିଲା ମୁଖମାଡ଼ି
ଗୋବିନ୍ଦ ଯାଇ କୋପେଂ ବସିଲେକ ମାଡ଼ି ||୨୮୦୧||
ହୃଦରେଂ ପାଦ ଦେଇ ଉପାଡ଼ିଲେ ଦନ୍ତ
ପ୍ରହାର କଲେ କୃଷ୍ଣ ପଡ଼ିଲା ମାହୁନ୍ତ ||୨୮୦୨||
ଯହୁଂ ନାସ ଗଲା ସେ ଯେ କୁବଳୟା ଗଜ
ସ୍ୱର୍ଗରେ ଆନନ୍ଦ ହୋଇଲେ ଦେବବୃନ୍ଦ ||୨୮୦୩||
ଜାଣିଲୁଂ ଯେବେ ନିଶ୍ଚେ ନାସଯିବ କଂସ
ମହି ଭାରା ହରି ଯେବେ କରିବେ ଉସ୍ୱାସ ||୨୮୦୪||

## କଂସ ବଧ

ଯେମନ୍ତ ବୋଲି ସେ ଭାବନ୍ତି ଦେବଗଣ
ରଙ୍ଗସଭାରେ ବିଜେ କଲେକ ନାରାୟଣ ||୨୮୦୫||
ସମସ୍ତ ରାଜାମାନେ ଅଛନ୍ତି ଅନାଇଂ
ଦେଖିଣ ବଡ଼ ଭୟେ ପାଇଲା ଭୋଜସାଇଂ ||୨୮୦୬||
ଦେବକି ବସୁଦେବ ଅଛନ୍ତି ଆସ୍ଥାନ
ବେନି ପୁତ୍ରକୁ ଦେଖି ଅଶ୍ରୁତ ଲୋଚନ ||୨୮୦୭||
ରଙ୍ଗ ସଭାତଳେ ବିଜୟେ ଭଗବାନ
ସ୍ୱର୍ଗେ ଦେବତାୟେ ଅଛନ୍ତି ଚାହିଂଣ[୧] ||୨୮୦୮||
ମୋହନ ମୁରତି ସେ ଦେବ ଚକ୍ରଧର
ଦେଖିଲେ ପିଡ଼ଇ ଯେ ମଦନ ନାରିଙ୍କର ||୨୮୦୯||
ଯୁବା ସ୍ତିରିମାନଙ୍କୁ ଦିସନ୍ତି ନାଗର
ଦେବତାଙ୍କୁ ଦିସନ୍ତି କୃଷ୍ଣ ଅବତାର ||୨୮୧୦||
ଯୋଗିଙ୍କୁ ଯୋଗିରୁପ ସାଧୁଙ୍କୁ ଦିସେ ସିଦ୍ଧ
ବାଳକକୁ ବାଳରୁପ ବୃଦ୍ଧଙ୍କୁ ଆଦିକନ୍ଦ ||୨୮୧୧||
ସନ୍ଥଙ୍କୁ ସ୍ୟାନ୍ତି ରୁପ ଦୃଷ୍ଟଙ୍କୁ ଦିସେ କାଳ
ମାତା ପିତାଙ୍କୁ ସେ ଦିସନ୍ତି ବେନି ବାଳ ||୨୮୧୨||
ଯେକକୁ ଯେକ ରୁପ ଦିସନ୍ତି ଭାବଗ୍ରାହି
ସଭା ଜନଙ୍କର ଆଖି ପିଂଛା ନ ଚଳଇ ||୨୮୧୩||
ବାଜଇ ବିର ତୁର ସବଦ ଗରୁଟାଣ
ମଞ୍ଚାକୁ ଉଠିଲେ ଯେ ହରି ବଳରାମ ||୨୮୧୪||
କଂସ ଡାକଇ ଆସ ଆସ ଭଂଣଜା ମୋହର
ସାରିବିଂ ସର୍ବ ଦୁଖ ବସାଇବିଂ କୋଳର ||୨୮୧୫||
ଆସ ଆସ ବୋଲିଣ ହସ୍ତ ପ୍ରସାରିଲା
ତିନି ପାବଛରେ ଯେ ମିଳିଲେ ଚକାଡୋଳା ||୨୮୧୬||
ଧରିବ ବୋଲିଣ କଂସ ପଡ଼ିଲା ଡେଇଂଣ
ଭୁମିରେ ପଡ଼ି କଂସ ହାରିଲା ଜିବନ ||୨୮୧୭||
ଶ୍ରୀକୃଷ୍ଣ ନାଥ ଡେଇଂ ପଡ଼ିଲେ ତାର ସଙ୍ଗେ
ମିଛେ ମୁର୍ଛା ଯାଇଣ ଉଠିଲେ ସିରି ରଙ୍ଗେ ||୨୮୧୮||
ଶ୍ରୀକୃଷ୍ଣ ହସ୍ତ ଦିଲେ ଦାନବ ବୁକୁର
ବୋଇଲେ ଜିବନ ନାହିଂ ମାମୁଙ୍କ ସରିର ||୨୮୧୯||
କଂସ ମଲା ବୋଲି ଯହୁଂ ସୁଭିଲା ବୟାଣ
ସଭାତଳେ ଥିଲେ ଯେ ଅନେକ ଦୃଷ୍ଟ ଜନ ||୨୮୨୦||
ଯେ ଯାହାର ଆୟଧ ଘେନିଣ ଧାଇଂଲେ
ରାମକୃଷ୍ଣ ଉପରେ ନାରାଜ ବୃଷ୍ଟି କଲେ ||୨୮୨୧||
ଦେଖିଣ ରାମହରି ହୋଇଲେ ପ୍ରଜ୍ୱଳିତ
ଲଉଡ଼ି ପ୍ରହାରି ସବୁ ମାଇଲେ ଦଇତ୍ୟ ||୨୮୨୨||
ଥୋକାୟେକ ଦଇତ୍ୟ ଯେ ପଳାଇଲେ ଡରେ
ଲୁଚିଲେ ବନ ଗିରି ସାହେର ଭିତରେ ||୨୮୨୩||

## ଶ୍ରୀକୃଷ୍ଣଙ୍କର ମାଈଁଙ୍କୁ ସାନ୍ତ୍ୱନା, ପିତାମାତାଙ୍କ ସହିତ ସାକ୍ଷାତ ଓ ମାତାଙ୍କଠାରୁ କ୍ଷୀରପାନ

କହନ୍ତି ସଦାସିବ ସୁଣ ଗୋ ଗଉରି
କଂସ ମରିବାରୁଂ ସୋକ କଲେ ଯେ ତାର ନାରି ||୨୮୨୪||
ଆପଣେ ଜଗନ୍ନାଥ ମିଳିଲେ ସେ ଠାବରଂ
ବୋଇଲେ ମାଇଂ ଗୋ ସୋକ ସାନ୍ତି କର ||୨୮୨୫||
ମୋହର ସପଥ ତୁମ୍ଭେ ନକର ରୋଦନ
ମଲା ଲୋକ ଆଉ କିସ ପାଇବ ଜିବନ ||୨୮୨୬||
ତୁମ୍ଭଙ୍କୁ କି କହିବିଂ ମୋହର କରମ ମନ୍ଦ
ରାଜାଙ୍କ ଭଣଜା ହୋଇ କିଛି ନ ପାଇଲିଂ ଆନନ୍ଦ ||୨୮୨୭||
ନନ୍ଦ ଘରେ ଯେତେ ଦୁଖରେ ଥିଲିଂ ମୁଂ ଯେ ରହି
ତାହା କହିବାକୁ ମୋତେ ଦିନ ଯେ ନ ଅଣ୍ଟଇ ||୨୮୨୮||
ଯେକଥା ନ ଜାଣଇ ମୋହର ମଉଳା
ମାରିବ ବୋଲି ମୋତେ ପାଞ୍ଚୁଥାଇ ଭଲା ||୨୮୨୯||
ଯେବେଂ ଦୟା କରି ଥିଲାକ ଅଣାଇଂ
ମୋତେ ଦେଖି ପ୍ରାଣ ଛାଡ଼ିଲା ଭୋଜସାଇଂ ||୨୮୩୦||

[୧] । ଖ ଓ ଗ ପୋଥିରେ ଏହି ତିନି ଧାଡ଼ି ନାହିଁ

ଆଜ ମୋତେ ମାମୁଂ କେତେ ସଂପଦ ସମର୍ପନ୍ତା
ଦେବା ବେଳେ ଘେନିଗଲା ନାସ୍କର ଦେବତା ॥୨୮୩୧॥
ଯେମନ୍ତେ ମିଛେ ହରି କରନ୍ତି ରୋଦନ
ସ୍ୟାନ୍ତି କରାଇଲେ ହରି ମାଇଂଙ୍କର ମନ ॥୨୮୩୨॥
ଏଥୁ ଅନ୍ୟନ୍ତରେ ଯେ ଦେବ ଭଗବାନ[1]
ମାତା ପିତାଙ୍କର ହରି ଫେଡ଼ିଲେ ବନ୍ଧନ ॥୨୮୩୩॥
ଦେବକି କୃଷ୍ଣଙ୍କୁ ବସାଇଲେ କୋଳେଂ
କ୍ଷିର ପାନ କଲେ ଯେ ମଦନ ଗୋପାଳେ ॥୨୮୩୪॥
ଶ୍ରୀକୃଷ୍ଣଙ୍କର ଦେହକୁ ଯେ ଆଉଂସି ଦିଅଇ
ଲୁଚି ହୋଇଯିବି ହଜିଲା ଧନପାଇ ॥୨୮୩୫॥
ଅନ୍ଧର ଲଉଡ଼ି ମୋ ଦୁଖିର ସଙ୍ଖାଳି
ଯେତେ କାଳେ ତୋତେରେ ପାଇଲି ବନମାଳି ॥୨୮୩୬॥
ଏତେ ବୋଲି ଦେବକି ନୟନୁ ବହେ ଲୁହ
ବସୁଦେବ ଦେଖିଣ ଆନନ୍ଦ କଲା ଦେହ[2] ॥୨୮୩୭॥
ସାରିଲି ପରିସ୍ରମ ଯେତେକ ଥିଲା ଦୁଖ
ତୋହର ବାବୁ ଯେବେ ଦେଖିଲି ଶ୍ରୀମୁଖ[3] ॥୨୮୩୮॥
ଅଗାଦ ଜଳରେ ବୁଡ଼ାଇ ଥିଲି ଭେଳା
ବୁଡ଼ିଗଲା ଭେଳା ଯେତେ କାଳକେ ମିଳିଲା ॥୨୮୩୯॥
ଯଉଂ ଦିନୁ ତୋତେ ମୁଂ ଦିଲଇଂ କୁମର
ଆଛାଦି ଅଛି ମେଘ ଘୋଟିଛି ଅନ୍ଧକାର ॥୨୮୪୦॥
ଦେଖିଣ ଉଗ୍ରସେନ ଭୟ ଯେ ଦେଖାଇଲା
ବିନୟି ଯେ ହୋଇଲି ପଥ ଛାଡ଼ି ଦେଲା ॥୨୮୪୧॥
ତଦଅନ୍ତେ ଦେଖିଲି ମୁଂ ଯମୁନା ଅଛି ବଢ଼ି
ଜଳରେଂ ପଶିଗଲି ତୋତେ କୋଳେ ଧରି ॥୨୮୪୨॥
ଶ୍ରୀହରି ଦୟାକଲେ ହୋଇଲଇଂ ପାର
ପ୍ରବେସ ହୋଇଲେ ଯାଇ ନନ୍ଦର ମନ୍ଦିର ॥୨୮୪୩॥
ଯସୋଦା ପ୍ରସବିଣ ଥିଲା ଏକ ସୁତା
ପୁତ୍ରକୁ କୋଳେ ଥୋଇଂ ଘେନିଲି ଦୋହିତା ॥୨୮୪୪॥
ବସୁଦେବ ବୋଇଲେ ସୁଣ ଗୋ ଦେବକି
ଯେବଣ ଘରେ ମୁଂ କୃଷ୍ଣକୁ ଅଇଲି ରଖି ॥୨୮୪୫॥
ତାହା ଯେବେ ସଂସର୍ପି କହିବି ମୁଖରୁ[4]
ହୋଇବୁ ବଇକୁଲ ନୋହିବ ଆତ୍ମା ଥିର ॥୨୮୪୬॥

୧ । ଖ ପୋଥି – ତହୁଂ ବେନି ଭାଇ ସେ ଯେ କଲେକ ଗମନ
୨ । ଖ ପୋଥି – କରଇ ଅତି କୋହ
୩ । ଖ ପୋଥି – ବୋଲଇ ନନ୍ଦ ମୁଂ ଦେଖିଲି ତୋର ରୂପ
୪ । ଖ ପୋଥି – ସଖି ଗୋ କହିବିଂ ତୋ ଆଗର

ରହିଲେ ପର ଘରେ କେତେ ଦୁଖ ପାଇଂ
ଯେତେ କଷ୍ଟ ଦିଲା କଂସ କହୁଂ ନସରଇ[1] ॥୨୮୪୭॥
ଯେତେ ବୋଲି ସୋକ କଲା ବସୁଦେବ
ପିତାର ବଇକୁଲ୍ୟେ ବଦୟନ୍ତି ବାସୁଦେବ ॥୨୮୪୮॥
ବୋଇଲେ ଭୋ ତାତ ମୋତେ ଅଇଲ ଯେ ଛାଡ଼ି
ରହିଲି ନନ୍ଦ ଘରେ ହୋଇଲା ଉଠିଆରି ॥୨୮୪୯॥
ମାରିବ ବୋଲି ପୁତୁନା ସ୍ତନରେ ବିସଭରି
ମୋତେ ଖିର ଦିଅନ୍ତେ ପୁତୁନା ଗଲା ମରି ॥୨୮୫୦॥
ତଦ ଅନ୍ତରେ ମୋର ଉପରେ ସକଟ ପଡ଼ିଲା
ସେ କଷ୍ଟରୁ ମୋତେ ଦଇବ ରଖିଲା ॥୨୮୫୧॥
ବେନି ବରସକୁ ମୋତେ ଥିଲା ଅଡ଼ା
ମାତା ଯସୋଦା ମୋତେ ବୃକ୍ଷରେ ବାନ୍ଧିଗଲା ॥୨୮୫୨॥
ସେହି ବେନି ବୃକ୍ଷ ଯେ ପଡ଼ିଲେ ଉପୁଡ଼ି
ନାସ ଯାଉଥିଲି ମୋତେ ରଖିଲେ ନରହରି ॥୨୮୫୩॥
ଦିନେକ କୁଜଂରେ ଚରାଉଥିଲି ଗାଇ
ଗିଳିଲା ବକାସୁର ପସିଲି ଗର୍ଭେ ଯାଇ ॥୨୮୫୪॥
ଯହୁଂ ଦୟାକଲେ ମୋତେ ସାରଙ୍ଗ ଧନୁର୍ଦ୍ଧର
ଦଇତ ଗର୍ଭରୁଂ ମୁଂ ହୋଇଲିଂ ବାହାର ॥୨୮୫୫॥
ଯେତେ ଯେତେ ଅପାଦ ତହିଂରେ ପଡ଼ିଲା
ତୁମ୍ଭ ଗର୍ଭ ସିତଳ ମୋତେ ନ ବାଧିଲା ॥୨୮୫୬॥
ଯେମନ୍ତ ବୋଲିଣ କୃଷ୍ଣ ବୋଇଲେ ଯହୁଂ ବାଣି
ମାତା ପିତା ରୋଦନ କଲେକ ତାହା ଶୁଣି ॥୨୮୫୭॥
ଅଶୃ ଗଦ ଗଦ ଢଳଇ ଲୁହ ଧାରା
ସଦାସିବ ମୁଖ ଚହିଂ ପୁଛନ୍ତି ଗଉରା ॥୨୮୫୮॥
ବୋଇଲ ଯେ ମାତା କ୍ଷିର ଭକ୍ଷିଲେ ଭଗବାନ
ଯେଉଂଦିନୁ ଦେବକି ପ୍ରସବିଲା ନନ୍ଦନ ॥୨୮୫୯॥
ଲେଖିବାକୁ ଅଷ୍ଟବରସ ଯେ ବହିଗଲା
ତେତେଦିନ ଯାଏ ସ୍ତନରେ କ୍ଷିରଥିଲା ॥୨୮୬୦॥
ସେହିଦିନ କୃଷ୍ଣନାଥ କଲେକ କ୍ଷିର ପାନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୨୮୬୧॥
ଜନ୍ମଦିନୁ କୃଷ୍ଣନାଥ ରହିଲେ ଗୋପପୁର
ନ ଦେଖିଣ ଦେବକି ଯେ ହୋଇଲା ସୋକଭର ॥୨୮୬୨॥
ଦେହ କ୍ଷିନ୍ନ କରିଣ ସେ ବୃଦ୍ଧା ରୂପ ହୋଇ
କଂସ ମଲା ଉତାରେ ନୟନେ ଦେଖିଲା ଭାବଗ୍ରାହି ॥୨୮୬୩॥
ହୋଇଲା ଯୁବା ରୂପ ସ୍ତନରେ କ୍ଷିର ବହିଂ
ଭକ୍ଷିଲେ କୃଷ୍ଣନାଥ ବଳବନ୍ତ ହୋଇ ॥୨୮୬୪॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ

## କଂସର ପୂର୍ବଜନ୍ମ ବୃତ୍ତାନ୍ତ

ଶ୍ରୀକୃଷ୍ଣ ଆଜ୍ଞାଦେଲେ ଯାଦବଙ୍କୁ ଚାହିଁ
କଂସକୁ ଶ୍ମସାନେ ଦହନ କର ନେଇ ॥୨୮୬୫॥
ଆଜ୍ଞା ପାଇଣ କୋଟିୟେ ଯାଦବ ମିଳିଲେ
ଶ୍ମସାନେ କଂସପିଣ୍ଡ ଦହନ କରାଇଲେ ॥୨୮୬୬॥
ଯହୁଁ ସେ କଂସାସୁର ଶ୍ରୀକୃଷ୍ଣ ହସ୍ତେ ମଲା
ପୁର୍ବର ପାପନାସି ଅମରକଇ ଗଲା ॥୨୮୬୭॥
ବଦୟନ୍ତି ଗୌରି ସୁଣ ହେ ମହାବାହୁ
ପୁର୍ବେ କଂସାସୁର ହୋଇଥିଲା କେହୁ ॥୨୮୬୮॥
ଶ୍ରୀକୃଷ୍ଣ ହସ୍ତେ ମରି ପାଇଲା ସଦଗତି
ସୁଣଗୋ ଗୌରି ବୋଲି ବଦୟନ୍ତି ପସୁପତି ॥୨୮୬୯॥
ତ୍ରେତୟା ଯୁଗ ଯେ ବିସର୍ବା ମହାମୁନ୍ୟ
ତାହାର ପୁତ୍ର ସେ ଯେ ଅଟଇ ରାବଣ ॥୨୮୭୦॥
ବଳବନ୍ତ ପଣେ ସେ ସାଧିଲା ତିନିପୁର
ଦେବତାୟେ ବୈସ୍ୟାବୃତି ହୋଇଲେ ତାହାର ॥୨୮୭୧॥
ଯହୁଁ ଦେବତାଙ୍କୁ ରାବଣ ଦୁଖ ଦେଇ
ତେଣୁ ଜଣାଇଲେ ଶ୍ରୀହରି ଠାରେ ଯାଇ ॥୨୮୭୨॥
ଦେବତାଙ୍କୁ ଦୟା କଲେକ ଦଇତାରି
ଦଶରଥ ଘରେ ସେ ଯେ ଜନ୍ମିଲେ ଶ୍ରୀହରି ॥୨୮୭୩॥
ସିବଧନୁ ଭାଜିଂ ବିଭା ହୋଇଲେ କମଳଣି
କଲେକ ବନବାସ ସିତ୍ୟାଙ୍କୁ ସଙ୍ଗେ ଘେନି ॥୨୮୭୪॥
ସିତ୍ୟାଙ୍କୁ ଚୋରାଇ ନିଲା ଦସସିର
ବାରତା ପାଇଣ ଗଲେ ଯେ ରଘୁବିର ॥୨୮୭୫॥
ମାରନ୍ତେ ବ୍ରହ୍ମସର ଦଇତ୍ୟ ପ୍ରାଣନାସ ଯାଇ
ତାହାର ପାପ ଭାରା ଗ୍ରାସିଲା ରଘୁସାଇଂ ॥୨୮୭୬॥
ହୋଇଲା ଅନ୍ଧକାର ନ ଦିସିଲା କିଛି
ତରସ୍ତେ ରଘୁନାଥ ମାତଳିକି ପୁଛି ॥୨୮୭୭॥
ସେ କହିଲା ଆପଣା ନାମ ସୁମର ଶ୍ରୀରାମ
ତୁଟିଲା ବ୍ରହ୍ମହତ୍ୟା ଦିସିଲା ନୟନ[1] ॥୨୮୭୮॥

୧ । ଖ ପୋଥିରେ ଏହା ପରେ ଅଧିକ ଅଛି –
ଆପଣାର ନାମକୁ ରାମ କଲେକ ସୁମରଣ
ବ୍ରହ୍ମ ହତ୍ୟା ପାତକ ଗଲା ସେ ଛାଡ଼ିଣ
ସୀତ୍ୟାଙ୍କୁ ଘେନିରାମ ଅଯୋଧାକୁ ଗଲେ
ଚଉଦ ସହସ୍ର ବରଷ ରାଜା ହେଲେ
ଦେ ଅନ୍ତରେ ଶ୍ରୀରାମ ତେଜିଲେ ମେଦନୀ
ଗମିଲେ ଅମରକୁ ଭେଟିଲେ ବଜ୍ରପାଣି
ଶ୍ରୀରାମଙ୍କୁ ଇନ୍ଦ୍ରଦେବତା ନ ଚିହ୍ନିଲା
ବ୍ରହ୍ମହତ୍ୟା ଦୋଷୀ ବୋଲି ବସିତେ ନ ଦେଲା

ଯହୁଁ ଦେବତାୟେ ନ ଦିଲେ ବସାଇଂ
ଉଭା ହୋଇ ରହିଲେ ତ୍ରିଦସ୍ୟର ସାଇଂ ॥୨୮୭୯॥
ଆଦିତ୍ୟ ତେଜ ଯହୁଁ ପଡ଼ିଲା ଦେହର
ପାଦକୁ ବହିଯାଇ ସିରରୁ ଶ୍ରମଝାଳ ॥୨୮୮୦॥
ସେ ଝାଳ ପୋଛି ପକାଇଲେ ରାମ
ଝାଳରୁ କୋପପୁରୁଷ ହୋଇଲା ଉତପନ ॥୨୮୮୧॥
ଭୟଙ୍କର ରୁପ ତା ଦିସଇ ଖାଙ୍କର
ଉଛର୍ଗ ପ୍ରତି ଦିସେ ଦ୍ୱିତିୟ ଗିରିବର ॥୨୮୮୨॥
ଭୟରେ ପଳାଇଲେ ସଭାରୁ ଦେବଗଣ
କହଇ କାଳପୁରୁଷ ସୁଣହେ ଶ୍ରୀରାମ ॥୨୮୮୩॥
କିସ ଆଜ୍ଞା ହୋଇଲା ଦିଅ ୟେହିକ୍ଷଣି
ଖାଇବିଂ ଦେବତାଙ୍କୁ ନାସିବିଂ ମେଦନି ॥୨୮୮୪॥
ନୋହିଲେ ରାସାଙ୍ଗତ କରିବିଂ ତିନିପୁର
ତୋହର ଶତୃ କେହୁ କହ ମୋ ଆଗର ॥୨୮୮୫॥
ୟେତେ ବୋଲି କାଳପୁରୁଷ କୋପ ହାଦେ କରି
କହନ୍ତି ସଦାସିବ ସୁଣଗୋ ଗଉରି ॥୨୮୮୬॥
ଭଗତବଛଳ କ୍ଷମା ସାଗର ନରହରି
ଭଗତ ଭାବେ ଦେବତାଙ୍କୁ ଦୟାକରି ॥୨୮୮୭॥
ବୋଇଲେ କାଳପୁରୁଷ କୋପ ତୁ ସଂହର
ୟେତେବେଳେ ବାବୁ ତୁରେ ଅନର୍ଥ ନକର ॥୨୮୮୮॥
ତ୍ରେତୟା ସେସ ଯାଇ ଦ୍ୱାପର ଯେବେଂ ହୋଇ
ତୁହି ଜନ୍ମ ହୋଇବୁ ମଝୁପୁରେ ଯାଇଂ[1] ॥୨୮୮୯॥
ଉଗ୍ରସେନ ଭାରିଯା ନାମ ଇନ୍ଦୁମତି
ତାହାକୁ ହରିବ ଦୃମିଳା ଦତ୍ୟପତି ॥୨୮୯୦॥
ଇନ୍ଦୁମତି ଗର୍ଭରୁ ହୋଇବୁ ଉତପନ
ନିର୍ଦ୍ଦୟା କଂସ ବୋଲି ହୋଇବ ତୋରନାମ ॥୨୮୯୧॥
ବଳବନ୍ତ ପଣେଣ ଜିଣିବୁ ଦେବତାଙ୍କୁ
ଖଟିବେ ସଭାତଳେ ବସ ବୋଲି ନ ବୋଲିବୁ ତାହାଙ୍କୁ ॥୨୮୯୨॥
ୟେଣୁ ସେ ଦେବଗଣେ ମୋତେ ନ ମାନିଲେ
ତେଣୁ ବୈସ୍ୟାବୃତି ହୋଇବେ ତୋରଠାରେ ॥୨୮୯୩॥
ଦ୍ୱାପର ଯୁଗ ଯାୟେ ନିର୍ଶ୍ଚିନ୍ତେଣ ଥାଅ
ଆମ୍ଭର ଅଭିମାନେ ଦେବତାଙ୍କୁ ଦୁଖ ଦିଅ[2] ॥୨୮୯୪॥
କାଳପୁରୁଷକୁ ଶ୍ରୀରାମ ଏତେ କହି ଗଲେ ଚଳି
କ୍ଷିର ସିନ୍ଧୁ ମଧ୍ୟରେ ବିଜୟେ ବନମାଳି ॥୨୮୯୫॥

୧ । ଖ ପୋଥି – ମଥୁରା ନାମେ ମହୀ
୨ । ଖ ଓ ଗ ପୋଥି – ଦଣ୍ଡ ଦିଅ

ଅନନ୍ତ ସଯ୍ୟାରେଂ ସୋଇଲେ ଭଗବାନ
ସୁଣଗୋ ଦୁର୍ଗା ବୋଲି ବୋଲନ୍ତି ତ୍ରିଲୋଚନ ॥୨୮୯୬॥
ରାବଣର ବ୍ରହ୍ମତେଜ ଶ୍ରୀରାମ କୋପ ପୁରୁଷ
ତହୁଂ ଜାତ କାଳପୁରୁଷ ନାମ ହେବ କଂସ ॥୨୮୯୭॥
କରାଳ ଅନଳଂ[୧] ପ୍ରାୟ ଅଟଇ ତାର ଜୋତି
ଶ୍ରୀହରି ହସ୍ତେ ମରି ପାଇଲା ସଦଗତି ॥୨୮୯୮॥
ଯେମନ୍ତ ପ୍ରକାରେ ସେ କଂସର ପୁର୍ବଜନ୍ମ
ମୋତେ ଯେବେ ପଚାରିଲୁ କହିଲିଂ ତାହା ସୁଣ ॥୨୮୯୯॥
ଶ୍ରୀହରି ଆଜ୍ଞାରେ ସେ କଂସ ଜନ୍ମିଥିଲା
ପୁର୍ବ ହିଂସା ବହି ଦେବତାଙ୍କୁ ଦୁଖ ଦିଲା ॥୨୯୦୦॥
ଦେବତାଏ ଗଜିଂହୋଇ ମିଳିଲେ ସେ ଠାବର
ବୋଇଲେ କଂସ ଦଣ୍ଡୁ ଆମ୍ଭଙ୍କୁ ଉଦ୍ଧର ॥୨୯୦୧॥
ସୁଣିଣ ଦଇତାରି ଦୟାକଲେ ତାହାଙ୍କୁ
ମହିରେ ଜନ୍ମ ହୋଇ ନାସିଲେ ଦଇତକୁ ॥୨୯୦୨॥
ଯହୁଂ କଂସାସୁର ସେ ଯେ ହରାଇଲା ପ୍ରାଣ
ଗୋବିନ୍ଦ ସିରେ ପୁଷ୍ପ ବୃଷ୍ଟିକଲେ ଦେବଗଣ ॥୨୯୦୩॥
ଭେରି ତୁରି ଦୁନ୍ଦୁଭି ବାଦ୍ୟ ବଜାଇଲେ
ଗନ୍ଧର୍ବେ ଆଳାପ କଲେ ଅପକ୍ଷରି ଯେ ନାଚିଲେ ॥୨୯୦୪॥
ଦଇତ୍ୟ ନାସନ ଦଇତାରିଙ୍କ ଚରଣେ
ତରିବ ଯେବେ ଚିତ ଦିଅ ସାଧୁଜନେ ॥୨୯୦୫॥
ଶ୍ରୀହରି ପଦ୍ମପାଦ କରିଣ ଥିବ ନାବ
ବସିଣ ପାରିହେବ ଯେହ୍ନେ ସେ ଭବାର୍ଣ୍ଣବ ॥୨୯୦୬॥
ଶ୍ରୀହରି ଚରଣେ ସରଣ ନରେ ପସ
କହୁଛି ବିନୋୟି ଯେ ସୁଦ୍ରମୁନି ସାରୋଳା ଚଣ୍ଡି ଦାସ ॥୨୯୦୭॥

## ଉଗ୍ରସେନର ରାଜ୍ୟାଭିଷେକ ଓ ନନ୍ଦ ଗୋପାଳାଦିଙ୍କର ଗୋପପୁର ପ୍ରତ୍ୟାବର୍ତ୍ତନ

ଯେଥୁ ଅନ୍ୟନ୍ତରେ ଯେ ଗିରିଜା ପଚାରିଲେ
କଂସ ମଲା ଉତାରେ ଶ୍ରୀହରି କିସ କଲେ ॥୨୯୦୮॥
ବଦୟନ୍ତି ସଦାସିବ ସୁଣଗୋ ଦେବି ଓମା
ଅପୁର୍ବ ଚରିତ ଯେ ଶ୍ରୀହରି ମହିମା ॥୨୯୦୯॥
ବିଶ୍ୱକର୍ମାକୁ ରାଇ ସେ ଆଜ୍ଞା ଦିଲେ ଭଗବାନ
ବିଚିତ୍ର ପୁର ଯେବେ କରହୋ ନିର୍ବାଣ ॥୨୯୧୦॥
ଆଜ୍ଞାପାଇ ବିନ୍ଧାଣି ପୁର ନିର୍ବାଣିଲେ
ବସୁଦେବ ଦେବକି ଯେ ତହିଂରେ ରହିଲେ ॥୨୯୧୧॥

୧ । ଖ ପୋଥି - କାଳଅଗ୍ନି

ହରି ବଳରାମ ରୋହିଣି ଆଦିକରି
ଅକ୍ରୁର ସହିତେ ସେ ରହିଲେ ଆବୋରି ॥୨୯୧୨॥
ଉଗ୍ରସେନକୁ ରାଇ ବୋଇଲେ ଦେବହରି
ମଥୁରା କଟକରେ ତୁ ହୁଅ ଦଣ୍ଡଧାରି ॥୨୯୧୩॥
ଯଯାତି ସାପ୍ୟ ପାଇ ଯଦୁଙ୍କୁ ପାଟ ନାହିଂ
ତୁମ୍ଭେ ଭୋଜପତି ନୃପତି ହୋଅ ତୁହି ॥୨୯୧୪॥
ଉଗ୍ରସେନ ବୋଇଲା ମୁଂ ତୁମ୍ଭର ଭୃତ୍ୟ
ତୁମ୍ଭେ ଥାଉ କେମନ୍ତେ ମୁଂ ହୋଇବିଂ ନୃପନାଥ ॥୨୯୧୫॥
ଶ୍ରୀହରି ବୋଇଲେ ତୁମ୍ଭେ କିଛି ହିଂ ନ ଭାଳ
ତୁହି ହେବୁ ରାଜା ଆମ୍ଭେ ପାଳିବୁଂ ସକଳ ॥୨୯୧୬॥
ସନ୍ଥକୁ ପାଳି ଆମ୍ଭେ ନାସିବୁ ଯେ ଦୁଷ୍ଟ
କେବଳ ତୋହର ସିରେ ଥିବ ରାଜପାଟ ॥୨୯୧୭॥
ସୁଣିଣ ଉଗ୍ରସେନ ସନମତ ହେଲା
ନୃପତି ପଣେ ସିରେ ମୁକୁଟ ବାନ୍ଧିଲା ॥୨୯୧୮॥
ଯହୁଂ ସେ ଉଗ୍ରସେନ ହୋଇଲାକ ରାଜା
ସାତବଂସ ରାଜା କଲେ ତାଙ୍କ ପାଦପୁଜା ॥୨୯୧୯॥
କଂସ ଡରେ ଯେତେ ଯାଦବେ ଯେ ପଳାଇଣ ଥିଲେ
ସମସ୍ତେ ବିଦେସରୁ ପଳାଇ ଅଇଲେ ॥୨୯୨୦॥
ମଥୁରା କଟକରେ ରହିଲେ ଆବୋରି
କହନ୍ତି ସଦାସିବ ସୁଣଗୋ ଗଉରି ॥୨୯୨୧॥
ନନ୍ଦ ଯସୋଦା ଆଦି ଗୋପାଳେ ଯାଇଥିଲେ
ଶ୍ରୀକୃଷ୍ଣନାଥ ତାଙ୍କୁ ପ୍ରବୋଧି କହିଲେ ॥୨୯୨୨॥
ବୋଇଲେ ଆଗ ହୋଇ ଯାଅ ହେ ଗୋପପୁର
ଦିନାଚାରି ରହି ଆମ୍ଭେ ଯିବୁଂ ଯେ ପଛର ॥୨୯୨୩॥
ଶ୍ରୀହରି ମାୟାରେ ଯେ ଗୋପାଳେ ମୋହ ହେଲେ
ଗୋପପୁରେ ଚଳିଗଲେ ଗିରିଜା ପଚାରିଲେ ॥୨୯୨୪॥

## ସାତବଂଶ ଯାଦବଙ୍କ ଜନ୍ମବୃତ୍ତାନ୍ତ

ସାତବଂସ ଯାଦବ ସେ କହିଲ ପ୍ରାଣନାଥ
କେହ୍ନେ ବଂସ କାହିଂରୁ ହୋଇଲେ ସମ୍ଭୁତ ॥୨୯୨୫॥
ସାତବଂସ ଜନ୍ମ ତୁମ୍ଭେ ଯେ କହିବ
ଗିରିଜାର ବଚନେ ଯେ କହନ୍ତି ସଦାସିବ ॥୨୯୨୬॥
ଯଦୁବଂସ ଚରିତ କହଇଂ ଯେବେ ମୁହିଂ
ନିର୍ମଳ ବୋଲିଣ ସେ ଯେକଇ ନୃପସାଇଂ ॥୨୯୨୭॥
ନିର୍ମଳର ତହୁଂ ସେ ନହୁସ ଜାତ ହେଲା
ଧାର୍ମିକ ବିବେକ ସେ ବିଷ୍ଣୁଙ୍କୁ ସେବା କଲା ॥୨୯୨୮॥
ବିଷ୍ଣୁ ପ୍ରତିମା ନିମନ୍ତେ ତୋଳାଇ ନବର
ବସାଇ ସିଂହାସନେ ପୁଜା କରଇ ନୃପବର ॥୨୯୨୯॥

ଛତିସ ବର୍ଣ୍ଣଜାତି କରନ୍ତି ବେହରଣ
ଲାଗିଥାଇ ଯାତ୍ରା ପର୍ବ ସବୁଦିନେ ପୁଣ ॥୨୯୩୦॥
ନହୁସର ଭାରିଯା ନାମ ଅଟଇ ନିଳାବତି
ଗର୍ଭବାସ ହୋଇଣ ଥିଲାକ ଯୁବତି ॥୨୯୩୧॥
ଆଶ୍ୱିନଂ[1] ସୁକ୍ଳପକ୍ଷ ପୌର୍ଣ୍ଣମିର ଦିନ
ପ୍ରସବିଲା ନିଳାବତି ଯେକଇ ନନ୍ଦନ ॥୨୯୩୨॥
ଯହୁଂ ସେ ଯାତ୍ରା ଦିନ କୁମର ଜନମିଲା
ଯଯାତି ବୋଲିଣ ସେ ତାହାର ନାମ ଦିଲା ॥୨୯୩୩॥
ସେହିଦିନୁ ଯଯାତି ବୋଲିଣ ସେ ନାମପାଇ
ଯଯାତିର ତହୁଂ ସେ ଚାରିପୁତ୍ର ଜନ୍ମ ହୋଅଇ ॥୨୯୩୪॥
ନୃପତି ବୃଦ୍ଧା ହୁଅନ୍ତେ କୁମର ହେଲା ନବଯୁବା[2]
ଯୁବା ରୁପ ତାହାକୁ ଯେ ମାଗିଲାକ ରାଜା[3] ॥୨୯୩୫॥
ପୁତ୍ରକୁ ବୋଇଲା ତୋର ରୁପ ଦିଅ ମୋତେ
ମୋ ରୁପ ନେଇଣ ତୁମ୍ଭେ ଥାଅ ରେ ନିଶ୍ଚିନ୍ତେ ॥୨୯୩୬॥
ଜ୍ୟେଷ୍ଠ ନାସ୍ତି କଲା କନେଷ୍ଟ ରୁପ ଦିଲା
ଯଯାତି ଯୁବା ହୋଇ ରାଜା ପଣେ ରହିଲା ॥୨୯୩୭॥
କିଛିଦିନ ଯାନ୍ତେ ପୁତ୍ରକୁ ରୁପ ଦେଇ
ବୋଇଲା କୁମରରେ ହୋଅ ତୁ ନୃପସାଇଂ ॥୨୯୩୮॥
ଭୁଜଙ୍ଗ ବୋଲିଣ ନାମ ହୋଇଲା ଭୁଜପତି
ଜ୍ୟେଷ୍ଠ ଯଦୁକୁ ସାପ୍ୟ ଦିଲାକ ଯଯାତି ॥୨୯୩୯॥
ଯଦୁବଂସ ଭୋଜବଂସର ଯେସନ ଚରିତ
ସୁଣଗୋ ଓମା ବୋଲି ବୋଲନ୍ତି ବିଶ୍ୱନାଥ ॥୨୯୪୦।
ବିରବଂସ ଚରିତ କହିବା ଯେବେ ସୁଣ
ବିରସେନ ବୋଲିଣ ପଶ୍ଚିମ ରାଷ୍ଟ୍ରର ରାଜନ ॥୨୯୪୧॥
ବିରସେନ ନନ୍ଦନ ବିଧୃତି ନାମ ହୋଇ
ତାହାର ନନ୍ଦନ ବିରାଳଚନ୍ଦ୍ର[4] ନାମ ପାଇ ॥୨୯୪୨॥
ସେ ବିରାଳଚନ୍ଦ୍ରର ମହିମା ଅପାର
ବାଳକ କାଳୁ ସାଧି ହୋଇଲା ମହାବିର ॥୨୯୪୩॥
ଯେକା ଯେଂ ବିରପଣେ ସାଧିଲା ମେଦନି
ତାହାର ବିର୍ଯ୍ୟେ ଜନ୍ମ ହୋଇଲେ ପୁତ୍ର ତିନି ॥୨୯୪୪॥
ବିରବଂସ ବୋଲିଣ ଯେ ସେହି କାଳୁଂ ହୋଇଲେ
ସୁରବଂସ ଚରିତ ସୁଣ ବୋଲି ସଙ୍କର କହିଲେ ॥୨୯୪୫॥

୧ । ଖ ପୋଥି – ଫାଲ୍ଗୁନ
୨ । ଖ ପୋଥି – କୁମର ଯୁବା ହୁଅନ୍ତେ ନୃପତି ହେଲା ବୃଦ୍ଧ
୩ । ଖ ପୋଥି – ରାଜତ୍ୱ ପଣକୁ ସେ ହୋଇଲା ଅସୋଭାବ
୪ । ଖ ପୋଥି – ବିରାଳସେନ

ବିରବାହୁ ବୋଲିଣ ଯେକଇ ରାଜନ
ବିରସେନ ବୋଲିଣ ତାହାର ନନ୍ଦନ ॥୨୯୪୬॥
ତାହାର ବଂସେ ଅନଙ୍ଗସେନ[1] ଜାତ ହୋଇଲା
ସୁତ ସୁରସେନ ଦୁଷ୍ଟପଣ ଆଚରିଲା ॥୨୯୪୭॥
ମଞ୍ଚରାଜାମାନଙ୍କୁ ସେ ଯୁଦ୍ଧରେ ଜିଣିଲା
କାଳେ ସ୍ୱର୍ଗପୁରକୁ ସେହୁ ଧାଡ଼ି ଦିଲା ॥୨୯୪୮॥
ଭୟରେ ସୁରପତି ପଳାଇଲା ଛାଡ଼ି
ସୁରସେନ ସଭାରେ ବସିଲାକ ମାଡ଼ି ॥୨୯୪୯॥
ଖଟିଲେ କିନ୍ନରି ଗନ୍ଧର୍ବ ଯକ୍ଷଗଣେ
ସତେ ବରସ[2] ସେ ରହିଲା ଇନ୍ଦ୍ର ପଣେ ॥୨୯୫୦॥
ସଉରଭ ଗନ୍ଧର୍ବ ଜଣାଇ ବ୍ରହ୍ମାଠାରେ
ବୋଇଲା ଇନ୍ଦ୍ରପଦ ନେଲାକ ମଞ୍ଚ ନରେ ॥୨୯୫୧॥
କହିଲଇଂ ତୁମ୍ଭଙ୍କୁ ମୋତେ ହୁଅ ସାହା
ଇନ୍ଦ୍ରର ବଚନେ ଚଳିଲେ ବେଦ ନାହା ॥୨୯୫୨॥
କହିଲେ ସୁରସେନ ଇନ୍ଦ୍ରର ଆଗର
କିପାଇଂ ସୁରସେନ କଲୁ ହୋ ଅବିଚାର ॥୨୯୫୩॥
ମଞ୍ଚରାଜା ହୋଇ ତୁ ଯେ ନିଲୁ ଇନ୍ଦ୍ରପଣ
ସାପ୍ୟ ଦେଲେ ସବୁ ତ ହୋଇବ ଅକାରଣ ॥୨୯୫୪॥
ଯେବେଂ ମୋର ବୋଲେ ମଞ୍ଚକୁ ଯାଅ ଚଳି
ସ୍ୱର୍ଗହୁଂ ସମ୍ପଦ ତୁ ଭୁଞ୍ଜିଂବୁ ମହିଆଳି ॥୨୯୫୫॥
ବହୁତ ପୁତ୍ର ନାତି ହୋଇବେ ତୁମ୍ଭର
ସୁରବଂସ ବୋଲିଣ ଯେ ବୋଲିବେ ମଞ୍ଚପୁର ॥୨୯୫୬॥
ବ୍ରହ୍ମାର ବଚନେ ଅଇଲା ସୁରସେନ
ରହିଲା ଗଡ଼କରି ମଥୁରା ଭୁବନ ॥୨୯୫୭॥
ସୁଣୁଛନ୍ତି ଓମା ସେ କହୁଛନ୍ତି ମହେସ
ଯେବେ ଗୋ କହିବା ସୁଣ ନିରବଂସ ॥୨୯୫୮॥
ବିଧି ପୁର୍ବେକ ବୋଲି ମନୁଯେକ ଭୋଗ
ହରିଦାସ ବୋଲି ନାମ ସେ ସତ୍ୟଯୁଗ ॥୨୯୫୯॥
ଦକ୍ଷ ପ୍ରଜାପତିର ନନ୍ଦନ ନାମ ଅନିଳଋଷି
ତାହାର ବିର୍ଯ୍ୟେ ଜାତ ହୋଇଲା ମରିଚି ॥୨୯୬୦॥
ମରିଚି ତପ କରି କନ୍ୟାଯେ ପାଇଲା
ତାହାର ସଙ୍ଗତେ ମୁନି ପିରତି ବଢାଇଲା ॥୨୯୬୧॥
କାଳେ ତିନି ପୁତ୍ର ସେ ଯେ ହୋଇଲା ତାହାର
ବଜ୍ରନାଭ ସୁରନାଭ ସଉନାଭ ସେ ନାମ ତାହାଙ୍କର ॥୨୯୬୨॥

୧ । ଗ ପୋଥି – ଅଜଙ୍ଗସେନ
୨ । ଖ ଓ ଗ ପୋଥି – ନଉ ସତ

ବ୍ରହ୍ମରସି ପଣେ ସେ ରହିଲା ବଜ୍ରନାଭ
ସୁରନାଭ ବସିଣ ହୋଇଲା ଗୁରୁଦେବ ॥୨୯୬୩॥
ସଉନାଭ ଯେ ରାଜରସି ପଣେ ରହି
ତାହାର ବିର୍ଯ୍ୟେ ଯେକ ତନୟ ଜାତ ହୋଇ ॥୨୯୬୪॥
କର୍ଣ୍ଣନଉମି ବୋଲି ନାମ ଯେ ତାହାର
ବଳବନ୍ତ ପଣେ ସେ ସାଧିଲା ସଂସାର ॥୨୯୬୫॥
ସମୟେକ ଯାନ୍ତେ ତାର ହୋଇଲାକ ନନ୍ଦନ
ଉଦୟ ମଣ୍ଡଳେ ସେ ହୋଇଲା ରାଜନ ॥୨୯୬୬॥
ତାହାର ନନ୍ଦନ ଯେ ବେଣୁ ନୃପବର
ଧାର୍ମିକ ଗୁଣବନ୍ତ ହୋଇଲା ସତ୍ୟାଚାର ॥୨୯୬୭॥
ଭାରିଯାର ନାମ ତାହାର ଅଟଇ ସତ୍ୟାବତି
ସତ୍ୟ ଆଋରେ ସେହୁ କାଳ ହାଦେ ବଞ୍ଚି ॥୨୯୬୮॥
ସେ ବେଣୁ ରାଜ୍ୟରେ ଅଛଇ ଯେକଇ ସରୋବର
ଗଙ୍ଗା ଯମୁନା ସରସ୍ୱତି ବହୁଛି ତିନି ଧାର ॥୨୯୬୯॥
ଗୋମତି[୧] କୃଷ୍ଣବେଣି ସହିତେଂ ପଞ୍ଚତିର୍ଥ
ନଉକାଠି ଗଭିର ପକ୍ଷି ଉଡ଼ି ନ ପାରନ୍ତି ସୁନ୍ୟପଥ ॥୨୯୭୦॥
ସରୋବର ମଧ୍ୟରେ ଥାଇ ଯେକଇ ମଣ୍ଡୋପ
ତହିଂରେ ବିଜେ କରିଛନ୍ତି ବିଶ୍ୱନାଥ ॥୨୯୭୧॥
ସେ ବିଶ୍ୱନାଥଙ୍କୁ ଯେ ଦ୍ରସନ କରଇ
ଭୁଜଂଇ ଅଇସୁର୍ଯ ଅମର କାୟା ହୋଇ ॥୨୯୭୨॥
ସେ ବେଣୁ ଭାରିଯା ସତ୍ୟାବତି ରାଣି
ପ୍ରଭାତୁ ସ୍ନାହାନ କରେ ସରୋବର ପାଣି ॥୨୯୭୩॥
ଲିଙ୍ଗ ଦ୍ରସନ କରି ଗୋଟିଯେ ଆଣେ ଜଳ
ଅର୍ଣ୍ଣରାନ୍ଧି ବେନି ପ୍ରାଣି କରନ୍ତି ଆହାର ॥୨୯୭୪॥
ପଞ୍ଚାଉନ କାଠି ସେ ଜଳ ଗଭିର ଅଟଇ
ତହିଂରେ ରାଣି ଋଲେ ପାଦ ନ ତିନ୍ତଇ ॥୨୯୭୫॥
ଯେହିରୁପେ ରାଣି ସେ ପ୍ରତିଦିନ ଯାଉଥିଲା
ହୋଇଥିଲା ଗର୍ଭବାସ ପେଟ ବଥାଇଲା ॥୨୯୭୬॥
ସରୋବର ମଧ୍ୟରୁ ସେ ଆଣୁଥିଲା ପାଣି
କୁମର ଜନମିଲା ପାସେ ନାହିଂ ସୁଳଣି ॥୨୯୭୭॥
ନଉକାଠି ଜଳ ମାରୁଛି ଲହରି
ତହିଂରେ ପ୍ରସବିଲା ବେଣୁ ରାଜାର ନାରି ॥୨୯୭୮॥
ଲାଗିଛି ଫୁଲ ନାଡ଼ ପୁତ୍ରକୁ ଘେନି କୋଳେ
ବେନି କୋସ ଜଳଧି ରାଣି ପାରି ହେଲେ ॥୨୯୭୯॥
ନ ତିନ୍ତିଲା ପାଦ ନୋହିଲା ପୁତ୍ର ନାସ
ସୁଣଗୋ ଓମା ବୋଲି ବୋଲନ୍ତି ମହେସ ॥୨୯୮୦॥

ନିର ଉପରେ ଯହୁଂ କୁମର ଜନମିଲା
ନାମ ନିଳସେନ ସଂସାରେ ବୋଲାଇଲା ॥୨୯୮୧॥
ପଞ୍ଚାଉନ କାଠି ଜଳରେ ସୁତ ପଡ଼ି
ସତ୍ୟାବତି ଧର୍ମେ ନ ମଲା ବାଳେକ ବୁଡ଼ି ॥୨୯୮୨॥
ଯହୁଂ ସେ ନିରରୁ ଜନ୍ମି ନୋହିଲା ବିନାସ
ସେହିଠାରୁ ଯେ ବୋଲାଇଲା ନିରବଂସ ॥୨୯୮୩॥
କ୍ଷିରବଂଶ ଜନ୍ମ ସୁଣଗୋ ପ୍ରାଣସହି
ନିରାକୁଳ ବୋଲିଣ ମନୁଯେକ ହୋଇ ॥୨୯୮୪॥
ମନୁମଥ ବୋଲିଣ ସତ୍ୟଯୁଗର ନାମ
ଦେବ ଦୈତ୍ୟ ମିଳି ସିନ୍ଧୁ କଲେକ ମନ୍ଥନ ॥୨୯୮୫॥
ମନ୍ଦରକୁ ଖୁଆ କଲେ ବାସୁକି ଦଉଡ଼ି
ଘୁରାନ୍ତେଂ ଜଳରେ ଯେ ଉଠିଲା ଲହଡ଼ି ॥୨୯୮୬॥
ଐରାବତ ହସ୍ତି ଉଚୈଶ୍ରବା ଅଶ୍ୱ
ଅପକ୍ଷରା ଗଣ ଜାତ ପାରିଜାତ ପୁଷ୍ପ ॥୨୯୮୭॥
ଯେହି ଚାରି ପଦାର୍ଥ ଇନ୍ଦ୍ରର କୋଠ ହୋଇ
ବାସୁକି ଗରଳ ଯେ ଭକ୍ଷିଲୁ ଆମ୍ଭେ ଯାଇ ॥୨୯୮୮॥
ପୁଣି ଦେବତା ଦତ୍ୟ ଟାଣିଲେ ମନ୍ଦର
ସୁଧା କୁମ୍ଭ ଘେନିଣ ସେ ପୁରୁଷେ ବାହାର ॥୨୯୮୯॥
ଦେବତାୟେ ବାଣ୍ଟିଣ ଭକ୍ଷିଲେ ଅମୃତ
ପୁରୁଷେ ଜାତ ହେଲା ଆଜ୍ଞା ଦେଲେ ଚଉମାଥ ॥୨୯୯୦॥
ଆଜ୍ଞା ଦେଲେ ଉତର କୁସଳେ ଚଳ ତୁହି
ଅମୃତାକ୍ଷ ବୋଲିଣ ତାହାର ନାମ ହୋଇ ॥୨୯୯୧॥
ବହୁତ କୁଟୁମ୍ବ ଯେ ସମ୍ପଦ ହେବ ତୋର
କ୍ଷିରବଂସ ବୋଲିଣ ବୋଲିବେ ମଞ୍ଚପୁର ॥୨୯୯୨॥
କ୍ଷିରସିନ୍ଧୁରୁ ଜାତ ତହୁଂ ଯେ ସେ କ୍ଷିରବଂସ
ସୁଣଗୋ ଓମା ବୋଲି ବୋଲନ୍ତି ମହେସ ॥୨୯୯୩॥
ଯେମନ୍ତେ ଛଡ଼ ବଂସ ହୋଇଲେ ଉତପନ
କୁରୁବଂସ ଚରିତ କହିବା ଯେବେ ସୁଣ ॥୨୯୯୪॥
କୁଣ୍ଡଳି ରସି ବୋଲି ସାରଙ୍ଗ ରସି ସୁତ
ତପ କରୁଥିଲେ ଯେ ବିଂଝମାଳ ପର୍ବତ ॥୨୯୯୫॥
ସତସଠି ଯୋଜନ ଅଟଇ ସେହୁ ଗିରି
ଗୟାତିର୍ଥ ସେହୁ ବଢ଼ିଛି ଫଲୁଗି ॥୨୯୯୬॥
ଧନୁମାସ ସୁକ୍ଳପକ୍ଷ ପୌର୍ଣ୍ଣମିର ତିଥି
ପୁସ୍ୟାନାମ ନକ୍ଷତ୍ର ବାର ବୃହସ୍ପତି ॥୨୯୯୭॥
ପୁସ୍ୟା ଅବିସେକ ହୋଅଇ ବଜ୍ରଧାରି
ସ୍ନାହାନକୁ ଗମିଲେ ବାସେବ କୁମାରି ॥୨୯୯୮॥

୧ । ଗ ପୋଥି – ଗୋମତି

ଫଲ୍ଗୁ ନଦି ତିରେ କରନ୍ତେ ସ୍ନାହାନ
ଦିସଇ ଯଉବନ ଦେହେ ନାହିଁ ସେ ବସନ ॥୨୯୯୯॥

ଇନ୍ଦ୍ରର ଜେମା ସେ ବୟସ ସୋଳସା
କୁଣ୍ଡଳି ମୁନି ଦେଖି ବଳିଲା ମନିସା ॥୩୦୦୦॥

ବିନ୍ଧିଲା କାମସର ହାରିଲା ନିଜ ଜ୍ଞାନ
ଖସିଲାକ ରେତ ଜରିତ ବସନ ॥୩୦୦୧॥

ସମ୍ଭାଳି ହୋଇ ମୁନି ହୋଇଲେ ସୁଦ୍ଧକାୟେ
କର୍ପଟି ଧୁଅନ୍ତେ ବିର୍ଯ୍ୟ ଜଳରେ ଭାସିଯାୟେ ॥୩୦୦୨॥

ସୁସେନି କୁରଙ୍ଗି ବିର୍ଯ୍ୟ ଜଳ ସଙ୍ଗତେ ଭକ୍ଷିଲା
କିଛିଦିନ ଗର୍ଭେ ଧରି କୁମର ପ୍ରସବିଲା ॥୩୦୦୩॥

ଶିରରେ ବେନି ସୃଙ୍ଗ ମନୁଷ୍ୟ ସରିର
ରଡ଼ି ସୁଣିଣ ଆସି ମିଳିଲେ ମୁନିବର ॥୩୦୦୪॥

କେମନ୍ତେ ବଞ୍ଚିବ ପୁତ୍ର ବୋଲି ମୁନି ଭାଳି
ଯୋଗରେ ବସିଣ ସେ ଜାଣିଲେ କୁଣ୍ଡଳି ॥୩୦୦୫॥

ଗଦାଧର ବୋଲିଣ ଯେ ଯେକଇ ଦିଅଁ ତହିଁ
ପାସାଣେ ନିର୍ମାଣ ହୋଇଛନ୍ତି ଗୋସାଇଂ ॥୩୦୦୬॥

ସେହି ଦେବାଳୟେ ଯେକ ମଧୁବସା କରିଛଇ
ରାତ୍ର ଦିବା ଝର ଝର ମଧୁ ବରସଇ ॥୩୦୦୭॥

ଆପଣେ ନାରାୟଣ କରନ୍ତି ମଧୁପାନ
ତାଙ୍କଠାରେ କୁଣ୍ଡଳି ସମର୍ପିଲାକ ନନ୍ଦନ ॥୩୦୦୮॥

କଲାକ ମଧୁପାନ ସେ ଯେ କୁଣ୍ଡଳିର ସୁତ
ସୁଣଗୋ ଓମା ବୋଲି ବୋଲନ୍ତି ସୁଳହସ୍ତ ॥୩୦୦୯॥

କୁଣ୍ଡଳି ରସି ବିର୍ଯ୍ୟେ କୁରଙ୍ଗି ଗର୍ଭୁଂ ଜାତ
ତେଣୁ ସେ କ୍ଷିତିରେ ବୋଲାଇ କୁରୁବଂସ ॥୩୦୧୦॥

ଯେମନ୍ତେ ସାତବଂସ ଜାତ ମେଦନିର
ସୁରସେନ ବୋଲିଣ ଉଗ୍ରସେନର ପିଅର ॥୩୦୧୧॥

ବଡ଼ ପ୍ରତାପି ସେ ଅଟଇ ନୃପବର
ମଞ୍ଚରାଜାମାନଙ୍କୁ ସେ ଜିଣିଲା ଯୁଦ୍ଧର ॥୩୦୧୨॥

ସକୁଟୁମ୍ବ ସହିତେ ଯେ ବନ୍ଦି କଲା
କାହାକୁ ନବର ତୋଳାଇ ରଖିଲା ॥୩୦୧୩॥

ଯେମନ୍ତେ ସାତବଂସ ରହିଲେ ମଥୁରାର
ସାତବଂସ ଯାଦବ ବୋଲି ଭଣାଇଲେ ପୃଥିବିର ॥୩୦୧୪॥

ଭୋଜବଂସ ଦଶ କୋଟି ଯଦୁବଂସ କୋଟିଯେ ଯେଗାର
ନବକୋଟି ବିରବଂସ ସୁରବଂସ କୋଟି ତେର ॥୩୦୧୫॥

ନିରବଂସ ଚାରିକୋଟି କ୍ଷିରବଂସ ଛଡ଼ କୋଟି
ତିନିକୋଟି କୁରୁବଂସ କହିଲେ ଦୃଜଟି ॥୩୦୧୬॥

ଯେମନ୍ତେ ଛପନ କୋଟି ଯାଦବ ଗୋବିନ୍ଦର ଭକ୍ତ
ତେଣୁଂ ସେ ତାହାଙ୍କ ବଂସେ ଜନ୍ମିଲେ ଜଗନ୍ନାଥ ॥୩୦୧୭॥

## ରାମକୃଷ୍ଣଙ୍କର ବିଦ୍ୟାଶିକ୍ଷା ଓ ସଂସ୍କାର

ପାର୍ବତି ପଚାରିଲେ ସୁଣ ହେ ତ୍ରିପୁରାରି
କଂସ ମଲା ଉତାରେ କିସ କଲେ ଦଇତାରି ॥୩୦୧୮॥

ସୁଣସି ଓମା ବୋଲି ବୋଲନ୍ତି ସଦାନନ୍ଦ
ବସୁଦେବ ଘରେ ଯେ ରହିଲେ ଗୋବିନ୍ଦ ॥୩୦୧୯॥

ଯେକଦିନେ ହରି ବଳରାମ ବିଚାରିଲେ
ବିଦ୍ୟା ପଢ଼ିବାକୁ ଯେ ଅବନ୍ତିପୁର ଗଲେ ॥୩୦୨୦॥

ସତ୍ୟବନ୍ତ ପଣ୍ଡା ବୋଲି ଯେକଇ ବ୍ରାହ୍ମଣ
ବିଦ୍ୟା ସାହାସ୍ରରେ ସେ ଅଟଇ ନିର୍ଗୁଣ ॥୩୦୨୧॥

ହରି ବଳରାମଙ୍କୁ ସେ ପଢ଼ାଇଲେ ପାଠ
ସପତ ଦିନେ ପଢ଼ି ସାରିଲେ ବସୁଦେବ ଚାଟ ॥୩୦୨୨॥

ଦକ୍ଷିଣା ମାଗ ବୋଲି ବୋଇଲେ ଭଗବାନ
ଗୁରୁ ବୋଇଲେ ମୋତେ ଗୋଟିଯେ ଦେବୁ ନନ୍ଦନ ॥୩୦୨୩॥

ଅପୁତ୍ରିକ କଷ୍ଟରୁଂ ମୋତେ କର ହରି ପାରି
ଅସ୍ତୁ ବୋଲି ବୋଇଲେ ଦେବ ଦଇତାରି ॥୩୦୨୪॥

ଗୁରୁଙ୍କୁ ସମର୍ପିଲେ ଯେକଇ ନନ୍ଦନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୩୦୨୫॥

ଯେକଦିନେ ବସୁଦେବ କଲେକ ବିଚାର
ବେନି ପୁତ୍ରଙ୍କୁ ଯେବେ କରିବାକ ସଂସ୍କାର ॥୩୦୨୬॥

ନନ୍ଦ ଘରେ ଜନମ କାଳହୁଁ ଥିଲେ ଯେବେ ରହି
ଯେତେ କାଳେ ଉଦିତ ହୋଇଲେ ବେନି ଭାଇ ॥୩୦୨୭॥

ଅଷ୍ଟ ବରସ ଯାଇ ହୋଇଲା ନବମ
ଯଜ୍ଞୋପବିତ ଯେବେ ଘେନିବେ ନନ୍ଦନ ॥୩୦୨୮॥

ଯେମନ୍ତେ ବସୁଦେବ ଗାର୍ଗେବଙ୍କୁ ରାଇ
ଉଗ୍ରସେନ ସକଳ ସାମଗ୍ରି ଭିଆଇ ॥୩୦୨୯॥

ସୁଭବେଳ ବାଛିଣ ଦେଲେକ ପଣ୍ଡିତେ
ମଣ୍ଡିଲେ ଯାଦବେ ନବର ସହିତେ ॥୩୦୩୦॥

ଘରେ ଘରେ ସୁବର୍ଣ୍ଣ କଳସ ବସାଇ
ବିଚିତ୍ର ପତାକା ଚିରାଳ ଉଡ଼ଇ ॥୩୦୩୧॥

ବାନ୍ଧିଲେ ଚୁତପତ୍ର ପୋତିଲେ ରମ୍ଭାବୃକ୍ଷ
ସମସ୍ତେ ଆନନ୍ଦ ଯେ ମନରେ ହରସ ଚିତ୍ତ ॥୩୦୩୨॥

ଅଙ୍ଗିରା ପରାସର ବ୍ୟାସ ମାରକଣ୍ଡ
ଚେବନ ଅଗସ୍ତି ପୁଲହ ଗାର୍ଗବ ॥୩୦୩୩॥

ରାଜରସି ବ୍ରହ୍ମରସି ଦେବରସିମାନ ଆଦି
ଯୋଗି ସନ୍ନ୍ୟାସି ମହତ ମିଳିଲେ ବେଦବାଦି ॥୩୦୩୪॥

ହରି ହଳଧର ସଉଚବନ୍ତ ହେଲେ
କନେକ ସିଂହାସନେ ବସିଲେ ପିତା କୋଳେ ॥୩୦୩୫॥

ଅଗ୍ନିକୁଣ୍ଡେ ମୁନିମାନେ ସମର୍ପିଲେ ଘୃତ
କର୍ମାଣି ଚଳାଇ ପଢ଼ିଲେ ବେଦମନ୍ତ୍ର ॥୩୦୩୬॥
ସାରିଲେ ଚାରିକର୍ମ ବସିଲେ ବେଦିର
ଉତରି ତ୍ରିଦଣ୍ଡି ପକାଇଲେ କନ୍ଧର ॥୩୦୩୭॥
ମନ୍ତ୍ରିଣ ଯଜ୍ଞସୂତ୍ର ଦେଲେ ମୁନିଗଣ
କନ୍ଧରେ ପକାଇଲେ ସେ ହରି ବଳରାମ ॥୩୦୩୮॥
ମେଖଳା ତ୍ରିଦଣ୍ଡି ପାଦରେ କଠାଉ
ମଣି ସଙ୍ଗେ ରତ୍ନହାର ଦିସଇ ଦାଉ ଦାଉ ॥୩୦୩୯॥
ଆନନ୍ଦେଂ ବସୁଦେବ ହୋଇଣ ସୁଚିବନ୍ତ
ବହୁତ ଦାନ ଦେଲେ ବ୍ରାହ୍ମଣଙ୍କ ହସ୍ତ ॥୩୦୪୦॥
ଅମୃତ ସମାନ୍ୟେ ମଣୋହି ମୁନି କଲେ
କଲ୍ୟାଣ ବାଞ୍ଛିଣ ସମସ୍ତେ ଚଳିଗଲେ ॥୩୦୪୧॥
ଯେମନ୍ତେ ସଂସ୍କାର ହୋଇଲେ ରାମହରି
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି ॥୩୦୪୨॥

## ଶ୍ରୀକୃଷ୍ଣଙ୍କ ଆଦେଶରେ ଅକ୍ରୂରଙ୍କ ହସ୍ତିନା ଭୁବନ ଯାତ୍ରା

ବଦୟନ୍ତି ଶ୍ରୀହରି ଅକ୍ରୂର ମୁଖ ଚାହିଂ
ହସ୍ତିନା ଭୁବନକୁ ଚଳି ଯାଅ ତୁହି ॥୩୦୪୩॥
କଇନ୍ତା ଦେବି ଆମ୍ଭ ମାତାଙ୍କ ବହେଣି
କି ରୁପେ ଅଛନ୍ତି ସେ ପାଞ୍ଚ ପୁତ୍ର ଘେନି ॥୩୦୪୪॥
ସ୍ୱାମିର ବିହୁନେ ସେ ଦୁଖିତେ ଛନ୍ତି ରହି
ଧୃତରାଷ୍ଟ୍ର ଅନ୍ଧ ଯେ ଦେଖି ନ ପାରଇ ॥୩୦୪୫॥
ତାହାଙ୍କର ଚରିତ ବୁଝିଣ ଆସ ତୁମ୍ଭେ ଯାଇ
ଯେମନ୍ତ ବୋଲିଣ ଆଜ୍ଞା ଦିଲେ ଭାବଗ୍ରାହି ॥୩୦୪୬॥
ଚଳିଲା ମନ୍ତ୍ରିବର ଚଢ଼ିଣ ଦିବ୍ୟଯାନ
ପ୍ରବେସ ହୋଇଲା ଯାଇ ହସ୍ତିନା ଭୁବନ ॥୩୦୪୭॥
ଦେଖିଲା ଦ୍ରିଯୋଧନ ଗାନ୍ଧାରି ଧୃତରାଷ୍ଟ
ସମସ୍ତେ ଅଛନ୍ତି ନାହାନ୍ତି ପଣ୍ଡୁ ଚାଟ ॥୩୦୪୮॥
ଯାହାକୁ ଯେଉଁରୁପେ ଅକ୍ରୂର ଉଳଗଇ
ତାହାକୁ ସମାର୍ଜିଣ ବାରତା ପୁଛଇ ॥୩୦୪୯॥
ଅକ୍ରୂର ବଚନେ ଯେ ଧୃତିରାଷ୍ଟ୍ର ବୋଲଇ
ପାଞ୍ଚ ଭାଇଙ୍କି ମୁଂ ଦେଇଛି ନବର ତୋଳାଇ ॥୩୦୫୦॥
ଦୃଷ୍ଟ ଦୃଯୋଧନ କନ୍ଦଳ ଲଗାଇଲା
ତେଣୁ ବାରୁଣାରେ ରଖିଲଇଂ ଭଲା ॥୩୦୫୧॥
ଅକ୍ରୂର ବୋଇଲା ସୁଣ ହେ ନୃପନାଥ
ଯେକା ବିର୍ଯ୍ୟେ ଜାତ ତୁମ୍ଭେ ପଣ୍ଡୁ ଧୃତିରାଷ୍ଟ୍ର ॥୩୦୫୨॥
ପଣ୍ଡୁନାସ ଗଲେ ଦଇବର ଯୋଗେଂ
ପାଞ୍ଚଗୋଟି ନନ୍ଦନ ତାଙ୍କର ଅଛନ୍ତି ଯେବେଂ ॥୩୦୫୩॥
ତୁମ୍ଭର ପାଳିବାର ସେ ଉଚିତ ଅଟଇ
ସଂସାର ଜନ ମୁଖେ ପଉରସ ଥିବ ରହି ॥୩୦୫୪॥
ଧୃତିରାଷ୍ଟ୍ରକୁ ପ୍ରବୋଧି ଚଳିଲା ଅକ୍ରୂର
ପ୍ରବେସ ହୋଇଲା ଯହିଂ ଅଛନ୍ତି କଇଂନ୍ତା କୁମର ॥୩୦୫୫॥
ଯୁଧିଷ୍ଟିର ନକୁଳ ଯେ ଭିମ ଅରଜୁନ
ସହଦେବ ସହିତ ସର୍ବେ ତେଜିଲେ ଆସନ ॥୩୦୫୬॥
ଅକ୍ରୂରଙ୍କୁ ଦେଖିଣ ସେ ଯେ କଲେକ ନମସ୍କାର
କଲ୍ୟାଣ ବାଞ୍ଛିଣ ମନ୍ତ୍ରି ବସିଲା ଆସନର ॥୩୦୫୭॥
ବଦୟନ୍ତି ଯୁଧିଷ୍ଟି ସୁଣ ହେ ମଉସା
ଯେତେକାଳେ ତୁମ୍ଭର ପାଲଟିଲା ଯସାଂ ॥୩୦୫୮॥
କଂସ ନାସ ଗଲା ତୁମ୍ଭେ ହୋଇଲ ନିଶ୍ଚିନ୍ତ
ଦେବକି ବସୁଦେବଙ୍କର କହ ହେ ବୃତାନ୍ତ ॥୩୦୫୯॥
ଅକ୍ରୂର ପ୍ରତିବାଚ ସୁଣ ହେ ଯୁଧଷ୍ଟିର
ଯେଉଂଦିନୁ ବିଭା ହୋଇଲେ କନ୍ୟାବର ॥୩୦୬୦॥
ସେହିଦିନ କନ୍ୟାବର ରହିଲେ ବନ୍ଦିଘର
ବେକରେ ଝଂଜିର ସାଙ୍କୋଳି ଗୋଡ଼ର[୨] ॥୩୦୬୧॥
ଦେବତାଙ୍କ ବାଣି ସୁଭିଲା ଅନ୍ତରିକ୍ଷ
ଦେବକିର ସୁତ ହସ୍ତେ ମରିବୁରେ କଂସ ॥୩୦୬୨॥
ସୁଣିଣ କଂସାସୁର କୋପିତ ହୋଇଲା
ହସ୍ତ ପାଦ ବାନ୍ଧିଣ ବନ୍ଦିରେ ରଖିଲା ॥୩୦୬୩॥
ହସ୍ତରେ ମଙ୍ଗଳସୁତ୍ର ମକୁଟ ସିରର
ସେହିଦିନୁ କନ୍ୟାବର ରହିଲେ ବନ୍ଦିଘର ॥୩୦୬୪॥
ଛଡ଼ଗୋଟି ନନ୍ଦନ ଦେବକି ପ୍ରସବିଲା
ଜଣାଇଲେ ଡଗରେ କଂସ କଚାଡ଼ିଲା ॥୩୦୬୫॥
ସପ୍ତମ ଗର୍ଭରେ ଜନ୍ମ ହୋଇଲା ଦୁହିତି
ହତ୍ୟାକୁ ନଡରି ତାକୁ ନାସିଲା ଭୁଜପତି ॥୩୦୬୬॥
ଅଷ୍ଟମ ଗର୍ଭେ ପୁଣି ହୋଇଲା କୁମର
ରାତ୍ରେ ବସୁଦେବ ଛାଡ଼ି ଅଇଲା ଗୋପପୁର ॥୩୦୬୭॥
କେତେ ଆପଦରୁ ସେ ତରିଲା ବାଳକ
ମାରିବ ବୋଲି ମଥୁରାକୁ ନେଲା କଂସ ॥୩୦୬୮॥
ମାରିବ ବୋଲି ଜଗତିରୁ ପଡ଼ିଲାକ ଡେଇଂ
ଭୁମିରେ ପଡ଼ି ପ୍ରାଣ ହାରିଲା ଭୁଜସାଇଂ ॥୩୦୬୯॥

୧ । ଗ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୨ । ଖ ଓ ଗ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ରୋହିଣି ଦେବି ପୁତ୍ରନାମ ସଂକର୍ଷଣ
ବଳବନ୍ତ ପଣେ ସମ ନାହିଁ ତ୍ରୈଲୋକ୍ୟେଣ ॥୩୦୭୦॥
ଯେତେ କାଳେ ପୁତ୍ରେ ଉଦିତ ହୋଇଲେ
ବେଦୋକ୍ତ ବିଧିରେ ଯଥାର୍ଥ କର୍ମହିଁ ସାରିଲେ ॥୩୦୭୧॥
ତୁମ୍ଭଠାକୁ ମୋତେ ପେସିଲେ ଚକ୍ରଧର
ତୁମ୍ଭର କୁସଳ ମୁଂ କହିବି ତାଙ୍କଠାର ॥୩୦୭୨॥
ଯୁଧିଷ୍ଠି ବୋଇଲେ ପିତା କି କହିବି ମୁହିଂ
ଯେଉଁଦିନୁ ନାସ ଗଲେ ପଣ୍ଡୁ ନୃପସାଇଂ ॥୩୦୭୩॥
ଅରକ୍ଷ ହୋଇଲୁ ଆମ୍ଭେ ପାଞ୍ଚ ଗୋଟି ଭାଇ
କୋଇନ୍ତା ଜନନି ସେ ଆମ୍ଭଙ୍କୁ ପ୍ରତିପାଳୁଥାଇ ॥୩୦୭୪॥
ପୁତ୍ରସମ କରି ସେ ପାଳୁଥିଲା ଧୃତିରାଷ୍ଟ୍ର
ଯେଣୁ ବଢ଼ିଲେ ତାର ଅନେଶ୍ୱତ ପୁତ୍ର ॥୩୦୭୫॥
ଦୃଷ୍ଟପଣ ଆଚରି କନ୍ଦଳ ଲଗାଇଲେ
ତାହାଙ୍କର କଥା ଭିମ ନ ସହିଲା ତିଳେ ॥୩୦୭୬॥
ଧୃତିରାଷ୍ଟ୍ର ଆମ୍ଭଙ୍କୁ ଦିଲା ଭିନ୍ନେ ଭିନ୍ନେ କରି
ରହିଅଛୁଂ ଆସି ଆମ୍ଭେ ବାରୁଣା ନଗରି ॥୩୦୭୭॥
ଆବର ଦେଇଛନ୍ତି ଜଇନ୍ତିନା ଗ୍ରାମ
ବେନି ଗ୍ରାମେ ମୁହିଂ ହୋଇଅଛି ରାଜନ ॥୩୦୭୮॥
ଯେମନ୍ତ ବୋଲିଣ ଯେ ବୋଇଲେ ଯୁଧିଷ୍ଟିର
କଇନ୍ତା ଦେବି ଆସି ମିଳିଲେ ସନିଧ୍ୟର ॥୩୦୭୯॥
କଣ୍ଠ ଗଦ ଗଦ ଅଶ୍ରୁ ବହଇ ଲୋଚନ
ଆଦି ଅନ୍ତ କଥା ସବୁ କହିଲେକ ପୁଣ ॥୩୦୮୦॥

## ଅକ୍ରୂରଙ୍କ ସହିତ ଅର୍ଜୁନଙ୍କର ମଥୁରାପୁର ଯାତ୍ରା

ମଥୁରାକୁ ଅକୃର ଯେ ହୋଇଲା ଆଗମନ
ଯୁଧିଷ୍ଠି ବୋଇଲେ ଯାଅରେ ଅର୍ଜୁନ ॥୩୦୮୧॥
ଶ୍ରୀହରିଙ୍କି ଦେଖା କରି ଆସ ତୁହି
ସହଜେ ଆମ୍ଭର ସେ ମାଉସି ପୁଅ ଭାଇ ॥୩୦୮୨॥
ଯୁଧିଷ୍ଠିଙ୍କ ଆଜ୍ଞାରେ ଅର୍ଜୁନ ଚଳିଗଲା
ଅର୍ଜୁନକୁ ଘେନି ଅକୃର ମଥୁରାରେ ହେଲା ॥୩୦୮୩॥
ଆଗେଂ ବଳରାମଙ୍କୁ ଯେ ପାଥ ଭଳଗିଲା
କଲ୍ୟାଣ ବାଞ୍ଛିଲେ ରୋହିଣିର ବଳା ॥୩୦୮୪॥
ଦୁତିୟେ ଶ୍ରୀହରିଙ୍କି କଲା ନମସ୍କାର
ବାଞ୍ଚା ପ୍ରାପତ ହେଉ ବୋଲି ବୋଇଲେ ଚକ୍ରଧର ॥୩୦୮୫॥
ଅର୍ଜୁନକୁ ଗୋବିନ୍ଦ କୋଳରେ ବସାଇଲେ
ଆଲିଙ୍ଗନ କରିଣ କୁସଳ ପଚାରିଲେ ॥୩୦୮୬॥
ତୁ ମୋହର ଅର୍ଦ୍ଧ ଅଙ୍ଗ ସୁଣରେ ସର୍ବସାଚି
କେତେ ଦୁଖୁଂ ବ୍ରତିଅଛ ପାଞ୍ଚଭାଇ ଗୋଟିଂ ॥୩୦୮୭॥
ଅର୍ଜୁନ ବୋଇଲା ହରି ତବ ପରସାଦେ
ସମସ୍ତେ ବ୍ରତିଣ ଅଛନ୍ତି ଅପ୍ରମାଦେ ॥୩୦୮୮॥
କେବଳ ଅସହଣି ରାଜା ଦୁର୍ଯ୍ୟୋଧନ
କର୍ଣ୍ଣ ସହିତେ ସେ ଦୁଷ୍ଟ ଦୁସାସନ ॥୩୦୮୯॥
ଗାନ୍ଧାରିକି ନ ଦିସଇ ଧୃତିରାଷ୍ଟ୍ର ଅଟଇ ଅନ୍ଧ
ଗଙ୍ଗାର ନନ୍ଦନ ଭିସ୍ମ କରନ୍ତି ଆହାଲାଦ ॥୩୦୯୦॥
ଯେମନ୍ତ ବୋଲନ୍ତେ ମିଳିଲେ ବସୁଦେବ
ଦେଖି ସିରେ କର ଦିଲାକ ପାଣ୍ଡବ ॥୩୦୯୧॥
ବସୁଦେବ ପାଥକୁ କଲେକ କଲ୍ୟାଣ
ସେଠାରେ ପ୍ରବେସ ହୋଇଲେ ଉଗ୍ରସେନ ॥୩୦୯୨॥
ଅର୍ଜୁନକୁ ଦେଖି ବୋଇଲେ ଏ କାହାର ତନଇ
ଅକୃର ବୋଇଲା ଯେ ତୋର ଝିୟାଣି ଅଟଇ ॥୩୦୯୩॥
ଯେବଣ ଦୁହିତାକୁ ମେଲି ଦେଲୁ ତୁ ଜଳର
ଭାସିଯାଇ ଲାଗିଲା ସେ କୁନ୍ତଭୋଜ କଟକର ॥୩୦୯୪॥
ପାଳିଣ ନୃପତି ଯେ କୋଇନ୍ତା ନାମ ଦିଲା
ପ୍ରଦାନ କରନ୍ତେ ତାକୁ ପଣ୍ଡୁ ବିଭା ହେଲା ॥୩୦୯୫॥
ନୃପତିକି ବିଭା ହୋଇ ହୋଇଲା ସୁଦ୍ଧଚେତା
ଦୃଭାସାଙ୍କ ପ୍ରସାଦେ ତିନିପୁତ୍ର ଜନ୍ମାଇ କଇଂତା ॥୩୦୯୬॥
ଯୁଧିଷ୍ଠି ଭିମ ଅର୍ଜୁନ ଯେହାଙ୍କର ନାମ
ସେ ବେନି ଜ୍ୟେଷ୍ଟ ଯେହୁ ଅଟଇ ସବାସାନ ॥୩୦୯୭॥
ମାଦ୍ରି ବୋଲି ନାମ ସେ ମାହେନ୍ଦ୍ରସେନ ବାଳି
ପଣ୍ଡୁଙ୍କର କନେଷ୍ଟ ଭାରିଯା ଅଟଇ ସୁଦ୍ଧସାଳି ॥୩୦୯୮॥
ତାହାର ଗର୍ଭରୁଂ ବେନି କୁମର ଉତପନ
ନକୁଳ ସହଦେବ ସେ ଦୁହିଙ୍କର ନାମ ॥୩୦୯୯॥
ମାଦ୍ରି ନାସଗଲେ ଯେ ପୁତ୍ରକୁ ପ୍ରସବିଣ
କଇନ୍ତା ପାଳୁଛନ୍ତି ପୁତ୍ରଙ୍କୁ ଯେକସମ ॥୩୧୦୦॥
ସୁଣିଣ ଉଗ୍ରସେନ ଉଲ୍ଲସିତ କାୟେ
ନୟନେ ଦେଖିଲି ମୁଂ ଦୁହିତା ତନୟେ ॥୩୧୦୧॥
କୋଳରେ ଧରି ଚୁମ୍ବ ଦିଲାକ ଦଣ୍ଡଧାରି
ଶ୍ରୀହରି ଅର୍ଜୁନ ଦୁହେଂ ଦିସନ୍ତି ଯେକସରି ॥୩୧୦୨॥

୧ । ଖ ଓ ଗ ପୋଥିରେ ଏହା ପରେ ଚାରି ଧାଡ଼ି ଅଧିକ ଅଛି -
ନମସ୍କାର ମୋର କଇନ୍ତା ଜନନୀ କି
ଯେଣୁ ମାତା ବହେଣୀ ଅଟନ୍ତି ଦେବୀକୁନ୍ତୀ
ଯୁଧିଷ୍ଠିଙ୍କି ମୋହାର କୋଟିୟେ ନମସ୍କାର
ନିରଞ୍ଜନ ସମାନେ ସେ ମୋର ଠାକୁର

ମଥୁରା ନରନାରି ଦେଖିଣ ଅର୍ଜୁନ
ବୋଇଲେ ଶ୍ରୀକୃଷ୍ଣ କି ହୋଇଲେ ରୂପ ଭିନ୍ନ ॥୩୧୦୩॥
କେ ବୋଲଇ ଯେକା କୃଷ୍ଣ ହୋଇଲେ ବେନିରୂପ
କେ ବୋଲଇ ଗୋ କହୁଅଛି ମିଛ ॥୩୧୦୪॥
ପ୍ରତେ ନକଲୁ ଆସ ମୁଁ ତୋତେ ଦେଖାଇବିଂ ପୁଣି
ଯେତେ ବୋଲି ଧରାଧରି ହୋଇଯାନ୍ତି ବେନି ॥୩୧୦୫॥
ବେନି ରୂପ ଦେଖିଣ ହୋଅନ୍ତି ଅଚାଭୁଆ
କେ ବୋଲଇ କୃଷ୍ଣ କାଲି ହୋଇଲେନି ନୁଆ ॥୩୧୦୬॥
ଜାଣିବାର ଲୋକେ ବୋଇଲେ ଯେକଥା ନୋହଇ
ହରି ଅର୍ଜୁନ ଦୁହେଂ ଯେ ମାଉସି ପୁଅ ଭାଇ ॥୩୧୦୭॥
କେହୁ ବୋଲଇ ଯେହୁ ବେନି ଅବତାର
ଜନ୍ମିଣ ଅଛନ୍ତି ସେ ନାସିବେ ପୃଥିଭାର[1] ॥୩୧୦୮॥
ଯେମନ୍ତେ ନରନାରି କରନ୍ତି ବିଚାର
ଅର୍ଜୁନଙ୍କୁ ଘେନିଣ ଗମିଲେ ଚକ୍ରଧର ॥୩୧୦୯॥
ସୁଗନ୍ଧ ତଇଳ ବୋଲି କଲେକ ସ୍ନାହାନ
ସୌଚବନ୍ତ ବିଧି କର୍ମ ସାରିଲେ ବେନିଜନ ॥୩୧୧୦॥
ହରି ହଳଧର ଆବର ଅର୍ଜୁନ
ଦେବକି ପରସନ୍ତି ଭୁଜଂନ୍ତି ସାଳି ଅନ୍ନ ॥୩୧୧୧॥
ଆଞ୍ଚୋବନ ସାରିଣ ଯେ ତାମ୍ବୁଳ ଭୁଜିଂଲେ
ହିରଣ୍ୟକ ପ୍ରବାଳ ପଲଙ୍କେ ପହୁଡ଼ିଲେ ॥୩୧୧୨॥
ବେନି ପାସେ ପହୁଡ଼ିଲେ କାହ୍ନୁ ସଂକର୍ଷଣ
ମଧ୍ୟରେ ସୋଇଲେ ଯେ କଇନ୍ତାନନ୍ଦନ ॥୩୧୧୩॥
ଧବଳ କମଳ ଶ୍ରୋଣିତ ରୂପ ତିନି
ଭାରା ଉଶ୍ୱାସିତେ ସେ ଜନ୍ମିଲେ ମେଦନି ॥୩୧୧୪॥

## ଅର୍ଜୁନଙ୍କ ପୂର୍ବଜନ୍ମ ବୃତ୍ତାନ୍ତ

ସଦାସିବ ମୁଖ ଚାହିଂ ପୁଛନ୍ତି ଗଉରି
ଅପୂର୍ବ କଥାଯେତ କହିଲ ତ୍ରିପୁରାରି ॥୩୧୧୫॥
ହରି ଅର୍ଜୁନ ତ ଯେକ ସରି ହୋଇଲେ
କିପାଇଂ ଅର୍ଜୁନଙ୍କୁ ଶ୍ରୀହରି ରୂପ ଦେଲେ ॥୩୧୧୬॥
କହନ୍ତି ସଦାସିବ ସୁଣଗୋ ପ୍ରାଣସହି
ନିରଜଂନ ବୋଲି ମନୁ ଯେକ ହୋଇ ॥୩୧୧୭॥
ନରଧିପତକ[2] ବୋଲି ସତ୍ୟ ଯୁଗ ନାମ
ଦେବାସୁର ବୋଲିଣ ସୁରାଭାଣ୍ଡରୁ ଜନମ ॥୩୧୧୮॥
ବଳବନ୍ତ ପଣେ ସାଧିଲା ତିନିପୁର
କାହାରି ହସ୍ତେ ଦତ୍ୟ ନୋହିଲା ପ୍ରହାର ॥୩୧୧୯॥

୧ । ଖ ପୋଥି- ମହୀଭାର
୨ । ଖ ଓ ଗ ପୋଥି - ନିଧିପତନ

ସୁଧର୍ମାସଭା ଛାଡ଼ିଣ ଗଲା ବଜ୍ରଧାରି
ଦସ ଦିଗପାଳେ ଗଲେ ଅପସରି ॥୩୧୨୦॥
ଯସୋବନ୍ତି ପୁର ଛାଡ଼ିଲା ବେଦବର
ଆମ୍ଭେ ଯାଇ ଲୁଚିଲୁ ପାତାଳ ବିମ୍ବର ॥୩୧୨୧॥
ଦୈତ୍ୟଙ୍କୁ ଉଗାଳନ୍ତା କେହି ଆଉ ନାହିଂ
ଯେକାଯେଂ ତିନିପୁର ଭ୍ରମଣ କରଇ ॥୩୧୨୨॥
ଅରକ୍ଷ ହୋଇଲା ଯହୁଂ ସର୍ଜନା ସଂସାର
ନୋହିଲେ ଆତଯାତ ଚନ୍ଦ୍ର ଦିବାକର ॥୩୧୨୩॥
ଦସ ଦିଗପାଳେ ଯେ ପଳାଇଲେ ଛାଡ଼ି
ବାର ବିଶ୍ୱଦେବା ଯେ ରହିଲେ ଅପସରି ॥୩୧୨୪॥
ଜାଣିଲେ ଶ୍ରୀହରି ଉଠିଲେ ସଯ୍ୟାରୁଂ
ମହିରେ ବିଜେ କଲେ ଜଗତ ଜନଗୁରୁ ॥୩୧୨୫॥
ଦେଖିଲେ ଜନରବ ନାହିଂ ମେଦନିର
ସମସ୍ତ ନାସିଲାଣି ଦଇତ ଦେବାସୁର ॥୩୧୨୬॥
ଗୋବିନ୍ଦେ ବିଚାରିଲେ ଭେଟିବି ତାକୁ କାହିଂ
ଭ୍ରମନ୍ତେ ମହିରେ ଦତ୍ୟଙ୍କୁ ଭେଟିଲେ ଭାବଗ୍ରାହି ॥୩୧୨୭॥
ବିଂଝମାଳ ପର୍ବତ ମନ୍ଦର ଗିରିଠାର
ଦେବାସୁରଙ୍କୁ ଯାଇ ଭେଟିଲେ ଚକ୍ରଧର ॥୩୧୨୮॥
ଦ୍ୱିତିୟ ମନ୍ଦରଠାରୁ ଅଧିକ ରୂପ ତାରଦିସି
ତେଡ଼େ ବନ ଗୋଟି ଯେ ଦଇତ ଅଛି ଗ୍ରାସି ॥୩୧୨୯॥
ଶ୍ରୀହରି ଡାକ ଦିଲେ ରେ ଦଇତ ନାସଗଲୁ
ସଚରାଚର ସୃଷ୍ଟି ଯେଣୁ ତୁ ନାସକଲୁ ॥୩୧୩୦॥
ଯେତେ ବୋଲି ଗୋବିନ୍ଦ ଧଇଲେ ସୁଦ୍ରିସେନ
ଦଇତର ଉପରେ ପ୍ରହାରିଲେ ପୁଣ ॥୩୧୩୧॥
ନ ଭେଦି ଉପୁଡ଼ିଣ ପଡ଼ିଲାକ ଚକ୍ର
ଯେସନେ ଫୁଲମଣ୍ଡା ମାରନ୍ତି ବାଳେକ ॥୩୧୩୨॥
ଦେଖିଣ ଦେବାସୁର ଛାଡ଼ିଲା ଯେକ ହାଇ
ତିନି ଯୋଜନରେ ସେ ପଡ଼ିଲେ ଭାବଗ୍ରାହି ॥୩୧୩୩॥
ସଚେତନ ହୋଇଣ ତହୁଂ ଉଠିଲେ ଭଗବାନ
ନେଉଟି ଦେବାସୁର ସଙ୍ଗତେ କଲେ ରଣ ॥୩୧୩୪॥
ତିନି ଭୁବନରେ ଲୋକେ ନ ରହିଲେ
ଦାନବ ସଙ୍ଗତେ ଘୋର ଯୁଦ୍ଧ କଲେ[1] ॥୩୧୩୫॥
ଦଇତ୍ୟ ଦଇତାରିଙ୍କ ସମର ଘୋର ହେଲା
ଚାରି ସହସ୍ର ବରସ ତହିଂ ବହିଗଲା ॥୩୧୩୬॥
ଦାନବଙ୍କୁ ଜିଣି ସେ ନ ପାରିଲେ ହରି
ବେଳଙ୍କୁ ବେଳ ଦତ୍ୟ ଗର୍ଜନ ନାଦ କରି ॥୩୧୩୭॥

୧ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ବିମୁଖ ହୋଇ ହରି ସଂଗ୍ରାମୁଂ ଘୁଞ୍ଚଗଲେ
ନିଳସୁନ୍ଦର ବଟମୁଳେ ଯାଇଣ ବସିଲେ ॥୩୧୩୮॥
ମଉନେ ଯହୁଂ ସେ ବସିଲେ ଚକାଡୋଳା
ମନରୁ ୟେକ ପୁରୁଷେକ ଜାତ ହେଲା ॥୩୧୩୯॥
କାମଦେବ ସମାନେ ଅଛଇ ଉଭାହୋଇ
ବୋଇଲା କି କରିବିଂ କହ ହେ ଭାବଗ୍ରାହି ॥୩୧୪୦॥
ବଦୟନ୍ତି ଶ୍ରୀହରି ଯାଅରେ ନନ୍ଦନ
ହେଳେ ଦେବାସୁରକୁ କର ତୁ ନିଧନ ॥୩୧୪୧॥
ବାସୁଦେବ ବଚନେ ଚଳିଲା କୁମର
ଦାନବର ସଙ୍ଗେ କଲା ସମର ମହାଘୋର ॥୩୧୪୨॥
ସମର କରନ୍ତେ ସତର ବରସ ଗଲା ବହି
ଦେବାସୁରକୁ ନାସି କୁମର ଲେଉଟଇ ॥୩୧୪୩॥
ନିଳସୁନ୍ଦର ବଟଠାରେ ପ୍ରବେସ ହୋଇଲା
ଗୋବିନ୍ଦ ଚରଣ ତଳେ ନମସ୍କାର କଲା ॥୩୧୪୪॥
କଲ୍ୟାଣ ବାଞ୍ଛିଲେ ଯେ ଜଗତ ଆଧିପୁ
ବୋଇଲେ ଅଜୟେ ହେଉ ତୋର ବପୁ ॥୩୧୪୫॥
ତୁ ଯେଣୁ ଅଙ୍ଗୁ ମୋର ହୋଇଲୁ ଅବତାର
ଅଜଙ୍ଗ[1] ସଦାସିବ ହୋଇଲା ନାମତୋର ॥୩୧୪୬॥
ତ୍ରେତୟା ଯୁଗେ ତୋର ନାମ ହୋଇବ ଲକ୍ଷ୍ମଣ
ଦ୍ୱାପରେ ହୋଇବୁ ତୁ ପାଣ୍ଡବ ଅର୍ଜୁନ ॥୩୧୪୭॥
ଯେଣୁ ଦାନବ କୁଳ ନାସି ରଖିଲୁ ଜଗତ
ତେଣୁ ତୋର ରଥରେ ମୁଂ ହୋଇବି ବାହୁକ ॥୩୧୪୮॥
ତୋତେ ଘେନି ଉଶ୍ୱାସ କରିବିଂ ମହିଭାର
ୟେମନ୍ତ ବୋଲିଣ ତାକୁ ବୋଇଲେ ଚକ୍ରଧର ॥୩୧୪୯॥
ବଦୟନ୍ତି ସଦାସିବ ପାର୍ବତି ମୁଖଚାହିଂ
ଅର୍ଜୁନର ଆଦି ଜନ୍ମ ତୋତେ କହିଲଇଂ ॥୩୧୫୦॥
ହରି ଅର୍ଜୁନ ସେ ନୋହନ୍ତି ଭିନ୍ନ କାୟେ
ସାରୋଳା ଦାସ କବି ସରଣ ତାଙ୍କ ପାୟେ ॥୩୧୫୧॥

## ଜରାସନ୍ଧର ମଥୁରା ଆକ୍ରମଣ ଓ ପରାଜୟ

କହନ୍ତି ସଦାସିବ ସୁଣଗୋ ଗଉରି
ମଥୁରା ପୁରେ ଅଛନ୍ତି ଅର୍ଜୁନ ରାମହରି ॥୩୧୫୨॥
ସଭାକରି ବସି ଅଛନ୍ତି ରାଜା ଉଗ୍ରସେନ
ସାତବଂସ ଯାଦବ ଅଛନ୍ତି ଉଭାରିଣ ॥୩୧୫୩॥
ଡଗର ଜଣାଇଲା ବେନିକର ଯୋଡ଼ି
ସାବଧାନେ ହୋଇଣ ତୁମ୍ଭେ ସୁଣ ରାମହରି ॥୩୧୫୪॥

୧ । ଖ ଓ ଗ ପୋଥି – ଅନଙ୍ଗ

ପଶ୍ଚିମ ଦିଗରେ ବୁଲୁଣ ଥିଲି ମୁହିଂ
ୟେକଦିନେ ମଗଧ ଦେସରେ ଥିଲି ରହି ॥୩୧୫୫॥
ଜାରାସନ୍ଧ ବୋଲିଣ ତହିଂର ନୃପବର
ହେତି ପ୍ରହେତି ବୋଲି ବେନି ଦୁହିତା ତାହାର ॥୩୧୫୬॥
ଦୁହିଙ୍କି ପ୍ରଦାନ କରି କଂସକୁ ଦେଇଥିଲା
କଂସ ମଲା ବେନି ନାରି ହୋଇଲେ ବିଧବା ॥୩୧୫୭॥
କାନ୍ଦିଣ କହିଲେ ସେ ଜାରାସନ୍ଧ ଆଗେଂ
ସୁଣିଣ କୋପିତ ସେ ହୋଇଲା ବୈରାଗେଂ[1] ॥୩୧୫୮॥
ଜୁଆଇଂ କି ନାସିଲେଂ ତୋର ଗୋପାଳେଂ ବଳିଆର
ତୁହି ଥାଉ ଥାଉଂ ଆମ୍ଭେ ହୋଇଲୁ ଅସାର[2] ॥୩୧୫୯॥
ଦେବକି ସୁତ ଯୋଗୁଂ ହୋଇଲୁ ବିଧବା[3]
ଏତେ କାଳେ ଦଇବ ଯେ ଆମ୍ଭକୁ ବାମ ହେଲା[4] ॥୩୧୬୦॥
ୟେମନ୍ତ କହି ସୋକ କଲେକ ଦୁଲଣି
ସୁଣିଣ ଜାରାସନ୍ଧ ଉଠିଲା ସିର ଝୁଣିଂ ॥୩୧୬୧॥
ବୋଇଲା ୟେଡ଼େ ଭଳି ହୋଇଲେ ଗୋପାଳ
ରଣବାହୁ ଜୁଆଇଂ କି ନାସିଲେ ମୋହର ॥୩୧୬୨॥
ସାଜରେ ମୋହର ସନ୍ୟ ଅଷ୍ଟାଦସ କ୍ଷେଉଣିଂ
ମଥୁରା ଗୋପପୁର ଭାଜିଂବିଂ ୟେହିକ୍ଷଣି ॥୩୧୬୩॥
ସନ୍ୟକୁ ଆଜ୍ଞାଦିଲା ଯାଅସି ସିଗ୍ର ହୋଇ
ମାର ଗଉଡ଼ଙ୍କୁ ଦିଅସି ଘଉଡ଼ାଇ ॥୩୧୬୪॥
ଆକାସ ପ୍ରମାଣେ ସେ ସାଜିଲେ ସଇନି
ବାହାର ହୋଇଲେ ଥାଟ ଅଷ୍ଟାଦସ କ୍ଷେଉଣିଂ ॥୩୧୬୫॥
ଗନ୍ଧର୍ବ ନଦି କୁଳେ କଲେ କଟକାଇ
କହିଲି ତୁମ୍ଭ ଆଗେ ମୋହର ଦୋସନାହିଂ ॥୩୧୬୬॥
ସୁଣିଣ ତରସ୍ତ ହୋଇଲେ ଯାଦବେ
ବୋଇଲେ ନିଶ୍ଚେ ଆମ୍ଭଙ୍କୁ ନାସିବ ଜାରାସନ୍ଧେ ॥୩୧୬୭॥
ଶ୍ରୀହରି ବୋଇଲେ ସୁଣ ହେ ଉଗ୍ରସେନ
ତୋହର ଥାଟ ସାଜ କରିବା ଯାଇ ରଣ ॥୩୧୬୮॥
ସୁଣିଣ ଘୋସଣ ଦିଲାଇଲା ନୃପମଣିଂ
ସଜ ହୋଇଲେ ଯାଦବେ ଯେ ଯାହା ସସ୍ର ଘେନି ॥୩୧୬୯॥
ବେନି ସନ୍ୟ ଯାଇଣ ସେ ହୋଇଲେ ୟେକମେଳ
ଲାଗିଲା ହଣାହଣି ହୋଇଲା ମହାଗୋଳ ॥୩୧୭୦॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ
୨ । ଖ ପୋଥି – ଜୁଆଇଂ ତୋର ମଲା
୩ । ଖ ପୋଥି – ଆମ୍ଭଙ୍କୁ ବିଧବା ଯେ କଲା
୪ । ଖ ପୋଥିରେ ଏହି ଧାଡ଼ି ନାହିଁ

ଯାଦବେ ବଳିଆର ଶ୍ରୀହରି ଆଜ୍ଞାରେ
ଜାରାସନ୍ଧ ସନ୍ୟକୁ ଯେ ହେଳେଣ ଜିଣିଲେ ॥୩୧୭୧॥
ଜାରାସନ୍ଧ ଆଗରେ ଚାର ସେ ଜଣାଇଲେ
ତୁମ୍ଭର ସନ୍ୟକୁ ଯାଦବେ ନାସିଲେ ॥୩୧୭୨॥
ଥୋକାୟେ ଅଛନ୍ତି ସେ ଗତପ୍ରାଣ ପାଇ
ସୁଣିଣ କୋପ କଲା ମଗଧ ଦେସ ସାଇଂ ॥୩୧୭୩॥
ରହୁବରେ ବସିଣ ଥାଠ ଫେରାଇଲା
ରଣ କୁହାଟରେ ସେ ଯେ ବ୍ରହ୍ମାଣ୍ଡ କମ୍ପାଇଲା ॥୩୧୭୪॥
ଆକାସ ଭାଜିଂଣ କି ପଡ଼ିଲା ମେଦନିର
ସୁଣିଣ ତରସ୍ତ ଯେ ହୋଇଲେ ସୁରେଶ୍ୱର ॥୩୧୭୫॥
ବିଚାରିଲେ ନିକି ଜାରା ସ୍ୱର୍ଗକୁ ଦିୟେ ଧାଡ଼ି
ନ ଯିବା ନାସ ଆମ୍ଭେ ପଳାଇବା ଛାଡ଼ି ॥୩୧୭୬॥
ୟେମନ୍ତ ବୋଲିଣ ସେ ଭାଳନ୍ତି ଦେବଗଣ
ସୁଣଗୋ ସାକାମ୍ଭେରି ବୋଲନ୍ତି ତ୍ରିଲୋଚନ ॥୩୧୭୭॥
ସନ୍ୟଘେନି ମଥୁରାରେ ମିଳିଲା ଜାରାସନ୍ଧ[୧]
ଦେଖିଣ ସଜ ହେଲେ ଶ୍ରୀରାମ ଗୋବିନ୍ଦ[୨] ॥୩୧୭୮॥
ଯାଦବ ବଳ ସସ୍ତ୍ର ଘେନିଣ ଧାଇଂଲେ
ସଙ୍ଗ୍ରାମର ମଧ୍ୟେ ବେନି ସନ୍ୟ ହାବୋଡ଼ିଲେ ॥୩୧୭୯॥
ଫରିକାର ଗୁଞ୍ଜର ମାହୁନ୍ତ ସଙ୍ଗେ ସେନାପତି
ଲାଗିଲା ରଣଗୋଳ ବାରଣ ନୋହନ୍ତି ॥୩୧୮୦॥
ଛିନଛତ୍ର ହୋଇ ସନ୍ୟ ପଡୁଛନ୍ତି ତହିଂ[୩]
ଯୋଜନେ ଆୟତନେ ରୋଧିର ନଦି ବହି[୪]
ସୁଣଗୋ ଓମା ବୋଲି ତ୍ରିଲୋଚନ କହି ॥୩୧୮୧॥
ଆପଣେ ଜରାସନ୍ଧ  ହୋଇଲା ପ୍ରଜ୍ୱଳିତ
ୟେକା ନାରାଜ କେ ନାସଇ କୋଟିଏ ରଥ ॥୩୧୮୨॥
ପ୍ରଚଣ୍ଡ ଅଗ୍ନି ଜାଣି ନାରାଜଙ୍କ ଜ୍ୟୋତି
ଯାଦବ ସନ୍ୟକୁ ପକାଇଲା ମନ୍ଥି ॥୩୧୮୩॥

---

୧ । ଖ ଓ ଗ ପୋଥି – ସନ୍ୟ ଘେନି ଜାରାସନ୍ଧ ମିଳିଲା ମଥୁରାର
୨ । ଖ ଓ ଗ ପୋଥି – ଶୁଣିଣ ସଜ ହେଲେ ହରି ହଳଧର
୩ । ଖ ପୋଥିରେ ଏହି ଚାରି ଧାଡ଼ି ନାହିଁ
୪ । ଖ ପୋଥିରେ ଏହା ଉପରେ ଅଧିକ ପାଞ୍ଚ ଧାଡ଼ି ଅଛି –
ଜାରାସନ୍ଧ ସନ୍ୟକୁ ସେ ପଥରେ ଭେଟିଲେ
ରାଉତକୁ ରାଉଥ ରଥୀଙ୍କ ସଙ୍ଗେ ରଥୀ
ଫରିକାର ସଙ୍ଗେ ଫରିକାର ସେ ଯୁଝନ୍ତି
ମାଲଙ୍କର ତୁଳେ ମାଲ ସେ ଯୁଝନ୍ତି
ଲାଗିଲା ରଣ ଗୋଳ ବାରିଣ ନୋହନ୍ତି

ଦେଖିଣ କୋପିତ ହୋଇଲେ ହଳଧର
କରେ ଧରି ଧାଇଂଲେ ସୌନନ୍ଦ ମୁସଳ ॥୩୧୮୪॥
ପିଟିଲେ ଜାରାସନ୍ଧର ରଥର ଉପର
ମସି ଗୁଣ୍ଡା ହୋଇ ଯେ ପଡ଼ିଲା ଭୁମିର ॥୩୧୮୫॥
ପାଦଗତ ହୋଇ ପଡ଼ି ନନ୍ଦ ଭୋପାଳ ନନ୍ଦନ
ମସ୍ତକେ ହଳ ନେଇ ପିଟିଲେ ବଳରାମ ॥୩୧୮୬॥
ମୁଷଳ ଘାତେ ଜାରାସନ୍ଧ ଘୁମାଇଂ ପଡ଼ିଲା
ନଉତନ ରଥ ଆଣି ସାରଥି ଯୋଗାଇଲା ॥୩୧୮୭॥
ରହୁବର ଉପରେ ବସିଲା ମହାବଳି
ସାରଥି ବାହେ ରଥ ଧିରେଣ ଗଲା ଚଳି[୧] ॥୩୧୮୮॥
ଯହୁଂ ସେ ଜାରାସନ୍ଧ ଅପସରି ଗଲା
ନିରେଖ ହୋଇଣ ସନ୍ୟ ପଳାଇଲେ ଭଲା ॥୩୧୮୯॥
ଯାଦବେ ଗୋଡ଼ାଇଲେ ପଳାଇଲେ ଦୃଷ୍ଟବଳ
ରଣ ଜୟେ କଲେ ସେ ହରି ହଳଧର ॥୩୧୯୦॥
ଭଗନସ୍ତ ହୋଇ ଜାରା ମିଳିଲା ଭୁବନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୩୧୯୧॥
ଜାରାସନ୍ଧର ନାସ ଗଲେ ବହୁତ ସନ୍ୟବଳ
ସାତ କ୍ଷେଉଣି ପାଦାନ୍ତି ରାଉତ ତିନି ଯେ ସାଗର ॥୩୧୯୨॥
ବହୁତ ବାଜାକାରି ତିନି ଯେ କୋଟି ରଥ
କୋଟିୟେ ପାରିଦଣ୍ଡ ଚାରି ମଭୁତ ଅଶ୍ୱ ॥୩୧୯୩॥
ଆଜ୍ଞାଦେଲା ନୃପତି ଯାଅରେ ଯମନ[୨]
ମାରିବୁ ଯାଦବଙ୍କୁ ହରି ଯେ ବଳରାମ ॥୩୧୯୪॥
ଆଜ୍ଞା ପାଇ କାଳଯମନ ବିର ଉଠି
ସଙ୍ଗତେ ସନ୍ୟ ଘେନି ପଞ୍ଚାଉନ କୋଟି ॥୩୧୯୫॥
ଯମନ ବଳ ପାଦଘାତେ କମ୍ପିଲା ମହିଆଳି
ରେଣୁ ଉଡ଼ନ୍ତେ ଯେ ଅଦୃସ୍ୟ ଅଶ୍ୱମାଳି ॥୩୧୯୬॥
ଚାରି ଯୋଜନ ମାଡ଼ି ଯେ ରହିଲେକ ସନ୍ୟ
ବନ ଗିରି ପର୍ବତ ଭାଜିଂ ହୋଇଲାକ ଚୁର୍ଣ୍ଣ ॥୩୧୯୭॥

---

୧ । ଖ ଓ ଗ ପୋଥି – ସାରଥି ବାହେ ଯାନ ଜାରା ଗଲା ହାରି
୨ । ଖ ଓ ଗ ପୋଥିରେ ଏହା ଉପରେ ଅଧିକ ୬ ଧାଡ଼ି ଅଛି –
ୟେତେକ ମରାଇ ଜାରାସନ୍ଧ ମନେ ଭାଳି
କାଳଯମନ ସେନାପତି ଆସିଣ ଆଗେଂ ମିଳି
ବୋଇଲା ନୃପତି ହୋ ଭାଳୁଅଛୁ କାହିଂ ପାଇଂ
ମୋତେ ସଙ୍ଗେ ନ ନେଲୁ ଆସିଲୁ ଲଜ୍ଜା ପାଇ
ୟେବେ ମୋତେ ଆଜ୍ଞା ଦିଅ ଯିବି ଥାଟ ବାହି
ନାଶିବି ଯାଦବ ବଳ ଗୋପାଳ ବେନି ଭାଇ

ଥୋକାୟେକ ନଗ୍ର ଉଜାଡ଼ ହୋଇଲା
ଯହୁଁ କାଳଯମନ ଦିଗ ବିଜେ କଲା[୧] ॥୩୧୯୮॥
ସୁଣ ଗୋ ଦୁର୍ଗା ବୋଲି ସଙ୍କର ଯାନ୍ତି କହି
ରାମକୃଷ୍ଣ ଅଗ୍ରତେ କହନ୍ତି ମୁନ୍ୟେହି ॥୩୧୯୯॥
ବୋଇଲେ ସୁଣ ଆହେ ଯାଦବ ସିରୋମଣି
ଯହୁଁ ଜାରାସନ୍ଧ ସେ ଯେ ନ ପାରିଲା ଜିଣି ॥୩୨୦୦॥
ସନ୍ୟ ନାସ ଯାନ୍ତେ ନୃପତି ଭାଳୁଥିଲା
କାଳଯମନ ସେନାପତି ସୁଣି ପହିଜ ସେ କଲା ॥୩୨୦୧॥
ଆଜ୍ଞା ଦିଲା ତାହାକୁ ମଗଧଦେସ ରାୟେ
ପଞ୍ଚାଉନ କୋଟି ସନ୍ୟ ଘେନିଣ ସେ ଆୟେ ॥୩୨୦୨॥
ସୁଣିଣ ବିସ୍ମୟେ ହୋଇଲେ ଦେବହରି
ଯମନଙ୍କୁ ଆଜ ଆମ୍ଭେ ନ ପାରିବା ମାରି ॥୩୨୦୩॥
ଯାଦବଙ୍କୁ ବୋଇଲେ ଚାଲ ହୋ ପଳାଇବା
ଦଇତ୍ୟ ହସ୍ତରେ ପରାଭବ ନ ପାଇବା ॥୩୨୦୪॥
ଶ୍ରୀହରି ବଚନେ ଯାଦବେ ତୋସ ହେଲେ
ସମସ୍ତେ ଘର ଛାଡ଼ି ବନସ୍ତେ ପସିଲେ ॥୩୨୦୫॥
ଯମନ ସନ୍ୟ ଘେନି ମିଳିଲାକ ଯାଇ
ଦେଖିଲାକ ତୁଛା ଘର ଗୋଟାୟେ କେହି ନାହିଂ ॥୩୨୦୬॥
ବିଚାରିଲା ପଳାଇ ଗଲେକ ଯାଦବେ
ସନ୍ୟ ଘେନି ରାଜାଠାକୁ ବାହୁଡ଼ିବି ଯେବେ ॥୩୨୦୭॥
ବିଚାରି ବାହୁଡ଼ିଲା କହିଲା ରାଜା ଆଗଂ
ସୁଣିଣ ବହୁତ ହୃଷ୍ଟ ହୋଇଲା ଜାରାସନ୍ଧ ॥୩୨୦୮॥

## ଜରାସନ୍ଧର ଦ୍ୱିତୀୟବାର ଯୁଦ୍ଧ ଓ ଗୋମତ ଗିରିରେ ଶ୍ରୀକୃଷ୍ଣ ସମେତ ସମସ୍ତ ଯାଦବଙ୍କର ଆତ୍ମଗୋପନ

ଯାଦବେ ପ୍ରବେସ ଯେ ହୋଇଲେ ମଥୁରାର
ଚାରିଦିଗକୁ ଜାରାସନ୍ଧ ପେସିଲା ଡଗର ॥୩୨୦୯॥
କେଉଂ ଦେସେ ରହିଲେ ଯାଦବ ନରହରି[୨]
ଠାବ କରି ଆସ ଯାଇ ପକାଇବା ମାରି ॥୩୨୧୦॥
ଆଜ୍ଞା ପାଇ ଚାରିଦିଗକୁ ଦୁତେ ଗଲେ
ଯାଦବଙ୍କୁ ଦେଖି ଜାରାସନ୍ଧକୁ କହିଲେ ॥୩୨୧୧॥
ଜାରା ବୋଇଲା ତୁ ତ ହିନବିର୍ଯ୍ୟ ହେଲୁ
ଯାଦବଙ୍କୁ ଦେଖି ଡରିଣ ପଳାଇ ଅଇଲୁ ॥୩୨୧୨॥
ମିଛେ ଭଣ୍ଡି କହିଲେ ସେ ଗଲେନି ପଳାଇ
ନିର୍ଭୟ ହୋଇଣ ସେ ମଥୁରାରେ ଛନ୍ତି ରହି ॥୩୨୧୩॥

୧ । ଖ ପୋଥି – ଯୁଦ୍ଧ କରିଗଲା
୨ । ଖ ଓ ଗ ପୋଥି – ରାମ ହରି

କାଳଯମନ ବୋଇଲା ଯେବେଂ ସେ ଦେସ ଯିବିଂ
ଯହିଂ ପସିଥିବେ ତହିଂରେ ମାରିବି ॥୩୨୧୪॥
ଜାରାସନ୍ଧ ବୋଇଲା ସମସ୍ତେ ଚାଲ ଯିବା
ଯାଦବ ସହିତେଂ ବେନି ଭାଇଙ୍କି ମାରିବା ॥୩୨୧୫॥
ସନ୍ୟ ସେନାପତି ସହିତେ ଆବର ନୃପବର
ମେଲାଣି କଲେ ଦେଖିଲାକ ଡଗର ॥୩୨୧୬॥
ଉଗ୍ରସେନ ସଭାରେ ଯେ କହିଲାକ ଯାଇ[୧]
ଜାରାସନ୍ଧ ସନ୍ୟ ଘେନି ଆସୁଅଛି ବାହି[୨] ॥୩୨୧୭॥
ସୁଣିଣ ଭଗବାନ ଗୋତ୍ର ବନ୍ଧୁ ଘେନି[୩]
ଗୋମନ୍ତ ଗିରି ଗୁମ୍ଫେ ଲୁଚିଲେକ ପୁଣି ॥୩୨୧୮॥
ଦେଖିଲା ଜାରାସନ୍ଧ କଟକ ତୁଛା ହୋଇ
ମନ୍ତ୍ରିକି ପଚାରିଲା ଯାଦବମାନେ ଗଲେ କାହିଂ ॥୩୨୧୯॥
ଗିରି ପରେ ମିଳିଲା ଘେନିଣ ସନ୍ୟ ସେନା[୪]
ଉପାଡ଼ି ଦେବ ବୋଲି ଖୋଳିଲାକ ଖଣା ॥୩୨୨୦॥
ବିଚାରିଲା ଦେବଗିରି କ୍ରୋଟରେ ଛନ୍ତି ରହି
ଉପାଡ଼ିଣ ଗିରିବର ସିରେଂ ନେବି ମୁଣ୍ଡିଆଇ ॥୩୨୨୧॥
ସପତ ସାଗରେଂ ପକାଇବିଂ ନେଇ
ଯେତେ ବୋଲି ଜାରା ଗିରିକି ଉପାଡ଼ଇ ॥୩୨୨୨॥
ଉପାଡ଼ି ନପାରିଣ ପଡ଼ିଲା ମୁଖ ମାଡ଼ି
ପୁଣି ବିଚାରିଲା ଯେ ଗିରିକି ଦେବିଂ ପୋଡ଼ି ॥୩୨୨୩॥
ଯେତେ ବୋଲି ଗୁମ୍ଫାଦ୍ୱାରେ ଜମା କଲା ଡ୍ରୋଣ
ଲଗାଇଲା ଯୁଇ ଯେ ଲାଗିଲା ହୁତାସନ ॥୩୨୨୪॥
ସନ୍ୟ ଘେନି ଜାରାସନ୍ଧ ବାହୁଡ଼ିଲା
ଗୋବିନ୍ଦଙ୍କ ଆଜ୍ଞାରେ ଅନଳ ଲିଭିଲା ॥୩୨୨୫॥
ଯାଦବଙ୍କୁ ଘେନି ହରି ମିଳିଲେ ମଥୁରାର
ସୁଣଗୋ ଓମା ବୋଲି ବଦନ୍ତି ସଙ୍କର ॥୩୨୨୬॥

## କାଳଯମନର ମଥୁରା ଆକ୍ରମଣ ଓ ମୁଚୁକୁନ୍ଦଦ୍ୱାରା ଧ୍ୱଂସ

ହରସ ହୋଇଣ ଜାରାସନ୍ଧ ମନେ ମନେ ଭାଳି
ବିଚାରେ ରାମକୃଷ୍ଣ ଯାଦବେ ଗଲେ ଜଳି ॥୩୨୨୭॥

୧ । ଖ ପୋଥି – କହିଲା ବେଗେ ଯାଇ ଉଗ୍ରସେନର ଆଗର
୨ । ଖ ପୋଥିରେ ଏହି ଧାଡ଼ିନାହିଁ
୩ । ଖ ପୋଥିରେ ଉପରେ ଦୁଇ ଧାଡ଼ି ଅଧିକ ଅଛି –
ପୁଣି ଜାରାସନ୍ଧ କଲାକ କଟକାଇ
ଯାଦବ ରାମକୃଷ୍ଣଙ୍କୁ ମାରିବ ଆସୁଛଇ
୪ । ଖ ପୋଥିରେ ଉପରେ ଦୁଇ ଧାଡ଼ି ଅଧିକ ଅଛି –
ମନ୍ତ୍ରୀବର ବୋଇଲା ଗିରି ଗୁମ୍ଫାରେ ଲୁଚିଲେ
ତୁମ୍ଭ ଆସିବା ଶୁଣିଣ ଭୟରେ ପଳାଇଲେ

ଯେମନ୍ତ ସମୟେ ମିଳିଲେ ମୁନ୍ୟେହି
ସାବଧାନେ ସୁଣ ମଗଧଦେସ ସାଇଂ ॥୩୨୨୮॥
ଯାଦବେ ଗିରି ମଧ୍ୟରେ ଯେ ଥିଲେ ଲୁଚି
ଅଗ୍ନି ଲଗାଇଲ ସେ ଅଇଲେନି ଉଠି ॥୩୨୨୯॥
କି ମନ୍ତ୍ର ଜାଣନ୍ତି ସେ ରାମ ସେ ନରହରି
ପୋଡ଼ି ନ ମଲେ ସେ ବନ କନ୍ଦର ଗଲା ଜଳି ॥୩୨୩୦॥
ଗୁମ୍ଫାରୁ ବାହାରିଣ ମିଳିଲେ ମଥୁରାର
ଡଗର ମୁଖୁଂ ସୁଣି ଆଶ୍ଚାର୍ଯ୍ୟ ନୃପବର ॥୩୨୩୧॥
ବିଚାରିଲେ ଯେଡ଼େ ଉପାୟେ ମୁହିଂ କଲିଂ
ଯେ ବେନି ଗୋପାଳଙ୍କୁ ମୁହିଂ ମାରି ନ ପାରିଲିଂ ॥୩୨୩୨॥
ସୁଣିଣ କାଳଯମନ[1] ଉଠିଲା ସିର ଝୁଣି
ରାମକୃଷ୍ଣ ଯାଦବଙ୍କୁ ମାରିଣ ଆସିବିଂ ଯେହିକ୍ଷଣି ॥୩୨୩୩॥
ସନ୍ୟ ଦେଖି କରି ସେ ତରସ୍ତେ ପଳାଇଲେ
ଯେକା ଯାଇ ତାହାଙ୍କୁ ମାରି ଆସିବି ମୁହିଂ ଯେବେ ॥୩୨୩୪॥
ଯେତେ ବୋଲି ଯମନ ପ୍ରଚଣ୍ଡ ରୂପ ଧରି
ଧାଇଂଲା ମଥୁରାକୁ ଗର୍ଜନ ନାଦ କରି ॥୩୨୩୫॥
ମିଳିଣ ମଥୁରାରେ ଗର୍ଜନ ନାଦ କଲା
ନବ ଖଣ୍ଡ ପୃଥି କି ଭାଜିଣ ପଡ଼ିଲା[2] ॥୩୨୩୬॥
ମିଳିଣ ମଥୁରାରେ ଭାଜିଲା ବୃକ୍ଷ ଗ୍ରାମ
ଜାଣିଣ ତାର ଆଗେଂ ମିଳିଲେ ଭଗବାନ ॥୩୨୩୭॥
ବୋଇଲେ ଯମନ ତୁ ହୋଇଲୁରେ ବାଇ
ମରିବୁ ବୋଲି ତୁ ଆସିଅଛୁ ଧାଇଂ ॥୩୨୩୮॥
ଦୃଷ୍ଟ ନିସୋଧନ ବାନା ଅଟଇ ମୋହର
ମୋହର ଆଗେଂ କିପେଂ ବଢ଼ାଇ ତୋହର ॥୩୨୩୯॥
ଯେମନ୍ତ ବୋଲନ୍ତେ ହରି ଯମନ କୋପକଲା
ଧରିବ ବୋଲି ଭଗବାନଙ୍କୁ ଗୋଡ଼ାଇଲା ॥୩୨୪୦॥
ଧରୁ ଧରୁ ଶ୍ରୀହରି ପଳାଇଣ ଗଲେ
ବହୁତ ଦେସ ନଦି ପର୍ବତ ପାରି ହେଲେ ॥୩୨୪୧॥
ମେରୁ ମେଖଳା ଗୁମ୍ଫାରେ ଯାଇ ହୋଇ
ପୁରୁଷେ ସୋଇଅଛି ଉତ୍ତାନସାହି ହୋଇ ॥୩୨୪୨॥
ସେହିଠାରେ ରହି ସେ ହରି ହୋଇଲେ ଗୋପ୍ୟାନ
ସୟନ ପୁରୁଷଙ୍କୁ ସେ ହାବୋଡ଼ିଲା ଯମନ ॥୩୨୪୩॥
ଭାଜିଲାକ ନିଦ୍ରା ସେ ପୁରୁଷ ହାବୋଡ଼ିଲା
ନୟନ ଅନଳେ ସେ ଯମନ ଭସ୍ମ ଗଲା ॥୩୨୪୪॥

୧ । ଖ ପୋଥିରେ ଯମନ ସ୍ଥାନରେ ସର୍ବତ୍ର ଦମନ ବୋଲି ଲେଖାଯାଇଛି
୨ । ଖ ଓ ଗ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଯମନଙ୍କୁ ମରାଇ ସେ ଶ୍ରୀକୃଷ୍ଣ ବାହୁଡ଼ିଲେ
ସୁଣ ହେ ସିବ ବୋଲି ଗିରିଜା ପଚାରିଲେ ॥୩୨୪୫॥
ଯେବଣ ପୁରୁଷ ସେ ନିଦ୍ରାରେ ଥିଲା ସୋଇ
ତାହାର ଗୁଣଗ୍ରାମ କହିବା ଗୋସାଇଂ ॥୩୨୪୬॥
ବଦୟନ୍ତି ସଙ୍କର ସୁଣଗୋ ଦେବି ଓମା
ମୁଚୁକୁନ୍ଦ ରସି ସେ ତପନର ଦୁଲଣା ॥୩୨୪୭॥
ଦୃଷ୍ଟପଣ ଆଚରି ସେ ତପ ଯାଇ କଲା
ପବନ ଭକ୍ଷିଣ ବିଷ୍ଣୁଙ୍କୁ ଚିନ୍ତାକଲା ॥୩୨୪୮॥
ଜାଣିଣ ଶ୍ରୀହରି ହୋଇଲେ ପ୍ରସନ୍ନ
ବୋଇଲେ ମାଗ ବର ଅବସ୍ୟ ଦେବିଂ ପୁଣ ॥୩୨୪୯॥
ଶ୍ରୀହରି ବଚନେ ମାଗିଲା ଯେ ମୁଚୁକୁନ୍ଦ
ଅନୁକ୍ଷଣେ ନୟନେ ଥିବ ମୋର ନିଦ ॥୩୨୫୦॥
ନିଦ୍ରା ବିନୁଂ ସଂସାରେ ଆଉ ଭୋଗ ନାହିଂ
ସୁକ୍ଷ୍ମ ଭାବ ପାଇଣ ସୋଇଥିବି ମୁହିଂ ॥୩୨୫୧॥
ମୋହର ନିଦ୍ରା ଭାଜିଂବ ଯେହୁ ପୁଣି
ସେହିଠାରେ ଭସ୍ମ ସେ ଯେ ହୋଇବ ତତକ୍ଷଣି ॥୩୨୫୨॥
ଅସ୍ତୁ ହେଉ ବୋଲିଣ ଶ୍ରୀହରି ବୋଇଲେ
ବରପାଇ ମୁଚୁକୁନ୍ଦ ଆନନ୍ଦେ ସୋଇଥିଲେ ॥୩୨୫୩॥
ସେ କଥା ଜାଣିଣ ହରି କଢ଼ାଇଣ ନିଲେ
ମୁଚୁକୁନ୍ଦ ଚକ୍ଷୁରେ ସେ ଯମନ ମରାଇଲେ ॥୩୨୫୪॥

## ବିଶ୍ୱକର୍ମାଙ୍କଦ୍ୱାରା ଦ୍ୱାରକାପୁର ନିର୍ମାଣ

ବଦୟନ୍ତି ସଦାସିବ ସୁଣଗୋ ଗଉରି
ଦୁଷ୍ଟ ନାସନ ସେ ଅଟନ୍ତି ନରହରି[1] ॥୩୨୫୫॥
ଅଷ୍ଟାଦସ ବେଳ ଧାଡ଼ି ଦିଲାକ ଜାରାସନ୍ଧ[2]
ସାତବଂସ ଯାଦବ ହୋଇଲେ ବିସାଦ ॥୩୨୫୬॥
କେମନ୍ତେ ଆମ୍ଭଙ୍କୁ ଯେ ରଖିବୁ ଆଦିମୁଳ
ଏତେ କହି ସମସ୍ତେ ଯେ ହୁଅନ୍ତି ବିକଳ[3] ॥୩୨୫୭॥
ଆତଙ୍ଗନାସନ ଯେ ଜଗତ ଚିନ୍ତାମଣି
ଜାରାସନ୍ଧ ଭୟରୁ ରଖ ହେ ଚକ୍ରପାଣି ॥୩୨୫୮॥
ତରକ ଜାଣି ଆମ୍ଭେ କେତେ ପଳାଇବା
ସଂଚିତ ଦ୍ରବ୍ୟ ଆଉ ଗୃହରେ ନ ରଖିବା ॥୩୨୫୯॥
ପଳାଇଗଲେ ସେ ତ ନବର ଦିୟେ ପୋଡ଼ି
ବେଳକୁ ବେଳ ତ ପଡ଼ିଲା ତାର ଧାଡ଼ି ॥୩୨୬୦॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ
୨ । ଖ ପୋଥି – ଅଷ୍ଟାଦଶ ବାର ଜାରାସନ୍ଧ ଦେଲା ଧାଡ଼ି
୩ । ଖ ପୋଥିରେ ଏହି ଧାଡ଼ି ନାହିଁ

ଯେମନ୍ତ ବୋଲିଣ ଯହୁଂ ଭାଳିଲେ ଯାଦବେ
ସୁଣିଣ ଗରୁଡ଼କୁ ରାଇଲେ ବାସୁଦେବେ ॥୩୨୬୧॥
ମିଳିଲା ଗରୁଡ଼ ଯେ ଆରୋହିଲେ ଭଗବାନ
ଉଡ଼ିଲା ପକ୍ଷିବର ସେ ଗମିଲା ଚଉଦ ଭୁବନ ॥୩୨୬୨॥
ଦେଖିଲେ ଜଳ ମଧ୍ୟେ ଖଣ୍ଡିୟେ ଭୁମି ଅଛି
ଜନଜନ୍ତୁ ଗମନ ଯେ ତହିଂରେ ନାହିଂ କିଛି ॥୩୨୬୩॥
ଯୋଜନେକ ଆୟତନେ ଅଛଇ ଠାବ ଖଣ୍ଡି
ବରୁଣକୁ ବୋଇଲେ ଯାଅ ଏଥୁ ଛାଡ଼ି ॥୩୨୬୪॥
ନଥିବ ସତ୍ୱଭୟ କରିବା ଆମ୍ଭେ ବାସ ତ
ହରିଙ୍କ ଆଜ୍ଞାରେ ଛାଡ଼ିଗଲା ସପତନିଧିନାଥ ॥୩୨୬୫॥
ସତର ଯୋଜନ ସେ ହୋଇଲା ସୁଖା ଭୁଇଂ
ଦ୍ୱାରିକା କୁସସ୍ଥଳି ନାମ ସେହୁ ପାଇଂ[୧] ॥୩୨୬୬॥
ବିଶ୍ୱକର୍ମାକୁ ରାଇ ଆଜ୍ଞାଦିଲେ ଚକ୍ରପାଣି
ସିନ୍ଧୁ ମଧ୍ୟେ ଗୃହ କର ରହିବା ଆମ୍ଭେ ପୁଣି[୨] ॥୩୨୬୭॥
ବୋଇଲେ ଅତି ଯତ୍ନେ ପୁର ନିର୍ବାଣିବୁ
ଯାହାକୁ ଯଉଂ ରୁପେ ପୁରମାନ କରିଦେବୁ ॥୩୨୬୮॥
ଲାଗିଲେ ବିନ୍ଧାଣି ଶ୍ରୀହରି ଆଜ୍ଞାପାଇ
କାନ୍ଥ ଚାଳ ସେଣି ଗୁରୁଜ ଭିଆଇ ॥୩୨୬୯॥
ସୁବର୍ଣ୍ଣର କାନ୍ଥ ପ୍ରବାଳର ସ୍ତମ୍ଭ
କନକର ଉରା ମାଣିକ୍ୟର ଗୁରୁଜ ॥୩୨୭୦॥
କୁରୁବିନ୍ଦର କୋଣକାଣ୍ଡ ଗଣ୍ଠି ସେ ପାଟସୁତା
ଗଣ୍ଠିକେ ପୁଞ୍ଜି ପୁଞ୍ଜି ବସିଛି ମୁକୁତା ॥୩୨୭୧॥
ହିରାର ଦାରୁ ହିରଣ୍ୟକର ସେଣି
ପରାଗର ରୁଅ ତେଜପତ୍ରରେ ଛାଉଣି ॥୩୨୭୨॥
ଛାଉଣିର ଉପରେ ହରିତାଳ ଝାଳ
ଧୁପ ଧୁମ ଲାଗନ୍ତେ ସେ ହୋଅଇ ତରଳ ॥୩୨୭୩॥
କାନ୍ଥପରେ ବସିଅଛି ଗଜମୋତି ଝରା
ଚଉପାସେ ଲମ୍ବଇ ମୁକୁତା କେରା କେରା ॥୩୨୭୪॥
ନିଳାର ପାଣିପାଟିଆ ଚନ୍ଦନର ପଟା
ତହିଂପରେ ବସିଅଛି ହିଙ୍ଗୁଳ ଟୋପା ଟୋପା ॥୩୨୭୫॥
ଉରାପଟା ପରେ ବସିଅଛି ଗୁରୁଜ ମୁଳ
ଗୁରୁଜର ଉପରେ ରହିଛି କାଚଢାଳ ॥୩୨୭୬॥
ଢାଳ ଉପରେ ରହିଅଛଇ ହିରାର ସେଣି
ଅନେକ କୋଟିକମ କରନ୍ତି ବିନ୍ଧାଣି[୩] ॥୩୨୭୭॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ
୨ । ଖ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ପୋଥି – ଦିଶଇ ଦାଉ ଦାଉ ସ୍ଫଟିକ ଶଙ୍ଖ ଜାଣି

କାନ୍ଥ ପରେ ବସିଅଛି ନିଳାର କବାଟ କଂସାର ଯେ ବନ୍ଧ
କୃବିନ୍ଦର କିଳଣି ଲାଗିଛି ନିର୍ବନ୍ଧ ॥୩୨୭୮॥
ହୋଇଛି ଝରାକମ ପିତୁଳା ମାନ ରହିଂ
ଯାହା ଦେଖି ଯୋଗିଏ ଯିବେ ବଣା ହୋଇ ॥୩୨୭୯॥
ସାତବଂସ ଯାଦବ ସୋଳ ସହସ୍ର ଗୋପାଳ
ଭିନ୍ନ ଭିନ୍ନ କରିଣ ତୋଳାଇଲେ ନବର ॥୩୨୮୦॥
ଠାବେ ଠାବେ କୁପ ତୋଟା ପୁଷ୍କରଣି
ରୋପିଲେ ତୋଟା ପୁଷ୍କରଣି ବିଶ୍ରାମିବେ ମୁନି ॥୩୨୮୧॥
କୁନ୍ଦି ବିକୁନ୍ଦିରେ ଗଳି ଜଗତି ଅଟ୍ଟାଳି
ମେଢ଼ ମଣ୍ଡପର ବସାଇ ପାଚେରି ॥୩୨୮୨॥
ଘରେ ଘରେ ବସଇ ସୁବର୍ଣ୍ଣର କଳସ
ବାନ୍ଧିଲେକ ଚିରାଳ ବିଚିତ୍ର ଝିନବାସ ॥୩୨୮୩॥
ଦ୍ୱାଦସ ଯୋଜନ ଯେ ନଗ୍ର ଦିର୍ଘ ପ୍ରତି
ଚାରି ଯୋଜନ ଉଛର୍ଗ ଦୁରକୁ ଦିସେ ଫୁଟି ॥୩୨୮୪॥
ଦୁତି ବାରସ୍ୱତି ଯହିଂକି ନୋହେ ସରି
ଯାହା ଦେଖି ପାଇବେ ଗତି ତିନିପୁରି ॥୩୨୮୫॥
ଯେମନ୍ତ ପ୍ରକାରେ ସେ ଭିଆଇଲେ ପୁର
ଦେଖିଣ ଉସତ ସେ ଯେ ହୋଇଲେ ଚକ୍ରଧର ॥୩୨୮୬॥

## ଶ୍ରୀକୃଷ୍ଣ ଓ ଗୋପାଳମାନଙ୍କର ଦ୍ୱାରକା ଯାତ୍ରା

ଗରୁଡ଼ ପୃଷ୍ଠରେ ବିଜୟେ ଭଗବାନ
ମିଳିଲେକ ଯାଇ ମଥୁରା ଭୁବନ ॥୩୨୮୭॥
ଯାଦବଙ୍କୁ ବୋଇଲେ ଆସ ସଜ ହୋଇ
ଜାରାସନ୍ଧ ଭୟରେ ନ ପାରିବା ରହି ॥୩୨୮୮॥
ଗୁପତ ସ୍ଥାନ ଖଣ୍ଡିୟେ ଆସିଅଛୁ ଦେଖିଣ
ଚାଲ ଯିବା ସମସ୍ତେ ରହିବା ତହିଂ ପୁଣ ॥୩୨୮୯॥
ଗୋବିନ୍ଦଙ୍କ ବଚନେ ସେ ଯାଦବେ ସଜ ହେଲେ
ସକଟମାନଙ୍କରେ ଦ୍ରବ୍ୟ ପୁରୋଇଲେ ॥୩୨୯୦॥
ସମସ୍ତେ ଘର ଛାଡ଼ି ହୋଇଲେ ବାହାର
ଗୋଟିଏ ନ ରହିଲେ ମଥୁରା କଟକର[୧] ॥୩୨୯୧॥
ଉଦ୍ଧବଙ୍କୁ ରାଇଣ ଯେ ବୋଇଲେ ବନମାଳି
ଯେହିକ୍ଷଣି ଗୋପପୁରକୁ ଯାଅ ଚଳି ॥୩୨୯୨॥
ସୁଣିବେ ଗୋପାଳେ କହିବ ନନ୍ଦ ଆଗେଂ
ଜାରାସନ୍ଧ ଧାଡ଼ି ପଡ଼ିଲା ଆସି ଯେବେ ॥୩୨୯୩॥
ମଥୁରାପୁର ଛାଡ଼ି ଗଲେ ଭଗବାନ
ରହିବେ କୁସସ୍ଥଳି ଦ୍ୱାରିକା ଭୁବନ ॥୩୨୯୪॥

୧ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ତେଣୁକରି ତୁମ୍ଭଙ୍କୁ ଜାରାସନ୍ଧ ପକାଇବ ମାରି
ପଦାର୍ଥମାନ ଘେନି ଆସ ହୋ ବାହାରି ॥୩୨୯୫॥
ଯେମନ୍ତ ବୋଲିଣ ଯେ କହିବ ତାହାଙ୍କୁ
ଆଜ୍ଞା ପାଇ ଉଦ୍ଧବ ଚଳିଗଲେ ଗୋପକୁ ॥୩୨୯୬॥
ଶ୍ରୀକୃଷ୍ଣ କହିଲେ ବୋଲିଣ ନନ୍ଦକୁ କହିଲା
ସୁଣିଣ ମହାକୁଢ଼ ଘୋସଣ ଦିଆଇଲା ॥୩୨୯୭॥
ଛାଡ଼ ଗୋପପୁର ଯିବା ହେ ଦ୍ୱାରାବତି
ଯେମନ୍ତ ବୋଲିଣ ସେ ଘୋସଣା ଦିଲା ଡାକିଟି ॥୩୨୯୮॥
ସୁଣି ଗୋପି ଗୋପାଳ ହୋଇଲେକ ସଜ
ଗୃହର ପଦାର୍ଥ ସଜାଡ଼ିଲେ ଭାର ବୋଝ ॥୩୨୯୯॥
ଗୋପର ନରନାରି ଗୋଧନ ସହିତେ
ନରହିଲେ କେହି ଗମିଲେ ସବୁ ପଥେ ॥୩୩୦୦॥
ପଥ କଢ଼ାଇଲେ ଆଗରେ ଉଦ୍ଧବ
ପ୍ରବେସ ହୋଇଲେ ଯାଇ ଯହିଂ ଗମନ୍ତି ଯାଦବ ॥୩୩୦୧॥
ଯାଦବ ଗୋପବୃନ୍ଦ ଘେନି ଭଗବାନ
ପ୍ରବେସ ହେଲେ ଯାଇ ଦ୍ୱାରିକା ଭୁବନ ॥୩୩୦୨॥
ଯେ ଯାହାର ଯାଇଣ ସମସ୍ତେ ରହିଲେ[1]
ଧନ୍ୟ ଧନ୍ୟ କୃଷ୍ଣନାଥ ବୋଲିଣ ବୋଇଲେ[2] ॥୩୩୦୩॥
ଚଉକତି ସାହେର ମଧ୍ୟରେ ଦ୍ୱାରାବତି
ଉର୍ଦ୍ଧରେ ସୁଦ୍ରିସେନ ଫେରୁଥାଇ ନିତି ॥୩୩୦୪॥
ସନ୍ଥକୁ ପ୍ରତିପାଳି ଦୃଷ୍ଟଙ୍କୁ ଦୁର୍ଗମ
ତପିଙ୍କୁ ସେ ବଇକୁଣ୍ଠ ପାପିଙ୍କି କାଳଯମ[3] ॥୩୩୦୫॥
ଯେମନ୍ତ ପ୍ରକାରେ ଦିସଇ କୁସସ୍ଥଳି
ଆପଣେ ସର୍ଜନା ଯାହା କରିଛନ୍ତି ବନମାଳି ॥୩୩୦୬॥
ସୁଣଗୋ ହେମବନ୍ତି ବୋଲନ୍ତି ତ୍ରିଲୋଚନ
ଶ୍ରୀକୃଷ୍ଣଙ୍କର ସ୍ନେହ ସେ ପାଇଲା ଅର୍ଜୁନ ॥୩୩୦୭॥
ମେଲାଣି ପାଇଣ ନିଜ ଭୁବନକୁ ଗଲା
ଯୁଧିଷ୍ଠିଙ୍କ ଆଗେ ଯାଇ ସକଳ କହିଲା ॥୩୩୦୮॥
ସୁଣିଣ ଆନନ୍ଦ ସେ ହୋଇଲେ ଧର୍ମବାଳ
ବୋଇଲେ ସୁଭେ ବ୍ରତିଥାନ୍ତୁ ଆଦିମୁଳ ॥୩୩୦୯॥
ସଙ୍କର ମୁଖ ଚାହିଂ ପଚାରନ୍ତି ଗଉରି
ଜାରାସନ୍ଧ ଭୟେ ପ୍ରଭୁ ରହିଲେ ଜଳପୁରି ॥୩୩୧୦॥
ତଦଅନ୍ତେ କୃଷ୍ଣ ତହିଂ କିସ କଲେ
ସେ କଥା ପ୍ରାଣନାଥ କହ ମୋ ଆଗରେ ॥୩୩୧୧॥

୧ । ଖ ପୋଥି – ଯେ ଯାହାର ପୁର ପାଇଣ ଆନନ୍ଦେ ରହିଲେ
୨ । ଖ ପୋଥି – ପ୍ରଶଂସିଲେ
୩ । ଖ ପୋଥି – ଦିଶଇ ଅରଣ୍ୟ

ବଦୟନ୍ତି ସଦାସିବ ଶୁଣଗୋ ଦେବି ଓମା
ଅପୁର୍ବ ଚରିତ ଯେ ଶ୍ରୀରାମର ମହିମା ॥୩୩୧୨॥
ହରିବଂସ ଚରିତ ଯେ ଅଟଇ[1] ଦିବ୍ୟରିତି
ସୁଣିଲେ ସପ୍ତଜନ୍ମ ପାତକ ବିନଶ୍ୱତି ॥୩୩୧୩॥
ଗତ ଆଗତର ଯେତେକ ଥାଇ ଦୁଷ୍କୃତ
ଯେହା ଦଣ୍ଡେ ସୁଣିଲେ ପାତେକ ହୋୟେ ହତ ॥୩୩୧୪॥
ଆହେ ସାଧୁଜନ ସୁମର ତୁମ୍ଭେ ହରିନାମ
ହରିବଂଶ ପୁରାଣ ଯେ ଅପୁର୍ବ ଆଖ୍ୟାନ ॥୩୩୧୫॥
ସୁମର ହରିନାମ ସୁଣ ଯେହୁ ପୁରାଣ
ପାଇବ ସଦଗତି ଲଭିବ ପୁଣ ଭଗବାନ ॥୩୩୧୬॥
ଶ୍ରୀହରିର ନାମ ଯେ ନଉକା ଅଟଇ
ବସିଣ ପାରିହେବ ଭବାର୍ଣ୍ଣବ ନଇ ॥୩୩୧୭॥
ଯାହାର ପଦ୍ମପାଦକୁ ଚିନ୍ତନ୍ତି ସନ୍ନ୍ୟାସ
ସେହି ପାଦେ ସରଣ ସାରୋଳା ଚଣ୍ଡି ଦାସ ॥୩୩୧୮॥

## ଶ୍ରୀକୃଷ୍ଣଙ୍କ ନିକଟକୁ ରକ୍ମିଣୀଙ୍କ ଚିଟାଉ

କହନ୍ତି ସଦାସିବ ସୁଣ ଗୋ ଗଉରି
ସୁଣିଲଂ ଗୋପନିଳା ଶ୍ରୀକୃଷ୍ଣ ବାଳକେଳି ॥୩୩୧୯॥
ଗୋପରେ ଯେତେ ନିଳା ଶ୍ରୀହରି କଲେ
ସୁଣ ହେତୁ କରି କହିଲି ତୋର ଆଗେଂ ॥୩୩୨୦॥
କୁଣ୍ଡି ନଗ୍ର ବୋଲିଣ ସେ ଶ୍ରୋଣିତ ମଣ୍ଡଳେ[2]
ଭିସ୍ମେକ ବୋଲିଣ ସେ ତହିଂର ମହିପାଳେ ॥୩୩୨୧॥
ରକ୍ମଣି ବୋଲିଣ ସେ ଯେ ଦୁହିତାର ନାମ
ରୁପକୁ ଚନ୍ଦ୍ରସୁର୍ଯ୍ୟ ନୋହନ୍ତି ସରି ସମ ॥୩୩୨୨॥
ପ୍ରତ୍ୟକ୍ଷେ କମଳଣି ସେ ଶ୍ରୀହରିର ନାରି
ଶ୍ରୀକୃଷ୍ଣଙ୍କୁ ଦେବ ବୋଲି ଭିସ୍ମେକ ବିଚାରି[3] ॥୩୩୨୩॥
ରକ୍ମଣ ବୋଲିଣ ଯେ ତା ଜ୍ୟେଷ୍ଠ କୁମର
ରକ୍ମଣିର ପାଇଂ ସିସୁପାଳକୁ କଲା ବର ॥୩୩୨୪॥
ଦମଘୋସ ନନ୍ଦନ ସେ ବୟସରେ ଯୁବା
ବିଦ୍ୟାଧର ସଦୃସ୍ୟେ ଦିସଇ ବିର ସୋଭା ॥୩୩୨୫॥
ଦମଘୋସ ନନ୍ଦନ ସେ ସୁମରେ ଜଗନ୍ନାଥ
ଯେବେ ନ ଆସିବେ ହରି ମରିବି ଖାଇ ବିସ ॥୩୩୨୬॥

୧ । ଖ ପୋଥି – ଅପୂର୍ବ
୨ । ଖ ଓ ଗ ପୋଥି – ପ୍ରୋହିତ ମଣ୍ଡଳେ
୩ । କ ପୋଥିରେ ରକ୍ମଣ ବୋଲିଣରୁ ବୈକୁଣ୍ଠ ଭୁବନ ପର୍ଯ୍ୟନ୍ତ ନାହିଁ

କାଗଜ ହସ୍ତେ ଘେନି କଲାକ ଲେଖନ
ଭୋ ପ୍ରଭୁ ତୋହରେ ମୁଂ ପସୁଛି ସରଣ ॥୩୩୨୬॥
ଦାସି ହେବାକୁ ତୁମ୍ଭର ମୋ ଇଛା ହୋଇଛଇ
ଦୟାକରି ମୋତେ ହେଂ ଘେନିଯିବ ଗୋସାଇଂ ॥୩୩୨୮॥
ଯେବେ ନ ଆସିବ ହରି ନ ନେବ ତୁମ୍ଭେ ମୁକୁ
ଅବସ୍ୟ ନାସ ଯିବି ହତ୍ୟା ଲାଗିବ ତୁମ୍ଭଙ୍କୁ ॥୩୩୨୯॥
ଅନେକ ପ୍ରକାରେ ବିନୋଇ ରୁକ୍ମଣି ଲେଖିଲା
ବ୍ରାହ୍ମଣ ହସ୍ତେ ଦେଇ ଦ୍ୱାରକାକୁ ପ୍ରବର୍ତ୍ତିଲା ॥୩୩୩୦॥
ଦ୍ୱାରାବତି ପୁରେ ପ୍ରବେସ ଦ୍ୱିଜବର
ରୁକ୍ମଣି ଲେଖ ଦେଲା ଶ୍ରୀକୃଷ୍ଣ ହସ୍ତର ॥୩୩୩୧॥
ଆଦି ଅନ୍ତ ପଢ଼ିଣ ହରସ ନାରାୟଣ
ବ୍ରହ୍ମା ପେସି ଦେଲେ ଯେ ନନ୍ଦିଘୋସ ଯାନ ॥୩୩୩୨॥
ଲକ୍ଷ୍ମିନାରାୟଣ ଯହିଂରେ ବସିବେ
ସ୍ୱର୍ଗରୁ ଦେବରଥ ଦେବତା ପ୍ରବର୍ତ୍ତିଲେ ॥୩୩୩୩॥
ଦାରୁକ ବୋଲି ନାମ ସାରଥି ଅଟଇ
ବିଷ୍ଣୁ ପ୍ରତଳ ହୋଇଲେ କ୍ଷୟେ ସେ ନୋହଇ ॥୩୩୩୪॥
ଯୁଗକୁ ଯୁଗ ହରି ହୋଅନ୍ତି ଆନୁଆନ
ଦାରୁକ ଜଗୁଆଳି ବଇକୁଣ୍ଠ ଭୁବନ ॥୩୩୩୫॥

## ଦାରୁକର ଜନ୍ମ ଓ ପ୍ରଳୟର ବର୍ଣ୍ଣନା

କହନ୍ତି ସାକାମ୍ଭେରି ସୁଣ ହେ ତ୍ରିଲୋଚନ
ବିଷ୍ଣୁ ପ୍ରତଳ ହୋଇଲେ ଦାରୁକର ରହଇ କେହ୍ନେପ୍ରାଣ ॥୩୩୩୬॥
କହନ୍ତି ଦିଗବାସ ସୁଣଗୋ ପ୍ରାଣସହି
ଚାରିଯୁଗ ବହିଗଲେ ଗଣ୍ଡାଏ ହୋଅଇ ॥୩୩୩୭॥
ତେସ୍ତରି[1] ଗଣ୍ଡା ଗଲେ ମନୁଯେକ ହୋଇ
ତେରଦସ ମନୁରେ କଳ୍ପେକ ବୋଲାଇ ॥୩୩୩୮॥
ଯେରୁପେ ସାତ କଳ୍ପ ହୋଅଇ ଉଠାଣି
ସତର ଉଠାଣିରେ ଉହାଣେକ ବଖାଣି ॥୩୩୩୯॥
ଚଉଦ ଉହାଣରେ ସୋଳଚନ୍ଦ୍ର ନାସ ଯାଇ
ସୋଳଚନ୍ଦ୍ର ନାସ ଗଲେ ସୁରପତିକି ଦିବସେକ ହୋଇ ॥୩୩୪୦॥
ବେନି ବରସେ[2] ବଜ୍ରଧର ନାସ ଗଲାଇ
ଆଦିତ୍ୟ ଦେବତାଙ୍କୁ ଦିବସେକ ହୋଅଇ ॥୩୩୪୧॥
ବେନି ମନୁରେ ସୁର୍ଯ ଦେବତା ହିଂ ନାସ
ସେହିକାଳେ ବିଧାତାକୁ ହୋଅଇ ଦିବସ ॥୩୩୪୨॥

ତିନି ମନୁରେ ବ୍ରହ୍ମପ୍ରଳୟ ହୋଅଇ
ସରିଲେ ବ୍ରହ୍ମପ୍ରଳୟ ବିଷ୍ଣୁଙ୍କୁ ଦିବସେକ ହୋଇ[1] ॥୩୩୪୩॥
ଅନନ୍ତ ସୟନରେ ସୋଅନ୍ତେ ନିରାକାର
ନନ୍ଦିଘୋସ ରଥ ନବତନ ଜ୍ୟୋତି[2] ସତେ ସୁର୍ଯର ॥୩୩୪୪॥
ଚାରିହଂସ ଚାରିଚକ ରୁପେ ବିହରନ୍ତି[3]
ଭ୍ରମର ରୁପ ଧରି ଜାତ ବ୍ରହ୍ମା ବିଷ୍ଣୁ ଶଙ୍କର ଅଟନ୍ତି ॥୩୩୪୫॥
ପିତା ଆଜ୍ଞା ଦିଅନ୍ତି ପୃଥ୍ୱି କର ହୋ ସର୍ଜନ[4]
ମଧୁ କଇଟଭକୁ ନାସନ୍ତି ଭଗବାନ ॥୩୩୪୬॥
ବ୍ରହ୍ମା କାଢ଼ନ୍ତି ଚର୍ମ ହାଡ଼ ଆମ୍ଭେ ପିଣ୍ଡ ଦଳି
ଗୋଟି ଗୋଟି କରିଣ ସ୍ଥାପନ୍ତି ବନମାଳି ॥୩୩୪୭॥
ସାତ ଗୋଟିକରେ ହୋଇଛି ସାତଦ୍ୱିପ
ଜିବ ଜନ୍ତୁ ବୋଲି ଭିଆଇଲେ ଜଗତର ବାପ[5] ॥୩୩୪୮॥
ଦେବତା ରାକ୍ଷସ ମାନବ ନାଗମାନ
ଆବର ଚାରିଖାନି ଭିଆନ୍ତି ନାରାୟଣ ॥୩୩୪୯॥
କାଳେ ଦେବ ଦତ୍ୟ ମନ୍ଥିଲେ ସିନ୍ଧୁଜଳ
ତହିଂରୁ ବାହାରିଲା ପଦାର୍ଥ ସକଳ ॥୩୩୫୦॥
ଐରାବତ ଗଜ ଉଚ୍ଛୈଶ୍ରବା ଅଶ୍ୱ
ଲକ୍ଷ୍ମି ଅପକ୍ଷରା ଆବର ନନ୍ଦିଘୋସ ରଥ ॥୩୩୫୧॥
ଦେବତାଙ୍କ ଭାଗ ଯେ ଦେବତାୟେ ନିଲେ
ଲକ୍ଷ୍ମିଙ୍କି ଘେନି ହରି ନନ୍ଦିଘୋସରେ ବସିଲେ ॥୩୩୫୨॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ଯେମନ୍ତ ପ୍ରକାରେ ରଥ ସାରଥି ଆଦି ଜନ୍ମ ॥୩୩୫୩॥

---

୧ । ଖ ଓ ଗ ପୋଥି – ଯେକସ୍ତରି
୨ । ଖ ଓ ଗ ପୋଥି – କଳ୍ପେ

୧ । ଖ ଓ ଗ ପୋଥିରେ ନିମ୍ନରେ ଚାରି ଧାଡ଼ି ଅଧିକ ଅଛି –
ସାତ କଳ୍ପେ ତୁଟଇ ବିଷ୍ଣୁଙ୍କ ପରମାୟ
ବିଷ୍ଣୁନାଶ ହୋଅନ୍ତେ ଆମ୍ଭଙ୍କୁ ଦିବସେ ଉଦୟ
ଚଉଦ ମନୁରେ ଆମ୍ଭ ପ୍ରଳୟ ହୋଅଇ
ସଚରାଚର ସୃଷ୍ଟି ଦହିଜ୍ୟ ହୋଇ ଯାଇ
୨ । ଖ ଓ ଗ ପୋଥି – ହୋଅଇ ଫେନ ଜ୍ୟୋତି
୩ । ଖ ଓ ଗ ପୋଥି – ଚାରି ଅଶ୍ୱ ହଂସ ରୂପରେ ବିହରନ୍ତି
୪ । ଖ ଓ ଗ ପୋଥିରେ ଉପରେ ଚାରି ଧାଡ଼ି ଅଧିକ ଅଛି –
ଯଉଂକାଳେ ତୁଟଇ ମାୟାବୀ ଅନ୍ଧାରି
ଗାଆମୋଡ଼ା ଦେଇଣ ଉଠନ୍ତି ଦେବହରି
ଦୁର୍ଗାଙ୍କୁ ଦେଖିଣ ଖସଇ ଜ୍ୟୋତି ତେଜ
ଜ୍ୟୋତିରୁ ଜାତ ବ୍ରହ୍ମା ବିଷ୍ଣୁ ଶଙ୍କର
୫ । ଖ ଓ ଗ ପୋଥି – ଜନ ଜନ୍ତୁ ଚଡ଼ାଇ ଭିଆଇ ଚଉମାଥ

## ରୁକ୍ମିଣୀ ହରଣ

ଶ୍ରୀକୃଷ୍ଣନାଥ ଯେ ମର୍ତ୍ତ୍ୟରେ ଜନ୍ମିଲେ
ନନ୍ଦିଘୋସ ରଥ ସେ ବୈକୁଣ୍ଠପୁରୁ ଅଇଲେ ॥୩୩୫୪॥
ଯେଣୁ ରୁକ୍ମିଣିଙ୍କି ପାଇବେ ଭଗବାନ
ତେଣୁ କରି ବିଧାତା ପ୍ରବର୍ତ୍ତିଲା ଯାନ ॥୩୩୫୫॥
ସୁଭ  ଅନୁକୁଳ କରି ରଥରେ କଲେ ବିଜେ
ବ୍ରାହ୍ମଣଙ୍କୁ ବୋଇଲେ କହ ଯାଇ ରୁକ୍ମିଣିର ଆଗେ ॥୩୩୫୬॥
ଶ୍ରୀକୃଷ୍ଣ ବଚନେ ଚଳିଲା ଦ୍ଵିଜବର
କହିଲା ସକଳ ସେ ରୁକ୍ମିଣିଙ୍କ ଆଗର ॥୩୩୫୭॥
ସୁଣିଲି ସୁନ୍ୟରେ ଗୋ ଅଛନ୍ତି ବନମାଳି
ଯହିଂ ଅଛନ୍ତି ଅଗମ୍ୟ ସ୍ଥାନକୁ ଯିବି ଚଳି ॥୩୩୫୮॥
ଘେନି ଯିବେ ତୁମ୍ଭଙ୍କୁ ନ ଦେଖିବେ କେହି
ସୁଣିଣ ଆନନ୍ଦ ହୋଇଲେ ଚାନ୍ଦମୁହିଂ ॥୩୩୫୯॥
ବଦୟନ୍ତି ସଦାସିବ ସୁଣଗୋ ଗଉରୀ
ବରବେସେ ବାହାର ଦମଘୋସ ବଳୀ ॥୩୩୬୦॥
ବିର ତୁରି ଟମକ ନିସାଣ ବଜାଇ
ହୁଳହୁଳି ସଙ୍ଖ ସବଦେ ପୃଥ୍ୱି ଚମକଇ ॥୩୩୬୧॥
ଅନେକ ଦେସରୁ ଆସିଅଛନ୍ତି ରାଜାମାନେ
ଯାଇଅଛି ଜାରାସନ୍ଧ ବରଯାତି ପଣେ ॥୩୩୬୨॥
ଯହୁଂ ସେ ସୁର୍ଯ୍ୟ ଅସ୍ତ ହୋଇଲା ସନ୍ଧ୍ୟାକାଳେ
ବରବେସ ହୋଇ ବେଦିରେ ବସିଲା ସିସୁପାଳେ ॥୩୩୬୩॥
ଡଗର କହିଲା ଭିସ୍ମେକ ଅଗ୍ରତ
ଗୁପତେ ଆସିଣ ଅଛନ୍ତି ଗୋପିନାଥ ॥୩୩୬୪॥
ଭିସ୍ମେକ ସୁଣି ହୋଇଲା ସ୍ତମ୍ଭିଭୁତ
ବିଚାରେ କିପାଇଂ ଅଇଲେ ଗୋପିନାଥ ॥୩୩୬୫॥
ସୁଣିଣ ଦମଘୋସ ଆନନ୍ଦ ମନ ହୋଇ
ବାନ୍ଧବ ପଣେ ମୋର ଅଇଲେ ଭାବଗ୍ରାହି ॥୩୩୬୬॥
ସୁଣିଣ କୋପଭର ହୋଇଲା ଜାରାସନ୍ଧ
ସନ୍ୟକୁ ବୋଇଲା ହୋ ନିରୋଧିଣ ଥିବଂ[1] ॥୩୩୬୭॥
ଗୋରୁଚରା ଗୋପାଳ ସେ କପଟ ଜାଣଇ
ରାତ୍ରକାଳେ ନିକି ଅନର୍ଥ କରଇ ॥୩୩୬୮॥
ଅଷ୍ଟାଦସ ବାର ତାକୁ ମୁଂ ଯେ ମଥୁରାକୁ ଦିଲି ଧାଡ଼ି
ଅଛନ୍ତି ଦରିଆରେ ମଥୁରାପୁର ଛାଡ଼ି ॥୩୩୬୯॥
ଯେମନ୍ତ ବୋଲିଣ ସେ ବୋଇଲା ଜାରାସନ୍ଧ
ରୁକ୍ମିଣି ସ୍ନାନସାରି ହୋଇଲାକ ସଜ ॥୩୩୭୦॥

୧ । ଖ ଓ ଗ ପୋଥି – ସନ୍ୟକୁ ବୋଇଲା କୃଷ୍ଣର ପଥ ହୋ ନିରୋଧ

ଅର୍ଘ୍ୟଥାଳ ଗୋଟିଯେକ ଘେନିଣ ହସ୍ତର
ପ୍ରବେସ ହେଲା ଯାଇ ଦେବିଙ୍କ ଦେଉଳର ॥୩୩୭୧॥
ବହୁତ ଦାସିମାନେ ସଙ୍ଗତରେ ଅଛନ୍ତି
ଜୟ ଜୟ ବୋଲିଣ ଦୁର୍ଗାଙ୍କୁ କଲେ ସ୍ତୁତି ॥୩୩୭୨॥
ଅର୍ଘ୍ୟଂ ପୁଜା ସାରି ହୋଇଲେ ବାହାର
ପ୍ରବେସ ହେଲେ ଯାଇ ବେଦି ସନ୍ନିଧ୍ୟର ॥୩୩୭୩॥
ଏହି ସମୟରେ ମିଳିଲେ ଦଇତାରି
ରଥରେ ବସାଇ ରୁକ୍ମିଣି ଭୁଜଧରି ॥୩୩୭୪॥
ଗଗନେ ଗଲା ଯାନ ବାହିଲେ ସାରଥି
ନିଲା ନିଲା ବୋଲିଣ ସବଦ ଚମକି ॥୩୩୭୫॥
ରୁକ୍ମଣ ବୋଲିଣ ରୁକ୍ମିଣିର ଜ୍ୟେଷ୍ଠ ଭାଇ
ଆଗେ ଉଗାଳନ୍ତେ ତାକୁ ବାନ୍ଧିଲେ ଭାବଗ୍ରାହି ॥୩୩୭୬॥
ଦୃଷ୍ଟ ରାଜା ସହିତେ ଜାରାସନ୍ଧ ଆଦିକରି
ବଳରାମ ସମରେ ରହିଲେ ଅପସରି ॥୩୩୭୭॥
କରଯୋଡ଼ି ରୁକ୍ମିଣି କହିଲେ ହରିଠାର
ଫିଟାଇ ଦିଅ ମୁକୁଳି ଯାଉ ମୋ ସହୋଦର ॥୩୩୭୮॥
ସୁଣି ତିକ୍ଷ ନାରାଜ ଘେନିଲେ ଭଗବାନ[2]
ସାତବେଣ୍ଟି କଲେ ପଳାଇଲା ରୁକ୍ମଣ ॥୩୩୭୯॥
ଲକ୍ଷ୍ମି ନାରାୟଣ ଦ୍ଵାରିକାରେ ମିଳି
ଯାଦେବ ସନ୍ୟ ଘେନି ପ୍ରବେସ ଦେବହଳି ॥୩୩୮୦॥
ବିଭାର ସାମଗ୍ରି ଘେନି ଭିଆଇ ଉଗ୍ରସେନ
ହୋଇଲେ ବରବେସ ରୁକ୍ମିଣି ଭଗବାନ ॥୩୩୮୧॥
ଦ୍ଵାରିକାରେ ବହୁତ ହୋଇଲା ଉଛବ
ପ୍ରଥମ ବିଭା ଯେ ହେଉଅଛନ୍ତି ବାସୁଦେବ ॥୩୩୮୨॥
କୋଟି କୋଟି ସଙ୍ଖ ସୁଭଇ ହରିଧ୍ୱନି
ପୁଷ୍ପ ବୃଷ୍ଟି କଲେକ ଦେବତା ସୁରମୁନି ॥୩୩୮୩॥
ବିଭା ବିଧି ସାରିଣ ସାରିଲେ ଲଜ୍ୟା ହୋମ
ବଡ଼ ସୋଭା ପାଉଅଛି ଦ୍ଵାରକା ଭୁବନ ॥୩୩୮୪॥

## ଦନ୍ତବକ୍ର ଓ ବିଦୂରଥର ମୃତ୍ୟୁ

ସୁଣଗୋ ଓମା ବୋଲି ବୋଲନ୍ତି ସିବ ଭୋଳା
ଲଜ୍ୟାପାଇ ସିସୁପାଳ ବେଦିରୁ ଉଠିଗଲା ॥୩୩୮୫॥
ତାହାର ସାନୁଜ ଯେ ଥିଲା ଦନ୍ତବକ୍ର
ହର ଉଦ୍ୟାନରେ ସେ କଲା ଯାଇ ତପ ॥୩୩୮୬॥

୧ । ଖ ଓ ଗ ପୋଥି – ଅହିଙ୍ଖ
୨ । ଖ ଓ ଗ ପୋଥି – ନାରାୟଣ

ପ୍ରସନ୍ନ ହୋଇ ହର ଦେଲେ ତାକୁ ବର
ବରପାଇ ହୁରି ଜୁରି କଲେ ଦ୍ୱାରିକାର ॥୩୩୮୭॥
ଦେଖିଣ ଦଇତାରି ଧାଇଂଲେ କୋପଭର
ସାରଙ୍ଗ ଧନୁଧରି କୋପଭରେ ବିନ୍ଧିଲେ ତିକ୍ଷସର ॥୩୩୮୮॥
କାଟିଲେକ ମୁଣ୍ଡ ଲାଗିଲା କନ୍ଧର
କେବେ ହେଂ ନ ମଲା ସେ ଦନ୍ତବକ୍ର ବିର ॥୩୩୮୯॥
କୋପେ ଭଗବାନ ଯେ ପେସିଲେ ସୁଦ୍ରିସେନ
ଚକ୍ର କାଟିଲା ବେନିଖଣ୍ଡ କଲା ଦମଘୋସର ନନ୍ଦନ ॥୩୩୯୦॥
ଶ୍ରୀକୃଷ୍ଣ ହସ୍ତେ ମରି ପାଇଲା ସଦଗତି
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି ॥୩୩୯୧॥
ଯହୁଂ ଦନ୍ତବକ୍ର ହୋଇଲା ପ୍ରାଣେ ହତ
ତାହାର ସହୋଦର ଥିଲା ଯେ ବିଦୁରଥ ॥୩୩୯୨॥
ବଳବନ୍ତ ପଣେ ଯେ ସାଧିଲାକ ମହି
ମିଳିଲା ଜଳପୁରେ ସାହେର ସୋସଇ ॥୩୩୯୩॥
ବିଚାରେ ସିନ୍ଧୁ ସୋସି ସୁଖାଇବିଂ ମୁହିଂ
ନବରତ୍ନ ନେବି ମୁଂ ସମୁଦ୍ର ସୁଖାଇଂ[୧] ॥୩୩୯୪॥
ଦେଖି ଆଶ୍ଚାର୍ଯ୍ୟ ହୋଇଲା ରତ୍ନାକର
ହୃଦରେଂ ସୁମରିଲା ପ୍ରଭୁ ଚକ୍ରଧର ॥୩୩୯୫॥
ଜୟତୁ ଜଗନ୍ନାଥ ଦେବ ଦଇତାରି
ତୋହର ସଞ୍ଚିଲା ସାହେର ଅଧିକାରି ॥୩୩୯୬॥
ଦ୍ରପିଷ୍ଟ ବିଦୁରଥ ଦେଉଛି କସଣ
ଯେହାକୁ ନାସି ମୋତେ ଉଦ୍ଧର ନାରାୟଣ ॥୩୩୯୭॥
ବରୁଣର ସ୍ତୁତି ସୁଣି ଗମିଲେ ଭାବଗ୍ରାହି
ମିଳିଲେ ସିନ୍ଧୁ ତଟେ ହୋଇଲେ ମଛ ରୋହି ॥୩୩୯୮॥
ଜଳ ହାନ୍ଦୋଳନ୍ତେ ଦେଖିଲା ବିଦୁରଥ
ଜଳସଙ୍ଗେ ପୁରୋଇଣ କ୍ଷେପିଲା ଗର୍ଭଗତ ॥୩୩୯୯॥
ଗର୍ଭରେ ପସି ହରି କାୟା ବିସ୍ତାରିଲେ
ଫାଟିଲା ପଞ୍ଜରା ଗୋବିନ୍ଦ ବାହାରିଲେ ॥୩୪୦୦॥
ମଲା ବିଦୁରଥ ପାଇଲା ସଦଗତି
କୃଷ୍ଣ ରୁପ ଦେଖି ବରୁଣ କଲା ସ୍ତୁତି ॥୩୪୦୧॥

## ବିକଟ ବଧ ଓ ରେବତୀଙ୍କ ସହିତ ବଳରାମଙ୍କ ବିବାହ

ଲକ୍ଷ୍ମିଙ୍କି ସଜକରି ବେଗେ ଆଣିଲା ଜଳପତି
ଶ୍ରୀହରିଙ୍କି ସମର୍ପିଣ ଦେଲାକ ଦୁହିତି ॥୩୪୦୨॥

୧ । ଖ ଓ ଗ ପୋଥି – ରତ୍ନାକର ଭୁବନ୍ନୁଂ ରତ୍ନ ନେବିଂ ବହି

କରପତ୍ର ଯୋଡ଼ିଣ ମାଗଇ ସରଣ
ବୋଇଲା ହରି ତୋତେ ଦୁହିତା ଦିଲିଦାନ ॥୩୪୦୩॥
ଦୁହିତା ଗୋଟି ଦେଇ ସମର୍ପି ହୁଅଇଂ
ତୁମ୍ଭେ କିସ ନ ଜାଣ ମୁଂ କିସ କହିବଇଂ ॥୩୪୦୪॥
ସୁଣିଣ ଆନନ୍ଦିତ ହୋଇଲେ ପିତବାସ
ହୃଦେ ସୁମରିଲେ ମିଳିଲା ନନ୍ଦିଘୋସ ॥୩୪୦୫॥
ଲକ୍ଷ୍ମି ନାରାୟଣ ରଥରେ ବିଜେ କଲେ
ଦ୍ୱାରିକା ପୁରେଂ ଯାଇ ପ୍ରବେସ ହୋଇଲେ ॥୩୪୦୬॥
ଯହୁଂ ସେ ବିଦୁରଥ ପ୍ରାଣେ ନାସ ହୋଇ
ବିକଟ ନାମେ ତାର ମଇତ୍ର ଅଟଇ ॥୩୪୦୭॥
ମଇତ୍ର ବିଘାତେ ବିକଟ କୋପଭର
ମିଳିଲା ଦ୍ୱାରିକାରେ ଆଚ୍ଛାଦିଣ ଅନ୍ଧକାର ॥୩୪୦୮॥
ଦ୍ୱାରିକାର ଲୋକେଂ ଯେ ହୋଇଲେ ବିକଳ
ସୂର୍ଯ୍ୟ ଅସ୍ତ ହୋଅନ୍ତେ ଘୋଟିଲା ଅନ୍ଧକାର ॥୩୪୦୯॥
ଏ ଅନ୍ଧକାରୁଂ ଉଦ୍ଧାର କର ହେ ଭଗବାନ
ଦ୍ୱାରିକାର ଲୋକ ଆମ୍ଭେ ତୋ ପାଦେ ସରଣ ॥୩୪୧୦॥
ସୁଣି ସୁଦର୍ଶନକୁ ବୋଇଲେ ମହାବାହୁ
ଦୃଷ୍ଟକୁ କାଟିପକା ଦ୍ୱାରିକା ଦୁଖ ଯାଉ ॥୩୪୧୧॥
ଶ୍ରୀକୃଷ୍ଣ ଆଜ୍ଞାପାଇ ସୁଦ୍ରିସେନ ଚଳିଗଲା
ବିକଟ ସିରକାଟି ବେନି ଖଣ୍ଡ କଲା ॥୩୪୧୨॥
ପଡ଼ିଲା ବେନିଖଣ୍ଡ ହୋଇ ଉଡ଼ିଲାକ ପ୍ରାଣ
ଶ୍ରୀକୃଷ୍ଣ ହସ୍ତେ ମରି ଲଭିଲା କାରଣ ॥୩୪୧୩॥
ବଦୟନ୍ତି ସଦାସିବ ସୁଣଗୋ ଗିରିଜା
ରମ୍ୟେକ ଦ୍ୱିପେ ଯେ ରମ୍ୟେକ ବୋଲି ରାଜା[୧] ॥୩୪୧୪॥
ରେବତି ବୋଲିଣ ଯେ ତାହାର ତନଇ
ସେ କନ୍ୟା ବଳରାମଙ୍କୁ ପ୍ରଦାନ କରି ଦେଇ ॥୩୪୧୫॥

## ଜମ୍ବୁବତୀ ବିଭା ଓ ଶ୍ରୀକୃଷ୍ଣଙ୍କ ସହିତ ଜାମ୍ୱେବର ଯୁଦ୍ଧ ବୃତ୍ତାନ୍ତ

ସତ୍ରାଜିତ ବୋଲିଣ ସେ ଯେକ ଯାଦବ ଅଟଇ
ସୂର୍ଯ୍ୟଙ୍କୁ ସେବି ରତ୍ନମଣି ଥିଲା ପାଇ ॥୩୪୧୬॥
ସତ୍ରାଜିତ ଭାଇ କଣ୍ଠରେ ମଣିଥିଲା
ସେ ସ୍ୱପ୍ନାଜିତକୁ ସିଂହ ବନସ୍ତେ ଭକ୍ଷିଲା ॥୩୪୧୭॥
ସେ ବନପତିକି ଜମ୍ୱେବ ବଧ କଲା
ମଣିନେଇ ପାତାଳ ବିମ୍ୱରେ ପସିଲା ॥୩୪୧୮॥

୧ । ଖ ଓ ଗ ପୋଥି – ରଇମେକ ବୋଲିଣ ଏକଇ ଗିରି ରାଜା

ଯହୁଂ ସେ ସ୍ୱପ୍ନାଜିତ ହୋଇଲା ନିଧନ
ଗୋବିନ୍ଦ ବଧିଲେ ବୋଲି ସୁଭିଲା ବୟାଣ ॥୩୪୧୯॥
ଲୋକ ଅପବାଦେ ହରି ପସିଲେ ପାତାଳେ
ମଣି ହରଣେ ଜମ୍ୱେବ ସଙ୍ଗତେଂ ସମର କଲେ ॥୩୪୨୦॥
ଜମ୍ୱେବ ଜଗନ୍ନାଥ ବଳ ସରିସମ
ସମର କରନ୍ତେ ଗଲା ବିସାସତେ ଦିନ ॥୩୪୨୧॥
ଜିଣି ନପାରି ସ୍ତକିତ ହୋଇଲେ ଗଦାଧର
ଡାକିଲେ ଜମ୍ୱେବ ମାଗ ଦେବି ବର ॥୩୪୨୨॥
ଯୁଦ୍ଧରେ ତୋତେ ମୁଂ ନ ପାରିଲି ଜିଣି
ଜମ୍ୱେବ ବୋଇଲା ମୋ ଅଛଇ ଦୁଲଣି ॥୩୪୨୩॥
ଦୁହିତା ଦେଇ ତୁମ୍ଭଙ୍କୁ ମୁଂ ପସିବି ସରଣ
ଆଣ କୁମାରିକି ବୋଲି ବୋଇଲେ ନାରାୟଣ ॥୩୪୨୪॥
ସୁଣି ଗମିଲା ମନ୍ତ୍ରି ମଣ୍ଡିଲା ଜମ୍ୱୁବତି
କଣ୍ଠେ ମଣି ଭରି ଗୋବିନ୍ଦଙ୍କୁ ସମର୍ପିଲା ଦୁହିତି ॥୩୪୨୫॥
କନ୍ୟାକୁ ଘେନି ହରି ମିଳିଲେ ଦ୍ୱାରିକାର
ପାର୍ବତି ପୁଛାକଲେ ସୁଣ ହେ ସଙ୍କର ॥୩୪୨୬॥
ଶ୍ରୀକୃଷ୍ଣଙ୍କ ସଙ୍ଗତେ କେମନ୍ତେ ଯୁଝିଲା ଜମ୍ୱେବ
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ ॥୩୪୨୭॥
ତ୍ରେତୟା ଯୁଗରେ ବନେ ପସିଲେ ଶ୍ରୀରାମ
କପଟେ ସିତୟାଂକୁ ହରିନେଲା ସେ ରାବଣ ॥୩୪୨୮॥
ରକ୍ଷ କପି ଘେନି ରାମ ସାହେର ବାନ୍ଧିଲେ
ରାବଣ ସଙ୍ଗତେ ଘୋର ରଣ କଲେ ॥୩୪୨୯॥
ଲକ୍ଷ୍ମଣକୁ ରାବଣ ବିନ୍ଧିଲାକ ସକ୍ତି
ସକ୍ତି ପଡ଼ନ୍ତେ ମୋହ ହୋଇଲା ସଉମିତ୍ରି ॥୩୪୩୦॥
ଶ୍ରୀରାମ ପଚାରନ୍ତେ କହିଲା ଜମ୍ୱେବ
ବିସଲ୍ୟକରଣି ନାମେ ଅଛଇ ଓସଧ ॥୩୪୩୧॥
ଗନ୍ଧମାର୍ଦ୍ଦନ ପର୍ବତୁ ଆଣୁ ହନୁମାନ
ସୁଣି ହନୁମତକୁ ପ୍ରବର୍ତ୍ତିଲେ ରାମ ॥୩୪୩୨॥
ସେହି ରାତ୍ରେ ଯାଇ ଆଣିଲା ହନୁମାନ
ଜମ୍ୱେବ ବାଟିଦିଲା ଜିବନ ପାଇଲା ଲକ୍ଷ୍ମଣ ॥୩୪୩୩॥
ସାଧୁ ଜମ୍ୱେବ ବୋଲି ପ୍ରସଂସିଲେ ରଘୁବିର
ଭାଇକୁ ଜିଆଇଲୁ ମାଗ ଦେବି ବର ॥୩୪୩୪॥
ଜମ୍ୱେବ ବୋଇଲା ଯେବେ ପାଞ୍ଚିଲୁ ରଘୁବିର[1]
ବେଳେକ ସମର କରିବିଂ ତୁମ୍ଭର ସଙ୍ଗତର[2] ॥୩୪୩୫॥

୧ । ଖ ଓ ଗ ପୋଥି – ରଘୁନାଥ
୨ । ଖ ଓ ଗ ପୋଥି – ସଙ୍ଗତ

ଅସ୍ତୁ ହେଉ ବୋଲି ବୋଇଲେ ରଘୁରାଣ
ଦ୍ୱାପର ଯୁଗେ ଆମ୍ଭ ସଙ୍ଗତେ କରିବୁ ତୁହି ରଣ ॥୩୪୩୬॥
ଯେମନ୍ତ ବୋଲି ରାମ ବର ଦେଇଥିଲେ
ତେଣୁ ଜମ୍ୱେବ ଯୁଝିଲେ ଗୋବିନ୍ଦର ତୁଲେ ॥୩୪୩୭॥

## ସତ୍ୟଭାମା ବିବାହ

ସୁଣଗୋ ଓମା ବୋଲି ବୋଲନ୍ତି ସୁଳପାଣି
ସତ୍ରାଜିତକୁ କୃଷ୍ଣ ସମର୍ପିଲେ ମଣି ॥୩୪୩୮॥
ସତ୍ୟଭାମା ବୋଲି ତାହାର ଦୁହିତାଯେ ଥିଲା
ତାହାକୁ ସତ୍ରାଜିତ କୃଷ୍ଣଙ୍କୁ ବିଭା ଦିଲା ॥୩୪୩୯॥
ସତ୍ୟଭାମାକୁ ବିଭା ହୋଇଲେ ନରହରି
ବଦୟନ୍ତି ସଦାସିବ ସୁଣଗୋ ଗଉରି ॥୩୪୪୦॥
ଶ୍ରୀକୃଷ୍ଣ ହସ୍ତେ ଯହୁଂ ବିକଟ ନାସ ଗଲା
ସାଲୁ ବୋଲିଣ ତାର ସାନୁଜେକ ଥିଲା ॥୩୪୪୧॥
ଅନେକ କ୍ରୋଧ କରି ଉଠିଲା ତୁହାଇଂ[1]
ଗୋବିନ୍ଦଙ୍କୁ ମାରିବାକୁ ପ୍ରତଜ୍ଞା ଅଛି ବହି ॥୩୪୪୨॥
ପସିଲେ ଦ୍ୱାରିକାରେ କଲେ ହୁରି ଜୁରି
ଭାଜଂଇ ମଣ୍ଡପ ଯେ ଜଗତି ଅଟ୍ଟାଳି ॥୩୪୪୩॥
ଦେଖିଣ କୋପିତ ସେ ହୋଇଲେ ଗଦାଧର
ସାଲୁର ସଙ୍ଗତେ ସେ କଲେକ ସମର ॥୩୪୪୪॥
ଯେତେ ନାରାଜ ଶ୍ରୀହରି ବିନ୍ଧିଲେକ କୋହେ
ଉପୁଡ଼ି ପଡ଼ିଲା ନ ଭେଦିଲା ସାଲୁ ଦେହେ ॥୩୪୪୫॥
ବେଳକୁ ବେଳ ଦୈତ୍ୟ ପହିଜ କରଇ
ମାଲବନ୍ଧ ରଣେ ତାକୁ ନାସିଲେ ଭାବଗ୍ରାହି ॥୩୪୪୬॥
ଯହୁଂ ସେ ସାଲୁ ମଲା ଶ୍ରୀକୃଷ୍ଣ ହସ୍ତର
ଗନ୍ଧର୍ବ ଅଙ୍ଗଧରି ବସିଲା ସ୍ୱର୍ଗପୁର ॥୩୪୪୭॥
ସାଲୁକୁ ନାସି ହରି ସଙ୍ଖଧ୍ୱନି ପୁଣି କଲେ
ଗୋବିନ୍ଦ ସିରେ ଦେବେ ପୁଷ୍ପ ବୃଷ୍ଟି କଲେ ॥୩୪୪୮॥
କହନ୍ତି ସଦାସିବ ସୁଣଗୋ ଦେବି ଓମା
ଯେମନ୍ତ ପ୍ରକାରେ ସେ ଶ୍ରୀକୃଷ୍ଣ ମହିଂମା ॥୩୪୪୯॥
ଅନେକ ଦୁଷ୍ଟ ଦତ୍ୟ କଲେକ ନିସୋଧନ
ଭାରା ଉଶ୍ୱାସିତେ ସେ ମହିରେଂ ଜନମ ॥୩୪୫୦॥
ଦୁଷ୍ଟକୁ ନାସିଣ ପାଳନ୍ତି ଯେ ସନ୍ଥ ପ୍ରାଣି
ଶ୍ରୀହରି ଚରିତ ଯେ ଅପୁର୍ବ କାହାଣି ॥୩୪୫୧॥
ଆନନ୍ଦେ ପିଅ ନରେ ଫିଟୁ କାଳଫାସ
ଏ ଭବାର୍ଣ୍ଣବରୁ ଉଦ୍ଧରିବେ ପିତବାସ[2] ॥୩୪୫୨॥

୧ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ
୨ । ଖ ପୋଥିରେ ଏହି ଧାଡ଼ି ନାହିଁ

ସକଳ ଚିନ୍ତା ଛାଡ଼ି ସୁମର ନରହରି
ପାଇବ ସଦଗତି ବସିବୁ ବିଷ୍ଣୁପୁରି ॥୩୪୫୩॥
ପବିତ୍ର ଆଖ୍ୟାନ ଯେ ଅଟଇ ହରିବଂସ
ହରି ଆସ୍ରେ କରିଛନ୍ତି ସାରୋଳା ଚଣ୍ଡି ଦାସ ॥୩୪୫୪॥

## ପାଣ୍ଡବମାନଙ୍କ ସହିତ ଶ୍ରୀକୃଷ୍ଣଙ୍କ ସାକ୍ଷାତ

ବଦୟନ୍ତି ଓମା ମହେସ ମୁଖ ଚାହିଂ
ଶ୍ରୀକୃଷ୍ଣ ନିଳା ସୁଣି ପାତେକ ନାସିବଇଂ ॥୩୪୫୫॥
ସୁଣିବି ହରିକଥା କୁହ ହେ ପସୁପତି
ଗିରିଜା ବଚନେ ବଦୟନ୍ତି ତ୍ରୟଆଖି ॥୩୪୫୬॥
ଯେକଦିନେ ଶ୍ରୀହରି ମିଳିଲେ ବାରୁଣାର
ବଇସାଖ ସୁକ୍ଳ ଚଉଠି ଗୁରୁବାର ॥୩୪୫୭॥
ପାଣ୍ଡେବଙ୍କ ସଭାରେ ମିଳିଲେ ବାସୁଦେବ
ଅର୍ଜୁନ ଦେଖିଣ ତାଙ୍କୁ କଲାକ ଗଉରୋବ ॥୩୪୫୮॥
ଯୁଧେଷ୍ଠି ନକୁଳ ଭିମ ସହଦେବ
ଗୋଟି ଗୋଟି କରି ଚିହ୍ନାଇଂ ପାର୍ଥିବ ॥୩୪୫୯॥
ଗୋବିନ୍ଦେ ଯୁଧିଷ୍ଠିଙ୍କି ନମସ୍କାର କଲେ
କଲ୍ୟାଣ କରି ଦେବ ଆସନ ଯୋଗାଇଲେ ॥୩୪୬୦॥
ସାନୁଜ ଚାରିଭାଇ ହରିଙ୍କି ଓଳଗିଲେ
ଶ୍ରୀକୃଷ୍ଣଙ୍କୁ ଦେଖିତେ କୁନ୍ତିଦେବି ମିଳିଲେ ॥୩୪୬୧॥
ମାତାର ଭଗ୍ନିଙ୍କି ଦେଖି ହରି ହୋଇଲେ ନିଉଛାଳି
କଲ୍ୟାଣ ବାଞ୍ଛିଲେ ସେ ଭୋଜରାଜାର ଦୁଲାଳି ॥୩୪୬୨॥
ଶ୍ରୀହରିଙ୍କି କୋଇନ୍ତା କୁସଳ ପଚାରି
ସକଳ ସର୍ବସୁଭ ବୋଲି ବୋଇଲେ ଦଇତାରି ॥୩୪୬୩॥
ଯେତେବେଳେ ପ୍ରମାଦ ଚିନ୍ତିଲା କଂସାସୁର
ତହିଂରୁ ଉବୁରିଲି ଥାଇଣ ନନ୍ଦଘର ॥୩୪୬୪॥
ମାରିବ ବୋଲି କଂସ ମୋତେ ଘେନାଇଗଲା
ମାଲ ମାହୁନ୍ତଙ୍କ ହସ୍ତେ ମୋତେ ଯୁଝାଇଲା ॥୩୪୬୫॥
ମାରିବେ ବୋଲି ମୋତେ ସେହି ଗଲେ ମରି
ମଞ୍ଚାରେ ଉଠୁଥିଲି ପଡ଼ିଲା କଂସ ମୁଖମାଡ଼ି ॥୩୪୬୬॥
ଆଗେ ସେ ନାସ ଗଲା ମୁହିଂ ଉବୁରିଲିଂ
ମାତା ପିତାଙ୍କର ମୁଂ ବନ୍ଧନ ଫେଡ଼ିଲି ॥୩୪୬୭॥
ରହିଲୁଂ ମଥୁରାରେ ଆଶ୍ୱାସି ବନ୍ଧୁଗଣ
ତଦନ୍ତରେ ଜାରାସନ୍ଧ ଧାଡ଼ି ଦିଲା ପୁଣ ॥୩୪୬୮॥
ଅଷ୍ଟାଦସ ବାର ସେହି ଦିଲା ଧାଡ଼ି
ପଳାଇ ସିନ୍ଧୁ ତେଇଂ ରହିଲୁଂ ଘର କରି ॥୩୪୬୯॥
ଦେଖିଲି ବନ୍ଧୁ ଆଜ ନିର୍ମଳ ହେଲା ଆଖି
ପଣ୍ଡୁଙ୍କର ବିହୁନେ ତୁମ୍ଭେ ହେଲ ଦୁଖି ॥୩୪୭୦॥
ସୁଣିଣ କୋଇନ୍ତା ହେଲେ ଅଶୃତଲୋଚନ
କଣ୍ଠ ଗଦ ଗଦ ହୋଇଣ ବୋଲନ୍ତି ବଚନ ॥୩୪୭୧॥
ଯେଉଂ ଦିନୁ ପଣ୍ଡୁ ନୃପତି ହେଲେ ନାସ
ସାନ ସାନ ହୋଇଥିଲେ ପାଞ୍ଚଗୋଟି ସିସ ॥୩୪୭୨॥
ପାଳିଲେ ଧୃତିରାଷ୍ଟ୍ର ଅତି ଯତ୍ନ କରି
ତାର ପୁତ୍ର ଦ୍ରିଯୋଧନ ଲଗାଇଲା କଳି ॥୩୪୭୩॥
ଦୃଷ୍ଟଙ୍କର କନ୍ଦଳ ନ ପାରିଲୁ ସହି
ଆମ୍ଭଙ୍କୁ ଅନ୍ଧରାଜା ଭିନ୍ନ କରି ଦେଇ ॥୩୪୭୪॥
ଯେହୁ ଗ୍ରାମଖଣ୍ଡି ଆମ୍ଭଙ୍କୁ ଦେଲେକ ସେ ପୁଣି
ପାଞ୍ଚଗୋଟି ଛେଉଣ୍ଡ ଘେନି ଯେଥି ମୁଂ ରହିଲିଂ ॥୩୪୭୫॥
ଦୃଭିକ୍ଷ କାନ୍ତାର ଯଉଂ ଦିନରେ ପଡ଼ଇ
ବହୁତ କଷ୍ଟ ଆମ୍ଭେ ଅର୍ନ୍ନ ବିହୁନେ ପାଇ ॥୩୪୭୬॥
ତଣ୍ଡୁଳ ପାଞ୍ଚମାଣ କରଇଂ ରନ୍ଧନ
ଯେକା ସେ ଊଣା ଅଧିକ ଭକ୍ଷଇ ଭିମସେନ ॥୩୪୭୭॥
ଚାରିପୁତ୍ରଙ୍କୁ ଆର ଭାଗେକ ଦିଅଇ
ପେଜ ଟୋପାକରେ ମୁଂ ଯେ ଉଦର ପୋସଇ ॥୩୪୭୮॥
ଯେତେ ଦୁଖରେ ଆମ୍ଭେ ଛଡ଼ଜଣ ବ୍ରତି
ଦେଖିଲୁଂ ଆଜ ତୋତେ ସୁଫଳ ଜୁଗତିଂ ॥୩୪୭୯॥
ସଖାବନ୍ଧୁ ସୋଦର ଆଉ କେହି ନାହିଂ
ସମସ୍ତ ବନ୍ଧୁମୋର ତୋତେ ମୁଂ କରିଛଇଂ
ଯେଥକୁ ଆମ୍ଭଙ୍କୁ ହୋଇବାକ ସାହି[୨] ॥୩୪୮୦॥
ଯେକା ବନ୍ଧୁ ମୋହର ଦେବ ଦାମୋଦର
ତୋହର ବିହୁନେ ମୋର ସମସ୍ତେ ସିନା ପର ॥୩୪୮୧॥
ଯେମନ୍ତ କହି କଇନ୍ତା ଗୃହକୁ ଗଲେ ଚଳି
ରନ୍ଧନ କଲେ ଦେବି ଗଉରି ସଉରି ॥୩୪୮୨॥
ଅର୍ଜୁନ ଜଗନ୍ନାଥଙ୍କୁ ସୁଗନ୍ଧ ତୈଳ ଲେପି
ସ୍ନାହାନ ସାରିଣ ସେ ସୁର୍ଯଙ୍କୁ ଜଳ ଟେକି ॥୩୪୮୩॥
ସାରିଲେ ଦେବାର୍ଚ୍ଚନ ସାରିଲେ ଭୋଜନ
ଆଞ୍ଚୋବନ ସାରିଣ ଭଜିଂଲେ ଗୁଆପାନ ॥୩୪୮୪॥
ସେଦିନ ଗୋବିନ୍ଦ ରହିଲେ ବନ୍ଧୁଘରେ
ତୁଟିଲା ରୟେଣି ଯେ ଉଦୟ ଦିନକରେ ॥୩୪୮୫॥

## କୃଷ୍ଣଙ୍କ ସହିତ କାଳନ୍ଦୀ, ଲକ୍ଷଣା, ଭାରଥୀ ଓ ତୁଳୁସାଙ୍କ ବିବାହ

ଅର୍ଜୁନକୁ ହରି ସଙ୍ଗତେ ଘେନିଗଲେ
ଗରୁଡ଼ ପୃଷ୍ଟେ ବସି ଦିଗ ବିଜେ କଲେ ॥୩୪୮୬॥

---

୧ । ଖ ପୋଥିରେ ଏହି ଧାଡ଼ି ନାହିଁ
୨ । ଗ ପୋଥିରେ ଏହି ଧାଡ଼ି ନାହିଁ

ପଥ ବହିଗଲେ ସେ ହରି ଅରଜୁନ
ଆକାସ ଗଙ୍ଗାଜଳେ ସାରିଲେ ସ୍ନାହାନ ॥୩୪୮୭॥
ସେ ଗଙ୍ଗା ତଟେ ବସି କନ୍ୟାୟେ କରେ ତପ
କାହାକୁ ଇଛାବୋଲି ପଚାରେ ବିର ପାଥ ॥୩୪୮୮॥
କିସ ନାମ ତୋହର କହନି ବିସ୍ତାରି
କିରଟି ବଚନେ ବୋଇଲେ ତପନ କୁମାରି ॥୩୪୮୯॥
କାଳନ୍ଦି ନାମ ମୋର ପିତା ମୋ ତପନ
କରୁଛି ତପ ମୁହିଂ ପାଇବି ଭଗବାନ ॥୩୪୯୦॥
ସୁଣିଣ ଅର୍ଜୁନ ଯେ କୃଷ୍ଣଙ୍କୁ ବୋଲଇ
ଯେ କନ୍ୟା ଗୋଟି ଦେବ ତୁମ୍ଭଙ୍କୁ ଯୋଗ୍ୟ ହୋଇ ॥୩୪୯୧॥
ସୁଣିଣ ଜଗନ୍ନାଥ ତୋଳିଲେ କାଳନ୍ଦି
ଗରୁଡ଼ ପୃଷ୍ଟରେ ବସି ବିଜଏ ଗୋବିନ୍ଦି ॥୩୪୯୨॥
ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ବୀରସେନ ବୋଲିଣ ଯେକୋଇ ଦଣ୍ଡଧାରି ॥୩୪୯୩॥
ଲକ୍ଷ୍ମଣା ବୋଲିଣ ଯେ ତାହାର ନନ୍ଦନି
କରୁଛି ସ୍ୱୟମ୍ବର ସପତ ସଣ୍ଢ ଘେନି ॥୩୪୯୪॥
ଯେହାକୁ ଯେକାବେଳ ଯେହୁ ବାନ୍ଧି ପାରି
ତାହାକୁ ପ୍ରଦାନ ମୁ କରିବି ମୋହର କୁମାରି ॥୩୪୯୫॥
ଯେମନ୍ତ ସୁଣି କୃଷ୍ଣ ସେଠାରେ ବିଜେ କଲେ
ସପତ ସଣ୍ଢଙ୍କୁ ବାନ୍ଧିଲେ ଯେକାବେଳେ ॥୩୪୯୬॥
ଦେଖିଣ ନୃପତି ଯେ ଆନନ୍ଦ ଚିତ୍ତ ହୋଇ
ଲକ୍ଷ୍ମଣା କନ୍ୟାକୁ ଆଣି କୃଷ୍ଣଙ୍କୁ ସମର୍ପଇ ॥୩୪୯୭॥
ଅର୍ଜୁନଠାରେ ହରି ମିଳିଲେ କନ୍ୟାଘେନି
ଦେଖିଣ ନିଉଛାଳି କଲାକ ଫାଲଗୁନି ॥୩୪୯୮॥
କନ୍ୟାକୁ ଘେନି ହରି ଗରୁଡ଼ ପୃଷ୍ଟେ ବସି
ଉଡ଼ିଲା ଖଗବର ମିଳିଲା ଦ୍ୱାରାବତି ଆସି ॥୩୪୯୯॥
ଭାରଥି ତୁଳୁସାଙ୍କୁ ତଦନ୍ତେ ବିଭାହେଲେ
ହୋଇଲା ଅଷ୍ଟନାରି ସଙ୍କର କହିଲେ ॥୩୫୦୦॥

## କୁରୁବଂଶର ସୃଷ୍ଟି ଓ ଗଙ୍ଗାଙ୍କ ସହିତ ଶାନ୍ତନୁଙ୍କ ବିବାହ

ବଦୟନ୍ତି ସାକାମ୍ଭେରି ସୁଣ ହେ ସଦାସିବ
କୁରୁପାଣ୍ଡବଙ୍କର ଯେବେ ଚରିତ କହିବ ॥୩୫୦୧॥
କୁରୁ ପାଣ୍ଡବେ ବଂସ ସେ କାହିଂରୁ ହେଲେ ଜନ୍ମ
ଯେକ ବଂସ କିପାଇଂ ହୋଇଲେ ଭିନ୍ନ ଭିନ୍ନ ॥୩୫୦୨॥
ଯେ କଥା ପ୍ରାଣନାଥ କହ ହେ ବିସ୍ତାରି
ବଦୟନ୍ତି ସଦାସିବ ସୁଣଗୋ ଗଉରି ॥୩୫୦୩॥
ଭାରତ ହରିବଂସ ଯେ ପବିତ୍ର ପୁନ୍ୟସାର
ସୁଣିବାକୁ ଇଚ୍ଛା ଯେବେ ଚିତ୍ତ କର ସ୍ଥିର ॥୩୫୦୪॥
ଗୋହତ୍ୟା ସ୍ତିରିହତ୍ୟା ବ୍ରହ୍ମସ୍ୱ ହରଣ ପାପି
ଯେ ଯେହା ସୁଣେ ଯେତେକ ପାପ ନାସି ॥୩୫୦୫॥
ଶ୍ରୀହରି କଥା କହି ଆମ୍ଭେ ହୋ ତରିବା
ସୁଣାଇଣ ତୋତେ ଗୋ ମୁକତି କରାଇବା ॥୩୫୦୬॥
ତୁ ଯେ ପଚାରିଲୁ କେମନ୍ତ କୁରୁବଂସ
ପ୍ରଳୟ କାଳରେ ସୃଷ୍ଟି ଜଳରେ ଗଲା ନାସ ॥୩୫୦୭॥
ବ୍ରହ୍ମା ବିଷ୍ଣୁ ଆମ୍ଭେ ଆଦିଦେବିଠାରୁ ଜନ୍ମ
ନବତନ ସୃଷ୍ଟି ଆମ୍ଭେ କଲୁଗୋ ସର୍ଜନ ॥୩୫୦୮॥
ବିଷ୍ଣୁର ନୟନରୁ ଚନ୍ଦ୍ରମା ଜାତ ହୋଇ
ବୁଧନାମେ ଚନ୍ଦ୍ରର ହୋଇଲା ତନଇ ॥୩୫୦୯॥
ବୁଧର ବିର୍ଯ୍ୟୁଂ ବଇଧୃତି ଜାତ ହେଲା
ସଉନନ୍ଦ ବୋଲି ତାର କୁମରେ ଜନମିଲା ॥୩୫୧୦॥
ଚାରି ସମୁଦ୍ରରେ ସେ ଯେ ହୋଇଲା ରାଜନ
ବିରଭଦ୍ର ବୋଲି ସେ ତାହାର ନନ୍ଦନ ॥୩୫୧୧॥
ତାହାର ତନୟ ପୁରୋରବା ହୋଇଲା
ମରିଚି ବୋଲିଣ ତାର ପୁତ୍ରେକ ଜନମିଲା ॥୩୫୧୨॥
ମରିଚିର ପୁତ୍ର ନାମ ତା ନହୁସ
ବଳବନ୍ତ ପଣେ ସ୍ୱର୍ଗରେ ନରେସ ॥୩୫୧୩॥
ରସିର କନ୍ଧେ ବସି ସାପ୍ୟରେ ନାସ ଗଲା
ନହୁସର ସୁତ ଆୟର[1] ହୋଇଲା ॥୩୫୧୪॥
ଆୟର ନନ୍ଦନ ଯେ ପୃଥୁନାମ ହୋଇ
କୁରୁ ବୋଲି ତାହାର ହୋଇଲା ତନଇ ॥୩୫୧୫॥
ସେହିଠାରୁ ଯେ ଯେ ବୋଲାଇ କୁରୁବଂସ
କୁରୁର ବିର୍ଯ୍ୟୁ ସମ୍ଭୁରାଣ ହୋୟେ ଜାତ ॥୩୫୧୬॥
ବଳବନ୍ତ ପଣେ ସେ ସାଧିଲାକ ମହି
ସୂର୍ଯ୍ୟଙ୍କର ଦୁହିତା ତାପନିକି ବିଭା ହୋଇ[2] ॥୩୫୧୭॥
ତାହାର ଗର୍ଭୁଂ ଯେ ଜନମ ଭାନୁମତି
ଭାନୁମତିର ନନ୍ଦନ ନାମ ତାର ପୃଥି ॥୩୫୧୮॥
ଚିତ୍ର ଉତ୍ପଳ ବୋଲିଣ ତାହାର ତନୟେ
ସାୟେନ୍ତନୁ ବୋଲିଣ କୁମର ତାର ହୋୟେ ॥୩୫୧୯॥
ଦିନୁ ଦିନ ବଢ଼ିଣ ହୋଇଲା ନବ ଯୁବା
ବିଦ୍ୟାଧର ସମାନେ ଦିସଇ ରୁପ ସୋଭା ॥୩୫୨୦॥
ଧାର୍ମିକ ଗୁଣବନ୍ତ ସାହାସ୍ରେ ନିର୍ଜିତା
ପ୍ରଜାଙ୍କୁ ପାଳଇ ସେ ଯେସନେ ପିତା ମାତା[3] ॥୩୫୨୧॥

---

୧ । ଖ ଓ ଗ ପୋଥିରେ ଆୟର ସ୍ଥାନରେ ଅୟୁର ବୋଲି ଲେଖାଯାଇଛି
୨ । ଖ ପୋଥି – ତାହାର ପତ୍ନୀ ହୋଇ
୩ । ଖ ଓ ଗ ପୋଥି – ଈଶ୍ୱର ସମାନ୍ୟେ ସେ ଅଟଇ ବରଦାତା

ପ୍ରସୁରାମ ସମାନ୍ୟେ ଅଟଇ ଧନୁର୍ଦ୍ଧର
ସତୃ ନିସୋଧନ ସେ ବୋଲାଇ ମେଦନିର ॥୩୫୨୨॥
କହନ୍ତି ସଦାସିବ ସୁଣଗୋ ଗଉରି
ନିର୍ଘାତ ବୋଲିଣ ସେ ଯେକଇ ଦଣ୍ଡଧାରି ॥୩୫୨୩॥
ତାହାର ଘରେ ଗଙ୍ଗା ଦେବି ଜାତ ହେଲେ
ସିବଙ୍କୁ ବିଭା ହେବି ବୋଲି ମନରେ ବିଚାରିଲେ ॥୩୫୨୪॥
ସଦାସିବ ବିନୁ ମୋର ଅନ୍ୟ ନାହିଁ ବର
ଯେତେ ବୋଲି ଦେବି କଲେକ ସୟମ୍ବର ॥୩୫୨୫॥
ଆମ୍ଭେ ସେତେବେଳେ ରହିଥିଲୁ ସପତ ପାତାଳେ
ଯେକଥା ସାୟେନ୍ତନୁ ଜାଣିଲେ ହୃଦୟରେ ॥୩୫୨୬॥
ଆମ୍ଭର ରୁପ ବେସ ଧରିଣ ମୁନିବର
ପ୍ରବେସ ହୋଇଲେ ଯାଇ ନୃପତି ସୟମ୍ବର ॥୩୫୨୭॥
ଦେଖିଣ ଗଙ୍ଗାଦେବି ହୋଇଲେ ଆନନ୍ଦ
ବିଚାରିଲେ ମୋ ସ୍ୱାମି ଅଇଲେ ସଦାନନ୍ଦ ॥୩୫୨୮॥
ହସ୍ତକେ ବର୍ଣ୍ଣମାଳା ହସ୍ତକେ ଅର୍ଘ୍ୟସ୍ଥାଳି ଗୋଟି
ସାୟେନ୍ତନୁଙ୍କୁ ଗଙ୍ଗା ବରଣ କଲେ ପତି ॥୩୫୨୯॥
ସାରିଲେ ବିଭାବିଧି ଆରମ୍ଭିଲେ ସଯ୍ୟା
ସାୟେନ୍ତନୁ ରୁପ ଯହୁଁ ଦେଖିଲେକ ଗଙ୍ଗା ॥୩୫୩୦॥
ନିଜ ରୁପ ଦେଖି ଦେବି ହୋଇଲେ ତାଟକା
ଚିହ୍ନିଣ ହୃଦଗତେ ପାଇଲେ ଦେବି ସଙ୍କା[୧] ॥୩୫୩୧॥
ସାୟେନ୍ତନୁଙ୍କୁ ରତି ଭୋଗ ନ ଦିଲାକ ବାଳି
ଭର୍ଛନା କରିଣ ସେ ମୁନିଙ୍କି ଦିଲା ଗାଳି ॥୩୫୩୨॥
ଯେମନ୍ତ ସମୟରେ ପାହିଲା ରଜନି
ଗୃହକୁ ଯିବେ ବୋଲି ବାହାର ହେଲେ ମୁନି ॥୩୫୩୩॥
କାନ୍ଦିଣ ଗଙ୍ଗାଦେବି କହିଲେ ମାତା ପିତାଙ୍କ ଛାମୁରେ
ମୁହିଁ ନ ଯିବଇଁ ମାତା ତୁମ୍ଭ ଜୁଆଇଁଙ୍କ ଘରେ ॥୩୫୩୪॥
ମୋହର ବର ସେ ସଙ୍କର ଅଟନ୍ତି
ତାହାଙ୍କର ବେସ ଧରି ଅଇଲା ସେ ଯତି ॥୩୫୩୫॥
ହୋଇଲଇଁ ବିଭା ନୋହିବି ତାର ନାରି
ନରହିବି ତାର ଘରେ ହୋଇବି ଦେସାନ୍ତରି ॥୩୫୩୬॥
ନୋହିଲେ ମରିବଇଁ ଅନଳେ ଦେଇ ଝାସ
ନବତନ ଜନ୍ମରେ ମୁଁ ପାଇବି ମହେସ ॥୩୫୩୭॥
ଯେମନ୍ତ ବୋଲି ଗଙ୍ଗା ସୋକରେ କହେ ବାଣି
ସୁଣି ପ୍ରବୋଧ କଲେ ପିଅର ଜନନି ॥୩୫୩୮॥
ବୋଇଲେ ମାଆଗୋ କର୍ମରେ ଯାହା ଥିଲା
ଦଇବ ଆଣି ତାହା ତୋତେ ସମର୍ପିଲା ॥୩୫୩୯॥

୧ । ଖ ଓ ଗ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଜ୍ୟେଷ୍ଟ ହେଉ ଅବା କନେଷ୍ଟ ହେଉ
ସ୍ତିରିଙ୍କର ସ୍ୱାମି ବିଷ୍ଣୁର ସମାନ ସେହୁ ॥୩୫୪୦॥
ତୁ ଯେ ବୋଇଲୁ ମୋର ବର ସଦାନନ୍ଦେ
ସଙ୍କର ପ୍ରାୟେ ସାୟେନ୍ତନୁ ମଣ ଯେବେ ॥୩୫୪୧॥
ଯେମନ୍ତ କହି ମାତା ପିତା ପ୍ରବୋଧିଲେ[୧]
ସୁଣିଣ ହରସ ବିସ୍ମୟେ ଗଙ୍ଗା ହୋଇଲେ[୨] ॥୩୫୪୨॥
ଯିବାକୁ ସଜ ଯେ ହୋଇଲେ କନ୍ୟାବର
ବହୁତ ଯଉତୁକ ଦିଲେ ନୃପବର ॥୩୫୪୩॥
ନବରେ ସାୟେନ୍ତନୁ ମିଳିଲେ କନ୍ୟା ଘେନି
ବଦୟନ୍ତି ସଦାସିବ ସୁଣଗୋ ଭବାନି ॥୩୫୪୪॥
ସାୟେନ୍ତନୁଙ୍କୁ ଗଙ୍ଗାଦେବି ନ ଦିଲେ ରମଣିଂ
ଗଙ୍ଗା ସାୟେନ୍ତନୁଙ୍କୁ କହିଲେ ସତ୍ୟ ବାଣିଂ ॥୩୫୪୫॥
ଗଙ୍ଗା ବୋଇଲେ ଯେ ଥିବି ତୁମ୍ଭ ଘରେ
ଗାଙ୍ଗୀ ବୋଇଲେ ନ ରହିବି ଯିବି ଦେସାନ୍ତରେ ॥୩୫୪୬॥
ସତ୍ୟକରି ସାୟେନ୍ତନୁ ଗଙ୍ଗାଙ୍କୁ କୋଳକଲା
ବେନି ହସ୍ତ ଛଡ଼ାଇଣ ଗଙ୍ଗା ପଳାଇଲା ॥୩୫୪୭॥
ସାୟେନ୍ତନୁ ଅଙ୍ଗରୁ ଗଳିଲାକ[୩] ରେତ
ସେ ରେତରୁ ଜନ୍ମିଲା ଯେକଇଟି ସୁତ[୪] ॥୩୫୪୮॥
ପୁତ୍ରକୁ ସାୟେନ୍ତନୁ ଗଙ୍ଗାର ହସ୍ତେ ଦିଲେ
ସହସ୍ର ଘେନି ଦେବି ପୁତ୍ରକୁ କାଟିଲେ ॥୩୫୪୯॥
ପୁତ୍ରର ନିଧନେ ସାୟେନ୍ତନୁ କିଛିହିଂ ନ କହିଲା
ଯେଥୁ ଅନ୍ୟନ୍ତରେ ତହୁଂ କିଛି ଦିନ ଗଲା ॥୩୫୫୦॥
ଯେକଦିନେ ସାୟେନ୍ତନୁ କାମରେ ଆରତ
ଚିତ୍ର ପ୍ରତିମାକୁ ଯାଇ କଲେ କୋଳାଗ୍ରତ ॥୩୫୫୧॥
ଅଜିବ ପିତୁଳା ସେ କିସ ଦେବ ସଧ
ସାୟେନ୍ତନୁ ଅଙ୍ଗରୁ ଯେ ଖସିଲାକ ବିର୍ଯ୍ୟ ॥୩୫୫୨॥
ସେ ବିର୍ଯ୍ୟ[୫] ବେନିଭାଗ ହୋଇ ପଡ଼ିଲା ପିତୁଳାର
ସେହିକ୍ଷଣି ଜନ୍ମିଲେ ସେ ବେନି କୁମର ॥୩୫୫୩॥
ପୁତ୍ରକୁ ଦେଖି ସାୟେନ୍ତନୁ ମନେ ବିଚାରିଲେ
ଜାଣିବ ଯେବେ ଗଙ୍ଗା କୁମରେ ନାସ ଯିବେ ॥୩୫୫୪॥
ଯେତେ ବୋଲି ରସି ବେନି ପୁତ୍ରକୁ ଘେନିଣ
ସମର୍ପି ଦିଲେ ସତ୍ୟାବତି ପାରୁସେଣ ॥୩୫୫୫॥

୧ । ଗ ପୋଥି – ଏମନ୍ତ କହି ମାତା ପିତା ପ୍ରବୋଧି
୨ । ଗ ପୋଥି – ଶୁଣିଣ ହରଷ ବିସ୍ମୟେ ହୋଇଲେ ଦେବୀ ଗାଙ୍ଗୀ
୩ । ଗ ପୋଥି – ଖସିଲାକ ତେଜ
୪ । ଖ ଓ ଗ ପୋଥି – ତେଜରୁ ଜନ୍ମିଲେ ଯେକଇ ତନୁଜ
୫ । ଗ ପୋଥି – ତେଜ

ଅତି ଯତ୍ନ କରି ସେ ଯେ ପାଳିଲା ସତ୍ୟାବତି
ଚିତ୍ରବିର୍ଯ୍ୟ ବିଚିତ୍ରବିର୍ଯ୍ୟ ନାମ ତା ବିଖ୍ୟାତି ।।୩୫୫୬।।

## ସତ୍ୟବତୀ ପ୍ରସଙ୍ଗ

ବଦୟନ୍ତି ପାର୍ବତି ସୁଣ ହେ ଦେବରାଜା
ସତ୍ୟାବତି ବୋଲିଣ ସେ କାହାର ଭାରିଯା ।।୩୫୫୭।।
ବଦୟନ୍ତି ସଙ୍କର ସୁଣଗୋ ମହାମାଇ
ମହାନଦି ବୋଲିଣ ସେ ପଶ୍ଚିମ ଦିଗରୁଂ ଆସେ ବହି ।।୩୫୫୮।।
ହରିଲା ଗିରିରାଜା ଦୁହିତା ଜାତ ହେଲା
ଦାସ ରାଜାକୁ ସେ ଦୋହିତା ଦାନ ଦିଲା ।।୩୫୫୯।।
ସେହି ଦାସ ରାଜାକୁ ଯେ ପିଡ଼ିଲା ମଦନ
ଖସିଲାକ ରେତ ଗିଳି ଦିଲାକ ତାକୁ ମିନ ।।୩୫୬୦।।
ଗର୍ଭବାସ ହୋଇ ମିନ ଜାଲରେ ପଡ଼ିଲା
କଇବ୍ରତ ନେଇ ତ ସେ ରାଜାକୁ ସମର୍ପିଲା[୧] ।।୩୫୬୧।।
କାଟନ୍ତେ ମିନ ଗର୍ଭରୁ ପଡ଼ିଲା ବେନି ବାଳ
ଗୋଟିୟେ ସ୍ତିରି ତହିଂ ଗୋଟିୟେ ଅଣ୍ଡିର ।।୩୫୬୨।।
ସେ ଦୁହିତା ଗୋଟିକ ଯେ କୈବ୍ରତ ନିଲା
ପାଳିଣ ତାହାକୁ ବରସ ସାତ କଲା ।।୩୫୬୩।।
ନାମ ଭାଗ୍ୟବତି ସିଖିଲା ନାବ ବାହି
ଦିନେ ମିଳିଲେ ପାରେଶ୍ୱର ଯତି ଯାଇ[୨] ।।୩୫୬୪।।
ସୁଣଗୋ ଗଉରି ବୋଲି ବୋଲଇ ସଙ୍କର
ଅଗସ୍ତି କହିଲେ ଯାହା ବୈବସୁତଙ୍କ ଆଗର ।।୩୫୬୫।।
ଭାଗ୍ୟବତି କି କହି ମୁନି ବସିଲେ ନାବର
ବାମାକୁ ଦେଖି ମୁନି ମଦନ ଘାରିଲା ଅଙ୍ଗର ।।୩୫୬୬।।
ବାଳୁତକୁ ମୁନିବର କଲେ ନବ ଯୁବା
ସ୍ତନମାନ ବିକାସି ଦିସିଲା ଦେହ ସୋଭା ।।୩୫୬୭।।
ତାହାର ତୁଲେ ମୁନି କଲେକ ଶୃଙ୍ଗାର
ଗର୍ଭରେ ପଡ଼ି ରେତ ନନ୍ଦନ ଅବତାର[୩] ।।୩୫୬୮।।
ଗର୍ଭରୁ ପଡ଼ି ପୁତ୍ର ହେଲା ବଳବନ୍ତ[୪]
ପଢ଼ିଲା ଚାରିବେଦ ପୁରାଣ ଅଷ୍ଟାଦଶ ଗ୍ରନ୍ଥ ।।୩୫୬୯।।
ଯେଣୁ ଚାରିବେଦ ମୁଖରେ ଅଭ୍ୟାସିଲେ[୫]
ତେଣୁ କରି ବେଦବ୍ୟାସ ନାମ ସେ ପାଇଲେ ।।୩୫୭୦।।

୧ । ଖ ଓ ଗ ପୋଥି – କଇବ୍ରତ ସେହି ମିନ ନୃପତିକି ଦେଲା
୨ । ଖ ପୋଥିରେ ତଳ ଦୁଇଧାଡ଼ି ନାହିଁ
୩ । ଖ ପୋଥି – ଜନ୍ମିଲା କୁମର
୪ । ଖ ପୋଥି – ବଢ଼ିଣ ନନ୍ଦ ଯେ ହୋଇଲା ବଳବନ୍ତ
୫ । ଖ ପୋଥି – ଆଭାସିଲେ

ନାବରେ ବସିଣ ଅଛଇ ଭାଗ୍ୟବତି
ଅନ୍ତର୍ଦ୍ଧାନେ ଆଶ୍ରମେ ମିଳିଲେ ପାରେଶ୍ୱର ଯତି ।।୩୫୭୧।।
ସୁଣଗୋ ଗଉରି ବୋଲି ବୋଲନ୍ତି ସଙ୍କର
ଅଗସ୍ତି କହିଲେ ଯାହା ବୈବସୁତ ଆଗର ।।୩୫୭୨।।
ଭାଗ୍ୟବତି ବସିଣ ସେ ବିଚାରଇ ମନ
ଘରକୁ ଯାଇ ମୁଂ ଚାହିଂବି କାହାର ବଦନ ।।୩୫୭୩।।
ତପସ୍ୱି ହରି ମୋତେ ଗଲେକ ତେଜିଣ
ଏ ଦୁଇକୁଳରୁ ମୁଂ ହୋଇଲି ଅକାରଣ ।।୩୫୭୪।।
ବିଧାତା ବିନୁ ଆଉ ସଂସାରେ ବଡ଼ ନାହିଂ
ତପ କରି ତୋଷିଣ ତାହାକୁ ବରପାଇ ।।୩୫୭୫।।
ୟେମନ୍ତ ବୋଲି ହୃଦେ ବିଚାରିଲା ବାଳି
ମନୋହର ବନରେ ପ୍ରବେସ ସୁନ୍ଦସାଳି ।।୩୫୭୬।।
ବହଇ ସରସ୍ୱତି ଯମୁନା ବେନି ଗୋଟି
ପାତାଳ ପୁରରୁଂ[୧] ବିମ୍ୱେକ ଅଛି ଫୁଟି ।।୩୫୭୭।।
ପଦ୍ମନାଭ ବୋଲିଣ ଅଛଇ ୟେକ ବଟ
ସେଠାରେ ବସି ଭାଗ୍ୟବତି କରେ ତପ ।।୩୫୭୮।।
ବସିଣ ନିଶ୍ଚଳେ ସେ ବୁଜିଲା ନୟନ
ହୃଦରେ ସୁମରଇ ଚତୁର ବଦନ ।।୩୫୭୯।।
ଚଉରାସି ସହସ୍ର ବରସ ଯୁଗ ଗଲା ବହି
ଜାଣିଲେ ବେଦବର ମିଳିଲେ ତାର ତହିଂ ।।୩୫୮୦।।
ବୋଇଲେ ସୁନ୍ଦରିଗୋ କାହିଂକି କରୁ ତପ
କହ ତୁ ମୋର ଆଗେ ତୁ ଯେ ମୁଂ ଜଗତ ଜନ ବାପ ।।୩୫୮୧।।
ଯୁବତି ହୋଇଣ ତୁ ୟେଡ଼େକ କଷ୍ଟ ସହୁ
ତୁନି ହୋଇ ରହିଅଛୁ କଥା ତୁ ନ କହୁ ।।୩୫୮୨।।
ସୁଣିଣ ଭାଗ୍ୟବତି ନୟନ ଫେଡ଼ି ଚାହିଂ
କରପତ୍ର ଯୋଡ଼ିଣ ସେ ବଚନ ପ୍ରକାସଇ ।।୩୫୮୩।।
ତୁମ୍ଭେ ଯେବେ ପ୍ରତକ୍ଷେଂ ଅଟ ହେ ଦଇବ
ଯାହା ମାଗିବିଂ ତାହା ଅବସ୍ୟ ମୋତେ ଦେବ ।।୩୫୮୪।।
ବିଧାତା ବୋଇଲେ ମାଗ ବିଳମ୍ୱ କର ନାହିଂ
ଭାଗ୍ୟବତି ବୋଇଲା କାନ୍ତ ମୋର ନାହିଂ ।।୩୫୮୫।।
ଥିଲି ମୁଂ ପିତାଘରେ ହରିଲେ ପାରେଶ୍ୱର
ପୁତ୍ରେକ ଜାତ ହେଲା ମୋହର ଗର୍ଭର ।।୩୫୮୬।।
ସେ ପୁତ୍ର ବସିଲା ହୋଇଣ ଯୋଗମୁର୍ତ୍ତି
ତେଜିଣ ମୋତେ ଗଲେ ପାରେଶ୍ୱର ଯତି ।।୩୫୮୭।।
ତେଣୁ ତପ କରୁଅଛି ତୁମ୍ଭର ନାମ ଧ୍ୟାୟି
ୟେମନ୍ତେ ପାରେଶ୍ୱର ମୋହର ପତି ହୋଇ ।।୩୫୮୮।।

୧ । ଖ ଓ ଗ ପୋଥି – ଭୁବନକୁ

ସୁଣିଣ ବିଧାତା ଯେ ମୁନିଙ୍କି ଚିନ୍ତିଲେ
ମିଳିଲେ ପାରେଶ୍ୱର ବ୍ରହ୍ମାଙ୍କ ପାଦ ତଳେ ॥୩୫୮୯॥
ବିଧାତା ବୋଇଲେ ସୁଣରେ ନନ୍ଦନ
ଯେହୁ ଦୁହିତା ଗୋଟିକି ତୁ ହୋଅସି ପ୍ରଦାନ ॥୩୫୯୦॥
ଆପଣେ ବିଧାତା ଯେ କୁସଜଳ ଘେନି
ବିଭା କରାଇଲେ ଦାସ ରାଜାର ନନ୍ଦନିଂ ॥୩୫୯୧॥
ବୋଇଲେ ଯେହି ସତ୍ୟ ଆଚରି ତପ କଲା
ତେଣୁ ସତ୍ୟବତି ନାମ ସେ ପାଇଲା ॥୩୫୯୨॥
ଯେତେ ବୋଲି ବିଧାତା ହୋଇଲେ ଅନ୍ତର
ସତ୍ୟାବତୀକି ଘେନିଣ ଯେ ରହିଲେ ପାରେଶ୍ୱର ॥୩୫୯୩॥
ଯମୁନା ତଟରେ ଜୟିନ୍ତିନା ନାମେ ଗ୍ରାମ
ତହିଂରେ ପାରେଶ୍ୱର କରି ରହିଲେ ଆଶ୍ରମ ॥୩୫୯୪॥
ସାୟେନ୍ତନୁଙ୍କର ବେନି ପୁତ୍ର ଉତପତି
ଲୁଚାଇଲେ ଗଙ୍ଗା ଡରେ ପାଳିଲେ ସତ୍ୟାବତି ॥୩୫୯୫॥
ଚିତ୍ରବିର୍ଯ୍ୟ ବିଚିତ୍ରବିର୍ଯ୍ୟ ବୋଲିଣ ବେନିଭାଇ
ବ୍ୟାସ ସହିତେ ସତ୍ୟାବତି ସେ ପାଳଇ ॥୩୫୯୬॥
ପୁଣି କୁମରେ ଗଙ୍ଗା ହାଦେ ଜନ୍ମ କଲେ
ବେନି ଖଣ୍ଡ କରି କାଟିବେ ବୋଲି ଦେବି ସହସ୍ର ଧଇଲେ ॥୩୫୯୭॥
ରହଲୋ ଗାଙ୍ଗି ବୋଲି ସାୟେନ୍ତନୁ ଦିଲେ ଡାକ
କୋପେଂ ଗଙ୍ଗା ତଳେ ପକାଇଲେ ବାଳେକ ॥୩୫୯୮॥
ସାପ୍ୟ ଦିଲେ ଗଙ୍ଗା ସାୟେନ୍ତନୁକୁ ଅନାଇ
ଯେହାର ପୁତ୍ରହସ୍ତେ ମରିବୁ ରସି ତୁହି ॥୩୫୯୯॥
ଯେବଣ ପୁତ୍ରକୁ ତୋର ପାଳଇ ସତ୍ୟାବତି
ସେ ହେବ ନପୁଂସକ ନୋହିବେ ସନ୍ତତି ॥୩୬୦୦॥
ଯେମନ୍ତ ସାପ୍ୟ ଦେଇ ପଳାଇଲେ ଗଙ୍ଗା
ସୁଣଗୋ ସଖି ବୋଲି ବୋଲନ୍ତି ଦେବରାଜା ॥୩୬୦୧॥
ଯେବଣ ପୁତକୁ ଗଙ୍ଗା ଜନ୍ମ କରିଗଲେ
ପାଳିଣ ସତ୍ୟାବତି ଭିସ୍ମ ନାମ ଦେଲେ ॥୩୬୦୨॥
ବଢ଼ିଣ କୁମରେ ହୋଇଲା ନବ ଯୁବା
ପଦ୍ମନାଭ ବୋଲି ପଦ୍ମ ଦେସର ଅଟେ ରାଜା ॥୩୬୦୩॥
ସାଧୁଗୁଣ ବିବେକ ଅଟଇ ବିଜ୍ଞଜନ
ପୁତ୍ର ସମ କରିଣ ପାଳଇ ପ୍ରଜାଜନ[୨] ॥୩୬୦୪॥
ତିନିଗୋଟି କୁମାରି ତା ବିର୍ଯ୍ୟରୁ ଜନମ
ଅମ୍ବା ଅମ୍ବିକା ଅମ୍ବାଳିକା ବୋଲି ତାଙ୍କ ନାମ ॥୩୬୦୫॥

୧ । ଖ ଓ ଗ ପୋଥି - ଦୁଲଣି
୨ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଚିତ୍ରବିର୍ଯ୍ୟ ଅମ୍ବିକା କନ୍ୟାକୁ ବିଭାହୋଇ
ଅମ୍ବାଳିକାକୁ ବିଚିତ୍ରବିର୍ଯ୍ୟ ସେ ଲଭଇ ॥୩୬୦୬॥
ବିଭା ହୋଇ ରହନ୍ତେ ଅନେକ କାଳ ଗଲା
ଗଙ୍ଗାଙ୍କର କୋପେ ଆଉ ସନ୍ତତି ନୋହିଲା ॥୩୬୦୭॥

## ଧୃତରାଷ୍ଟ୍ର ଓ ପଣ୍ଡୁଙ୍କର ଜନ୍ମ

ଭାଳିଲେ ସତ୍ୟାବତି ବ୍ୟାସଙ୍କ ସଙ୍ଗତର
କୁଳବୁଡ଼ି ଯାଉଅଛି ନୋହିଲା କୁମର ॥୩୬୦୮॥
ଯେଡ଼େ ବଡ଼ ବଂସ ଗୋଟି ବୁଡ଼ି ଯାଉଅଛି
ଅମ୍ବିକା ସଙ୍ଗତେ ତୁ ହୋ ବଢ଼ାଅ ପିରତି ॥୩୬୦୯॥
ବଦୟନ୍ତି ବ୍ୟାସେ କନିଷ୍ଠ ବଧୁ ମୋର
କେମନ୍ତେ ହରିବି ହୋଇବ ଅବେଭାର ॥୩୬୧୦॥
ଅରଜିବି ଅପଯସ ହୋଇବ ମୋତେ ହାନି
କି ବୋଲି ବୋଲିବେ ସଂସାର ଜନ ସୁଣି ॥୩୬୧୧॥
ବ୍ୟାସଙ୍କର ବଚନେ ସତ୍ୟାବତି ବୋଲଇ
ଉପାୟେ କରବାବୁ ଯେମନ୍ତେ କୁଳ ରହି ॥୩୬୧୨॥
ବ୍ୟାସଙ୍କୁ ସନମତ କରାଇ ସତ୍ୟାବତି
ବୁଝାଇ କହିଲେ ପଦ୍ମନାଭର ଦୁହିତି ॥୩୬୧୩॥
ସୁଣିଣ ବେନି ନାରି ନ କଲେ ସନମତ
କି ବୋଲି ବୋଲିବେ ଯେ ସୁଣିଣ ଜଗତ ॥୩୬୧୪॥
ବୋଲିବେ ବିଟପି ହୋଇଲେ ଯୁବତି
ଜେଠାସୁର ସଙ୍ଗତେ ବଢ଼ାଇଲେ ପିରତି ॥୩୬୧୫॥
ସତ୍ୟାବତି ବୋଇଲେ ସେ କଥା ମାନଛାଡ଼
ବୁଡ଼ିଗଲା କୁଳକୁ ଗୋ ଉଦ୍ଧରିଣ ଧର ॥୩୬୧୬॥
ତାହାଙ୍କୁ ପ୍ରବୋଧନା କରାଇ ସତ୍ୟାବତି
ସୁଣଗୋ ପ୍ରିୟା ବୋଲି ବୋଲନ୍ତି ପସୁପତି ॥୩୬୧୭॥
ଯେଥୁ ଅନ୍ୟନ୍ତରେ ସେ ଯେ ଚଳିଲେ ବ୍ୟାସମୁନି
ଆଣିଲେ ଜଳଘଟି ମନ୍ତ୍ରିଲେ କୁସ ପୁଣି ॥୩୬୧୮॥
ମୃତ୍ତିକାରେ ପିତୁଳା ଗୋଟିୟେ ନିର୍ମାଣିଲେ
ମନୁସ୍ୟ ଚିହ୍ନବର୍ଣ୍ଣ ସମସ୍ତ ଭିଆଇଲେ ॥୩୬୧୯॥
ମନସାରେ ରମଣ କଲେ ବ୍ୟାସ ମହାମୁନି
ଅଙ୍ଗରୁ ବିର୍ଯ୍ୟ ଖସି ପଡ଼ିଲା ଧରଣି ॥୩୬୨୦॥
ଜଳରେ ପକାଇଲେ ଭୁମିରୁ ତୋଳି ତାହା
ସତ୍ୟାବତି ଦିଲେ ଅମ୍ବିକା ଭକ୍ଷନ୍ତି ଯେହା ॥୩୬୨୧॥
ପରିବାରି ମାନେ ଜଳ ନିଲେ ଘରକୁ
ବ୍ୟାସେ ଦେଇଛନ୍ତି ବୋଲି ବୋଇଲେ ଅମ୍ବିକାକୁ ॥୩୬୨୨॥

ଭକ୍ଷନ୍ତି ମନ୍ତ୍ରଜଳ ଅମ୍ବିକା ତୋସ ହୋଇ[୧]
ସୁଣିଣ ଜଳଘଟ ଘେନିଲା ମହାମାଇ ॥୩୬୨୩॥
ଜଳକୁ ଅନାଇଣ ମନରେ କଲା ଖିଙ୍କି
ଭକ୍ଷିଲା ସୁନ୍ଦରି ଯେ ବୁଜିଲେ ବେନି ଆଖି ॥୩୬୨୪॥
ସେହିକ୍ଷଣି କୁମର ହୋଇଲାକ ଜନମ
ସକଳ ସମ୍ପୂର୍ଣ୍ଣ ଅନ୍ଧ ହୋଇଛି ନୟନ ॥୩୬୨୫॥
ପୁତ୍ରକୁ ଜାତକରି ଅମ୍ବିକା ନାସ ଗଲା
ସନ୍ତୋସ ସତ୍ୟାବତି ଅନ୍ଧକୁ ପାଳିଲା ॥୩୬୨୬॥
ବଦୟନ୍ତି ଗିରିଜା ସୁଣହେ ସଦାସିବ
କିପାଇଂ ବାଳ ପୋଏ ହୋଇଲାକ ଅନ୍ଧ[୨] ॥୩୬୨୭॥
ବଦୟନ୍ତି ସଦାସିବ ସୁଣଗୋ ଗଉରି
ଜଳ ଯେ ଭକ୍ଷିଥିଲା ଚିତ୍ରବିର୍ଯ୍ୟ ନାରି ॥୩୬୨୮॥
ଭକ୍ଷନ୍ତେ ନାରି ଯହୁଂ ବୁଜିଲା ନୟନ
ତେଣୁ ଦୁଇ ଚକ୍ଷୁ ଅନ୍ଧ ହୋଇଲା ନନ୍ଦନ ॥୩୬୨୯॥
ଭାଳିଲେ ସତ୍ୟାବତି ବ୍ୟାସ ସହିତର
ହୋଇଲାକ ଅନ୍ଧ ସେ ଯେକଇ କୁମର ॥୩୬୩୦॥
ସୋମବଂସକୁ ସେ କରନ୍ତା ଉଦ୍ଧାରଣ
ଅନ୍ଧ ହୋଇ କେମନ୍ତେ ହୋଇବ ରାଜନ ॥୩୬୩୧॥
ଯେମନ୍ତ ଭାଳନ୍ତେ କିଛିଦିନ ଯାଇ
ଦିନେକ ଅମ୍ବାଳିକା ସୁବେସ ଅଛି ହୋଇ ॥୩୬୩୨॥
ଅପୁର୍ବ ସୁନ୍ଦରି ସେ ଅଟଇ ଗରୁହଂସି
ଦେଖିଣ ମୋହିତ ହୋଇଲେ ବ୍ୟାସ ମହାରସି ॥୩୬୩୩॥
ବିନ୍ଧିଲା କାମସର ଖସିଲାକ ବିର୍ଯ୍ୟ[୩]
ସମ୍ଭାଳି ହୋଇଲେ ପରାସରଙ୍କ ତନୁଜ ॥୩୬୩୪॥
ଭୁମିରେ ପଡ଼ିଲା ରେତ ହସ୍ତରେ ଘେନିଲେ
ଲବଣି ମେଂଚିକରେ ତାହାକୁ ଚକଟିଲେ ॥୩୬୩୫॥
ସତ୍ୟାବତି କି ବୋଇଲେ ଯାଅଗୋ ଜନନି
ଅମ୍ବାଳିକା ବଧୁକୁ ଖୁଆଅ ଯେହା ପୁଣି ॥୩୬୩୬॥
ମୁଦୁସୁଲି ହସ୍ତରେ ସେ ବିଜ ତୋଳି ଦିଲେ
ବୁଝାଇ ସତ୍ୟାବତି ଅମ୍ବାଳିକାକୁ ଖୁଆଇଲେ ॥୩୬୩୭॥
ଭକ୍ଷିଣ କୁମର ସେ କଲାକ ପ୍ରସବ
ସୁକ୍ଳବର୍ଣ୍ଣ ଦିସଇ ସେ କୁମରର ଅଙ୍ଗ ॥୩୬୩୮॥
ଯେଣୁ ସେ ଲବଣି ସଙ୍ଗେ ବିର୍ଯ୍ୟ ଭକ୍ଷି
ତେଣୁ ସେହି ରୁପ ସେ ଯେ କୁମରର ଦିସି[୪] ॥୩୬୩୯॥

୧ । ଖ ପୋଥି – ନନ୍ଦନ ଜନ୍ମହୋଇ
୨ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୩ । ଖ ଓ ଗ ପୋଥି – ତେଜ
୪ । ଖ ପୋଥି – ତେଣୁ ଶୁକ୍ଳବର୍ଣ୍ଣ ଦିଶିଲା କୁମର ଅତି ତେଜ

ପ୍ରସବି ନାସ ଗଲାକ ଜନନି
ପାଳଇ କୁମରକୁ ପାରେଶ୍ୱର ପନ୍ତି ॥୩୬୪୦॥
ଅମ୍ବିକା ପୁତ୍ରର ନାହିଂ ଯେ ନୟନ
ତେଣୁ ଧୃତିରାଷ୍ଟ୍ର ଦେଲେ ତାର ନାମ ॥୩୬୪୧॥
ଅମ୍ବାଳିକା[୧] ପୁତ୍ର ଯେ ପାଣ୍ଡୁର ବର୍ଣ୍ଣ ଦିସି
ତେଣୁ ପଣ୍ଡୁ ନାମ ଦିଲେ ବ୍ୟାସ ଯତି ॥୩୬୪୨॥

## ଭୀଷ୍ମଙ୍କୁ ବରରୂପେ ନ ପାଇ ଅମ୍ବାଙ୍କର ଦେହତ୍ୟାଗ

ବଦୟନ୍ତି ସଦାସିବ ସୁଣ ଗୋ ଦେବି ଓମା
ଯେବଣ ପୁତ୍ର ପ୍ରସବି ଛାଡ଼ି ଗଲେ ଗଙ୍ଗା ॥୩୬୪୩॥
ଭୁମିରେ ପଡ଼ି ଯହୁଂ କାନ୍ଦିଲା ନନ୍ଦନ
ଭିସ୍ମ ବୋଲିଣ ସେ ଯେ ତାହାର ଦିଲେ ନାମ ॥୩୬୪୪॥
କୁମର ବଢ଼ି ସେ ଯେ ହୋଇଲେ ବଳବନ୍ତା
କଉସିକ ବିଦ୍ୟାରେ ସାହାସ୍ରେ ନିର୍ଜିତା ॥୩୬୪୫॥
ଧରନ୍ତେ ଧନୁସର କେହି ସେ ନୋହେ ସମ
ମହି ଭେଦିବାକୁ ହୋଇଲେ ଭାର୍ଜନ ॥୩୬୪୬॥
ପଦ୍ମନାଭ ରାଜାର ଥିଲା ଯେ ଦୁହିତ
ଭିସ୍ମଙ୍କୁ ଦେବା ବୋଲି କଲାକ ସନମତ ॥୩୬୪୭॥
ବରବେସେ ଭିସ୍ମଦେବ ହୋଇଲେ ବାହାର
ଦେଖିଣ ସାୟେନ୍ତନୁ ହୋଇଲେ ସୋକଭର ॥୩୬୪୮॥
ଭିସ୍ମ ବୋଇଲେ ତାତ ବିରସ କିପାଂମନ
ସାୟତଂନୁ ବୋଇଲେ ମୋର ହୋଇଲା ମରଣ ॥୩୬୪୯॥
ବିଭା ହୋଇବ ଯେବେ ଅବସ୍ୟ ହୋଇବ ବଛି
ସେ ମୋତେ ମାରିବ ଗଙ୍ଗା ସାପ୍ୟ ଦେଇଅଛି ॥୩୬୫୦॥
ଯେମନ୍ତ ବୋଲି ଯହୁଂ ବୋଇଲେ ସାୟେନ୍ତନୁ
ସୁଣିଣ ବରବେସ ତେଜି ଭିସ୍ମ ମନୁ ॥୩୬୫୧॥
ସଂହରି ପରଦାର ହୋଇଲେକ ଯତି
ତେଣେ ବାଟ ଚାହିଂ ପଦ୍ମନାଭର ଦୁହିତି ॥୩୬୫୨॥
ଯେଣୁ ଅମ୍ବା କନ୍ୟା ଭିସ୍ମଙ୍କୁ ବରିଥିଲା
ତେଣୁ ତାକୁ ବିଭା କେହି ରାଜା ସେ ନୋହିଲା ॥୩୬୫୩॥
ପିତାଘରେ ରହିଲା ସେ ହୋଇଣ ଅବିବାହି
ନବଯୁବା ହୋଇଣ ସେ ହୃଦରେ ଭାଳଇ ॥୩୬୫୪॥
ଭିସ୍ମଙ୍କର ନବରେ ପସିଲା ଦିନେ ପେଲି
ଭର୍ଛନା କରି ଭିସ୍ମେ ପକାଇଲେ ଠେଲି[୨] ॥୩୬୫୫॥

୧ । ଖ ପୋଥି – ଦ୍ୱିତୀୟ
୧ । ଗ ପୋଥି – ଦୁତୀୟ
୨ । ଖ ପୋଥି – ଭର୍ତ୍ସନା କରିଣ ଗଙ୍ଗାସୁତ ଦେଲେ ତାକୁ ଗାଳି

ଯାଆ ଲୋ ପାମରି ତୁ ନଥାଅଏଥି ଦଣ୍ଡେ
ନିଲକ୍ଷଣି ନାରିଲୋ ଆସିଛୁ ନିସାକାଳେ[୧] ॥୩୬୫୬॥
ଭିସ୍ମଙ୍କର ଭର୍ଛନାରେ କନ୍ୟା ଛାଡ଼ିଗଲା
ଅଭିମାନ ପାଇଣ ଗୃହକୁ ନ ଗମିଲା ॥୩୬୫୭॥
ଗଙ୍ଗାରେ ତପକରି ସେବିଲା ବିଶ୍ୱନାଥ
ପ୍ରସନ୍ନ ହେଲୁ ଆମ୍ଭେ ଦିଲୁ ଯେ ଯଥାଅର୍ଥ ॥୩୬୫୮॥
ଅମ୍ବା ବୋଇଲେ ମୋର ଶତୃ ଗଙ୍ଗାର ନନ୍ଦନ
ମୋହର ହସ୍ତରେ ସେହୁ ଲଭିବ ମରଣ ॥୩୬୫୯॥
ଆମ୍ଭେ ବୋଇଲୁ ସେ କଥା କାଳେ ସେ ହୋଇବ
ଦ୍ୱାପରେ ତୋର ପିତା ହୋଇବ ଦ୍ରୋପଦ ॥୩୬୬୦॥
ପୁରୁଷ ଆକୃତି ନଥିବ ତୋର ତହିଁ
ଅତି ବଳମାନେ ଶ୍ରୀଖଣ୍ଡି ନାମ ପାଇ ॥୩୬୬୧॥
ଭାରତ ଭୁମିକୁ ପାଣ୍ଡବେ ତୋତେ ନେବେ
ସେନାପତି କରାଇ ଭିସ୍ମଙ୍କୁ ମରାଇବେ ॥୩୬୬୨॥
ବରପାଇ ପଦ୍ମନାଭ କୁମାରି ଚଳିଗଲା
ଦ୍ରୋପଦ କୋଳେ ଜନ୍ମ ସେ ହୋଇଲା ॥୩୬୬୩॥

## ଧୃତରାଷ୍ଟ୍ର ଓ ପଣ୍ଡୁଙ୍କର ବିବାହ

ଯେଥୁ ଅନ୍ୟନ୍ତରେ ସୁଣଗୋ ହେମବନ୍ତି
ପଣ୍ଡୁ ଧୃତିରାଷ୍ଟ୍ରଙ୍କୁ ପାଳିଲେ ସତ୍ୟାବତି ॥୩୬୬୪॥
ଭୀସ୍ମ ବିଦୁର ପଣ୍ଡୁ ଧୃତିରାଷ୍ଟ୍ର
ଚାରିଗୋଟି ନନ୍ଦନଙ୍କୁ ପାଳନ୍ତି ବେଦବ୍ୟାସ ॥୩୬୬୫॥
ଧୃତିରାଷ୍ଟ୍ର ନିମନ୍ତେ କନ୍ୟା ଖୋଜାଇଲେ
ବରିଲା କନ୍ୟା ତାର ନାମରେ ନାସ ଗଲେ ॥୩୬୬୬॥
ବ୍ରହ୍ମରାକ୍ଷସ ସେ ଅଟଇ ଉଆଂସିଆ
ତେଣୁ ତା ନାମେ କନ୍ୟାର ଦହିଜ ହୋୟେ କାୟା ॥୩୬୬୭॥
ୟେମନ୍ତେ ବିସାସତେ ତାର ନାମେ କନ୍ୟା ନାସ ଗଲେ
ହୃଦରେ ବ୍ୟାସମୁନି ବହୁତ ଭାଳିଲେ ॥୩୬୬୮॥
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି
ଗାନ୍ଧାରସେନ ବୋଲି ଗୟା ଦେସର ନୃପତି ॥୩୬୬୯॥
ସତେକ ପୁତ୍ରତାର ୟେକଇ କୁମାରି
ପ୍ରତିପଦା ଦିନେ ଜନ୍ମ ଜାତି ବ୍ରହ୍ମ ଅସୁରି ॥୩୬୭୦॥
ଗାନ୍ଧାରି ନାମ ତାର ହୋଇଲା ନବଯୁବା
ବରପଣେ ବରିଲା କୁସଳ ଦେସ ରାଜା ॥୩୬୭୧॥
ଗାନ୍ଧାରି ନାମରେ ସେହି ନାସ ଗଲେ
ମାନଅର୍ଜୁନଙ୍କୁ ତଦଅନ୍ତରେ ବରିଲେ ॥୩୬୭୨॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ

ସେହିଦିନେ ସେହି ରାଜନ ଗଲେକ ନାସ
ୟେମନ୍ତେ ନାସ ଗଲେ ବିସାସତେ ନୃପନାଥ ॥୩୬୭୩॥
ଦିନକୁ ଦିନ ପିତା ଲୋଡୁଥାଇ ବର
ଅବିବାହି ହୋଇ ରହିଲା ଝିଅ ପିତାଘର ॥୩୬୭୪॥
ଗାନ୍ଧାରିର ହୋଇଲା ଚାରି ସହସ୍ର ବରସ
ଦିନେ ବ୍ୟାସେ ମିଳିଲେ ଗାନ୍ଧାରସେନ ଦେସ ॥୩୬୭୫॥
ଦେଖିଣ ନୃପତି ସେ ଯୋଗାଇଲେ ଆସନ
କୁସଳ ପୁଛାପୁଛି ହୋଇଲେ ବେନିଜନ ॥୩୬୭୬॥
ନୃପତି ବୋଇଲା ମୋ ଦୁହିତା ଅବିବାହି
ବ୍ରହ୍ମ ଅସୁରି ନୟନେ ସନିଶ୍ଚର ବସିଛଇ ॥୩୬୭୭॥
ତେଣୁ ତାର ନାମେ ଅନେକ ବର ନାସ ଗଲେ
ୟେହିରୁପେ ମୋହର ଧୃତିରାଷ୍ଟ୍ର ବ୍ୟାସ କହିଲେ ॥୩୬୭୮॥
ତାହାର ନାମରେ ଅନେକ କନ୍ୟା ଗଲେ ନାସ
ଗାନ୍ଧାରି ଧୃତିରାଷ୍ଟ୍ର ହୋଇଲେ ସମକଛ ॥୩୬୭୯॥
ଚଳିଲେକ ବ୍ୟାସେ ଗାନ୍ଧାରସେନକୁ ବୁଝାଇ
ଧୃତିରାଷ୍ଟ୍ରଙ୍କୁ ନିଲେ ବରବେସ କରାଇ ॥୩୬୮୦॥
ସୁଣିଣ ହରସ ଯେ ଗାନ୍ଧାରସେନ ରାଜନ
କନ୍ୟାକୁ ଜଳରେ ଯେ କରାଇ ସ୍ନାହାନ ॥୩୬୮୧॥
ପ୍ରଥମେ ଗୋଳେକ ବୃକ୍ଷକୁ ବିଭା କରି
ବିଭା ହୁଅନ୍ତେଣ ସେ ବୃକ୍ଷ ଗଲା ଜଳି ॥୩୬୮୨॥
ତଦନ୍ତରେ ଧୃତିରାଷ୍ଟ୍ରଙ୍କୁ ବିଭା ହୋଇ
ଯଥାବିଧି କର୍ମ ସାରି ନିଜ ମନ୍ଦିରେ ମିଳଇ ॥୩୬୮୩॥
ସାରିଣ ଲଜ୍ୟା ହୋମ କଲେକ ସୟନ
ଗାନ୍ଧାରି ଦେଖିଲା ଧୃତିରାଷ୍ଟ୍ରର ଅନ୍ଧ ନୟନ ॥୩୬୮୪॥
ବିଚାରିଲା ସ୍ୱାମି ଅନ୍ଧ ଚକ୍ଷୁକୁ ନ ଦିସଇ
ମୁହିଁ କେହ୍ନେ ଚାହିଂବି ବୋଲିଣ ଅନ୍ଧ ପଟଳ ବାନ୍ଧଇ ॥୩୬୮୫॥
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର
କୁନ୍ତସେନ ବୋଲିଣ ୟେକଇ ନୃପବର ॥୩୬୮୬॥
କୋଇନ୍ତା ବୋଲି ତାର ଥିଲାକ ଦୁଲଣି
ପଣ୍ଡୁକୁ ପ୍ରଦାନ କରି ଦିଲାକ ନୃପମଣି ॥୩୬୮୭॥
ଧୃତିରାଷ୍ଟ୍ର ଅନ୍ଧ ସେ ଯେ କରଇ ଗ୍ରାମ ଚିନ୍ତା
ନୃପତି ପଣେ ପଣ୍ଡୁ ହୋଇଲା ସକତା ॥୩୬୮୮॥
ଗଙ୍ଗାଧର ରସି ତାଙ୍କୁ ଦେଇଥିଲେ ବର
ତେଣୁ ସେ ପଣ୍ଡୁ ରାଜା ମହା ବଳିୟାର ॥୩୬୮୯॥
ଥୋକାୟେକ ରାଜାଙ୍କୁ ଯୁଦ୍ଧରେ ଜିଣିଲା
ପରରାଷ୍ଟ୍ର ଭୁଇଂକି ଆପଣେ ସାଧ୍ୟ କଲା ॥୩୬୯୦॥

ମାହେନ୍ଦ୍ରସେନ ବୋଲି ସାକଲ୍ୟ ଦେସେ ରାଜା
ମଦନସେନି ବୋଲି ତାହାର ଭାରିଯା ॥୩୬୯୧॥
ମଦନା ବୋଲିଣ ତାର ଯେକଇ କୁମାରି
ତାହାର ରୁପ ଦେଖି ମଦନ ଯାଏ ହାରି ॥୩୬୯୨॥
ଅତ୍ୟନ୍ତ ସୁନ୍ଦରି ସେ ସକଳ ଗୁଣେ ପୁର୍ଣ୍ଣ
ତାହାକୁ ବିଭା ହୋଇଲେ ସେ ବିଚିତ୍ରବିର୍ଯ୍ୟର ନନ୍ଦନ ॥୩୬୯୩॥
ବେନି ଗୋଟି ଭାରିଯା ପଣ୍ଡୁ ଯେ ବିଭା ହୋଇ
ତିନି ସମୁଦ୍ରରେ ସେ ଯେକାଙ୍ଗ ନୃପସାଇଂ ॥୩୬୯୪॥
ପାଟରେ ଧୃତିରାଷ୍ଟ୍ର ଆରମ୍ଭେ ବସିଥାଇ
ସଜଂୟ ନାମେ ମନ୍ତ୍ରି ସକଳ କହଇ ॥୩୬୯୫॥
ବିଦୁର ମହାତ୍ମା ରାଜ୍ୟର ଚିନ୍ତାକରେ
ଥାଟ ଘେନି କରି ପଣ୍ଡୁ ପରରାଷ୍ଟ୍ର ସାଧ କରେ ॥୩୬୯୬॥

## ବିଦୁରଙ୍କ ଜନ୍ମ ବୃତ୍ତାନ୍ତ ଓ ପଣ୍ଡୁଙ୍କର ଧୃତରାଷ୍ଟ୍ରଙ୍କୁ ରାଜ୍ୟଭାର ଅର୍ପଣ

ବଦୟନ୍ତି ଗିରିଜା ସୁଣ ହେ ଗଙ୍ଗାଧର
ବିଦୁର ବୋଲିଣ ସେ କାହାର କୁମର ॥୩୬୯୭॥
ସୁଣଗୋ ଓମା ବୋଲି ବୋଲନ୍ତି ଦେବକାସି
ସଉଭାଗି ବୋଲିଣ ଯେ ଥିଲା ଯେକ ଦାସି ॥୩୬୯୮॥
ଚନ୍ଦ୍ରଙ୍କର ଦୁହିତା ସେ ଗନ୍ଧର୍ବ ସାପ୍ୟପାଇ
ସୁଦ୍ରାଣି ଦେହଧରି ଯେ ଜନ୍ମିଲାକ ମହି ॥୩୬୯୯॥
ରସିକ ବିଦ୍ୟାରେ ସେ ବିଦ୍ୟାଧରି ସମ
ଦେଖିଣ ବ୍ୟାସଯତି ହାରିଲେ ନିଜ ଜ୍ଞାନ ॥୩୭୦୦॥
ମଦନେ ଅସାଷ୍ଟମେ ଦାସିକି କଲେ କୋଳ
ସୁରତି କରନ୍ତେଣ ଜନ୍ମ ହୋଇଲା ଯେକ ବାଳ ॥୩୭୦୧॥
ଯହୁଂ ବିଦ୍ୟୁଲତା ଗର୍ଭରୁଂ ଜନ୍ମ ହୋଇ
ତେଣୁ କରି ବିଦୁର ନାମ ସେହି ପାଇ ॥୩୭୦୨॥
ସାଧୁ ବୁଦ୍ଧିବନ୍ତ ସେ ଅଟଇ ପୁନ୍ୟଗ୍ରାହି
କୁଟୁମ୍ବର ଚିନ୍ତା ଧୃତିରାଷ୍ଟ୍ରକୁ ନ ଦିଅଇ ॥୩୭୦୩॥
ଦିନେକ ଧୃତିରାଷ୍ଟ୍ର ଗାନ୍ଧାରି ସଙ୍ଗେ ଭାଳି
ମୋ କର୍ମ ମନ୍ଦ ହେଲା ସୁଣଗୋ ସୁନ୍ଦରି ॥୩୭୦୪॥
କନେଷ୍ଠ ଭ୍ରାତ ପଣ୍ଡୁ ହୋଇଲା ନୃପତି
ପାତ୍ର ମନ୍ତ୍ରି ସେବକ ଖଟନ୍ତି ତାକୁ ନିତି ପ୍ରତି ॥୩୭୦୫॥
ଜ୍ୟେଷ୍ଠ ହୋଇଣ ମୁହିଂ ହୋଇଲି ଗୃହପତି
ସୁଣିଲା ଅନ୍ଧାରରେ ପଣ୍ଡୁ ସେ ନୃପତି ॥୩୭୦୬॥
ଧୃତିରାଷ୍ଟ୍ରକୁ ପଣ୍ଡୁ ଥାଟ ପାଟ ରାଜ୍ୟଦେଇ
ଭାରିଯାକୁ ଘେନିଣ ଯେ ଦେସାନ୍ତର ହୋଇ ॥୩୭୦୭॥
କଣୟ ନାମେ ବନ କାରୁଣ୍ୟ ନାମେ ନଦି
ସତେସିଂଘ ଗିରିକି ଅଛି ସେହି ଭେଦି ॥୩୭୦୮॥
ସେ ଗିରି ଉପରେ କୁଡ଼ିଆ ପଣ୍ଡୁ କରି
ଭାରିଯାକୁ ରଖିଣ ବନସ୍ତେ ବିହରି ॥୩୭୦୯॥
ପୁଣ୍ୟ ତିର୍ଥ ଜଳରେ ସେ କରଇ ସ୍ନାହାନ
ଧର୍ମରେ ଆସ୍ରିତ ପୁନ୍ୟରେ ପରାୟଣ ॥୩୭୧୦॥
ସାହାସ୍ରକୁ ସକତା ସହସ୍ରକୁ ମହାବଳି
ଦୁଷ୍ଟକୁ ନାସିଣ ସନ୍ଥଜନଙ୍କୁ ପ୍ରତିପାଳି ॥୩୭୧୧॥
ଶ୍ରୀହରି ପାଦପଦ୍ମେ କରଇ ଯେକ ଧ୍ୟାୟେ
ସଦା ସମ୍ପଦ ତାକୁ ଯେ ହରି ଦିୟେ ॥୩୭୧୨॥
ହରିଙ୍କି ଆସ୍ରେ କର ତରିବ ସାଧୁଜନ
ହରି ବିନୁ ଆଉ ଯେ ନାହିଂଟି କାରଣ ॥୩୭୧୩॥
ହରି ସେ ହରତା କରତା ପୁଣ୍ୟରସଂ[1]
ହରିପାଦେ ସରଣ ସାରୋଳା ଚଣ୍ଡି ଦାସ ॥୩୭୧୪॥

## ଅଗ୍ନିକାଙ୍କର ପଣ୍ଡୁଙ୍କୁ ଅଭିଶାପ ପ୍ରଦାନ

ସଙ୍କର ମୁଖ ଚାହିଂ ଗିରିଜା ପଚାରିଲେ
କହହେ ପ୍ରାଣନାଥ ଯେଥୁ ଅନ୍ୟନ୍ତରେ ॥୩୭୧୫॥
ସତେସିଂହ ଗିରିରେ ରହିଲେ ପଣ୍ଡୁ ଯାଇ
ରାଜ୍ୟକୁ ଅଇଲାକି ନ ଆସିଲା ସେହି ॥୩୭୧୬॥
ପାର୍ବତିଙ୍କ ବଚନେ ବୋଲନ୍ତି ସଙ୍କର
ଭାରଥ ହରିବଂସ ଯେ ଅପୁର୍ବ ଗ୍ରନ୍ଥସାର[2] ॥୩୭୧୭॥
ତୁହି ସେ ସୁଣିମାକୁ ଯେହା ହୋଇଲୁ ଭାର୍ଜନ
ବୈବସ୍ୱତ ଆଗେ ଯାହା କହିଲେ ମହାମୁନ୍ୟ ॥୩୭୧୮॥
ତାହା ତୋହାର ଆଗେଂ ଗୋ କହିବା ବିସ୍ତାରି
ସୁଣନ୍ତେ ସାତଜନ୍ମ ପାତେକୁ ହେବୁ ପାରି ॥୩୭୧୯॥
ଅଗ୍ନିକାର ବୋଲିଣ ଯେକଇ ରସିସୁତ
ସତର ମନୁ ଯାୟେ ସେହୁ ତପସ୍ୟାରତ[3] ॥୩୭୨୦॥

---

୧ । ଖ ପୋଥିରେ ପୂର୍ବରୁ ଏହି ଚାରି ଧାଡ଼ି ଅଧିକ ଅଛି –
ହରିନାମ ଭରସା ମୁଂ କରଇ ହୃଦୟର
ହରିନାମ ଶୁଣି ମୁକତି ପାଇ ବସିବି ସ୍ୱର୍ଗପୁର
ହରିକି ଆଶ୍ରେ କଲେ ବାଞ୍ଛାସିଦ୍ଧ ହୋଇ
ହରିକି ଆଶ୍ରେ କଲେ ଅପୁତ୍ରିକ ପୁତ୍ରପାଇ
୨ । ଖ ପୋଥି – ସମାଚାର
୨ । ଗ ପୋଥି – ରସସାର
୩ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୩ । ଗ ପୋଥି – ସତର ମନୁ ଯାୟେ କଲା ସେହୁ ତପ

ଯୋଗାଗ୍ନିରେ ଦେହ ଦହି ଗମନ୍ତେ ସ୍ୱର୍ଗପଥ
ଚର୍ମଫାସେ ମୁନିଙ୍କି ବାନ୍ଧିଲେ ଯମଦୂତ ॥୩୭୨୧॥
ସଂଜୀବନି ପୁରେ ସେ ଦ୍ରସନ କଲା ଯମ
ଚିତ୍ରଗୁପତେ ତାର ବୁଝିଲେ ପାପପୁଣ୍ୟ ॥୩୭୨୨॥
ବିଚାରି ବୁଝିଲେ ଯେହାର ନାହିଂ ପାପ
କେବଳ ଯେହାର ଜନ୍ମିନାହିଂଟି ସୁତ ॥୩୭୨୩॥
ପୁତ୍ର ନାହିଂ ବୋଲିଣ ଯହୁଂ ସୁଣିଲା ଜନ୍ତୁପତି
ବୋଇଲା ବିଭା କିମ୍ପା ନୋହିଲୁରେ ଯତି ॥୩୭୨୪॥
ମୁନି ବୋଇଲେ ମୁଂ ହୋଇଥିଲି ବିଭା
ଯମ ବୋଇଲେରେ କଲୁ କେତେରେ ଭାରିଯା[୧] ॥୩୭୨୫॥
ମୁନି ବୋଇଲା ମୁଂ ଚତୁର୍ଥ ବିଭା ହେଲି
ନୋହିଲା ସନ୍ତାନ ମୁଂ କି ବୁଦ୍ଧି କରିବିଂ ॥୩୭୨୬॥
ଯମ ବୋଇଲା ସନ୍ତାନ ଯେବେ ଭାରିଯାରେ ନୋହି
ପର ଯୁବତି ଯେ ହରନ୍ତୁ ଧନ ଦେଇ ॥୩୭୨୭॥
ମୁନି ବୋଇଲା ମୁଂ ସେକଥା ହିଂ କଲି
ନ ରହିଲା ବିର୍ଯ୍ୟ ମୁଂ ଅସକତ ହେଲି ॥୩୭୨୮॥
ଯମ ବୋଇଲା ଯେବେ ନୋହିଲା ତୋର ବିର୍ଯ୍ୟେଂ
ଭାରିଯାକୁ ପେସିଥାନ୍ତୁ ପରପୁରୁଷର ଠାବେଂ ॥୩୭୨୯॥
ମୁନି ବୋଇଲା ଭାରିଯାର ଋତୁସ୍ନାନ କାଳେ
ପର ପୁରୁଷଠାକୁ ପେସିଲି ସେକାଳେଂ[୨] ॥୩୭୩୦॥
ତଦ୍ୟପି ନନ୍ଦନ ଯେ ନ ହୋଇଲା ମୋହର
ଯମ ବୋଇଲା ମୁନି ତୁ କଲୁ ଅବେଭାର ॥୩୭୩୧॥
ପରପୁତ୍ର ଗୋଟିଯେ ଆଣି ପୁତ୍ର ସମ କରି
କରାନ୍ତୁ ବିଭା ହୁଅନ୍ତା କୁମର କୁମାରି ॥୩୭୩୨॥
ମୁନି ବୋଇଲେ ଅନାଥ ବାଳକ ଗୋଟିଯେ ଆଣିଂ
ପୁତ୍ର ସମ କରି ମୁଂ ଯେ ତାହାକୁ ପାଳିଥିଲି ପୁଣିଂ ॥୩୭୩୩॥
ବଢ଼ିଣ କୁମର ସେ ହୋଅନ୍ତେ ନବଯୁବା
ବିଭା କରି ନ ପାରିଲି ସେହି ନାସ ଗଲା ॥୩୭୩୪॥
ଯେମନ୍ତ ବୋଲି ଯହୁଂ ବୋଇଲେ ମୁନିବର
ଯମ ବୋଇଲା ଯେହାକୁ ପକାଅ ନର୍କର ॥୩୭୩୫॥
ସୁଣିଣ କାଳ ବିକାଳ ଝିଙ୍କି ଘେନିଗଲେ
ରହ ରହ ବୋଲି ଧର୍ମପୁରୁଷ ଡାକ ଦିଲେ ॥୩୭୩୬॥
ବୋଇଲେ ଯେତେ ପୁନ୍ୟ କଲା ଯେ ମୁନିବର
କେମନ୍ତେ ଯେଡ଼େ ମୁନିଙ୍କି ପକାଇବ ନର୍କର ॥୩୭୩୭॥

୧ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୨ । ଖ ଓ ଗ ପୋଥି – ପୁତ୍ରବନ୍ତ ବୀର୍ଯ୍ୟ କିଣି ଖୁଆଇଥିଲି ବେଳେ

ଯେହାକୁ ଛାଡ଼ିଦିଅ ଯାଉ ମର୍ତ୍ତ୍ୟ ଭୁଇଂ
ସନ୍ତାନ ଜାତ କରି ଆସୁ ଯେ ତପସାଇଂ ॥୩୭୩୮॥
ଯେମନ୍ତ ବୋଲି ମୁନିଙ୍କି ଧର୍ମପୁରୁଷ ଛାଡ଼ିଦେଲେ
ନିଜ ପିଣ୍ଡ ନ ପାଇ ମୁନି ମୃଗେକ ହୋଇଲେ ॥୩୭୩୯॥
ମୃଗୁଣି ସଙ୍ଗତରେ ହୋଇଲେ ଉନମତ୍ତ
ସମ୍ଭାଳି ନ ପାରି ସେ କୁରଙ୍ଗ ଦିଲା ଡାକ ॥୩୭୪୦॥
ସତେସିଂହ ଗିରି ଉପରେ ପଣ୍ଡୁ ଥିଲା
କୁରଙ୍ଗର ଡାକ ସେ କର୍ଣ୍ଣରେ ସୁଣିଲା ॥୩୭୪୧॥
ବିଚାରିଲେ କେ କାହାକୁ କରିଛି ବଳକ୍କାର
ଯେତେ ବୋଲି ବିନ୍ଧିଲା ସବଦଭେଦି ସର ॥୩୭୪୨॥
ମୁନିଙ୍କର ସିରରେ ପଡ଼ିଲା କାଣ୍ଡ ଯାଇ
ସାପ୍ୟ ଦିଲେ ପଣ୍ଡୁଙ୍କୁ ମୁନିବର ତହିଂ[୧] ॥୩୭୪୩॥
ଯଉଂଠାରେ ମୁନି ରମଣ କରୁଥିଲେ
ସତେସିଂଘ ଗିରିକି ଚୌରାସି ଯୋଜନ ଛଡ଼ାଇଲେ ॥୩୭୪୪॥
ଯେତେ ଦୁରେ ଥାଇ ପଣ୍ଡୁ ତା ସୁଣିଲା
ନାରାଜ ଘାତେ ମୁନି ମୃଗୁଣି ଡାକିଲା ॥୩୭୪୫॥
ନାରାଜ ଘାତେ ମୁନି ମୃଗୁଣି ଜଡ଼ିତ
ବିକଳେ ଅଗ୍ନିକା ପଣ୍ଡୁକୁ ଦେଲେ ସାପ୍ୟ ॥୩୭୪୬॥
ବୋଇଲା ମୋତେ ଯେହୁ ମାଇଲା ଯେତେବେଳେ
ଅକାଳ କାଣ୍ଡ ପଡୁ ତାହାର ରତି କାଳେ ॥୩୭୪୭॥
ସୁଣିଣ ବହୁତ ଯେ ଭାଳିଲା ପଣ୍ଡୁ ନୃପ
ଅର୍ଜିଲି ବ୍ରହ୍ମହତ୍ୟା ପାଇଲି ଅଭିସାପ୍ୟ ॥୩୭୪୮॥
ଭାରିଯାର ଅଗ୍ରତେ କହିଲା ସମାଚାର
ସେହିଦିନୁ ପଣ୍ଡୁ ଯେ ତେଜିଲା ସୃଙ୍ଗାର ॥୩୭୪୯॥
ରହିଲା ଯତି ହୋଇ ହୋଇଲା କଥା ଫୁଟି
ସୁଣିଣ ବଡ଼ଚିନ୍ତା ପାଇଲା ଧୃତିରାଷ୍ଟ୍ରି ॥୩୭୫୦॥
ପଣ୍ଡୁକୁ ନେବାପାଇଁ ମିଳିଲା ସତେସିଂଘ
ରହିଲା ବନେ ପଣ୍ଡୁ ନ ଗଲା ତାର ସଙ୍ଗ ॥୩୭୫୧॥
ବାହୁଡ଼ିଲା ଧୃତିରାଷ୍ଟ୍ର ତହିଂ ରହିଲାକ ବ୍ୟାସ
ସୁଣଗୋ ଓମା ବୋଲି ବୋଲନ୍ତି ଦିଗବାସ ॥୩୭୫୨॥

## ଯୁଧିଷ୍ଠିର, କର୍ଣ୍ଣ ଓ ଭୀମଙ୍କ ଜନ୍ମ

କଇନ୍ତା ପୁଚ୍ଛା କଲେ ବ୍ୟାସଙ୍କ ଅଗ୍ରତର
ସୋମବଂସର ଯେବେ ବୁଡ଼ି ଯାଉଅଛି କୁଳ ॥୩୭୫୩॥
ବଦୟନ୍ତି ବ୍ୟାସଦେବ ନ ଭାଳ ତୁମ୍ଭେ କିଛି
ଦୃଭାସାଙ୍କ ଜପାମାଳା ତୁମ୍ଭଠାରେ ଅଛି ॥୩୭୫୪॥

୧ । ଖ ପୋଥି – ଶୁଣ ଗୋ ଉମା ବୋଲି ଶଙ୍କର ଯାନ୍ତି କହି

କାର୍ଯ୍ୟ ସମୟରେ ଯେବେ ସେହିକଥା କର
ହୋଇବ ତନୟ ରହିବ ସୋମ କୁଳ ॥୩୭୫୫॥
ଯେମନ୍ତ କହିଣ ମୁନି ଅନ୍ତର ହୋଇଗଲେ
କଇନ୍ତା ଦେବି ସଯ୍ୟା ଗୋଟିୟେ ପାଡ଼ିଲେ ॥୩୭୫୬॥
ମାଳାଧରି କଇନ୍ତା ସୁର୍ଯଙ୍କୁ ସୁମରି
ସେହିକ୍ଷଣି ମିଳିଲେ ଆସି ଗଗନବିହାରି ॥୩୭୫୭॥
କଇନ୍ତା ଦେବି ତୁଲେ ବଢ଼ାଇ ପିରତି
ଗର୍ଭରେ ବିର୍ଯ୍ୟ ପଡ଼ନ୍ତେ ଜନ୍ମିଲା ସନ୍ତତି ॥୩୭୫୮॥
ଆଦିତ୍ୟ ଚଳିଗଲେ ଆକାସ ମଣ୍ଡଳ
ପୁତ୍ରକୁ କୋଳେ ଘେନି କଇନ୍ତା ଦେଲେ କ୍ଷିର ॥୩୭୫୯॥
ଦେଖିଣ ବିରସ ଯେ ପଣ୍ଡୁ ନୃପବର
କଇନ୍ତା କହିଲେ ଯେ ବ୍ୟାସଙ୍କ ସମାଚାର ॥୩୭୬୦॥
ସୁଣିଣ ଆନନ୍ଦିତ ହୋଇଲା ନୃପବର
ଗିରିଜାଙ୍କ ମୁଖ ଚାହିଁ ବୋଲନ୍ତି ସଙ୍କର ॥୩୭୬୧॥
ପୁତ୍ରକୁ କୋଳେ ଘେନିଲେକ ବ୍ୟାସମୁନି
ଗୁଣ ଅଂସ କଳା ଯେ ଠାବ କରି ଚିହ୍ନି ॥୩୭୬୨॥
ସର୍ବଗୁଣେ ଶ୍ରେଷ୍ଠ ଯେ ଜେଷ୍ଟ ନନ୍ଦନ
ତେଣୁ କରି ଯୁଧିଷ୍ଟି ଦେଲେକ ତାର ନାମ ॥୩୭୬୩॥
ପୁତ୍ରକୁ ନାମ ଦେଇ ବ୍ୟାସେ ଚଳିଗଲେ
ସଙ୍କର ମୁଖ ଚାହିଁ ଗିରିଜା ପଚାରିଲେ ॥୩୭୬୪॥
ଯେବଣ ମାଳା ସେ କଇନ୍ତା କଲା ଜପ
କାହିଁ ପାଇଥିଲେ ସେ କାହିଁରୁ ହେଲା ଜାତ ॥୩୭୬୫॥
ସୁଣଗୋ ପ୍ରିୟା ବୋଲି ବୋଲନ୍ତି ସୁଳପାଣି
ଜେଷ୍ଟ ସୁକ୍ଳପକ୍ଷ ଦେବସ୍ନାହାନ ପୌର୍ଣ୍ଣମି ॥୩୭୬୬॥
ତତୁଲ୍ୟ ନାମେ କରଣ ବୈଧୃତି ନାମେ ଯୋଗ
ବାରନାମେ ଭୃଗୁ ଜେଷ୍ଟ ସତର ଦିନ ଭୋଗ ॥୩୭୬୭॥
ଯେକୋଇସ ଦଣ୍ଡ ଭୋଗ ନକ୍ଷତ୍ର ସତଭିସା
ସେହିଦିନେ କୋନ୍ତ ଦେସେ ମିଳିଲେ ଦୁର୍ଭାସା ॥୩୭୬୮॥
ମୁନିକି ଚତୁର୍ମାସ୍ୟା ରଖିଲେ ନୃପତି
କୋନ୍ତଭୋଜ ନନ୍ଦିନି ରସିଙ୍କ ପାଦେ ଖଟି ॥୩୭୬୯॥
ସାରିଣ ଚତୁର୍ମାସ୍ୟା ଦୃଭାସା ଗମିଲେ
କଇନ୍ତାକୁ ମୁନି ମାଳା ଗୋଟିୟେ ଦେଇଗଲେ ॥୩୭୭୦॥
ବୋଇଲେ ଯେ ମାଳା ଘେନି ଯାହାକୁ ତୁ କରିବୁ ସ୍ମରଣ
ଦିଗପାଳ ହୋଇଲେ ତୋ ପାଶେ ମିଳିବେ ତତକ୍ଷଣ ॥୩୭୭୧॥
ଯାହା ତୁ କହିବୁ ସେ ଅବସ୍ୟ କରିବ
ତୋର ବୋଲ ନ କଲେ ତାର ମୁର୍ଦ୍ଧନା ଫାଟିବ ॥୩୭୭୨॥
ଯେମନ୍ତ ବୋଲିଣ ମୁନି ଜପାମାଳି ଦିଲେ
ପରିକ୍ଷା ନିମନ୍ତେ ଦେବି ସୁର୍ଯଙ୍କୁ ସୁମରିଲେ ॥୩୭୭୩॥
ମିଳିଲେ ଆଦିତ୍ୟ କଲେକ ରମଣ
ବିର୍ଯ୍ୟ ପଡ଼ି କୁମର ଗୋଟିୟେ ଜନମ ॥୩୭୭୪॥
ଅବିବାହି କୋଇନ୍ତା ପାଇଲେକ ଲଜ୍ୟା
ପୁତ୍ରକୁ ଜଳେ ମେଲି ପିତା ପୁର ଗଲା ॥୩୭୭୫॥
ଯେବଣ ପୁତ୍ରକୁ ମେଲିଲା ଜଳର
ଲାଗିଲା ହସ୍ତିନାରେ ପାଳିଲା ରାଧେବ ॥୩୭୭୬॥
କର୍ଣ୍ଣଦ୍ୱାରେ ଜନମିଣ କର୍ଣ୍ଣନାମ ବୋହି
ସୁଣଗୋ ଉମା ବୋଲି ସଦାସିବ କହି ॥୩୭୭୭॥
ପୁଣି ଆଦିତ୍ୟର ବିର୍ଯ୍ୟେ ଜନ୍ମିଲେ ଯୁଧିଷ୍ଟି
ତଦଅନ୍ତେ କିଛିଦିନ କଇନ୍ତା କାଳକାଟି ॥୩୭୭୮॥
ଦିନେ ମାଳା ଘେନି କଲେ ସୁମରଣ
ସୁମରନ୍ତେ ଯାଇ ମିଳିଲା ପବନ ॥୩୭୭୯॥
କଇନ୍ତାର ସଙ୍ଗତେ କଲେକ ସୁରତି
ଖସିଲାକ ବିର୍ଯ୍ୟ କୁମର ଉତପତି ॥୩୭୮୦॥
ପୁତ୍ରକୁ ଜାତକରି ଗମିଲା ପବନ
ଯେକେ ହେଁ ଘୋର ନିସି ଅନ୍ଧାର ଘୋରବନ ॥୩୭୮୧॥
ସେଠାରେ ଯାଇ ଯେକ ବ୍ୟାଘ୍ରେ ଯେ ମିଳିଲା
ଡରେଂଣ କଇନ୍ତା ଯାଇ ଲତାରେ ଲୁଚିଲା ॥୩୭୮୨॥
କ୍ଷିର ନ ପାଇଣ କୁମର କାନ୍ଦଇ
ପାଦଘାତ ବାଜିଣ ଗିରିରୁ ଶୃଙ୍ଗେକ ଝଡ଼ିଯାଇ ॥୩୭୮୩॥
କୋପେଂ ସାପ୍ୟ ତାକୁ ଦେଲାକ ଗିରିବର
ପ୍ରଥମ ସମରେ କୁମର ତୁହି ହାର ॥୩୭୮୪॥
କୁମର କାନ୍ଦନ୍ତେ ଯେ ପାହିଲାକ ନିସି
ସେଠାରେ ମିଳିଲା କୋଇନ୍ତା ଦେବି ଆସି ॥୩୭୮୫॥
ଦେଖିଣ ଆନନ୍ଦ ହୋଇଲେ ପଣ୍ଡୁ ନୃପ
ମହାବଳମାନ ଉପୁଜିଅଛି ସୁତ ॥୩୭୮୬॥
ଜାଣିଣ ବ୍ୟାସ ମୁନି ମିଳିଲେ ସେଠାରେ
ପୁତ୍ରକୁ ସ୍ନେହ କରି ଧଇଲେ କୋଳରେ ॥୩୭୮୭॥
ବିଚାରି ବୋଇଲେ ଯେ କୁମର ବଳମାନ
ତେଣୁ କରି ଯେହାର ନାମ ଗୋଟି ହେଉ ଭିମ ॥୩୭୮୮॥

## ଗାନ୍ଧାରୀଙ୍କର ଅନେଶତ ପୁତ୍ର ଜନ୍ମ

ସଙ୍କର ମୁଖ ଚାହିଁ ଗିରିଜା ପଚାରିଲେ
ବେନି ଗୋଟି ପୁତ୍ର ତ କୋଇନ୍ତା ଜନ୍ମ କଲେ ॥୩୭୮୯॥
ଧୃତରାଷ୍ଟ୍ରକୁ ଯେ ଗାନ୍ଧାରି ବିଭା ହେଲା
କେତେକ କୁମର ତାହାର ଜନମିଲା ॥୩୭୯୦॥
ସୁଣଗୋ ଓମା ବୋଲି ବଦୟନ୍ତି ସଦାସିବ
ଧୃତରାଷ୍ଟ୍ର ବିର୍ଯ୍ୟରେ ଗାନ୍ଧାରି ହେଲା ଗର୍ଭ ॥୩୭୯୧॥

ଦସମାସ ସମ୍ପୁର୍ଣ୍ଣେ କୁମର ଜନ୍ମ ହେଲା
ତାର ବାର ତିଥି ନକ୍ଷତ୍ର ସୁଭ ବେଳା ॥୩୭୯୨॥
ପିଙ୍ଗଳ ବର୍ଣ୍ଣ ସରିର ସର୍ବଗୁଣେ ସମ୍ପୁର୍ଣ୍ଣ
ହସ୍ତରେ ସଙ୍ଖନିଧି ପାଦରେ ପଦ୍ମ ଚିହ୍ନ ॥୩୭୯୩॥
ସୁଣିଣ ଧୃତରାଷ୍ଟ୍ର ଆନନ୍ଦ ମନ ହୋଇ
ବହୁତ ଉଛବ ନଗ୍ରରେ କରାଇ ॥୩୭୯୪॥
ପ୍ରବେସ ହୋଇଲେ ଯେ ଧାଇ ମୁଦୁସୁଲି
ଅଗୁରୁ ଗବ୍ୟଘୃତେ ଲଗାଇ ଅନ୍ତୁଡ଼ି ॥୩୭୯୫॥
ଦୃଯୋଧନ ବୋଲିଣ କୁମର ନାମ ଦିଲା
ଅନେକ ବଧାଇ ଯେ ଉଛବ କରାଇଲା ॥୩୭୯୬॥
ପୁଣି କୁମରେ ଗାନ୍ଧାରି ପ୍ରସବିଲା
ଦୁସାସନ ବୋଲିଣ ତାହାର ନାମ ଦିଲା ॥୩୭୯୭॥
ପୁଣି ହିଂ ପ୍ରସବ କରଇ ଗାନ୍ଧାରିର[୧]
ଯେହି ରୁପେ ହେଲା ତାର ଅନେସତ କୁମର ॥୩୭୯୮॥
ଦୃମିଳ ଦୃପାଳ ଦୃଲୋକ ଦୃସିଂହ ଦୃବାଦ
ଦୃନର ଦୃମିର ଦୃପିର ଦୃସିର ଦୁରାସିର ଦୁରାନ୍ତେକ ॥୩୭୯୯॥
ଦୃଲୋଭ ଦୃଜୟ ଦୃସିନ ଦୃପାଳେକ
ଯେହି ରୁପେ ଅନେସତ ହୋଇଲା ନନ୍ଦନ ॥୩୮୦୦॥
ଯେକା ଅକ୍ଷରରେ ହୋଇଲା ସମସ୍ତଙ୍କ ନାମ
ଧୃତରାଷ୍ଟ୍ର ଗାନ୍ଧାରି ହୋଇଲେ ହୃଷ୍ଟମନ ॥୩୮୦୧॥

## ଅର୍ଜୁନ, ନକୁଳ ଓ ସହଦେବଙ୍କ ଜନ୍ମ ଏବଂ ପଣ୍ଡୁ ଓ ମାଦ୍ରୀଙ୍କର ମୃତ୍ୟୁ

ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
କୋଇନ୍ତା ଥିଲେ ଯେ ସତେସିଂଘ ଗିରି ॥୩୮୦୨॥
ଦିନେ ମାଳା ଘେନି କଲେ ସୁମରଣ
ସୁମରନ୍ତେ ଯାଇଣ ମିଳିଲେ ମଘବାନ ॥୩୮୦୩॥
କୋଇନ୍ତାର ତୁଲେ କଲେକ ରମଣ
ଇନ୍ଦ୍ରର ବିର୍ଯ୍ୟେଂ କୁମର ହୋଇଲା ଜନମ ॥୩୮୦୪॥
ଅତି ହିଂ ଲକ୍ଷଣରେ ହୋଇଲା ନନ୍ଦନ
ତେଣୁ ତାର ନାମ ହୋଇଲା ଅର୍ଜୁନ ॥୩୮୦୫॥
ପଞ୍ଚଦସ କଳା ଅଛଇ ତାର ତହିଂ
ତେଣୁ କୃଷ୍ଣନାମ ବ୍ୟାସ ମୁନି ଦେଇ ॥୩୮୦୬॥
ତିନି ଗୋଟି ନନ୍ଦନ କୋଇନ୍ତା ଜାତ କରି
ବଦୟନ୍ତି ସଦାସିବ ସୁଣଗୋ ଗଉରି ॥୩୮୦୭॥

ଯେକଦିନେ ମାଦ୍ରି ଦେବି କୋଇନ୍ତା ମୁଖ ଚାହିଂ
ବୋଲନ୍ତି ଦୃଭାସ୍ୟାଙ୍କର ବରେ ତିନି ନନ୍ଦନ ତୁମ୍ଭର ତ ହୋଇ॥୩୮୦୮॥
ମୁହିଂ ଅପୁତ୍ରିକ ହେଲିଂ ନୋହିଲା କୁମର
କୋଇନ୍ତା ବୋଇଲେ ତୁ ନିଅ ଜପାମାଳ ॥୩୮୦୯॥
ଯାହାକୁ ସୁମରିବୁ ମିଳିବ ତୋର ତହିଂ
ଦେବୁ ତାକୁ ସୁରତି ନନ୍ଦନ ଜାତ ହୋଇ ॥୩୮୧୦॥
ଯେତେ ବୋଲି କଇନ୍ତା ମାଦ୍ରିକି ମାଳାଦେଲେ
ମାଳା ଘେନି କରି ମାଦ୍ରି ବିଚାରେ ମନରେ ॥୩୮୧୧॥
କାହାକୁ ସୁମରିବି କେ ଆସିବ ମୋର କତି
ଅଶ୍ୱିନି କୁମାରଙ୍କୁ ଚିନ୍ତିଲା ଯୁବତି ॥୩୮୧୨॥
ସୁମରନ୍ତେ ଯାଇଣ କୁମର ମିଳିଲା
ମାଦ୍ରିର ସଙ୍ଗତେ ଅଙ୍ଗ ସଙ୍ଗ କଲା ॥୩୮୧୩॥
ଗର୍ଭରେ ରେତ ପସି କୁମର ଜନମିଲା
ନକୁଳ ବୋଲିଣ ଯେ ତାହାର ନାମ ଦିଲା ॥୩୮୧୪॥
କେତେଦିନ ଯାଆନ୍ତେଣ ବରସା ରତୁ ହୋଇ
ଯେକଦିନେ ମେଘ ଗଗନେ ଆଛାଦଇ ॥୩୮୧୫॥
ଦିବସେ ଅନ୍ଧକାର ଆଦିତ୍ୟ ନ ଦିସିଲା
ରଜନି ଦିବସ ଯେ ବାରିଣ ନୋହିଲା ॥୩୮୧୬॥
ରାତ୍ର ଦିବସ ସେ ଦିସିଲା ଯେକ ସରି
ମେଘ ଆଛାଦିଣ ସେ ବରସଇ ବାରି ॥୩୮୧୭॥
ଅଳପ ବରସିଣ ସେ ଆଛାଦି ଗଗନ
ଯେମନ୍ତେ ବହିଗଲା ସପତଦଶ ଦିନ ॥୩୮୧୮॥
ପଣ୍ଡୁ ଯେ ସୁର୍ଯବଂସି ସୁର୍ଯଙ୍କୁ ନଦେଖିଲା
କଲାକ ଉପବାସ ଆହାର ନ କଲା ॥୩୮୧୯॥
ପଣ୍ଡୁ ପୁଛା କଲେ ଯେ ମାଦ୍ରିର ମୁଖ ଚାହିଂ
ଗଗନରେ ଉଦେ ଯେ ନୋହିଲେ ଛାୟା ସାଇଂ ॥୩୮୨୦॥
ତୁ ଯେବେ ଅଗଣାରେ ଦେଖାଇବୁ ରୁପ
ତୋତେ ଦେଖିବାକୁ ଉଦେ ହୋଇବେ ଆଦିତ୍ୟ ॥୩୮୨୧॥
ସୁର୍ଯଙ୍କୁ ଦ୍ରସନ କରି କରିବିଂ ଆହାର
ମାଦ୍ରି ବୋଇଲା ସ୍ୱାମି ସୁଣ ମୋ ଉତର ॥୩୮୨୨॥
ମୁଂ ଯେବେ ଦେବତାଙ୍କୁ ମୋ ରୁପ ଦେଖାଇବିଂ
ସତ୍ୟ କର ମୋତେ ଦେବ ମୁଂ ଯାହା ମାଗିବିଂ ॥୩୮୨୩॥
ପଣ୍ଡୁ ବୋଇଲା ସତ୍ୟ ସତ୍ୟ ହୋଇଲା ମୋହର
ଦଣ୍ଡେ ତୁ ଉଭା ହୋଇ ଯାଇ ଅଗଣାର ॥୩୮୨୪॥
ସ୍ୱାମିର ବଚନେ ସୁଣି ମାଦ୍ରି ହୋଇ ସଜ
ତାହାର ରୁପ ଦେଖି କନ୍ଦର୍ପ ଢଳି ଯିବ ॥୩୮୨୫॥
କଟି ସିଂଘ ମଝା ଜାନୁ ଓଲଟ କଦଳି
ନାସା ତିଳ ପୁଷ୍ପ ଚମ୍ପା କଢ଼ି ଯେ ଅଙ୍ଗୁଳି ॥୩୮୨୬॥

୧ । ଖ ଓ ଗ ପୋଥିରେ ଉପର ଚାରି ଧାଡ଼ି ନାହିଁ

କୁରଙ୍ଗ ନୟନି କର୍ଣ୍ଣ ଅଟେ ଯେ ଜବାଫୁଲ
ସିରରେ ବାନ୍ଧିଛି ଜୁଡ଼ା ଚାଚେକର ବାଳ ॥୩୮୨୭॥
ହସ୍ତି କୁମ୍ଭ ଗଣ୍ଡସ୍ଥଳ ମର୍କତ ଲିଙ୍ଗ କୁଚ
ତଥିପରେ ମଣି ହାର ଦିସଇ ଝଟ ଝଟ ॥୩୮୨୭॥
ମୃଣାଳର ନାଡ଼ ପ୍ରାୟେ ଦିସଇ ବାହୁ ବେନି
ଅଙ୍ଗୁଷ୍ଟିର ମୁଦ୍ରିକା ଅରୁଣ ଜ୍ୟୋତି ଜିଣି ॥୩୮୨୯॥
କଟଟି ବାହୁଟି ଯେ ଭୁଜ ଯେ ସୋଭାବନ[୧]
ପିନ୍ଧିଣ ଚିତ୍ରପାଟ ପତନି ଉପୁରାଣ ॥୩୮୩୦॥
ମାନବେ ଅସମ୍ଭବ ସେ ଦେବଙ୍କୁ ଅଗୋଚର
ତେମନ୍ତ ସ୍ତିରି ନାହିଂ ଚଉଦ ବ୍ରହ୍ମାଣ୍ଡର ॥୩୮୩୧॥
ଆଛାଦି ଅଛି ମେଘ ଘୋଟିଛି ଅନ୍ଧକାର
ମାଦ୍ରି ଉଭା ହୋଇଲା ଯେକାନ୍ତ ଅଗଣାର ॥୩୮୩୨॥
ଦେହରୁ ବସ୍ତ୍ର କାଢ଼ି ଉଭା ହେଲା ଯେତେବେଳେ
ଆକାଶେ ନିରୋଧିଣ ଚାହିଂଲେ ଦିଗପାଳେ[୨] ॥୩୮୩୩॥
କୁବେର ପବନ ବରୁଣ ବିଶ୍ୱଦେବା
ବୈଶ୍ୱାନର[୩] ନଇରତ ଆବର ମଘବା ॥୩୮୩୪॥
ରବି ସସି ନକ୍ଷତ୍ର କରଣ ତାର ବାର
ସମସ୍ତେ ଉଦେ ହେଲେ ତୁଟିଲା ଅନ୍ଧକାର ॥୩୮୩୫॥
ମଦନା ରୁପକୁ ସେ ରହିଲେ ଅନାଇଂ
ସୁର୍ଯ୍ୟଙ୍କୁ ଅର୍ଘ୍ୟ ଦେଇ ପଣ୍ଡୁ ଭୋଜନ ସାରଇ ॥୩୮୩୬॥
ନେଉଟି ଗୃହରେ ପ୍ରବେସ ପଣ୍ଡୁ ନାରି
ଆଦିତ୍ୟ ଅସ୍ତ ହେଲେ ଘୋଟିଲା ତିମିରି ॥୩୮୩୭॥
ପଣ୍ଡୁ ବିଜେ ହେଲା ଯାଇ ମଦନାର ପୁର
ମାଦି ବୋଇଲା ନାଥ କରହେ ସୃଙ୍ଗାର ॥୩୮୩୮॥
ପଣ୍ଡୁ ବୋଇଲା ମୁନି ଦେଇଅଛନ୍ତି ଯେ ସାପ୍ୟ
ମାଦ୍ରି ବୋଇଲା ତୁମ୍ଭେ କଲ ଯେ ଆଜ ସତ୍ୟ ॥୩୮୩୯॥
ସୁରତି କଲା ପଣ୍ଡୁ ସତ୍ୟ ଭଗ୍ନ ନୋହିବା ନିମନ୍ତେ
ପଣ୍ଡୁ ବିର୍ଯ୍ୟ ରହିଲା ମଦନା ଗର୍ଭ ଗତେଂ ॥୩୮୪୦॥
ସୁଣସି ଓମା ବୋଲି ବୋଲନ୍ତି ସଦାନନ୍ଦ
ପଣ୍ଡୁ ସିରେ ପଡ଼ିଲା ଆସି ଆକାସୁ ଅକାଳ ଯେ କାଣ୍ଡ ॥୩୮୪୧॥
ପଣ୍ଡୁ ନାସ ଗଲା ଯେ ମାଦ୍ରି ମୋହ ହେଲା
ବାଳକ ଗୋଟିଯେ ଜନ୍ମି ଭୁମିରେ ପଡ଼ିଲା ॥୩୮୪୨॥
କଇନ୍ତାକୁ ମାଦ୍ରି ସମର୍ପିଲା ନନ୍ଦନ
ପୁତ୍ରର ମୁଖକୁ ଚାହିଂ ମାଦ୍ରି ତେଜିଲା ଜିବନ ॥୩୮୪୩॥
ଯହୁଂ ସେ ପଣ୍ଡୁ ମାଦ୍ରି ହୋଇଲେ ପ୍ରାଣେ ନାସ
କୋଇନ୍ତା ପାଳିଲେ ମାଦ୍ରିର ବେନି ସିସ୍ୟ ॥୩୮୪୪॥
ଦେଖିଣ ଯୁଧିଷ୍ଟିର ହୋଇଲେ ଆଶ୍ଚାର୍ଯ୍ୟ
ପିତାକୁ ଦାହ କରି ସାରିଲେ ପ୍ରେତକାର୍ଯ୍ୟ ॥୩୮୪୫॥
ଯେବଣ କୁମର ପଣ୍ଡୁ ବିର୍ଯ୍ୟରେ ଜନ୍ମ ହୋଇ
ସହୋଦର ମାରି ଯେ ସହଦେବ ନାମ ପାଇ ॥୩୮୪୬॥
ପଣ୍ଡୁ ନାସ ବାରତା ଯେ ଜାଣିଲେ ଧୃତିରାଷ୍ଟ୍ର
ହା ହା ଭ୍ରାଥ ବୋଲିଣ ବହୁତ କଲେ ସୋକ ॥୩୮୪୭॥
ବିଦୁର ସଞ୍ଜୟେ ଯେ ଗଙ୍ଗାର ନନ୍ଦନ
ବ୍ୟାସ ସତ୍ୟାବତି ଗାନ୍ଧାରି ସହିତେଣ ॥୩୮୪୮॥
ସମସ୍ତେ ସୋକ ମନେ ସାରିଲେକ କ୍ରିୟା
ପଣ୍ଡୁର ପୁତ୍ରଠାରେ ଧୃତିରାଷ୍ଟ୍ର କଲେ ଦୟା ॥୩୮୪୯॥

## ବାରୁଣା ଓ ଜୟନ୍ତିନାରେ ଯୁଧିଷ୍ଠିରଙ୍କର ଅଭିଷେକ

ପ୍ରବେସ ହୋଇଲେ ସେ ସତେସିଙ୍ଗ ଗିରି
ପୁତ୍ରଙ୍କୁ ଘେନି କୁନ୍ତି ନୃପତି ପାଦେଂ ପଡ଼ି ॥୩୮୫୦॥
ଅଶ୍ରୁ ଗଦଗଦ ସେ ଯେ ଲୋତକ ନୟନ
କେମନ୍ତେ ବଞ୍ଚିବେ ଦିନ ପୁତ୍ର ମୋ ସାନସାନ ॥୩୮୫୧॥
ଧୃତିରାଷ୍ଟ୍ର ବୋଇଲା କିଛି ଗୋ ନ ବିଚାର
ପୁତ୍ରଙ୍କୁ ସଙ୍ଗେ ଘେନି ଆସ ଗୋ ଯିବା ଘର ॥୩୮୫୨॥
ଯୁଧିଷ୍ଟି ଭିମ ପାଥ ନକୁଳ ସହଦେବ ପଞ୍ଚବାଳ
ସ୍ନେହରେ ଧୃତିରାଷ୍ଟ୍ର କଲା ଯାଇ କୋଳ ॥୩୮୫୩॥
ବ୍ୟାସ ବିଦୁର ଯେ ଗଉରୋବ କଲେ
ପାଞ୍ଚପୁତ୍ର କଇନ୍ତାଙ୍କୁ ସଙ୍ଗତେ ଘେନିଗଲେ ॥୩୮୫୪॥
ଜଇନ୍ତା ନାମେ ଗ୍ରାମ ମଧ ଦେସ ସେହି
ତହିଂରେ ଧୃତିରାଷ୍ଟ୍ର କୋଇନ୍ତାଙ୍କୁ ରଖାଇ ॥୩୮୫୫॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ଧୃତିରାଷ୍ଟ୍ର ପୋଏ ସେ ଯେ ବଢ଼ିଲେ ଦିନୁ ଦିନ ॥୩୮୫୬॥
ଦୃଯୋଧନ ଯେ ଦୃଷ୍ଟ ପଣ ଆଚରିଲା
ପିତା ଥାଉଂ ନୃପତି ସେ କଟକେ ହୋଇଲା ॥୩୮୫୭॥
ଯେକାଙ୍ଗ ଚକ୍ରବର୍ତ୍ତି ହୋଇଲା ମେଦନି
ଲକ୍ଷେ ରାଜା ଉପରେ ବୋଲାୟେ ମଉଡ଼ମଣି ॥୩୮୫୮॥
ବ୍ୟାସଙ୍କ ସଙ୍ଗତେ ବସି ବିଦୁର ଭାଳିଲେ
ଯୁଧେଷ୍ଟି ରାଜା ହେଉ ଜଇନ୍ତିନା ନଗ୍ରେ ॥୩୮୫୯॥
ବ୍ୟାସେ ବୋଇଲେ ଧୃତିରାଷ୍ଟ୍ରକୁ ଚାଲ ହୋ କହିବା
ଭାଇକୁ ଭାଗ ବାବୁ ସାହାସ୍ତ୍ରେ ଅଛି ବାବା ॥୩୮୬୦॥
ବ୍ୟାସେ ବିଦୁର ସେ ଚଳିଲେ ବେନି ଜନ
ଧୃତିରାଷ୍ଟଙ୍କୁ କହି ଯୁଧିଷ୍ଟିଙ୍କି ଦେଲେ ବେନିଗ୍ରାମ ॥୩୮୬୧॥

୧ । ଖ ପୋଥି – ଭୁଜରେ ବାହିମାନ
୨ । ଖ ଓ ଗ ପୋଥି – ନିରୋପିଣ
୩ । ଖ ଓ ଗ ପୋଥି – ନାସ୍କର

ବାରୁଣୀ ଜଇନ୍ତିନା ହୋଇଲା ଯୁଧିଷ୍ଟିରଙ୍କର
ଅବିଷେକ ପାଟ ଯେ ବାନ୍ଧିଲେ ସିରର ॥୩୮୬୨॥
ସେହିଦିନୁ ଦ୍ରିଯୋଧନ ମନରେ ହିଂସା ବହି
ପଣ୍ଡୁ ପାଞ୍ଚ ପୁତ୍ରଙ୍କୁଂ[୧] ସେ ଅସହଣି ହୋଇ ॥୩୮୬୩॥
ଯହୁଂ ସେ ଯୁଧିଷ୍ଟି ହୋଇଲେ ରାଜନ
ହୃଦରେ ଅହଙ୍କାର ବହିଲା ବିର କର୍ଣ୍ଣ ॥୩୮୬୪॥
ସେ ବେନି ଗ୍ରାମରେ ଯେତେ ପ୍ରଜା ଥିଲେ
ଯୁଧଷ୍ଟି ରାଜାଙ୍କୁ ସେବା କରିଣ ରହିଲେ ॥୩୮୬୫॥
ଯୁଧଷ୍ଟି ରାଜା ହୋଇ ଆସ୍ଥାନେ ବସିଥାନ୍ତି
ସହଦେବ ମନ୍ତ୍ରି ହୋଇ ଆଗତ କଥା କହି ॥୩୮୬୬॥
ନକୁଳ ବିରଛତ୍ର ଧରିଥାଇ ସିରେ
ଭିମ ଯୋଦ୍ଧା ପଣେ ଥାଇ ଆସ୍ତାନରେ ॥୩୮୬୭॥
ଅର୍ଜୁନ ସାମରଥୀ[୨] ଥାଟ ସମାର୍ଜଇ
ଯେମନ୍ତେ ରହିଥାନ୍ତି ପାଣ୍ଡବେ ପାଞ୍ଚଭାଇ ॥୩୮୬୮॥

## ଭୀମଙ୍କର ଗୋରେଖଙ୍କୁ ଗୁରୁ ରୂପେ ଗ୍ରହଣ ଓ କାଳେମ୍ବର ଗଦା ପ୍ରାପ୍ତି

ଯେକଦିନେ ଭିମସେନ ମୃଗୟାକୁ ଗଲେ
ସେତକଳ୍ପ ବନରେ ଯାଇଣ ମିଳିଲେ ॥୩୮୬୯॥
ସତେଧାରା ନଦି ତହିଂ ବହଇ ସେହି ବନ
ଗୋରେଖ ଯତିଙ୍କର ସେ ବନେ ଆଶ୍ରମ ॥୩୮୭୦॥
ସେଠାବରେ ଯାଇଣ ମିଳିଲା ମାରୁତି
ବହୁତ ବନ ଭ୍ରମି ହୋଇଛି ପଥଶ୍ରାନ୍ତି ॥୩୮୭୧॥
ଯତିଙ୍କର କୁରଙ୍ଗ ଚରୁଥିଲା ଆଗେଂ
ଭିମସେନ ମାଡ଼ି ବସିଲା ତାକୁ ବେଗେଂ ॥୩୮୭୨॥
କୁରଙ୍ଗ ନାସ ଯାନ୍ତେ ଗୋରେଖ କୋପ କରି
ଆରେ ରେ ପାପିଷ୍ଟ ବୋଲି ଧଇଲେ ଅଣ୍ଡାଳି ॥୩୮୭୩॥
ଗୋରେଖର ହସ୍ତ ଯେ ବାଜିଲା ଭିମ କରେ
ଅଜ୍ଞାନ ହୋଇଣ ଭିମ ପଡ଼ିଲା ଭୁମିରେ ॥୩୮୭୪॥
ଗୋରେଖ ଦେଖିଲେ ଅତି ସୁନ୍ଦର ରୁପ ତାର
ଦୟା କରି ଗୋରେଖ ସିଞ୍ଚିଲେ ଅଙ୍ଗେ ନିର ॥୩୮୭୫॥
ବଜ୍ର କାଛେଟି ଘେନି ପୋଛିଦେଲେ ଦେହ
ଚେତନା ନ ପାଇଲା ଯେ ପବନର ପୁଅ ॥୩୮୭୬॥
ଦେଖିଣ ଯତିନ୍ଦ୍ର ଯେ ଧଇଲେ କୋଳର
ସଞ୍ଜିବନି ମନ୍ତ୍ରପଢ଼ି ଫୁଙ୍କିଲେ କର୍ଣ୍ଣର ॥୩୮୭୭॥
ଉଠିଲା ଭିମସେନ ହୋଇଲା ସଚେତ
ଗୋରେଖ ପଚାରିଲେ ତୁ ଅଟୁ କାହାର ସୁତ ॥୩୮୭୮॥
କହଇ ବିକୋଦର ସୁଣିମା ଗୋସାଇଂ
କୋଇନ୍ତା ଗର୍ଭରୁଂ ଜାତ ପବନ ତନଇ ॥୩୮୭୯॥
ଆମ୍ଭେ ପାଞ୍ଚଭାଇ କୋଇନ୍ତା ଆମ୍ଭ ମାତ
ଦିଗପାଳ ବିର୍ଯ୍ୟରୁଂ ଆମ୍ଭେ ହୋଇଅଛୁଂ ଜାତ ॥୩୮୮୦॥
ମୃଗ ମାରିବାକୁ ମୋତେ ଯୁଧିଷ୍ଟି ପେସିଥିଲେ
ପଡ଼ିଲି ତୁମ୍ଭ ଆଗେଂ ସୁଣ ହୋ ଯତି ଭଲେ[୧] ॥୩୮୮୧॥
ବଦୟନ୍ତି ଗୋରେଖ ତୁ ଅଜ୍ଞାନ ପଣ ଧରି
କୁରଙ୍ଗି ନାସ କଲୁ କୋପ ହୋଇଲା ଆମ୍ଭରି ॥୩୮୮୨॥
ଅଳପ ଦରାଣ୍ଡନ୍ତେ ହଜିଲା ତୋର ଜ୍ଞାନ
ସଜିଂବନି ମନ୍ତ୍ରେ ତୋତେ ଦିଲଇ ଜିବ ଦାନ ॥୩୮୮୩॥
ଆଜହୁଂ ଦେହ ତୋର ବଜ୍ର ସମ ହୋଇଲା
ଗୋରେଖ ବଚନେ ଯେ ବିକୋଦର ବୋଇଲା ॥୩୮୮୪॥
ଯେବେ ମୋର କର୍ଣ୍ଣ ତୁମ୍ଭେ ଫୁଙ୍କିଲ ଦିଗାମ୍ବର
ତେବେ ମନ୍ତ୍ର ଗୁରୁ ହୋଇଲ ମୋହର ॥୩୮୮୫॥
ଧନୁର୍ବିଦ୍ୟା ଯେତେକ ଅଛି ତୁମ୍ଭଠାର
ତାହା ମୋତେ ସିକ୍ଷା ଦେବ ହେ ଦିଗାମ୍ବର ॥୩୮୮୬॥
ମୁହିଂ ତୁମ୍ଭ ସିସ୍ୟ ପୁତ୍ର ହୋଇ ଏଠାରେ
ଏତେ ବୋଲି କହିଲେ ସେ ପବନ କୁମରେ ॥୩୮୮୭॥
ସୁଣିଣ ଗୋରେଖ ଯେ ହୋଇଲେ ହରସ
ସିଖାଇଲେ ସକତି ସର ଗଦା ମୁଦ୍‌ଗର ପସୁପତ୍ର ॥୩୮୮୮॥
ସମସ୍ତ ବିଦ୍ୟା ସେ ଯେ ଭିମକୁ ସିଖାଇଲେ[୨]
ଗଦା ଗୋଟିୟେ ମୁନି ତାହାକୁ ସମର୍ପିଲେ ॥୩୮୮୯॥
ବୋଇଲେ ବିକୋଦର ସମ୍ଭାଳ ୟେହୁ ଗଦା
ସମୁଦ୍ର ମନ୍ଥନୁ ୟେ ଜାତ ହୋଇଥିଲା ॥୩୮୯୦॥
କାଳେମ୍ବର ଗଦା ଅଟଇ ୟେହାର ନାମ
ହସ୍ତରେ ଘେନିଥିଲେ ତ୍ରାସ କରେ ଯମ ॥୩୮୯୧॥
ସତ୍ୟ ଯୁଗେଂ ସିବ ୟେହୁ ଗଦା ଧରି
ଅନ୍ଧେକ ବଧ କରି ରଖିଲେ ତିନି ପୁରି[୩] ॥୩୮୯୨॥
ସତ୍ୟ ତ୍ରେତୟା ସରି ଦ୍ୱାପର ଅଧେକ ସରିଲା
ସମ୍ଭାଳି ରଖିଥିଲି ୟେହା ତୋତେ ପ୍ରାପତ ହୋଇଲା ॥୩୮୯୩॥
ୟେତେ କହି ଗୋରେଖ ଯେ ଭିମକୁ ଗଦା ଦେଲେ
ସୁଣସି ଗିରିଜା ଗୋ ସଙ୍କର କହିଲେ ॥୩୮୯୪॥
ଆପଣା ଭୁବନରେ ପ୍ରବେସ ହୋଇଲା ବିକୋଦର
ଯୁଧିଷ୍ଟିରଙ୍କ ଅଗ୍ରତେ କହିଲା ସକଳ ସମାଚାର ॥୩୮୯୫॥

---

୧ । ଖ ଓ ଗ ପୋଥି – ପାଞ୍ଚ ଭାଇଙ୍କି
୨ । ଖ ଓ ଗ ପୋଥି – ମହାବୀର

୧ । ଖ ଓ ଗ ପୋଥି – ପ୍ରହାର କଲ ରାଗେଂ
୨ । ଖ ପୋଥି – ସମସ୍ତ ବିଦ୍ୟାରେ ଭୀମସେନ ବଳବନ୍ତା ହୋଇଲେ
୩ । ଖ ପୋଥି – ଅନେକ ଅସୁର ବିନାସିଣ ରଖିଲେ ତ୍ରିପୁରି

ଗଦାଧରି ଭିମସେନ କରଇ ବିଚାର
ଭୁମିରେ ଥୋଇଲେ ପୃଥ୍ୱି ପସିବ ରାସାନ୍ତଳ ॥୩୮୯୬॥
ମେରୁରେ ଯଦି ଗଦା ପିଟିବଇଂ ମୁହିଂ
ହୋଇବ ମସିଗୁଣ୍ଡା ସେ ନ ପାରିବ ସହି ॥୩୮୯୭॥
ଯଦି ଗଦା ପିଟିବଇଂ ସପତ ସିନ୍ଧୁଜଳ
ଜଳ ହାନ୍ଦୋଳି ବିନାସ ଯିବ ଯେ ସଂସାର ॥୩୮୯୮॥
ଯାହାକୁ ପିଟିବଇଂ ନ ସହିବ କେହି
ଧୃତିରାଷ୍ଟ୍ର ପୁତ୍ରଲାଗି ଅଛି ମୁଂ ଏହା ବହି ॥୩୮୯୯॥

## କୌରବ ଓ ପାଣ୍ଡବମାନଙ୍କର ଗୁରୁଗ୍ରହଣ ଓ ଅର୍ଜୁନଙ୍କର ସବ୍ୟସାଚୀ ନାମଧାରଣ

ନକୁଳକୁ ଭାଗ୍ୟବର ବିଦ୍ୟାଯେକ ଦିଲେ
ସଦାସିବଙ୍କୁ ଚାହିଂଣ ଗିରିଜା ପଚାରିଲେ ॥୩୯୦୦॥
ଯୁଧିଷ୍ଟି ଅର୍ଜୁନ ଦୁର୍ଯ୍ୟୋଧନ ଆଦି
କାହାଠାରୁ ବିଦ୍ୟାପାଇ ହୋଇଲେ ପୃଥ୍ୱି ଭେଦି ॥୩୯୦୧॥
ପାର୍ବତିର ବଚନେ ବୋଇଲେ ପସୁପତି
ଭରଦ୍ୱାଜ ନାମେଣ ଯେକଇ ବ୍ରହ୍ମଯତି ॥୩୯୦୨॥
ଦ୍ରୋଣ ବୋଲିଣ ଯେ ତାହାର ନନ୍ଦନ
କର୍ଣ୍ଣାଟ ଦେସରେ ରହିଥିଲା କରିଣ ଶାସନ ॥୩୯୦୩॥
ଦୃଭିକ୍ଷ ପଡ଼ିଲା ଦ୍ରୋଣେ ସାସନ ଗଲେ ଛାଡ଼ି
କୃପି ଭାରିଯା ତାର ପଡ଼ିଲା ମୁଖମାଡ଼ି ॥୩୯୦୪॥
ମୁଖମାଡ଼ି ପଡ଼ନ୍ତେ ପ୍ରାଣ ଛାଡ଼ି ଯିବାବେଳେ
ହୋଇଥିଲା ଗର୍ଭବାସ ପୁତ୍ର ପଡ଼ିଲା ଖସିତଳେ ॥୩୯୦୫॥
ପୁତ୍ର କୋଳେ ଘେନି ପାଞ୍ଚାଳ ଦେସରେ ମିଳିଲାଇ
ଦ୍ରୋପଦ ମିତ୍ରକୁ ମାଗିଲା ଯେକ ଗାଈ ॥୩୯୦୬॥
ମାତୃହିନ ପୁତ୍ରକୁ ଖୁଆଇବିଂ କ୍ଷିର
ନ ଚିହ୍ନି ଦ୍ରୋପଦ ରାଜ୍ୟରୁ କଲା ଦୁର ॥୩୯୦୭॥
ଅଇଲେ ଦ୍ରୋଣେ ସେ ଅଭିମାନ ପାଇ
ହସ୍ତିନା ରାଜ୍ୟରେ ପ୍ରବେସ ହେଲା ଯାଇ ॥୩୯୦୮॥
କୃପ ଆଚାର୍ଯ୍ୟ ଅଟନ୍ତି ଦ୍ରୋଣଙ୍କର ସଳା
ପୁତ୍ର ଗୋଟି ଦ୍ରୋଣ ତାହାଠାରେ ଛାଡ଼ିଗଲା ॥୩୯୦୯॥
ତପସ୍ୱି ରୁପଧରି ବନକୁ ଗମଇ
ସିଦ୍ଧବନେ ପ୍ରବେସ ହୋଇ ପ୍ରସୁରାମକୁ ଭେଟଇ ॥୩୯୧୦॥
ବିନୟ ହୋଇଣ ପ୍ରସୁରାମଙ୍କୁ ସେବାକଲା
କିଛିଦିନ ଅନ୍ତରେ ଭୃଗୁପତି ବରଦିଲା ॥୩୯୧୧॥
ଯେତେକ ବିଦ୍ୟାଥିଲା ପ୍ରସୁରାମକୁ ତହିଂ
ହରସେ ପ୍ରସୁଧର ଦ୍ରୋଣକୁ ଟେକି ଦେଇ ॥୩୯୧୨॥
ବିଦ୍ୟାପାଇ ଦ୍ରୋଣେ ପ୍ରବେସ ହସ୍ତିନାର
ଦୁର୍ଯ୍ୟୋଧନ ନାଟ ଗୋଟି ପଡ଼ିଲାକ କୁପର ॥୩୯୧୩॥
ଆଣି ନ ପାରିଣ ସର୍ବେ ଭାଳୁଥିଲେ ବସି
ପୁଣ୍ଡରି[1] କାଣ୍ଡ ମାରି ଦ୍ରୋଣ ଆଣିଲେ ନାଟ ଟେକି ॥୩୯୧୪॥
ଦେଖିଣ ଆଶ୍ଚର୍ଯ୍ୟ ହୋଇଲେ ରାଜନ
ଯେତେକ ବିଦ୍ୟା ତୁମ୍ଭେ କାହୁଂ ପାଇଲ ବ୍ରାହ୍ମଣ ॥୩୯୧୫॥
ସତୋରି ତାଳ ଗର୍ଭରେ ନାଟ ପଡ଼ିଥିଲା
ପୁଣ୍ଡରି ସର ମାରି ଉଠାଇ ଆଣିଲା ॥୩୯୧୬॥
ଯେମନ୍ତେ ବିଚାରି ହୃଷ୍ଟ ହୋଇଲା ରାଜନ
ବାସ୍ତୁ ଖଣ୍ଡିଯେ ଦେଇ ରଖାଇ ଗୁରୁ ଦ୍ରୋଣ ॥୩୯୧୭॥
ଭରଦ୍ୱାଜଙ୍କ ନନ୍ଦନ ତହିଂରେ ରୁହାଇଲେ
ଆଖାଡ଼ାସାଳ କରି ବିଦ୍ୟା ଯେ ସିଖାଇଲେ ॥୩୯୧୮॥
କର୍ଣ୍ଣ ଅର୍ଜୁନ ନକୁଳ ସହଦେବ
କୃପ ଆଚାର୍ଯ୍ୟ ସହିତେଂ ଧୃତିରାଷ୍ଟ୍ର ନନ୍ଦନ ସର୍ବ ॥୩୯୧୯॥
ଯେମାନେ ସମସ୍ତେ ପଢ଼ିଲେ ସକଳ ସାସ୍ତ୍ରମାନ
ପ୍ରସୁରାମ ବିଦ୍ୟା ସେ ପଢ଼ାଇଲେ ରସିଙ୍କ ନନ୍ଦନ ॥୩୯୨୦॥
ଦିନେକ ଦୃଯୋଧନ ମୃଗୟାକୁ ଗଲା
କାମର ଆରତେ ସବର[2] ପତ୍ନିକି ହରିଲା ॥୩୯୨୧॥
କର୍ଣ୍ଣ ଦୁର୍ଯ୍ୟୋଧନ ଆବର ଭାଇମାନ
ସମସ୍ତଙ୍କୁ ସବର କଲାକ ମୋହମାନ ॥୩୯୨୨॥
ବିଳମ୍ବ ଦେଖି ଦ୍ରୋଣେ ସେ ବନରେ ମିଳିଲେ
କଦଳିବନ ପ୍ରାୟେ ସେଠାରେ କୌରୋବେ ପଡ଼ିଛନ୍ତି ଭଲେ ॥୩୯୨୩॥
କିଯେ ତୁମ୍ଭଙ୍କୁ ମାଇଲା ବୋଲି ଡାକିଲେ ଗୁରୁଦ୍ରୋଣ
ମିଳିଲା ସବର ଘେନିଣ ତିକ୍ଷ ବାଣ ॥୩୯୨୪॥
ଅର୍ଜୁନ ରଣ କଲା ସବର ସଙ୍ଗତେ
ସବର ଅର୍ଜୁନର ହୋଇଲା ସମକଚ୍ଛେ ॥୩୯୨୫॥
ଦ୍ରୋଣେ ଡାକ ଦେଲେ ରହ ରହରେ ସବର
କେହୁ ତୋର ଗୁରୁ କହ ମୋ ଆଗର ॥୩୯୨୬॥
ସବର ବୋଇଲା ହେ ସୁଣିମା ଗୋସାଇଂ
ଦିନେକ ମିଳିଲି ମୁଂ ହସ୍ତିନାରେ ଯାଇ ॥୩୯୨୭॥
ତୁମ୍ଭଠାରୁ ବିଦ୍ୟା ସିଖିବଇଂ ବୋଲି ଗଲି
ହାସ୍ୟ କଲେ କୌରୋବେ ଫେରିଣ ଅଇଲି ॥୩୯୨୮॥
ମୃତ୍ତିକା ଦ୍ରୋଣ କରି ବିଦ୍ୟା ସିଖିଲଇଂ
ଅନ୍ୟାଯେ କଲେ ଯେହି ଯେହାଙ୍କୁ ମାଇଲଇଂ ମୁହିଂ ॥୩୯୨୯॥

---

୧ । ଖ ପୋଥି – ଗୁଣ୍ଡୁଚି
୨ । ଖ ଓ ଗ ପୋଥି – କିରାତ

ସବରଙ୍କୁ କହିଲେ ଭରଦ୍ୱାଜଙ୍କର ପୁଅ
ମୋହର ସିସ୍ୟ ହେଲୁ ଦକ୍ଷିଣା ମୋତେ ଦିଅ ॥୩୯୩୦॥
ସବର ବୋଇଲା ମାଗ ଦେବି ଯେହିକ୍ଷଣି
ଦ୍ରୋଣେ ବୋଇଲେ ଯେମାନଙ୍କୁ ତୁହି ଦିଅ ଜିବଦାନ ପୁଣି ॥୩୯୩୧॥
ସୁଣିଣ ସବର ସେ ଜିବନ୍ୟାସ ସର ଯେ ବିନ୍ଧଇ
ସମସ୍ତ କୌରୋବେ ଉଠିଲେ ଜିବ ପାଇ ॥୩୯୩୨॥
ଦ୍ରୋଣଙ୍କୁ ନିଉଛାଳି ସବର ବୋଇଲା
ଅର୍ଜୁନଙ୍କୁ ପ୍ରସଂସା ସମସ୍ତଙ୍କର ହୋଇଲା ॥୩୯୩୩॥
ଦ୍ରୋଣେ ବୋଇଲେ ତୁ ସବରକୁ ଜିତି
ତେଣୁ ତୋହର ନାମ ହୋଇଲା ସର୍ବସାଚି ॥୩୯୩୪॥
କୌରୋବଙ୍କୁ ଘେନି ଦ୍ରୋଣେ ଯେ ବାହୁଡ଼ିଲେ
ସୁଣସି ଗିରିଜାଗୋ ସଙ୍କର କହିଲେ ॥୩୯୩୫॥

## ଦ୍ରୌପଦୀଙ୍କ ଜନ୍ମ

ଦିନେ ଦ୍ରୋଣ ବୋଇଲେ ଦୃଯୋଧନ ମୁଖ ଚାହିଂ
ପଞ୍ଚାଳକୁ ଆଣିଦେଲେ ଗୁରୁଦକ୍ଷିଣା ପାଇବଇଂ ॥୩୯୩୬॥
ଦୃଯୋଧନ ବୋଇଲା ଯାଅରେ ସଇନି
ଅର୍ଜୁନ ବୋଇଲା ଥାଅ ତୁମ୍ଭେ ମୁଂ ଯେକା ଆଣିବି ପୁଣିଂ ॥୩୯୩୭॥
ଯେତେ ବୋଲି ଅର୍ଜୁନ ବିନ୍ଧିଲା ମନଭେଦି
ଦ୍ରୋଣଠାରେ ଦ୍ରୋପଦଙ୍କୁ ଆଣି ଦିଲା ବାନ୍ଧି ॥୩୯୩୮॥
ଦେଖିଣ କଉରୋବେ ଉଠିଲେ ସିର ଝୁଣି
ନ ମାର ରୁହ ବୋଲି ଡାକିଲା ଫାଲଗୁନି ॥୩୯୩୯॥
ଦ୍ରୋଣେ ଅନାଇ ଦ୍ରୋପଦ ବଦନ
ମୈତ୍ରଦ୍ରୋହ ହୋଇବି ଯେହାଙ୍କୁ କରିଲେ ନିଧନ ॥୩୯୪୦॥
ଦୟା କରି ଦ୍ରୋଣେ ପଞ୍ଚାଳ ରାଜାଙ୍କୁ ଛାଡ଼ିଲେ
ଅର୍ଜୁନ ବୋଇଲା ଦ୍ରୋପଦ ପଳାଇ ଯାଅ ଯେବେ ॥୩୯୪୧॥
ଦ୍ରୋପଦ ପଳାଇଲା ଉତରା ଅଙ୍କେ କଲା ତପ
କିଛିଦିନ ଅନ୍ତରେ ପ୍ରସନ୍ନ ହୋଇଲେ ବିଶ୍ୱନାଥ ॥୩୯୪୨॥
ବରମାଗ ବୋଲିଣ ବୋଇଲେ ସଦାସିବ
କୌରୋବଙ୍କୁ ମାରିବି ବୋଲନ୍ତି ଦ୍ରୋପଦ ॥୩୯୪୩॥
ସଦାସିବ ବୋଇଲେ ମାରିପାରିବୁ ତାଙ୍କୁ ନାହିଂ
ଅର୍ଜୁନ ତାହାଙ୍କୁ ଯେ ଅଛି ସାହା ହୋଇ ॥୩୯୪୪॥
ଆହୁରି କଥାଯେ ଅଛି ହୋ ରାଜନ
ଦୁହିତା ଗୋଟିଯେ କରଯା ଜନମ ॥୩୯୪୫॥
ସେ ଦୁହିତା ଗୋଟି ଯେ ଅର୍ଜୁନକୁ ଦେବୁ
ଅର୍ଜୁନ ହସ୍ତରେ କୌରୋବଙ୍କୁ ମରାଇବୁ ॥୩୯୪୬॥
ସଙ୍କର ବର ପାଇ ଦ୍ରୋପଦ ଚଳିଗଲା
ଦୁହିତା ଜନ୍ମ ଅର୍ଥେ ଜାଗ ଆରମ୍ଭିଲା ॥୩୯୪୭॥
ଯଜ୍ଞ କୁଣ୍ଡରୁ ଜାତ ହେଲେ ଯିଘ୍ନସେନି
ସୁଣଗୋ ପ୍ରିୟା ବୋଲି ବୋଲନ୍ତି ସୁଳପାଣି ॥୩୯୪୮॥

## ଦ୍ରୋଣଙ୍କର ଶିଷ୍ୟମାନଙ୍କଠାରୁ ବିଦ୍ୟାପରୀକ୍ଷା ଓ ହରିବଂଶ ପାଠର ମହିମା

ଦିନେ ଦ୍ରୋଣ ଗୁରୁ ସିସ୍ୟଙ୍କୁ ଘେନିଗଲେ
ପରିକ୍ଷା ନିମନ୍ତେ କୁଣ୍ଡଳା ପର୍ବତେ ଉଠିଲେ ॥୩୯୪୯॥
ସେ ଗିରି ଉପରେ ଯେକ ବୃକ୍ଷ ଅଛି ଘୋଟି
ବିସ୍ତାର ସତେ ଯୋଜନ ଦ୍ରୋଣ ଗଲେ କାଟି ॥୩୯୫୦॥
ହୋଇଲା ବୃକ୍ଷ ଖୁଣ୍ଟା ବସାଇଲେ ଘଡ଼ି ॥୩୯୫୧॥
ଘଡ଼ିପରେ ଖଡ଼ିକା ତହିଂ ଦେଇ
ଖଡ଼ିକା ଉପରେ ଗରଗଡ଼ ନେଇ ଥୋଇଂ ॥୩୯୫୨॥
ତହିଂ ଉପରେ ଧାନ ଧାନ ଉପରେ ସୋରିସ ଯେକ[1]
ସୋରିସକୁ ସର ବିନ୍ଧ ଦ୍ରୋଣେ ଦେଲେ ଡାକ ॥୩୯୫୩॥
ସୋରିସକୁ କୌରୋବେ ନାରାଜ ବିନ୍ଧିଲେ
ଲାଖରେ ନ ବାଜିଲା ସ୍ତକିତ ହୋଇଲେ ॥୩୯୫୪॥
ସୁଚିମୁନା ନାରାଜ ଅର୍ଜୁନ ବିନ୍ଧିଲା
ସୋରିସ କଣାକରି ନାରାଜ ଗଳିଗଲା ॥୩୯୫୫॥
ଦେଖିଣ ଆଶ୍ଚାର୍ଯ୍ୟ ହୋଇଲେ ଦ୍ରୋଣଗୁରୁ
ବିଚାରିଲେ ରଣେ ଯେହୁ ହୋଇବ ହନ୍ତକାରୁ[3] ॥୩୯୫୬॥
ଅର୍ଜୁନକୁ ଗୁରୁଦ୍ରୋଣ ଭୁଅ ଭେଦ ସିଖାଇଲେ
ସୁଣସି ଗିରିଜା ଗୋ ସଙ୍କର କହିଲେ ॥୩୯୫୭॥
ଭାରତ ହରିବଂସ ଭାବରେ ସୁଣେ ଯେହୁ
ଇହ ପରଲୋକରେ ମୁକତି ଲଭେ ସେହୁ ॥୩୯୫୮॥
ହରିଙ୍କର ଭଜନରେ ପାପ ଯିବ ନାସ
ହରିଙ୍କି ଭଜିଲେ ଯିବ ବିଷ୍ଣୁପାସ ॥୩୯୫୯॥
ପାପ ସେ ପରମାଦ ଅଟଇ ସିନ୍ଧୁଜଳ
ଶ୍ରୀହରି ନାମ ନାବ ସୁମର ହେବ ପାର[4] ॥୩୯୬୦॥
ହରିଙ୍କି ଆଶ୍ରେ କଲେ ଦୃଗତି କ୍ଷୟେ ହୋଇ
ହରିଙ୍କି ଭଜି ନନ୍ଦ ପୁତ୍ର ଅଛି ପାଇ ॥୩୯୬୧॥
ହରି ସେ ପରମ ପୁରୁସ ଆଦିମୁଳ
ହରି ସେ ଗଙ୍ଗାଜଳ ତାରଇ ସଂସାର ॥୩୯୬୨॥
ହରିନାମ ଅଟଇ ଅପୁର୍ବ ଦିବ୍ୟ ରସ
ହରିପାଦେ ସରଣ ସାରୋଳା ଚଣ୍ଡି ଦାସ ॥୩୯୬୩॥

---

୧ । ଖ ଓ ଗ ପୋଥି – ଖଡ଼ିକା ଉପରେ ଧାନ ଧାନ ପରେ ସୋରିଷ ଯେକ
୨ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ପୋଥି – ବିଚାରିଲେ ରଣେ ଯେ ହୋଇବ ଅଜେୟ ମହାମେରୁ
୪ । ଗ – ଶ୍ରୀହରି ନାମ ନାବ ବସିଣ ପାରିହେବ

ଜୟତୁ ବାକ୍ୟଦେବୀ ମହିମା କିସୋରି
ଶ୍ଵସାନେ[୧] ବସିଥାଉ ଆଦି ସକ୍ତି ଧରି ।।୩୯୬୪।।
ଯଂଖେରପୁରବାସି ନାମ ତୋ ଗିରିଜା
ସୁର ସିଦ୍ଧମାନେ ତୋତେ ଚରଣେ କଲେ ପୁଜା ।।୩୯୬୫।।
କଟିରେ[୨] ଓଢ଼ିଆଣି ହସ୍ତରେ ସୁବର୍ଣ୍ଣବାହି
ଦିସଇ ରବି ଜ୍ୟୋତି ଅନ୍ଧାରେ ଆଲୁଅ ହୋଇ ।।୩୯୬୬।।
ହୃଷ୍ଟ ବଦନ ସୋଭା ନୟନେ କଜ୍ଜ୍ୱଳ
ଅଷ୍ଟଗୋଟି ଆଖି ବିସ୍ତାର ଭୁଜବଳ ।।୩୯୬୭।।
ଦୃଷ୍ଟଙ୍କୁ ବିକଟ ରୁପ ତୋହାର ଭୟଙ୍କର ଦିସଇ
ସନ୍ଥକୁ ସ୍ୟାନ୍ତିରୁପ ଦେଖାଉ ମହାମାଇ ।।୩୯୬୮।।
ଲହ ଲହ ଜିହ୍ୱା ଗହ ଗହ ପେଟ
ସଙ୍ଗତେ ଯୋଗିନ୍ନିଗଣ କରୁଥାନ୍ତି ନାଟ ।।୩୯୬୯।।
ଜୟତୁ ଶ୍ରୀଚଣ୍ଡି ସାରୋଳା ଦେବି ଦୁର୍ଗା
ଲେଖିବଇଂ ପଦ କହିଣ ମୋତେ ଦେବା ।।୩୯୭୦।।
ତୋହର ସେବକ ମୁଂ ଅଟଇ ଜନ୍ମେ ଜନ୍ମେ
କର ଅନୁଗ୍ରହ ଦେବି ଦୋଷ ନ ଘେନିବ ମନେ ।।୩୯୭୧।।
ଅପୁର୍ବ ଚରିତ ଯେ ହରିବଂସ ଅଟଇ
ତୋହର ପ୍ରସନ୍ନେ ମୁଂ ଲେଖନ କରିବଇଂ ।।୩୯୭୨।।
ଲେଖନ୍ତେ ଦିସୁଥିବ ସାହାସ୍ର ପଦ ଅର୍ଥ
ସାରୋଳା ଦାସ ସରଣ ସାରୋଳା[୩] ପାଦଗତ ।।୩୯୭୩।।

## ସୁଗନ୍ଧିକା ପୁଷ୍ପ ଆଣିବା ପାଇଁ ଶ୍ରୀକୃଷ୍ଣଙ୍କୁ ନାରଦଙ୍କ ପରାମର୍ଶ

ବଦୟନ୍ତି ଗିରିଜା ସୁଣ ହେ ସଦାସିବ
ରହିଲେ ଦ୍ୱାରିକାରେ ଶ୍ରୀକୃଷ୍ଣ ବଳଦେବ ।।୩୯୭୪।।
ତାହାଙ୍କ ଚରିତ ମୋତେ କହ ହେ ଗୋସାଇଂ
ସୁଣଗୋ ଓମା ବୋଲି ବୋଲନ୍ତି ସୁଳସାଇଂ ।।୩୯୭୫।।
ଅନେକ ଦତ୍ୟ ନାସିଲେ ଭାବଗ୍ରାହି
ନାରକା ଘରୁ ସୋଳ ସହସ୍ର କନ୍ୟା ପାଇ ।।୩୯୭୬।।
ଭାରଥି ତୁଳସା କାଳିନ୍ଦି ସତ୍ୟାବତି
ଜମ୍ବୁବତି ରୁକ୍ମଣି ଯେ ଲକ୍ଷ୍ମି ସରସ୍ୱତି ।।୩୯୭୭।।
ଅଷ୍ଟପାଟବଂସି ସୋଳ ସହସ୍ର କନ୍ୟା ସଙ୍ଗେ
ଯେତେକ ଘେନି କ୍ରିଡ଼ା କରନ୍ତି ବାସୁଦେବେ ।।୩୯୭୮।।

୧ । ଖ ଓ ଗ ପୋଥି – ଆସ୍ଥାନେ
୨ । ଖ ଓ ଗ ପୋଥି – ପୟରେ
୩ । ଗ ପୋଥି – ଶ୍ରୀଚଣ୍ଡୀ

ଭିସ୍ମେକନନ୍ଦନି ଯେ ପ୍ରଥମେ ବିଭା ହେଲେ
ଶ୍ରୀହରି ବିର୍ଯ୍ୟେଂ ସେ ଗର୍ଭବାସ ହେଲେ ।।୩୯୭୯।।
ଦ୍ୱାଦସ ବରସ ତହିଂ ସମ୍ପୁର୍ଣ୍ଣ ହୋଇଲା
ରୁକ୍ମଣି ଦେବିଙ୍କ ଆଉ ପ୍ରସବ ନୋହିଲା ।।୩୯୮୦।।
ଭାଳିଲେ ନାରାୟଣ ବଳରାମ ସହିତେଂ
ସାତବଂସ ଯାଦବ ପାତ୍ର ମନ୍ତ୍ରି ଯେତେ ।।୩୯୮୧।।
ଶ୍ରୀକୃଷ୍ଣ ନାଥ ଯେ ବହୁତ ଦିଲେ ଦାନ
ଯେମନ୍ତେ ପେଟରୁ ପଡ଼ିବେ ନନ୍ଦନ ।।୩୯୮୨।।
ଯେତେକ ଉପାୟ କଲେ ଚକ୍ରପାଣି
ତେବେ ସେ ପ୍ରସବ ନୋହିଲେ ରୁକ୍ମଣି ।।୩୯୮୩।।
ଯେକଦିନେ ବିଜୟେ ନାରଦ ଦ୍ୱାରିକାର
ଆସନ ଯୋଗାଇ ବସାଇଲେ ଚକ୍ରଧର ।।୩୯୮୪।।
ବସିଣ କୁସଳ ପଚାରିଲେ ମୁନିବର
ବଦୟନ୍ତି କେଶବ ସର୍ବ କୁସଳ ଆମ୍ଭର[୧] ।।୩୯୮୫।।
ଭିସ୍ମେକ କୁମାରି ଯେ ହୋଇଲେ ଗର୍ଭବାସ
ନୋହିଲା ପ୍ରସବ ଗଲା ଦ୍ୱାଦସ ବରସ ।।୩୯୮୬।।
ଯେଥିକୁ ଉପାୟ କହ ହେ ବ୍ରହ୍ମପତି
କେମନ୍ତେ ପ୍ରସବ ହୋଇଲେ ବଂସ ହୋଇବ ବର୍ଦ୍ଧତି[୨] ।।୩୯୮୭।।
ନାରଦେ ବୋଇଲେ ଦେବ ମୁହିଂ ଅଛି ଜାଣି
କହିବା ଯେବେ ଆମ୍ଭେ ପାରିବ ତୁମ୍ଭେ ଆଣି ।।୩୯୮୮।।
ବଦୟନ୍ତି କେସବ ଯେ କେବଣ ଚରିତ
କହିଲେ ଆଣି ପାରିବୁଂ ଯେ ତିନି ଜଗତ ।।୩୯୮୯।।
ନାରଦେ ବୋଇଲେ ରୁକ୍ମଣି ସ୍ନାହାନର କାଳେ
ପୁଷ୍ପ ଗୋଟିୟେ ଭାସି ଆସୁଥିଲା ଜଳେ ।।୩୯୯୦।।
ରୁକ୍ମଣି ଘେନି ତାହା ନାସାରନ୍ଧ୍ରେ ଦେଇ
ପୁରୁଣା ପୁଷ୍ପ ଝଡ଼ି ପଡ଼ିଲା ମିଳାଇ ।।୩୯୯୧।।
ବିଚାରିଲେ ଦେବି ହୃଦପଦ୍ମ ମଧ୍ୟ
ଯେମନ୍ତ ପୁଷ୍ପ ଗୋଟିୟେ କେ ଦେବ ସାଧ୍ୟ ।।୩୯୯୨।।
ଯହୁଂ ସେ ପୁଷ୍ପଠାରେ ରହିଲାକ ମନ
ତେଣୁ ତାଙ୍କ ଗର୍ଭରୁ ନ ପଡ଼େ ନନ୍ଦନ ।।୩୯୯୩।।
ଶ୍ରୀହରି ବୋଇଲେ ସେ କେବଣ ହି ଫୁଲ
ଅଛି କେଉଂ ବନସ୍ତରେ ଭାସି ଅଇଲା ଜଳ ।।୩୯୯୪।।
ନାରଦେ ବୋଇଲେ ତାର ନାମ ସୁଗନ୍ଧିକା
ଅସ୍କନ୍ଦ ବନରେ ରହିଅଛି ଯେକା ।।୩୯୯୫।।

୧ । ଖ ଓ ଗ ପୋଥି – ଶ୍ରୀକୃଷ୍ଣ ବୋଲନ୍ତି ସର୍ବ ଶୁଭ ଯେ ଆମ୍ଭର
୨ । ଖ ପୋଥି – କେମନ୍ତ ବଂଶ ଆମ୍ଭର ହୋଇବ ଧବଳିତ

ଚଉକତି ଜଳ ତାର ଉଜାଣି ବହଇ
ପକ୍ଷିଏ ଉପରେ ନପାରନ୍ତି ରହିଂ[1] ।।୩୯୯୬।।
ସାତକୋଟି ଗନ୍ଧର୍ବ ଅଛନ୍ତି ଜଗୁଆଳ
ଆବର ବ୍ରହ୍ମଗଣ ସହସ୍ରେ ବାସ୍ତୋରି ରଖୁଆଳ ।।୩୯୯୭।।
ଯେମନ୍ତ ପ୍ରକାରେ ସେ ପୁଷ୍ପ ହୋୟେ ରକ୍ଷା
ତ୍ରେତୟା ଯୁଗୁ ହନୁ ଆବୋରି ଅଛି ତୋଟା ।।୩୯୯୮।।
ପାରିଲେ ପୁଷ୍ପ ତହୁଂ ଆଣ ହେ ଚକ୍ରପାଣି
ଯେତେ କହି ଅନ୍ତର ହୋଇଲେ ବ୍ରହ୍ମମୁନି ।।୩୯୯୯।।
ଭାଳିଲେ ନାରାୟଣ ତହିଂକି କେହୁ ଯିବ
ଆଣିଲେ ସୁଗନ୍ଧିକା ରୁକ୍ମଣି ପ୍ରସବିବ ।।୪୦୦୦।।
ଗୋବିନ୍ଦ ପଚାରନ୍ତେ ସମସ୍ତେ ନାସ୍ତିକଲେ
ସେ ପୁଷ୍ପ ଆଣିବ କେହୁ ଯୁଝିବ ଇନ୍ଦ୍ର ତୁଲେ ।।୪୦୦୧।।
ଚିନ୍ତିଲେ ନାରାୟଣ ଅଇଲେ ଅର୍ଜୁନ[2]
ବିଚାରିଲେ ଆଣିବାକୁ ସେହି ଯେ ଭାର୍ଜନ ।।୪୦୦୨।।
ଇନ୍ଦ୍ରର ବନ ସେହୁ ସେହି ସେ ଇନ୍ଦ୍ରସୁତ
ଗନ୍ଧର୍ବ ଜିଣିବାକୁ ଅର୍ଜୁନ ସାମରଥ ।।୪୦୦୩।।
ଚିନ୍ତିଲେ ବାସୁଦେବ ଜାଣିଲେ ସର୍ବସାଚି[3]
ଯୁଧିଷ୍ଟିଙ୍କୁ କହିଣ ଦ୍ୱାରିକାରେ ମିଳିଲେ ଆସି ।।୪୦୦୪।।
ସଭା କରି ବସିଛନ୍ତି ରାମ ବନମାଳି
ଉଗ୍ରସେନ ସହିତେ ଅଛନ୍ତି ତହିଂ ପୁରି[4] ।।୪୦୦୫।।
ହରି ବଳରାମଙ୍କୁ ନମସ୍କାର କରି
ଯେତେ ମାନିତ ଜନ ଅଛନ୍ତି ତହିଂ ବିଜେ କରି ।।୪୦୦୬।।
ସର୍ବକଥା ଗୋବିନ୍ଦ ସେ କହିଲେ ଅର୍ଜୁନକୁ
ସୁଭେ ଚଳିଯାଅ ବାବୁ ଅସ୍କନ୍ଦ ବନକୁ ।।୪୦୦୭।।

## ସୁଗନ୍ଧିକା ପୁଷ୍ପ ଆଣିବାକୁ ଅର୍ଜୁନଙ୍କର ଅସ୍କନ୍ଦ ବନକୁ ଗମନ ଓ ହନୁମନ୍ତ ସହିତ ଯୁଦ୍ଧ

ଧନୁସର ଘେନି ଯେ ବାହାର ଫାଲଗୁନି
ବହୁତ ଗ୍ରାମ ଦେସ ବନ ନଦି ଜିଣି ।।୪୦୦୮।।
ଯେକାଦସ ଦିନେ ପ୍ରବେସ ଅସ୍କନ୍ଦ ବନେ ଯାଇ
କେଉଂଠାରେ ପୁଷ୍ପ ଅଛି ଅର୍ଜୁନ ଖୋଜଇ ।।୪୦୦୯।।

୧ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ
୨ । ଖ ଓ ଗ ପୋଥି – ଭାଳିଲେ ନାରାୟଣ ଚିନ୍ତିଲେ ଅର୍ଜୁନ
୩ । ଖ ଓ ଗ ପୋଥି – ବାସେବି
୪ । ଖ ପୋଥିରେ ଏହି ଦୁଇଧାଡ଼ି ନାହିଁ

ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ମାରୁତି ବସିଥିଲା ପର୍ବତ ଉପରେଣ ।।୪୦୧୦।।
ବସିବା ଆସ୍ତାନ ତୋତେ କହିବା ବିସ୍ତାରି
ଛଡ଼ ଯୋଜନ ସେ ଅଟଇ ତଳ ପିଢ଼ି ।।୪୦୧୧।।
ବୟାସି ତାଳ ଅଟଇ ସେ ଉଚ୍ଚ
ତହିଂ ପରେ ଅଛଇ ଜାଗନିକ ବଟ ସଞ୍ଚ[1] ।।୪୦୧୨।।
ବିସ୍ତାର ବାର ଯୋଣ ବାଉନ କାଠି ଉଚ୍ଚ
ବୃକ୍ଷର ସାଖା ଯାଇ ଲାଗିଅଛି ଆକାସକୁ ଘଞ୍ଚ ।।୪୦୧୩।।
ପୋୟେଲା ପାସାଣ ତହିଂର ତଳେ ବେଦି
ତହିଂପରେ ବସିଅଛି ହନୁମନ୍ତ ଜଗି ।।୪୦୧୪।।
ଶ୍ରୀରାମ ନାମକୁ ସେ ହୃଦେ କରେ ଧ୍ୟାୟେ
ଯୋଗେକ ବହିଗଲେ ଦିନେକ ତାକୁ ହୋୟେ ।।୪୦୧୫।।
ରାତ୍ର ଦିବସ ବୋଲି ସେ କିଛି ହିଂ ନ ଜାଣଇଂ
ପୁଷ୍ପଙ୍କର ତେଜରେ ସର୍ବଦା ଆଲୁଅ ହୋଇ ।।୪୦୧୬।।
ଅଳପ ଅଳପ ହନୁ ଛାଡ଼ଇ ନିଶ୍ୱାସ
ବହଇ ହେମ ତହିଂ ବହଇ ବସନ୍ତ[2] ।।୪୦୧୭।।
ବସନ୍ତ ପବନ ଯୋଗେ ଉନ୍ମତ୍ତ ବନଜିବ ଅଙ୍ଗ
ହୋଅନ୍ତି କୋଳାହଳ ସୁକସାରି ସାରଙ୍ଗ ।।୪୦୧୮।।
ସୁଗନ୍ଧ ପ୍ରକଟିଣ ଆମୋଦୁଅଛି ବନ
ଯହିଂରେ ସୁଗନ୍ଧିକା କରଇ ଆଶ୍ରମ ।।୪୦୧୯।।
ପୁଷ୍ପଙ୍କର ମଧୁପଡ଼ି ବହୁଅଛି ଯେକ ନଇ
ବାସ୍ତୋରି ଯୋଜନ ସେ ଗିରିକି ବେଢ଼ିଛଇ ।।୪୦୨୦।।
ଦେବତାଙ୍କୁ ନବତାଳ ସେ ଅଟଇ ଗଭିର
ମାନବଙ୍କୁ ଅଟଇ ଚଉଦ ବନ ତାଳ ।।୪୦୨୧।।
ଯେମନ୍ତ ମହିମା ସେ ବନର ଅଟଇ
ଅର୍ଜୁନ ଦେଖିଣ ସେ ପ୍ରସଂସା କରଇ ।।୪୦୨୨।।
ଜଗତି ଉପରେ ହନୁ ଦେଖିଲା ଅର୍ଜୁନ
ରେ ରେ କାର କରି ଡେଇଂ ପଡ଼ିଲା ହନୁମାନ ।।୪୦୨୩।।
ଆସ ଆସ ମାନବରେ କେତେ ବଳ ତୋର
ଯେହିକ୍ଷଣି ପେଶିବି ଯିବ ଯମ ଆଳ ।।୪୦୨୪।।
ମାନବ ହୋଇ ତୁ ଦେବତାପୁରେ ପସୁ
ମୋହୋର କୋପେ ତୁରେ ହୋଇବୁ ଧୂଳିପାଂସୁ ।।୪୦୨୫।।
ହନୁମନ୍ତ କହନ୍ତେ ଅର୍ଜୁନ କୋପ ବହି
ବଡ଼ିମା ପଣ କହୁଅଛୁ ବାନର ଛାର ହୋଇ ।।୪୦୨୬।।

୧ । ଖ ପୋଥି – ଦଶ ଦିନେ ଅସ୍କନ୍ଦ ବନେ ପ୍ରବେଶ ହୋଇଲା
୨ । ଖ ପୋଥି – ତହିଂ ପରେ ଅଛଇ ଜାଣ ନୀଳ କଜ୍ଜବଟ

ସୁଣିଲା ହନୁମନ୍ତ ଉଠିଲା ସିରଝୁଣି
ଛାର ବୋଲି ବୋଇଲୁ ତୁ କାହାକୁରେ ପୁଣି ॥୪୦୨୭॥
ଯେତେ ବୋଲି ତରୁବରେକ ଉପାଡ଼ିଲା
ଅର୍ଜ୍ଜୁନ ଉପରେ ନେଇଣ କଚାଡ଼ିଲା ॥୪୦୨୮॥
ସମ୍ଭାଳି ଅର୍ଜ୍ଜୁନ ଧଇଲା ଧନୁସର
ଲେଉଟି ବୃକ୍ଷେକ ହସ୍ତେ ଧଇଲା ହନୁବିର ॥୪୦୨୯॥
ତିକ୍ଷ ସର ବିନ୍ଧିଣ ଯେ ଅର୍ଜ୍ଜୁନ ଛେଦିଲା
ପୁଣି ଗିରିବର ଗୋଟାୟେ ହନୁ ଉପାଡ଼ିଲା[୧] ॥୪୦୩୦॥
ଦେଖିଣ କୋପ କଲା ପବନର ବଳା
ସମ୍ଭାଳ ମାନବାରେ ବୋଲିଣ ବୋଇଲା ॥୪୦୩୧॥
ଦେଖିଣ ଅର୍ଜ୍ଜୁନ ଯେ ବିନ୍ଧିଲା ବଜ୍ରବାଣ
ହନୁମତ ଗିରି ତହିଂ ହୋଇଲାକ ଚୂର୍ଣ୍ଣ ॥୪୦୩୨॥
ଯେମନ୍ତେ ସତର ଦିବସ ତହିଂ ରଣ ହେଲା
ଗିରିବର ତହିଂ ବନସ୍ତରୁ ସରିଲା ॥୪୦୩୩॥
ବିଶ୍ୱରୁପ ଧଇଲା ସେ ପବନ କୁମର
ଲାଞ୍ଜ ବଢ଼ାଇଲା ସେ ସତର ଯୋଜନର ॥୪୦୩୪॥
ଲାଞ୍ଜରେ ଗୁଡ଼ିଆଇ ବାନ୍ଧିଲା ହନୁମାନ
ବନ୍ଧନରେ ପଡ଼ିଲା ସେ ପାଣ୍ଡବ ଅର୍ଜ୍ଜୁନ ॥୪୦୩୫॥
କଇବ୍ରତ ଜାଲେ ଯେସନେ ମିନ ପଡ଼ିଥାଇ
ସେହିରୁପେ ବନ୍ଧନେ ପଡ଼ିଲା ଧନୁର୍ଜଇ ॥୪୦୩୬॥
ହନୁମନ୍ତ ବିଚାର ସେ କରଇ ହୃଦୟର
ବଡଆଣ୍ଟ ଜଣେ ଯେ ସେ କାହାର କୁମର ॥୪୦୩୭॥
ମୋହୋର ଶତୃ ଯେ ଯୁଗତେ ନୁହଇ
ଛାର ବୋଇଲାକୁ ହୃଦରେ କୋପହେଲି ମୁହିଂ ॥୪୦୩୮॥
ନ ମାରିବି ଯେହାକୁ ଥାଉ ଯେହାର ଜୀବନ
ମରୁ ଅବା ତରୁ ଯେଯେ ଫେଙ୍ଗି ଦେବି ଗଗନ ॥୪୦୩୯॥
ଯେମନ୍ତ ବୋଲିଣ ମାରୁତି ଫେଙ୍ଗି ଦେଲା
ଗଗନ ମାର୍ଗରେ ଯେ ଅର୍ଜ୍ଜୁନ ଉଡ଼ିଗଲା ॥୪୦୪୦॥
ସୁଧର୍ମା ସଭାରେ ସେ ପଡ଼ିଲାକ ଯାଇ
ଆସ୍ତାନ କରିଣ ବସିଛନ୍ତି ସଚିସାଇଂ ॥୪୦୪୧॥
ପଡ଼ିଲା ଅର୍ଜ୍ଜୁନ ଯେ ଦେହରେ ନାହିଂ ଜ୍ଞାନ
ଦେଖିଣ ଆଶ୍ଚାର୍ଯ୍ୟ ହୋଇଲେ ମଘବାନ ॥୪୦୪୨॥
ବିଦ୍ୟାଧରଠାରୁ ସେ ଦ୍ୱିଗୁଣ ଦିସେ ସୋଭା
ଇନ୍ଦ୍ରବୋଇଲା ହୋ ଅମୃତ ମୁଖେ ଦେବା ॥୪୦୪୩॥
ଅମୃତ ମୁଖେ ଦେଲା ଉଠିଲା ବାସେବି
ଧନୁସରକୁ ସେ ଧଇଲା ଆଣ୍ଟ କରି ॥୪୦୪୪॥

୧ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ

ବଜ୍ରଧର ପାଦେ ପଡ଼ିଲା ପୁନ ପୁନ
ଇନ୍ଦ୍ରରାଜା ବୋଇଲା ତୁ କାହାର ନନ୍ଦନ ॥୪୦୪୫॥
କାହାର ତୁଲେ ତୁ କରୁଥିଲୁ ସମର
ପଡ଼ିଲୁ ଆସିଣ ଯେବେ ଦେବଙ୍କ ସଭାର ॥୪୦୪୬॥
ସୁରପତି ବଚନେ କହେ ଅର୍ଜ୍ଜୁନ ସୁଣ ଦେବରାଜା
କୋଇନ୍ତା ବୋଲିଣ ସେ ପଣ୍ଡୁଙ୍କ ଭାରିଯା ॥୪୦୪୭॥
କୋଇନ୍ତା ଜନନି ମୋର ପିତା ପଣ୍ଡୁ ଯେ ରାଜନ
ଇନ୍ଦ୍ର ଦେବତା ବିର୍ଯ୍ୟରୁ ମୁଂ ହୋଇଅଛି ଜନମ ॥୪୦୪୮॥
ଅର୍ଜ୍ଜୁନ ନାମ ମୋର ପେସିଲେ ଭଗବାନ
ସୁଗନ୍ଧିକା ପୁଷ୍ପ ଅଛି ଅସ୍କନ୍ଦ ନାମେ ବନ ॥୪୦୪୯॥
ମିଳିଲି ସେହିବନେ ବାନର ଫେଙ୍ଗି ଦେଲା
ଧର୍ମ ବଳେ ତୁମ୍ଭର ଭେଟ ସେ ହୋଇଲା[୧] ॥୪୦୫୦॥
ସୁଣିଣ ସୁରପତି ହୋଇଲା ହରସ
ବୋଇଲା ଅର୍ଜ୍ଜୁନ ତୁ ଅଟୁ ମୋର ସୁତ ॥୪୦୫୧॥
ମୁହିଂ ତୋହର ପିତା ଅଟଇ ଦେବରାଜନ
ଯଉଂ ବାନରେ ତୋତେ ଫିଙ୍ଗି ଦେଲାରେ ନନ୍ଦନ ॥୪୦୫୨॥
ସେହି ହନୁମାନ ପବନ କୁମର
ତ୍ରେତୟା ଯୁଗରେ ସେ ଶ୍ରୀରାମ ଡଗର ॥୪୦୫୩॥
ଅସ୍କନ୍ଦ ବନ ସେ ଅଟଇ ଆମ୍ଭରି
ସେ ବନେ ହନୁମତ ହୋଇଛି ଜଗୁଆଳି ॥୪୦୫୪॥
ତୁ ମୋହର ପୁତ୍ର ବୋଲି ପାଇଲୁ ଜିବନ
ଆନ ଲୋକ ହୋଇଥିଲେ ସେ ହୁଅନ୍ତା ନିଧନ ॥୪୦୫୫॥
ତୁ ଯେଣୁ ବିଜୟେ କଲୁ ଆମ୍ଭର ଭୁବନ
ତେଣୁ କରି ବିଜଇ ହେଉ ତୋର ନାମ ॥୪୦୫୬॥
ଦିନା କେତେ ବାବୁରେ ଥାଅ ଆମ୍ଭ ପୁରେ
ଯେତେ ବୋଲି ଅର୍ଜ୍ଜୁନକୁ ଧଇଲେ କୋଳରେ ॥୪୦୫୭॥
ମୁଖରେ ଚୁମ୍ବନ ଦେଇ ଦେହ ଆଉଂସିଲେ
ନାନାବିଧି ଅଳଙ୍କାର ଦେହରେ ମଣ୍ଡିଲେ ॥୪୦୫୮॥
ବେନି କର୍ଣ୍ଣେ ଖଞ୍ଜିଲେ ଅମୃତ କୁଣ୍ଡଳ
ସୁର ସିଦ୍ଧ ମଣିକି ପକାଇ କଣ୍ଠର ॥୪୦୫୯॥
ଯେବଣ ମଣିରେ ରଜନି ଆଲୁଅ ହୋଇ
ସମୁଦ୍ର ମନ୍ଥନରୁ ଥିଲା ସେ ଜାତ ହୋଇ ॥୪୦୬୦॥
ବିଜଇର ଦେହ ବଜ୍ର କଲେକ ବଜ୍ରଧାରି
କହନ୍ତି ସଦାସିବ ସୁଣଗୋ ଗଉରି ॥୪୦୬୧॥
ଅର୍ଜ୍ଜୁନ ବୋଇଲେ ତାତ ରହ ବୋଲି ଯେ ବୋଇଲ
ଅସ୍କନ୍ଦ ବନରୁ ନେବି ଯେ ସୁଗନ୍ଧିକା ଫୁଲ ॥୪୦୬୨॥

୧ । ଖ ପୋଥି – ପଡ଼ିଲି ଯେଥି ଆସି ଶୁଣ ହେ ସର୍ବଦେବା

ହୋଇଛନ୍ତି ଗର୍ଭବାସ ଭିସ୍ମେକ ଦୁଲଣି
ଦ୍ୱାଦସ ବରସ ପ୍ରସବ ନୋହିଲେ ଗୋସାମଣି ॥୪୦୬୩॥
ପୁଷ୍କର ବାସନାରେ ସେହୁ ପ୍ରସବ ହୋଇବ
ଯେମନ୍ତ ଆଜ୍ଞା ଦେଇଅଛନ୍ତି ବାସୁଦେବ ॥୪୦୬୪॥
ବଦୟନ୍ତି ବାସେବ ପୁତ୍ର ଯାଅରେ ଚଳାଇ
ରୁକ୍ମଣି ପ୍ରସବିଲେ ଆମ୍ଭର କାର୍ଯ୍ୟ ହୋଇ ॥୪୦୬୫॥
ଇନ୍ଦ୍ରର ଆଜ୍ଞା ପାଇ ଯେ ଚଳିଲେ ଫାଲଗୁନି
ପ୍ରବେସ ହୋଇଲେ ଯାଇ ଅସ୍କନ୍ଦ ନାମେ ଭୁମି ॥୪୦୬୬॥
ବଦୟନ୍ତି ଗିରିଜା ସୁଣ ହେ ପ୍ରାଣନାଥ
ଅର୍ଜୁନକୁ ଲାଙ୍ଗୁଡ଼େ ବାନ୍ଧିଥିଲା ଯେ ହନୁମନ୍ତ ॥୪୦୬୭॥
ଶ୍ରୀହରି ଅଂସେ ସେହୁ ହୋଇଛି ଅବତାର
ତାହାକୁ ଦୟା କିପାଂ ନ କଲେ ଦାମୋଦର ॥୪୦୬୮॥
ହନୁମତର ହସ୍ତେ ବିର ଗଜିଂ ଯେ ହୋଇଲା
ବଦୟନ୍ତି ସଦାସିବ ସୁଣ ଗୋ ଗଉରା ॥୪୦୬୯॥
ଦ୍ରୋଣର ଲାଖ ସେ ଯହୁଂ ଅର୍ଜୁନ ବିନ୍ଧିଲା
ଫୁଟିଗଲା ସୋରିସ ତଳେ ନ ପଡ଼ିଲା ॥୪୦୭୦॥
ଦେଖିଣ ଦ୍ରୋଣଗୁରୁ ଅର୍ଜୁନକୁ ପ୍ରସଂସି
ହୃଦଗତେ ଗର୍ବ ସେ ବହିଲା ସର୍ବସାଚି ॥୪୦୭୧॥
ବିଚାରିଲା ରଥି ଆଉ ମୋଠାରୁ କେହି ନାହିଂ
ପ୍ରଶଂସା କଲେ ଦ୍ରୋଣେ ଲାଖ ବିନ୍ଧିଲଇଂ ॥୪୦୭୨॥
ଯେମନ୍ତ ବୋଲନ୍ତେ ଜାଣିଲେ ଭଗବାନ
ବୋଇଲେ ଗରବ କଲା ବାସେବନନ୍ଦନ ॥୪୦୭୩॥
ଯେହାକୁ ଗଜଂାଇବିଂ ହନୁମତ ହସ୍ତର
ଲାଞ୍ଜରେ ବାନ୍ଧିଣ ହନୁ ଫିଙ୍ଗିବ ଗଗନର ॥୪୦୭୪॥
ଯେମନ୍ତ ବୋଲି କୃଷ୍ଣ ବିଚାରିଣ ଥିଲେ
ତେଣୁ କରି ହନୁମତ ହସ୍ତରେ ଗଜଂାଇଲେ ॥୪୦୭୫॥
ଗରବ ଗଜଂନ ବାନା ନାମ ଅଟଇ ତାହାଙ୍କର
ଗର୍ବ କଲା ଲୋକକୁ ସେ ମଣଇ ହାଦେ ପର ॥୪୦୭୬॥
ଭଗତି କରିଣ ଯେ ଦୁରେ ଥାଏ ରହି
ତାହାଙ୍କୁ ଦୟା କରି ଦୁଖ ବିନାସଇ ॥୪୦୭୭॥
ଦୁଖି ଲୋକଙ୍କର ଧନ ନାଥ ଅଗତିକି ଗତି
ଯାହାକୁ ଯୋଗିଜନେ ଚିନ୍ତି ନ ପାବନ୍ତି ॥୪୦୭୮॥
ଯୋଗିଜନଙ୍କର ଚିନ୍ତା ସେ ଠାକୁର ପୀତବାସ
ଜଗନ୍ନାଥ ଶ୍ରୀଚରଣେ ସରଣ ସାରୋଳା ଚଣ୍ଡି ଦାସ ॥୪୦୭୯॥

## ଅସ୍କନ୍ଦ ବନରେ ଅର୍ଜୁନ ଓ ହନୁମନ୍ତର ଦ୍ୱିତୀୟଥର ଯୁଦ୍ଧ ଓ ଶ୍ରୀକୃଷ୍ଣଙ୍କର ହନୁମତକୁ ବରପ୍ରଦାନ

ବଦୟନ୍ତି ଗିରିଜା ସୁଣ ହୋ ସଦାସିବ
ହନୁମନ୍ତ ଅର୍ଜୁନର ସମରଂ[1] କହିବ ॥୪୦୮୦॥
ତ୍ରେତୟା ଯୁଗରେ ଭାରୋଇମଲ ହନୁମତ
ଯେକେ ହେଂ ହନୁମତ[2] ବିଷ୍ଣୁର ଭଗତ ॥୪୦୮୧॥
ଦ୍ୱାପର ଯୁଗଂରେ ଭାରୋଇମଲ ଫାଲଗୁନି
ଶ୍ରୀହରି ଭଗତ ସେ ଜନ୍ମିଛି କଳା ଘେନି ॥୪୦୮୨॥
ଦୁହେଂ ସମକଛ ସେ ଯେ ଅଟନ୍ତି ମହାବିର
କେହି କାହାକୁ ନ ଜିଣିଲା କରିଣ ସମର ॥୪୦୮୩॥
ଯେ କଥା ମୋର ଆଗେ କହ ହେ ସୁଳପାଣି
ବଦୟନ୍ତି ସିବ ସୁଣ ହେ ଭବାନି ॥୪୦୮୪॥
ଲେଉଟି ସେ ବନରେ ପ୍ରବେସ ଫାଲଗୁନି
ଦେଖିଣ ହନୁମତ ଉଠିଲା ସିରଝୁଣି ॥୪୦୮୫॥
ଡାକିଲା ରେ ମାନବା ଆସିଥିଲୁ କାଲି
ଆକାସେ ଫିଙ୍ଗି ଦିଲି ନାସ ଯିବୁ ବୋଲି ॥୪୦୮୬॥
କେବଣ ଦେବତାରେ ରକ୍ଷା କଲା ତୋତେ
ମରିବୁ ବୋଲି ଆସି ପସିଲୁ ବନସ୍ତେ ତୁରିତେ[3] ॥୪୦୮୭॥
ମୋହର ମହିମା ତୁହି ନାହୁଂକିରେ ସୁଣି
ତ୍ରେତୟା ଯୁଗରେ ଜନ୍ମିଥିଲେ ରଘୁମଣି ॥୪୦୮୮॥
ପିତା ସତ୍ୟ ପାଳିଣ ଶ୍ରୀରାମ ଗଲେ ବନ
ବନସ୍ତରୁ ସିତାଙ୍କୁ ନିଲାକ ରାବଣ ॥୪୦୮୯॥
ସିତ୍ୟାଙ୍କୁ ନ ପାଇ ରାମ ମିଳିଲେକ ରସିସିଂଘ
ସୁଗ୍ରିବର ସଙ୍ଗେ ମୈତ୍ର ବସି ବାଳିକି କଲେ ବଧ ॥୪୦୯୦॥
ମୁହିଂ ସେ ସପତ ସମୁଦ୍ର ଡେଇଂ ଗଲି
ରାବଣ ଲଙ୍କା ପୁରେ ସିତ୍ୟାଙ୍କୁ ଠାବ କଲିଂ ॥୪୦୯୧॥
ସତେ ଯୋଜନ ଲଙ୍କାରେ ଲଗାଇଲି ଯୁଇ
ସିତୟାର ବାରତା ଶ୍ରୀରାମଙ୍କୁ ଦେଲି ନେଇ ॥୪୦୯୨॥
ବାରତା ପାଇ ରାମ ବାନ୍ଧିଲେ ସିନ୍ଧୁଜଳ
ମୁହିଂ ସେ ବନ୍ଧକୁ ବହିଲିଂ ପଥର ॥୪୦୯୩॥
ଲଙ୍କାରେ ପସିଣ ରାମ ବଧିଲେ ରାବଣ
ରାବଣ ଭାଇ ରାଜା ହୋଇଲା ବିଭିସଣ ॥୪୦୯୪॥

---

୧ । ଖ ଓ ଗ ପୋଥି – ବିବାଦ
୨ । ଖ ଓ ଗ ପୋଥି – ମହାବଳୀ
୩ । ଖ ଓ ଗ ପୋଥି – ଆଜ ଆସିଛୁ ତୁରିତେ

ପାଇଲେ ସିତ୍ୟା ରାମ ଯେମନ୍ତ ମହିମା ମୋହର
ମୁହିଂ ସେ ହନୁମତ ପବନ କୁମର ॥୪୦୯୫॥
ଶ୍ରୀରାମ ମୋତେ ଯେଠାରେ ରଖିଣ ଗଲେ
ଦୈତଙ୍କ କାଳ ମୁଂ ଅଛି ଯେହିଠାରେ ଭଲେ ॥୪୦୯୬॥
ଜଗତି ପରେ ବସି ଦୃଷ୍ଟି ଦେଇଥାଇ
ଯେମନ୍ତେ ଅସୁରେ ସେ ନ ଆସନ୍ତି ଡେଇଂ[1] ॥୪୦୯୭॥
ଆସିଲେ ମୋହର ହସ୍ତରେ ସେହୁ ହୋଅନ୍ତି ନିଧନ
ତୁହି ସେ ଆସି ମିଳିଲୁ ପେସିଂବିଂ ସମନ ଭୁବନ[2] ॥୪୦୯୮॥
ଅର୍ଜୁନ ବୋଇଲାରେ ମୋହର ମହିମା ସୁଣ
ବାସେବର ସୁତ କୋଇନ୍ତା ଗର୍ଭୁ ଜନ୍ମ ॥୪୦୯୯॥
ଦ୍ରୋଣ ଗୁରୁ ମୋତେ ବିଦ୍ୟା ସିଖାଇଲେ
ଚଉଦ ତାଳେ ଯେକ ସୋରିସ ଲାଖ କଲେ ॥୪୧୦୦॥
ସେ ଲାଖ ବିନ୍ଧିଲିଂ ପ୍ରସଂସା କଲେ ଗୁରୁ
କିରାତ ସବର ବୋଲି ଯେକ ରଣରେ ହନ୍ତକାରୁ[3] ॥୪୧୦୧॥
କିଞ୍ଚିତ ସମରେ ମୁଂ ତାହାକୁ ଜିଣିଲିଂ
ଦିନେକ ପଞ୍ଚାଳ ଦେସେ ମୁଂ ମିଳିଲିଂ ॥୪୧୦୨॥
ବୟାସି କ୍ଷେଉଣି ସନ୍ୟ ଅଟଇ ଦ୍ରୋପଦର
ସନ୍ୟକୁ ଜିଣି ଆଣି ଦିଲି ଦ୍ରୋଣଙ୍କ ଠାବର ॥୪୧୦୩॥
ଇନ୍ଦ୍ରରାଜା ସୁତ ଅଟଇ ଅଙ୍ଗାରପଲଙ୍ଗ
ତାହାକୁ ଜିଣି ସେ ଛଡ଼ାଇ[4] ଦେଲି ମୁଂ କଉରୋବ ॥୪୧୦୪॥
ଯେଉଁ ଶ୍ରୀରାମ ସେ ନାସିଲେ ଲଙ୍କାର ରାବଣ
ସେହି ରଘୁନାଥ ଯେବେଂ ସେ ହୋଇଛନ୍ତି ମହିରେ ଜନମ ॥୪୧୦୫॥
ବସୁଦେବ ବିର୍ଯ୍ୟେ ଦେବକି ଉଦରେ
ଅନନ୍ତ ସିନ୍ଧୁ ମଧ୍ୟେ ଭିଆଇ ନବରେ ॥୪୧୦୬॥
ସେ ମୋର ସଖା ମାଉସି ପୁଅ ଭାଇ
ତାହାର ଆଜ୍ଞାରେ ମୁଂ ସମର୍ଥ ଅଟଇ ॥୪୧୦୭॥
ମୋତେ ରାଇ ଆଜ୍ଞା ସେ ଦିଲେକ ଭଗବାନ
ସୁଗନ୍ଧିକା ପୁଷ୍ପ ଅଛି ଯେହୁ ବନ ॥୪୧୦୮॥
ପୁଷ୍ପ ନେଇ ଦେବି ମୁଂ ଗୋବିନ୍ଦ ଅଗ୍ରତ
ମୋହର ମହିମା ଯେଡ଼େ ସୁଣ ହେ ହନୁମତ ॥୪୧୦୯॥
ଅର୍ଜୁନର ବଚନେ ବୋଲଇ ହନୁମାନ
ତୋରଠାରେ କେଡ଼େ ଦୟା ଅଛଇ ଭଗବାନ ॥୪୧୧୦॥

---

୧ । ଖ ଓ ଗ ପୋଥି – ଯେଥିକି ଯେ ଦାନବେ ଆସନ୍ତି ସିନ୍ଧୁ ଡେଇଂ
୨ । ଖ ପୋଥି – ଯମର ସଦନ
୩ । ଖ ଓ ଗ ପୋଥି – କିରାତ ବର ରାୟେ ରଣେ ହନ୍ତକାରୁ
୪ । ଖ ପୋଥି – ମୁକୁଳାଇ

ଦେଖିବା ଯେହିଠାରେ ବାନ୍ଧନି ସାଗର
ମୋହର ଭାରା ଯଦି ସହିବ ବନ୍ଧ ତୋର ॥୪୧୧୧॥
ତେବେ ସିନା ଜାଣିବା ଶ୍ରୀହରି ଭକ୍ତ ତୁହି
ପୁଷ୍ପ ଦେଇଣ ତୋତେ ମେଲାଣି କରିବଇଂ ॥୪୧୧୨॥
ଅର୍ଜୁନ ବୋଇଲା ସତ କହିଲୁରେ ତୁହିଂ[1]
ବାନ୍ଧିବି ସାଗର ଚାଲିବୁ ଝସାଇ ॥୪୧୧୩॥
ଯେତେ ବୋଲି ବାସେବି ଯେ ହୋଇଲା ବାହାର
ପ୍ରବେସ ହୋଇଲା ଯାଇ ଦରିଆ[2] ତଟର ॥୪୧୧୪॥
ହୃଦଗତେ ଚିନ୍ତା କରଇ ସେ ଭାବଗ୍ରାହି
ତୁମ୍ଭର ଦୟା ହେଲେ ମୁଂ ସାଗର[3] ବାନ୍ଧିବଇଂ ॥୪୧୧୫॥
ମୋହର ସଙ୍ଗେ ହନୁମତ ଲଗାଇଛି ହଟ
ସରଣ ତାରଣ ନାଥ ଫେଡ଼ ମୋ ସଙ୍କଟ ॥୪୧୧୬॥
ଅର୍ଜୁନ ସୁମରନ୍ତେ ଜାଣିଲେ ଭଗବାନ
ଗରୁଡ଼ ପୃଷ୍ଟେ ବସି କଲେକ ଗମନ ॥୪୧୧୭॥
ସୁଣଗୋ ଓମା ବୋଲି ସଦାସିବ କହି
ମନ ଭେଦି ବାଣ[4] ପାଥ ଗୁଣରେ ବସାଇ ॥୪୧୧୮॥
ସରକୁ ଅର୍ଜୁନ ଯେ ତିଆରିଣ କହି
ସପତ ସିନ୍ଧୁ ଜଳେ ବନ୍ଧ ହୋଅ ତୁହି ॥୪୧୧୯॥
ତ୍ରେତୟା ଯୁଗେ ରାମ ପଥର ବନ୍ଧ ବାନ୍ଧି
ସେହି ରୁପେ ବନ୍ଧ ବାନ୍ଧିବୁ ମନଭେଦି ॥୪୧୨୦॥
ତିଆରିଣ ପାଥ ସରକୁ ସେ ଯେ ଦିଲା ଛାଡ଼ି
ସୁଣଗୋ ଓମା ବୋଲି ବୋଲନ୍ତି ସୁଳଧାରି ॥୪୧୨୧॥
ଆଜ୍ଞା ପାଇ ଜଳରେ ଘୋଟିଲାକ ସର
ନଉ ସହସ୍ର ବୟାସି ଯୋଜନ ହେଲା ସେ ବନ୍ଧର ॥୪୧୨୨॥
ବନ୍ଧକୁ ଦେଖିଣ ସେ ମାରୁତି ବୋଇଲା
ଜାଣିମା କେଡ଼େ ଆଣ୍ଟ ସହିବ ଯେ ଭାରା ॥୪୧୨୩॥
ପ୍ରତି ହୋଇଲା ସେ ଯୋଜନ ଯେଗାର
ହୋଇଲାକ ବନ୍ଧ ବେନି ଯୋଜନ ବହଳ ॥୪୧୨୪॥
ପାଷାଣରୁ ଆଣ୍ଟ ସେ ସରବନ୍ଧ ହୋଇ
ଜଳରେ ବୁଡ଼ି ଉପରକୁ କୋସେକ ଦିସଇ ॥୪୧୨୫॥
ବନ୍ଧ ଦେଖି ସର୍ବସାଚି ହୋଇଲା ହରସ[5]
ଡାକିଲା ହନୁମନ୍ତ ହୋ ବନ୍ଧ ଦେଖି ଆସ[6] ॥୪୧୨୬॥

---

୧ । ଖ ପୋଥି – ଯେ କହିଲୁ ସତ ତୁହି
୨ । ଖ ପୋଥି – ସମୁଦ୍ର
୩ । ଖ ପୋଥି – ସାହେର
୪ । ଖ ପୋଥି – ଶର
୫ । ଖ ଓ ଗ ପୋଥି – ଆନନ୍ଦ
୬ । ଖ ଓ ଗ ପୋଥି – ଦେଖି ଆସ ବନ୍ଧ

ଅର୍ଜୁନର ବଚନେ ସେ ମାରୁତି ବୋଇଲା
କେଡ଼େ ଆଣ୍ଟ ବନ୍ଧ ଯେହି ସହିବ ଯେ ମୋର ଭାରା ॥୪୧୨୭॥
ତ୍ରେତୟା ଯୁଗେ ମୁଂ ଯେ ବାନ୍ଧିଲି ସେତୁବନ୍ଧ
ଚାଲିଲେ ବୟାସି ସାଗର କପି ବୃନ୍ଦ ॥୪୧୨୮॥
ସାତକୋଟି ମଭୁତ ଭାଲୁକ ସଇନି
ଯେଡ଼େ ଥାଟ ଘେନି ଚାଲିଲେ ରଘୁମଣି ॥୪୧୨୯॥
ଚଉଦ କୋଟି ବ୍ରହ୍ମାଣ୍ଡ ଯାହାର ରୋମସ୍ଥଳ
ସେହି ରାମ ଚାଲିଲେ ହୋଇଲା ନିଶ୍ଚଳ ॥୪୧୩୦॥
ସର ଲୋଚାକରେ କରିଅଛୁ ବନ୍ଧ
ଚାଲିବା ବେଳକୁ ସେ ଭାଜିବ ସରବନ୍ଧ ॥୪୧୩୧॥
ଯେ ବନ୍ଧ ମୋତେ ଯେକା କି ନ ସହଇ
ଭାଜିଂଗଲେ ଜଳରେ ପଡ଼ିବଇଂ ମୁହିଂ ॥୪୧୩୨॥
ଜଳକୁ ଡରୁନାହିଂ ହେବ ମୋତେ ଥଳ
କର୍ପଟି ଖଣ୍ଡି କେବଳ ତିନ୍ତିବ ମୋହର ॥୪୧୩୩॥
ଯେସନ କହି ହନୁ ହୋଇଲା ବିଶ୍ୱରୁପ
ଦେଖିଣ ଅର୍ଜୁନ ହୋଇଲା ଚକିତ ॥୪୧୩୪॥
ହରି ହରି ବୋଲିଣ ହୃଦରେ ଭାଳଇ
ଅର୍ଜୁନକୁ ଦୟା ବହିଲେ ଭାବଗ୍ରାହି ॥୪୧୩୫॥
ସରବନ୍ଧ ତଳେ ହରି ଗୁପତେ ରହିଲେ
ହନୁମତ ଗର୍ବ ଭାଜିଂବି ବୋଇଲେ ॥୪୧୩୬॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ବନ୍ଧରେ ଯେକ ପାଦ ଦିଲା ହନୁମାନ ॥୪୧୩୭॥
ଯେକପାଦ ତାହାର ଅଛଇ କୁଳର
ପାଦକେଂ ତେଡ଼େ ବନ୍ଧ ହୋଇଲା ଟଳମଳ ॥୪୧୩୮॥
ବନ୍ଧକୁ ଶ୍ରୀହରି ଯେ ସିରରେ ବହିଥିଲେ
ମହାଭାରା ପାଇ ସେ ରୋଧିର ଉଦ୍‌ଗାରିଲେ ॥୪୧୩୯॥
ସପତ ସିନ୍ଧୁ ଜଳ ରକ୍ତବର୍ଣ୍ଣ ହେଲା
ହନୁମନ୍ତ ବୋଇଲା ତୋର ବନ୍ଧ ଭାଜିଗଲା ॥୪୧୪୦॥
ସରବନ୍ଧ ଯହୁଂ ଲାଗିଲା ସିନ୍ଧୁପାଣି
ସଢ଼ିଯାଇ ଭାସୁଛି ସୁଣରେ ଫାଲଗୁନି ॥୪୧୪୧॥
ମନ୍ଦାର ପୁଷ୍ପ ପ୍ରାୟେ ଦିସୁଛି ସିନ୍ଧୁଜଳ
ମିଛେ ବଢ଼ାଇ କହୁଥିଲୁ ବାସେବ କୁମର ॥୪୧୪୨॥
ଅର୍ଜୁନ ବୋଇଲା ବନ୍ଧ ହୋଇଛି ନିଶ୍ଚଳ
ଜାଣିମା ଚାଲନିରେ ତୋହୋର କେତେବଳ ॥୪୧୪୩॥
ଅପାର ଦିନରୁ ସର ଅବନ୍ଧା ହୋଇଥିଲା
ଲୁଣିପାଣି ଲାଗି ହିଙ୍ଗୁଳ ଛାଡ଼ିଗଲା ॥୪୧୪୪॥

ଯେମନ୍ତ ଶୁଣି ହନୁ ଦିଅନ୍ତେ ଆରପାଦ
ବନ୍ଧର ତଳରୁ ଯେ ସୁଭିଲା ସବଦ ॥୪୧୪୫॥
ନ ଦିଅ ଆରପାଦ ରହରେ ମହାବଳି
ତୋହର ଭାରା ଯେ ନପାରେ ସମ୍ଭାଳି ॥୪୧୪୬॥
ଯେମନ୍ତେ ଆରପାଦ ଦେବୁ ଏ ବନ୍ଧର
ବନ୍ଧ ସହିତେ ମୁଂ ପସିବି ରାସାନ୍ତଳ ॥୪୧୪୭॥
ଯେମନ୍ତ ବୋଲି ଯହୁଂ ଡାକିଲେ ମହାବାହୁ
ବିଚାରେ ହନୁମତ ସବଦ ସୁଭେ କାହୁଂ ॥୪୧୪୮॥
ହନୁମତ ବୋଇଲା ସୁଣରେ କିରଟି
ଦେବି କି ନ ଦେବି ସେ ଆରପାଦ ଗୋଟି ॥୪୧୪୯॥
ବନ୍ଧର ତଳରୁ ରୋଧିର ଉକୁଚି ଉଠଇ
ନ ଜାଣେ କେମନ୍ତ ଯେ ଭବିସ୍ୟେ ଅଛି ହୋଇ ॥୪୧୫୦॥
ଅର୍ଜୁନ ବୋଇଲା ତୁ ସୁଣ ହନୁମାନ ବିର
ରୋଧିର ବୋଲି ଯାହା କହୁଛୁ ମୁଖର ॥୪୧୫୧॥
ରୋଧିର ନୋହଇ ସେ ହିଙ୍ଗୁଳ ଅଟଇ
ସୁଣିଣ ହନୁମାନ ଆଶ୍ଚାର୍ଯ୍ୟ ହୋଅଇ ॥୪୧୫୨॥
ସ୍ୟାନ୍ତିକି ଭଜିଣ ସେ ଯୋଗରେ ବସିଲା
ବନ୍ଧ ତଳେ ଶ୍ରୀହରି ଅଛନ୍ତି ଜାଣିଲା ॥୪୧୫୩॥
ବନ୍ଧରୁ ପାଦ କାଢ଼ି ଭଣିଲାକ ସ୍ତୁତି
ଜୟତୁ ବାସୁଦେବ ଅନନ୍ତ ମୁରତି ॥୪୧୫୪॥
ଅନନ୍ତ ଅବତାର ଅନ୍ତ ତୋର ନାହିଂ
ଅସେସ ବ୍ରହ୍ମାଣ୍ଡ ଠାକୁର ଅଟୁ ତୁହି ॥୪୧୫୫॥
ସତ୍ୟଯୁଗରେ ସିନ୍ଧୁ ମନ୍ଥିଲେ ଦେବାସୁର
କୁର୍ମ ରୁପ ଧରି ପୃଷ୍ଟ ଧଇଲୁ ଗିରିବର ॥୪୧୫୬॥
ଦଇତ୍ୟର ଭୟେ ପୃଥ୍ୱି ଥିଲା ଯେ ରାସାନ୍ତଳେ
ଆଣିଲୁ ଦନ୍ତ ଅଗ୍ରେ ସୁକର ଅବତାରେ ॥୪୧୫୭॥
ଦଇତଙ୍କ କାଳତୁ ସନ୍ଥଙ୍କ ସାଧନ
ମୁହିଂ ତୋର ସେବକ ନିଲକ୍ଷଣ ହନୁମାନ ॥୪୧୫୮॥
ମୋହର ଠାରେ ତୋହର ନିର୍ଦ୍ଦୟା ହୋଇ
ମୁହିଂ ଉଠିଲି ତୁ ବନ୍ଧ ତଳେ ଅଛୁ ରହି ॥୪୧୫୯॥
ମୋହରଠାରେ ଯେବେ ଦୟା ଅଛି ତୋର
ଦେଖାଅ ନିଜ ରୁପ ଦେଖିବି ନୟନର ॥୪୧୬୦॥
ଯେମନ୍ତ ବୋଲିଣ ଯହୁଂ ବୋଇଲା ହନୁମତ
ଜଳରୁ ବାହାର ହୋଇ ମିଳିଲେ ଜଗନ୍ନାଥ ॥୪୧୬୧॥
ସଙ୍ଖ ଚକ୍ର ଗଦା କମଳ ଭୁଜ ଚାରି
ଯେଉଂ ରୁପ ଦେଖି ଯୋଗି ଜନେ ଯାନ୍ତି ନିସ୍ତରି ॥୪୧୬୨॥

ଦେଖିଣ ହନୁମତ ପାଦରେ ପଡ଼େ ସୋଇ
ଡାହାଣେ ହନୁମତ ବାମେ ବାସେବ ତନଇ ॥୪୧୬୩॥
ଅର୍ଜୁନ ବୋଇଲା ହରି ତବ ପରସାଦେ
ସରେ ସାଗର ବାନ୍ଧିଲି ହନୁମତ ବିବାଦେ ॥୪୧୬୪॥
ମୋହର ଲାଗି ହରି ଅଇଲୁ ଯେତେ ଦୁର
ସୁଣିଣ ଅର୍ଜୁନକୁ ପ୍ରସଂସି ଚକ୍ରଧର ॥୪୧୬୫॥
ଧନ୍ୟରେ ବାସେବି ଧନ୍ୟ ତୋହର ଜିବନ
ସରେ ସାହେର ବାନ୍ଧି ତୁ କଲୁରେ ନିର୍ବାଣ ॥୪୧୬୬॥
ବାନ୍ଧିଲୁ ସେତୁବନ୍ଧ ସେତବାହେନି ତୋର ନାମ
ଅର୍ଜୁନକୁ ସ୍ୟାନ୍ତି କରି ତୋଳିଲେ ହନୁମାନ ॥୪୧୬୭॥
ହନୁମତ ବୋଇଲା ହରି କିପାଂ ତୋଳୁ ମୋତେ
ଜିବନ ଛାଡ଼ିବିଂ ହରି ତୋହର ପାଦ ଗତେଂ ॥୪୧୬୮॥
ମୁହିଂ ନିଲକ୍ଷଣ ତୋହର ପରିଚର
ମୋହର ପାଦ ବନ୍ଧ ତଳେ ଦେଲୁ ତୁହି ସିର ॥୪୧୬୯॥
ତୋହର ଦୋରେହା ଯେ ହୋଇଲଇଂ ମୁହିଂ
ଆଉ ମୋର ଜିଇବା ଯେ ଅକାରଣ ହୋଇ ॥୪୧୭୦॥
ଶ୍ରୀହରି ବୋଇଲେ ତୁ ମୋହର ଭଗତ
ଭଗତର ଭାରା ମୁଂ ବହଇଂ[1] ସିରାଗ୍ରତ ॥୪୧୭୧॥
ଭଗତର ଅଭିମାନ ନ ପାରଇ ସହି
ଭଗତକୁ ଠାବ ମୁଂ ଗର୍ଭଗତେ ଦେଇ ॥୪୧୭୨॥
ଭଗତର ଭାରା ମୁଂ ମଣଇ ତୁଳାଗ୍ରତେ
ରେଣୁ ପ୍ରାୟେ କରି ମୋତେ ଭଗତ ଧରି ଥାୟେ ଚିତ୍ତେ ॥୪୧୭୩॥
ଭଗତର ମୋହର ଭିନ୍ନାଭିନ୍ନ ନାହିଂ
ଭଗତ ଯାହା ଖାଇବ[2] ମୁହିଂ ତାହା ଖାଇଂ ॥୪୧୭୪॥
ଭଗତର ଅର୍ଦ୍ଧଳି ମୁହିଂ ସେ ସହଇ
ଅଣ ଦୟାକାରି ପୁଜା କଲେ ପୁଜା ନ ଘେନଇଂ ॥୪୧୭୫॥
ଯାହାରଠାରେ ମୋହର ଆବୋରିଥାଏ ମାୟା
ଯାହାର ହୃଦୟରେ ନ ଥାଇ ପୁଣ୍ୟ ଦୟା ॥୪୧୭୬॥
ତୁ ମୋର ଭଗତ ତୋର ଭାରା ମୁଂ ସହଇ
ୟେଥକୁ ଅନ୍ତର ତୁ ନ ଧର ପବନ ତନଇ ॥୪୧୭୭॥
ପ୍ରସନ୍ନ ହେଲି ମୁହିଂ ମାଗ ତୁହି ବର
ଯାହା ତୁ ମାଗିବୁ ଦେବି ମୁଂ ତତପର ॥୪୧୭୮॥
ପାବେନି ବୋଇଲା ହରି ତବ ପରସାଦେ
ସର୍ବକୁସଳ ଚିତ ରହିଛି ତୋର ପାଦେ ॥୪୧୭୯॥

୧ । ଗ ପୋଥି – ସହଇ
୨ । ଖ ଓ ଗ ପୋଥି – ଭୁଞ୍ଜନ୍ତି

ଯେବେ ମୁଂ ମାଗିବି ପ୍ରସନ୍ନେ ଦେବୁ ବର
ଅର୍ଜୁନର ସଙ୍ଗତେ ମୁଂ କରିବି ସମର ॥୪୧୮୦॥
ତ୍ରେତୟା ଯୁଗରୁ ସମର ମୋର ନାହିଂ
ମୋହର ସମ ଜଣେ ନ ପାଇଲି ମୁହିଂ ॥୪୧୮୧॥
ଥୋକାୟେ ସମକଛ ଅର୍ଜୁନ ହୋଇଥିଲା
ୟେହା ସଙ୍ଗେ ଯୁଝି ଭୁଜ କଣ୍ଡୁ ନିବାରିବିଂ ଭଲା ॥୪୧୮୨॥
ଶ୍ରୀହରି ବୋଇଲେ ହନୁ କହିଲୁ ୟେଡ଼େ କଥା
ଅର୍ଜୁନ ପୁତ୍ର ମୋର ତୁ ଅଟୁ ମୋର ପିତା ॥୪୧୮୩॥
ତୁମ୍ଭେ ଦୁହେଂ ଯେବେ କରିବ ସମର
ଅବଶ୍ୟ ଏକଜଣେ ହାରିବ ଯୁଦ୍ଧର ॥୪୧୮୪॥
ପୁତ୍ରର ନାସ କି ଦେଖିବିଂ ନୟନର
ପିତାର କଷ୍ଟ ଦେଖିଲେ ଅକାରଣ ସରିରଂ[1] ॥୪୧୮୫॥
ତୁ ଯେବେ ସମର କରିତେ ଲୋଡ଼ୁ ସଧ
ଅଳପ ଦିନେ ମହାଭାରତ ହୋଇବ ଆରମ୍ଭ ॥୪୧୮୬॥
କୁରୁ ପାଣ୍ଡବେ ସେ ହୋଇବେ ଅନ୍ୟୋଅନ୍ୟି
ପାଣ୍ଡେବଙ୍କ ରଥି ଯେ ହୋଇବ ଫାଲଗୁନି ॥୪୧୮୭॥
ନନ୍ଦିଘୋସ ରଥେ ମୁଂ ଯେ ହୋଇବିଂ ସାରଥି
ତୁହି ହନୁମତ ଧ୍ୱଜରେ ଥିବୁ ରହିଟି ॥୪୧୮୮॥
ଲକ୍ଷେ ରାଜା ସହିତେ ଯେତେ ମିଳିବେ ସଇନି
ଅର୍ଜୁନ ଛେଦିବ ଗାଣ୍ଡିମ ଧନୁ ଘେନି ॥୪୧୮୯॥
ତହୁଂ ପୁଣି ଯେତେକ ହୋଇବ ବଳକ୍ତାର
ତାହାକୁ ତୁ ଚାପିବୁ ପସିବ ପାତାଳର ॥୪୧୯୦॥
ତୋଠାରୁ ଯେହୁ ପୁଣି ରହିବ ଉବୁରି
ତାହାକୁ ପେସିବି[2] ମୁଂ ସୁଦ୍ରିସେନ ଧରି ॥୪୧୯୧॥
ଅର୍ଜୁନ ତୋତେ ଘେନି ମୁଂ କରିବିଂ ଭାରତ
ନାସିବି ଦୁଷ୍ଟଜନ ପାଳିବି ଭକ୍ତ ସନ୍ଥ ॥୪୧୯୨॥
ହନୁମନ୍ତ ବୋଇଲା ସୁଣ ହେ ବାସୁଦେବ
ଭାରା ନିବାରିତେ ତୁମ୍ଭେ ଭାରତ ଭିଆଇବ ॥୪୧୯୩॥
ମୁହିଂ ଯେମନ୍ତେ ଭାରତ ଭୁମିକି ଯିବିଂ ଚଳି
ତହିଂକି କିସ ତୁମ୍ଭେ ଦେବ ବନମାଳି ॥୪୧୯୪॥
ହନୁମତ ବଚନେ ବଦୟନ୍ତି ଚକ୍ରପାଣି
କୁରୁ ପାଣ୍ଡବଙ୍କର ଯେ ବାଣ୍ଟିବି କୁରୁଭୁମି ॥୪୧୯୫॥
ବେନିଭାଗ ମଧ୍ୟରେ ପୋତିବେ ୟେକ ସ୍ଥମ୍ଭ
ଟଳବଳ ହୋଇଲେ ତୁ କରିବୁ ନିର୍ବନ୍ଧ ॥୪୧୯୬॥

୧ । ଖ ଓ ଗ ପୋଥି – ଜୀବନ ଅକାରଣ
୨ । ଖ ପୋଥି – ନାସିବି
୨ । ଗ ପୋଥି – ବିନାସିବି

ନାଗେଣି ପୁତ୍ର ଯେ ବଳିବେଲାଉଳ
ତାହାକୁ ପାଇବୁ ଭାରତ ସ୍ଥମ୍ଭସ୍ଥଳ ॥୪୧୯୭॥
ଚଉଦ କୋଟି ବାନର ଦଧିମୁଖା ଘେନି
ବଳିଖାଇ ଉଇରୋବି ରୁପ ଧରିବୁ ପାବେନି ॥୪୧୯୮॥
ତୁହି ବିଶ୍ୱରୁପ ଧରିବୁ ନଥିବ ତୋର ଦୟା
ପାଥ ହିଂସା ବହିବ ମୁଂ ଲଗାଇବିଂ ମାୟା ॥୪୧୯୯॥
ତିନିଜଣ ହୋଇ ଯେ ଉଶ୍ୱାସିବା ମହି
ସୁଣ ହୋ ହନୁମତ ବୋଲି ଜଗନ୍ନାଥେ କହି ॥୪୨୦୦॥
ସୁଣିଣ ପାବେନି ଯେ ହରସ ହୋଇଲା
ସଙ୍କର ମୁଖ ଚାହିଂ ହରସ ଗଉରା[୧] ॥୪୨୦୧॥

## ବେଲାଲସେନର ଜନ୍ମ ବୃତ୍ତାନ୍ତ

ଭୋ ନାଥ ତ୍ରିଲୋଚନ କହିଲ ଅସମ୍ଭବ ପୁଣ
ନାଗେଣି ପୁତ୍ରକୁ କିପାଂ ବଳି ଦିଲେ ଭଗବାନ ॥୪୨୦୨॥
କାହାର ପୁତ୍ର ସେ ପୁର୍ବରେ କିସ ହୋଇ
ବିନା ସମରେ ହନୁ ହସ୍ତରେ ପ୍ରାଣ ଦେଇ ॥୪୨୦୩॥
ଯେ କଥା ମୋର ଆଗେ କହ ହେ ତ୍ରିଲୋଚନ
ସୁଣଗୋ ଓମା ବଳିବେଲାଉଳ ଜନ୍ମ ॥୪୨୦୪॥
ଯଜନ ଯାଜନ ବୋଲି କୁବେର କୁମର
କୁରଙ୍ଗ ଗୋଟିୟେ ପୋଡ଼ି ଖାଇଲେ ବନସ୍ତର ॥୪୨୦୫॥
ଦେଖିଣ ନାରଦ ଯେ ହୋଇଲେ କୋପ ମନ
ବୋଇଲେ ପାମର ତୁମ୍ଭେ ହୋଇଲ ହତଜ୍ଞାନ ॥୪୨୦୬॥
ଦେବତା ହୋଇଣ ତୁମ୍ଭେ ମାୟେଂସ ଭୁଞ୍ଜିଲ
ରାକ୍ଷାସ ପ୍ରାୟେକ ଅନିତି ଆଚରିଲ ॥୪୨୦୭॥
ତେଣୁକରି ଅସୁର ରୁପଧର ଯେବେ
ଯେମନ୍ତ ବୋଲି ସାପ୍ୟ ଦେଲେ ସେ ନାରଦେ ॥୪୨୦୮॥
ମୁନିଂ ପାଦେ ପଡ଼ିଲେ କୁବେର କୁମର
ବୋଇଲେ ଆମ୍ଭଙ୍କୁ ଗତି ଦିଅ ହେ ମୁନିବର ॥୪୨୦୯॥
ନାରଦ ବୋଇଲେ ତୁମ୍ଭର ଦୁତିୟ ଜନ୍ମଯିବ
ତୃତିୟ ଜନ୍ମରେ ତୁମ୍ଭେ ମୁକତି ଲଭିବ ॥୪୨୧୦॥
ସତ୍ୟ ତ୍ରେତୟା ଯାଇ ହୋଇବ ଦ୍ୱାପର
ସେହିଦିନେ ଗତି ପାଇବ ସୁଣରେ କୁମର ॥୪୨୧୧॥
ଯେମନ୍ତ ବୋଲି ଯହୁଂ ବୋଇଲେ ନାରଦ ମୁନିବର
ରାକ୍ଷସ ହୋଇଲେ ଯେ କୁବେର କୁମର[୨] ॥୪୨୧୨॥

୧ । ଖ ପୋଥି – ଗିରିଜା ପଚାରିଲା
୧ । ଗ ପୋଥି – ବୋଲନ୍ତି ଗଉରା
୨ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଅତାପି ବାତାପି ହୋଇଲେ ବେନି ଭାଇ
ବାଟ ଜଗି ବହୁତ ମାନବଙ୍କୁ ଖାଇ ॥୪୨୧୩॥
ଦିନେକ ଅଗସ୍ତି ପ୍ରବେସ ବାତାପି ଦୁଆର
ଆତାପି କି ମାରି ମୁନିଙ୍କି ଦେଲା ସେ ଆହାର ॥୪୨୧୪॥
କୁରୁଙ୍ଗି ମାଂସ ବୋଲିଂ ମୁନିଙ୍କି ଖୁଆଇ
ଭୁଞ୍ଜିଣ ଅଗସ୍ତି ଯେ ପେଟକୁ ଆଉଂସଇ ॥୪୨୧୫॥

**ଶ୍ଳୋକ :**

ଆତାପି ଭକ୍ଷିତେ ଯେନ ବାତାପିଶ୍ଚ ମହାସୁର
ସମୁଦ୍ର ସୋସିତୋ ଯେନ ଅଗସ୍ତି ବଡ଼ବାନଳ

**ଗୀତ :**

ଭୁଜିଂଣ ଅଗସ୍ତି ଯେ ମନ୍ଥିଲେ ଉଦର
ତତକ୍ଷଣେ ଜିର୍ଣ୍ଣଗଲା ଆତାପି ଅସୁର ॥୪୨୧୬॥
ଯେମନ୍ତେ ପଡ଼ି ପେଟ ଅଣ୍ଡାଳି ଅଗସ୍ତିଂ[୧]
କମଣ୍ଡଲୁ ଜଳ ଆଣି ବାତାପି ସିରେ ସିଞ୍ଚି ॥୪୨୧୭॥
ମୁନିଙ୍କ ଜଳ ପଡ଼ି ବାତାପି ଭସ୍ମ ଗଲା
ସିଂହମୁଖା ସୃଗାଳ ରୁପେଣ ଜନ୍ମିଲା ॥୪୨୧୮॥
ଆତାପି ଯେ ଅଗସ୍ତି ଗର୍ଭରେ ଜିର୍ଣ୍ଣ ହୋଇ
ପୁଣି ରାବଣର କୁମର ଅକ୍ଷୟ ନାମ ପାଇ ॥୪୨୧୯॥
ଅକ୍ଷୟକୁ କୁମରକୁ ନାସିଲା ହନୁମାନ
ଲେଉଟି ଭିମ ବିର୍ଯ୍ୟେ ଜନ୍ମିଲା ବଳିବେଳାଉଳ ନାମ ॥୪୨୨୦॥
ତେଣୁ ହନୁମତ ପାଇଲା ତାକୁ ବଳି
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିସୁଳି ॥୪୨୨୧॥

## ହନୁମନ୍ତର ସୁଗନ୍ଧିକା ପୁଷ୍ପ ହରଣ

ବୋଲନ୍ତି ଶ୍ରୀହରି ସୁଣରେ ହନୁମତ
ଅବସ୍ୟ ଭାରତ ଯୁଦ୍ଧକୁ ଯିବୁ ତୋତେ ମୋହର ସପତ ॥୪୨୨୨॥
ଯେବେ ସୁଗନ୍ଧିକା ପୁଷ୍ପ ଆଣ ତୁ ବେଗେ ତୋଳି
ଯେଉଂ ପୁଷ୍ପରେ ପ୍ରସବିବ ଭିସ୍ମେକଦୁଲାଳି ॥୪୨୨୩॥
ପାବେନି ବୋଇଲା ଆସ ତିନିଜଣ ଯିବା
ଗନ୍ଧର୍ବ ବଳ ଜିଣି ତହୁଂ ପୁଷ୍ପକୁ ଆଣିବା ॥୪୨୨୪॥

୧ । ଖ ପୋଥିରେ ନିମ୍ନରେ ୬ ଧାଡ଼ି ଅଧିକ ଅଛି –
ଆତାପି ଜୀର୍ଣ୍ଣ ଗଲା ଡାକଇ ବାତାପି
ଅଗସ୍ତି ବୋଇଲେ ତୁ ହୋଇଲୁ ଯେଡ଼େ ବାଇ
ଆଉ କି ଆସିବ ଆତାପି ତୋର ଭାଇ
ଆତାପି କି କୁରଙ୍ଗ କରିଣ ଥାଉ ତୁହି
ରାନ୍ଧିଣ ଖୁଆଉ ପଥିକି ଜନକୁ ନାଶୁ ତୁହି
ଯେମନ୍ତ ବୋଲିଣ ଯେ ବୋଇଲେ ଅଗସ୍ତି

ଶ୍ରୀକୃଷ୍ଣ ବୋଇଲେ ମୁଂ ସେଠାକୁ ନ ଯିବି ପୁଣି
ବସିଛି ମୁଂ ନଦିକୁଳେ ଆସ ହୋ ତୁମ୍ଭେ ଘେନି ॥୪୨୨୫॥
ଯେତେ ବୋଲି ତହୁଂ ଉଠିଲେ ତିନିଜଣ
ନଦିର କୁଳେ ବସି ରହିଲେ ଭଗବାନ ॥୪୨୨୬॥
ଅର୍ଜୁନ ନଦିଜଳେ ପଡ଼ିଲେକ ଡେଇଂ
ସତର କାଠି ଜଳରେ ବୁଡ଼ିଣ ଗଲା ସେହି ॥୪୨୨୭॥
ବୁଡ଼ିଣ ଉଠି ପୁଣି କୁଳରେ ଲାଗିଲା
କରତାଳି ମାରିଣ ମାରୁତି ହସିଲା ॥୪୨୨୮॥
ବଦୟନ୍ତି ଶ୍ରୀହରି ବସରେ ଅର୍ଜୁନ
ଦେହ ତୋର ନିର୍ବଳ କାଲି ଖାଇ ନାହୁଂ ଅନ୍ନ ॥୪୨୨୯॥
ତୁହି ରହିଥାଅ ମୁଂ ଯିବିଂରେ ଚଳାଇ
ଦେଖିବା ନଦି କେଡ଼େ ଗଭିର ଅଟଇ ॥୪୨୩୦॥
ଯେମନ୍ତ କହି ହରି ପସିଲେ ଜଳର
ସୁଅରେ ଭାସିଗଲେ ନପାଇ ଥଳକୁଳ ॥୪୨୩୧॥
କ୍ଷଣକେ ବୁଡ଼ିଯାଆନ୍ତି କ୍ଷଣକେ ଭାସନ୍ତି
ପହରିଂ ଯିବେଂ ବୋଲି ଭୁଜକୁ ହଲାବନ୍ତି ॥୪୨୩୨॥
ଅର୍ଜୁନ ବେନି ହସ୍ତ ମାରଇ ହୃଦୟର
ପବନରସୁତ ଦେଖି କରଇ ହାହାକାର ॥୪୨୩୩॥
ଅର୍ଜୁନ ଡାକ ଦିଲେ ଲେଉଟି ଆସ ହରି
ନ ଆସୁ ପଛେ ପୁଷ୍ପ ତୁମ୍ଭେ ନ ମର ଜଳେ ବୁଡ଼ି ॥୪୨୩୪॥
ନସୁଣି ପାଥ ଡାକ ଜଳରେ ଭାସେ ହରି
ବଦୟନ୍ତି ଗିରିଜା ସୁଣ ହେ ତ୍ରିପୁରାରି ॥୪୨୩୫॥
ବ୍ରହ୍ମାର ବେଦ ପୋଥି ସଙ୍ଖାସୁର ଯେ ନେଇଥିଲା
ସପତ ସମୁଦ୍ର ଜଳରେ ଭାସିଲା ॥୪୨୩୬॥
ବେଦ ନିମନ୍ତେ ମିନ ହୋଇଲେ ଭଗବାନ
ସଙ୍ଖାସୁର ଦଇତକୁ କଲେ ସେ ନିଧନ ॥୪୨୩୭॥
ଚଉରାଶି କାଠି ଗଭିର ଅଟଇ ସିନ୍ଧୁ ଜଳ
ନ ଅଣ୍ଟିଲା ମିନକୁ ଯେ ହୋଇଲାକ ଥଳ ॥୪୨୩୮॥
ସେହି ନଦି ବଳିଲାକି ସପତ ସିନ୍ଧୁଠାରୁ
ବୁଡ଼ିଣ ଭାସିଗଲେ ଜଗତଜନ ଗୁରୁ ॥୪୨୩୯॥
କହନ୍ତି ସଦାସିବ ସୁଣ ଗୋ ପ୍ରାଣସହି
ସେ ନଦିର ଚରିତ ତୋ ଆଗେ ଯିବା କହି ॥୪୨୪୦॥
ଗିରିରସ[1] ପାଣି ପୁଷ୍ପଙ୍କର ରସ
ହନୁମତ ନିଶ୍ୱାସ ପବନ ଅଣଚାସ ॥୪୨୪୧॥
ପ୍ରଖର ସୁଅ ତହିଂ ବହିଯାଏ ପାଣି
ପବନ ଲାଗି ଲହରି ଉଠଇ ଉଜାଣି ॥୪୨୪୨॥

୧ । ଖ ଓ ଗ ପୋଥି – ଗିରିଝର

ଆକାସରେ ପକ୍ଷି ଯେ ନ ପାରନ୍ତି ଉଡ଼ି
ନ ଜାଣିଣ ଉଡ଼ିଲେ ପଡ଼ନ୍ତି ମୁଖମାଡ଼ି ॥୪୨୪୩॥
ଯେମନ୍ତ ପ୍ରକାରେ ସେ ନଦିରେ ବହେ ଜଳ
ପଡ଼ିଣ ଭଗବାନ ନ ପାଇଲେ ଥଳ ॥୪୨୪୪॥
ଭାସିଣ ଆସି ହରି କୁଳରେ ଲାଗିଲେ
ବସନ ଚିପୁଡ଼ିଣ ହନୁମତଙ୍କୁ ପ୍ରବର୍ତ୍ତିଲେ ॥୪୨୪୫॥
ଆଜ୍ଞାଦେଲେ ହନୁମତରେ ଯାଅ ଚଳାଇ
ତୁହି ପାରିଲେ ଆମ୍ଭଙ୍କୁ ପୁଷ୍ପ ଆଣି ଦିଅ ଯାଇ ॥୪୨୪୬॥
ହନୁମତ ବୋଇଲା ମୋହର ସକ୍ଷ ନାହିଂ
ତୁମ୍ଭେ ଆଜ୍ଞା ଦେଲେ ଯିବି ସେ ଚଳାଇ ॥୪୨୪୭॥
ତ୍ରେତୟା ଯୁଗରେ ହରି ତୋହର ଆଜ୍ଞାପାଇ
ସାତ ସମୁଦ୍ରକୁ ମୁଂ କିଞ୍ଚିତେ ଗଲି ଡେଇଂ[1] ॥୪୨୪୮॥
ଯେମନ୍ତ ବୋଲି ଯହୁଂ ବୋଇଲେ ହନୁମାନ
ଯାଅରେ ବୋଲି ଆଜ୍ଞା ଦେଲେକ ଭଗବାନ ॥୪୨୪୯॥
ସୁଣିଣ ହନୁମତ ନଦିକି ଡେଇଂ ଗଲା
ଗିରି ମେଖଳାରେ ଯାଇ ପ୍ରବେସ ହୋଇଲା ॥୪୨୫୦॥
ରେ ରେ କାର କରିଣ ଯେ ଗନ୍ଧର୍ବେ ଧାଇଂଲେ
ହନୁମତ କୋପରେ ସମସ୍ତେ ପଳାଇଲେ ॥୪୨୫୧॥
ପୁଷ୍ପ ତୋଳି ହନୁ ଘେନିଲା ହସ୍ତରେ
ଯେତେକ ପୁଷ୍ପ ଥିଲା ଅସ୍କନ୍ଦ ବନରେ ॥୪୨୫୨॥
ସୁଣଗୋ ଓମା ବୋଲି ବୋଲନ୍ତି ସୁଳପାଣି
ହନୁମତ ଗଲା ଉତାରେ ଭାଳିଲେ ଚକ୍ରପାଣି ॥୪୨୫୩॥
ବିଚାରିଲେ ନଦି ଡେଇଂ ଗଲା ଯେ ପାବେନି
ପୁଷ୍ପ ଘେନିଣ ସେ ମିଳିବ ଯେହିକ୍ଷଣି ॥୪୨୫୪॥
ଅର୍ଜୁନ ନଦିରେ ଯେ ନ ପାରିଲା ଯାଇ
ଫୁଟି ବସିଅଛି ହେଠମୁଖ ହୋଇ[2] ॥୪୨୫୫॥
ହନୁମତ ଇତର ମଣିବ ଅର୍ଜୁନକୁ
ଅର୍ଜୁନ ମହିମା ମୁଂ ଦେଖାଇବିଂ ହନୁକୁ ॥୪୨୫୬॥
ଯେମନ୍ତ ବିଚାରନ୍ତେ ମିଳିଲା ହନୁମାନ
ରହ ରହ ବୋଲି ଡାକିଲେ ଭଗବାନ ॥୪୨୫୭॥
କେତେ ଦୁଖ ପାଇଲୁ ଆମ୍ଭ ଲାଗି ତୁହି
ଯାଇଅଛୁ ଯେହିକ୍ଷଣି ଆସିଲୁ ଚଳାଇ ॥୪୨୫୮॥
ବେନି ଦିନ ଉପବାସେ ସମର କରିଥିଲୁ
ପୁଣି ନଦି ପାରି ହୋଇ ପୁଷ୍ପ ଆଣିଗଲୁ ॥୪୨୫୯॥

୧ । ଗ ପୋଥିରେ ଯେମନ୍ତ ବୋଲି ଠାରୁ ପ୍ରବେଶ ହୋଇଲା ପର୍ଯ୍ୟନ୍ତ ନାହିଁ
୨ । ଖ ଓ ଗ ପୋଥି – ମୁଂ ରହିଲି ଥକା ହୋଇ

ପହରକ ବିଶ୍ରାମ କର ତୁ ସେ କୁଳ
କ୍ଷୁଧା ନିବାର ତୁ ଖାଇଣ ଫଳମୁଳ ॥୪୨୬୦॥
ପୁଷ୍ପ ଘେନିଣ ଆମ୍ଭେ ଯିବା ଦ୍ୱାରକାକୁ
କଲ୍ୟାଣ ପ୍ରାପତ ହେଉରେ ତୁମ୍ଭଙ୍କୁ[1] ॥୪୨୬୧॥
ହନୁମତ ବୋଇଲା କେ ପୁଷ୍ପ ଯିବ ଘେନି
ଶ୍ରୀହରି ବୋଇଲେ ତୁ ଯାଅରେ ଫାଲଗୁନି ॥୪୨୬୨॥
ଭଗବାନ ଆଜ୍ଞାରେ ଅର୍ଜୁନ ଚଳିଗଲା
ତେଡ଼େ ଗଭିର ଜଳରେ ପାଦ ତା ନ ତିନ୍ତିଲା ॥୪୨୬୩॥
ହନୁମତ ହସ୍ତରୁ ଯେ ଘେନିଲାକ ଫୁଲ
ଲେଉଟି ବାସବି ଚାଲି ଅଇଲା ଜଳର ॥୪୨୬୪॥
ଦେଖିଣ ଆଶ୍ଚାର୍ଯ୍ୟ ସେ ହୋଇଲା ହନୁମାନ
ବୋଇଲା ଧନ୍ୟ ତୁ ହୋ ବାସେବ ନନ୍ଦନ ॥୪୨୬୫॥
ତୋହଠାରେ ଯେଡ଼େ ଦୟା କଲେକ ଚକ୍ରପାଣି
ସତର କାଠି ଜଳ ତୁ କଲୁ ଆଣ୍ଠୁଆଣି[2] ॥୪୨୬୬॥
ଜାଣିଲି ଯେହି ରୁପେଂ ହରିର ଭକ୍ତ ତୁହି
ତୋହ ଲାଗି ଗର୍ବ ମୋର ଭାଜିଂଲେ ଭାବଗ୍ରାହି ॥୪୨୬୭॥
ଯେତେ କହି ହୃଦରେ ଭାଳିଲେ ହନୁମାନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୪୨୬୮॥

## ପଦ୍ମନ ଜନ୍ମ

ପୁଷ୍ପ ଘେନିଣ ହରି ଅର୍ଜୁନ ଚଳିଗଲେ
ଦ୍ୱାରକାପୁରେ ଯାଇ ସେ ପ୍ରବେସ ହୋଇଲେ ॥୪୨୬୯॥
ଶ୍ରୀକୃଷ୍ଣ ବୋଇଲେ ପୁଷ୍ପ ନିଅଗୋ ଗୋସାମଣି
ତୋର ଲାଗି କେତେ ଦୁଖ ପାଇଲା ଫାଲଗୁନି ॥୪୨୭୦॥
ରକ୍ମଣି ପୁଷ୍ପପାଇ ହୋଇଲେ ଆନନ୍ଦ
ଆନନ୍ଦେ ଘ୍ରାଣ କଲାକ ନାସାରନ୍ଧ୍ର ॥୪୨୭୧॥
ମନସା ସମ୍ପୁର୍ଣ୍ଣ ଯହୁଂ ତାହାର ହୋଇଲା
ବଥାଇଲା ପେଟ କୁମର ଜନମିଲା ॥୪୨୭୨॥
ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ନାରଦ ମିଳିଲେ ଯାଇ ଦ୍ୱାରାବତି ପୁରି ॥୪୨୭୩॥
ଶ୍ରୀହରି ବୋଇଲେ ବସ ହେ ମୁନିବର
ପୁତ୍ର ଗୋଟିଯେ ଜନ୍ମ ହୋଇଛି ମୋହୋର ॥୪୨୭୪॥
ନାରଦ ବୋଇଲେ ଦେଖିବା ଆମ୍ଭେ ଯାଇ
କୃଷ୍ଣ ଆଜ୍ଞାରେ ମୁଦୁସୁଲି ପୁତ୍ରକୁ ଦେଖାଇ ॥୪୨୭୫॥
ନାରଦ ବୋଇଲେ ଯେ ପୁତ୍ର ଗଣ୍ଡରେ ହୋଇଅଛି ଜାତ
ଯେହିକ୍ଷଣି ଦେଖି ହେବେ ହତ ପିତା ମାତ ॥୪୨୭୬॥
କେମନ୍ତ କରିବା ବୋଲି ବୋଲନ୍ତି ବନମାଳି
ନାରଦେ ବୋଇଲେ ହୋ ଜଳରେ ଦିଅ ମେଲି ॥୪୨୭୭॥
ମଜୁଂସା ଗୋଟିଯେ ଭିଆଇ ଉଗ୍ରସେନ
ହାହାକାର କରିଣ ତହିଂ ଭରିଲେ ନନ୍ଦନ ॥୪୨୭୮॥
ସାହେର ଜଳରେ ମେଲିଲେ ମଜୁଂସା ଭାସିଗଲା
ଆହାର ପ୍ରାଏ ମଣି ତାହା ରାଘେବ ଗିଳିଦେଲା[1] ॥୪୨୭୯॥
କିଛିଦିନ ଅନ୍ତେ ମିନ ସେ ପଡ଼ିଲା ଜାଲର
କୈବ୍ରତ ନେଇ ଦେଲା ସମ୍ବାସୁର ଆଗର ॥୪୨୮୦॥
ମିନକୁ କାଟନ୍ତେ ଗର୍ଭରୁ ବାଳକ ପଡ଼ଇ
ମାୟାବତି ସନିଧେ ଦତ୍ୟ ଦିଲା ନେଇ ॥୪୨୮୧॥
ଦେଖିଣ ହରସ ଯେ ହୋଇଲା ମାୟାବତି
ସର୍ବସୁଲକ୍ଷଣ ଚିହ୍ନିଲା ଯେ ମୋର ନିଜପତି ॥୪୨୮୨॥
ହରସ କଲା ମତି ପାଳିଲାକ ସେହି
ଲୋକ ଦେଖିଲେ ବୋଲଇ ମୋହୋର ପୁତ୍ର ଯେହି ॥୪୨୮୩॥
ବଦୟନ୍ତି ଓମା ଯେ ସୁଣ ହେ ତ୍ରିପୁରାରି
ମାୟାବତି ବୋଲିଣ ସେ କାହାର ଅଟେ ନାରି ॥୪୨୮୪॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ସତ୍ୟଯୁଗରେ ମାୟାବତିର ସ୍ୱାମି ଅଟେ କାମ ॥୪୨୮୫॥
ତ୍ରିପୁରା ଦତ୍ୟ ପ୍ରତାପି ହୋଇଲା ସଂସାରେ
ଆମ୍ଭ ହସ୍ତେ ମରିବ ବୋଲି ବୋଇଲେ ବେଦବରେ ॥୪୨୮୬॥
ଗୋମତି ତିରେ ଆମ୍ଭେ ତପେ ଥିଲୁଂ ବସି
ସେଠାକୁ ବିଧାତା ଯେ କାମକୁ ଦେଲେ ପେସି ॥୪୨୮୭॥
କାମଦେବ ଆମ୍ଭଙ୍କୁ ବିନ୍ଧିଲା ପୁଷ୍ପବାଣ
ଭାଜିଲାକ ତପ ଚାହିଲିଂ ଫିଟିଲା ନୟନ ॥୪୨୮୮॥
ନୟନ ଅନଳେ ଯେ କାମ ଭସ୍ମଗଲା
ବ୍ରହ୍ମାର ଦୁଲଣି ଯେ ବିଧବା ହୋଇଲା ॥୪୨୮୯॥
ଦୁହିତା ବିକଳ ଦେଖି ବୋଇଲେ କୁସଧାରି
ଦ୍ୱାପର ଯୁଗରେ ତୁ ହୋଇବୁ ତାର ନାରି ॥୪୨୯୦॥
ବାସୁଦେବ ନନ୍ଦନ ହୋଇବ କାମଦେବ
ଜଳରେ ମେଲିଦେବେ ମିନ ସେ ଗିଳିବ ॥୪୨୯୧॥
ସମ୍ବର ଦୈତ୍ୟ ଆଗେ କୈବ୍ରତ ନେଇ ଦେବ
ମିନକୁ କାଟନ୍ତେ ସେ ପୁତ୍ରକୁ ପାଇବ ॥୪୨୯୨॥
ଦତ୍ୟଘରେ ଥିବୁ ହୋଇଣ ପତିବ୍ରତା
ପୁତ୍ର ପ୍ରାୟେ ପାଳିବୁ ତୁ ହୋଇବୁ ତାର କାନ୍ତା ॥୪୨୯୩॥

---

୧ । ଖ ପୋଥି – କଲ୍ୟାଣ ବାଞ୍ଛା ପ୍ରାପତ ହେଉ ତୁକୁ
୧ । ଗ ପୋଥି – କଲ୍ୟାଣ ବାଞ୍ଛା ହେଉ ଶିରରେ ତାହାକୁ
୨ । ଖ ପୋଥି – ସତର କାଠି ଜଳ ଗଲା ପାଦ ଝିଣ୍ଟିଣିର
୧ । ଖ ପୋଥି – କ୍ରିତିକାର ମୀନ ଜଳ ସଙ୍ଗତେ ଗିଳିଦେଲା

ଯେମନ୍ତ ବୋଲିଣ କହିଲେ ବେଦପତି
ସୁଣଗୋ ଓମା ବୋଲି କହନ୍ତି ପସୁପତି ॥୪୨୯୪॥
ସ୍ୱାମିର ବିଚ୍ଛେଦେ ମାୟାବତି ତପ କଲା
ଦିଗବିଜେ କରନ୍ତେ ସମ୍ୱର ତାକୁ ଘେନିଗଲା ॥୪୨୯୫॥
ରମଣ କରିବାକୁ ଲୋଡୁଥାଇ ଦଇତ
ମାୟାବତି ବୋଇଲା ଅଛି ମୋର ବ୍ରତ ॥୪୨୯୬॥
ନବର ତୋଳାଇ ତାକୁ ଅସୁର ରଖିଲା
ସେହିକାଳେ ମାୟାବତି ଆପଣା ପତିକି ପାଇଲା ॥୪୨୯୭॥
ଯହୁଂ ସେ ପତିପତ୍ନି ହୋଇଲେ ଭେଟାଭେଟି
ଦ୍ୱାଦସ ବରସ ତହିଂରେ ଦିନ କାଟି ॥୪୨୯୮॥
ବଢ଼ି ଯୁବା ହୋଇଲା ଗୋବିନ୍ଦ କୁମର
ଦତ୍ୟର ସଙ୍ଗତେ କଲେକ ଅଗାଧ ସମର ॥୪୨୯୯॥
ମାୟାବତି ବିଦ୍ୟାରେ ସେ ଅସୁର ସଂହାରି
ଲୁହାର ମଇ ବୋଲାଇଲାକ ବସୁନ୍ଧରି ॥୪୩୦୦॥
ଯହୁଂ ନାସ ଗଲା ସେ ସମ୍ୱର ଅସୁର
ଉଶ୍ୱାସ ହେଲା ମହି ଆନନ୍ଦ ତିନିପୁର ॥୪୩୦୧॥
କାମଦେବ ସିରେ ଦେବେ ପୁଷ୍ପ ବୃଷ୍ଟି କଲେ
ପ୍ରଥମେ ଦତ୍ୟକୁ ବଧିଲୁ ବୋଲି ପଦ୍ମନ ନାମ ଦେଲେ ॥୪୩୦୨॥
ପତିପତ୍ନିକି ଦେବେ ବସାଇ ଆସନର
ନାରଦ ଘେନିଗଲେ ଦ୍ୱାରାବତି ପୁର ॥୪୩୦୩॥
ତିନିଜଣେ କଟକେ ପ୍ରବେସ ହୋଇଲେ
ଦେଖିଣ ପୁରଜନେ ଚମକି ଉଠିଲେ ॥୪୩୦୪॥
କେ ବୋଲଇ ସଚିକି ଘେନିଣ ସୁରପତି
ଆକାସ ତେଜିଣ କି ବିଜୟେ କଲା ପୃଥି ॥୪୩୦୫॥
କି ଅବା ଅଟନ୍ତି ସେ ରୋହିଣି ସସିଧର
ସାବିତ୍ରିକି ଘେନି କି ଅବା ପ୍ରବେସ ବେଦବର ॥୪୩୦୬॥
ହର ଗଉରିକି ମିଳିଲେ ଦ୍ୱାରିକାର
ନିଳାଦ୍ରିକି ଘେନିକି ପ୍ରବେସ ରତ୍ନାକର ॥୪୩୦୭॥
ଯେମନ୍ତ ବୋଲି ଜନେ କୁହାକୁହି ହେଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୪୩୦୮॥
ଯହୁଂ କୃଷ୍ଣସୁତ ମିଳିଲେ ଦ୍ୱାରିକାର
ପତ୍ର ପଲ୍ଲବିଲା ସୁଖିଲା ତରୁବର ॥୪୩୦୯॥
ଅବସନ୍ତେ ବସନ୍ତ ବହିଲା ଘନଘନ
ଉନମତ ହୋଇଲେ ସକଳ ଜିବମାନ ॥୪୩୧୦॥
ବନ୍ଧ୍ୟା ସ୍ତିରିମାନେ ସେ ପ୍ରସବିଲେ କୁମର
ଅବନ୍ଧାଣ ସ୍ତିରିମାନେ ଲୋଡ଼ିଲେ ସୃଙ୍ଗାର ॥୪୩୧୧॥
ଅଫଳନ୍ତି ବୃକ୍ଷ ଫଳିଲା ସେହିକାଳେ
ପୁଷ୍ପ ଫୁଟିଣ ଲତା ସେ ଯେ ଲୋଟିଲେ ଭୁମିରେ ॥୪୩୧୨॥

ଅପୁତ୍ରିକ ସ୍ତିରି ଯେ ପ୍ରସବିଲେ ନନ୍ଦନ
ପୁଷ୍ପଙ୍କର ସଙ୍ଗତେ ବରସେ ଚନ୍ଦନ ॥୪୩୧୩॥
କଣୟ ବୃଷ୍ଟି ହେଲା ଆନନ୍ଦ ହେଲେ ଭିକ୍ଷୁ
ବାଳକ ହୋଇଲେ ଯୁବା ଅନ୍ଧ ପାଇଲେ ଦିବ୍ୟଚକ୍ଷୁ ॥୪୩୧୪॥
ରୁକ୍ମଣି ସ୍ତନରୁ ଝରିଲାକ କ୍ଷିର
ଆନନ୍ଦ ହୋଇଣ ଜନେ କରନ୍ତି ବିଚାର ॥୪୩୧୫॥
ନାରଦଙ୍କୁ ଦେଖିଣ ପୁଛନ୍ତି ଭାବଗ୍ରାହି
ଆଦି ଅନ୍ତ ଚରିତ ସେ ନାରଦ ଗଲେ କହି ॥୪୩୧୬॥
ସୁଣିଣ ସ୍ତିରିଙ୍କୁ ଆଜ୍ଞା ଦିଲେ ଯେ ଭାବଗ୍ରାହି
ଅର୍ଘ୍ୟ ଘେନି ପୁତ୍ରବଧୁଙ୍କୁ ନାରିଯେ ବନ୍ଦାଇ ॥୪୩୧୭॥
ମିଳିଲେ ବରକନ୍ୟା ବିଚିତ୍ର ମନ୍ଦିର
ପଦ୍ମନ ଭକ୍ଷିଲେ ସେ ରୁକ୍ମଣିରଂ କ୍ଷିର ॥୪୩୧୮॥
କି ଅବା କହିବି ମୁଂ ଗୋବିନ୍ଦଙ୍କର ରସ
ସେ ହରି ଚରଣେ ସରଣ ସୁଦ୍ରମୁନି ସାରୋଳା ଚଣ୍ଡି ଦାସ ॥୪୩୧୯॥
ଯେଉଁ ଜନ ଏ ସାହାସ୍ର ପଢ଼ିବ ସୁଣିବ
ଅପୁତ୍ରିକ ହୋଇଥିଲେ ନନ୍ଦନ ପାଇବ ॥୪୩୨୦॥
ରୋଗାସ୍ତି ହୋଇଥିଲେ ରୋଗରୁ ହେବ ପାର
ସଙ୍କଟ ପଡ଼ିଥିଲେ କସଣୁ ହୋଇବ ଉଦ୍ଧାର ॥୪୩୨୧॥
ଦାରିଦ୍ର ହୋଇଥିଲେ ମିଳଇ ସମ୍ପଦ
ଗିରିଜା ପଚାରିଲେ ସୁଣ ହେ ସଦାସିବ ॥୪୩୨୨॥

## ଦୁର୍ଯ୍ୟୋଧନଦ୍ୱାରା ଗାନ୍ଧାରସେନର ବନ୍ଦୀ

ବଦୟନ୍ତି ସଦାସିବ ସୁଣ ଗୋ ଗିରିଜା
କୁରୁ ପାଣ୍ଡବ ଚରିତ ଯେବେ ତୋ ଆଗେଂ କହିବା ॥୪୩୨୩॥
ଆସ୍ତାନ ଉପରେ ଯେ ବସିଥାଇ କୁରୁନାଥ
ଯୁଧିଷ୍ଠିଙ୍କି ଦେଖିଣ ବୋଲଇ ବସରେ ଧର୍ମସୁତ ॥୪୩୨୪॥
ଭିମ ଅର୍ଜୁନକୁ ଦେଖି ବୋଲେ ପବନ ଇନ୍ଦ୍ର ତନଏ
ନକୁଳକୁ ବୋଲଇ ବସରେ ଅଶ୍ୱିନି କୁମାର ପୋଏ ॥୪୩୨୫॥
ସହଦେବକୁ ବୋଲେ ପଣ୍ଡୁରାଜାର ସୁତ
ଗୋଟି ଗୋଟି ପିତା ନାମ ଧରଇ କୁରୁନାଥ ॥୪୩୨୬॥
ଦିନେ ହୃଦଗତେ ଚିନ୍ତିଲା ଭିମସେନ
ଜଗନ୍ନାଥଙ୍କୁ ଚାହିଂଣ କହିଲା ଆଦି ଅନ୍ତ କଥା ମାନ ॥୪୩୨୭॥
ସେ ବୋଇଲେ ତୁ କହିବୁ ଗୋଲେକର ପୁତ୍ର
ଭିମସେନ ସୁଣି ଆନନ୍ଦ କଲା ଚିତ୍ତ[୨] ॥୪୩୨୮॥

---

୧ । ଖ ଓ ଗ ପୋଥି – ଜନନୀର
୨ । ଖ ଓ ଗ ପୋଥି – ଆନନ୍ଦ ହୋଇଲା ଶୁଣି ପନବର ପୁତ୍ର

ଏମନ୍ତ ସୁଣି ଭିମ ଚାଲଇ ଧିର ଧିର
ପ୍ରବେସ ହୋଇଲା ଯାଇ କଉରୋବ ସଭାର ॥୪୩୨୯॥
ବସ ପବନସୁତ ବୋଲି ବୋଇଲା କୁରୁସାଇଂ
ଭିମ ବୋଇଲା ହୋ ବସୁଛି ଗୋଲେକ ତନଇ ॥୪୩୩୦॥
ସୁଣିଣ ଦୁର୍ଯୋଧନ ବଇକୁଲ୍ୟ ହୋଇଲା
ମାତାକୁ ପୁଛନ୍ତେ ସେ ସକଳ କହିଲା ॥୪୩୩୧॥
ସୁଣିଣ ଦୁର୍ଯ୍ୟୋଧନ ଅଜାକୁ କୋପ କରି
ପଥର ଗୁମ୍ଫା ଭିଆଇଲା ଲୁହାଗିରି ॥୪୩୩୨॥
ଗାନ୍ଧାରସେନକୁ ବୋଇଲା ଆସ ମୋର ଅଜା
ପଥର ଗଡ଼ କରିଛି ଦେଖିଣ ଆସିବା ॥୪୩୩୩॥
କୁଟୁମ୍ବ ସହିତେ ସେ ଘେନି ନୃପବର
ଯାଇଣ ପସିଲା ସେ ପଥର ଗୁମ୍ଫା ଘର ॥୪୩୩୪॥
କପାଟ ପାଡ଼ିଣ ଅଇଲା ଦୁର୍ଯ୍ୟୋଧନ
ସାତ ଭାର ଜଳଦିୟେ ୟେକ ଭାର ଅନ୍ନ ॥୪୩୩୫॥
ୟେହିରୁପେ ତହିଂରେ କିଛିଦିନ ଗଲା
ପୁଣି ୟେକ ଅଙ୍ଗାୟେ ଅନ୍ନ ନୃପତି ପଡ଼ି ଦିଲା ॥୪୩୩୬॥
ସମସ୍ତଙ୍କୁ ଗାନ୍ଧାର ବୋଲଇ ବଚନ
ଅଙ୍ଗାୟେକ ଅନ୍ନ ଖାଇ ବଞ୍ଚିବା କେତେଦିନ ॥୪୩୩୭॥
ଦୁର୍ଯ୍ୟୋଧନ ବଂସ ମାରିବ କେହୁ ପୁଣି
ସେହୁ ଆସି କହୁ ସେ ଖାଉ ଅନ୍ନପାଣି ॥୪୩୩୮॥
ପିତାର ବଚନେ ସମସ୍ତେ ହେଲେ ତୁନି
ବେନି କର ଯୋଡ଼ିଣ ଯେ ବୋଲଇ ସଙ୍କୁନି ॥୪୩୩୯॥
ଆଜ୍ଞା ଯେବେ ଦେବୁ ପିତା ମାରିବିଂ ତାର ବଂସ
ନୃପତି ବୋଇଲାରେ ସୁଣ ମୋର ସିସ୍ୟ ॥୪୩୪୦॥
ମୋହୋର ହସ୍ତ ଅଙ୍ଗୁଳି କାଟି କରିବୁ ପସାକାଠି
ପସାକାଠି ଖେଳାଇବୁ ତୁ ଦୁର୍ଯ୍ୟୋଧନ ଯେ ଯୁଧିଷ୍ଟି ॥୪୩୪୧॥
ଜିଣିବ ଦୁର୍ଯୋଧନ ହାରିବେ ଯୁଧିଷ୍ଟିର
ପାଣ୍ଡବେ ନାସ କରିବେ ସେ କଉରୋବ ବଳ ॥୪୩୪୨॥
ୟେମନ୍ତେ ବୋଲି ରାଜା ଛାଡ଼ିଲା ଜିବନ
ତାହାର ହସ୍ତ ସଙ୍କୁନି କଲାକ ଛେଦନ ॥୪୩୪୩॥

## ଶକୁନିଙ୍କୁ ଦୁର୍ଯ୍ୟୋଧନର ମନ୍ତ୍ରୀପଣ ପ୍ରଦାନ ଓ ପାଣ୍ଡବମାନଙ୍କର ଯତୁଗୃହେ ବାସ

ପସାକାଠି କଲା ଅଙ୍ଗାୟେକ[1] ଅର୍ନ୍ନ ଖାଇ
ସୁଣଗୋ ଓମା ବୋଲି ସଦାସିବ କହି ॥୪୩୪୪॥

୧ । ଖ ଓ ଗ ପୋଥି – ଉଳିୟାକ

ଦିନେ ବଟମୁଳେ ଛୁତ[1] କଲାକ ନୃପରାହୁ
ଭାସିଲା ବଟମଜିଂ ନୃପତି ହସେ ତହୁଂ ॥୪୩୪୫॥
ନୃପତି ହସନ୍ତେ ଯେ ହସିଲା ମୁଦୁସୁଲି
କିପାଇଂ ହସିଲୁ ବୋଲି ନୃପତି କଟାଳି ॥୪୩୪୬॥
ମୁଦୁସୁଲି ବୋଇଲା ତୁମ୍ଭେ ହସିଲ ଯହିଂ ପାଇଂ
ତୁମ୍ଭ ହସିବାର କଥା ମୁଂ କାଲି କହିବଇଂ ॥୪୩୪୭॥
ଦୁର୍ଯୋଧନ ବୋଇଲା ଯଦି ନ କହିବୁ କାଲି
ଅବସ୍ୟ ମାରିବି ତୋତେ ଦିଆଇଣ ସୁଳି ॥୪୩୪୮॥
ଅଙ୍ଗିୟେକ ଅର୍ନ୍ନ ମୁଦୁସୁଲି ଯେ ଘେନିଗଲା[2]
ସଙ୍କୁନିଠାରେ ଦେଇ ସକଳ କହିଲା ॥୪୩୪୯॥
ସଙ୍କୁନି କହିଲା ବଟମଜିଂ ଭାସିଲା ମୁତ୍ରର
ତହିଂ ପାଇଂ ହସିଲି ବୋଲି ତୁ କହିବୁ ତାହାଠାର ॥୪୩୫୦॥
ସୁଣିଣ ମୁଦୁସୁଲି ନୃପତି ଆଗେ କହି
କୁରୁପତି ବୋଇଲା କହିତେ ୟେଡ଼େ ତୋର ଜ୍ଞାନ ନାହିଂ॥୪୩୫୧॥
ତୋତେ କେ କହିଲା କହ ମୋ ଆଗର
ମୁଦୁସୁଲି ବୋଇଲା ଯେହୁ ଅଛି ପଥରଗୁମ୍ଫା ଘର ॥୪୩୫୨॥
ବିଚାରେ ନୃପତି ମୋହର ମନ୍ତ୍ରି ହେବ ସେହି
ୟେତେ ବୋଲି ସେହୁ ମିଳିଲା ପଥର ଘରେ ଯାଇ ॥୪୩୫୩॥
ଦୁର୍ଯୋଧନ ବୋଇଲା[3] ମାମୁଂ ନ ମରି ବ୍ରତିଲୁ
ମନ୍ତ୍ରି ପଣେ ଆସ ଆମ୍ଭ ଆସ୍ତାନେ ବସିବୁ ॥୪୩୫୪॥
ଆସ ଆସ ବୋଲି ଯହୁଂ ଡାକିଲା ସକୁନି ତୋସ ହୋଇ
ବିଚାରେ ଯାହା ଲୋଡ଼ି ଦଇବ ତାହା ଦେଇ ॥୪୩୫୫॥
ମନ୍ତ୍ରି ପଣେ ସଙ୍କୁନି କି ଦୁର୍ଯ୍ୟୋଧନ ଥାପି
ରହିଲା ମହାତମା ପାଣ୍ଡବଙ୍କ ଛିଦ୍ର ପାଞ୍ଚି ॥୪୩୫୬॥
ବ୍ରାହ୍ମଣ ଗୋଟିୟେ ଦିନେ ଦେଖିଲା ନୃପମଣି
ଗଉରୋବ କରି ପଚାରେ କେବଣ ଦେସରୁ ବିଜେ ପୁଣି॥୪୩୫୭॥
ବ୍ରାହ୍ମଣ ବୋଇଲା ଗୟା ଦେସେ ଆମ୍ଭର ସାସନ
ବୟାସି ସହସ୍ର ଘର ସମସ୍ତେ ବ୍ରାହ୍ମଣ ॥୪୩୫୮॥
ଅନେକ କପଟ ବିଦ୍ୟା ଅଛଇ ଆମ୍ଭରି
ଅନେକ ଉପାୟେ ଆମ୍ଭେ ପ୍ରାଣିଙ୍କି ନାସ କରି ॥୪୩୫୯॥
ସୁଣି ମାନଗୋବିନ୍ଦ ବୋଲଇ ବିପ୍ରକୁ
ପାଣ୍ଡବେ ମୋର ଶତ୍ରୁ ମାରି ପାରିବୁକି ତାଙ୍କୁ ॥୪୩୬୦॥
ବ୍ରାହ୍ମଣ ବୋଇଲା ତାକୁ ଉପାୟେ ମାରିବିଂ
ଶତ୍ରୁ ବୋଲି ତୋର ଗୋଟିୟେ ନ ରଖିବିଂ ॥୪୩୬୧॥

୧ । ଖ ପୋଥି – ପରିସ୍ରା
୨ । ଗ ପୋଥି – ଗାନ୍ଧାରୀ ଅର୍ନ୍ନ ଦେଲା ସେ ମୁଦୁସୁଲୀ ନେଲା
୩ । ଖ ଓ ଗ ପୋଥି – ଶକୁନିକି ଦେଖି ବୋଇଲା

ପୁରଞ୍ଜନ ପଣ୍ଡା ସେହୁ ଉପାୟେ ତହୁଂ କଲା
ବାରୁଣାବନ୍ତରେ ଜଉଘରେକ ତୋଳାଇଲା ॥୪୩୬୨॥
ଜଉ ସଜଳ ଘୃତ ଛଣପଟରେ ଛାଉଣି
ଯେମନ୍ତ ଭିଆଇଲା ଯେମନ୍ତେ ଲାଗିବ ତହିଂ ଅଗ୍ନି ॥୪୩୬୩॥
ପୁରଞ୍ଜନ ବୋଇଲା ଶୁଣ ହେ ନୃପମଣିଂ[୧]
ପାଣ୍ଡବଙ୍କୁ ରଖ ଆଣି ଯେହିଠାରେ ପୁଣିଂ[୨] ॥୪୩୬୪॥
ଲଗାଇ ଦେବି ଜୁଇ ପାଇବେ ସେ ମରଣ
ଶୁଣିଣ ଆନନ୍ଦିତ ହୋଇଲା ଦୁର୍ଯୋଧନ ॥୪୩୬୫॥
ପାଣ୍ଡବଙ୍କ ସଙ୍ଗତେ ସେ କନ୍ଦଳ ଲଗାଇଲା
ବାରୁଣାରେ ରହ ବୋଲି ଧୃତିରାଷ୍ଟ୍ର କହିଲା ॥୪୩୬୬॥
ଜନନି ସହିତେ ପାଞ୍ଚଭାଇ ଚଳିଗଲେ
ବାରୁଣାବନ୍ତରେ ଜଉଘରେ ସେ ରହିଲେ ॥୪୩୬୭॥
ରହିଲେ ଜଉଘରେ ପଞ୍ଚୁପାଣ୍ଡବ[୩] ପୁରଞ୍ଜନ
ଭକ୍ଷନ୍ତି କନ୍ଦମୁଳ ସେ ନ କରନ୍ତି ରନ୍ଧନ ॥୪୩୬୮॥

## ଭୀମଙ୍କର ବିଷଲଡୁ ଭକ୍ଷଣ ଓ ବେଲାବଳୀ ସହିତ ବିବାହ

ଦିନେ ଗଣ୍ଡା ଗୋଟିୟେ ଭିମସେନ ମାରି ଆଣିଲା
ଯୁଧିଷ୍ଟି ବୋଇଲେ ୟେହାକୁ କେମନ୍ତେ ରାନ୍ଧିବା ଭଲା ॥୪୩୬୯॥
ଜଉଘର ତରଳିବ ମରିବା ସମସ୍ତ
ଘେନିଯାଅ ଭିମ ଏହା ଭକ୍ଷିବ କୁରୁନାଥ ॥୪୩୭୦॥
ଗଣ୍ଡା ଘେନି ହସ୍ତିନାରେ ପ୍ରବେସ ଭିମସେନ
ଭିମକୁ ଦେଖିଣ ଆନନ୍ଦ ହୋଇଲା ଦୁର୍ଯୋଧନ ॥୪୩୭୧॥
ବୋଇଲା ପୁରଜଂନ ଉପାୟ ଥିଲେ କର
ୟେହୁ ମଲେ ଶତୃ ନାସ ଯିବ ମୋର ॥୪୩୭୨॥
ବିସଲଡୁ ଗୁଡ଼ାୟେ ରଞ୍ଜିଲା ବ୍ରାହ୍ମଣ
ଦୁସାସନ ବୋଇଲା ଆସ ଭୁଜିଂବା ଭିମସେନ ॥୪୩୭୩॥
ବେନିଜଣ ବସିଲେ ପୁରଞ୍ଜନ ପରସଇ
ଦୁସାସନକୁ ଛେନା ଲଡୁ ଭିମକୁ ବିଷଲଡୁ ଦେଇ ॥୪୩୭୪॥
କପଟ ନ ଜାଣି ଭିମ କଲାକ ଆହାର
ଘାରିଲା ବିସର ଜ୍ୱାଳା ପଡ଼ିଲା ସେହିଠାର ॥୪୩୭୫॥
କର୍ଣ୍ଣ ଦୁସାସନ ଯେ ଭିମକୁ ଘେନିଗଲେ
ଜଳରେ ପକାଇଲେ ନାଗକୁମାରି ଦେଖି ନେଲେ ॥୪୩୭୬॥
ବାସୁକିଠାରେ ଦିଲେ ସେ ଦିଲା ଜିବଦାନ
ନାଗରାଜା ଦୁହିତା ଭିମକୁ କଲେକ ପ୍ରଦାନ ॥୪୩୭୭॥

୧ । ଖ ଓ ଗ ପୋଥି – ନୃପବର
୨ । ଖ ପୋଥି – ଜଉଘର
୨ । ଗ ପୋଥି – ୟେହି ଘର
୩ । ଗ ପୋଥି – ପାହାରି

ବେଲାବଳି ସଙ୍ଗତେ ରହିଲା ବିକୋଦର
ଶୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ॥୪୩୭୮॥

## ପାଣ୍ଡବାସୁର ବଧ

ବଜ୍ରସିରା ବୋଲିଣ ୟେକଇ ରାକ୍ଷସ
ତାହାର ବିର୍ଯ୍ୟେ ଚନ୍ଦ୍ରନଉମି ହେଲାଜାତ ॥୪୩୭୯॥
ପାଣ୍ଡେବାସୁର ବୋଲି ତାହାର ନନ୍ଦନ
ଭ୍ରମନ୍ତେ ମିଳିଲା ଯାଇ ହସ୍ତିନା ଭୁବନ ॥୪୩୮୦॥
ଦୁର୍ଯୋଧନ ଆଦି ସେ ଅନେଶ୍ୱତ ଭାଇ
ଗିରିପୃଷ୍ଟେ ବସି ଖାଇବି ବୋଲି ସଭିଙ୍କି ଦଇତ ଘେନିଯାଇ ॥୪୩୮୧॥
ଶୁଣଗୋ ଓମା ବୋଲି ବୋଲନ୍ତି ପସୁପତି
ଯୁଧିଷ୍ଟି ଭିମକୁ ନ ପାଇ ଖୋଜୁଛନ୍ତି ॥୪୩୮୨॥
ମର୍କତ ଗିରି ତଳେ ଦଇତ୍ୟକୁ ଦେଖିଲେ
ଲେଉଟି କୌରବଙ୍କୁ ଦେଖି ମନରେ ବିଚାରିଲେଂ[୧] ॥୪୩୮୩॥
ଭାଳିଲେ ଯୁଧିଷ୍ଟି କାହିଂ ଗଲୁରେ ଭିମ
ଭିମ ବୋଲି ବୋଲନ୍ତେ ଭିମର କମ୍ପିଲା ଆସନ ॥୪୩୮୪॥
ବେଲାବଳି କି ବୋଇଲା ତୁ ଥାଅ ପିତାଘର
ମୁହିଂ ଯାଉଅଛି ୟେବେ ଚିନ୍ତିଲେ ଯୁଧିଷ୍ଟିର ॥୪୩୮୫॥
ନାଗେଣି ବୋଇଲା ମୋ ପେଟେ ସନ୍ତାନ ପାଞ୍ଚମାସ
ପୁତ୍ର ଜନ୍ମ ହୋଇଲେ ପଶ୍ଚାତ ଦେବ ଦୋସ ॥୪୩୮୬॥
ପତ୍ନିର ମୁଖ ଚାହିଂ ବୋଇଲେ ଭିମସେନ
ପୁତ୍ର ଜନ୍ମ ହୋଇଲେ ଦେବୁ ତୋର ମୋର ନାମ ॥୪୩୮୭॥
ୟେମନ୍ତେ କହି ଭିମ ପାତାଳରୁ ବାହାରିଲା
ଯହିଂ ଥିଲେ ଯୁଧିଷ୍ଟି ସେଠାରେ ମିଳିଲା ॥୪୩୮୮॥
ଯୁଧିଷ୍ଟି ବୋଇଲେ ଦେଖରେ ଭାଇ ଭିମ
ଦଇତ୍ୟ ନେଇଅଛି କଉରୋବ ଭାଇମାନ ॥୪୩୮୯॥
ଅନେଶ୍ୱତ ଭାଇଙ୍କି ଖାଇବ ୟେହିକ୍ଷଣି
ରଖିପାରିଲେ ଯସ ରହିବ ମେଦନି ॥୪୩୯୦॥
ବିକୋଦର ବୋଇଲା ମରନ୍ତୁ କଉରୋବେ
ବିସଲଡୁ ଦେଇ ମୋତେ ଜଳରେ ମେଲିଦେଲେ ॥୪୩୯୧॥
ବାସୁକି ବାପୁଡ଼ା ମୋତେ ଦିଲା ଜିବଦାନ
ୟେମନ୍ତ ଉପକାର ମୋତେ କରିଛି ଦୁର୍ଯୋଧନ ॥୪୩୯୨॥
ଯୁଧିଷ୍ଟି ବୋଇଲେ ସେ ଆମ୍ଭଙ୍କୁ ପଛେ ମାରୁ
ତାହାଙ୍କ ଦୁଃଖ ଖଣ୍ଡ ଅପାଦୁ ସେହି ତରୁ ॥୪୩୯୩॥
ତୋତେ ସେ ମାରିଥିଲେ ରଖିଲା ଦଇବ
ତାହାଙ୍କ ମରଣ ଦେଖି ଦେହ ମୋ ନ ସହିବ ॥୪୩୯୪॥

୧ । ଖ ଓ ଗ ପୋଥି – କେ ନେଉଛି କଉରୋବଙ୍କୁ ନୟନେ ଚାହିଂଲେ

ଯାଆ ବୋଲନ୍ତେ ବିକୋଦର ଚଳିଗଲା
ରେ ରେ ପାଣ୍ଡବାସୁର ବୋଲି ରଡ଼ିଯେ ଛାଡ଼ିଲା ॥୪୩୯୫॥
ଜିବନର ଆସା ଥିଲେ ଛାଡ଼ରେ ଯେମାନଙ୍କୁ
ସୁଣିଣ ଅସୁର ଛାଡ଼ି ଚାହିଁଲା ପଛକୁ ॥୪୩୯୬॥
ଡାକିଲାରେ ମାନବା ଆସ ତୁହି ଧାଇଂ
ନିତି ସତେ ଗୋଟି ଆହାର କରଇ ॥୪୩୯୭॥
ଆଣିଛି ଅନେଶ୍ୱତ ହୋଇଛି ଯେକ ଊଣା
ଭୋଜନକୁ ସୋସ୍ତ ସେ ନୋହନ୍ତା କିଛି ସିନା ॥୪୩୯୮॥
ତୁହି ଅଇଲୁରେ ଭୋଜନ ସୋସ୍ତ ହେବ
ଭିମ ବୋଇଲେରେ କେ କାହାକୁ ଖାଇବ ॥୪୩୯୯॥
ବିଧା ଉଞ୍ଚାଇଣ ବିକୋଦର ସେ ବୋଲଇ
ପକାଇ ଦିଅ ଯେହାଙ୍କୁ ଯେମାନେ ମୋର ଭାଇ ॥୪୪୦୦॥
ଭିମ ଦେଖୁ ଦେଖୁ ତାହାଙ୍କୁ ଗିଳିଦେଲା
ଦେଖିଣ ଭିମ ଦୈତ୍ୟ ଗର୍ଭରେ ପସିଗଲା[୧] ॥୪୪୦୧॥
ଦଇତ ଗର୍ଭ ଭିମ ହାନ୍ଦୋଳି ଖୋଜଇ[୨]
ବାହାର ହେଲେ କଉରୋବେ ଅଠାର୍ଣ୍ଣବେ ଭାଇ ॥୪୪୦୨॥
ପୁର୍ବକଥା ସୁମରି ଭିମ ଗୋଟି ଗୋଟି ଧରି
ବିଧାଯେ ମାରିଣ ପକାଯେ କଚାଡ଼ି ॥୪୪୦୩॥
ଦୁର୍ଯ୍ୟୋଧନ ବୋଇଲା କିପାଇଂ ମାରୁ ତୁହି
ଦଇତ ମାଡ଼ଠାରୁ ତୋ ମାଡ଼ ବଳଇ ॥୪୪୦୪॥
କିପାଇଂ ରଖିଲୁ ଖାଆନ୍ତା ପଛେ ଦତ୍ୟ
ତୋହୋର ବିଧା ତ ସୁଭୁଛି ବଜ୍ରାଘାତ ॥୪୪୦୫॥
ଭିମ ବୋଇଲା ବାଇ ହୋଇଲୁ ଅନ୍ଧବଳା
ପାଣ୍ଡବାସୁର ଯେ ତୁମ୍ଭଙ୍କୁ ଗିଳିଥିଲା ॥୪୪୦୬॥
କେତେ ଅଇଲ କେତେ ଗର୍ଭରେ ଅଛଇ
ତେଣୁ ବିଧା ମାରିଣ ତୁମ୍ଭଙ୍କୁ ଗଣୁଛଇ ॥୪୪୦୭॥
ସମସ୍ତେ ଅଇଲୁଂ ବୋଲି ବୋଇଲା ଦୁର୍ଯ୍ୟୋଧନ
ଊଣା ପଛେ ହେଉ ବିଧା ମାରି ତୁ ନ ଗଣ ॥୪୪୦୮॥
ଭିମ ବୋଇଲାରେ ଗଣ ତୁ ଯେଠାରେ
ଊଣା ହେଲେ ମୋତେ ଯୁଧେଷ୍ଟି ଗାଳିଦେବେ ॥୪୪୦୯॥

୧ । ଖ ଓ ଗ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୨ । ଖ ପୋଥିରେ ଏହାର ଉପରେ ଏହି ଚାରି ଧାଡ଼ି ଅଧିକ ଅଛି –
ଦେଖିଣ ପାଣ୍ଡବାସୁର ହୋଇଲା ପ୍ରଜଳିତ
ଗିଳିଦେଇ କୌରବଙ୍କୁ ପୁରୋଇ ଗର୍ଭଗତ
ଭୀମସେନ ଧଇଲା ଯାଇ ଦାନବର ଗଳା
ଚାପି ମୋଡ଼ି ପକାବନ୍ତେ ଦଇତ ପ୍ରାଣ ଗଲା

ଯେତେ ବୋଲି ଭିମ ବିଧା ମାରି ଗଣଇଂ
ଗୋଟିଯେ ଊଣା ହେଲା ଦୁସାସନ ନାହିଂ ॥୪୪୧୦॥
ସୁଣରେ କଉରୋବେ ଦୁସାସନ କାହିଂ
ଦଇତ ଗର୍ଭରେ ନିକି ଜିର୍ଣ୍ଣ ଗଲା ହୋଇ ॥୪୪୧୧॥
ଯେମନ୍ତ କହି ଭିମ ଧାଇଂଲା ବହନ
ଦୈତ୍ୟ ମୃତ୍ୟୁଠାରେ ପଡ଼ିଛି ଦୁସାସନ ॥୪୪୧୨॥
ବାଳ ଧରିଣ ଭିମସେନ ନେଲାକ ଓଟାରି
ଦୁର୍ଯ୍ୟୋଧନ ଅଗ୍ରତେଂ ପକାଇଲା କଚାଡ଼ି ॥୪୪୧୩॥
ପଳାଇଲେ କଉରୋବେ ଅପମାନ ପାଇ
ସୁଣଗୋ ଓମା ବୋଲି ସଙ୍କର ଗଲେ କହି ॥୪୪୧୪॥
ଯୁଧଷ୍ଟି ସନ୍ନିଧେ ବିକୋଦର ମିଳଇ
ସକଳ କଥା କହି ବାରୁଣାକୁ ଚଳି ଯାଇ ॥୪୪୧୫॥
ଯେଣୁ ସେ ପାଣ୍ଡବାସୁରକୁ ବଧିଲେ
ତେଣୁ ଦେବତାଯେ ପାଣ୍ଡେବ ବୋଲି ନାମ ଦିଲେ ॥୪୪୧୬॥

## ପାଣ୍ଡବମାନଙ୍କର ଜତୁଗୃହରୁ ପଳାୟନ ବୃତ୍ତାନ୍ତ

ଯେକଦିନେ ବିଦୁର ଆସ୍ତାନେ ବସିଥିଲେ
ଟସ୍କର ଗୋଟିଯେ ଆସି ସନ୍ନିଧେ ମିଳିଲେ ॥୪୪୧୭॥
ଅତିହିଂ କ୍ଷିନ୍ନ ଦେହ ତାହାର ଅଟଇ
ସହସ୍ର ଖଣ୍ଡିଯେକ ହସ୍ତରେ ଘେନିଛଇ ॥୪୪୧୮॥
ଦେଖିଣ ବିଦୁର ତାକୁ ଆଶ୍ଚର୍ଯ୍ୟ ହୋଇଲା
ତୋହୋଠାରୁ ଦୁଖିଜନ ସଂସାରେ ନ ଦେଖିଲା ॥୪୪୧୯॥
କିସ ତୋର ନାମ କେବଣ ଦେସେ ଘର
ଟସ୍କର ବୋଇଲା ମୋ ନାମ ଖଣତ୍କାର ॥୪୪୨୦॥
ଶ୍ରୀକୃଷ୍ଣର ବିର୍ଯ୍ୟେ ଦୁତିକା ଗର୍ଭେ ଜାତ ହୋଇ
ଦୁତିକା ପୁତ୍ର ମୁଂ ଟସ୍କର ଅଟଇ ॥୪୪୨୧॥
ବିଦୁର ବୋଇଲା ତୁ କର ଉପକାର[୧]
ବାରୁଣା ଦେସରେ ଯେ ଅଛଇ ଜଉଘର ॥୪୪୨୨॥
ତହିଂକି ଶ୍ରେଣି ନଦି ଯେଗାର ଯୋଜନ
ଖୋଳିବୁ ବିମ୍ୱର ଫୁଟିବ ତହିଂ ପୁଣ ॥୪୪୨୩॥
କେହି ନଦେଖିବେ ବିମ୍ୱର ଖୋଳୁଥିବୁ
ସେହି ବିମ୍ୱରେ ପାଣ୍ଡବେ ପଳାଇବେ ବାବୁ ॥୪୪୨୪॥
ବାର ବରସକୁ ଧନ ବସ୍ତ୍ର ଦେଲା
ବିଦୁର ଆଜ୍ଞାରେ ଟସ୍କର ବିମ୍ୱର ଖୋଳିଲା ॥୪୪୨୫॥
ଦିନେ ବାରୁଣାରେ ପ୍ରବେସ ଚକ୍ରଧର
ଦେଖିଲେ ବିମ୍ୱର ଖୋଳୁଛି ଖଣତ୍କାର ॥୪୪୨୬॥

୧ । ଗ ପୋଥି – କଥାଯେ ଯେବେ କର

ମାଟିଗଦା ହୋଇଛି ସେ ପର୍ବତ ସମାନ
କୃସିକାରକୁ ବୋଇଲେ ପ୍ରଭୁ ଭଗବାନ ॥୪୪୨୭॥
ମାଟି କାଢ଼ ସେ ଯେ ମେଲା ହେଉ ଦ୍ୱାର
ସୁଣି ବେନି ନିଶ୍ୱାସ ଛାଡ଼ିଲା କୃସିକାର ॥୪୪୨୮॥
ନିଶ୍ୱାସ ପ୍ରବଳେ ମାଟି ହୋଇଲା ତରଳ
ଦେଖିଣ ଆନନ୍ଦ ହୋଇଲେ ଚକ୍ରଧରଂ ॥୪୪୨୯॥
ଫୁଟିଲା ବିମ୍ବର ପାଣ୍ଡବେ ଦେଖିଲେ
ଚୋର ବୋଲି ଖଣତ୍‌କାରକୁ ଧଇଲେ ॥୪୪୩୦॥
ସେ ବୋଇଲା ତୁମ୍ଭପାଇଂ ଖୋଳୁଛି ବିମ୍ବର
ବରତନ ଦେଇ ମୋତେ ପେସିଲେ ବିଦୁର ॥୪୪୩୧॥
ଭିମସେନ ବୋଇଲେ ହୋ ଚାଲ ବିମ୍ବର ଦେଖିବା
ହସ୍ତରେ ଘେନିଲା ବାଉନ ଭାର ଗଦା ॥୪୪୩୨॥
ବୁଲାଇ ଧାମନ୍ତେ ଗଦା ନ ଲାଗିଲା
ଲେଉଟି ଯାଇ ଚାରି ଭାଇଙ୍କି କନ୍ଧରେ ବସାଇଲା ॥୪୪୩୩॥
ସିରରେ ବସାଇଲା କୋଇନ୍ତା ଜନନି
ଧାଇଂଲାକ ଭିମ ଘୋଟିଛି ରଜନି ॥୪୪୩୪॥
ରଖିଣ ନଦିତିରେ ପ୍ରବେସ ଜଉଘରେ
ଝିମସାଲୁ ଅଗ୍ନିଆଣି ଘରେ ଲଗାଇ ବିକୋଦରେ ॥୪୪୩୫॥
ଘରପୋଡ଼ି ଦେଇଂ ଧାଇଂଲା ପାବେନି
ଯୁଧିଷ୍ଟି ବୋଇଲା ଚାଲ ନଦି ଜିଣିଂ ॥୪୪୩୬॥

## କିମ୍ମୀରୀ ବଧ

ଯୁଧିଷ୍ଟି ବୋଇଲେ ବାବୁ ନଦି ଅଛି ବଢ଼ି
ବିଚାରନ୍ତେ ଜଳରୁ ନାଉରିଆ ନାବ କାଢ଼ି ॥୪୪୩୭॥
ବସିଲେ ପାଣ୍ଡବେ କଇବ୍ରତ ନାବ ବାହି
ମଝି ନଦିରେ ସେ ନାବ ନ ଚଳଇ ॥୪୪୩୮॥
ପଚାରିଲେ ଯୁଧିଷ୍ଟି କିହେଲା କୈବ୍ରତ
କୁମ୍ଭିରି ଯେ ଜଗିଅଛି ଯେଥି ଦ୍ୱାଦସ ବରସ ॥୪୪୩୯॥
ଗୋଟିଯେକ ଭାଇ ଦିଅ ସେ କରିବ ଆହାର
ନ ଦେଲେ ନଛାଡ଼ିବ ନୋହିବ ତୁମ୍ଭେ ପାର ॥୪୪୪୦॥
ସୁଣିଣ ଯୁଧିଷ୍ଟିର ଭିମକୁ ପଚାରିଲେ ॥୪୪୪୧॥
ଭିମ ବୋଇଲା କୈବ୍ରତକୁ ଦିଅ ଏବେ
ତାହାର ନାବ ଘାଟ ତାହାକୁ ଖାଉ ତେବେ[୨] ॥୪୪୪୨॥
ଯୁଧିଷ୍ଟି ବୋଇଲେ ସେ ଆମ୍ଭର ଉପକାରି
ଭିମ ବୋଇଲା ନକୁଳ ସହଦେବକୁ ଦିଅ ଖାଉ ସେ କୁମ୍ଭିରି ॥୪୪୪୩॥

୧ । ଖ ପୋଥି – ଶୁଣ ଗୋ ଉମା ବୋଲି କହନ୍ତି ଶଙ୍କର
୨ । ଖ ପୋଥିରେ ଏହି ଧାଡ଼ି ନାହିଁ

ଯୁଧିଷ୍ଟି ବୋଇଲେ ସେ ଅଟନ୍ତି ସାନସାନ
ସାବତ ଭାଇକି ନାସିଲେ ଲୋକେ ବାଛିବେ ମୋତେ ପୁଣ ॥୪୪୪୪॥
ଭିମ ବୋଇଲା ହୋ ଅର୍ଜୁନକୁ ଦିଅ
ଯୁଧିଷ୍ଟି ବୋଇଲେ ସେ ବାସେବର ପୁଅ ॥୪୪୪୫॥
ଭିମ ବୋଇଲା ଦେବ ରଖିଲ ସମସ୍ତଙ୍କୁ
ମୋତେ କିମ୍ଭିରି ଖାଉ ବୋଲି ଡେଇଂ ପଡ଼ିଲା ଜଳକୁ ॥୪୪୪୬॥
କିମ୍ଭିରି ଗିଳି ଭିମକୁ ପୁରୋଇ ଗର୍ଭଗତ
ନାବବାହି ନାଉରିଆ ପ୍ରବେସ ଆରତଟ ॥୪୪୪୭॥
ଭିମକୁ ନ ଦେଖିଣ ଯୁଧିଷ୍ଟି ସୋକକରି
ଆହା ଭାଇ ବୋଲିଣ ହୃଦରେ ହସ୍ତମାରି ॥୪୪୪୮॥
କିମ୍ଭିରି ଗର୍ଭରେ ଥାଇ ସୁଣିଲା ଭିମସେନ
ବାହାର ଭିମ କିମ୍ଭିରି ହେଲା ନାସପାନ ॥୪୪୪୯॥
ଗମିଲା ସ୍ୱର୍ଗପୁରି ପାର ହୋଇ ସାପ୍ୟ
ସୁଣଗୋ ଭଗବତି କହନ୍ତି ମହେସଂ ॥୪୪୫୦॥

## କିନ୍ନରୀ ବଧ

ପ୍ରବେସ ହେଲେ ସମସ୍ତେଂ କରନ୍ତି ହାହାକାର
ଚାଲ ଯିବା ରଜନିଂ ପାହିବ ବୋଲି ବୋଇଲା ବିକୋଦର ॥୪୪୫୧॥
ଦ୍ରିଯୋଧନ ଜାଣିଲେ ସେ ହୋଇବ ବଡ଼ ମନ୍ଦ
ଯେତେ ବୋଲି ସମସ୍ତଙ୍କୁ ବସାଇଲେ କନ୍ଧ ॥୪୪୫୨॥
ଧାଇଂଲା ଭିମସେନ ପ୍ରବେସ ଘୋର ବନ
ଫଳମୁଳ ଆଣି ବନୁ କଲେକ ଭୋଜନ ॥୪୪୫୩॥
ଦିନା ଚାରି ରହିଣ ତହୁଂ ଚଳିଗଲେ
ନର୍ମଦା ନଦି ତିରେ ଯାଇଣ ରହିଲେ ॥୪୪୫୪॥
ସେ ନଦି ତିରେଂଣ ଅଛନ୍ତି ମୁନିଜନ
ଅଙ୍ଗିରା ପରାସର ମାର୍କଣ୍ଡ ତପୋଧନ ॥୪୪୫୫॥
ମୁନିଙ୍କି ଦେଖିଣ ଯେ ସନ୍ତୋସ ଯୁଧିଷ୍ଟି
ଭିମକୁ ବୋଇଲେ ନିର୍ବାଣ କୁଡ଼ିଆ ଯେକଗୋଟି ॥୪୪୫୬॥
ସାଳ ବୃକ୍ଷମାନ ଭିମ ଆଣିଲା ଉପାଡ଼ି
ତୃଣ ବେନି ଗୋଛା ବନୁ କାଟିଲା ବାସବି ॥୪୪୫୭॥
ନକୁଳ ସହଦେବ ଆଣିଲେ ବତାଗଣ୍ଠି
ଯେମନ୍ତ ଭିଆଇଲେ କୁଡ଼ିଆ ଯେକ ଗୋଟି ॥୪୪୫୮॥
ବେଲ ନାରିକେଳ କଇଥ କରମଙ୍ଗା
ସପୁରି ପଣସ ଖମ୍ଭଆଳୁ ଟଭା ॥୪୪୫୯॥
ଯେ ବିଧିରେ ଫଳ ତୋଳିଲେ ଧର୍ମସୁତ
କଇଂତାକୁ ବୋଇଲେ ଗୋ ରନ୍ଧନ କରମାତ ॥୪୪୬୦॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ

କଇଂତା ଦେବି ତହିଂ ସାରିଲେ ସ୍ନାହାନ
ନୁଆ ଅଗ୍ନି ଜାଳି କଲେକ ରନ୍ଧନ ॥୪୪୬୧॥
ପାକ ନିର୍ମାଣନ୍ତେ ସ୍ନାହାନ ପାଞ୍ଚଭାଇ[1]
ବସିଲେକ ଭୁଞ୍ଜି କଇଂତା ପରସଇ ॥୪୪୬୨॥
ପଣସ ପତ୍ର ଠୋଲା କରିଛି ବିକୋଦର
ପାଞ୍ଚଗୋଟି ସମାନ କରି ଯେକ ତହିଂ ବଡ଼ ॥୪୪୬୩॥
ଶ୍ରେଷ୍ଠ ଠୋଲା ଗୋଟି ଘେନିଲା ବିକୋଦର
ଅଧେକ ଯେକା ଖାଇ ଅଧେକ ଚାରିଙ୍କର ॥୪୪୬୪॥
ଆଉ ଯେତେକ ତହିଂ ସେସ ଭାଗ ଥାଇ
ଥୋକାଯେକ ତହିଂ କଇଂତା ଭୁଞ୍ଜଇ ॥୪୪୬୫॥
ଅତିଥି ପାଇଂ କିଛି ରଖଇ ସେସ ଭାଗ
ଯେହି ରୁପେ ଦିନ ଯେ ବଞ୍ଚନ୍ତି ପାଣ୍ଡେବ ॥୪୪୬୬॥
ଗଣ୍ଡା ଯେ ଗୟଳ ଯେ ସୁକର ବାଉଟିୟା
କୋଟାରି ହରଣି ଯେ ଝିଙ୍କ ସସାଛୁଆ ॥୪୪୬୭॥
ଯେହିରୁପେ ଜିବ ପାଣ୍ଡବେ ନାସନ୍ତି
ବନସ୍ତରେ ପ୍ରତିଦିନ ଭ୍ରମଣ କରନ୍ତି ॥୪୪୬୮॥
ଯେକଦିନେ କିନ୍ନରି ରାକ୍ଷାସୁଣି ମିଳି
କୋଇନ୍ତାକୁ ବୋଇଲା ମୁଂ ତୋତେ ଦେବି ଗିଳି ॥୪୪୬୯॥
ଭୟରେ ଥରହର ହୋଇଣ ବିମ୍ବଓଷ୍ଠି
ବୋଇଲେ ନନ୍ଦନ ମୋ ଅଛନ୍ତି ପାଞ୍ଚଗୋଟି ॥୪୪୭୦॥
କିନ୍ନରି ବୋଇଲା ମୋ ଅଧିକେ କାର୍ଯ୍ୟ ନାହିଂ
ଗୋଟିଯେକ ଦେବୁ ସତ୍ୟ କର ହାଦେ ତୁହିଂ ॥୪୪୭୧॥
ବରସକେ ଗୋଟିଯେ ମୁଂ କରଇଂ ଆହାର
ଅଧିକ ନ ଖାଇବିଂ ଦେଇଛି ବିଧାତା ବର ॥୪୪୭୨॥
ସ୍ତିରି ହେଉ ଅବା ପୁରୁସ ହିଂ ହେଉ
ଗୋଟିଯେ ଖାଇଲେଂ ମୋର ବରସେକ ଯାଉ ॥୪୪୭୩॥
ଯେମନ୍ତ ବୋଲନ୍ତେ ପ୍ରବେସ ଯୁଧିଷ୍ଠି
ଖାଇବ ବୋଲି କିନ୍ନରି ବସିଲା ପାଲଟି ॥୪୪୭୪॥
ଦେଖିଣ ଯୁଧିଷ୍ଠି ଯେ ଭୟକୁ ପାଇଲେ
ରହ ରହ ବୋଲିଣ ସେ କୋଇଂତା ଡାକ ଦିଲେ ॥୪୪୭୫॥
ଯେହାକୁ ଛାଡ଼ିଣ ଗୋଟିଯେ ତୋତେ ଦେବିଂ
ଯେମନ୍ତ ବୋଲନ୍ତେ ମିଳିଲା ବାସେବି ॥୪୪୭୬॥
ଅର୍ଜୁନ ବୋଇଲେ ଯେ ଅଟଇ କାହାନାରି
ପର୍ବତ ସମାନେ ବସିଛି କିନ୍ନରି ॥୪୪୭୭॥
କୋଇଂତା ବୋଇଲେ ଯେ ଅଟଇ ମୋର ସହି
ପାଞ୍ଚଗୋଟି ପୁତ୍ର ସ୍ୱାମି ଯେହାଙ୍କର ନାହିଂ ॥୪୪୭୮॥

୧ । ଖ ଓ ଗ ପୋଥି – ପାକ ନିବାଡ଼ନ୍ତେ ସ୍ନାହାନ ସାରିଲେ ପାଞ୍ଚଭାଇ

ଅର୍ଜୁନକୁ ଗିଳିତେ କିନ୍ନରି ଉଠେ ଝାଡ଼ି
ରହ ରହ ବୋଲି କୋଇଂତା ଦିଲେ ଆଖି ଠାରି ॥୪୪୭୯॥
ବୋଇଲେ ଯେହି ପୁତ୍ର ଦୁଷ୍ଟ ଅତି ହିନବଳ
ମାଂସନାହିଂ ଅସ୍ଥି ଲୋଚାୟେ ଗହଳ ॥୪୪୮୦॥
ଯେହା ତହୁଂ ଯେକ ନନ୍ଦନ ମୋ ଅଛଇ ଗରୁଭାବ
କହୁଂ କହୁଂ ମିଳିଲେ ସେ ନକୁଳ ସହଦେବ ॥୪୪୮୧॥
ରାକ୍ଷାସୁଣି ବୋଇଲା ମୁଂ ଖାଇବି ଗୋଟିଯେ
କୋଇଂତା ବୋଇଲେ ଗୋ ରହ ରହ ମାୟେ ॥୪୪୮୨॥
ଦେଖ ଯେ ବାଳେକ ଅଟନ୍ତି ସାନ ସାନ
ଭକ୍ଷଂନ୍ତେ ଗର୍ଭରେ ନ ରହିବ ଯେକ ଦିନ ॥୪୪୮୩॥
ଗର୍ଭ ପୁରୋଇଦେବି ତୋତେ ଯେକ କୁମର
ବରସକେ ଯାୟେ ତୁ ନ କରିବୁ ଆହାର ॥୪୪୮୪॥
ଯେମନ୍ତ ବୋଲନ୍ତେ ମିଳିଲା ଭିମ ଯାଇ
କୋଇଂତାଙ୍କୁ ବୋଇଲା ଯେ ବସିଛି କାହିଂପାଇଂ ॥୪୪୮୫॥
ରାକ୍ଷାସୁଣି ପ୍ରାୟେ ତ ଦିସୁଅଛି ମୋତେ
କୋଇନ୍ତା ବୋଇଲା ପୁତ୍ର ଭକ୍ଷିବ ଯେହୁ ତୋତେ ॥୪୪୮୬॥
ସତ୍ୟକରି ମୋତେ ଗୋଟିଯେ ମାଗିଲା
ଯେ ଚାରିଭାଇଙ୍କି ସାନ ବୋଲି ନ ଖାଇଲା ॥୪୪୮୭॥
ଭିମ ବୋଇଲା ମାତା ମୋ ଶତ୍ରୁ ହେଲୁ ତୁହି
ଅସୁରି ମୁଖରେ ମୋତେ ଦେବୁ ତୁ ଖୁଆଇ ॥୪୪୮୮॥
ଯେମନ୍ତ ବୋଲୁ ବୋଲୁ କିନ୍ନରି ଉଠିଲା
ଗିଳିବ ବୋଲି ବେନି ପାଟି ବିସ୍ତାରିଲା ॥୪୪୮୯॥
ମଞ୍ଚରେ ଯେକ ପାଟି ଯେକ ପାଟ ଯେ ଆକାସ
ଗିଳିଦେଇ ଭିମକୁ ପୁରୋଇ ଗର୍ଭଗତ ॥୪୪୯୦॥
ନକୁଳ ସହଦେବ ଯୁଧିଷ୍ଠି ଅର୍ଜୁନ
କରିଣ ହାହାକାର ଧନୁରେ ଦିଲେ ଗୁଣ ॥୪୪୯୧॥
ଯେକମୁଖ ହୋଇ ବିନ୍ଧିଲେ ନାରାଜ
ତିଳେକ ନ ଭେଦିଲା ଦଇତୁଣି ଅଙ୍ଗ ॥୪୪୯୨॥
ଗର୍ଭରେ ଥାଇ ଭିମ ବିଶ୍ୱମୁର୍ତ୍ତି ହେଲା
ଫାଟିଗଲା ପଞ୍ଜରା ଦଇତୁଣିଂ ମଲା ॥୪୪୯୩॥
ମୃତପିଣ୍ଡ ପଡ଼ିଲା ପ୍ରାଣଗଲା ସ୍ୱର୍ଗଆଳ
ଯୁଧେଷ୍ଠିଠାରେ ମିଳିଲା ପଣ୍ଡୁର ଦୁଲାଳ ॥୪୪୯୪॥
ଚାରିଭାଇ ବସିଣ କୁହାକୁହି ହେଲେ
ସଙ୍କର ମୁଖ ଚାହିଂ ଗିରିଜା ପଚାରିଲେ ॥୪୪୯୫॥
ଚାରିପୁତ୍ରଙ୍କୁ ସେ କୋଇନ୍ତା ସ୍ନେହ କଲା
ଭିମକୁ କିପାଇଂ କିନ୍ନରି ମୁଖେ ଦେଲା ॥୪୪୯୬॥

ଯେ କଥା ମୋର ଆଗେଂ କହ ହେ ସୁଳଧର
ବଦୟନ୍ତି ସଦାସିବ ବଡ଼ଗିଳା ସେ ଅଟଇ ବିକୋଦର ॥୪୪୯୭॥
କୋଇଂତା ସହିତେ ଚାରିପୁତ୍ର ଯେତେ ଖାଇ
ଯେକ ଭିମସେନକୁ ତେତେକ ଦିଅଇ ॥୪୪୯୮॥
ତଦ୍ୟପି ଭିମର ନ ପୁରଇ ପେଟ
ଦେଖିଣ କୋଇଂତା ଯେ ହୁଅଇ ବିମୁଖ ॥୪୪୯୯॥
ତେଣୁ ବିଚାରିଲା କିନ୍ନରି ଯାକୁ ଖାଉ
ଯେହାର ପେଟକଷ୍ଟ ମୋ ଦେହ ନ ସହୁ ॥୪୫୦୦॥
ଯେମନ୍ତ ବୋଲି କୋଇନ୍ତା ଥିଲେ ଯେ ବିଚାରି
ବଦୟନ୍ତି ପାର୍ବତି ସୁଣ ହେ ତ୍ରିପୁରାରି ॥୪୫୦୧॥

## ଜତୁଗୃହ ଦାହ କଥା

ଉବୁରିଲେ ପାଣ୍ଡବେ ଘର ଯେ ପୋଡ଼ିଗଲା
ଯେ କଥା ଦୁର୍ଯ୍ୟୋଧନ ଜାଣିଲା କି ନଜାଣିଲା ॥୪୫୦୨॥
ସୁଣଗୋ ସହି ବୋଲି ବୋଲନ୍ତି ତ୍ରିଲୋଚନ
ପାହିଲା ରଜନିଂ[1] ସେ ଜାଣିଲା ଦ୍ରିଯୋଧନ ॥୪୫୦୩॥
ଦେଖିଲା ଜଉଘର ଯାଇଅଛି ପୋଡ଼ି
ସାତଗୋଟି ମୁଣ୍ଡ ଯେ ତହିଂ ଅଗ୍ନିରେ ସେ ଯେ ଅଛି ପଡ଼ି ॥୪୫୦୪॥
ଦ୍ରିଯୋଧନ ଦୁସାସନ ଆବର ବିର କର୍ଣ୍ଣ
ଆନନ୍ଦ ହୋଇଲେ ସେ ଦେଖିଣ ତିନି ଜଣ ॥୪୫୦୫॥
ଗାନ୍ଧାରି ଧୃତିରାଷ୍ଟ୍ର ସଞ୍ଜୟେ ବିଦୁର
ବ୍ୟାସ ଭିଷ୍ମଦେବ ସକୁନି ସଲ୍ୟବିର ॥୪୫୦୬॥
ଯେମାନେ ଦେଖି ତହିଂ ବହୁତ ସୋକ କଲେ
ହୃଦୟର କଥା ସେ କାହାକୁ ନ କହିଲେ ॥୪୫୦୭॥
ଦ୍ୱାରିକାରେ ସୁଣିଲେ ଯାଦବେ ରାମ ହରି
ହସ୍ତିନାରେ ପ୍ରବେସ ହୋଇଲେ ଦଇତାରି ॥୪୫୦୮॥
ଶ୍ରୀହରି ବୋଇଲେ ହୋ କାହିଂ ଜଉଘର
ଯେଡ଼େକ କପଟ ଯେ କିପାଇଂ ତୁମ୍ଭର ॥୪୫୦୯॥
ବିଦୁର ଧୃତିରାଷ୍ଟ୍ର ସଞ୍ଜୟ ସକୁନି
ମିଳିଲେକ ଜଉଘରେ ବ୍ୟାସ ଚକ୍ରପାଣି ॥୪୫୧୦॥
ଅସ୍ଥି ମୁଣ୍ଡ ଦେଖିଣ ଯେ କାନ୍ଦନ୍ତି ଶ୍ରୀହରି
ମାୟାରେ କାନ୍ଦୁଛନ୍ତି ଗୋଟି ଗୋଟି ନାମ ଧରି ॥୪୫୧୧॥
ବ୍ୟାସ ବୋଇଲେ ହୋ ରୋଦନେ କିସ ହେବ
ଆଜକୁ ଛଡ଼ଦିନ ହେଲାନି ମଲେନି ପାଣ୍ଡବ ॥୪୫୧୨॥
କରିବା ପ୍ରେତ କାର୍ଯ୍ୟ କ୍ରିୟା କର୍ମ ଆଚାର
ହେଉ ହେଉ[2] ବୋଲି ବୋଇଲେ ଚକ୍ରଧର ॥୪୫୧୩॥

୧ । ଖ ଓ ଗ ପୋଥି – ରୟଣି
୨ । ଗ ପୋଥି – ହୋଇ ହୋଇ

ଗରୁଡ଼ ପୃଷ୍ଟେ ବସି ଦ୍ୱାରିକାପୁର ଗଲେ
ବଳରାମ ଅଗ୍ରତେ ସକଳ କହିଲେ ॥୪୫୧୪॥
ପାର୍ବତି ପୁଛାକଲେ ସୁଣ ହେ ସଦାସିବ
ରାତ୍ରରେ ପଳାଇଲେ ନ ମଲେ ପାଣ୍ଡେବ ॥୪୫୧୫॥
ଯେଉଂ ସାତ ଜଣ ଅଗ୍ନିରେ ମଲେ ପୋଡ଼ି
ସେ ସେ କେ କେଂ ମୋତେ କହ ହେ ତ୍ରିପୁରାରି ॥୪୫୧୬॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
କ୍ରିତିକାର ବୋଲି ଯେକ ସବରୁଣି ନାମ ॥୪୫୧୭॥
ପାଞ୍ଚଗୋଟି ପୁତ୍ର ତାର ସଙ୍ଗତରେ ଘେନି
କୋଇଂତା ସଙ୍ଗତରେ ହୋଇଲା ମିତଣି ॥୪୫୧୮॥
ଦୟା କରିଣ କୋଇଂତା ଦେଲେ ତାକୁ ଠାବ
ରହିଲା ସବରୁଣି ପାଇଣ ବଡ଼ ଗୌରୋବ ॥୪୫୧୯॥
ରାତ୍ରରେ ଜଉଘରୁ ପାଣ୍ଡବେ ପଳାଇଲେ
ସବରି ପାଞ୍ଚପୁଅ ଅଗ୍ନିରେ ପୋଡ଼ି ମଲେ ॥୪୫୨୦॥
ସବରି ସହିତେଣ ପୁରଞ୍ଜନ ଦ୍ୱିଜ
ଯେହି ସାତଜଣ ବୋଲି କହିଲେ ସଦାସିବ ॥୪୫୨୧॥
ବଳରାମଙ୍କୁ ଚାହିଂଣ ଗୋବିନ୍ଦ ପଚାରିଲେ
ପାଣ୍ଡବଙ୍କର ଘାଟ ଆଜ ହସ୍ତିନାକୁ ଯିବା ଆମ୍ଭେ ॥୪୫୨୨॥
ଯାଅ ବୋଲି ରୋହିଣି ନନ୍ଦନ ଆଜ୍ଞା ଦେଲେ
ସାମଗ୍ରି ଘେନିଣ ହରି ପାଣି ଦେଖା କଲେ ॥୪୫୨୩॥
ହସ୍ତିନା ନଗ୍ରରେ ପ୍ରବେସ ହୋଇଲେ ଗୋବିନ୍ଦ
ଦେଖିଲେ ଦ୍ରିଯୋଧନର ମନ ହିଂ ଆନନ୍ଦ[1] ॥୪୫୨୪॥
ସାମଗ୍ରି ଦେଇଣ ହରି ଗଲେକ ଚଳାଇ
ବିଦୁର ଦେଖିଣ ରୋସାଇ ସମାର୍ଜଇ ॥୪୫୨୫॥
ବିଦୁର ଘରେ ଉଜିଂ ରହିଲେ ସେହିଦିନ
ଆରଦିନ ଦ୍ୱାରିକାରେ ପ୍ରବେସ ଭଗବାନ ॥୪୫୨୬॥
ନିଳାମ୍ବର ଅଗ୍ରତେ ଯେ ସକଳ କହିଲେ
ସଙ୍କର ମୁଖ ଚାହିଂ ଗିରିଜା ପଚାରିଲେ ॥୪୫୨୭॥

## ବକାସୁର ଓ ନିର୍ବାଚକପଟ ବଧ

ପାଣ୍ଡବେ ବନସ୍ତରେ ରହିଣ କିସ କଲେ
କେତେ ଦିନରେଂ ଲେଉଟି ରାଜ୍ୟରେ ମିଳିଲେ ॥୪୫୨୮॥
ବଦୟନ୍ତି ଦିଗବାସ ସୁଣ ଗୋ ଦେବି ଓମା
ପାଣ୍ଡେବଙ୍କର ଅଟଇ ଅଲୋକିତ ଯେ ମହିମା ॥୪୫୨୯॥
ନର୍ମଦା କୁଳେ ରହି ସତରମାସ ଚଳିଲେ
ବିଝଂମାଳ ଗିରି ଇସାନ୍ୟେଂ ରହିଲେ ॥୪୫୩୦॥

୧ । ଖ ପୋଥି – ଦେଖିଣ କଉରୋବେ ହୋଇଲେ ଆନନ୍ଦ

ବକାସୁର ବୋଲିଣ ସେ ଯେକଇ ଅସୁର
ରାହୁର ତନୟ ସେ ମାରିଚିର ଶ୍ୱସୁର ॥୪୫୩୧॥

ଦୃଷ୍ଟପଣ ଆଚରି ସେ ଭ୍ରମଇ ସଂସାରେଣ
ବନସ୍ତେ ବୁଲନ୍ତେ ଦିନେ ଦେଖିଲା ଅର୍ଜୁନ ॥୪୫୩୨॥

ଦଇତ ଦେଖିଣ ସେ ବିସ୍ତାରିଲା ତୁଣ୍ଡ
ଧନୁରେ ଗୁଣ ଦେଇ ଅର୍ଜୁନ ବିନ୍ଧିଲାକ କାଣ୍ଡ ॥୪୫୩୩॥

ବାସେବି ଆଜ୍ଞାରେ ସେ ଅଗ୍ନିସର ଗଲା
ଦଇତ୍ୟ ତୁଣ୍ଡେ ପସି ଗୁହ୍ୟଦ୍ୱାରେ ନିକଳିଲା ॥୪୫୩୪॥

ଯହୁଁ ସେ ଦଇତ୍ୟ ଯେ ହାରିଲାକ ପ୍ରାଣ
ଆକାସେ ସାଧୁ ସାଧୁ ଭଣିଲେ ଦେବଗଣ ॥୪୫୩୫॥

ଯହୁଁ ସେ ବକାସୁର ଅର୍ଜୁନ ହସ୍ତରେ ମଲା
ନିର୍ବାଚକପଚ ଯେ ତାହାର ମଉଳା ॥୪୫୩୬॥

ଦେବତାଙ୍କ ସଙ୍ଗେ ଯେ ହୋଇଲାକ ରିପୁ
ଦିନେ ବିଜେ କଲା କପିଳାସ ପୁରକୁ ॥୪୫୩୭॥

ତ୍ରାସ ପାଇ ସଙ୍କର ଯେ ତେଜିଲେ କପିଳାସ
ଗିରିକି ଉପାଡ଼ି ମୁଣ୍ଡେ ବସାଇ ରାକ୍ଷସ ॥୪୫୩୮॥

ବିଚାରେ ଯେହି ପୁର ପାତାଳକୁ ଯିବି ଘେନି
କେଉଂଠାରେ ରହିବ ଜଟିୟା ସିବ ପୁଣି ॥୪୫୩୯॥

ଯେମନ୍ତ ବୋଲିଣ ସେ କପିଳାସ ନେଇ
ଭିମସେନ ତାହାକୁ ବାଟରେଂ ଭେଟଇ ॥୪୫୪୦॥

ଭିମ ଡାକ ଦେଲା ଦଇତ ରହ ରହ
କାହିଂକି ଯାଉଅଛୁ ସମର ମୋତେ ଦିଅ ॥୪୫୪୧॥

ସୁଣିଣ ଦାନେବ ଯେ ପକାଇ କପିଳାସ
ବୋଇଲା ମାନେବରେ ତୁ ଅଟୁ ମୋର ଗ୍ରାସ[୧] ॥୪୫୪୨॥

ଭିମ ବୋଇଲାରେ ତୋର ଭକ୍ଷ ଯେବେ ମୁହିଂ
ତୋତେ କେହୁ ରଖିବ ଡାକନି ତାକୁ ତୁହି ॥୪୫୪୩॥

ସୁଣିଣ ଦଇତ୍ୟ ଭିମସେନକୁ ଧରଇ
ମାରୁତି ରାକ୍ଷାସ ଧରାଧରି ସେ ହୋଇ ॥୪୫୪୪॥

ସତେସିଂଘ ଗିରିକି ଭିମ ସୁମରିଲା
ଦଇତ୍ୟର କଟିତଟେ ମାଡ଼ିଣ ବସିଲା ॥୪୫୪୫॥

ଲଖେ ବିଦାରିଲା ବୁକୁ ଦତ୍ୟ ଛାଡ଼ିଲାକ ପ୍ରାଣ
ଦେବତା ଯେ ଡାକଦେଲେ ଧନ୍ୟରେ ଭିମସେନ ॥୪୫୪୬॥

ବଦୟନ୍ତି ସଦାସିବ ସୁଣଗୋ ପ୍ରାଣସହି
ଅସୁର ମଲାବେଳେ ମିଳିଲୁଂ ଆମ୍ଭେ ଯାଇ ॥୪୫୪୭॥

ଭିମକୁ ବୋଇଲୁଂ ମାଗ ତୁହି ବର
ଯେଣୁ ତୁ ରଖିଲୁ ଆମ୍ଭ କପିଳାସ ପୁର ॥୪୫୪୮॥

୧ । ଖ ଓ ଗ ପୋଥି – ଭକ୍ଷ

ଭିମସେନ ବୋଇଲା ଯେ ମୋ ହୃଦେଣ ନଥାଇ
କାର୍ଯ୍ୟ ବେଳେ ଯାହା ମାଗିବିଂ ଦେବୁ ସୁଳସାଇଂ ॥୪୫୪୯॥

ଲେଉଟି କପିଳାସ ରଖିଲା ନିଜ ସ୍ଥାନ
ବର ପାଇ ଭିମସେନ କଲାକ ଗମନ ॥୪୫୫୦॥

## ଭାନୁମତୀ ସହିତ ଦୁର୍ଯ୍ୟୋଧନର ବିବାହ

ସୁଣଗୋ ଓମା ବୋଲି ବୋଲନ୍ତି ବିଶ୍ୱନାଥ
କୋସଳ ଦେସର ରାଜା ଅଟଇ ଭାନୁମତ ॥୪୫୫୧॥

ଭାନୁମତି ବୋଲି ତାହାର ଦୁହିତା
ଜାତି ପଦ୍ମିନି ସେ ଜଗତରେ ଜିତା ॥୪୫୫୨॥

ବିଭା ନିମନ୍ତେ ପିତା ତାର ବର ହାଦେ ଲୋଡ଼ି
ଦୁହିତା ବୋଇଲା ସତ୍ୟ ଅଛି ଯେ ମୋହରି ॥୪୫୫୩॥

ପଥର ଗୋଟିୟେ କରତୁ ସ୍ଥାପନ
ଛୁଇଂବା ମାତ୍ରକେ ଯେବେଂ ହୋଇବ ସୁବର୍ଣ୍ଣ ॥୪୫୫୪॥

ସେହି ସେ ମୋହର ହୋଇବ ନିଜ ବର
ସଙ୍ଖ ପଦ୍ମନିଧି ଥିବ ତାହାର ହସ୍ତର ॥୪୫୫୫॥

ଯେମନ୍ତ ବୋଲି ଯହୁଂ ଦୁଲଣି କହିଲା
ପଥର ଥାପି ରାଜା ସ୍ୱୟମ୍ବର କଲା ॥୪୫୫୬॥

ଲକ୍ଷେ ରାଜା ଆସି ମିଳିଲେ ସ୍ୱୟମ୍ବରେ
ହସ୍ତ ଦିଅନ୍ତେ ସୁବର୍ଣ୍ଣ ନୋହିଲା ପଥରେ ॥୪୫୫୭॥

ମୃଗୟା ଯାଇଥିଲେ କର୍ଣ୍ଣ ଦୁର୍ଯୋଧନ
ଗୋଳ ସୁଣି ସେଠାରେ ମିଳିଲେ ବହନ ॥୪୫୫୮॥

ସ୍ୱୟମ୍ବର ପଥରେ ଦୁର୍ଯୋଧନ ହସ୍ତ ଦିଲା
ସମସ୍ତେ ଦେଖୁଂ ଦେଖୁଂ ସୁବର୍ଣ୍ଣ ହୋଇଲା ॥୪୫୫୯॥

ଭାନୁମତି ବରିଲା ବର୍ଣ୍ଣମାଳା ଘେନି
ସାମଗ୍ରି ଭିଆଇଲା କୋସଳ ନୃପମଣି ॥୪୫୬୦॥

ବ୍ୟାସ ସହିତରେ ମିଳିଲେ ସର୍ବଯତି
ଦୁର୍ଯୋଧନକୁ ବିଭା କଲେକ ଭାନୁମତି ॥୪୫୬୧॥

ବହୁତ ଯଉତୁକ କୋସଳ ରାଜା ଦେଲା
ହସ୍ତିନାରେ ପ୍ରବେସ କୁରୁରାଜା ହେଲା ॥୪୫୬୨॥

## ଭୁଜାସୁର ବଧ

କହନ୍ତି ସଦାସିବ ସୁଣଗୋ ଭବାନି
ଦ୍ରୋପଦ ଘରେ ଜାତ ହୋଇଲେ ଜିଷ୍ଣସେନି ॥୪୫୬୩॥

ଅର୍ଜୁନକୁ ଦେବ ବୋଲି ସତ୍ୟ ସେ କରିଥିଲା
ପାଣ୍ଡବେ ମଲେ ବୋଲି ବାରତା ପାଇଲା ॥୪୫୬୪॥

ତେଣୁ କରି ବହୁତ ସେ ଭାଳିଲା ନୃପବର
ଦ୍ରୋପଦ ରାଜ୍ୟରେ ମିଳିଲେ ବ୍ୟାସ ମୁନିବର[୧] ॥୪୫୬୫॥
ଦୁହିତାର[୨] ଚରିତ ଯେ କହିଲେ ନୃପମଣି
ସ୍ୱୟମ୍ବର କର ବୋଲି ବୋଇଲେ ବ୍ୟାସ ମହାମୁନି ॥୪୫୬୬॥
କିସ ସ୍ୱୟମ୍ବର ବୋଲି ପଚାରେ ନୃପନାଥ
ମୁନିବର ବୋଇଲେ ଗୋଟିୟେ ଲାଖ[୩] ପୋତ ॥୪୫୬୭॥
ସୁଣିଣ ନୃପତି ଲାଖେକ ପୋତିଲା
ଅଣଞ୍ଚାସ ତାଳ ଲାଖ ଉଛର୍ଗ ହୋଇଲା ॥୪୫୬୮॥
ତହିଂପରେ ରାଧାଚକ୍ର ବସାଇଲେ ପୁଣ
ତଥିପରେ ବସାଇଲା କନେକର ମିନ ॥୪୫୬୯॥
ଜୟେମାଳା ପୁଷ୍ପ ତହିଂରେ ବାନ୍ଧିଲେ
ଭୁମିରେ ତିର୍ଥଜଳ କୁମ୍ଭେକ ବସାଇଲେଂ ॥୪୫୭୦॥
ଯେମନ୍ତ ଅପୁର୍ବ ଲାଖ ରାଜା ଭିଆଇଲେ[୪]
ଲାଖ ପୋତି ଚାରି ଦିଗେ ଦୁତ ବରଗିଲେ ॥୪୫୭୧॥
ଦୁତ ମୁଖୁଂ ବାରତା ସୁଣି ଅଇଲେ ରାଜନ
ଗୋଷ୍ଟିକରି ରାଜାମାନ ବସିଲେ ଆସ୍ଥାନ[୫] ॥୪୫୭୨॥
ଲାଖ ପୋତାଇଣ ସେ ବ୍ୟାସେ ଚଳିଗଲେ
ପାର୍ବତି ଆଗେଂ ଯେହା ସଙ୍କର କହିଲେ ॥୪୫୭୩॥
ସଦାସିବ ଚରଣେ ମୁହିଂ ଅଟେ ଭୃତ୍ୟ[୬]
ସାରୋଳା ଚଣ୍ଡିକି ଦୟା କର ଗୋ ଜଗମାତ[୭] ॥୪୫୭୪॥
ପାର୍ବତି ପୁଛାକଲେ ସୁଣ ହେ ସଦାସିବ
ଅସମ୍ଭବ ଲାଖତ ରଞ୍ଚିଲା ଦ୍ରୋପଦ ରାଜଦେବ ॥୪୫୭୫॥
କେହୁଂ ଲାଖ ବିନ୍ଧିବ ଯେ ବିଭା ହେବ କନ୍ୟା
ବଦୟନ୍ତି ସଦାସିବ ସୁଣଗୋ ଦେବି ଓମା ॥୪୫୭୬॥
ପାଣ୍ଡବେ ରହିଥିଲେ ଗଣ୍ଡୁକି ନଦି ତିର
ବ୍ୟାସ ମୁନି ପ୍ରବେସ ହୋଇଲେ ତାଙ୍କଠାର ॥୪୫୭୭॥
ଯୁଧିଷ୍ଟି ପଚାରିଲେ ମୁନି କି କାର୍ଯ୍ୟେ ଆଗତ
ବ୍ୟାସେ ବଦୟନ୍ତି ତୁମ୍ଭେ ରହିଲ ବନସ୍ତ ॥୪୫୭୮॥
ଦ୍ରୋପଦ ରାଜାର ଅଛି ଯେକଇ କୁମାରି
ତୁମ୍ଭଙ୍କୁ ଦେବ ବୋଲି ଅଛଇ ସତ୍ୟ କରି ॥୪୫୭୯॥

୧ । ଖ ଓ ଗ ପୋଥି – ଦିନେ ବ୍ୟାସେ ମିଳିଲେ ତାହାର ନବର
୨ । ଗ ପୋଥି – ହସ୍ତିନାର
୩ । ଗ ପୋଥି – ନାଖ
୪ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ
୫ । ଖ ଓ ଗ ପୋଥିରେ ଏହି ଧାଡ଼ି ନାହିଁ
୬ । ଖ ପୋଥି – ସେ ସଦାଶିବଙ୍କର ଅଟଇ ମୁହିଂ ଦାସ
୭ । ଖ ଓ ଗ ପୋଥି – ଶିବ ଦୁର୍ଗା ଚରଣେ ଶରଣ ସାରୋଳ ଚଣ୍ଡୀ ଦାସ

ତୁମ୍ଭର ମୃତ୍ୟୁ ବୋଲି ସୁଣିଲା କର୍ଣ୍ଣର
ଲାଖେକ ପୋତି ଏବେ କରିଛି ସଏମ୍ବର ॥୪୫୮୦॥
ମିଳିବେ ଲକ୍ଷେକ ରାଜା ଚାରିଗୋଟା ଊଣା
ଅର୍ଜୁନ ଲାଖ ବିନ୍ଧି ଆଣିବ ସେହି କନ୍ୟା ॥୪୫୮୧॥
ଯେମନ୍ତ କହି ମୁନି ହୋଇଲେ ଅନ୍ତର
ଯୁଧିଷ୍ଟି ବୋଇଲେ ଯେବେଂ ଚାଲ ବିଳମ୍ବ ନକର ॥୪୫୮୨॥
ଯେତେ ବୋଲି ପାଣ୍ଡବେ ତହୁଂ ଚଳିଗଲେ
ବଇଦେଇ ମଣ୍ଡଳେଂ ପ୍ରବେସ ହୋଇଲେ ॥୪୫୮୩॥
ଯୁଧିଷ୍ଟି ପଚାରିଲେ ସୁଣରେ ସହଦେବ
କେତେଦିନେ ବନବାସ ଆମ୍ଭର ସରିବ ॥୪୫୮୪॥
ଧର୍ମସୁତ ବଚନେ ବୋଇଲେ ମାଦ୍ରିବଳା
ଯେଗାର ବରସ ତିନିମାସ ହୋଇଲା ॥୪୫୮୫॥
ଆଉ ନବମାସେ ସମ୍ପୁର୍ଣ୍ଣ ହୋଇବ
ଯୁଧିଷ୍ଟି ବୋଇଲେ ହୋ ରହିବା ଯେହୁ ରାଜ୍ୟ ॥୪୫୮୬॥
ବେଦଶ୍ରବଣ ବୋଲି ଯେକଇ ବ୍ରାହ୍ମଣ
ତାହା ଗୃହେ ବାସ୍ତୁକରି ରହିଲେ ଛଡ଼ଜଣ ॥୪୫୮୭॥
ରହିଲେ ପାଣ୍ଡବେ ତହିଂ ଗଲା କିଛୁ ଦିନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୪୫୮୮॥
ଭୁଜାସୁର ବୋଲିଣ ଯେକଇ ଅସୁର
ତାହାକୁ ପାଳିକରି ଅଛଇ ନଗ୍ର ଲୋକର ॥୪୫୮୯॥
ବରସକେ ବଳଦ ହଳେଂ ମନୁସ୍ୟ ଗୋଟିୟେ
ଅର୍ଣ୍ଣପିଠା ସଙ୍ଗତେ ଦିଅନ୍ତି ଦଇତ ତାହା ଖାୟେ ॥୪୫୯୦॥
ଯେହି ରୁପେଂ ଦିଅନ୍ତି ସରିଲା ସବୁ ପାଳି
ପଡ଼ିଲାକ ଭାଗ ବେଦଶ୍ରବଣ ବସିଣ ସେହୁ ଭାଳି ॥୪୫୯୧॥
ବ୍ରାହ୍ମଣ ଭାରିଯାକୁ କୋଇଂତା ପଚାରିଲେ
ସେ ବୋଇଲା ଦଇତ୍ୟ ପାଳି ପଡ଼ିଛି ଆମ୍ଭ ଘରେଂ ॥୪୫୯୨॥
ଯେକଇ ନନ୍ଦନକୁ ଦେଲେ ଅପୁତ୍ରିକ ହୋଇବିଂ
ସ୍ୱାମି ନାସ ଗଲେ ବିଧବା ଲଭିବିଂ ॥୪୫୯୩॥
ତେଣୁକରି ଯେବେ ଯେ ଭାଳୁଅଛି ମୁହିଂ
କୋଇଂନ୍ତା ବୋଇଲେ ମୋର ପୁତ୍ରକୁ ଦେବଇଂ ॥୪୫୯୪॥
ଯେମନ୍ତ ବିଚାରନ୍ତେ ହୋଇଲା ସନ୍ଧ୍ୟାକାଳ
ଭିକ୍ଷାରୁଂ ଆସିଣ ଭିମ ରଖିଲା ତଣ୍ଡୁଳ ॥୪୫୯୫॥
ବସିଲା ଶ୍ରମ ତେଜି ହସ୍ତ ପାଦ ଧୋଇ
କାନ୍ଦୁକୁ ଆଉଜିଣ ଛାଡ଼ିଲା ଯେକ ହାଇ ॥୪୫୯୬॥
କୋଇଂତା ବୋଇଲେ ରେ ସୁଣ ବିକୋଦର
ଦଇତ୍ୟର ପାଳି ପଡ଼ିଲା ବ୍ରାହ୍ମଣର ଘର ॥୪୫୯୭॥
ଆମ୍ଭେ ଥାଉଂ ଥାଉଂ ଯଦି ବ୍ରାହ୍ମଣ ନାସଯିବ
ଆମ୍ଭଙ୍କୁ ରଖିବାରେ କିସ ତାର ଲାଭ ॥୪୫୯୮॥

ଭିମ ବୋଇଲା ଗୋ ଜନନି ହେଲୁ ବାଇ
ପରର ଲାଗି କେହୁ ଆପଣା ପ୍ରାଣ ଦେଇ ॥୪୫୯୯॥
କାଳକ ରହିଅଛି ମରିବ ସେହୁ ପୁଣ
ଆମ୍ଭେ କେତେକାଳ ଅବାଂ[1] କରିଅଛୁ ସ୍ଥାନ ॥୪୬୦୦॥
ଯେବେ ନିଷ୍ଟେ ବ୍ରାହ୍ମଣ ଆମ୍ଭଙ୍କୁ ଅଛି ପାଞ୍ଚ
କୁଟୁମ୍ବ ସହିତରେ ତାହା ଘରକୁ ଦେବି ଛେଚି ॥୪୬୦୧॥
ଦଇତ୍ୟଠାରୁଂ ସେ ଯେ ଅଟଇ ବଡ଼ କାଳ
ଆୟୁଷ ଥାଉଂ ଥାଉଂ ପେସିବି ଯମ ଆଳ ॥୪୬୦୨॥
ଯେମନ୍ତ ବୋଲୁ ବୋଲୁ ଯୁଧିଷ୍ଟି ମିଳିଲେ
ବ୍ରାହ୍ମଣର କଷ୍ଟ କୁନ୍ତି ସକଳ କହିଲେ ॥୪୬୦୩॥
ସୁଣିଣ ଧର୍ମସୁତ ହୋଇଲେ ବଇକୁଳ
ବୋଇଲେ ବିକୋଦର ନ ଭାଜଂ ମାତା ବୋଲ ॥୪୬୦୪॥
ଯେଉଂଦିନ ଆମ୍ଭେ ବନସ୍ତରେ ଥିଲୁଂ
ଖରା ଯେ କାକର ହେମ ବରସା ସହିଲୁଂ ॥୪୬୦୫॥
ଯେବେ ବେଦଶ୍ରବଣ ଆମ୍ଭଙ୍କୁ ଦୟାକଲା
ରହିଲୁ ବାସ୍ତୁ କରି ଖଣ୍ଡିଯେ ଆମ୍ଭକୁ ଜାଗା ଛାଡ଼ିଦେଲା[2] ॥୪୬୦୬॥
ତୋଠାରୁ ବ୍ରାହ୍ମଣ ବଡ଼ ସ୍ନେହ ଅଟଇ
ତୁହି ନ ଗଲେ ମୁହିଂ ଯାଉଛି ଚଳାଇ ॥୪୬୦୭॥
ସୁଣି ବିକୋଦର ସେ ବ୍ରାହ୍ମଣଙ୍କୁ ବୋଲଇ
ପୁର୍ବହୁଂ ଦୁଗୁଣ ସାମଗ୍ରି କର ତୁହି[3] ॥୪୬୦୮॥
ସୁଣିଣ ଦ୍ୱିଜବର ସଗଡ଼ି ସଜାଇଲା
ଭିମକୁ ନଦି ତଟରେଂ ଛାଡ଼ିଣ ଅଇଲା ॥୪୬୦୯॥
ସାମଗ୍ରି ଘେନିଣ ସେ ରହିଲା ବିକୋଦର
ସନ୍ଧ୍ୟାକାଳ ହୁଅନ୍ତେ ଆସି ମିଳିଲା ଅସୁର ॥୪୬୧୦॥
ଖଣ୍ଡେ ଦୁରୁ ଭିମସେନ ଦତ୍ୟକୁ ଦେଖିଲା
ତରବର ହୋଇ ସବୁ ସାମଗ୍ରି ଖାଇଦେଲା ॥୪୬୧୧॥
ଦେଖିଣ ଦତ୍ୟ ଯେ ଧାଇଂଲା କୋପ ବହି
ମୋହର ପଦାର୍ଥରେ କିପାଂ ମାନବା ଯାଉ ଖାଇ ॥୪୬୧୨॥
ଯେମନ୍ତ କହି ଦତ୍ୟ ବିଧାୟେ ପ୍ରହାରିଲା
ଚାପୋଡ଼ ମାରି ଭିମ ଯାବୋଡ଼େ ଖାଇଗଲା ॥୪୬୧୩॥
ପୁଣି ଦତ୍ୟ ଝାମ୍ପନ୍ତେ ମାଇଲା ଗୋଇଂଠାୟେ
ସାତ ପାଞ୍ଚ ଭାର ପିଠା କଲେ କରି ଖାୟେ ॥୪୬୧୪॥

୧ । ଖ ପୋଥି – ଆମ୍ଭେ କେତେକାଳ ଅଛୁ ତାହାର ଭୁବନ
୨ । ଖ ଓ ଗ ପୋଥି – ରହିଲୁ ଆମ୍ଭେ ବାସ୍ତୁ ଖଣ୍ଡିୟେ ଛାଡ଼ିଦେଲା
୩ । ଖ ପୋଥିରେ ନିମ୍ନ ଦୁଇ ଧାଡ଼ି ଅଧିକ ଅଛି–
ଭୀମର ବଚନେ ଯେ ଦ୍ୱିଜବର ଗଲା
ବହୁ ସମ୍ଭାରରେ ସାମଗ୍ରୀ ସେହୁ କଲା

ଦାନେବ ବୋଇଲାରେ ନ ମରି ତୁହି ଜିଉଂ
ମୁହିଂ ଦେଖୁ ଦେଖୁଂ ମୋର ସାମଗ୍ରି ଖାଇଯାଉ ॥୪୬୧୫॥
ଭିମ ବୋଇଲାରେ ଦଣ୍ଡେକ ରହ ତୁହି
ବେନି ସତେ ଭାର ଆଉ ଉବୁରା ହୋଇଛଇ ॥୪୬୧୬॥
ଯେହା ଖାଇ ସାରିଣ ତୋତେ ସେ ଖାଇବିଂ
ଯେତେ ବୋଲି ଭିମ ଯାବୋଡ଼େ ଦିଲା ପୁଣି ॥୪୬୧୭॥
ପିଠାପଣା ଅନ୍ନ ସରିଲା ଯେତେବେଳେ
ମାଡ଼ି ବସିଲା ବିକୋଦର ଦୈତ୍ୟର ବକ୍ଷସ୍ଥଳେ ॥୪୬୧୮॥
ଚାପିଲା କଣ୍ଠ ତଟ ଦଇତ୍ୟ ପ୍ରାଣ ଯାଇ
ବୃକ୍ଷକୁ ମୃତପିଣ୍ଡ ରଖିଲା ଆଉଜାଇ ॥୪୬୧୯॥
ଲେଉଟି ଗ୍ରାମକୁ ନିକଟେ ମିଳିଲା ପାବେନି
ତେତେବେଳେ ଅର୍ଦ୍ଧରୁ ଯେ ଖସିଲା ଯାମିନିଂ[1] ॥୪୬୨୦॥
ଗୃହରେ ପ୍ରବେସ ହୋଇଲା ବିକୋଦର
ସହଦେବ ବୋଇଲା ସୁଣ ଯୁଧିଷ୍ଟି ଠାକୁର ॥୪୬୨୧॥
ଚାଲ ଯେଠାରୁ ଆମ୍ଭେ କରିବା ଗମନ
ରାତ୍ର ପାହିଲେ ରାଜା ହୋଇବେ ଭିମସେନ ॥୪୬୨୨॥
ଯେ ରାଜ୍ୟର ଲୋକେ ସବୁ ସତ୍ୟ କରିଛନ୍ତି
ଅସୁରକୁ ଯେ ମାରିବ ତାକୁ କରିବା ନୃପତି ॥୪୬୨୩॥
ଯେବେ ଠାକୁରଙ୍କ ହସ୍ତେଂ ମଲା ଭୁଜାସୁର
ନୃପତି ନୋହିଲେ ଭିମ ହୋଇବ ବଳତ୍କାର ॥୪୬୨୪॥
ଯୁଧିଷ୍ଟି ବୋଇଲେ ଯେବେ ଯେ ରୁପେ ଅଛଇ
ଦ୍ରୋପଦର ଲାଖ କେମନ୍ତେ ବିନ୍ଧିବ ଧନୁର୍ଦ୍ଧଇ ॥୪୬୨୫॥
ଏମନ୍ତ ବୋଲି ବୋଇଲେ ସୁଣରେ ଭିମସେନ
ଅନ୍ୟାୟେ କଲେ ବାବୁ ଯେହୁ ନଗ୍ର ଜନ ॥୪୬୨୬॥
ଦଇତ୍ୟର ପାଳିକରେ ତୋତେ ସମର୍ପିଣ ଦିଲେ
ଚାଲ ପଳାଇବା ବାବୁ ନ ଥିବା ଯେହିଠାବେଂ ॥୪୬୨୭॥
ବିକୋଦର ବୋଇଲେ ଠାକୁରେ ଚାଲ ଯେହିକ୍ଷଣି
ଛଡ଼ ଜଣେ ଗମନ କଲେକ ରୟେଣି ॥୪୬୨୮॥

## ଭୀମଙ୍କର ହିଡ଼ିମ୍ବିକ ଦୈତ୍ୟ ବଧ ଓ ହିଡ଼ିମ୍ବିକୀ ସହିତ ବିବାହ

ପ୍ରବେସ ହୋଇଲେ ଯାଇ ହିଡ଼ମ୍ବିକ ବନେ
ରାତ୍ର ପାହିଲା ଉଦୟେ ହୋଇଲେ ନିରଞ୍ଜନେ ॥୪୬୨୯॥
ଯୁଧିଷ୍ଟି ବୋଇଲେ ହୋ ଥିବା ଯେହିଠାର
ଫଳ ଗୋଡ଼ାୟେ ଆଣରେ ବିକୋଦର ॥୪୬୩୦॥

୧ । ଖ ପୋଥି – ଦେଖିଲେ ଅର୍ଦ୍ଧେକ ଯେ ହୋଇଛି ରଜନୀ
୧ । ଗ ପୋଥି – ତେତେବେଳେ ଅର୍ଦ୍ଧରୁ ଯେ ପଡ଼ିଲା ରୟଣି

ଆଜ୍ଞା ପାଇ ବିକୋଦର ବହନେ ଚଳିଗଲା
ଅରଣ୍ୟେ ବୁଲନ୍ତେ ହିଡ଼ିମ୍ବିକ ଦତ୍ୟକୁ ଦେଖିଲା ॥୪୬୩୧॥
ଭିମକୁ ଦେଖିଣ ସେ ଧାଇଂଲା ଅସୁର
ତା ସଙ୍ଗେ ଭିମସେନ କଲାକ ସମର[୧] ॥୪୬୩୨॥
ଯେବଣ ଦାନବକୁ ଡରଇ ସୁରପତି
ତାହାକୁ ନାସ କଲା ଯେ ପବନ ସନ୍ତତି ॥୪୬୩୩॥
ହିଡ଼ିମ୍ବିକି ବୋଲିଣ ତାର ଥିଲା ଯେ ଦୁଲଣି
ଭିମ ସଙ୍ଗେ ଯୁଦ୍ଧ କଲା ପିତାର ହତ ସୁଣି ॥୪୬୩୪॥
ଯେତେକ ନାରାଜ ବିନ୍ଧିଲା ବିକୋଦର
ସବୁପଡ଼ି ଚୂର୍ଣ୍ଣ ହେଲା ଅସୁରି ଦେହର ॥୪୬୩୫॥
ଯହୁଂ ବିକୋଦର ତାକୁ ନ ପାରିଲା ଜିଣି
ସ୍ତୁମ୍ଭିଭୁତ ହୋଇଣ ସେ ରହିଲା ପାବେନି ॥୪୬୩୬॥
ବୋଇଲା ଖାଅ ଅବା ରଖ ଅବା ତୁହିଂ
ନୋହିଲେ ମାଗ ବର ଅବସ୍ୟ ଦେବଇ ମୁହିଂ ॥୪୬୩୭॥
ଡରେ ବିକୋଦର ଯାଚିଲା ଯହୁଂ ବର
ହିଡ଼ିମ୍ବିକି ସାନ୍ତହୋଇ ମିଳିଲା ତାହାଠାର ॥୪୬୩୮॥
ବୋଇଲା ପୁରୁଷ ସିରୋମଣି ତୁହି
ଯାହା ମୁଂ ମାଗିବି ନ କରିବୁ ନାହିଂ ॥୪୬୩୯॥
ଭିମସେନ ବୋଇଲା ସତ୍ୟ ସତ୍ୟ ମୋହର
ହିଡ଼ିମ୍ବିକି ବୋଇଲା ତୁ ହୋଇବୁ ମୋର ବର ॥୪୬୪୦॥
ଅପୁର୍ବ ସୁନ୍ଦରି ବୟସେ ସୋଳସା
ଦେଖି ବିକୋଦର ବଳାଇଲା ଆସା ॥୪୬୪୧॥
ହିଡ଼ିମ୍ବିକି ବୋଇଲା ଆସ ମୋହର ଭୁବନ
ସଉଚ ହୋଇଣ ସେ କରିବା ରମଣ ॥୪୬୪୨॥
ବେନି ଜନ ପ୍ରବେସ ହିଡ଼ିମ୍ବିକି ନବର[୨]
ଗନ୍ଧର୍ବ ବେଭାରେ ବିଭା ହୋଇଲା ବିକୋଦର ॥୪୬୪୩॥
ଦୁହେଂ ପତି ପତ୍ନି ହୋଇଲେକ ଯହୁଂ
ଅନେକ ଭାବ ପ୍ରିତି କଲେକ ହାଦେ ତହୁଂ ॥୪୬୪୪॥
ଯହୁଂ ହିଡ଼ିମ୍ବିକ ନାସ ଗଲା ଯୁଦ୍ଧେଂ
ଭିମକୁ ନୃପତି କଲେ ସେହି ରାଜ୍ୟ ମଧ୍ୟେଂ ॥୪୬୪୫॥
ପାର୍ବତି ପୁଚ୍ଛାକଲେ ସୁଣ ହେ ସଦାସିବ
ଭୁଜାସୁରକୁ ଯେ ନାସିଲେ ବିକୋଦର ପାଣ୍ଡେବ ॥୪୬୪୬॥
ନୃପତି ହୁଅନ୍ତା ସେ ଅଇଲେ ପଳାଇ
ବଦୟନ୍ତି ସଦାସିବ ସୁଣଗୋ ପ୍ରାଣସହି ॥୪୬୪୭॥

୧ । ଖ ଓ ଗ ପୋଥି – ମାଲବନ୍ଧ କଲାକ ବିକୋଦର
୨ । ଖ ପୋଥି – ହୋଇଲେ ନବର

ସେ ରାଜ୍ୟ ଲୋକେ ସବୁ ପସିଲେ ସମସାନ[୧]
ଦେଖିଲେ ଦଇତ୍ୟ ଛିଡ଼ା ହୋଇଅଛି ପୁଣ ॥୪୬୪୮॥
ବୋଇଲେ ଦୈତ୍ୟ[୨] ଯେ ହୋଇଅଛି ଛିଡ଼ା
କାଲି ଆସିଥିଲା କେବଣ ବାପୁଡ଼ା ॥୪୬୪୯॥
ସେହି ପଳାଇଲା ପୁରି ନାହିଂ ଯେହାର ପେଟ
ଆମ୍ଭଙ୍କୁ ଖାଇବ ବୋଲି ଚାହିଂଛି ମଟମଟ ॥୪୬୫୦॥
ଥୋକାୟେ ବୋଇଲେ ଦେଖିବା ଆସନି
ଦେଖିଲେ ଦାନବ ପିଣ୍ଡରେ ପ୍ରାଣ ନାହିଂ ॥୪୬୫୧॥
ବିଚାରିଲେ ଯେହାକୁ କେହୁ ସେ ଗଲା ନାସି
ସଂପୁର୍ଣ୍ଣେ ପିଣ୍ଡ ଅଛି ପ୍ରାଣ କେ ନେଲା ସୋସି ॥୪୬୫୨॥
ବେଦଶ୍ରବଣକୁ ପଚାରି ଆଦି ଅନ୍ତ[୩]
ବୋଇଲା ମୋ ଗୃହେ ଥିଲେ ଯେଉଁ ବିପ୍ର[୪] ॥୪୬୫୩॥
ଧୁମୁସା ବ୍ରାହ୍ମଣକୁ ପ୍ରବର୍ତିଲି ମୁହିଂ
ସେହୁ ନାସିଗଲା ବୋଲିଣ ଗୋଡ଼ାଇ ॥୪୬୫୪॥
ସେ ନୃପତି ହୋଅନ୍ତା ବୋଲିଣ ବିଚାରିଲେ
ଭିମକୁ ନ ଦେଖି ବେଦଶ୍ରବଣକୁ ରାଜା କଲେ ॥୪୬୫୫॥

## ହିଡ଼ିମ୍ବିକୀପୁରରୁ ଭୀମକୁ ଆନୟନ

ଗିରିଜା ପଚାରିଲେ ସୁଣ ହେ ସଦାସିବ
ରାଜାପଣକୁ ଡରି ପଳାଇଲେ ପାଣ୍ଡେବ ॥୪୬୫୬॥
ଲେଉଟି ରାଜା ତ ହୋଇଲା ବିକୋଦର
ଅବିସେକ ହୋଇଲା ହିଡ଼ିମ୍ବିକି ସଙ୍ଗତର ॥୪୬୫୭॥
ଭିମକୁ ନ ଦେଖି କିସ କଲେକ ଯୁଧିଷ୍ଟି
ଯେ କଥା ମୋର ଆଗେ କହ ହେ ଧୂଜଟି ॥୪୬୫୮॥
ସୁଣଗୋ ଓମା ବୋଲି ବୋଲନ୍ତି ମହେସ
ହିଡ଼ିମ୍ବିକ ପୁରେ ଭିମ ରହିଲା ପାଞ୍ଚମାସ ॥୪୬୫୯॥
ସଂଗ୍ରାମେ ଅତ୍ରିପୁତି ସେ ଭୋଜନେ ଅତ୍ରିପୁତି
ସୃଙ୍ଗାରେ ଅତ୍ରିପୁତି ସେ ପବନ ସନ୍ତତି ॥୪୬୬୦॥
ପ୍ରଥମେ ସ୍ତିରି ସଙ୍ଗେ ସୃଙ୍ଗାର ତାର ହୋଇ
ବହୁତ କ୍ରିଡ଼ାରଙ୍ଗ କଉତୁକ କରଇ ॥୪୬୬୧॥
ଯେକେ ହେଂ ରାଜାପଣ ଖଟିଲେ ନଗ୍ରଜନ
ମଣିମା ମଣିମା ବୋଲି ସୁଭିଲା ବୟାଣ ॥୪୬୬୨॥
ଭୋଳ ହୋଇଣ ତହିଂ ରହିଲେ ବିକୋଦର
ସୁଣଗୋ ପ୍ରିୟା ବୋଲି ବୋଲନ୍ତି ସଙ୍କର ॥୪୬୬୩॥

୧ । ଗ ପୋଥି – ଗମିଲେ ମସାଣ
୨ । ଖ ଓ ଗ ପୋଥି – ବିଚାରିଲେ ଅସୁର
୩ । ଖ ପୋଥି – ପ୍ରବର୍ତ୍ତି ଥିଲି ମୁହିଂ
୪ । ଖ ପୋଥି – ସେହି ନାଶି ଗଲା ବୋଲିଣ ତାହାକୁ ଗୋଡ଼ାଇ

ଫଳ ଆଣିବାକୁ ଯୁଧିଷ୍ଠି ଥିଲେ ପେସି
ନଇଲାକ ବିକୋଦର ହୋଇଲାକ ଆସି ନିସି ॥୪୬୬୪॥
ଭିମକୁ ତଲେ କରିଂ ସମସ୍ତେ ଥିଲେ ରହି
ଫଳମୁଳ ନ ପାଇଣ ଉପବାସେଂ ସୋଇ ॥୪୬୬୫॥
ଯୁଧିଷ୍ଠି ପଚାରିଲେ ସୁଣରେ ସହଦେବ
ବନସ୍ତୁଂ ନଇଲା କିପାଂ ବିକୋଦର ପାଣ୍ଡବ ॥୪୬୬୬॥
ସହଦେବ ବୋଇଲା ଯେ ବନସ୍ତକୁ ଗଲେ
ହିଡ଼ମ୍ବିକ ଦତ୍ୟକୁ ହେଳେଣ ନାସକଲେ ॥୪୬୬୭॥
ହିଡ଼ମ୍ବିକି ବୋଲି ଥିଲା ତାହାର ଦୁଲଣି
ଠାକୁରଙ୍କ ସଙ୍ଗତେ ଯୁଦ୍ଧ କଲା ପୁଣି[2] ॥୪୬୬୮॥
ଯୁଦ୍ଧରେଂ ହାରିଂ ଦେବେ ଯାଚିଲେ ତାକୁ ବର
ବୋଇଲାତ ଭାରିଯା ହୋଇବି ତୋହର ॥୪୬୬୯॥
ତାହାକୁ ବିଭା ସେ ଯେ ହୋଇଲେ ବିକୋଦର
ସେ ରାଜ୍ୟର ଲୋକେ ରାଜପାଟ ବାନ୍ଧିଲେ ସିରର ॥୪୬୭୦॥
ରାଜା ହୋଇ ରହିଲେ ହିଡ଼ମ୍ବିକି ସଙ୍ଗତର
ସୁଣିଣ ଆଷ୍ଚାର୍ଯ୍ୟ ସେ ହୋଇଲେ ନୃପବର ॥୪୬୭୧॥
ବୋଇଲେ ସହଦେବ ଘେନି ଆସ ତାହାଙ୍କୁ
ବ୍ୟାସ କହିଛନ୍ତି ଯିବା ଦ୍ରୋପଦ ରାଜ୍ୟକୁ ॥୪୬୭୨॥
ଯୁଧିଷ୍ଠି ଆଜ୍ଞାରେ ସହଦେବ ଗଲା
ଜଗତି ଉପରେ ଭିମ ବସିଛି ଦେଖିଲା ॥୪୬୭୩॥
ନମସ୍କାର କରିଣ ସହଦେବ ଡାକଇ
ଆସ ହୋ ଶିଘ୍ରେ ଯିବା ଯୁଧିଷ୍ଠି ଆଜ୍ଞା ହୋଇ ॥୪୬୭୪॥
ଭିମସେନ ବୋଇଲା ଯୁଧିଷ୍ଠି ବୋଲି କେହୁଂ
ତୁ ଯେଡ଼େ ଭଳିରେ ମୋର ଆଗରେ ବସିଣ କଥା କହୁଂ ॥୪୬୭୫॥
ଭିକ୍ଷା ମାଗିବାକୁ ଯଦି ଆସିଛୁ ବ୍ରାହ୍ମଣ
କହନି କେତେ ପ୍ରାଣି ଦେବି ତେତେ ମାଣ ॥୪୬୭୬॥
ସହଦେବ ବୋଇଲା ଆମ୍ଭେ ପାଞ୍ଚ ସହୋଦର
ଚାରିଭାଇ ଅଛୁ ଆମ୍ଭେ ଗୋଟିଯେ ନିଲା ଚୋର ॥୪୬୭୭॥
ମାତା ସହିତେଂ ଆମ୍ଭେ ଅଛୁଂ ପାଞ୍ଚଜଣ
ଭିମସେନ ବୋଇଲା ଯେବେ ନିଅ ପାଞ୍ଚମାଣ ॥୪୬୭୮॥
ଯେବଣ ଭାଇକିରେ ଚୋର ତୁମ୍ଭର ନିଲା
ଠାବକରି ଆସରେ ଚୋରକୁ ଦଣ୍ଡ ଦିଆଇବା ॥୪୬୭୯॥
ମୁକୁଳାଇ ଦେବାରେ ତୋହର ସହୋଦର
ସହଦେବ ବୋଇଲା ତାଙ୍କୁ ଛାଡ଼ି ଦେଲାଣି ଚୋର ॥୪୬୮୦॥

୧ । ଖ ପୋଥି – ବାଟ ଚାହିଂ
୨ । ଖ ପୋଥି – ସେ କଲାକ ଗୋଳଧ୍ୱନି
୨ । ଗ ପୋଥି – ଗୋଳକଲା ପୁଣି

ଯେହି ରାଜ୍ୟରେ ସେ ହୋଇଅଛି ଦଣ୍ଡଧାରି
ମୋତେ ନ ଚିହ୍ନିଲା ସେ ସହୋଦର ଭାଇ ବୋଲି ॥୪୬୮୧॥
ଭିମ ବୋଇଲା ଯେବେ ତୋ ଭ୍ରାଥ ତୋତେ ନ ଚିହ୍ନିଲା
କର୍ମ ତୋର ମନ୍ଦ ବହନେ ଯେଥୁ ପଳା ॥୪୬୮୨॥
ଯେତେ ବୋଲି ଭିମସେନ ଯେ ତରାଟିଲା ଆଖି
ଡରେ ସହଦେବ ପଳାଇଲା ଘୁଞ୍ଚି[1] ॥୪୬୮୩॥
ଯୁଧିଷ୍ଠିଙ୍କ ଅଗ୍ରତେ ଯାଇ କହିଲା ସମାଚାର
ଧର୍ମସୁତ ବୋଇଲେ ଭେଳା ବୁଡ଼ିଲା ମୋହର ॥୪୬୮୪॥
ଯାଅରେ ଅର୍ଜୁନ ଭିମକୁ ଘେନିଣ ଆସ ତୁହି
ବିଶ୍ୱାସ କହିବୁ ବାବୁ ଆଷ୍ଟଂକଥା ଯେ ନ କହି ॥୪୬୮୫॥
ଯୁଧଷ୍ଠିଙ୍କ ଆଜ୍ଞାରେ ଚଳିଲା ଫାଲଗୁନି
ପ୍ରବେସ ହୋଇଲା ଯହିଂ ଅଛି ଭିମ ନୃପମଣି ॥୪୬୮୬॥
ବସିଛି ମାରୁତି ଯେ ସଭା ମଣ୍ଡାଇଣ
ସିରରେ ମୁକୁଟ ଯେ ଦିସଇ ସୋଭାବନ ॥୪୬୮୭॥
ତାଡ଼ ତୋଡ଼ର ବାହୁଟି ବିଦମାଳି
ଡାହାଣେ ପାଟଖଣ୍ଡା ବାମେ ବିରଛୁରି ॥୪୬୮୮॥
ସୁବର୍ଣ୍ଣର କଠାଉ ମାଡ଼ିଛି ପାଦର
ବସିଅଛି ଗଜଦନ୍ତ ପଲଙ୍କ ଉପର ॥୪୬୮୯॥
ଭୃତ୍ୟ ଜନମାନେ ଯେ ଚାମର ଢାଳନ୍ତି
ମଣିମା ମଣିମା ବୋଲି ଖୁଣ୍ଟିଆ ଡାକଦେନ୍ତି ॥୪୬୯୦॥
ଇନ୍ଦ୍ରର ସମାନେ ଦିସଇ କୁନ୍ତିବଳା
କାଳଚକ୍ର ପ୍ରାୟେକ ଫେରାଇ ବେନି ଡୋଳା ॥୪୬୯୧॥
ଦେଖିଣ ଅର୍ଜୁନ ଯେ ଭୟରେ ତ୍ରାସ ପାଇ
ଡର ଡର ହୋଇଣ ଭିମକୁ ଉଳଗଇ ॥୪୬୯୨॥
ଭିମ ବୋଇଲା କି କାରଣେ ଅଇଲ ପଣ୍ଡାଯେ
ଅର୍ଜୁନ ବୋଇଲା ତୁମ୍ଭଙ୍କୁ ଲୋଡ଼ନ୍ତି ଧର୍ମରାଯେ ॥୪୬୯୩॥
ମୃଗୟା ଆସିଣ ତ ରହିଲ ଯେଠାବର
ମୁହିଂ ଯେ ସର୍ବସାଚି ତୁମ୍ଭଙ୍କୁ ନେବି ଘର ॥୪୬୯୪॥
ସୁଣିଣ କୋପିତ ସେ ହୋଇଲା ବିକୋଦର
ଧର୍ମ ପୁରୁଷ ଅଛିରେ ଆକାସ ମଣ୍ଡଳର ॥୪୬୯୫॥
ସେ କିପାଇଂରେ କରନ୍ତା ମୋତେ ଲୋଡ଼ା
ମିଥ୍ୟାଭାସି ଲୋଭି ତୁରେ ଅଟୁରେ ବାପୁଡ଼ା ॥୪୬୯୬॥
ଖଳ ପରପଞ୍ଚ ତୁ ଯେ ନ ଦେଖିଲା କଥାମାନ କହୁ
ପଳାଇ ଯାଅ ତୁହି ପ୍ରାଣ ନ ପାଇବୁ ଆଉ ॥୪୬୯୭॥
ସେବକମାନଙ୍କୁ ବୋଇଲା ମାର ଯେ ଦ୍ୱିଜକୁ
ଭୟରେ ଅର୍ଜୁନ ସେ ବିଚାରେ ମନକୁ ॥୪୬୯୮॥

୧ । ଖ ପୋଥି – ତାହାର ଚକ୍ଷୁ ଦେଖି

ଭୋଳରେ ନଚିହ୍ନି ହୋଇଲେନି ପାସାଣ୍ଡ
ସେବକ ହସ୍ତରେ ଦିଆଉଅଛି ଦଣ୍ଡ ॥୪୬୯୯॥
ଯାଉଅଛି ପଳାଇବି କହିବିଂ ଠାକୁରଙ୍କୁ
ଯେତେ ବୋଲି ବାସେବି ଗମିଲା ମଡ଼ିୟାକୁ ॥୪୭୦୦॥
ଯୁଧିଷ୍ଠି ଅଗ୍ରତେ ଯେ ସକଳ କହିଲା
ସୁଣିଣ ସୋକଭର ହୋଇଲେ ଧର୍ମବଳା ॥୪୭୦୧॥
ଭିମର ବିହୁନେ ତ ଦିବସ ଅନ୍ଧକାର
ପ୍ରାପତ ଭେଲା ବୁଡ଼ିଯାଉଛି ଜଳର ॥୪୭୦୨॥
ସହଦେବ ବୋଇଲେ ସୁମର ଚକ୍ରଧର
ସେହି ସେ ଅଇଲେ ଆଣିବେ ବିକୋଦର ॥୪୭୦୩॥
ସହଦେବ କହନ୍ତେ ଯୁଧିଷ୍ଠି ମଉନ
ଚିନ୍ତିଲେ ଶ୍ରୀହରି କମ୍ପିଲା ଆସନ ॥୪୭୦୪॥
ଗରୁଡ଼ ପୃଷ୍ଟରେ ବସିଲେ ବନମାଳି
ଯୁଧିଷ୍ଠିଙ୍କ ସନ୍ନିଧ୍ୟେ ସେହିକ୍ଷଣି ମିଳି ॥୪୭୦୫॥
ଯୁଧଷ୍ଟିଙ୍କି ଶ୍ରୀହରି କଲେକ ନମସ୍କାର
ହରିଙ୍କି ଉଳଗିଲେ ସହଦେବ ଅର୍ଜୁନ ନକୁଳ ॥୪୭୦୬॥
ବଦୟନ୍ତି ଶ୍ରୀହରି ସମସ୍ତେ ତୁମ୍ଭେ ଅଛ ରହି
ଭିମସେନ ତୁମ୍ଭର ଯାଇଅଛି କାହିଂ ॥୪୭୦୭॥
ଯୁଧିଷ୍ଠି ବୋଇଲେ ସେ ହିଡ଼ିମ୍ବିକ ଦତ୍ୟକୁ ନାସିଲା
ତାହାର ଦୁହିତା ବିଭା ହୋଇ ତହିଂ ରାଜା ହୋଇଲା ॥୪୭୦୮॥
ଯେବେ ଭିମଠାକୁ ତୁମ୍ଭେ ଚଳ ହେ ଭାବଗ୍ରାହିଂ
ଯେମନ୍ତେ ପାର ତାକୁ ଆଣ ମୋର ଠାଇଂ ॥୪୭୦୯॥
ସୁଣିଣ ଭଗବାନ ସହଦେବଙ୍କୁ ସଙ୍ଗେଘେନି
ପ୍ରବେସ ହେଲେ ଯାଇ ଯେଉଂ ରାଜ୍ୟରେ ଅଛଇ ପାବେନି ॥୪୭୧୦॥
ରାଜାର ସିଂହଦ୍ୱାରେ ପ୍ରବେସ ହୋଇଲେ
ଦ୍ୱାର ଛାଡ଼ ବୋଲି ଦ୍ୱାରପାଳକୁ କହିଲେ ॥୪୭୧୧॥
କବାଟ ପାଡ଼ି ଦ୍ୱାରି ବେଗେ ଚଳିଗଲା
ଭିମସେନ ଅଗ୍ରତେ ସେ ସକଳ କହିଲା ॥୪୭୧୨॥
ଭିମସେନ ବୋଇଲା ନ ଛାଡ଼ ଆଜ ଦ୍ୱାର
କାଲି ଦିନ ଦେଖିବା କେମନ୍ତ ଦ୍ୱିଜବର ॥୪୭୧୩॥
ଦ୍ୱାରପାଳ ବୋଇଲା ଦ୍ୱିଜ ଆଜକ ପଠାର
ଆଜି ଅବକାସ କାଲି ଭେଟିବ ନୃପବର ॥୪୭୧୪॥
ସୁଣିଣ ଦଇତାରି ଆଶ୍ଚାର୍ଯ୍ୟ ହୋଇଲେ
ନିକି ନ ଚିହ୍ନଇ ବୋଲି ସହଦେବକୁ ବୋଇଲେ ॥୪୭୧୫॥
ସହଦେବ ବୋଇଲା ତୁମ୍ଭଙ୍କୁ ନ ଚିହ୍ନିବେ ସେହି
ଆଉ ଉପାୟେ ଥିଲେ କର ହେ ଭାବଗ୍ରାହି ॥୪୭୧୬॥
ଯେ ସ୍ଥାନ ଯେହାଙ୍କୁ ଯେମନ୍ତେ ଛଡ଼ାଇବ
ତେବେ ସେ ବିକୋଦର ଆମ୍ଭଙ୍କୁ ଚିହ୍ନିବ ॥୪୭୧୭॥
ସୁଣିଣ ଗରୁଡ଼କୁ କହିଲେ ଭଗବାନ
ଉପାୟେ କରି ତୁହି ଆଣ ହେ ଭିମସେନ ॥୪୭୧୮॥
ଗରୁଡ଼କୁ କହି ହରି ସହଦେବ ଚଳିଗଲେ
ଗରୁଡ଼ ଉଡ଼ି ମିଳିଲା ଭିମର ଅଗଣାରେ ॥୪୭୧୯॥
ହିଡ଼ମ୍ବିକି ସଙ୍ଗେ ଭିମ ପଲଙ୍କେ ଅଛି ବସି
ଦେଖିଲା ଅଗଣାରେ ବସିଛି ଯେକ ପକ୍ଷି ॥୪୭୨୦॥
ଭିମ ବୋଇଲା କାହୁଂ ନ ଦେଖି ନୟନର
କି କାରଣେ ଆଗତ ହୋଇଛୁ ପକ୍ଷିବର ॥୪୭୨୧॥
କିସ ତୋର ନାମ କାହାକୁ ସେବୁ ତୁହି
ଗରୁଡ଼ ବୋଇଲା ମୁଂ ରମ୍ୟେକ ଦ୍ୱିପେଂ ଥାଇ ॥୪୭୨୨॥
ପର ଉପକାରରେ ବଞ୍ଚଇ ସର୍ବଦିନ
ଯେ ଇଛା କରେ ତାକୁ କରଇ ଆରୋହଣ ॥୪୭୨୩॥
ଯହିଂକି ଇଛା ତାର ତହିଂକି ଘେନି ଯାଇଂ
ଚଉଦ ବ୍ରହ୍ମାଣ୍ଡ ମୁଂ କ୍ଷଣକେ ଭ୍ରମଇଂ ॥୪୭୨୪॥
ତୁମ୍ଭେ ନବତନ ସେ ଯେ ହୋଇଛ ନୃପବର
ଇଛା ହୋଇବ ଯେବେ ମୁଂ ଦେଖାଇବି ସଂସାର ॥୪୭୨୫॥
ଭିମ ବୋଇଲା ପକ୍ଷି ଯେବେ ଯେଡ଼େ ଲୋକ
ହୋଇବୁ ଉପଗାରି ମୋତେ ଦେଖାଅ ଜଗତ ॥୪୭୨୬॥
ଆସ ବୋଲି ଗରୁଡ଼ ଯେ ପିଠି ଦେଖାଇଲା
ବସନ୍ତେ ବିକୋଦର ସୁନ୍ୟେ ସେ ଉଡ଼ିଗଲା ॥୪୭୨୭॥
ଅନ୍ତରିକ୍ଷେ ଉଡ଼ିଲା ଯେ ବିନନ୍ତାନନ୍ଦନ
ପ୍ରବେଶ ହୋଇଲା ଯହିଂ ଯୁଧିଷ୍ଠି ଭଗବାନ ॥୪୭୨୮॥
ଶ୍ରୀହରି ପାଦତଳେ ପଡ଼ିଲା ବିକୋଦର
ଦୁତିୟେ ଯୁଧିଷ୍ଠିଙ୍କି କଲା ନମସ୍କାର ॥୪୭୨୯॥
ଭିମକୁ ଚାହିଂଣ ବୋଇଲେ ଧର୍ମନାନ
କାହିଂଥିଲୁ ଛଡ଼ମାସ ବହିଗଲା ଦିନ ॥୪୭୩୦॥
ଭିମସେନ ବୋଇଲା ମୁଂ ନାସିଲି ହିଡ଼ିମ୍ବିକ
ସେ ରାଜ୍ୟ ଲୋକେ ମୋତେ କଲେ ଅବିସେକ ॥୪୭୩୧॥
ଅସୁର ଦୁଲଣିକି ହୋଇଲଇଂ ବିଭା
ରହିଲି ରାଜା ପଣେଂ ପାସୋର ତୁମ୍ଭେ ଗଲା ॥୪୭୩୨॥
ତୁମ୍ଭେ ଠାବ କରି ନ ଗଲ ମୋତେ ପୁଣି
ଗରୁଡ଼ ବାପୁଡ଼ା ଯେ ଅଇଲା ମୋତେ ଘେନି ॥୪୭୩୩॥
ଭିମକୁ ଦେଖି ହରସ ହୋଇ ଧର୍ମବଳା
କୋଟିୟେ ନିଧି ଯେହ୍ନେ ପ୍ରାପତ ହୋଇଲା ॥୪୭୩୪॥

## ଦ୍ରୌପଦୀ ସ୍ୱୟମ୍ବର ସଭା ବର୍ଣ୍ଣନା

ସହଦେବ ମୁଖ ଚାହିଁ ବୋଇଲେ ହୃସିକେସ
ଆଉ କେତେଦିନ ବାବୁରେ ଅଛଇ ବନବାସ ‖୪୭୩୫‖
ମନ୍ତ୍ରିବର ବୋଇଲା ଅଛଇ ମାସ ତିନି
ଶ୍ରୀହରି ବୋଇଲେ ହୋ ଗମନ କର ପୁଣି ‖୪୭୩୬‖
ଦ୍ରୋପଦ ରାଜା ସେ ଯେ ପୋତି ଅଛି ଲାଖ
ଅର୍ଜୁନ ଯେ ବିନ୍ଧିବ ଦେବ ସେ ଦୋହିତ[୧] ‖୪୭୩୭‖
ଯୁଧିଷ୍ଠିଙ୍କି କହି ହରି ମେଲାଣି ମାଗିଲେ
ଯାଅ ଦୟା କରିଥିବ ଯୁଧିଷ୍ଠି କହିଲେ ‖୪୭୩୮‖
କହିଲେ ଯୁଧିଷ୍ଠି ମୁଁ କେଉଂଠାରେ ଦେଖିବି ଦାମୋଦର[୨]
ଶ୍ରୀହରି ବୋଇଲେ ଦେଖିବ ଦ୍ରୋପଦ ସଭାର ‖୪୭୩୯‖
ଯେତେ ବୋଲି କେସବ ଗରୁଡ଼ ଆରୋହି
ଦ୍ୱାରିକା ଭୁବନ ପ୍ରବେସ ଭାବଗ୍ରାହି ‖୪୭୪୦‖
ରହିଲେ ପାଣ୍ଡବେ ହୋଇଣ ଆନନ୍ଦିତ
ସୁଣଗୋ ଓମା ବୋଲି ବୋଲନ୍ତି ବିଶ୍ୱନାଥ ‖୪୭୪୧‖
ସେ ଦିନ ରଜନି ଯେ ବଞ୍ଚିଲେ ଛଡ଼ ଜଣ
ଆର ଦିନେ ପ୍ରାତକାଳୁଂ ସାରିଲେ ସ୍ନାହାନ ‖୪୭୪୨‖
ଯୁଧିଷ୍ଠି ବୋଇଲେ ସୁଣ ହେ ଭିମସେନ
ଦେହରୁ କାଢ଼ ରାଜ ଅଳଙ୍କାରମାନ ‖୪୭୪୩‖
ଭିକ୍ଷାସିମାନଙ୍କର ନୁହଁଇ ଯେହୁ ଯୋଗ୍ୟ
ଲୋକେ ଦେଖି ବୋଲିବେ ଯେ ବ୍ରାହ୍ମଣେ ଚଉର୍ଯ୍ୟ ‖୪୭୪୪‖
ଦେହରୁ ଅଳଙ୍କାର କାଢ଼ିଲା ମାରୁତି
ସେ ଠାବରୁ ତେଜିଣ ସେ ପଥ ବହିଯାନ୍ତି ‖୪୭୪୫‖
ଯେମନ୍ତେ ବହୁତ ପଥ ବହିଣ ସେହୁ ଗଲେ[୩]
ସତର ଦିନରେ ଦ୍ରୋପଦ ରାଜରେ ମିଳିଲେ[୪] ‖୪୭୪୬‖
ଦ୍ରୋପଦ ଭୁବନକୁ ଛଡ଼ା ତିନି ଯୋଜନ
କୁସାଣି[୫] ବୋଲିଣ ଯେ ଯେକଇ ସାସନ ‖୪୭୪୭‖
ତହିଂର ନିକଟରେ ଅଛି କୁରାଳର ଘର
ରହିଲେ ପାଣ୍ଡବେ ସେ କୁରାଳ ସାଳର ‖୪୭୪୮‖
ଦ୍ରୋପଦ ରାଜା ସେ କରିଛି ସଏମ୍ବର
ମିଳିଲେ ଚାରି ଉଣା ଲକ୍ଷେକ ନୃପବର ‖୪୭୪୯‖

୧ । ଖ ପୋଥି - ଅର୍ଜୁନ ବିନ୍ଧିବେ ଲାଖ ସମସ୍ତେ ଦେଖିବେ ପ୍ରତ୍ୟକ୍ଷ
୨ । ଖ ଓ ଗ ପୋଥି - ଯୁଧିଷ୍ଠି ବୋଇଲେ ହରି ଦେଖିବି କେଉଂଠାର
୩ । ଖ ଓ ଗ ପୋଥି - ଦୂରପଥ ଚଳିଗଲେ
୪ । ଖ ପୋଥି - ଶୁଣ ଗୋ ଗଉରା ବୋଲି ଶଙ୍କର କହିଲେ
୫ । ଖ ଓ ଗ ପୋଥି - କୁରୁସାଣି

ଲାଖ ବିନ୍ଧିବା ଦେଖିତେ ସେ ଗମିଲେ ବ୍ରାହ୍ମଣେ[୧]
ତାଙ୍କ ସଙ୍ଗତେ ଗମିଲେ ପାଣ୍ଡବେ ପାଞ୍ଚଜଣେ ‖୪୭୫୦‖
ସମସ୍ତଙ୍କୁ ଦ୍ରୋପଦ ସାମଗ୍ରି ଦିଅଇ
କେସନି ମୁଖ ଚାହିଁ ଦ୍ରୌପଦି[୨] ବୋଲଇ ‖୪୭୫୧‖
ଅଲୋକିତ ଲାଖ ତ ପିତା ମୋର କଲା
ଯେତେ ଦିନ ଯାଯେ ତ ଲାଖ କେହି ନ ବିନ୍ଧିଲା ‖୪୭୫୨‖
ସଏମ୍ବର କରନ୍ତେ ବରସେ ଗଲା ବହି
କେହୁ ଯେ ଆସିଅଛି କେହୁ ଯେ ଆସିନାହିଁ ‖୪୭୫୩‖
କେସନି ବୋଇଲା ସୁଣଗୋ ମିତଣି
ଜମ୍ବୁଦ୍ୱିପରେ ଚାରି ଉଣା ଲକ୍ଷେକ ନୃପମଣି ‖୪୭୫୪‖
ମଗଧ ଦେସରୁ ଜରାସନ୍ଧ ଆସିଛଇ
ତା ଠାରେ ଅଛି ଦମଘୋସ ନୃପସାଇଂ ‖୪୭୫୫‖
ପଦ୍ମମଣ୍ଡଳ[୩] ଦେସ ରାଜା ପଦ୍ମ ଯେ କେସରି
ପଶ୍ଚିମ ସୋମରାଷ୍ଟ୍ରେ ଭିମ ଦଣ୍ଡଧାରି ‖୪୭୫୬‖
ମଛ ଦେସରୁଂ ସେ ଯେ ଆସିଛି ତ୍ରିଗତ
ଯେଗାର କ୍ଷେଉଣି ବଳ ଘେନିଣ ବିରାଟ ‖୪୭୫୭‖
ମାନଭଙ୍ଗ ଦେସରୁ ମାନ ଯେ ଅର୍ଜୁନ
ନିଳଉତ୍ପଳ ଦେସରୁ ଆସିଛି ମୃଗସେନ ‖୪୭୫୮‖
ତିତିଙ୍ଗ[୪] ଦେସରୁ କେତୁ ନାମେ ନୃପତି
ପୁଣ୍ଡରିକ ବାସୁଦେବ ରାଜା ଯେ ଆସିଛନ୍ତି ‖୪୭୫୯‖
ଗୁଞ୍ଜାଗଳ ଦେସରୁ ଗୁଞ୍ଜାଗଳ ନୃପତି[୫] ଆସିଛଇ
କାମଚଣ୍ଡି ଦେସରୁ କାମ ଯେ ପାଳ ହିଂ ଆସିଛଇ[୬] ‖୪୭୬୦‖
ମାଳବ ଦେସରୁ କୃପବ୍ରହ୍ମା ଆସିଛଇ
ପଶ୍ଚିମ ସୋମରାଷ୍ଟ୍ରଂରୁ ଭାନୁମତ ଅଟଇ ‖୪୭୬୧‖
ଉଜାଣି[୭] ଦେସରୁ ରାଜା ଅଟଇ ଯେ ଜଗଜେଷ୍ଟି[୮]
ଲବଣ ଦେସରୁ ଆଇଲା ସୁର ରଣକେସି[୯] ‖୪୭୬୨‖

୧ । ଖ ଓ ଗ ପୋଥି - ଅର୍ଜୁନର ନିମନ୍ତେ ତହୁଂ ଗମିଲେ ବ୍ରାହ୍ମଣ
୨ । ଖ ଓ ଗ ପୋଥି - ଦ୍ରୋପଦୀ
୩ । ଖ ପୋଥି - ପଦ୍ମନାଭ
୩ । ଗ ପୋଥି - ପଦ୍ମମଦ
୪ । ଖ ପୋଥି - ଉତଙ୍ଗ
୪ । ଗ ପୋଥି - ଉଡ଼ଙ୍ଗ
୫ । ଖ ଓ ଗ ପୋଥି - କମଳାକର
୬ । ଖ ଓ ଗ ପୋଥି - କାମକୁଣ୍ଡି ଦେଶରୁ ଆସିଛି କାମପାଳ ହିଂ
୭ । ଖ ଓ ଗ ପୋଥି - ଉଦାଣ୍ଡି
୮ । ଖ ଓ ଗ ପୋଥି - ଜଗଜେଠି
୯ । ଖ ପୋଥି - ସୁରକେଶୀ
୯ । ଖ ପୋଥି - ସୁରଣକେଶୀ

ବିଚିତ୍ର ଦେସରୁ ରାଜା ଆସିଛି ଜମାଗୋଷ୍ଟ[୧]
ବସିଛି ଦରଦସେନ ତାହାର ନିକଟ ॥୪୭୬୩॥
ଲକ୍ଷେ ରାଜା ମଉଡ଼ମଣି ରାଜା ଦୁର୍ଯୋଧନ
ଅଙ୍ଗ ଦେସରୁ ଯେ ଆସିଛି ରାଜା କର୍ଣ୍ଣ ॥୪୭୬୪॥
ସାକଲ୍ୟ ଦେସରୁ ସେ ଆସିଛି ଗଣପତି
ମନିଳ[୨] ଦେସରୁ ଆସିଛି ସିଂଘନାଦ ନୃପତି ॥୪୭୬୫॥
ଜ୍ୟୋତିସ ଦେସରୁ ଆସିଛି କଳିଙ୍ଗସେନ
ତାହାର ପାରୁସରେ ତ୍ରିହୋତ୍ର ରାଜନ ॥୪୭୬୬॥
ଜୁଳାବାହୁ ଦେସରୁ ଆସିଛି ଅଜଟ ବାହୁ
ତାହାର ପାରୁସେଂ ବସିଛି ରଣରାହୁ ॥୪୭୬୭॥
କୌସିକ ଦେସରୁ କନାଉଜ ନୃପବର
କେତୁମାଳି ବସିଛି ଯେ ତାହାର ପାରୁସର ॥୪୭୬୮॥
ଅଯୋଧ୍ୟା ଦେସରୁ ଯେ ଆସିଛି ରିତୁପନ୍ନ
ଭୁମିକେସରି ରାଜା ସେ ଯେ ବସିଛି ଆସ୍ତାନ ॥୪୭୬୯॥
ଚୌରି ମଣ୍ଡଳରୁ ଚାରଣସେନ ନୃପବର
କାଉଂରି[୩] ଦେସରୁ ଆସିଛି କାମେଶ୍ୱର ॥୪୭୭୦॥
ବିରାକୁଳ ଦେସରୁ ଆସିଛି ବିରବର
ଯେହିରୁପେ ଆସି ଅଛନ୍ତି ସେ ନୃପବର ॥୪୭୭୧॥
ସାଖା ମଣ୍ଡଳ ଭାଗ୍ୟବନ୍ତ[୪] ମଣ୍ଡଳ ଚଉରି ମଣ୍ଡଳ
ଉଦେ ମଣ୍ଡଳ ସେ ଯେ ବିଂଝଗିରି ମଣ୍ଡଳ ॥୪୭୭୨॥
ଜ୍ୟୋତିସ ମଣ୍ଡଳ ପ୍ରୋହିତ ମଣ୍ଡଳ ରନ୍ ମଣ୍ଡଳ ସସି ମଣ୍ଡଳ
ଦଣ୍ଡ ମଣ୍ଡଳ ଯମ ମଣ୍ଡଳ ଯେ ବାରୁଣୀ ମଣ୍ଡଳ ॥୪୭୭୩॥
ବାରୁଣି[୫] ମଣ୍ଡଳ ଯେ ମଣ୍ଡଳ ହସ୍ତିନା
ସୋମମଣ୍ଡଳ ସେ ଅଟଇ ଜୟନ୍ତିନା ॥୪୭୭୪॥
କାଉଂରି ମଣ୍ଡଳ ଉଦୟମଣ୍ଡଳ ସାରଦା ମଣ୍ଡଳ
ବିଦ୍ରୁମଣ୍ଡଳ ପଶ୍ଚିମ ମଣ୍ଡଳ ପଦ୍ମ ମଣ୍ଡଳ ସେ ଅଲକାଙ୍ଗି ମଣ୍ଡଳ ॥୪୭୭୫॥
ଜଳ ମଣ୍ଡଳ ନକ୍ଷତ୍ର ମଣ୍ଡଳ ଅନଙ୍ଗ ମଣ୍ଡଳ ସୌରାଷ୍ଟ୍ର ମଣ୍ଡଳ
କଳ୍ପବ୍ୟ[୬] ମଣ୍ଡଳ ଯେ ହରି ମଣ୍ଡଳ ॥୪୭୭୬॥
ଭାନୁ ମଣ୍ଡଳ ଗୋଲେକ ମଣ୍ଡଳ ଚାଉଂରି ମଣ୍ଡଳ
ବଇଦେହି ମଣ୍ଡଳ ଦୁର୍ଗାୟେଣି ମଣ୍ଡଳ ॥୪୭୭୭॥

୧ । ଗ ପୋଥି – ଜମାଘୃଷ୍ଟ
୨ । ଖ ଓ ଗ ପୋଥି – ନଳବଳି
୩ । ଖ ଓ ଗ ପୋଥି – କାବେରୀ
୪ । ଖ ପୋଥି – ଭାଖା ମଣ୍ଡଳ
୫ । ଖ ଓ ଗ ପୋଥି – କରୁଣା ମଣ୍ଡଳ
୬ । ଗ ପୋଥି – କୁଆଂରି ମଣ୍ଡଳ

ଯେ ରୁପେ ଛତିଶ ମଣ୍ଡଳରୁ ଯେ ଅଇଲେ ରାଜନ
କେସନି କହେ ଆଗୋ ଦ୍ରୋପଦିଦେବି ସୁଣ ॥୪୭୭୮॥
ସଉରାଷ୍ଟ୍ର ସାକନିକ ରାଷ୍ଟ୍ର ଗୁଂଜଗଳ ରାଷ୍ଟ୍ର
ଗୁଂଜ ରାଷ୍ଟ୍ର କାଉଂରି ରାଷ୍ଟ୍ର କାଳନ୍ତିନା ରାଷ୍ଟ୍ର ସିଂହ ରାଷ୍ଟ୍ର ॥୪୭୭୯॥
ପଶ୍ଚିମ ରାଷ୍ଟ୍ର ଉଦୟ ରାଷ୍ଟ୍ର ଆଦିତ୍ୟ ରାଷ୍ଟ୍ର କେତୁ ରାଷ୍ଟ୍ର ସୋମା ରାଷ୍ଟ୍ର
ଯେ ରୁପେଣ ଯେ ଅଇଲେ ବାର ରାଷ୍ଟ୍ର ॥୪୭୮୦॥
କାଉଂରି ନଗ୍ରି ଯେ ଜୋନାବଳି ନଗ୍ରି କାଞ୍ଚି ନଗ୍ରି
ଭୋଜ କଟକ ନଗ୍ରି ସାର ନଗ୍ରି ଖାର ନଗ୍ରି ଅନ୍ଧକ ନଗ୍ରି ॥୪୭୮୧॥
ପଦ୍ମ ନଗ୍ରି ଯେ ଜୁଳାବାହୁ ନଗ୍ରି
କାଞ୍ଚି ନଗ୍ରି ଯେ କୁଣ୍ଡି ନାମେ ନଗ୍ରି ॥୪୭୮୨॥
କଣୟ ନଗ୍ରି ଯେ ଚନ୍ଦନାବତି ନଗ୍ରି
ମଥୁରା ନଗ୍ରି ଯେ ଅଯୋଧ୍ୟା ନଗ୍ରି ॥୪୭୮୩॥
ଯେ ରୁପେ ଚଉଦ ନଗ୍ରିରୁ ଅଇଲେ ରାଜନ
ଯେବେ ହୋ ସୁଣ ଯେକୋଇସ ପାଟଣାର ନାମ ॥୪୭୮୪॥
ଆଦିପାଟଣା ଉଦମ୍ବର ପାଟଣା କପିଳାସ ପାଟଣା
କାଉଂରି ପାଟଣା ଯେ ସୋମ ପାଟଣା ॥୪୭୮୫॥
ଜୁଳାବାହୁ ପାଟଣା କାଶ୍ମିରି ପାଟଣା ଦ୍ୱାରିକା ପାଟଣା
କପିଳାସ ପାଟଣା ସିନ୍ଧୁଦେସ ପାଟଣା କୌନ୍ତିକ ପାଟଣା ॥୪୭୮୬॥
ହିରଣ୍ୟକ ପାଟଣା ଜ୍ୟୋତିସ ପାଟଣା
ଭୋଜକଟକ ପାଟଣା ଯେ ଗୋପପୁର ପାଟଣା ॥୪୭୮୭॥
ଲଙ୍କା ପାଟଣା ଯେ ସାର୍ମୁଳ ପାଟଣା
ଜ୍ୟୋତିର୍ମୟ ପାଟଣା ଯେ କୁଳାବତି ପାଟଣା ॥୪୭୮୮॥
ଯେ ରୁପେ ଯେକୋଇସ ପାଟଣାରୁ ଅଇଲେ ରାଜନ
କେସନି କହିଲେ ସେ କୋସଳମାନଙ୍କର ନାମ ॥୪୭୮୯॥
କାମଚଣ୍ଡି କୋସଳ ମାତଙ୍ଗି କୋସଳ
ପଶ୍ଚିମ କୋସଳ ଯେ ଚଉରି କୋସଳ ॥୪୭୯୦॥
ନୈରତ କୋସଳ ଯେ ଇସାନ୍ୟ କୋସଳ
ଢେଉ କୋସଳ ଯେ ବିସୁଦ୍ଧ କୋସଳ ॥୪୭୯୧॥
ଜାଗନିକ କୋସଳ ଜଙ୍ଗମ କୋସଳ ଯେ ଯୋଗିନି କୋସଳ
ଯେ ରୁପେ ଯେଗାର କୋସଳରୁ ଅଇଲେ ନୃପବର ॥୪୭୯୨॥
ତେଲିଙ୍ଗ ମୁଦୁଗଲ ତ୍ରିହୋତ୍ର ମରହଟ
ଭୋପାଳ ବଙ୍ଗାଳ ବ୍ରହ୍ମକ୍ଷତ୍ରି ସୁଦ୍ରବଟ ॥୪୭୯୩॥
ଯେ ବିଧିରେ ଯେତେକ ଅଛନ୍ତି ନୃପମଣି
ବଳଦେବ ସହିତେ ଯେ ଦେବ ଚକ୍ରପାଣି ॥୪୭୯୪॥
ଯେହିରୁପେ ସମସ୍ତେ ବସିଛନ୍ତି ଆସ୍ତାନର
ଆଜ ତୋତେ ସଖି ଗୋ ପ୍ରାପତ ହେବ ବର ॥୪୭୯୫॥

ଦ୍ରୋପଦି କହିଲା ସଖି କେହି ତ ନ ବିନ୍ଧଇ
କେସନି ବୋଇଲା ତୋ ପିତା ଡାକି ନାହିଁ ॥୪୭୯୬॥

## ଦ୍ରୌପଦୀଙ୍କ ସ୍ୱୟମ୍ବର ସଭା ଓ ଲାଖବିନ୍ଧା

ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
କର୍ଣ୍ଣ ମୁଖ ଚାହିଂଣ ପୁଛଇ ଦୁର୍ଯୋଧନ ॥୪୭୯୭॥
ବିନ୍ଧ ଲାଖ ମଇତ୍ର ବିଳମ୍ବ କର ନାହିଂ
କର୍ଣ୍ଣ ବୋଇଲା ଯେ ଦ୍ରୋପଦ ଡାକିନାହିଂ ॥୪୭୯୮॥
ବରଣ କରିଅଛି ଲକ୍ଷେକ ନୃପତି
ମୁହିଂ ବିନ୍ଧିଲେ କିକି ନ ଦିଏ ଦୁହିତି ॥୪୭୯୯॥
ସୁଣିଣ ଦୁର୍ଯୋଧନ ଉଠିଲା ସଭାରୁଂ
ଲାଖ ତଳେ ଉଭା ହୋଇଲା ରାଜା କୁରୁ ॥୪୮୦୦॥
ଦୃଷ୍ଟଦୃମନକୁ ଚାହିଂ ପଚାରି ଆଦିଅନ୍ତ
ସେ ବୋଇଲା ପଟାରେ ଉଠ ହୋ ନୃପନାଥ ॥୪୮୦୧॥
ତଳକୁ ଦେବ ଦୃଷ୍ଟି ଉପରକୁ କରି ମୁଷ୍ଟି
ବିନ୍ଧିଲେ ମାଛର ବାମ ଚକ୍ଷୁ ଯିବ ଫୁଟି ॥୪୮୦୨॥
ସୁଣିଣ ଦୁର୍ଯୋଧନ ଯେ ପଟାରେ ଉଠିଲା
ଧନୁ ଆମଞ୍ଚନ୍ତେ ମୁଣ୍ଡ ବୁଲାଇଂ ପଡ଼ିଲା ॥୪୮୦୩॥
ତିନି ତାଳ ଗଡିରେ ପଡ଼ିଲା ଯେତେବେଳେ
ଦୃଷ୍ଟଦୃମନ ଯେ ଘୋସାରି ଘେନିଗଲେ ॥୪୮୦୪॥
ଲାଜ ପାଇଣ ମାନଗୋବିନ୍ଦ ସଭାରେ ବସିଲା
ତଦଅନ୍ତରେ ଜାରାସନ୍ଧ ତୁହାଇ ଉଠିଲା ॥୪୮୦୫॥
ଦୃଷ୍ଟଦୃମନକୁ ଚାହିଂ ଉଠିଲା ପଟାରେଂ
ଧନୁ ତୋଳି ନ ପାରି ପଡ଼ିଲା ମହିରେଂ ॥୪୮୦୬॥
ତଦଅନ୍ତେ ଦମଘୋସ ରାଜା ବେଗେଂ ଉଠି
ବିନ୍ଧି ନ ପାରି ସେ ବସିଲା ପାଲଟି ॥୪୮୦୭॥
ଜମାଗୋଷ୍ଟ ରାଜା ବାହାନାଦ ଦେଇଣ ଉଠିଲା
ଧନୁ ତୋଳି ନ ପାରିଣ ଢଳିଣ ପଡ଼ିଲା ॥୪୮୦୮॥
ସିରଝୁଣି ଉଠିଲା ସେ ରାଜା ମୃଗସେନ
ଲାଖକୁ ଅନାଇଣ ହୋଇଲା ମୋହମାନ ॥୪୮୦୯॥
ବିନ୍ଧି ନ ପାରିଣ ସମସ୍ତେ ବସିଲେ ଆସ୍ତାନ
ଲାଖ ବିନ୍ଧିବାକୁ କେହି ନୋହିଲେ ଭାର୍ଜନ ॥୪୮୧୦॥
ଯେଥୁ ଅନ୍ୟନ୍ତରେ ସୁଣ ଗୋ ହେମବନ୍ତି
ଗୋବିନ୍ଦ ମୁଖଚାହିଂ ବୋଇଲେ ହଳପତି ॥୪୮୧୧॥
ନ ଜାଣି ଦ୍ରୋପଦ ସଏମ୍ବର ଆଚରିଲା
ଲାଖ ବିନ୍ଧିବାକୁ କେହି ସାମର୍ଥ ନୋହିଲା ॥୪୮୧୨॥
ଜାଣିଲୁ ନିଷ୍ଟେ ଲାଖ ହୋଇଲା ଅକାରଣ
ଶ୍ରୀହରି ବୋଇଲେ ଲାଖ ବିନ୍ଧିବ ଯେକଜଣ ॥୪୮୧୩॥
ବଳରାମ ବୋଇଲେ ସେ ଜଣକ ଅଛି କାହିଂ
ଗୋବିନ୍ଦେ ବୋଇଲେ ଯେ ସ୍ୱର୍ଗରେ ସଚିସାଇଂ ॥୪୮୧୪॥
ପାତାଳେ ବାସୁକି ମଞ୍ଚରେ ଅର୍ଜୁନ
ଇନ୍ଦ୍ର ବାସୁକି ଯେଠାକୁ ନ ଆସିବେ ବୋଇଲେ ବଳରାମ ॥୪୮୧୫॥
ଅର୍ଜୁନ ନାସଗଲା ଜଉ ଘରେଂ ପୋଡ଼ି
ମରିନାହିଂ ଅର୍ଜୁନ ବୋଲି ସେ ଠାରି ଦେଲେ ହରି ॥୪୮୧୬॥
ସୁଣିଣ ନିଳାମ୍ବର ଯେ କୋପିତ ହୋଇଲେ ରାଗେଂ
ମଲେକ ପାଣ୍ଡବ ବୋଲି କହିଲୁ ମୋର ଆଗେଂ ॥୪୮୧୭॥
ଗୋବିନ୍ଦ ବୋଇଲେ ହୋଇଲକି ବାଇ
ମୁହିଂ ଆଗେଂ ମଲେ ସେ ପଛେ ମରିବେ ପାଞ୍ଚଭାଇ ॥୪୮୧୮॥
ଯେଥୁ ଅନ୍ୟନ୍ତରେ ଯେ ଦ୍ରୋପଦ ଦିଲା ଡାକ
ରଥି ନୃପତି ରାଉତ ଭିକ୍ଷୁକ ବିନ୍ଧିଲେ ଦେବି ମୁଂ ଦୁହିତ ॥୪୮୧୯॥
ଯେତେବେଳେ ଯେମନ୍ତ ଡାକିଲା ଦ୍ରୋପଦ
ସୁଦର୍ସନକୁ ଆଜ୍ଞା ଦେଲେକ ବାସୁଦେବ ॥୪୮୨୦॥
ଚକ୍ରକୁ କହିଲେ ଲାଖତଳେ ଥିବୁ ତୁହି ରହି
ରଥିମାନେ ବିନ୍ଧିଲେ ବାଣ ଦେବୁ ବାହୁଡ଼ାଇ ॥୪୮୨୧॥
ଯେତେବେଳେ ବିନ୍ଧିବ ମୋ ପାଣ୍ଡେବ ଅର୍ଜୁନ
ଆଡ଼େ ହୋଇଯିବୁ ଫୁଟିଯିବ ମିନଂ ॥୪୮୨୨॥
ଆଜ୍ଞା ପାଇଣ ଚକ୍ର ସୁନ୍ୟରେ ରହିଲା
ଦୁର୍ଯୋଧନ ଯାଅ ବୋଲି କର୍ଣ୍ଣକୁ ବୋଇଲା ॥୪୮୨୩॥
ନୃପତିର ବୋଲରେଂ ଉଠିଲା ବିରକର୍ଣ୍ଣ
ପଚାରନ୍ତେ କହିଲେ ଦୃଷ୍ଟ ଯେ ଦୃମନ ॥୪୮୨୪॥
ପଟାରେ ଉଠିଣ ଧନୁରେ ଗୁଣ ଦେଲା
ବିନ୍ଧନ୍ତେ ନାରାଜ ଚକ୍ରେ ବାଜି ଲେଉଟି ପଡ଼ିଲା ॥୪୮୨୫॥
ଲଜ୍ୟା ପାଇ କର୍ଣ୍ଣ ଯେ ବସିଲା ସଭାର
ତଦଅନ୍ତେ ଉଠିଲେ ଯେ ଗଙ୍ଗାର କୁମର ॥୪୮୨୬॥
ପଟାରେ ଉଠିଣ ନାରାଜ ଦେଲେ ଛାଡ଼ି
ଚକ୍ରରେ ବାଜିଣ ସର ପଡ଼ିଲା ଉପୁଡ଼ି ॥୪୮୨୭॥
ଦ୍ରୋଣ ଅଶ୍ୱସ୍ତମା ସଲ୍ୟ ବାଲମ୍ବିକ
ଜଦ୍ୟରଥ ଭୁରିସର୍ବା ଯେମାନେ ବିନ୍ଧିଲେକ ଲାଖ ॥୪୮୨୮॥
ଛଡ଼ରଥି ବସିଲେ ସଭାରେ ଲଜ୍ୟାପାଇ
ଯାଅ ବୋଲି ଅର୍ଜୁନଙ୍କୁ ଯୁଧିଷ୍ଟି ଆଜ୍ଞାଦେଇ ॥୪୮୨୯॥
ଯୁଧିଷ୍ଟିଙ୍କ ଆଜ୍ଞାରେ ଗମିଲେ ଫାଲଗୁନି
କେସନି ମୁଖ ଚାହିଂ ପଚାରେ ଜିଷ୍ଣୁସେନି[2] ॥୪୮୩୦॥

---

୧ । ଖ ପୋଥି - ଚକ୍ର ନରହିବୁ ତୁହି
୨ । ଖ ପୋଥିରେ ଏହା ପରେ ଆଠ ଧାଡ଼ି ଅଧିକ ଅଛି -
ରାଜାମାନେ ତ ସବୁ ରହିଲେ ଲଜାପାଇ
କେସନୀ ବୋଇଲା ଭିକ୍ଷୁକ ବର ନିକି ପାଇ

ହରିବଂସ ପୋଥିକି ସିରରେ ଲଗାଇ
ପଟାରେ ଉଠିଲା ଦୃଷ୍ଟଦ୍ୟୁମନକୁ ଚାହିଂ ॥୪୮୩୧॥
ଧନୁରେ ଗୁଣ ଖସାଇ ଲେଉଟି ଗୁଣ ଦେଲା
ତଳକୁ ଦୃଷ୍ଟି ଦେଇ ଉପରକୁ ମୁଷ୍ଟିକରି ନାରାଜ ବିନ୍ଧିଲା ॥୪୮୩୨॥
ଯେତେବେଳେ ନାରାଜ ଲାଖଠାରେ ମିଳି
ଚକ୍ର ଆଡ଼େ ହେଲା ମିନ ଚକ୍ଷୁରେ ଗଲା ଗଳି ॥୪୮୩୩॥
ପୁଷ୍ପମାଳି ଝଡ଼ି ପଡ଼ିଲା ଭୁମିର
ଦେବଦତ ସଙ୍ଖଧ୍ୱନି କଲେ ଚକ୍ରଧର ॥୪୮୩୪॥
ଦ୍ରୋପଦ ବେସ କରି ଆଣିଲେ ଦୁଲଣିଂ
ରହ ରହ ବୋଲିଣ ଡାକିଲେ ନୃପମଣିଂ ॥୪୮୩୫॥
ବିନ୍ଧି ନାହିଂ ଲାଖ ଯେ ମିନ ଅଛି ରହି
ଛିଡ଼ିଲା ପୁଷ୍ପମାଳ ପବନ ଯହୁଂ ବହି ॥୪୮୩୬॥
ଦ୍ରୋପଦ ବୋଇଲେ ହରି କଲେ ସଙ୍ଖଧ୍ୱନି
ଜାରାସନ୍ଧ ବୋଇଲା ସେ ଗଉଡ଼ ନ ଜାଣି ॥୪୮୩୭॥
ଡାକିଲେ ବ୍ରାହ୍ମଣ ଲାଖ ଆଉ ଥରେ ବିନ୍ଧ
ଅର୍ଜୁନ ସୁମରଣା କଲା ଯେ ଦେବ ଇନ୍ଦ୍ର ॥୪୮୩୮॥
ଗାଣ୍ଡିମ ଧନୁକୁ ଯେ ଦେଲା ବଜ୍ରପାଣି
ପାଇଲା ଗାଣ୍ଡିମ ପାଥ ନାରାଜ ବିନ୍ଧେ ଟାଣି ॥୪୮୩୯॥
ନାରାଜ ବାଜିଣ ମିନ ଚକ୍ଷୁ ଗଲା ଫୁଟି
ସଙ୍ଖଧ୍ୱନି ପୁଣି କଲେ ସେ ପ୍ରଭୁ ଚକାଆଖି ॥୪୮୪୦॥
ଆପଣେ ଜିଗ୍ନସେନି ହୋଇଲେ ଭୁସଣ
ବର୍ଣ୍ଣମାଳା ଘେନି ପ୍ରବେସ ପାଥର ସନିଧ୍ୟାନ ॥୪୮୪୧॥
ନ ଦିଅ ମାଳା ବୋଲି ପାଥ ଦ୍ରୋପଦି କି କହି
ଭ୍ରାଥ ଜନନି ଗୋଚରେଂ ବରିବୁ ମୋତେ ତୁହି ॥୪୮୪୨॥
ଅର୍ଜୁନର ବଚନେ ରହିଲେ ମହାମାଇ
ଗୋଳକଲେ ରାଜାମାନେ କନ୍ୟା ନେବା ହୋ ଛଡ଼ାଇ ॥୪୮୪୩॥
ଦୁର୍ଯୋଧନ ସହିତେ ଯେତେ ରାଜା ଜାରାସନ୍ଧ ଆଦି
ବ୍ରାହ୍ମଣକୁ ମାର ବୋଲି କଲେ ଘୋର ବୋବି ॥୪୮୪୪॥
ଯୁଧିଷ୍ଟି ଆଜ୍ଞାଦେଲେ ଯାଅରେ ବିକୋଦର
ଧାଇଂଲା ମାରୁତି ସଙ୍ଗେ ଘେନିଣ ନକୁଳ ॥୪୮୪୫॥

---

ଦ୍ରୋପଦୀ ବୋଇଲେ ହେଉପଛେ ଦରିଦ୍ର ଦ୍ୱିଜବର
ବ୍ରାହ୍ମଣ କୁମାରୀ ମୁଂ ବ୍ରାହ୍ମଣ ହେଉ ବର
ସତେ ନିକି ଲାଖ ବିନ୍ଧିବ ବ୍ରାହ୍ମଣ
ବାମ ନୟନତ ମୋ ସ୍ଫୁରଇ ଘନ ଘନ
ଯେମନ୍ତ ବିଚାର କରନ୍ତେ ମନରେ ଜିଗ୍ନ ସେନୀ
ଲାଖ ତଳେ ଯାଇ ପ୍ରବେଶ ହୋଇଲେ ଫାଲଗୁନି

ତେନ୍ତୁଳି ବୃକ୍ଷେକ ଉପାଡ଼ି ଭିମସେନ
ପିଟିଣ ଗୁଣ୍ଡା କଲା ରାଜାଙ୍କର ସନ୍ୟ ॥୪୮୪୬॥
ଦୃଷ୍ଟଦ୍ୟୁମନ ଘେନିଣ ସନ୍ୟ ସେନା
ନାରାଜରେ ରାଜାଙ୍କର ସନ୍ୟ କଲେ ଚୁନା ॥୪୮୪୭॥
ରାଜାମାନେ ସମସ୍ତେ ଯେ ହୋଇଲେ ହତବିର୍ଯ୍ୟ
ପଳାଇଲେ ଛାଡ଼ି ଆଉ ନ କଲେ ପହିଜ ॥୪୮୪୮॥
ଦୁର୍ଯୋଧନ ଦୁସାସନ କର୍ଣ୍ଣ ସୋମଦତ
ପଡ଼ିଲେ ନିଚେଷ୍ଟରେ ଦେଖିଲେ ଧର୍ମସୁତ ॥୪୮୪୯॥
ବୋଇଲେ ପାଥ ଯେହାଙ୍କୁ ଜିବଦାନ ଦିଅ
ଧୃତିରାଷ୍ଟ୍ର ପିତାଙ୍କୁ ଯେ ବିମୁଖ ନ କରାଅ ॥୪୮୫୦॥
ସୁଣିଣ ଫାଲଗୁନି ଜିବନ୍ୟାସ ଶର ମାରି
ସଚେତ ହୋଇଣ ଯେ ପଳାନ୍ତି ଦଣ୍ଡଧାରି ॥୪୮୫୧॥

## ପଞ୍ଚୁପାଣ୍ଡବଙ୍କ ସହିତ ଦ୍ରୌପଦୀର ବିବାହ

ସୁଣଗୋ ଓମା ବୋଲି ବୋଲନ୍ତି ଦେବସୁଳି
ପାଣ୍ଡବଙ୍କ ଠାରେ ଯେ ମିଳିଲେ ବନମାଳି ॥୪୮୫୨॥
ବିଶ୍ୱକର୍ମାକୁ ରାଇ ନିର୍ବାଣିଲେ ପୁର
ସୁଧର୍ମା ସଭା ଘେନି ମିଳିଲେ ପୁରନ୍ଦର ॥୪୮୫୩॥
ଋଷିଗଣ ଘେନିଣ ପ୍ରବେସ ବ୍ୟାସ ମହାମୁନି
ଦ୍ରୋପଦ ମିଳିଲା ବିଭା ସାମଗ୍ରିମାନ ଘେନି ॥୪୮୫୪॥
ହିରା ନିଳା ଛାମୁଣ୍ଡା କନେକର ବେଦି
ମାଣିକ ଥୋପି ଥୋପି ଚଉକତି ଯେ ଆଚ୍ଛାଦି ॥୪୮୫୫॥
ଗୋବିନ୍ଦ ପଚାରିଲେ ବ୍ୟାସଙ୍କ ମୁଖ ଚାହିଂ
କେମନ୍ତ ପ୍ରକାରେ ଯେ କନ୍ୟାକୁ ବିଭା ହୋଇ ॥୪୮୫୬॥
ବ୍ୟାସେ ବୋଇଲେ ହୋ ପୁର୍ବକଥା ଯେ ଅଛଇ
ଯେକା ଦ୍ରୋପଦିକି ବିଭା ହୋଇବେ ପାଞ୍ଚଭାଇ ॥୪୮୫୭॥
ପାଣ୍ଡେବଙ୍କ ଅଗ୍ରତେଂ କହିଲେ ପିତବାସ
ସୁଣିଣ ପଞ୍ଚୁପାଣ୍ଡବେ ହୋଇଲେ ବରବେସ ॥୪୮୫୮॥
ବେଦିରେ ବସିଲେ ଅସରଳା ସୁତା ବାନ୍ଧି
ଦ୍ରୋପଦ ଘେନିଣ ବସିଲେ ଦ୍ରୋପଦି ॥୪୮୫୯॥
ଦ୍ରୋପଦି ପାଞ୍ଚଅଙ୍ଗୁଷ୍ଠି ପଞ୍ଚୁ ପାଣ୍ଡବେ ଧଇଲେ
ବେଦୋକ୍ତ ମନ୍ତ୍ର ପଢ଼ି ମାର୍କଣ୍ଡ ଯେ କୁସରେଂ ବାନ୍ଧିଲେ ॥୪୮୬୦॥
ଅହିଜ୍ଞ ସ୍ତ୍ରିରିମାନେ ଦିଅନ୍ତି ହୁଳହୁଳି
ସ୍ୱର୍ଗରେ ଦେବବୃନ୍ଦ ଯେ ପୁଷ୍ପ ବୃଷ୍ଟିକରି ॥୪୮୬୧॥
ବଇସାଖ ସୁକ୍ଳପକ୍ଷ ପଞ୍ଚମି ଗୁରୁବାର[୧]
ହସ୍ତା ନକ୍ଷତ୍ର ତାର ଚନ୍ଦ୍ର ସୁଭକର ॥୪୮୬୨॥

---

୧ । ଗ ପୋଥି – ଭୃଗୁବାର

ବାଣିଜ ନାମେ କରଣ ବରିୟାନ ନାମେ ଯୋଗ
ମେଷ ସଙ୍କରାନ୍ତିକି ଯାଇଛି ସତର ଦିନ ଭୋଗ ॥୪୮୬୩॥
ତୃତିୟ ପହର ହୋଇଛନ୍ତି ମାରତଣ୍ଡ
ସେଦିନ ସେ ବିଭା ହୋଇଲେ ପଞ୍ଚୁ ପାଣ୍ଡେବ ॥୪୮୬୪॥
ଦ୍ରୋପଦ ସମର୍ପିଣ ଦେଲେ ସେ ଦୁହିତି
ବହୁତ ଯଉତୁକ ଦେଲାକ ନୃପତି ॥୪୮୬୫॥

## ପାଣ୍ଡବମାନଙ୍କର ବାରୁଣାଭୁବନ ପ୍ରତ୍ୟାବର୍ତ୍ତନ ଓ ଦ୍ରୌପଦୀଙ୍କ ସହିତ ଶୃଙ୍ଗାରବିଧି ବର୍ଣ୍ଣନା

ଯେଥୁ ଅନ୍ୟନ୍ତରେଂ ସୁଣଗୋ ଗିରିଜା
ଧୃତିରାଷ୍ଟ୍ର ଅଗ୍ରତେ ଯେ ଡଗର କହିଲା ॥୪୮୬୬॥
ପାଣ୍ଡବେ ପ୍ରବେସ ଯେ ଦ୍ରୋପଦ ରାଜ୍ୟର
ଲାଖ ବିନ୍ଧି କନ୍ୟା ପାଇଲା ବାସେବ କୁମର ॥୪୮୬୭॥
ଖୁରୁସାଣି[୧] ସାସନରେ ହୋଇଲେକ ବିଭା
ମିଳିଲେ ଦିଗପାଳେ ସହିତେଂ ଦେବରାଜା ॥୪୮୬୮॥
ସୁଣିଣ ଧୃତିରାଷ୍ଟ୍ର ଯେ ଆନନ୍ଦଂ ହୋଇଲା
ସଜଂୟକୁ ବୋଇଲେ ହୋ ପାଛୋଟି ଚାଲଯିବା ॥୪୮୬୯॥
ସଙ୍କୁନି ବୋଇଲା ରାଜା ହୋଇଲୁ ଅନ୍ଧବାଇ
ଶତୃ କେମନ୍ତେ ପାଛୋଟି ଆଣିଣ ଯିବୁ ତୁହି ॥୪୮୭୦॥
ତୋହର ପୁତ୍ରକୁ ନାସିଲା ଭିମସେନ
ଧର୍ମବଳେଂ ଅଇଲୁଂ ପାଇଣ ଜିବନ ॥୪୮୭୧॥
କହନ୍ତି ଧୃତିରାଷ୍ଟ୍ର ସଙ୍କୁନି ହୋଇଲୁ କି ବାଇ
କେତେ ଉପାୟରେ ନାସିଲ ତାହାଙ୍କଇ ॥୪୮୭୨॥
ଧର୍ମ ଆଶ୍ରେ କଲେ ଯେ ଆପଦ ନ ପଡ଼ିଲା
ଦ୍ରୋପଦ ଦୟାକରି ଦୁହିତା ଗୋଟିୟେ ଦିଲା ॥୪୮୭୩॥
ଭିସ୍ମ ଦ୍ରୋଣ ସଜଂୟେ ଧୃତିରାଷ୍ଟ୍ର ବିଦୁର
ସନ୍ୟ ସଜ କରିଣ ସର୍ବେ ହୋଇଲେ ବାହାର ॥୪୮୭୪॥
ରଥ ଗଜ ଅଶ୍ୱ ସଙ୍ଗେ ହାନ୍ଦୋଳା ବାଜାକାର
ପ୍ରବେସ ହୋଇଲେ ଯାଇ ପାଣ୍ଡବଙ୍କଠାର ॥୪୮୭୫॥
ଦେଖିଣ ପାଞ୍ଚଭାଇ ଯେ ଆନନ୍ଦ ହୋଇଲେ
ଯାହାକୁ ଯେଉଂ ରୁପେ ଉଳଗି ମାନ୍ୟ କଲେ ॥୪୮୭୬॥
ଗୋବିନ୍ଦ ଚଳିଗଲେ ଦ୍ୱାରିକା ଭୁବନ
ପଞ୍ଚୁ ପାଣ୍ଡବେ ଯାଇଣ ବସିଲେ ବିମାନ ॥୪୮୭୭॥
ହାନ୍ଦୋଳାରେ ବସିଲେ ଦ୍ରୋପଦ ଦୁଲାଳି
ବାରୁଣା ଭୁବନରେ ସମସ୍ତେ ଯାଇ ମିଳି ॥୪୮୭୮॥

୧ । ଖ ଓ ଗ ପୋଥି – କୁରୁସାଣି

ରହିଲେ ପାଣ୍ଡବ ଯେ ଆବୋରିଣ ସିମା
ବଦୟନ୍ତି ସୁଳହସ୍ତ ସୁଣଗୋ ଦେବି ଓମା ॥୪୮୭୯॥
ଯେଥୁ ଅନ୍ୟନ୍ତରେ ଯେ ଗଲା କିଛିଦିନ
ଦୃପଦର ଦୁହିତା ଯେ ପାକା ପରସନ ॥୪୮୮୦॥
ପ୍ରୋହିତଙ୍କୁ ରାଇଣ ଯେ ବୋଇଲେ ଯୁଧିଷ୍ଠି
ସୁଣିଣ ପ୍ରୋହିତ ଯେ କାଟିଲେ ରଜକୋଷ୍ଠି ॥୪୮୮୧॥
ଆଦିତ୍ୟ ବାସରେ ଯେ ପାକାସ୍ୱତି ହୋଇ
ସେ ସ୍ତିରିକି ଆଉ ଛୁଇଂତେ ନ ଯୋଗାଇ ॥୪୮୮୨॥
ଚନ୍ଦ୍ରବାରେ ରଜ ହେଲେ ବିଧବା ହୋଅଇ
ଭୋମବାରେ ରଜ ହେଲେ ହୋଅଇ କଳହି ॥୪୮୮୩॥
ପଣ୍ଡିତ ବାରେ ରଜ ହେଲେ ବହୁତ ମିଳଇ ସେ ଧନ
ବୃହସ୍ପତି ବାରେ ରଜ ହୋଇଲେ ଉପୁଜେ ସୁସନ୍ତାନ ॥୪୮୮୪॥
ଭୃଗୁବାରେ ରଜବତି ହୋଅଇ ଯେଉଂ ନାରି
ଯେକା ପୁତ୍ର ପ୍ରସବି ସେ ହୋଅଇ ଦୋଚାରି ॥୪୮୮୫॥
ସଉରି ବାରେ ରଜ ହେଲେ ସେ ବହୁତ ଦୁଖ ପାଇ
ପ୍ରତିପ ଦିନ ରଜବତି ହେଲେ ଛୁଇଂତେ ନ ଯୋଗାଇ ॥୪୮୮୬॥
ଦୁତିୟା ଦିନରେ ରଜ ହେଲେ ସନ୍ତାନ ହୋୟେ ହାନି
ତୃତିୟା ଦିନରେ ଦୟା କରନ୍ତି କମଳଣିଂ ॥୪୮୮୭॥
ଚତୁର୍ଥି ଦିନରେ ରଜବତି ଛୁଇଂଲେ ବୃସଳି ପତି
ପଞ୍ଚମି ଦିନରେ ବହୁତ ମିଳଇ ସନ୍ତତିଂ ॥୪୮୮୮॥
ଷଷ୍ଟମ ଦିନରେ ଯେ ପାକା ପରସନ
ତାହାର ନାସଯାନ୍ତି ଉପୁଜିଲେ ସନ୍ତାନ ॥୪୮୮୯॥
ସପ୍ତମି ଦିନରେ ସମ୍ପଦ ସନ୍ତାନ ମିଳଇ
ଅଷ୍ଟମି ଦିନରେ ଯେ ହୋଅଇ କଳହିଂ ॥୪୮୯୦॥
ନବମି ଦିନରେ ରଜବତି ହୋଇଲେ ସିରି ହୋୟେ ହାନି
ଦସମି ଦିନରେ ବୃସାଳ ନନ୍ଦନ ନନ୍ଦନି ॥୪୮୯୧॥
ଯେକାଦସି ଦିନ ରଜ ହୋଅଇ ଯଉଂ ନାରି
ସ୍ୱାମି ଥାଉଂ ବନକୁ ଗମଇ ସେହୁ ସ୍ତିରି ॥୪୮୯୨॥
ଦ୍ୱାଦସି ଦିନ ରଜବତି ବ୍ରହ୍ମହତ୍ୟା ସରି
ତ୍ରୟୋଦସି ଦିନରେ ବିଷ୍ଣୁଭଗତି[୨] ସେହୁ ନାରି ॥୪୮୯୩॥
ଚତୁର୍ଦ୍ଦସି ଦିନରେ ରଜ ଦୃଭାଗି ହୋଇପୁଣ
ଅମାବଇ ଦିନ ପୁତ୍ର ପୁତ୍ରି ହୋଅନ୍ତି କୁଜକାଣ ॥୪୮୯୪॥
ପୁର୍ଣ୍ଣମି ଦିନ ରଜ ହୋଇଲେ ଉପୁଜେ କୁମର
ବାର ତିଥି ନକ୍ଷତ୍ର ସମସ୍ତ ହୋଇଲେ ସୁଭକର ॥୪୮୯୫॥

୧ । ଖ ଓ ଗ ପୋଥି – ସମ୍ପତ୍ତି
୨ । ଖ ପୋଥି – ବିଷ୍ଣୁପତ୍ନୀ

ଅଶ୍ୱିନି ଦୁଜା କୃତିକା ରୋହେଣି
ଯେଥି ରଜ ହୋଇଲେ ପୁନ୍ୟ ହୋୟେ ହାନି ||୪୮୯୬||
ମୃଗସିରା ଆଦ୍ରା ପୁନର୍ବସୁ ପୁସ୍ୟା
ଯେଥିରେ ସୁଭ ଯୋଗ କହିଲେ ଦୁର୍ବାସ୍ୟା ||୪୮୯୭||
ହସ୍ତା ଚିତ୍ରା ସ୍ୱାତି ଅନୁରାଧା ଘେନି
ଯେଥି ରଜ ହୋଇଲେ ବହୁତ ପୁନ୍ୟହାନି[୧] ||୪୮୯୮||
ପୁର୍ବା ଫାଲଗୁନି ପୁର୍ବାସାଢ଼ା ପୁର୍ବଭୋଦ ମୁଳା
ଯେଥି ରଜ ହୋଇଲେ ଯେ ନାହିଂ ଅନୁକୁଳା ||୪୮୯୯||
ବିସାଖା ସତଭିକ୍ଷା[୨] ଶ୍ରବଣା ଯେ କୃତିକା
ଯେଥି ରଜ ହୋଇଲେ ହୋଅନ୍ତି ନପୁଂସକା ||୪୯୦୦||
ବବ ବାୟବ୍ୟ ତତୁଲ୍ୟ କରଣରେ
ଯେଥି ରଜ ହୋଇଲେ ସକଳ ସୁଭ ହୋୟେ ତାରେ ||୪୯୦୧||
ନାଗ ବରିୟାନ ବାଲ୍ୟବ ବିତିପାତ
ଯେଥି ରଜ ହୋଇଲେ ସ୍ୱାମି ହୋୟେ ହତ ||୪୯୦୨||
ସର୍ବସୁଭ ହୋଇଲା ଯେ ଦ୍ରୋପଦ ଦୁଲଣି
କହିଲେ ପଣ୍ଡିତ ଯେ ସମସ୍ତ ହରସ ପୁଣି ||୪୯୦୩||
ବନ୍ଧାପନା ସାମଗ୍ରି କଲେକ ଭିଆଣ
କନ୍ୟାକୁ ହୋମେ ଘେନି ବସିଲେ ପାଞ୍ଚଜଣ ||୪୯୦୪||
ସାରିଲେ ବନ୍ଧାପନା କଲେକ ମଣୋହି
ଯେକ ମୁଖ ଚାହିଂଣ ଆରେକ ପୁଛଇ ||୪୯୦୫||
କେମନ୍ତ ପ୍ରକାରେ ଯେ କନ୍ୟାକୁ ଭୋଗକରି
ଅର୍ଜୁନ ବୋଇଲା ଅଗ୍ରେ ଭୁଜଂନ୍ତୁ ଦଣ୍ଡଧାରି ||୪୯୦୬||
ଦୁତିୟେ ବିକୋଦର ତୃତିୟେ ଫାଲଗୁନି
ଚତୁର୍ଥେ ନକୁଳ ପଞ୍ଚମେ ମନ୍ତ୍ରିମଣିଂ ||୪୯୦୭||
ଯେହି ରୁପେ ଭୋଗ ଯେ କରିବା ଜିଗ୍ନସେନି
ଯେକ ପାଳିରେ ଆରେକ ନ ଯିବ ତହିଂପୁଣି ||୪୯୦୮||
ଯେକର ଶୃଙ୍ଗାର ଯେବେ ଆରେକ ଦେଖିବ
ଦ୍ୱାଦସ ବରସ ସେ ବନସ୍ତକୁ ଯିବ ||୪୯୦୯||
ଯେମନ୍ତ ବୋଲିଣ ଯେ ବୋଇଲା ଅର୍ଜୁନ
ହେଉ ହେଉ ବୋଇଲେ ଯୁଧିଷ୍ଟି ରାଜନ ||୪୯୧୦||
ପ୍ରଥମେ ଯୁଧିଷ୍ଟି ଯେ ଗମିଲେ ଦେବିପୁର
ଆରଦିନ ଗମନ କଲାକ ବିକୋଦର ||୪୯୧୧||
ଅର୍ଜୁନ ଗମନ[୩] କଲା ତୃତିୟ ଦିନର
ଚତୁର୍ଥେ ମିଳିଲା ଯେ ଅଶ୍ୱିନି କୁମର ||୪୯୧୨||

୧ । ଖ ଓ ଗ ପୋଥି – ପୁନ୍ୟମାନୀ
୨ । ଗ ପୋଥି – ଶତଭିଷା
୩ । ଖ ଓ ଗ ପୋଥି – ରମଣ

ପଞ୍ଚମ ଦିନରେ ଯେ ସହଦେବ ଯାଇ
ଯେହିରୁପେ ଗମନ[୧] କରନ୍ତି ପାଞ୍ଚ ଭାଇ ||୪୯୧୩||
ନିତି ଦ୍ରୋପଦି ଯେ ଅଗ୍ନିରେ ସ୍ନାହାନ କରଇ
ଯେକର ଉଚିଷ୍ଟ ଯେ ଆରକକୁ ସେ ନଦିଅଇ ||୪୯୧୪||

## ଅର୍ଜୁନଙ୍କ ବନଗମନ ଓ ଅଗ୍ନିଙ୍କ ସହ ସାକ୍ଷାତ

ଦିନେ ବୈଶ୍ୱାନର ବିଜେ କଲେକ ବାରୁଣା
ଅର୍ଜୁନକୁ ବୋଇଲେ ତୁ ଯୁଧିଷ୍ଟିଙ୍କି ଆଣ ସିନା ||୪୯୧୫||
ଯେବେ ନ ଆଣିବୁ ତୁ ଯୁଧିଷ୍ଟି ରାଜନ
ଯେହିକ୍ଷଣି ସମସ୍ତଙ୍କୁ କରିବି ଦହନ ||୪୯୧୬||
ବ୍ରାହ୍ମଣ କଠୋର ବାକ୍ୟେ ଯେ ଅର୍ଜୁନ ଚଳିଗଲା
ଯୁଧିଷ୍ଟିଙ୍କ ଶୃଙ୍ଗାର ନୟନେ ଦେଖିଲା ||୪୯୧୭||
ବିବସନ ହୋଇଥିଲେ ପତି ପତ୍ନି ବେନି
ପିନ୍ଧିଣ ବସନ ଯୁଧିଷ୍ଟି ବୋଇଲେ ଅଇଲୁ କିପେଂ ଫାଲଗୁନି ||୪୯୧୮||
ଅର୍ଜୁନ ବୋଇଲେ ଯେକ ବ୍ରାହ୍ମଣେ ଲୋଡ଼ାକଲା
ଯୁଧିଷ୍ଟି ବୋଇଲେ ହୋ ଚଲ ଦେଖିବା ବୋଇଲା ||୪୯୧୯||
ଆସନ୍ତେ ନ ଦେଖିଲେ ମାୟା ବ୍ରାହ୍ମଣଙ୍କୁ
ଅର୍ଜୁନ ବୋଇଲା ମୁଂ ଯାଉଛି ବନସ୍ତକୁ ||୪୯୨୦||
ଯେତେ ବୋଲି ଅର୍ଜୁନ ହୋଇଲା ବାହାର
ସମସ୍ତ ଜନ ସୁଣି କଲେ ହାହାକାର ||୪୯୨୧||
ସବର ରୁପ ଧରି ବାସେବି ବନଯାଇ
ଜାଣିଣ ପଛରେ ଯେ ଗୋବିନ୍ଦ ଗୋଡ଼ାଇ ||୪୯୨୨||
ସେତଗିରି ନିକଟେ ଯେ ଭେଟିଲେ ଅର୍ଜୁନ
ଗୋବିନ୍ଦ ପଚାରନ୍ତେ ସବୁ କହିଲା ଫାଲଗୁନ୍ୟ ||୪୯୨୩||
ହରି ଅର୍ଜୁନ ବସି କଥା କୁହା କୁହିଂ
ମିଳିଲେ ବୈଶ୍ୱାନର ଖିନ ରୁପ ହୋଇ ||୪୯୨୪||
ଅତିରୋଗି ଦାରିଦ୍ର ଅବସ୍ତା ଦେଖି ତାର
ଅଗ୍ନି ମୁଖ ଚାହିଂଣ ପୁଛିଲେ ଦାମୋଦର ||୪୯୨୫||
ବ୍ରାହ୍ମଣ ବୋଇଲା ମୁଂ ବୈଶ୍ୱାନର ଅଟଇଂ
ଚାରିଯୁଗ ବହିଗଲା ଆହାର ଜିର୍ନ୍ନ ନାହିଂ ||୪୯୨୬||
ସତ୍ୟ ଯୁଗରେ ସେତରାଜା ମହାଯାଗ କଲା
ଘୃତ ସିନ୍ଧୁ ଆଣି ହୋମ କୁଣ୍ଡରେ ଢାଳିଲା ||୪୯୨୭||
ବହୁତ ଘୃତ ଖାଇ ହୋଇଲଇଂ ରୋଗି
ସେହିଦିନୁ ହୋଇଲା ଯେ ଲୁଦୁବୁଦୁ ବ୍ୟାଧି ||୪୯୨୮||
ମଉସଧି ମାଗିତେ ଅଇଲଇଂ ତୁମ୍ଭଠାଇଂ
ଆଗେଂ ସତ୍ୟ କଲେ ମୁଂ ପଛେ କହିବଇଂ ||୪୯୨୯||

୧ । ଖ ଓ ଗ ପୋଥି – ରମଣ

ଅର୍ଜୁନ ବୋଇଲା ସତ୍ୟ ହୋଇଲା ମୋହର
ଅଗ୍ନି ଦେବତା ବୋଇଲା ସାକ୍ଷି ହୁଅ ହୋ ଦିଗପାଳ ॥୪୯୩୦॥
ଖାଣ୍ଡବ ବନ ଦେବୁ ଖାଇବିଂ ମଉସଧି
ତେବେ ସେ ମୋହର ଅଙ୍ଗରୁ ଯିବ ବ୍ୟାଧି ॥୪୯୩୧॥
ଗୋବିନ୍ଦେ ବୋଇଲେ ବାବୁ ଯାଅରେ ଅର୍ଜୁନ
ତୋତେ କିଛି ନ ବୋଲିବ ତୋ ପିତା ମଘବାନ ॥୪୯୩୨॥
ଯେମନ୍ତ କହିଣ ହରି ଦ୍ୱାରିକାକୁ ଗଲେ
ଅର୍ଜୁନକୁ ଘେନି ଅଗ୍ନି ଦେବତା ଚଳିଲେ ॥୪୯୩୩॥

## ଅର୍ଜୁନଙ୍କର ଖାଣ୍ଡବବନ ଦହନ

ଖାଣ୍ଡେବ ବନରେ ଯାଇ ହୋଇଲେ ପ୍ରବେସ
କାହିଂ ମଉସଧି ବୋଲି ବୋଇଲେ ବିର ପାଥ ॥୪୯୩୪॥
ବୈଶ୍ୱାନର ବୋଇଲା ମୋତେ ତୋଟାଯାକ ଦେବୁ
ଅର୍ଜୁନ ପ୍ରତିବାଚ ଯେଡ଼େକ ଲୋଭି ବାବୁ ॥୪୯୩୫॥
ସତ୍ୟ କରି ମଉସଧି ଖଣ୍ଡିଯେ ମାଗିଲୁ
ଯେବେ କହୁଅଛୁ ତୋଟାଯାକ ଖାଇବୁ ॥୪୯୩୬॥
ତୋଟାଯାକ ଖାଇଲେ କୋପ କରିବେ ପୁରନ୍ଦର
ଯେଥିକି ସହସ୍ର ଯେ ନାହିଂ ମୋହର ହସ୍ତର ॥୪୯୩୭॥
ଅଗ୍ନି ଦେବତା ବୋଇଲେ ଯେଥି ଥାଅରେ ଅର୍ଜୁନ
ଯାଉଛି ଦେବ ସସ୍ତ୍ର ଆଣିବି ମାଗିଣ ॥୪୯୩୮॥
ଅର୍ଜୁନକୁ ରଖି ଅଗ୍ନି ଦେବତା ଚଳିଗଲେ
ଦେବତାଙ୍କଠାରୁ ଦେବ ସହସ୍ର ଆଣିଲେ ॥୪୯୩୯॥
ଅର୍ଜୁନ ଗୋଚରେ ନେଇ ସମର୍ପିଲେ ସର
ବୋଇଲେ ବସାଅ ମୋତେ ନାରାଜ ମୁନର ॥୪୯୪୦॥
ସୁଣିଣ ବାସେବି ଧନୁରେ ଦିଲେ ଗୁଣ
ନାରାଜ ହେଲେ ଅଗ୍ନି ବିନ୍ଧିଲେ ଅର୍ଜୁନ ॥୪୯୪୧॥
ବନସ୍ତ ମଧ୍ୟରେ ପଡ଼ିଲେ ବୈଶ୍ୱାନର
ଖାଇଲେ ଜିବମାନ ଲତା ଯେ ତରୁବର ॥୪୯୪୨॥
ଯେତେବେଳେ ବନ ଦହନ ହୋଇଲା
ଆକାସ ମାର୍ଗରେ ଇନ୍ଦ୍ରଦେବତା ଦେଖିଲା ॥୪୯୪୩॥
ପଚାରନ୍ତେ ନାରଦ କହିଲେ ସମାଚାର
ଅର୍ଜୁନ ପୋଡୁଅଛି ଖାଣ୍ଡବ ବନ ତୋର ॥୪୯୪୪॥
ସୁରପତି ବୋଇଲେ ସେ ଅବା ଜାଣି ନାହିଂ
ଯାଅରେ କୁମର ତାକୁ କୁହ ଯାଇ ॥୪୯୪୫॥
ସୁଣିଣ ଇନ୍ଦ୍ରସୁତେ କଲେ ଗମନ
ଅର୍ଜୁନର ସଙ୍ଗତେ କଲେକ ଘୋର ରଣ ॥୪୯୪୬॥
ହାବଡ଼ା ସରେକ ଯେ ବିନ୍ଧିଲା ବାସେବି
ବାସେବର ପୁତ୍ରେ ସେ ପଡ଼ିଲେ ମୁଖମାଡ଼ି ॥୪୯୪୭॥
ପୁତ୍ରଙ୍କର ନିଧନେ ଯେ ଧାଇଂଲା ସୁରପତି
ଅର୍ଜୁନକୁ ବୋଇଲା ତୁ ମୋହର ଅଟୁରେ ସନ୍ତତି ॥୪୯୪୮॥
ଅଗ୍ନିଲୋଭି ହୋଇଣ ଘୃତ ଲୋଚାଯେ ଖାଇଲା
କଲା ବ୍ୟାଧିପିଡ଼ା ପାର କରି ନ ପାରିଲା ॥୪୯୪୯॥
ତୁହି ଆଡ଼େ ହୋଇଲେ ମୁଂ ଲିବାଇବିଂ ଅନଳ
ଅର୍ଜୁନ ବୋଇଲା ସତ୍ୟ ହୋଇଛି ମୋହୋର ॥୪୯୫୦॥
ଯେମନ୍ତ ବୋଲନ୍ତେ ପଳାଇଲା ପକ୍ଷି ଗୋଟିଯେ
ଅଗ୍ନିଡାକ ଦେଲା ପକ୍ଷିକି ସମ୍ଭାଳ ଧନୁର୍ଜୟେ ॥୪୯୫୧॥
ସୁଣିଣ ବାସବି ଯେ ବିନ୍ଧିଲା ଅଗ୍ନିସର
ଚଢ଼ାଇ ଛିଡ଼ି ପଡ଼ିଲା ଯେ ଖାଇଲା ବୈଶ୍ୱାନର ॥୪୯୫୨॥
ଇନ୍ଦ୍ର ବୋଇଲା ତୁ କରୁଛୁ ଦହନ
ଅର୍ଜୁନ ବୋଇଲା ମୁଂ ଲୋହିବି ସତ୍ୟଭଗ୍ନ ॥୪୯୫୩॥
ସୁଣିଣ କୋପିତ ଯେ ହୋଇଲେ ପୁରନ୍ଦର
ଧନୁରେ ଗୁଣ ଦେଇଣ ବିନ୍ଧିଲା ତିକ୍ଷ ସର ॥୪୯୫୪॥
ସମ୍ଭାଳି ଅର୍ଜୁନ ମୋହନା ସର ବିନ୍ଧି
ଗଜ ଉପରୁ ଢଳି ପଡ଼ିଲା ଯେ ଜମ୍ଭୁଭେଦି ॥୪୯୫୫॥
ଇନ୍ଦ୍ର ହତ ସୁଣି ସଚି ସମରେ ଚଳିଲା
ପୁଷ୍ପରଥେ ପକାଇ ଇନ୍ଦ୍ରକୁ ଘେନିଗଲା ॥୪୯୫୬॥
ସୁଣଗୋ ଓମା ବୋଲି ବୋଲନ୍ତି ସୁଳପାଣି
ଲକ୍ଷେ ଯୋଜନ ତୋଟା ଦହିଲା ଫାଲଗୁନି ॥୪୯୫୭॥
ଚଢ଼ାଇ ଜିବ ଜନ୍ତୁ ସକଳ ନାସଗଲେ
ବୃକ୍ଷ ଚଢ଼ାଇ ତ ଗୋଟିଯେ ନ ରହିଲେ[1] ॥୪୯୫୮॥
ଅଗ୍ନି ଦେବତାଙ୍କର ଯେ ଦୁଗୁଣ ତେଜ ହେଲା
ଅର୍ଜୁନକୁ ପ୍ରସଂସା ବହୁତ ତହିଂ କଲା ॥୪୯୫୯॥
ଦେବତାଙ୍କଠାରୁ ଯେତେକ ସସ୍ତ୍ର ଆଣିଥିଲେ
ଅଗ୍ନିଦେବତା ସବୁ ସମର୍ପିଲେ[2] ॥୪୯୬୦॥
ବର ଦେଲେ ପାଥ ତୁହି ତ୍ରିଜିବି ହୁଅ ପୁଣି
ସଂଗ୍ରାମେ ସତୃ ତୋତେ ନ ପାରିବେ ଜିଣି ॥୪୯୬୧॥
ବର ଦେଇ ଅଗ୍ନି ଦେବତା ହୋଇଲେ ଅନ୍ତର୍ଦ୍ଧାନ
ଅର୍ଜୁନ ମିଳିଲା ଯାଇ ହର ଉଦ୍ୟାନ ନାମେ ବନ ॥୪୯୬୨॥
ପାର୍ବତିଙ୍କ ଗଣ୍ଡାକୁ ଦେଖି ନାସିଲା ଅର୍ଜୁନ
ଦେଖିଣ କୋପିତ ହୋଇଲେ ତ୍ରିଲୋଚନ ॥୪୯୬୩॥
ଆରେ ଆରେ ସବରା ବୋଲି ଧାଇଂଲେ ସଙ୍କର
ଧନୁ ଗଳାଇଲା ପାଥ ଇଶ୍ୱର ଗଳାର ॥୪୯୬୪॥

---

୧ । ଖ ଓ ଗ ପୋଥି – ବୃକ୍ଷ ଚଢ଼ାଇ ତୋ ଗୋଟି ସେ ରହିଲେ
୨ । ଖ ଓ ଗ ପୋଥି – ଅର୍ଜୁନ ଅଗ୍ନି ଦେବତା ତାହା ସମର୍ପିଲେ

ହୁଞ୍ଚୁଡ଼ନ୍ତେ ବିକଳେ ମହେସ ଦିଲେ ବର
ଅକ୍ଷୟେ ତ୍ରୋଣ ଆଦି ପସୁପତ୍ର ସର ॥୪୯୬୫॥
ଗମିଲା ଅର୍ଜୁନ ଯେ ଇଶ୍ୱର ବରପାଇ
ସିବପ୍ରସାଦ ବୋଲି ଯେକ ପର୍ବତେ ମିଳଇ ॥୪୯୬୬॥

## ଶ୍ରୀକୃଷ୍ଣଙ୍କ ହସ୍ତରେ ଶୁତକେଶୀର ମୃତ୍ୟୁ

ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରୀ
ସତ୍ରାଜିତ କଣ୍ଠରେ ରତ୍ନମାଳା ଥିଲା ॥୪୯୬୭॥
ସତଧନୁ ବୋଲିଣ ଯେକଇ ଯାଦେବ
ସତ୍ରାଜିତକୁ ନାସିଣ ମଣି ନିଲା ବେଗ ॥୪୯୬୮॥
ହୋଇଲା କଥାଫୁଟ ଜାଣିଲେ ଦେବକିର ତନୁ
ଅକୃର ହସ୍ତେ ମଣି ଦେଇ ପଳାଇଲା ସତଧନୁ ॥୪୯୬୯॥
ଜାଣିଣ ମାଧବ ରାତ୍ରରେ ଗୋଡ଼ାଇଲେ
ସୁରସେନ ଅସୁରକୁଂ[1] ବାଟରେ ହାଣିଲେ ॥୪୯୭୦॥
ତହୁଂ ସତଧନୁ ପଳାଇଲା ବିକଳେ
ସରଣ ପସିଲା ଯାଇ ସୁତକେଶି[2] ଠାରେ ॥୪୯୭୧॥
ସତେ ମଭୁତ ଯେ ସଇନ୍ୟ ତାହାର
ସତଧନୁ ସରଣ ପସିଲା ତାହାଠାର ॥୪୯୭୨॥
ରଚିଲା ପଦ୍ମ ଭୁଅ କଳାକ ଜଳଭେଦି
ରହିଲା ସତଧନୁ ସେ ପଦ୍ମନାଳ ମଝି ॥୪୯୭୩॥
ଭୁଅର ମଧ୍ୟରେ ଯେ ଭିଆଇଲେ ଗଡ଼
ପାହାରି ହୋଇଲେ ଯେ ସନ୍ୟ ସପତ ସାଗର ॥୪୯୭୪॥
ସେହି ସମୟରେ ଯେ ପ୍ରବେସ ଭଗବାନ
ଦଇତଙ୍କ ସଙ୍ଗତେ କଲେ ଘୋର ରଣ ॥୪୯୭୫॥
ନାରାଜ କୋଟି କୋଟି ପେସିଲେ ଦଇତ୍ୟ ଉପରକୁ[3]
ଯେରୁପେ ନାସିଲେ ସମସ୍ତ ଅସୁରକୁ ॥୪୯୭୬॥
ସନ୍ୟ ନାସଯାନ୍ତେ ଜାଣିଲା ସୁତକେଶି
କି ଅବା ସପତ ସାଗର ଦେବ ସୋସି ॥୪୯୭୭॥
ବିସାସତେ ଯୋଜନ ଅଟଇ ତାର ରଥ
ଦସ ବିଂସ ଭୁଜେ ଧରିଣ ଧନୁ ସସ୍ତ୍ର ॥୪୯୭୮॥
ଆଦି ମିଥୁନରେ ଯେସନ ଜଳଧାରା ପଡ଼ି
ସେହି ରୁପେ ଦଇତ ନାରାଜ ଦିଯେ ଛାଡ଼ି ॥୪୯୭୯॥
ଦେଖିଣ ଜଗବନ୍ଧୁ ବିନ୍ଧିଲେ ତିକ୍ଷ ସର
ଛେଦିଣ ପକାଇଲେ ସେ ଯେ ଦାନବ ଧନୁସର ॥୪୯୮୦॥

---

୧ । ଖ ପୋଥି – ଶତେସେନ କିରାତ
୨ । ଖ ପୋଥି – ଶତକେଶୀ
୩ । ଖ ପୋଥି – ନାରାଜ ଯୋଡ଼ିଣ ବିନ୍ଧିଲେ ଦଇତ୍ୟ

ନବତନ ଧନୁ ଯେ ଧଇଲା ସୁତକେସି
ବିନ୍ଧିଲା କୁହୁକ ସର ହୋଇଲା ଘୋର ନିସି ॥୪୯୮୧॥
ସୁଦ୍ରିସେନ ଚକ୍ର ସେ ଯେ ହରି ଦେଖାଇଲେ
ଦିସିଲା ବନଭୁମି ଅନ୍ଧାର ପଳାଇଲେ ॥୪୯୮୨॥
କଉମୋଦି ଗଦା ସେ ଯେ ପିଟିଲେ ଚକ୍ରଧର
ଭାଜିଲା ରହୁବର ଦଇତ୍ୟ ହେଲା ପାଦଭର ॥୪୯୮୩॥
ପାଦଗତି ହୋଇଣ ଅସୁର ନାରାଜ ବିନ୍ଧିଲା
ବନଭୁମି ଯାକ ସେ ହିଙ୍ଗୁଳ ବର୍ଣ୍ଣ ହେଲା ॥୪୯୮୪॥
ଦେଖିଣ ଭଗବାନ ସତଧନୁ ତାପେଂ
ନାରାୟଣା ସର ବିନ୍ଧିଲେ କଉତୁକେଂ ॥୪୯୮୫॥
ପଡ଼ିଲା ନାରାଜ ଯେ ଦଇତ୍ୟ କଣ୍ଠ ତଟେଂ
ପଡ଼ିଲା ବେନି ଖଣ୍ଡ ଅସୁର ମୁରାଟେ ॥୪୯୮୬॥
ପ୍ରାଣ ଯିବା ବେଳେ ସେ ରଡ଼ିଯେ ଛାଡ଼ିଲା
ପଦ୍ମଭୁଅଂ[1] ମଧ୍ୟରୁ ଯେ ସତଧନୁ ପଳାଇଲା ॥୪୯୮୭॥

## ହରି ଅର୍ଜୁନ ଯୁଦ୍ଧ

ଅର୍ଜୁନଠାରେଂ ଯାଇ ପସିଲା ସରଣ
ସରଣ ରଖିଲା ତାକୁ ପାଥ ଫାଲଗୁନ୍ୟ ॥୪୯୮୮॥
ଯେମନ୍ତେ ଭଗବାନ ଗୋଡ଼ାଇ ତାକୁ ଗଲେ
ଅର୍ଜୁନ ପଛେ ସତଧନୁକୁ ଦେଖିଲେ ॥୪୯୮୯॥
ସବର ରୁପ ହୋଇ ଅଛନ୍ତି ଚକ୍ରଧର
ବାସବସୁତ ହୋଇଅଛି ଯେ ମଲ୍ଲାର ॥୪୯୯୦॥
ବଦୟନ୍ତି କେସବ ସବର ଯେହାକୁ ବେଗେଂ ଛାଡ଼
ଅର୍ଜୁନ ପ୍ରତିବାଚ ହୋଇଛି ରାତ୍ରକାଳ ॥୪୯୯୧॥
ରାତ୍ର ପାହିଲେ ବିଚାରିବା ବସି
ସୁଣି କୋପେ ନାରାଜ ବିନ୍ଧିଲେ ରସିକେସି ॥୪୯୯୨॥
ପ୍ରତିସରେଂ ତାହା ଛେଦିଲା ବାସେବି
ପୁଣି ଯେକ ନାରାଜ ବିନ୍ଧିଲେ ଗୋବିନ୍ଦି ॥୪୯୯୩॥
ଯେମନ୍ତେ ବେନି ଜନେ କଲେ ଘୋର ରଣ
ଉଲୁକାପାତ ହେଲା ଚଉଦ ଭୁବନ ॥୪୯୯୪॥
କୋପେଂ ମନଭେଦି ସର ବିନ୍ଧିଲା ଅର୍ଜୁନ
ନିଚେଷ୍ଟ ହୋଇଲେ ପ୍ରଭୁ ଭଗବାନ ॥୪୯୯୫॥
ଗୋବିନ୍ଦ ପଡ଼ନ୍ତେଣ ସେ ମିଳିଲା ବାସେବି
ପଦ୍ମମୁଖ ଦେଖି ସତଧନୁକୁ ପଚାରି ॥୪୯୯୬॥
ସତଧନୁ ବୋଲଇ ମୁଂ କଲି ରତ୍ନ ଚୋରି
ତେଣୁ ମୋତେ ଗୋଡ଼ାଇ ଅଇଲେ ଦଇତାରି ॥୪୯୯୭॥

---

୧ । ଖ ଓ ଗ ପୋଥି – ପଦ୍ମନାଡ଼

ଯେହି ସେ ଶ୍ରୀହରି ବୋଇଲେ ସତଧନୁ
ଧନୁକୁ ପକାଇ ଧଇଲା କୋଇନ୍ତାଙ୍କର ତନୁ ।।୪୯୯୮।।
ମୋହନା ସର କାଢ଼ି ଜିବନ୍ୟାସ ସର ବିନ୍ଧି
କୋଳରେ ବସାଇ ବାଉନି ପାଥ କାନ୍ଦି ।।୪୯୯୯।।
ଅର୍ଜୁନ ରୋଦନ ଯେ ସୁଣିଣ ଚକ୍ରଧର
କିପାଇଂ ରୋଦନ ପାଥ କରୁଛୁ ଅପାର[1] ।।୫୦୦୦।।
ଅର୍ଜୁନ ପ୍ରତିବାଚ ଅପ୍ରାଧ କଲି ମୁହିଂ
ଚିହ୍ନି ନ ପାରି ମୁହିଂ ନାରାଜ ବିନ୍ଧିଲଇଂ ।।୫୦୦୧।।
ଯାହାର ଆହାଲ୍ଲାଦେ ବ୍ରତନ୍ତି ପାଣ୍ଡବେ
ଦ୍ରୋହପଣ କଲି ପ୍ରଭୁ ତୋହର ପଦ୍ମପାଦେ ।।୫୦୦୨।।
ବଦୟନ୍ତି କେସବ ଚିନ୍ତା ତୁ ନ କର
ତୋହାର ହସ୍ତେ ଅପ୍ରାଜୟେ କାର୍ଯ ହୋଇଲାକ ମୋହର ।।୫୦୦୩।।
ବାବୁ ଯେ ସତଧନୁ ନାସିଲା ସକ୍ରାଜିତ
ମଣି ଯେହୁ ଘେନି ଆସି ପସିଲା ବନସ୍ତ ।।୫୦୦୪।।
ତୋଠାରେ ମିଳିଲା ଜିବ ପାଇଲାକ ସେହି
ଚିହ୍ନି ନପାରି ତୋ ସଙ୍ଗେ ରଣ କଲି ମୁହିଂ ।।୫୦୦୫।।
ଯାଉଅଛି ମୁହିଂ ଥାଅ ତୁହିଂ ବନ
ଯିବାବେଳେ ଦ୍ୱାରିକାକୁ ଯିବୁରେ ଅର୍ଜୁନ ।।୫୦୦୬।।
ଗୋବିନ୍ଦ ସୁମରନ୍ତେ ମିଳିଲା ବଇନେତ୍ର
ଅର୍ଜୁନ ଉଳଗଇ ଶ୍ରୀକୃଷ୍ଣ ପାଦଗତ ।।୫୦୦୭।।

## ଗୋସିଂଘ ଦୈତ୍ୟ ବଧ

ପାଥକୁ ଅଶ୍ୱାସିଣ ଶ୍ରୀକୃଷ୍ଣ[2] ଚଳିଗଲେ
ଦ୍ୱାରାବତି ପୁରେ ପ୍ରବେସ ହୋଇଲେ ।।୫୦୦୮।।
ନିଳାମ୍ବର ଅଗ୍ରତେ କହିଲେ ସମାଚାର
ବଳରାମ ବୋଇଲେ ଯେଢ଼େ ହଟିଆ ନାଗର ।।୫୦୦୯।।
ସତଧନୁ ଯେବେ ନାସିଲା ସକ୍ରାଜିତ
କେତେକାଳ ତାହାକୁ ସହିବ ଆଦିତ୍ୟ ।।୫୦୧୦।।
ଯେମନ୍ତ ବୋଲି ତାହାକୁ କହିଲେ ସଙ୍କର୍ଷଣ
ସମସ୍ତେ ବସିଛନ୍ତି ସଭା ମଣ୍ଡାଇଣ ।।୫୦୧୧।।
ରମ୍ୟେକ ପର୍ବତକୁ ପ୍ରସଂସା କଲେ ରାମ
ଯାଗ ଭୁମି ଯେହୁ ବୋଲି ବୋଇଲେ ଭଗବାନ ।।୫୦୧୨।।
ପୁର୍ବେ ଯାଗ କଲେ ରମ୍ୟେକ ନାମେ ଗିରିରେଂ
ରେବତି ଜନ୍ମ ହେଲେ ତୁମ୍ଭଙ୍କୁ ବିଭା କଲେ ।।୫୦୧୩।।
ବଦୟନ୍ତି ହଳପାଣି କରିବା ଆମ୍ଭେ ଯାଗ
ଆସନ୍ତୁ ରାଜାମାନେ ଦୁତ ଯାଆନ୍ତୁ ଚାରିଦିଗ ।।୫୦୧୪।।

୧ । ଖ ପୋଥି - ବୋଲନ୍ତି କିପେଂ ପାଥ ରୋଦନ ତୁହି କର
୨ । ଖ ଓ ଗ ପୋଥି - ଗୋବିନ୍ଦ

ଦକ୍ଷିଣ ଦିଗେ ଗଦ କୁମର ପୁର୍ବ ଦିଗେ ପଦ୍ମନ
ଉତରେ ସାତ୍ୱିକି ପଶ୍ଚିମ ଦିଗେ ସାମ ।।୫୦୧୫।।
ରାମକୃଷ୍ଣ ନିମନ୍ତ୍ରଣ ପାଇ ରାଜା ଘେନିଣ ଯୋଗାଡ଼ମାନ
ଆଜ୍ଞା ପାଇ ଦ୍ୱାରିକା ଗମିଲେ ରାଜାଗଣ ।।୫୦୧୬।।
ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ରସିମାନେ ମିଳିଣ ଯାଗକୁଣ୍ଡ ଖୋଳି ।।୫୦୧୭।।
ଲାଗିଲେ ବିନ୍ଧାଣି ତୋଳିଲେ ଛତ୍ରଘର
ଯାହାକୁ ଯେଉଂ ରୁପେ ଭିଆଇଲେ ସକଳ ସମ୍ଭାର ।।୫୦୧୮।।
ହଟି ବଟି ଜଟି ସ୍ୱାହା ପ୍ରକଟି ଚାରିବୃକ୍ଷ
ସ୍ଥାପିଲେ ଚାରିଦ୍ୱାରେ ଆପଣେ ଶ୍ରୀବଛ ।।୫୦୧୯।।
ସୁଣଗୋ ଓମା ବୋଲି ସଙ୍କର କହିଲେ
ଚାରି ଦିଗକୁ ସେ ଦୁତ ଯାଇଥିଲେ ।।୫୦୨୦।।
ଆସନ୍ତି ରାଜାମାନେ ନିମନ୍ତ୍ରଣ ପାଇ
ଯୋନାବତି କଟକେ ସାତ୍ୱିକି ମିଳେ ଯାଇ ।।୫୦୨୧।।
ଗୋସିଂଘ ଭୁବନେ ସେ ପ୍ରତାପି ରାକ୍ଷାସ
ସାତ୍ୱିକି ନେଇ ଦିଲେ ଗୋସିଂଘର ପାସ ।।୫୦୨୨।।
ଗୋସିଂଘ ବୋଇଲା ବ୍ୟଜଂନ କର ଯେ ମାନବାକୁ
ସଭାରେ ମାଧବି ଯେ କହିଲା ଦତ୍ୟକୁ ।।୫୦୨୩।।
ଦ୍ୱାରିକାରେ ଯାଗ ଯେଂ କରନ୍ତି ରାମହରି
ନିମନ୍ତ୍ରଣ କରି ମୁଂ ଅଇଲି ତୁମ୍ଭପୁରି[1] ।।୫୦୨୪।।
ସୁଣିଣ ଦାନବ ସେ ଘୋସଣ ଦିଆଇଲା
ଥାଟ ସଜ କରି ସେ ବାହାର ହୋଇଲା ।।୫୦୨୫।।
ଚଳନ୍ତି ଦଇତେ ଯେ ବନଭୁମି ମାଡ଼ି
ବନଜିବମାନଙ୍କୁ ଖାଉଛନ୍ତି ପୋଡ଼ି ।।୫୦୨୬।।
ସାର୍ମୁଳିକ ବନେ ରହିଲେ ସନ୍ୟ ପଡ଼ି
ରାତ୍ରରେ ସାତ୍ୱିକି ଯେ ପଳାଇଲା ଛାଡ଼ି ।।୫୦୨୭।।
ରାମକୃଷ୍ଣ ଅଗ୍ରତେ ସେ କହିଲା ବାରତ
ସୁଣିଣ ଯାଦବେ ହୋଇଲେ ତରସ୍ତ ।।୫୦୨୮।।
ରସି ବ୍ରାହ୍ମଣମାନେ ବାକ୍ୟ ପଢ଼ିଣ ନ ପାରିଲେ
ହରି ବଳରାମ ସୁଣି ଦୁରକୁ ଧାଇଂଗଲେ ।।୫୦୨୯।।
ମୁସଳ ଧରି ହରି ବଳରାମ ପିଟିଲେ ଦୈତ୍ୟ ସନ୍ୟ
ଡାକିଲା ଜପାସୁର ମନ୍ତ୍ରି କରିଛ ନିମନ୍ତ୍ରଣ ।।୫୦୩୦।।
ନିମନ୍ତ୍ରି ଯାହାକୁ ଆଣି ତାହାକୁ କି ମାରି
ସାହାସ୍ରେ ଯେକଥା ଅଛି କି ଯେରୁପେ ବିଚାରି[2] ।।୫୦୩୧।।

୧ । ଖ ପୋଥି - କରିଛନ୍ତି ନିମନ୍ତ୍ରଣ ଯାଅ ହୋ ଅସୁରାରି
୨ । ଖ ପୋଥିରେ ଏହି ଦୁଇ ଧାଡ଼ି ଅଧିକ ଅଛି

ବିଶ୍ୱାସଘାତକ ଯେ ହେଉଛ ବେନିଭାଇ
ସୁଣିଣ ସ୍ୟାନ୍ତି ହେଲେ ହରି ବଳରାମ ଦୁଇ ॥୫୦୩୨॥
ରାକ୍ଷସ ବଳକୁ ଯେ ସଙ୍ଗତେ ଘେନିଗଲେ
ଯାହାକୁ ଯେଉଂରୁପେ ସାମଗ୍ରି ଭିଆଇଲେ ॥୫୦୩୩॥
ରହିଲେ ରାକ୍ଷସମାନେ ପାଇଣ ଆସନ
ଯାଗରେ ବିଜେ କଲେ ହରି ବଳରାମ ॥୫୦୩୪॥
ନଳ କୁବେରକୁ ପେସିଲେ ରତ୍ନାକର
କହ ଯା ଗୋସିଂଘକୁ ନାସନ୍ତୁ ଚକ୍ରଧର ॥୫୦୩୫॥
ଗୋସିଂଘର ମନ୍ତ୍ରି ଜପାସୁର ନାମ
ସେ ବୋଇଲେ ରାଜା ତୋତେ ମାରିବେ ଭଗବାନ ॥୫୦୩୬॥
ସୁଣିଣ ରାକ୍ଷସ ହୋଇଲା କୋପଭର
ଚଉରାସି କାଠି ସନ୍ୟ ଘେନିଣ ସଙ୍ଗତର ॥୫୦୩୭॥
କୁସ ହସ୍ତେ ବସିଛନ୍ତି ହରି ବଳରାମ
ରାତ୍ରକାଳେ ମାଡ଼ି ପଡ଼ିଲେ ଦତ୍ୟଙ୍କର ସନ୍ୟ ॥୫୦୩୮॥
ଗୋସିଂଘ ଧଇଲା ଯେ ପଦ୍ମନ ବିରକୁ
ଲୋହାସୁର ଧଇଲା ନଳ କୁବେରକୁ ॥୫୦୩୯॥
ପସିଣ ଦଇତ୍ୟେ ସେ ଯେ କଲେ ହୁରି ଜୁରି
ରସିଗଣମାନଙ୍କୁ ଖାଇଲେ ପୋଡ଼ିକରି ॥୫୦୪୦॥
ଯାଦବମାନେ ସବୁ ଭୟରେଂ ପଳାଇଲେ
ଗୋସିଂଘ ହାବୋଡ଼ିଲା ଯାଗସାଳଠାରେଂ ॥୫୦୪୧॥
ରାମକୃଷ୍ଣ ଦୁହିଂକି ଯେ ପକାଇ ଅଗ୍ନିକୁଣ୍ଡେ
ତହିଂପରେ ଢାଳିଲେ ସହସ୍ରେ ଘୃତ କୁମ୍ଭେ ॥୫୦୪୨॥
ବେନିଭାଇ ଗୋପ୍ୟ ହେଲେ ନ ପାଇ ଅସୁର
ଦେଖିଲେ ସତ୍ୟଭାମା ଅଛନ୍ତି ସେହିଠାର ॥୫୦୪୩॥
ଅପୁର୍ବ ସୁନ୍ଦରି ସେ ବିଷ୍ଣୁର ଘରଣି
ଦେଖିଣ ଦଇତ୍ୟ ସେ ଯେ ଲୋଭକଲା ପୁଣି ॥୫୦୪୪॥
ମନ୍ତ୍ରିବର କହନ୍ତେ ନ କଲା ତାର ବୋଲ
ବିମାନେ ବସାଇ ବାହିଲା ରହୁବରଂ[1] ॥୫୦୪୫॥
ମଣିଭଦ୍ରା ବୋଲି ପର୍ବତ ଯେକଇ ଗୋଟିୟେ
ତହିଂ ପରେ ଅଛି ଯେ ବିର ଧନୁର୍ଜୟେ ॥୫୦୪୬॥
ଡାକିଲେ ସତ୍ୟାବତି ଅର୍ଜୁନ ରଖ ମୋତେ
ସୁଣିଣ ସତଧନୁ କହିଲା ବିଜଇ ଅଗ୍ରତେ ॥୫୦୪୭॥
ଡାକନ୍ତି ସତ୍ୟାବତି ଶ୍ରୀକୃଷ୍ଣ ପାଟରାଣି
ରଖ ପାଥ ବୋଲନ୍ତେ ସୁଣିଲା ଫାଲଗୁନି ॥୫୦୪୮॥
ଅର୍ଜୁନ ବୋଇଲା ଯେ ଅଟଇ ରାତ୍ରକାଳ
କେହୁ କାହାକୁ କରୁଛି ବଳାତ୍କାର ॥୫୦୪୯॥

୧ । ଖ ଓ ଗ ପୋଥି – ବିମାନେ ବସାଇ ବାହୁଡ଼ିଲା ଗୋସିଂଘ ମହାବୀର

ଯେତେ ବୋଲି ବିନ୍ଧିଲା ସେ ନାରାଜ ମନଭେଦି
ଉତର ଦକ୍ଷିଣ ପୁର୍ବ ପଶ୍ଚିମ ଆକାସ ସହିତେ ନିରୋଧି ॥୫୦୫୦॥
ରହିଲେ ଅସୁରବଳ ନ ପାଇଣ ବାଟ
ସର ପିଡ଼ା କରିଣ ଅଛି ବିର ପାଥ ॥୫୦୫୧॥
ଗୋସିଂଘ ବିକଳେଂ ଜପାସୁର ମନ୍ତ୍ରି ଯେ କହିଲା
ବୋଲ ଯେ ନ କଲୁ ରାଜା ପ୍ରମାଦ ପଡ଼ିଲା ॥୫୦୫୨॥
ବଡ଼ଲୋକ ବଚନ ଭାଜିଂଲେ ପଡ଼ଇ ପରମାଦ
ପିତାର ବଚନ ମେଣ୍ଟିଲେ ହୁଅଇ ସିରଛେଦ ॥୫୦୫୩॥
ସସୁର ବଚନ ଯେବେ ମେଣ୍ଟଣ କରେ ବଧୁ
ସନ୍ତାନ ହାନି ହୁଏ ଜନ ମୁଖେ ଅସାଧୁ ॥୫୦୫୪॥
ଗୁରୁ ବଚନ ମେଣ୍ଟିଲେ ସିଷ୍ୟ ହୁଏ ମୁର୍ଖ
ମନ୍ତ୍ରି ବଚନ ମେଣ୍ଟିଲେ ନାସ ଯାଏ ନୃପ ॥୫୦୫୫॥
ସତ୍ୟଯୁଗେ ଜଳତୁରଙ୍ଗ ରାଜା ଥିଲା
ମନ୍ତ୍ରିର ବଚନେ ସେ ଜଗତ ସାଧ କଲା ॥୫୦୫୬॥
ଯଉଂଦିନେ ତାହାକୁ ଆବୋରିଲା କାଳ
ନ କଲା ମନ୍ତ୍ରି ବୋଲ ନାସିଲା ସନ୍ୟବଳଂ[1] ॥୫୦୫୭॥
ମୋର ବୋଲ ନ କରି ଆଣିଲୁ ସୁନ୍ଦରି
ଯେବେ ଯେ ଉଗାଳିଛି ତାଠାରେ ଦେବା ଫିରି ॥୫୦୫୮॥
ରାଜାକୁ କହି ମନ୍ତ୍ରି ଘେନିଲା ସତ୍ୟାବତି
ଅର୍ଜୁନ ଗୋଚରେ ଯେ ଦିଲାକ ସମର୍ପି ॥୫୦୫୯॥
ଅର୍ଜୁନକୁ ଦେଖି ସତ୍ୟା ପାଡ଼ିଲା ବୋବାଳି
ଯେ ସେ ଗୋସିଂଘ ନାସ କଲା ବନମାଳି ॥୫୦୬୦॥
କଟାର ଘେନି ଦତ୍ୟ ମନ୍ତ୍ରିକି ଛେଦିଲା ପାଥ
ସୁମରନ୍ତେ ମିଳିଲା ଚିତ୍ରସେନ ରଥ ॥୫୦୬୧॥
ରହିଲା ସତଧନୁ ଠାକୁରାଣି ପାସ
ଦାନେବ ସଙ୍ଗତେ ସମର କଲା ପାଥ ॥୫୦୬୨॥
ଚଉରାସି କାଠି ଯେ ଗୋସିଂଘର ବଳ
ନାରାଜ ବିନ୍ଧେ ଯେହ୍ନେ କକଡ଼ା ମାସ ଜଳ ॥୫୦୬୩॥
ସେ ସର ଛେଦି ପାଥ ଲେଉଟି ସର ବିନ୍ଧି
କୋଟି କୋଟି ଦଇତ୍ୟ ସିର ପକାଇଲା ଛେଦି ॥୫୦୬୪॥
ନିଳବାଣ ଭୁଜବାଣ ପସୁପତ୍ର ସେ ଖେଚରି
ଅଗ୍ନି ଦୁର୍ଗାଙ୍କର ସସ୍ତ୍ର ଦିଲା ସେହୁ ଚାରି ॥୫୦୬୫॥
ସେ ସର ମାରି ପାଥ ଦଇତ୍ୟଙ୍କୁ ଛେଦି
ଦେଖିଣ ଗୋସିଂଘ ଯେ ବହୁତ ସର ବିନ୍ଧି ॥୫୦୬୬॥
ଅଗ୍ନି ସରକୁ ଯେ ଅର୍ଜୁନ ବିନ୍ଧିଲା
ତୁଣ୍ଡ ବିସ୍ତାରିଣ ଗୋସିଂଘ ସରକୁ ଗିଳିଦେଲା ॥୫୦୬୭॥

୧ । ଖ ଓ ଗ ପୋଥି – ନ କଲା ମନ୍ତ୍ରୀ ବୋଲ ମଲା ସେ ମହିପାଳ

ଯେବଣ ଅଗ୍ନିରେ ଦହିଜ ହୁଅନ୍ତା ସଂସାର
ତେଡ଼େ ଅଗ୍ନିସର ଗର୍ଭରେ ହୋଇଲା ସିତଳ ॥୫୦୬୮॥
ଦେଖିଣ ଆଶ୍ଚାର୍ଯ୍ୟ ହୋଇଲା ବାସେବି
ଦେବତାୟେ ଡାକିଲେ ବିନ୍ଧ ବୈଷ୍ଣବି ॥୫୦୬୯॥
ବୈଷ୍ଣବା ସରରେ ଗୋସିଂଘ ନାସ ଗଲା
ସାଧୁ ଅର୍ଜୁନ ବୋଲି ସେ ସବଦ ସୁଭିଲା ॥୫୦୭୦॥
ରଥରେ ବସିଲେ ସକ୍ରାଜିତର ଦୁଲାଳି
ଅର୍ଜୁନ ସତଧନୁ ଗମିଲେ ମହିୟାଳି ॥୫୦୭୧॥
ଦ୍ୱାରିକା ଭୁବନେ ପ୍ରବେସ ହୋଇଲେ
ଦେଖିଲେ ଭଗନସ୍ଥ ହୋଇଛି ସର୍ବଠାରେ ॥୫୦୭୨॥
ଯାଗସାଳଠାରେ ପ୍ରବେସ ଧନୁର୍ଜଇ
ସ୍ତୁତି ଆରମ୍ଭିଲା ସେ ବାହାର ହୋଇଲେ ବେନି ଭାଇ ॥୫୦୭୩॥
ଜୟତୁ ଜଗନ୍ନାଥ ଜଗତ ଚିନ୍ତାମଣି
ତୋହର ସଞ୍ଚିଲା ଯେ ୟେ ସଂସାର ଚାରିଖାନି ॥୫୦୭୪॥
ସର୍ଜନା ପାଳଣ ଯେ ସଂହାରଣ ତୁହି
ତୋରଠାରୁ ଆନ ଜଣେ ସଂସାରେ କେହି ନାହିଂ ॥୫୦୭୫॥
ତୋତେ ଖାଇବାକୁ କି ଦଇତ୍ୟ ସାମରଥ
ତୋହର ଇଛାରେ ତୁ ହୋଇଛୁ ଯେ ଗୋପତ ॥୫୦୭୬॥
ଯେବେ ଗୋପତ ତୁ ହୋଇଲୁ ଭଗବାନ
ମୁହିଂ ତୋର କିଙ୍କର ଯେ ଦେଖାଅ ବଦନ ॥୫୦୭୭॥
ତୁମ୍ଭର ଚରଣେ ମୁଂ ନିବେସିବିଂ ମାଥ
ରାମକୃଷ୍ଣ ଚରଣେ ସରଣ ସାରୋଳା ଚଣ୍ଡି ଦାସ ॥୫୦୭୮॥

## ଶତଧନୁର ବରଲାଭ, ଅର୍ଜୁନଙ୍କ ସହିତ ସୁଭଦ୍ରାଙ୍କ ମିଳନ ଓ ଦୁର୍ଯ୍ୟୋଧନ ସହିତ ସୁଭଦ୍ରାଙ୍କୁ ବିବାହ ଦେବା ଉଦ୍ଦେଶ୍ୟରେ ବଳରାମଙ୍କ ହସ୍ତିନାକୁ ଦୂତ ପ୍ରେରଣ

ବଦୟନ୍ତି ସଦାସିବ ସୁଣଗୋ ଗଉରି
ରାମକୃଷ୍ଣ ବେନି ଅଗ୍ନିରୁ ଅବତରି ॥୫୦୭୯॥
ଅର୍ଜୁନକୁ ହରି କୋଳରେ ଧଇଲେ
ଗୋସିଂଘର ହସ୍ତେ ବାବୁ ପରାଭବ ପାଇଲୁ ଭଲେ[୧] ॥୫୦୮୦॥
କରପତ୍ର ଯୋଡ଼ିଣ ସେ ବୋଇଲା ସତଧନୁ
ଗୋସିଂଘକୁ ନାସ କଲେ ବାବୁ ବାସେବର ତନୁ ॥୫୦୮୧॥
ସତ୍ୟଭାମାକୁ ଘେନି ରାତ୍ରରେ ଯାଉଥିଲା
ମୁହିଂ ଦେଖି କହିଲି ସେ ଅର୍ଜୁନ ଉଗାଳିଲା ॥୫୦୮୨॥
ଚଉରାସି କାଠି ସନ୍ୟ ସହିତେ ଅସୁର
ସମସ୍ତେ ନାସ ଗଲେ ଅର୍ଜୁନ ହସ୍ତର ॥୫୦୮୩॥
ଶ୍ରୀହରି ପ୍ରତିବାଚ ଯେବେ ମଲା ସେ ଅସୁର
ତୁ ଯେବେ ଜଗିଥିଲୁ ମୋତେ ମାଗ ଦେବିବର ॥୫୦୮୪॥
ସତଧନୁ ବୋଇଲା ଯେବେ ଦେବ ଜିବଦାନ
ହୋଇଲୁ ନିଶ୍ଚିନ୍ତ ବୋଲି ବୋଇଲେ ଭଗବାନ ॥୫୦୮୫॥
ଅର୍ଜୁନକୁ କୋଳରେ ବସାଇ ଭାବଗ୍ରାହି
ଆଜ୍ଞା ଦିଲେ ସ୍ତିରିଙ୍କୁ ଆସନ୍ତୁ ପାଥକୁ ବନ୍ଦାଇ ॥୫୦୮୬॥
କହିଲେ ସତ୍ୟଭାମା ଅଷ୍ଟ ପାଟବଂସି
ଗୋବିନ୍ଦଙ୍କ କୋଳରେ ସେ ଯେ ଅର୍ଜୁନ ଛନ୍ତି ବସି ॥୫୦୮୭॥
ପାଥ ଜଗନ୍ନାଥକୁ ବନ୍ଦାଇ ଚଳିଲେ
ଅର୍ଜୁନକୁ ଦେଖି କାମାତୁର ସଉଭଦ୍ରେ ହୋଇଲେ ॥୫୦୮୮॥
କୋଳ କରି ସତ୍ୟଭାମା ଘେନିଣ ଯେ ଗଲେ
ସଉଭଦ୍ର ବୋଇଲେ ମୋତେ ଅର୍ଜୁନ ନାସକଲେ ॥୫୦୮୯॥
ତାହାକୁ ଯେବେ ମୋତେ କରିବ ପ୍ରଦାନ
ତେବେ ସିନା ସରିରେ ମୋର ରହିବ ଜିବନ ॥୫୦୯୦॥
ୟେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ମଣୋହିରେ ବିଜେ ସେ ଅର୍ଜୁନ ଦଇତାରି ॥୫୦୯୧॥
ଅର୍ଣ୍ଣ ପରସନ୍ତି ଯେ ଭିସ୍ମେକ ଦୁଲଣି
ଭୋଜନ ସାରି ଆଞ୍ଚୋବନ କଲେକ ହାଦେ ବେନି ॥୫୦୯୨॥
ୟେଥୁ ଅନ୍ୟନ୍ତରେ ଯହୁଂ ହୋଇଲା ସନ୍ଧ୍ୟାକାଳ
ସୟନ କଲାକ ପାଥ ବିଚିତ୍ର ମନ୍ଦିର ॥୫୦୯୩॥
ସତ୍ୟଭାମା ପୁରେ ସେ ଯେ ବିଜୟେ ଦେବହରି
କହିଲେ ଆଦିଅନ୍ତ ସକ୍ରାଜିତର କୁମାରି ॥୫୦୯୪॥
ସୁଭଦ୍ରା ପ୍ରଦାନ ଯେ କରିବା ଅର୍ଜୁନକୁ
ଶ୍ରୀହରି ବୋଇଲେ ଯେ କହ ଯସୋଦାଙ୍କୁ ॥୫୦୯୫॥
ଚଳିଲେ ସତ୍ୟାବତି ନନ୍ଦରାଣିକି ଜଣାଇଲେ
ସେ ଯାଇ ବଳରାମ ଅଗ୍ରତେ କହିଲେ ॥୫୦୯୬॥
ଅର୍ଜୁନକୁ ସୁଭଦ୍ରା ଯେ କରାଇବା ବିଭା
ବଦୟନ୍ତି କାମପାଳ ଜାର ଜାତକା ପାଣ୍ଡବା ॥୫୦୯୭॥
କୁରୁବଂସ ରାଜା ସେ ଯେ ଅଟଇ ଦୁର୍ଯୋଧନ
ତାହାଙ୍କୁ ତୁମ୍ଭ ଝିଅକୁ କରିବା ପ୍ରଦାନ ॥୫୦୯୮॥
ସୁଣିଣ ଯସୋବନ୍ତି ସତ୍ୟାକୁ ଯାଇ କହିଂ
ବଳରାମ ନାସ୍ତି କଲେ ବୋଲି ହରିଙ୍କି ଜଣାଇଂ ॥୫୦୯୯॥
ବଦୟନ୍ତି କେସବ ସୁଭଦ୍ରାକୁ ଯାଅ ଘେନି
ସମର୍ପିଣ ଆସ କ୍ରିଡ଼ା କରୁ ଫାଲଗୁନି ॥୫୧୦୦॥
ଆଜ୍ଞାପାଇ ସତ୍ୟା ସୁଭଦ୍ରାକୁ ନେଇ
କବାଟରେ ହସ୍ତଦେଇ ଡାକିଲେ ମହାମାଇ ॥୫୧୦୧॥

---
୧ । ଖ ଓ ଗ ପୋଥି – ଗୋସିଂଘର ହସ୍ତେ ବାବୁ ପ୍ରାଭବ ପାଇଲୁ ଯେ ଆମ୍ଭେ

କିମ୍ପାଇ ଡାକୁଅଛ ବୋଲି ବୋଇଲେ ଫାଲଗୁନି
ସତ୍ୟଭାମା ବୋଇଲେ ସୁଭଦ୍ରାକୁ ଆସିଅଛି ଘେନି ॥୫୧୦୨॥
ତୁମ୍ଭକୁ ଦେଖିଣ ଯେହୁ ହୋଇଲା କାମାତୁର
କରିବୁଂ ପ୍ରଦାନ ତୋତେ ସୁରତିଂ ଯେବେକର ॥୫୧୦୩॥
ଅର୍ଜୁନ ପ୍ରତିବାଚ ହୋଇଲ ତୁମ୍ଭେ ଏଡ଼େ ବାଇ
ମହତ ପ୍ରାଣି କି ସେ ଅନ୍ୟାୟ ଆଚରଇ ॥୫୧୦୪॥
ନ ହରେଂ ପରଧନ ପରନାରି ମୁଂ ନ ହରିବିଂ
ସତ୍ୟଭଗ୍ନ ହୋଇଲେ ମୁଂ କୁମ୍ଭିପାକେ ପଡ଼ିବି ॥୫୧୦୫॥
ସୁଭଦ୍ରା ବୋଇଲା ମୁଂ ନୁହଇଂ ପରନାରି
ହୋଇଛି ଅବିବାହି ଇଛାୟେଂ ତୋତେ ମୁଂ ବରି ॥୫୧୦୬॥
ନ ସୁଣିଲା ପାଥ ରଜନି ଅର୍ଦ୍ଧ ହୋଇ
ବାହୁଡ଼ିଣ ସତ୍ୟାବତି ଶ୍ରୀହରି ଆଗେ କହି ॥୫୧୦୭॥
ପାହିଲା ରଜନି ଯେ ଉଠିଲେ ସର୍ବଜନ
ରମ୍ୟେକ ପର୍ବତେ ବିଜୟେ ଭଗବାନ ॥୫୧୦୮॥
ସାତବଂସ ଯାଦବ ସହିତେ ବଳରାମ
କରନ୍ତି ଉଛବ ସେ ଯେ ସଙ୍ଗତେ ଅର୍ଜୁନ ॥୫୧୦୯॥
ହସ୍ତିନାକୁ ଯିବ ବୋଲି ଅର୍ଜୁନ ଉଦବେଗ
ଦିନାଚାରି ରହ ବୋଲି ବୋଇଲେ ବାସୁଦେବ ॥୫୧୧୦॥
ରାତ୍ରରେ ସୟନ କଲେକ ଫାଲଗୁନି
ସତ୍ୟାଭାମା ଗମିଲେ ସୁଭଦ୍ରାକୁ ଘେନି ॥୫୧୧୧॥
ଡାକନ୍ତେ ପାଥ ବୋଲଇ କିମ୍ପାଇଂ ମୋତେ ଡାକୁ
ସତ୍ୟଭାମା ବୋଇଲେ ଆଣିଛି ସୁଭଦ୍ରାକୁ ॥୫୧୧୨॥
ତୋହରି ପଦାର୍ଥ ତୁ ସମ୍ଭାଳ ଫାଲଗୁନି
ଅର୍ଜୁନ ବୋଇଲା ସେ ମୋହର ବହେଣି[୧] ॥୫୧୧୩॥
ସୁଭଦ୍ରା ବୋଇଲା ଧିକ ତୋ ବଳ ବିର୍ଯ୍ୟ
ଧିକ ତୋର ଦସ ନାମ କ୍ଷତ୍ରିପଣ ପହିଜ[୨] ॥୫୧୧୪॥
ଅର୍ଜୁନ ପ୍ରତିବାଚ ଧିକ ତୋ ଜିବନ
ଧିକ ତୋର ଭାଇ ସେ ଯେ ହରି ବଳରାମ ॥୫୧୧୫॥
ବଦୟନ୍ତି ସୁଭଦ୍ରା ସେ ଲଜା କି କାରଣେ[୩]
ଛାଡ଼ନ୍ତି ଲଜା ଗମନ୍ତି ବରଜାତି ପଣେ[୪] ॥୫୧୧୬॥
ଯେ ଜନ ମାଗିଣ ଖାଇ ତାର ଲଜା ଯେ ନଥାଇ
ଛାଡ଼ଇ ଲଜା ଯେ ଜନ ପର ଘରେଂ ଭୁଜଂଇ ॥୫୧୧୭॥

୧ । ଖ ପୋଥି - ହେବନାହିଁ
୨ । ଖ ପୋଥି - ଦହିଯ୍ୟ
୩ । ଖ ପୋଥି - ଶୁଣ ହେ ଅର୍ଜୁନ
୪ । ଖ ପୋଥି - ଆବର ଯତି ପୁଣ

ଚୋରି ନାରି ଛୋଟା ଅସମର୍ଥ ଜନ
ଯେହାଙ୍କର ଲଜା ନ ଥାଇ ସୁଣ ହୋ ଅର୍ଜୁନ ॥୫୧୧୮॥
ସମସ୍ୟା ନ ଦେଇ ପାଥ ହୋଇଲାକ ତୁନି
ଚଳିଲେ ସତ୍ୟଭାମା ସୁଭଦ୍ରାକୁ ଘେନି ॥୫୧୧୯॥
ଆପଣା ମନ୍ଦିରେ ପ୍ରବେଶ ଶ୍ରୀକୃଷ୍ଣ ପାଟରାଣି
ଠାକୁରଙ୍କ ପାଶେ ଯାଇ ଭେଟିଲା ତରୁଣି ॥୫୧୨୦॥
ନାସ୍ତିକଲା ପାଥ ବୋଲି ସତ୍ୟାବତି ଯେ କହିଲା
ଗୋବିନ୍ଦେ ବୋଇଲେ କାଲି ଭେଟ କରାଇବା ॥୫୧୨୧॥
କହିଣ ପହୁଡ଼ିଲେ ରଜନି ଗଲା ପାହି
ଅନାଦୃଷ୍ଟ ଉଦ୍ଧବକୁ ବଳରାମ ହସ୍ତିନା ପଠିଆଇ ॥୫୧୨୨॥
ବଳରାମେ ବୋଇଲେ ଦୁର୍ଯୋଧନକୁ ଆଣ ଯାଇ
ବୋଲିବୁ ବଳରାମ ମୋତେ ଦେଇଛନ୍ତି ପଠିଆଇ[୧] ॥୫୧୨୩॥
ବୋଲିବୁ ବରବେସେଂ ଆସୁ ଦୁର୍ଯୋଧନ
ସୁଭଦ୍ରାକୁ ତାହାକୁ ଯେ କରିବା ପ୍ରଦାନ ॥୫୧୨୪॥
ବଳରାମର ଆଜ୍ଞାରେ ହସ୍ତିନାକୁ ଗଲେ ଦୂତ
ମେରୁ ଉହାଡ଼ରେ ଯାଇ ରହିଲେ ଆଦିତ୍ୟ ॥୫୧୨୫॥
ସତ୍ୟଭାମା ମୁଖ ଚାହିଂ ବୋଇଲେ ଚକ୍ରଧର
ଯେକଥା କହଯାଇ ବନ୍ଧୁଙ୍କ ଠାବର ॥୫୧୨୬॥
ପୁରୁଷ ବସ ମନ୍ତ୍ର ଥୋକାଯେ ଜାଣନ୍ତି ସେହି
ସୁଣିଣ ସତ୍ୟଭାମା ସୁଭଦ୍ରା ସଙ୍ଗେ ନେଇ ॥୫୧୨୭॥
ପ୍ରବେସ ହେଲେ ଯହିଂ ଅଛନ୍ତି ମାୟାବତି
ଗୁରୁଜନଙ୍କୁ ଉଳଗିଲା ପଦ୍ମନ ଯୁବତି ॥୫୧୨୮॥
ପଚାରନ୍ତେ ସବୁ କହିଲା କୃଷ୍ଣର ପାଟ
ସୁଭଦ୍ରାକୁ ଯେମନ୍ତ ବସ ହୋଇବ ବାସେବର ଚାଟ ॥୫୧୨୯॥
ସୁଣିଣ ସାରମନ୍ତ[୨] ଦେଲେକ ରତି ଦେବିଂ
ଯେବଣ ମନ୍ତେ ବସ ହୋଇବେ ବିବୁଧାଦି ॥୫୧୩୦॥
ମଉସଧି ଘେନିଣ ସୁଭଦ୍ରା ସତ୍ୟଭାମା
ଅର୍ଜୁନ ମନ୍ଦିରେ ମିଳିଲେ ନନ୍ଦ ମହାକୁଡ଼ ଜେମା ॥୫୧୩୧॥
ଡାକନ୍ତେ ନ ସୁଣିଲା ପାଣ୍ଡବ ଫାଲଗୁନି
ମନ୍ତ୍ରପଢ଼ି ଛୁଅନ୍ତେ ଯେ ଫିଟିଲା କିଳିଣି ॥୫୧୩୨॥
ଅର୍ଜୁନଠାରେ ପ୍ରବେସ ହୋଇଲେ ସେ ନନ୍ଦବାଳି
ଜଳୁଅଛି ଲକ୍ଷ ଲକ୍ଷ ମାଣିକ୍ୟ ଦିପାବଳି ॥୫୧୩୩॥
ଆଲୋ ଆଲୋ ରାଜୁଣି ବୋଲି ଧଇଲା ପାଥ କେସ
ମନ୍ତ୍ରଧୁଳି ପକାନ୍ତେ ବାସେବି ହେଲା ବସ ॥୫୧୩୪॥

୧ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୨ । ଖ ପୋଥି - ମନ୍ତ ଧୂଳି

କେସ ଛାଡ଼ି ପାଥ ସୁଭଦ୍ରା କୋଳ କରି
ବିବସନ କରିଣ ଭୁଜରେ ଭୁଜଭିଡ଼ି ॥୫୧୩୫॥
ସୁଭଦ୍ରା ଡାକ ଦିଲେ ସୁଣଗୋ ସତ୍ୟାବତି
ବଳେଂ ମୋତେ ହରିତେ ଲୋଡ଼ଇ ସର୍ବସାଚି ॥୫୧୩୬॥
ସୁଣିଣ ହରିପ୍ରିୟା ବୋଇଲେ କାର୍ଯ୍ୟ କର ସିଦ୍ଧ
କହିଲେ ସର୍ବକଥା ଗୋବିନ୍ଦଙ୍କ ଆଗ ॥୫୧୩୭॥
ସୁଣିଣ ସନ୍ତୋସ ହୋଇଲେ ଜଗଦିସ
ଅର୍ଜୁନ ସୁଭଦ୍ରାର ବହୁତ ରତି ରସଂ ॥୫୧୩୮॥
ରଜନି ପାହାନ୍ତେଣ ଉଠିଲେ ସର୍ବଜନ
ଅର୍ଜୁନ ଉଠିଲେ ସେ ସାରିଲେ ସ୍ନାହାନ ॥୫୧୩୯॥
ସଭାରେ ପ୍ରବେସ ଯେ ହୋଇଲେ ସର୍ବସାଚି
ଯେହି ରୁପେ ସାତ ପାଞ୍ଚ ଦିନ ତହିଂ ପାଥ ବଞ୍ଚି ॥୫୧୪୦॥
ଯେକଦିନେଂ ନଦିରେ ସ୍ନାହାନ କରନ୍ତି ସର୍ବନାରି
ସୁଭଦ୍ରାର ସଙ୍ଗତେ ହାସ୍ୟ ପରିହାସ୍ୟ କରି ॥୫୧୪୧॥
ଯେଣୁ ସମସ୍ତଙ୍କର ନଣନ୍ଦ ସୁଭଦ୍ରା ଅଟନ୍ତି
ତେଣୁ କରି ବିବସନ କଲେକ ରେବତି ॥୫୧୪୨॥
ଦେଖିଲେ ସ୍ତନରେ ଲାଗିଛି ଲଖ ଚିହ୍ନ
ଅଧର ଗଣ୍ଡସ୍ଥଳେ ପୁରୁଷର ଦନ୍ତଘାତ ବର୍ଣ୍ଣ[୨] ॥୫୧୪୩॥
ବୋଲନ୍ତି ରେବତି ସୁଣଗୋ ସଉଭଦ୍ରେ
ତୋତେ ବିବସନେ[୩] କଲେକି ପାଣ୍ଡବେ ॥୫୧୪୪॥
ସୁଭଦ୍ରା ପ୍ରତିବାଚ ଜାଣିଲୁ ଗୋ ତୁହି
ମିଥ୍ୟା ନ କହିବିଂ ଗୋ ମୋତେ ହରିଲା ଧନୁର୍ଜଇ ॥୫୧୪୫॥
ରେବତି ବୋଇଲେ ଯେ ଯେ ଅବିବାହି ମହାମେରୁ
ପଳାଉ ପାଥ ତୋତେ ଘେନିଣ ଦ୍ୱାରିକାରୁ ॥୫୧୪୬॥
ସୁଭଦ୍ରା ଦଇନି ହୋଇଲେ ରେବତି ଅଗ୍ରତେଂ
ଯେକଥା ନ ଜାଣିବେ ଦେବ ହଳହସ୍ତେଂ ॥୫୧୪୭॥
ଯେହା ସୁଣି ସମସ୍ତ ନାରି ଚଳିଗଲେ
ବଳରାମ ଅଗ୍ରତେ ଯେ ରେବତି ପୁଛାକଲେ ॥୫୧୪୮॥
ଅବିବାହି ତୁମ୍ଭର ଯେ ରହିଲା ବହେଣି
କାହାକୁ ପ୍ରଦାନ ଯେବେ କରିବ ହଳପାଣି ॥୫୧୪୯॥
ବଦୟନ୍ତି ନିଳାମ୍ବର କାଲି ଆସିବ ଦିର୍ଯୋଧନ
ସୁଭଦ୍ରାକୁ ତାହାକୁ କରିବା ପ୍ରଦାନ ॥୫୧୫୦॥

୧ । ଖ ପୋଥିରେ ଏହା ପରେ ଏହି ଦୁଇ ଧାଡ଼ି ଅଧିକ ଅଛି –
ସୁଭଦ୍ରାକୁ ବଶ ହେଲା ବାସବ କୁମର
ଶୁଣ ଗୋ ପ୍ରିୟା ବୋଲି ବୋଲନ୍ତି ମହେଶ
୨ । ଖ ପୋଥି – ଚିହ୍ନ
୩ । ଖ ପୋଥି – ବିଡ଼ମ୍ବଣ

ରେବତି ବୋଇଲେ ସେ ଲଜା ପାଇଯିବ
ପରପୁରୁଷଠାରେ ସୁଭଦ୍ରା ସମର୍ପିଲେ ଅଙ୍ଗ ॥୫୧୫୧॥
ସୁଣି କୋପେ ବଳରାମ ଡକାଇ ଉଗ୍ରସେନ
ବୋଇଲେ ନିସାପତିମାନଙ୍କୁ ବେଗେ ଡକାଇଆଣ ॥୫୧୫୨॥
ଯେହିକ୍ଷଣି ତାହାଙ୍କୁ ପକାଇବି ମାରି
ରେବତି ବୋଇଲେ ଦୋସ ନାହିଂ ତାହାଙ୍କରି ॥୫୧୫୩॥
ସୁଭଦ୍ରା ଅର୍ଜୁନର ହୋଇଲା ପିରତି
ଗୋବିନ୍ଦଙ୍କୁ ଆଣ ବୋଲି ବୋଇଲେ ହଳପତି ॥୫୧୫୪॥
ଆଜ୍ଞା ପ୍ରମାଣେ ଯାଇ ମିଳିଲେ ଗୋବିନ୍ଦ
ପାଥ ସୁଭଦ୍ରାକୁ ହରିଲା ବୋଲି ବୋଇଲେ ବଳଦେବ ॥୫୧୫୫॥
ହରି ବୋଇଲେ ପାଥର କିସ ଦୋସ
ତୁମ୍ଭର ବହେଣି ଯୋଗୁଂ ସକଳ ହେଲା ନାସଂ ॥୫୧୫୬॥
ଯେଡ଼େ ଭରସା କାହିଂ ପାଥର ହୋଇଲା[୨]
ବଦୟନ୍ତି ନିଳାମ୍ବର ଯେହା ରେବତି କହିଲା ॥୫୧୫୭॥
ଶ୍ରୀହରି ବୋଇଲେ ସେ ଯେ ହରିଲା ଧନୁର୍ଜଇ
ସାମଗ୍ରି ଭିଆଅ ସେ ଯାଉ ବିଭା ହୋଇ ॥୫୧୫୮॥
ଅବଶ୍ୟ ପରକୁ ସେ ଦେବାକ କୁମାରି
ଜାରଜାତକା ପାଣ୍ଡବେ ବୋଇଲେ ହଳଧାରି ॥୫୧୫୯॥
ଦୁର୍ଯୋଧନକୁ କହିଲି ସେ ଆସୁଛି ବିଭାହୋଇ
ଆଗହୁଂ କିପାଂ ମୋତେ ନ କହିଲୁ ମାଧୋଇ ॥୫୧୬୦॥
ମାରିବିଂ ଅର୍ଜୁନକୁ କେମନ୍ତେ ରକ୍ଷା ପାଇ
ଉଗ୍ରସେନକୁ ବୋଇଲେ ପାଥକୁ ଘେର ଯାଇ ॥୫୧୬୧॥
ଯେତେ କହି ସଭାରୁ ଉଠିଲେ ହଳସାଇଂ
ଯେମନ୍ତେ ପାଣ୍ଡବା ସେ ନଯାଏ ପଳାଇ ॥୫୧୬୨॥
ତାଙ୍କ କୋପ ଦେଖି ଉଠିଲେ ଭଗବାନ[୩]
ସତ୍ୟଭାମାକୁ ରାଇ ବୋଲନ୍ତି ବଚନ ॥୫୧୬୩॥
ଅର୍ଜୁନକୁ କହ ଯାଇ ରହି ପାରିଲେ ରହୁ ଯେଥି
ନୋହିଲେ ପଳାଇ ଯାଉ ମାରିବେ ହଳପତି ॥୫୧୬୪॥
କହିଲେ ସତ୍ୟାବତି ଅର୍ଜୁନ ଆଗର
ସେ ବୋଇଲା ଯେକା ଦୟା ଥିବଟି ଚକ୍ରଧର ॥୫୧୬୫॥
ବଳରାମ ସହିତେ ଯାଦବେ ଯିବେ ହାରି
କେତେ ବଳ ଅଛନ୍ତି ସେ ଆସନ୍ତୁ ରଣ କରି ॥୫୧୬୬॥
କହିଲେ ସତ୍ୟଭାମା ହରସ ଭଗବାନ
ପୁତ୍ରକୁ ବୋଇଲେ ସାହାହୁଅ ଫାଲଗୁନ୍ୟ ॥୫୧୬୭॥

୧ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୨ । ଖ ପୋଥି – ଶ୍ରୀହରି ବୋଇଲେ ପାଥର ଭରସା ଯେଡ଼େ ହେଲା
୩ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଲକ୍ଷେ ସାଠିଯେ ସହସ୍ର ଅଣାସି ନନ୍ଦନ
ଅର୍ଜୁନକୁ ସାହା ହେଲେ ରଥି ମହାବିରମାନ ॥୫୧୬୮॥

## ଅର୍ଜୁନଙ୍କ ସହିତ ବଳରାମଙ୍କ ଯୁଦ୍ଧ

ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ଯାଦବେ ବେଢ଼ିଲେ ଯାଇ ଅର୍ଜୁନ ଭୁବନ ॥୫୧୬୯॥
ରାତ୍ର ପାହାନ୍ତେ ଯେ ଅର୍ଜୁନ ଦେଖିଲା
ହାବୋଡ଼ା ସରେ ମାରି ସନ୍ୟକୁ ଘଉଡ଼ାଇ ଦିଲା ॥୫୧୭୦॥
ମାୟାବତି ଦେଇଥିଲେ ଯେବଣ ମାୟାମାନ
ସୁଭଦ୍ରାକୁ ଘେନି ତହିଂ ବସିଲା ଅର୍ଜୁନ ॥୫୧୭୧॥
ଦ୍ୱାରିକା ଦାଣ୍ଡରେ ସେ ହୋଇଲେ ବାହାର
ବଳରାମ ଅଗ୍ରତେ ଯେ କହିଲା ଡଗର ॥୫୧୭୨॥
ସୁଣିଣ ତାଳଧ୍ୱଜେ ବସିଲେ ବଳରାମ
ଅର୍ଜୁନର ସଙ୍ଗତେ କଲେକ ସଂଗ୍ରାମ ॥୫୧୭୩॥
ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ବରବେସେ ଅଇଲେ ସେ ହସ୍ତିନା ଦଣ୍ଡଧାରି ॥୫୧୭୪॥
ଭିସ୍ମ ଦ୍ରୋଣ ଆଦି ସେ ପାଣ୍ଡବ ସହିତେଂ
ଦ୍ୱାରିକାରେ ହୋଅନ୍ତେ ପାଇଲେ ବାରତେ ॥୫୧୭୫॥
ସହଦେବ କହନ୍ତେ ସେ କଥା ଫୁଟ ହେଲା
ସୁଣିଣ ଦୁର୍ଯୋଧନ ମନେ ବହୁତ କୋପ କଲା ॥୫୧୭୬॥
ସବୁଦିନେ ପାଣ୍ଡବେ ମୋତେ ହିଂସା କରି
ଆଜ ନ ବ୍ରତିବେ ଯେ ପକାଇବିଂ ମାରି ॥୫୧୭୭॥
ସହଦେବ ମୁଖଚାହିଂ ବୋଇଲେ ଯୁଧିଷ୍ଠି
ମନ୍ତ୍ରିବର ବୋଇଲା ହରି ଅର୍ଜୁନ ଯେକ ପ୍ରିତି ॥୫୧୭୮॥
ଯୁଧିଷ୍ଠି ଆଜ୍ଞାଦେଲେ ଯାଅରେ ଭିମସେନ
ସୁଣିଣ ବିକୋଦର ପିଟି ଯେ ଗଲା ସନ୍ୟ ॥୫୧୭୯॥
ଭିସ୍ମ ଦ୍ରୋଣ କର୍ଣ୍ଣ ଦୁର୍ଯୋଧନ ଦୁସାସନ
ଯେହାଙ୍କ ତୁଲେ ରଣ ସାମ ଗଦ ସାତ୍ୱିକି ପଦ୍ମନ ॥୫୧୮୦॥
ଯାଦବ ସନ୍ୟଙ୍କୁ ନକୁଳ ସହଦେବ ଭିମ
ଅର୍ଜୁନ ସଙ୍ଗତେ ସେ ଯୁଝନ୍ତି ବଳରାମ ॥୫୧୮୧॥
ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ଅନେକ ପହିଜ ଯେ ହୋଇଲା ସବୁରିଂ ॥୫୧୮୨॥
ସମୁଦ୍ର ମନ୍ଥନେ ଯେହ୍ନେ ନାରାୟଣ ଲକ୍ଷ୍ମି
ତେସନେ ଦିସନ୍ତି ସୋଭା ସୁଭଦ୍ରା ଫାଲଗୁନି ॥୫୧୮୩॥
ନିଳାମ୍ବର ବିନ୍ଧିଲେ କୋଟିଯେ ନାରାଜ
ଦସବାଣେ ତାହା ସେ ଯେ ଅର୍ଜୁନ କଲା ଛେଦ ॥୫୧୮୪॥

୧ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ନିଳବାଣ ଭୁଜବାଣ ବୈଷ୍ଣବି ସୁଳସକ୍ତି
ଚାରିବାଣ ଯେକାବେଳେ ଯୋଚିଲେ ହଳପତି ॥୫୧୮୫॥
ଦେବ ଯେ ସହସ୍ର ରାମ କଲେକ ସନ୍ଧାନ
ଅର୍ଜୁନକୁ ଶ୍ରୀହରି ଯେ ଦିଲେ ସୁଦର୍ସନ ॥୫୧୮୬॥
କଉମୋଦି ଗଦା ନାରାୟଣା ସର
ଚତୁର୍ଭୁଜ ହୋଇ ଧଇଲେ ବାସେବ କୁମର ॥୫୧୮୭॥
ଅର୍ଜୁନ ରୁପ ଦେଖି ତ୍ରାସିଲେ ନିଳାମ୍ବର
ଡାକିଲେ କାମପାଳରେ ରହିଲା ସମର ॥୫୧୮୮॥
ଧନ୍ୟରେ ପାଣ୍ଡବେ ଜିବନ ତୁମ୍ଭର ସାଧୁ
କେତେ ତପ କରିଣ ତୋସିଲ ଜଗବନ୍ଧୁ ॥୫୧୮୯॥
ଯେମନ୍ତ କହୁଂ କହୁଂ ମିଳିଲା ଡଗର
ସ୍ୱାମି ନାସ ଯାଉଅଛି ତେଣେ ଧୃତିରାଷ୍ଟ୍ରଙ୍କ ବାଳ ॥୫୧୯୦॥
ସୁଣି ବିସ୍ମୟେ ଯେ ସ୍ୟାନ୍ତି ହୋଇଲେ ହଳପତି
ବହୁତ ସ୍ତୁତି ତହିଂ କଲା ସର୍ବସାଚି ॥୫୧୯୧॥
ଜୟତୁ ନିଳାମ୍ବର ସଂସାର ପାଳକ
ଜୟତୁ ନିଳାମ୍ବର ଧବଳ କମଳ ମୁଖ ॥୫୧୯୨॥
ହସ୍ତରେଂ ସୋଭାବନ ଯେ ସଉନନ୍ଦି ମୁସଳ
ଶ୍ରୀକୃଷ୍ଣର ସାଖା ଅନନ୍ତ ରୁପ ତୋରଂ ॥୫୧୯୩॥
ଜୟତୁ ନିଳାମ୍ବର ସିରରେ ସପ୍ତଫେଣି
ସପ୍ତସାଖା ମୁକୁଟ ଜୋତିରେଖା ଜିଣି ॥୫୧୯୪॥
ଅତିଗରୁ ତାପ ଯେ କୋପ ଅପ୍ରମାଣ
ସ୍ୟାନ୍ତିକି କୋମଳ ସମାସ୍ୟାକୁ ମଉନ ॥୫୧୯୫॥
ମୁହିଂ ପାମର ପାଥ ନ ଜାଣି କଲି ମନ୍ଦ
ଯେବେଂ ସରଣ ପସିଲି ଅଭୟ ପଦ୍ମପାଦ ॥୫୧୯୬॥
ହୃଷ୍ଟ ବଦନେ ଦୟା କର ହେ ହଳପାଣି
ମୋତେ ବାଞ୍ଛାଂ ହେଉ ବିଭା ଦିଅ ତୋ ବହେଣି ॥୫୧୯୭॥
ଅର୍ଜୁନ ସ୍ତୁତିରେଂ ହଳି ହୋଇଲେ ହରସ
ସେ ନିଳାମ୍ବର ଚରଣେ ସରଣ ସାରୋଳା ଚଣ୍ଡି ଦାସ ॥୫୧୯୮॥

## ଅର୍ଜୁନଙ୍କ ସହିତ ସୁଭଦ୍ରାଙ୍କ ବିବାହ

ସୁଣଗୋ ଓମା ବୋଲି ବୋଇଲେ ସଙ୍କର
ପାଥକୁ କୋଳ କରି ଯେ ଧଇଲେ ନିଳାମ୍ବର ॥୫୧୯୯॥
ରହିଲା ସମର ଆଜ୍ଞା ଦେଲେ ବଳରାମ
ଅର୍ଜୁନକୁ ସୁଭଦ୍ରା ଯେବେଂ କରିବା ପ୍ରଦାନ ॥୫୨୦୦॥
ସୁଣିଣ ସମସ୍ତେ ଯେ ହୋଇଲେ ଆନନ୍ଦ
ଅମୃତ ଦୃଷ୍ଟିରେ ସେ ଚାହିଂଲେ ସଦାନନ୍ଦ ॥୫୨୦୧॥

୧ । ଖ ପୋଥିରେ ଏହି ଧାଡ଼ି ନାହିଁ

କଉରୋବେ ପାଣ୍ଡବେ ଜିବନ ପାଇଲେ
ଉଗ୍ରସେନକୁ ରାଇ ଜଗନ୍ନାଥ ଆଜ୍ଞା ଦେଲେ ॥୫୨୦୨॥
ବିଭାର ସାମଗ୍ରି ତୁମ୍ଭେ ଭିଆଅ ଉଗ୍ରସେନ
ସୁଭଦ୍ରାକୁ ନାରିମାନେ କରନ୍ତି ବେସ ଭୁସଣ[୧] ॥୫୨୦୩॥
ବାନ୍ଧିଲେକ ବେଦି ପାଡ଼ିଲେ ଛାମୁଡ଼ିୟା
ହିରା ନିଳା ବାନ୍ଧି ମୋତି ଥୋପି ଥୋପି ନୁଆ ॥୫୨୦୪॥
ସ୍ୱର୍ଗରୁ ସଭା ଘେନି ଅଇଲେ ବଜ୍ରଧର
ପାଥକୁ କୋଳେ ଘେନି ବସିଲା ବେଦିର ॥୫୨୦୫॥
ବସିଲା ମହାକୁଢ଼ ସୁଭଦ୍ରାକୁ ଘେନି
ବାକ୍ୟ ପଢ଼ନ୍ତେ ପ୍ରୋହିତ ଗାର୍ଗବ ମହାମୁନି ॥୫୨୦୬॥
କୋଟି କୋଟି ନାରି ଦିଅନ୍ତି ହୁଳହୁଳି
ସଙ୍ଖଧ୍ୱନି ବାଦ୍ୟ ସବଦେଂ ଦ୍ୱାରକା ଉଛୁଳି ॥୫୨୦୭॥
ସୁଭଦ୍ରା ଅର୍ଜୁନ ହସ୍ତସୁତ୍ର ବନ୍ଧାକଲେ
ସମସ୍ତ ରସିମାନେ ବିବାହ କରାଇଲେ[୨] ॥୫୨୦୮॥
ବସୁଦେବ ଦେବକି ଶ୍ରୀକୃଷ୍ଣର ନନ୍ଦନ
ବାନ୍ଧବ ପଣେ ଦେଲେ ଯଉତୁକମାନ ॥୫୨୦୯॥
ବିଭା ବିଧି ସାରିଣ ବନ୍ଦାପନା କଲେ
ଦୁର୍ବାକ୍ଷତ ଘେନି ବିଚିତ୍ର ମନ୍ଦିରେ ବିଜେକଲେ ॥୫୨୧୦॥
ଜୁଅ ଖେଳାଇଣ ସାରିଲେ ମଣୋହିଂ
ପରିହାସ୍ୟ ନାରିମାନେ ଆଖି ଠରାଠରି ଦେଇଂ ॥୫୨୧୧॥
ବହୁତ ଦାନ ଦିଲେ ଧର୍ମର ନନ୍ଦନ
ଦରିଦ୍ରଙ୍କ ଦୁଖ ସବୁ ହୋଇଲା ବିମୋଚନ ॥୫୨୧୨॥
ରଜନି ହୋଅନ୍ତେ ବରକନ୍ୟା ସେଯ୍ୟାକଲେ
ହାସ୍ୟେ ପରିହାସ୍ୟେ ଶୃଙ୍ଗାର ଆରମ୍ଭିଲେ ॥୫୨୧୩॥
ଆରଦିନ ବାରୁଣାକୁ କଲେକ ଗମନ
ସାଜିଲେ ଗଜ ଅଶ୍ୱ ହାନ୍ଦୋଳା ବିମାନ ॥୫୨୧୪॥
ଯହୁଂ ବରକନ୍ୟା ହୋଇଲେ ବାହାର
ପାଛୋଟି ଗଲେ ନନ୍ଦ ପଦ୍ମନ ଚକ୍ରଧର ॥୫୨୧୫॥
ଯୁଧିଷ୍ଟିଙ୍କି ନନ୍ଦ ଯେ କହିଲା ପ୍ରବୋଧି
ଗଉତମି ନଦିଠାରୁ ଅଇଲେ ବାହୁଡ଼ି ॥୫୨୧୬॥
ପାଣ୍ଡବେ ପ୍ରବେସ ହୋଇଲେ ବାରୁଣାର
ଧୃତିରାଷ୍ଟ୍ର ଅଗ୍ରତେ କହିଲେ ଡଗର ॥୫୨୧୭॥
ଧୃତିରାଷ୍ଟ୍ର ଗାନ୍ଧାରି ସୁଣିଣ ଆନନ୍ଦ
ବରକନ୍ୟା ଦେଖିତେ ଅଇଲେ ସ୍ତିରିବୃନ୍ଦ ॥୫୨୧୮॥

୧ । ଖ ପୋଥି – କଲେକ ବେସନ
୨ । ଖ ପୋଥି – ଶ୍ରୀହରି ବଳରାମ ଯେ ଯଉତୁକ ଦେଲେ

ବରକନ୍ୟାକୁ ଦେଖି ଉଲ୍ଲସିତ କାମିନି
ଧନ୍ୟ ଯେ ସଉଭଦ୍ରା ଧନ୍ୟ ଯେ ଫାଲଗୁନି ॥୫୨୧୯॥
କିଛିଦିନ ଯାନ୍ତେଣ ହୋଇଲା ଅବିସେକ
ସାତ୍ୱିକି ପ୍ରବର୍ତ୍ତିଣ ଦେଲେ ପିତବାସ ॥୫୨୨୦॥
ସାତ୍ୱିକି ଜଣାଇଲା ଯୁଧିଷ୍ଟି ଆଗର
ଅବିସେକ ହୋଇବ ହରି ହଳଧର ॥୫୨୨୧॥
ଅର୍ଜୁନ ସୁଭଦ୍ରା ଯେ ଯିବେ ଦ୍ୱାରିକାକୁ
ଯାଅ ବୋଲି ଆଜ୍ଞା ଦେଲେ ଯୁଧିଷ୍ଟି ପାଥକୁ ॥୫୨୨୨॥
ସର୍ବସାଚି ସୁଭଦ୍ରା ସାତ୍ୱିକି ତିନିଜଣ
ପ୍ରବେସ ହୋଇଲେ ଯାଇ ଦ୍ୱାରିକା ଭୁବନ ॥୫୨୨୩॥
ଦେଖି ଭଗବାନ ଆନନ୍ଦ ହୋଇଲେ
ଅର୍ଜୁନକୁ ଭିଡ଼ିକରି କୋଳାଗ୍ରତ କଲେ ॥୫୨୨୪॥
ସରିଲାକ ଅବିସେକ ଗଲା କିଛିଦିନ
ବାରୁଣା ଭୁବନକୁ ଗମିଲେ ଅର୍ଜୁନ ॥୫୨୨୫॥
ଯୁଧିଷ୍ଟିଙ୍କି ଅର୍ଜୁନ ଦ୍ରସନ କଲା ଯାଇ
ସୁଣଗୋ ଓମା ବୋଲି ସଙ୍କର ଯେ କହି ॥୫୨୨୬॥

## ରାଜସୂୟ ଯଜ୍ଞ ସଂପର୍କରେ ଶ୍ରୀକୃଷ୍ଣଙ୍କ ସହିତ ଯୁଧିଷ୍ଠିରଙ୍କର ପରାମର୍ଶ

ଦିନେ ନାରଦଙ୍କୁ କହିଲେ ଚକ୍ରଧର
ତୁମ୍ଭେ ସେ କହିବ ଯାଇ ଯୁଧିଷ୍ଟିଙ୍କ ଆଗର ॥୫୨୨୭॥
ବୋଲିବ ତୋର ପିତା ବ୍ରହ୍ମହତ୍ୟା କରିଥିଲେ
ତେଣୁ ଜନ୍ତୁପତି ସଭାରେ ବସିତେ ନଦେଲେ ॥୫୨୨୮॥
ରାଜୁସି ଯଜ୍ଞକଲେ ବ୍ରହ୍ମହତ୍ୟା ଦୋସଯାଇ
ଶ୍ରୀହରି ବଚନେ ନାରଦ ମୁନି ସେ ଚଳିଯାଇ ॥୫୨୨୯॥
ବାରୁଣାବନ୍ତରେ ପ୍ରବେସ ହୋଇଲେ[୧]
ଯୁଧିଷ୍ଟି ଉଠିଣ ଆସନ ଯୋଗାଇଲେ ॥୫୨୩୦॥
ନମସ୍କାର କରିଣ ପୁଛିଲେ ବାରତ
କେତେ କାର୍ଯ୍ୟେ ଆଗତ ହୋଇଲ ବ୍ରହ୍ମସୁତ ॥୫୨୩୧॥
ନାରଦେ ବୋଇଲେ ସଜିଂବନି ପୁରେଂ ଥିଲୁ
ତୋ ପିତା ପଣ୍ଡୁ ଦୁଖ ନୟନେ ଦେଖିଲୁଂ ॥୫୨୩୨॥
ବ୍ରହ୍ମହତ୍ୟା ଦୋସ ବୋଲି ବାଛିଲା ଜନ୍ତୁସାଇଂ
ଆଜ ଯାୟେ ପଣ୍ଡୁରାଜା ସଭାରେ ବସି ନାହିଂ ॥୫୨୩୩॥
ମୋତେ ଦେଖି ବୋଇଲେ କହିବ ପୁତ୍ରଙ୍କୁ ମୋର ଯାଇ
ରାଜୁସି ଯାଗ କଲେ ଯେ କଷ୍ଟରୁ ନିସ୍ତରଇଂ ॥୫୨୩୪॥

୧ । ଖ ପୋଥି – ବାରୁଣା ସଭାରେ ନାରଦ ପ୍ରବେଶ ଯେତେବେଳେଂ

ସୁଣିଣ ଯୁଧିଷ୍ଟି ପଡ଼ିଲେ ଧରଣି
ଯେତେ ଦୁଖ ପିତା ପାଉଛି ସଜିଂବନି ॥୫୨୩୫॥
ଗୋବିନ୍ଦ ବିନୁ କେହି ନ ଫେଡ଼ିବେ କସଣ
ଯେତେ ବୋଲି ହରିଙ୍କି ଚିନ୍ତିଲେ ଧର୍ମନାନ ॥୫୨୩୬॥
ଶ୍ରୀହରି ଜାଣିଣ ଗରୁଡ଼ ପୃଷ୍ଟରେ ବିଜେକରି
ଯୁଧିଷ୍ଟିଙ୍କି ଦ୍ରସନ କଲେ ଦଇତାରି ॥୫୨୩୭॥
ଶ୍ରୀକୃଷ୍ଣ ଓଳଗନ୍ତେ କଲ୍ୟାଣ ଧର୍ମସୁତ ବାଞ୍ଛିଂ
ଚାରିପାଣ୍ଡବେ କେସବ ପାଦତଳେ ଲୋଟି ॥୫୨୩୮॥
ବଦୟନ୍ତି ଧର୍ମସୁତ ସୁଣ ହେ ଭଗବାନ
ପିତାଙ୍କୁ ବସିତେ ଠାବ ନ ଦେଲାକ ଯମ ॥୫୨୩୯॥
ବ୍ରହ୍ମହତ୍ୟା ଦୋସ ଯେ ଯାଇନାହିଂ ପାର
ତେଣୁ ଉଭା ହୋଇଛନ୍ତି ବସି ନାହାନ୍ତି ସଭାର ॥୫୨୪୦॥
ରାଜୁସି ଯାଗ କର ବୋଲି ବୋଇଲେ ନାରଦ
କେମନ୍ତେ କରିବି ମୁହିଂ କିଛି ନାହିଂ ଧନସମ୍ପଦ ॥୫୨୪୧॥
କେସବ ପ୍ରତିବାଚ ଲକ୍ଷେ ନୃପତି ମିଳିବେ
ସୁବର୍ଣ୍ଣ ଧନ ବସ୍ତ୍ର ଦାରିଦ୍ରେ ବହିନେବେ ॥୫୨୪୨॥
ଅନୁକ୍ଷଣେ ବ୍ରାହ୍ମଣଙ୍କୁ ଦେଉଥିବ ଦାନ
ଗୋଟିଯେ ଲେଉଟିଲେ ନଷ୍ଟ ହେବ ଧର୍ମ ॥୫୨୪୩॥
ଯୁଧିଷ୍ଟି ବୋଇଲେ ମୋତେ କେହି ନାହିଂ ସାହା
କେମନ୍ତେ ସାଧି ମୁଂ ଲକ୍ଷେକ ନୃପନାହା ॥୫୨୪୪॥
ସହଦେବ ବୋଇଲେ ସୁଣ ହେ ବାସୁଦେବ
ଛୟାଣ୍ଡବେ ସହସ୍ର ରାଜା ବନ୍ଦି କରିଛି ଜାରାସନ୍ଧ ॥୫୨୪୫॥
କରିଛି ନରମେଧ ରାଜାଙ୍କୁ ଦେବ ହାଣି
ଜାରା ନାସ ଗଲେ ବ୍ରତିବେ ନୃପମଣି ॥୫୨୪୬॥
ଭିମସେନ ଅର୍ଜୁନ ଭଗବାନ କଲେକ ଗମନ
ଗରୁଡ଼ ପୃଷ୍ଟରେ ବସି ଚଳିଲେ ନାରାୟଣ[1] ॥୫୨୪୭॥
ମଗଧ ଦେସରେ ସେ ହୋଇଲେ ପ୍ରବେସ
ହରି ଆଜ୍ଞା ଦିଲେ ପକ୍ଷି ଥାଅ ତୁ ଆକାସ[2] ॥୫୨୪୮॥
ସହସ୍ର ରଖିଥିବୁ ଯୁଦ୍ଧକାଳେ ଦେବୁ
ଅପଚୟ କାଳକୁ ତୁ ସାହା ହୋଇଥିବୁ ॥୫୨୪୯॥
କହିଣ ହରି ପାଣ୍ଡବେ ସିଘ୍ରେ ଚଳିଗଲେ
ସହସ୍ର ଘେନି ଗରୁଡ଼ ସୁନ୍ୟମାର୍ଗେ ରହିଲେ ॥୫୨୫୦॥

୧ । ଖ ପୋଥି – ଗରୁଡ଼କୁ ଘେନିଣ କଲେକ ଗମନ
୨ । ଖ ପୋଥିରେ ଏହି ଦୁଇ ଧାଡ଼ି ଅଧିକ ଅଛି–
ଶହସ୍ରମାନ ରଖିଥିବୁ ଯେ ଆକାଶେ
ଯେବେ ଯୁଦ୍ଧ ହୋଇବ ସମର୍ପିବୁ ଆମ୍ଭ ପାଶେ

ଭୋଳାନାଥ ଲିଙ୍ଗଙ୍କୁ କଲେକ ଦ୍ରସନ
ଜାରାସନ୍ଧ ମୃତ୍ୟୁ ଭେଦ କହିଲେ ତ୍ରିଲୋଚନ ॥୫୨୫୧॥
ବୋଲନ୍ତି ସଦାସିବ ନନ୍ଦ ଭୋପାଳ ଅପୁତ୍ରିକ ହୋଇଥିଲା
ଦୁର୍ବାସାଙ୍କୁ ସେବି ଚୁତ ଫଳେକ ପାଇଲା ॥୫୨୫୨॥
ବେନି ରାଣି ଭକ୍ଷିଲେ ବେନି ଫାଳ କରି
ଜନ୍ମିଲା କୁମର ଅର୍ଦ୍ଧେ ଅଙ୍ଗ ଧରି ॥୫୨୫୩॥
ଫିଙ୍ଗିଦେଲେ ବେନି ଅଙ୍ଗ ପଡ଼ିଲେ ସମସାନ
ଜାରାକି ନାମେ ରାକ୍ଷସି ଗିଳିଦେଲା ବେନିଫାଳ ପୁଣ ॥୫୨୫୪॥
ବେନିଖଣ୍ଡ ଜଡ଼ିତ ହୋଇଲା ଗର୍ଭରେ
ରାକ୍ଷାସୁଣି ମଲା ଭୁମିରେ ପଡ଼ିଲା କୁମର ॥୫୨୫୫॥
କାନ୍ଦିଲା କୁମର ଜାଣିଲେ ସର୍ବଜନ
ନନ୍ଦ ଭୁପାଳ ଗୃହରେ ଦିଲେକ ନନ୍ଦନ ॥୫୨୫୬॥
ଜାରାକି ନାସି ଜାରାସନ୍ଧ ନାମ ସେ ପାଇଲା
ବେନିଫାଳ ଚିରିଲେ ମରିବ ଯେହୁ ଭଲା ॥୫୨୫୭॥
ସହଦେବ ଗଧ ସିମୁଳିଂ ଭେରି ଅଛି ଚାରି
ଯେ ଚାରି ଦ୍ୱାରକୁ ଜିଣିଲେ ଜାରାସନ୍ଧ ମରି ॥୫୨୫୮॥

## ଜରାସନ୍ଧ ବଧ

ସଙ୍କରଠାରୁ ସୁଣି ହରି ଅର୍ଜୁନ ଚଳିଗଲେ
ପ୍ରଥମ ଦ୍ୱାରେ ସହଦେବକୁ ଦେଖିଲେ ॥୫୨୫୯॥
ବ୍ରାହ୍ମଣ ବେସ ହୋଇ ଅଛନ୍ତି ଜଣ ତିନି
ସହଦେବ ସୋଧନ୍ତେ ହରି କହିଲେ ଚାଟୁବାଣି ॥୫୨୬୦॥
ତଦଅନ୍ତେ ପଲମ୍ବିତ ହୋଇଲା ସାର୍ମୁଳି
ତିକ୍ଷସରେ ବାସବି କଲାକ ତାକୁ ଧୁଳି ॥୫୨୬୧॥
ତୃତିୟରେ ଭେରି ହୁଙ୍କାର ଧ୍ୱନି କଲା
ଭିମସେନ ବିଧାରେ ସେ ଧୁଳି ହୋଇଗଲା ॥୫୨୬୨॥
ସତୃ ଦେଖି ଗଧ ସେ ବୋବାଳି ଛାଡ଼ନ୍ତେ
ଶ୍ରୀହରି ସଙ୍ଖ ନେଇ ଭରିଲେ ତାର ମୁଖେ ॥୫୨୬୩॥
ସଙ୍ଖ ପ୍ରାୟେ ଗଧ ବୋବାଳି ଛାଡ଼ିଲା
ତାକୁ ସ୍ୟାନ୍ତି କରି ଯେ ଗମିଲେ ଚକାଡୋଳା ॥୫୨୬୪॥
ସୁଣଗୋ ଓମା ବୋଲି ସଙ୍କର କହିଲେ
ଜାରାସନ୍ଧ ଦ୍ୱାରେ ବେଦଧ୍ୱନି କଲେ ॥୫୨୬୫॥
ସୁଣିଣ ଜାରାସନ୍ଧ ମିଳିଲା ଦ୍ୱିଜଠାରେଂ
ତୈଲୋକ୍ୟ ଠାକୁରଙ୍କୁ ଦେଖିଲା ନୟନରେଂ ॥୫୨୬୬॥
ବିଚାରେ କେଉଂ ଦେସରେଂ ତୁମ୍ଭର ଘର
ତୁମ୍ଭର ବେଦସୁଣି ଦେହ ମୋ ଅଥିର ॥୫୨୬୭॥

୧ । ଖ ପୋଥି – ସାର୍ମୁଳି

କେବଣ ନାମ ତୁମ୍ଭର ଯେଡ଼େକ ନାଦ ଘୋସ
ନ ପଢ଼ିଣ କହ ତୁମ୍ଭେ ମୁଂ ସୁଣିବି ଅବସ୍ୟ ॥୫୨୬୮॥
ବଦୟନ୍ତି କେସବ ଦାମୋଦର ପଣ୍ଡା ଆମ୍ଭଂ ନାମ
ଗୃହ କରିଅଛୁଂ ଯେ କୁସସ୍ଥଳି ସାସନ ॥୫୨୬୯॥
ସତ୍ୟ ଆଚରିଲେ ଦାନ ହୋ ମାଗିବା
ସୁଣିଣ ଜାରାସନ୍ଧ ଜଳ ଘେନିଣ ଯାଚିଲା ॥୫୨୭୦॥
ହସ୍ତ ପ୍ରସାରିଣ ସେ ଘେନିଲେ ଚକ୍ରଧର
ଅନ୍ୟ ମାଗୁ ନାହୁଂ ତୁମ୍ଭଙ୍କୁ ଦେବାକ ସମର ॥୫୨୭୧॥
ନୃପତି ବୋଇଲା ତୁମ୍ଭେ ଛଦ୍ରମ ଦ୍ୱିଜବର
ତୁମ୍ଭେ ନାସ ଯିବ ହତ୍ୟା ହୋଇବ ମୋ କନ୍ଧର ॥୫୨୭୨॥
ତୁମ୍ଭେ ତ ବେନି ଜନେ ବଳରେ ଅଟ କ୍ଷିଣ
ଭିମକୁ ବୋଇଲା ଯେ ଧୁମୁସା ବ୍ରାହ୍ମଣ ॥୫୨୭୩॥
ଯେହୁ ଥୋକାଯେକ ରଣ କରିବ ମୋର ସଙ୍ଗେ
ଯେତେ ବୋଲି ଜାରାସନ୍ଧ ଧଇଲା ମାଲ ବନ୍ଧେ ॥୫୨୭୪॥
ଭିମସେନ ସିଂହରଡ଼ି ଦେଇ ଉଠିଲା
କନ୍ଧରୁ ପଇତା ବାମ ଭୁଜରେ ବାନ୍ଧିଲା ॥୫୨୭୫॥
ବେନି ଗୋଟି ପର୍ବତ କି ଯେକଠାବେଂ ଗଲେ ମିଳି
ତେସନ ଦିସନ୍ତି ବେନି ମହାବଳି ॥୫୨୭୬॥
ଗଦା ପିଟାପିଟି ଲାଗିଲେ ବେନି ମହାବିର
ଆକାସ କମ୍ପିଲା କମ୍ପିଲା ସଚରାଚର ॥୫୨୭୭॥
ଜଗତି ଅଟାଳି ମେଢ଼ ମଣ୍ଡପ ଭାଜିଂଲା
ଦୁହିଙ୍କର ଗଦା ଭାଜିଂ ଧୁଳି ହୋଇଗଲା ॥୫୨୭୮॥
ଦୁହେଂ ମାଲବନ୍ଧେ ଯେ ଲାଗିଲେ ଗଡ଼ାଗଡ଼ି
ମୁଥକୁ ମୁଥ ମାରି ମୁଣ୍ଡକୁ ମୁଣ୍ଡ କୋଡ଼ି ॥୫୨୭୯॥
ଗଡ଼ାଗଡ଼ି ପଡ଼ାପଡ଼ି ଲାଗିଲେ ମେଦନିର
ଖାଲ ଯେ ଟିକର ହୋଇଲା ସମତୁଲ ॥୫୨୮୦॥
ବୃକ୍ଷଗିରି ଭାଜିଂ ଛିଡ଼ିଲା ଗୁଳ୍ମଲତା
ଦୁହେଂ ମହାକ୍ଷେତ୍ରି ସମରେ ବଳବନ୍ତା ॥୫୨୮୧॥
ଭିମକୁ ମାଡ଼ିଣ ବସିଲା ଜାରାସନ୍ଧ
ଅର୍ଜୁନ ବୋଇଲା ହରି ହେଉଛି ପ୍ରମାଦ ॥୫୨୮୨॥
ଠାକୁରଙ୍କୁ ଜାରାସନ୍ଧ ଯାଇ ନିକି ମାରି
ଦଣ୍ଡେ ରହ ବୋଲିଣ ବୋଇଲେ ନରହରି ॥୫୨୮୩॥
ସତେସିଂହ ଗିରିକି ଭିମ ସୁମରଣା କଲା
ଜାରାସନ୍ଧକୁ ଲେଉଟାଇ ମାଡ଼ିଣ ବସିଲା ॥୫୨୮୪॥
ବାସୁଦେବ ମୁଖକୁ ତଳେ କରି ଭିମସେନ
ଠାରିଲେ ମାଧବ ଚିରିଲେ ଯେକଇ ବସନ ॥୫୨୮୫॥
ଦେଖି ବିକୋଦର ଯେକ ଚରଣେ ଗୋଡ଼ଦିଲା
ଯେକ ଭୁଜେ ଯେକ ଚରଣ ଦେଇଣ ଚିରିଲା ॥୫୨୮୬॥
ବେନିଫାଳ କରି ଆକାସକୁ ଫିଙ୍ଗି ଦେଲା
ବଡ଼ବା ଅନଳେ ପଡ଼ି ଦହିଜ ହୋଇଲା ॥୫୨୮୭॥
ଜାରାସନ୍ଧ ନନ୍ଦନ ସହଦେବ ନାମ
ସନ୍ୟ ଘେନିଣ ସେ ଆରମ୍ଭିଲା ରଣ ॥୫୨୮୮॥
ଗଦା ବୁଲାଇଣ ଭିମସେନ ପିଟିଗଲା
ମନ୍ତ୍ରି କହନ୍ତେ ସ୍ୟାନ୍ତି ହୋଇଲା ରାଜାବଳା ॥୫୨୮୯॥
ସୁଣଗୋ ଓମା ବୋଲି ବୋଲନ୍ତି ମହେସ
ଜାରାସନ୍ଧ ନାସ ସୁଣି ରାଜାମାନେ ହରସ ॥୫୨୯୦॥
ଦୁର୍ଗା ମାଧବଙ୍କୁ ସେ ଯେ କରନ୍ତି ସୁମରଣ
ଯେ ଘୋର ସଙ୍କଟୁ ରକ୍ଷାକର ହେ ନାରାୟଣ ॥୫୨୯୧॥
ବଦୟନ୍ତି ସଦାସିବ ସୁଣଗୋ ଗଉରି
ଜାରାସନ୍ଧ ପୁତ୍ରକୁ କଲେକ ଦଣ୍ଡଧାରି ॥୫୨୯୨॥
ରାଜାଙ୍କୁ ମୁକୁଳାଇ ଅକ୍ଷତ ଗୁଆ ଦିଲେ
ରାଜୁସି ଯାଗକୁ ଯିବ ବୋଲି ଗୋବିନ୍ଦ ଆଜ୍ଞା ଦିଲେ ॥୫୨୯୩॥
ଭିମ ଅର୍ଜୁନକୁ ଘେନି ଚଳିଲେ ଭଗବାନ
ମିଳିଲେ କୁଣ୍ଡି ନଗ୍ରେ ଭିସ୍ମକ ଭୁବନ ॥୫୨୯୪॥
ବହୁତ ପୁଜାକଲା ରୁକ୍ମଣିର ତାତ
ଡଗର କହିଲା ଯେ ଦ୍ରିଯୋଧନ ଅଗ୍ରତ ॥୫୨୯୫॥
ଭିମ ଅର୍ଜୁନକୁ ଘେନି ଜଗନ୍ନାଥେ ଗଲେ
ଜାରାସନ୍ଧକୁ ନାସି ତାହା ପୁତ୍ରକୁ ରାଜା କଲେ ॥୫୨୯୬॥
ମାନଗୋବିନ୍ଦ ବୋଇଲାରେ ନିଅ କିଛି ଧନ
ଯୁଧିଷ୍ଟି ଆଗେ କହ ମଲେ ତିନିଜଣ ॥୫୨୯୭॥
ଆଜ୍ଞାପାଇ ଡଗର ଯେ ବାରୁଣାରେ ମିଳିଲା
ଯୁଧିଷ୍ଟିଙ୍କି ବୋଇଲା ମୁଂ ମଗଧ ଦେସେ ଯାଇଥିଲି ଭଲା ॥୫୨୯୮॥
ସେ ଠାବର କଥା କହ ବୋଲି ବୋଲନ୍ତି ଧର୍ମସୁତ
ଡଗର ପ୍ରତିବାଚ ଭିମ ଅର୍ଜୁନ ହେଲେ ହତ ॥୫୨୯୯॥
ଜାରାସନ୍ଧ ସଙ୍ଗେ ସେ ଯୁଦ୍ଧ କରି ମଲେ
ଭୟରେ ବାସୁଦେବ ପଳାଇଣ ଗଲେ ॥୫୩୦୦॥
ଯେତେ କହି ଡଗର ଅନ୍ତରିକ୍ଷେ ଗଲା[୧]
ଛେଦନ ତରୁପ୍ରାୟେ ଯୁଧିଷ୍ଟି ପଡ଼ିଲା ॥୫୩୦୧॥
ଭିମ ଅର୍ଜୁନକୁ ଯେବେ ନାସିଲା ଜାରାସନ୍ଧ
କୌରୋବେ ନିସ୍ଚେ ପାଞ୍ଚବେ ପରମାଦ ॥୫୩୦୨॥
ଯେବଣ ଜାରାସନ୍ଧକୁ ଜଗନ୍ନାଥେ ଡରି
ରହିଲେ ଗଡ଼କରି ସପତ ସିନ୍ଧୁ ବାରି ॥୫୩୦୩॥

୧ । ଖ ପୋଥି – ଅନ୍ତର୍ଦ୍ଧାନେ ଗଲେ

ଜାରାକୁ ନାସିବାକୁ କେହି ନାହିଁ କ୍ଷମ
କପଟେ ବାସୁଦେବ ମରାଇଲେ ଭାଇମାନ ॥୫୩୦୪॥
ବହୁତ ସୋକ କରି ସହଦେବକୁ ପଚାରିଲେ
ମନ୍ତ୍ରି ବୋଇଲା ବାଇକି ହୋଇଲ ରାଜା ତୁମ୍ଭେ ॥୫୩୦୫॥
ଯାହାକୁ ଜଗନ୍ନାଥ ହୋଇଛନ୍ତି ସାହି
ତାହାକୁ ନାସିବାରେ ପୃଥିିରେ କ୍ଷମ କାହିଁ ॥୫୩୦୬॥
ଜାରାସନ୍ଧକୁ ଦାନ ମାଗିଲେ ଭଗବାନ
ମାଲଯୁଦ୍ଧ କରି ତାକୁ ନାସିଲେ ଭିମସେନ ॥୫୩୦୭॥
ତାହାର ପୁତ୍ରକୁ ରାଜା କରି ବନ୍ଦି ରାଜାମାନଙ୍କୁ ମୁକୁଳାଇ
ତହୁଁ ଆସି କୁଣ୍ଡି ନଗ୍ରେ ଅଛନ୍ତି ହାଦେ ରହି ॥୫୩୦୮॥
ସହଦେବ କହନ୍ତେ ଆନନ୍ଦ ଧର୍ମସୁତ
ସୁଣଗୋ ଓମା ବୋଲି ବୋଲନ୍ତି ସୁଳହସ୍ତ ॥୫୩୦୯॥

## ଯୁଧିଷ୍ଠିରଙ୍କର ରାଜସୂୟ ଯଜ୍ଞପାଇଁ ରାଜା ଓ ଦେବତାମାନଙ୍କୁ ଶ୍ରୀକୃଷ୍ଣଙ୍କ ନିମନ୍ତ୍ରଣ

ସବର ରାଜ୍ୟରେ ପ୍ରବେସ ଚକ୍ରଧର
ତାହାକୁ ବୋଇଲେ ଯାଗ କରିବେ ଯୁଧିଷ୍ଟିର ॥୫୩୧୦॥
ଯେତେ କାଷ୍ଟ ଲାଗିବ ପରିବା ଆଦି କରି
ଦେଉଥିବୁ ଯେତେ ଯେତେବେଳେ ଲୋଡ଼ାକରି ॥୫୩୧୧॥
ନିମନ୍ତ୍ରଣ କରି ଯେ ତିନିଜଣ ଗଲେ
ବାରୁଣାବନ୍ତଠାରେ ପ୍ରବେସ ହୋଇଲେ ॥୫୩୧୨॥
ଯୁଧିଷ୍ଟି ଦେଖିଣ ହୋଇଲେ ଆନନ୍ଦ
ବଦୟନ୍ତି ଧର୍ମରାୟେ କେମନ୍ତେ ନାସଗଲା ଜାରାସନ୍ଧ ॥୫୩୧୩॥
ବଦୟନ୍ତି ଧର୍ମସୁତ ଯେମନ୍ତେ ଗୋବିନ୍ଦ ସାହାହେବୁ
ତେବେ ସିନା ଯାଗ କରିବି ମହାବାହୁ ॥୫୩୧୪॥
ନାହିଁ ଧନଧାନ୍ୟ ନାହିଁ ମୋ ଭଣ୍ଡାର
ଆମ୍ଭର ଭାଗେଂ ହୋଇଲା ବୋଇଲେ ଚକ୍ରଧର ॥୫୩୧୫॥
ମେଲାଣି ହୋଇ ହରି ଗରୁଡ଼ ବାହାନେ
ପ୍ରବେସ ହୋଇଲେ ଯାଇ ଦ୍ୱାରିକା ଭୁବନେ ॥୫୩୧୬॥
ଜାରାସନ୍ଧ ନାସ କଥା ସୁଣିଲେ କୌରୋବେ
ପଡ଼ିଲା ଚମକ ଯେ ପାଇଲେ ବିସାଦେ ॥୫୩୧୭॥
ଯେଥୁ ଅନ୍ୟନ୍ତରେ ସେ ଯେ ଦେବ ଭଗବାନ
ଯାଗକୁ ସାମଗ୍ରି ଯେ କରନ୍ତି ଭିଆଣ ॥୫୩୧୮॥
ଦ୍ୱାରିକାରେ ଯେତେକ ମହାରଣା ଥିଲେ
ଯାଗସାଳ ତୋଳିତେ ଗୋବିନ୍ଦ ଆଜ୍ଞା ଦିଲେ ॥୫୩୧୯॥
କୁବେର ପୁରେ ଦିନେ ବିଜୟେ ଭଗବାନ
ବୋଇଲେ ରାଜୁସି ଯାଗକୁ କିଛୁ ଦେବୁ ଧନ ॥୫୩୨୦॥
କୁବେର ପ୍ରତିବାଚ ଯାଗ କରନ୍ତୁ ଯୁଧିଷ୍ଟି
ନିଅ ଧାନ୍ୟ ଦେବି ମୁଂ ଲକ୍ଷ ଲକ୍ଷ ପଉଟି ॥୫୩୨୧॥
ନିମନ୍ତ୍ରଣ ଦେଇଣ ଯେ ଗମିଲେ ଭଗବାନ
ବରୁଣ ପୁରେ ମିଳି ମାଗିଲେ ରତ୍ନମାନ ॥୫୩୨୨॥
ତୋ ପୁରେ ଅଛଇ ଅଣିମା ଅଷ୍ଟନିଧି
ଦେଖିଣ ରତ୍ନାକର ପ୍ରଭୁଙ୍କ ପାଦେ ବନ୍ଦି ॥୫୩୨୩॥
ସପତ ସିନ୍ଧୁରେ ମୁଂ ହୋଇଛି ରାଜନ
ଅଷ୍ଟନିଧି ତୁମ୍ଭକୁ ଦେଇ ଖଟି ଅଛଇ ନାରାୟଣ[୧] ॥୫୩୨୪॥
ଦେବଇଂ ପାଣିଦ୍ରବ୍ୟ ତୁମ୍ଭର ଆଜ୍ଞାରେ
ଭସାଇ ଦେବି ଦ୍ରବ୍ୟ ଲାଗିବ ଯମୁନାରେ ॥୫୩୨୫॥
ଯସୋବନ୍ତି ପୁରେ ପ୍ରବେସ ବନମାଳି
ରାଜୁସି ଯଜ୍ଞକୁ ଯିବ ହେ କୁସଧାରି ॥୫୩୨୬॥
ବ୍ରହ୍ମରସିମାନଙ୍କୁ ଘେନି ସଙ୍ଗତର
ରାଜୁସି ଯଜ୍ଞକୁ ଯିବୁ ବୋଲି ବୋଇଲେ ଚକ୍ରଧର[୨] ॥୫୩୨୭॥
କପିଳାସେ ଦେବ ସଙ୍କରଙ୍କୁ ବରିଲେ
ତହୁଁ ନାରାୟଣ ସେ ଯେ ଚଳିଣଟି ଗଲେ[୩] ॥୫୩୨୮॥
ମୟ ଦଇତକୁ ବୋଇଲେ ଘେନି ଯିବୁଟି ମାୟା ସଭା
ତହିଁରେ ବସିବେ ସକଳ ରାଜଦେବା ॥୫୩୨୯॥
ସକଳ ଦେବତାଙ୍କୁ ନିମନ୍ତ୍ରି ଆଦିମୁଳ
ଯୁଧିଷ୍ଟିଙ୍କଠାରେ ପ୍ରବେସ ପରମ ମଙ୍ଗଳ ॥୫୩୩୦॥
ଯୁଧିଷ୍ଟିଙ୍କି ଦ୍ରସନ କଲେକ ନିଉଛାଳି
କଲ୍ୟାଣ ବାଞ୍ଛିଲେ ସେ ଯୁଧିଷ୍ଟି ଦଣ୍ଡଧାରି ॥୫୩୩୧॥

## ରାଜସୂୟ ଯଜ୍ଞକୁ ରାଜାମାନଙ୍କୁ ନିମନ୍ତ୍ରଣ କରିବାକୁ ପାଣ୍ଡବ ଚାରି ଭାଇଙ୍କ ଚାରି ଦିଗକୁ ଗମନ

ବଦୟନ୍ତି କେସବ ତୁମ୍ଭେ ବସିଛ କିସ ପାଇଂ
ରାଜାଙ୍କୁ ନିମନ୍ତ୍ରିବାକୁ ଯାଆନ୍ତୁ ଚାରିଭାଇ ॥୫୩୩୨॥
ଚାରି ଉଣା ଲକ୍ଷେ ରାଜା ଅଛନ୍ତି ମେଦନିର
ସମସ୍ତଙ୍କୁ ବରିଆଣ ହୋଇ ତତପର ॥୫୩୩୩॥
ଭିମକୁ ଆଜ୍ଞାଦେଲେ ପଶ୍ଚିମକୁ ଯାଅ
ପଞ୍ଚାସ ସହସ୍ର ରାଜା ନିମନ୍ତ୍ରିଣ ଅଣାଅ ॥୫୩୩୪॥
ସହସ୍ରେକ ଯୋଦ୍ଧା ବେନି ସହସ୍ରେକ ମତହସ୍ତି
ପାୟେକ ସରଦାର[୪] ଘେନିଣ ତିନିକୋଟି ॥୫୩୩୫॥

---

୧ । ଖ ପୋଥି – ଖଟି ତୋତେ ଅଛନ୍ତି ନାରାୟଣ
୨ । ଖ ପୋଥିରେଏହି ଧାଡ଼ି ନାହିଁ
୩ । ଖ ପୋଥି – ସୁଧର୍ମା ସଭାରେ ଯାଇ ଇନ୍ଦ୍ରଙ୍କୁ କହିଲେ
୪ । ଖ ପୋଥି – ପୟେଦାର

ରହୁବର ହାନ୍ଦୋଳା ଗଜ ଯେ ତୁରଙ୍ଗମ
ଯେତେକ ଘେନି ଭିମ ସୁଭ ଅନୁକୁଳ ପୁଣ ॥୫୩୩୬॥
ଆପଣେ ଦଇତାରି ମଣ୍ଡିଲେ ରହୁବର
ଦିସଇ ତେଜ ଭିମ ଦୁତିଅ ନାସକର ॥୫୩୩୭॥
ଦୃପଦ ଜେମା ଯେ ଭିମ ସିରେ ଅର୍ଘ୍ୟ ଦେଇ
ପଡ଼ିଲା ପାବେନି ହରି ଯୁଧିଷ୍ଟି ପାଦେ ଯାଇ ॥୫୩୩୮॥
ଆସିର୍ବାଦ କରି ଯୁଧଷ୍ଟି କହିଲେ ବୟାଣ
ସମସ୍ତ ଆଣ ସାଧି ଗୋଟିୟେ ନ ମାରିଣ ॥୫୩୩୯॥
ଗମଇ ବିକୋଦର ପଶ୍ଚିମ ଦିଗ କତି
ଧନୁ ସୁକ୍ଳ ଚଉଠି ନକ୍ଷତ୍ର ନାମେ ସ୍ୱାତି ॥୫୩୪୦॥
ତତୁଲ୍ୟ ନାମେ କରଣ ଧୃତି ନାମେ ଯୋଗ
ଗମିଲେ ବିକୋଦର ଅନୁକୁଳେ ସର୍ବସୁଭ[1] ॥୫୩୪୧॥
ମରୁତ ଦେଖିଣ ଆଶ୍ଚାର୍ଯ୍ୟ ହୋଇଲେ ମନର
ଯେକାୟେ କୁମର ତ ବାହୁଛି ରହୁବର ॥୫୩୪୨॥
ରେହନ୍ତକୁ ବୋଇଲେ ତୁ ହୋଅ ଯା ସାରଥି
ଦୃଷ୍ଟ ରାଜାମାନଙ୍କୁ ଆଣିବୁ ନିମନ୍ତ୍ରି ॥୫୩୪୩॥
ମରୁତ ଆଜ୍ଞାରେ ସେ ରେହନ୍ତ ରଥ ବାହି
ଗମିଲା ବିକୋଦର ସେ ପଶ୍ଚିମ ଦିଗକଇ ॥୫୩୪୪॥
ତଦଅନ୍ତେ ଶ୍ରୀହରି ଅର୍ଜୁନକୁ ଆଜ୍ଞାଦିଲେ
ସନ୍ୟ ଘେନି ଉତର ଦିଗକୁ ଚଳ ଯେବେ ॥୫୩୪୫॥
ଯେକ ଉଣା ଚାଳିସି ସହସ୍ର ରାଜା ଆଣିବ ନିମନ୍ତ୍ରିଣ
ମେବଛ ଗଜ ରଥ ସହସ୍ରେ ନିସାଣ[2] ॥୫୩୪୬॥
ଅର୍ଜୁନ ଦେହେ ହରି ଅଳଙ୍କାର ମଣ୍ଡି
ଦିସଇ ସର୍ବସାଚି ଦୁତିୟ ଜମ୍ବୁଭେଦି ॥୫୩୪୭॥
ସୁଭବେଳେ ଅର୍ଜୁନ ଉତର ଦିଗକଇ ଚଳିଲା
ଦେଖି ସୁରପତି ମାତଳିକି ପ୍ରବର୍ତିଲା ॥୫୩୪୮॥
ଅର୍ଜୁନର ରଥେ ମାତଳି ହୋଇଲା ସାରଥି
ଗମିଲା ଉତରକୁ ବିଚିତ୍ରବିର୍ଯ୍ୟର ନାତି ॥୫୩୪୯॥
ନକୁଳକୁ ହକାରି ବୋଲନ୍ତି ଭଗବାନ
ଦକ୍ଷିଣ ଦେସ ରାଜାଙ୍କୁ ତୁହି ଆଣ ହୋ ନିମନ୍ତ୍ରିଣ ॥୫୩୫୦॥
ଯେକ ଉଣା ତିନି ସହସ୍ର ରାଜା ଆଣ ତୁ ନିମନ୍ତ୍ରି
ସୁଣିଣ ସଜ ହୋଇଲା ମାଦ୍ରିର ସନ୍ତତି ॥୫୩୫୧॥

---

୧ । ଖ ପୋଥି – ସର୍ବଶୁଭ ଅନୁକୂଳ ଗମିଲେ ଭୀମସେନ ପାଣ୍ଡବ
୨ । ଖ ପୋଥିରେ ଏହି ଦୁଇ ଧାଡ଼ି ଉପରେ ଅଧିକ ଅଛି–
ଗୋଟିୟେ ନ ମାରିଣ ଆସିବୁ ଘେନିଣ
ତିନି କୋଟି ଅଶ୍ୱ ସାତ କୋଟି ସଇନ

ଚାରିକାଠି ସନ୍ୟ ଲକ୍ଷ ଲକ୍ଷ ରଥି
ଗଜ ଅଶ୍ୱ ସାଗରେ ରାଉତ ମେବଛେ ଅଛନ୍ତି ॥୫୩୫୨॥
ଥାଠ ଘେନି ଚଳିଲା ସେ ଅଶ୍ୱିନିର ସୁତ
ଆପଣେ ସାରଥି ସେ ଯେ ହୋଇଲେ ମରୁତ ॥୫୩୫୩॥
ଶ୍ରୀହରି ଆଜ୍ଞାଦିଲେ ମନ୍ତ୍ରିବର ମୁଖ ଚାହିଂ
ପୁର୍ବଦିଗ ରାଜାମାନ ଆଣ ନିମନ୍ତ୍ରି ଯାଇ ॥୫୩୫୪॥
ବସିଲା ବିମାନରେ ଗୋବିନ୍ଦ ଆଜ୍ଞା ପାଇ[1]
ସହଦେବ ସନ୍ୟଘେନି ପୁର୍ବଦିଗକଇ ॥୫୩୫୫॥
ମନ୍ତ୍ରିବର ସୈନ୍ୟ ଘେନି ପୁର୍ବଦିଗ ଗଲା
ସାତ ସହସ୍ର ରାଜା ନିମନ୍ତ୍ରଣ କରିତେ ଆଜ୍ଞା ପାଇଲା ॥୫୩୫୬॥
ଥାଟ ସୈନ୍ୟ ଘେନି ସହଦେବ ଚଳିଗଲା
ପୁର୍ବଦିଗ ରାଜାମାନନ୍ତ ଆଣିବାକୁ ସେ ଗଲା ॥୫୩୫୭॥
ବଦୟନ୍ତି ସଦାସିବ ସୁଣଗୋ ଗିରିଜା
ଚାରିଭାଇ ଚାରିଦିଗେଂ ନିମନ୍ତ୍ରି ଗଲେ ରାଜା ॥୫୩୫୮॥
ହରି ଆସ୍ରେ କର ନରେ ଫିଟିବ ମନଭ୍ରାନ୍ତି
ହରି ଆସ୍ରେ କର ନରେ ନାସ ଯିବଟି ଦୃଗତି ॥୫୩୫୯॥
ହରି ଆସ୍ରେ କର ନରେ ଫିଟିବ କାଳ ଫାସ
ଶ୍ରୀହରି ଚରଣେ ସରଣ ସାରୋଳା ଚଣ୍ଡି ଦାସ[2] ॥୫୩୬୦॥
ପଶ୍ଚିମ ଦିଗକୁ ଯେ ଚଳିଲା ବିକୋଦର
ମାନଭଜଂ ଦେସରେ ମାନଭଜଂ ନୃପବର ॥୫୩୬୧॥
ତାହାର ରାଜ୍ୟରେ ଭିମ କନ୍ଦଳ ଲଗାଇଲା
ସନ୍ୟସେନା ନାସିଣ ରାଜାଙ୍କୁ ସାଧ୍ୟ କଲା ॥୫୩୬୨॥
ନିମନ୍ତ୍ରଣ ଦେଇ କହିଲା ମାନଅର୍ଜୁନକୁ
ସତେ ଭାର ପାଣିଦ୍ରବ୍ୟ ଘେନି ଯାଅ ଯା ଯଜ୍ଞକୁ ॥୫୩୬୩॥
କନାଉଜ ଦେସରେ ସେ ରାଜା ଅଟଇ କର୍ଣ୍ଣ
ଯଜ୍ଞକୁ ଯାଅ ଘେନି ସଙ୍ଗତେ ପାଣିଦ୍ରବ୍ୟମାନ ॥୫୩୬୪॥
ସେଠାରୁ ବିକୋଦର ଚଳିଲା ତଡ଼ତି
ପଶ୍ଚିମ ସୋମରାଷ୍ଟ୍ରେ ଭିମ ଚକ୍ରବର୍ତି ॥୫୩୬୫॥
ତାହାକୁ ନିମନ୍ତ୍ରଣ ଦେଇ ଚଳିଲା ବିକୋଦର
ଚାରିଦିନେ ପ୍ରବେସ ହେଲା କୃଷ୍ଣବେଣି ତିର ॥୫୩୬୬॥
ସ୍ନାହାନ କରି ଭିମ ପାତେକ ଛଡ଼ାଇଲା
କୌସିକ ରାଜାକୁ ଭିମ ନିମନ୍ତ୍ରଣ କଲା ॥୫୩୬୭॥

---

୧ । ଖ ପୋଥିରେ ଶ୍ରୀହରି ଆଜ୍ଞାଦିଲେରୁ
ଗୋବିନ୍ଦ ଆଜ୍ଞାପାଇ ପର୍ଯ୍ୟନ୍ତ ନାହିଁ
୨ । ଖ ପୋଥିରେ ମନ୍ତ୍ରୀବର ସୈନ୍ୟ
ଘେନିଠାରୁ ସାରୋଳା ଚଣ୍ଡୀ ଦାସ ପର୍ଯ୍ୟନ୍ତ ନାହିଁ

ଜ୍ୟୋତିସପୁରେ କଳିଙ୍ଗସେନ ନୃପବର
ତାହା ରାଜ୍ୟେ ମିଳି ଭିମ କଲାକ ସମର ॥୫୩୬୮॥
ଗଦା ଘେନି ତାହାର ସଇନି ନାସ କଲା
କଳିଙ୍ଗସେନକୁ ହାଣନ୍ତେ ରେହନ୍ତ ଧଇଲା ॥୫୩୬୯॥
ବୋଇଲା ନାସ୍ତିକରି ଅଛନ୍ତି ଭଗବାନ
ରାଜାଙ୍କୁ ଗଢ଼ିତେ କାହୁଂ ଆଣିବେ ସୁବର୍ଣ୍ଣ ॥୫୩୭୦॥
ତାହାକୁ ନିମନ୍ତ୍ରଣ ଦେଇଣ ବିକୋଦର
ବିରାଟଠାକୁ ଯେ ପେସିଲାକ ଚାର ॥୫୩୭୧॥
ଲେଖ ଯେକ ଲେଖି ଭିମ ଡଗର ହସ୍ତେ ଦିଲା
ଆଜ୍ଞା ଘେନି ଡଗର ମଛ ଦେସରେ ମିଳିଲା ॥୫୩୭୨॥
ଚାଟେକ ମନ୍ତ୍ରି ଲେଖ ପଢ଼ି ଠାବକରି
ବାରୁଣାବନ୍ତରେ ସୋମବଂଶ ଦଣ୍ଡଧାରି ॥୫୩୭୩॥
କୋଇନ୍ତା ଗର୍ଭୁ ଜାତ[୧] ଯୁଧିଷ୍ଟି ନାମ ବହି
ଭିମ ଅର୍ଜୁନ ନକୁଳ ସହଦେବ ଚାରିଭାଇ ॥୫୩୭୪॥
ରାଜୁସି ଯଜ୍ଞ କରିଛନ୍ତି ଯୁଧିଷ୍ଟି ଠାକୁର
ଲକ୍ଷେ ରାଜା ଘେନି ସନ୍ୟ ମିଳିବେ ସେଠାର ॥୫୩୭୫॥
ଆସିଛି ପଶ୍ଚିମକୁ ମୋ ନାମ ଭିମସେନ
କିଞ୍ଚିତେ ନାସିଲି ମୁଂ ଜାରାସନ୍ଧ ସନ୍ୟ ॥୫୩୭୬॥
ଛୟାଣ୍ଡୋଇ ସହସ୍ର ରାଜାଙ୍କୁ ତହୁଂ ଉଦ୍ଧାରିଲି
ପଞ୍ଚାସ ସହସ୍ର ରାଜା ପଶ୍ଚିମ ଦିଗୁ ନେବିଂ ବରି ॥୫୩୭୭॥
ତୁ ହୋ ବିରାଟ ମଛ ଦେସରେ ରାଜନ
ପାଣିଦ୍ରବ୍ୟ ସତେଭାର ଘେନି କରିବୁ ଦ୍ରସନ ॥୫୩୭୮॥
ଯେବେ ଆଜ୍ଞା ମେଣ୍ଟି ବିଳମ୍ବ କରିବୁ
ଜାରାସନ୍ଧ ସଙ୍ଗତେ ସଜିଂବନି ଯିବୁ ॥୫୩୭୯॥
ଯେମନ୍ତ ଭାସା ଯହୁଂ ପଢ଼ିଲା ଚାଟେକ
ଯିବିବୋଲି ସଜ ହେଲା ବିରାଟେକ ॥୫୩୮୦॥
ଡଗର ଆସିଣ ବିକୋଦରକୁ କହିଲା
ସୁଣିଣ ବିକୋଦର ସେଠାରୁ ଗମିଲା ॥୫୩୮୧॥
ସାର୍ଦ୍ଦୁଳ ଦେସେ ନଉକେସି କି ବରିଣ
ଉଜାଣି କାଞ୍ଚି ନଗ୍ରେ ବରିଲା ସମ୍ଭୁରାଣ ॥୫୩୮୨॥
ନିର୍ଝର ଦେସେ ରାଜା ଅଟଇ ଗଣପତି
ତାହାକୁ ନିମନ୍ତ୍ରଣ କଲାକ ମାରୁତି ॥୫୩୮୩॥
ବିଂଝଗିରି ଦେସେ ପୁଣ୍ଡରିକ ବାସୁଦେବ
କାଷ୍ଟରେ ଗରୁଡ଼ କରି କାଷ୍ଟରେ ବେନି ଭୋଜ ॥୫୩୮୪॥
ବୋଲେ ମୁଂ ଚତୁର୍ଭୁଜ ବୋଲଇଂ ମୁହିଂ ବାସୁଦେବ ଅଟଇ
ମୋତେ ସେବା କରି ନରେ ସ୍ୱର୍ଗରେ ବସଯାଇ ॥୫୩୮୫॥

ଯେମନ୍ତ ବୋଲି ସେହୁ ପ୍ରତିଜ୍ଞା କରଇ
ଭିମସେନ ଅଗ୍ରତେ ଡଗର କହଇ ॥୫୩୮୬॥
ସୁଣିଣ କୋପିତ ହୋଇଲା ବିକୋଦର
ବିଷ୍ଣୁଦ୍ରୋହିକି ଆଜ ମୁଂ ମାରିବିଂ ସମର ॥୫୩୮୭॥
ଯେତେ ବୋଲି ଭିମ କଟକାଇ କଲା
ପୁଣ୍ଡରିକ ବାସୁଦେବ ସନ୍ୟ ଯେ ସାଜିଲା ॥୫୩୮୮॥
ଆଗେ ପୁଣ୍ଡରିକ ଯୁଦ୍ଧେଂ ହୋଇଲେ ବାହାର
ବିସାସତେ ଯୋଜନ ଅଟଇ ରହୁବର ॥୫୩୮୯॥
ବିକଟାଳ ନଦି ତହିଂ ବହୁଛି ଉଜାଣି
ନଦିରେ ପାର ହୋଇ ନ ପାରିଲେ ସଇନି ॥୫୩୯୦॥
ଡେଇଂଣ ବିକୋଦର ନଦି ପାର ହେଲା
ପୁଣ୍ଡରିକ ବାସୁଦେବ ସଙ୍ଗତେ ଘୋର ଯୁଦ୍ଧ କଲା ॥୫୩୯୧॥
ହାରିଣ ପୁଣ୍ଡରିକ ପଳାନ୍ତେ ଧଇଲା ଭିମସେନ
ହାଣନ୍ତେ ରେହନ୍ତ ସ୍ୟାନ୍ତି କଲା ତମ ॥୫୩୯୨॥
ପୁଣ୍ଡରିକକୁ ଭିମ ବାନ୍ଧିଲା ରଥ ଦଣ୍ଡ
ବିରତୁର ସବଦେ କମ୍ପଇ ଭୁଖଣ୍ଡ ॥୫୩୯୩॥
ସେଠାରୁ ବିକୋଦର କଲାକ ଗମନ
ପ୍ରବେସ ହୋଇଲା ଯହିଂ ଅଛଇ ମୃଗସେନ ॥୫୩୯୪॥
ଡଗର କହନ୍ତେ ମୃଗସେନ କ୍ରୋଧ ହେଲା
ବିକୋଦର ସଙ୍ଗତେ ମାଲଯୁଦ୍ଧ କଲା ॥୫୩୯୫॥
ବିକୋଦରକୁ ମାଡ଼ି ବସିଲା ମୃଗସେନ
ବୋଇଲା ନାସ ଯିବୁ କହ ତୁ କାହାର ନନ୍ଦନ ॥୫୩୯୬॥
ଭିମ ବୋଇଲେ ମୁଂ ପବନର ସୁତ
ଅଟଇ ସୋମବଂସି ପ୍ରପିତା ମୋର ବ୍ୟାସ ॥୫୩୯୭॥
ମୃଗସେନ ବୋଇଲା ତୁ ଯେବେ ବ୍ୟାସଙ୍କର ସିସ
ସୁମର ଯେଠାକୁ ଆସନ୍ତୁ ପରାସର ବଛ ॥୫୩୯୮॥
ଭିମସେନ ସୁମରନ୍ତେ ମିଳିଲେ ବ୍ୟାସଯତି
ମୃଗସେନକୁ ବୋଇଲେ ତୁ ମୋର ପୁତ୍ର ସେ ମୋହର ନାତି॥୫୩୯୯॥
ସୁଣି ମୃଗସେନ ବିକୋଦରକୁ ଛାଡ଼ିଦେଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୫୪୦୦॥
ଉତର ଦିଗକଇ ଗମିଲା ଅର୍ଜୁନ
ପ୍ରବେସ ହେଲେ ଯାଇ ଦ୍ରୁପଦ ଭୁବନ ॥୫୪୦୧॥
ବହୁତ ପଉରୋସ ପାଇଣ ସର୍ବସାଚି
ରହିଲା ବେନିଦିନ ତାହାକୁ ନିମନ୍ତ୍ରି ॥୫୪୦୨॥
ଛତ୍ରଦେସେ କର୍ଣ୍ଣନଉମିକି ବରିଲା
ଜ୍ୱାଳାବାହୁ ନଗ୍ରେ ଅଜଟବାହୁକୁ ନିମନ୍ତ୍ରିଲା ॥୫୪୦୩॥

୧ । ଖ ପୋଥି – ଆଦିତ୍ୟ ବୀର୍ଯ୍ୟେ

ତହୁଂ ବାସବି ୟେକଚକ୍ରା ନଗ୍ରେ ମିଳି
ବେଦଶ୍ରବଣ ବ୍ରାହ୍ମଣଙ୍କୁ ୟେ ବରି ॥୫୪୦୪॥
ତହୁ ପ୍ରବେସ ପାଥ ୟେ କକ୍ସବ୍ୟ ଦେସର
ତହିଂର ନୃପତି ଚାଣୁର ନୃପବର ॥୫୪୦୫॥
ତାହାକୁ ଯୁଦ୍ଧେ ଜିଣି ନିମନ୍ତ୍ରଣ ଦେଇ
କୋସଳ ଦେସରେ ପ୍ରବେସ ଧନୁର୍ଜଇ ॥୫୪୦୬॥
ଭାନୁବତି ରାଜା ଗଉରୋବ କଲା
ତାହା ଘରେ ବାସବି ତିନିଦିନ ରହିଲା ॥୫୪୦୭॥
ତହୁଂ ଯାଇ ପାଥ ନିରେଖ ଦେସେ ମିଳି
ଦରଦସେନ ବୋଲି ତହିଂର ଦଣ୍ଡଧାରି ॥୫୪୦୮॥
ମହାପ୍ରତାପି ସେ ନୃପତି ଅଟଇ
ଜମାଗୋଷ୍ଟ ରାଜାକୁ କରିଛି କଟକାଇ ॥୫୪୦୯॥
ବାରତା ପାଇଣ ପାଥ ଦିଗବିଜେ କଲା
ଦରଦସେନ ଠାକୁ ଦୁତ ବରଗିଲା ॥୫୪୧୦॥
ଡଗର ବଚନେ କୋପିତ ନୃପବର
ଅର୍ଜୁନ ସଙ୍ଗତେ କଲାକ ସମର ॥୫୪୧୧॥
ଜୟେସେନ ବୋଲି ଅର୍ଜୁନ ସେନାପତି
ଦରଦସେନ ସୈନ୍ୟ ପକାଇଲା ମନ୍ଥି ॥୫୪୧୨॥
ଦରଦସେନ ଯୁଦ୍ଧରେ ହାରିଣ ରହିଲା
ସରଣ ପସନ୍ତେ ଅର୍ଜୁନ ଦୟାକଲା ॥୫୪୧୩॥
ବୋଇଲା ପାଣିଦ୍ରବ୍ୟ ଘେନିଣ ସତେ ଭାର
ଦ୍ରସନ କରଯାଇ ଯୁଧିଷ୍ଟି ପୟର ॥୫୪୧୪॥
ଜମାଗୋଷ୍ଟ ଆଗେ ଡଗର କହିଲା
ୟେବଣ ରାଜା ଆମ୍ଭ କଟକ ବେଢ଼ିଥିଲା ॥୫୪୧୫॥
ତାହାକୁ ୟେକ ରାଜା ଯୁଦ୍ଧ କରି ଜିଣି
ଜମାଗୋଷ୍ଟ ବୋଇଲା ସନ୍ୟ ଆସ ଗଣି ॥୫୪୧୬॥
ସୁଣିଣ ଡଗରେ ଗଣିଲା ପାଥ ସନ୍ୟ[1]
ଜମାଗୋଷ୍ଟ ଆଗରେ ଯାଇ କହିଲା ତତକ୍ଷଣ ॥୫୪୧୭॥
ଜମାଗୋଷ୍ଟ ଚିତ୍ରରେ କଲାକ ଲେଖନ
ଅର୍ଜୁନର ଏକନାମ ନ ଆସିଲା ପୁଣ ॥୫୪୧୮॥
ହସ୍ତରେ ପୋଛି ଦିଅନ୍ତେ ଅର୍ଜୁନ ସନ୍ୟ ମଲେ
ୟେକା ପାଥ ରହିଲେ ଗୋଟିୟେ ନ ବର୍ତିଲେ ॥୫୪୧୯॥
ଦେଖିଣ ଅର୍ଜୁନକୁ ନ ସ୍ଫୁରଇ କିଛି
ମନେଣ ଚିନ୍ତାକଲେ ମିଳିଲେ ଶ୍ରୀବଛି ॥୫୪୨୦॥
ଗୋବିନ୍ଦ ପଚାରନ୍ତେ ଅର୍ଜୁନ ଓଳଗି
ବିନା ସମରେ ମୋ ସୈନ୍ୟ ଗଲେ ମରି ॥୫୪୨୧॥

୧ । ଖ ପୋଥି – ଚଳିଲା ଡଗର ୟେ ପାଥର ସଇନି

ପର ଦେସରେ ଆସି ପଡ଼ିଲା ସଙ୍କଟ
କେମନ୍ତେ ଜିଣବି ମୁଂ ସାଧିବି ଜମାଗୋଷ୍ଟ ॥୫୪୨୨॥
ବଦନ୍ତି କେସବ ତାର ଅଛି ଅପାର ଗୁଣ
ଯୁଦ୍ଧକୁ ସରି ନୋହେ ଅଟଇ ବଳ କ୍ଷିନ ॥୫୪୨୩॥
ଅର୍ଜୁନ ଧାଇଂଲା ଶ୍ରୀହରି ଆଜ୍ଞା ପାଇ
ପଳାନ୍ତେ ଜମାଗୋଷ୍ଟ ଧଇଲା ଧନୁର୍ଜଇ ॥୫୪୨୪॥
ହସ୍ତେକ ବାଳ ଧରି ହସ୍ତେକ କଟାର
ରହ ରହ ବୋଲି ଡାକିଲେ ଚକ୍ରଧର ॥୫୪୨୫॥
ରାଜା ଘଡ଼ିବାକୁ[1] କାହୁଂ ଆଣିବୁ ସୁବର୍ଣ୍ଣ
ଅର୍ଜୁନ ବୋଇଲା ୟେହାକୁ କରିବି ବନ୍ଧନ ॥୫୪୨୬॥
ଜମାଗୋଷ୍ଟ ରାଜାକୁ ପାଥ ରଥ ଦଣ୍ଡେ ବାନ୍ଧି
ବାରୁଣା ଭୁବନକୁ ଗମିଲେ ଗୋବିନ୍ଦି ॥୫୪୨୭॥
ସନ୍ୟ ନାସ ଯାନ୍ତେ ବାସେବି ବିସାଦ
ଯାଇଣ ପଡ଼ିଲା ପାଥ ହରିଣାକ୍ଷି ପାଦ ॥୫୪୨୮॥
ସେ ଦେବି ପ୍ରସନ୍ନେ ପାଥକୁ ଦେଲେ ବର
ଅର୍ଜୁନର ସଇନି ଜିଇଂଲେ ସକଳ ॥୫୪୨୯॥
ଦେବିଙ୍କି ନିମନ୍ତ୍ରିଣ ଗମିଲେ ବାସେବି
ପ୍ରବେସ ହୋଇଲା ଯାଇ କଣୟବିନ୍ଦୁ ନଗ୍ରି ॥୫୪୩୦॥
ବୃକ୍ଷଲତା ଗିରି ମେଦନି ନଦି ଜଳ
ସବୁ ସେ କଣୟ ଅଟଇ ସେହୁଂପୁର ॥୫୪୩୧॥
ବଡ଼ ପ୍ରତାପି ସେ କଣୟବିନ୍ଦୁ ରାଜନ
ଡଗର ମୁଖରୁ ସୁଣିଲାକ ଆସିଛି ଅର୍ଜୁନ[2] ॥୫୪୩୨॥
ବେନି ସହସ୍ର ରଥ ପାଣିଦ୍ରବ୍ୟ ଘେନି
ଚଉରାସି ସାଗର ଘେନିଲା ସଇନି ॥୫୪୩୩॥
ଚଳିଲା ଯଜ୍ଞକୁ କଣୟବିନ୍ଦୁ ନୃପବର
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ॥୫୪୩୪॥
ଦକ୍ଷିଣ ଦିଗକୁ ସେ ୟେ ଚଳିଲା ନକୁଳ
କେସରି ଦେସେ ମିଳିଲା ଘେନି ସନ୍ୟବଳ ॥୫୪୩୫॥
ଭିମକେସରି ରାଜାକୁ ନିମନ୍ତ୍ରଣ କଲା
ସେଠାରୁ ତ୍ରିହୋତ୍ର ଦେସରେ ମିଳିଲା ॥୫୪୩୬॥
ଗୋରେଖ କ୍ଷେତ୍ରିକି କଲା ନିମନ୍ତ୍ରଣ
ଅୟୋଧ୍ୟାରେ ୟେ ବରିଲା ରାଜା ରତୁପନ ॥୫୪୩୭॥
ମାଳବ ଦେସରେ ରାଜା କୃପବ୍ରହ୍ମାକୁ ନିମନ୍ତ୍ରିଣ
ଯଜ୍ଞକୁ ଯାଅ ବୋଲି ବୋଇଲା ମାଦ୍ରିର ନନ୍ଦନ ॥୫୪୩୮॥

୧ । ଖ ପୋଥି – ଗଢ଼ାଇତେ
୨ । ଖ ପୋଥି – ଯଜ୍ଞକୁ ଯିବ ବୋଲି ବୋଇଲା ବାସବନନ୍ଦନ

ପ୍ରବେସ ପାଣ୍ଡବ ସୁଦ୍ଧସମ ଗିରି
ମଲିକା ଅର୍ଜୁନ ତହିଂର ଦଣ୍ଡଧାରି ॥୫୪୩୯॥
ଶ୍ରୀରାମ ଅବିସେକି ସେ ତ୍ରେତୟା ଯୁଗର
ତାହାକୁ ନିମନ୍ତ୍ରଣ କଲାକ ନକୁଳ ॥୫୪୪୦॥
ସୁରଣକେସି କି ସେ ନିମନ୍ତ୍ରଣ ଦେଲେ
ପଦ୍ମଲାଭ ରାଜାକୁ ନିମନ୍ତ୍ରଣ କଲେ ॥୫୪୪୧॥
ରଣପୁର ରାଜା ଅଟଇ ରଣପାଛ
ତାହାକୁ ନିମନ୍ତ୍ରଣ କଲାକ ମାଦ୍ରିବଛ ॥୫୪୪୨॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ପୁର୍ବଦିଗ ରାଜାଙ୍କୁ ବରିଲା ସହଦେବ ॥୫୪୪୩॥
ଐସାନ୍ୟ ମଣ୍ଡଳେ ଚନ୍ଦ୍ରନୌମିକିଂ[1] ନିମନ୍ତ୍ରିଣ
ପ୍ରବେସ ହେଲା ଯାଇ ଗାନ୍ଧାର ଭୁବନ ॥୫୪୪୪॥
ସକ୍କୁନି ବୋଲି ସେ ତହିଂର ଅଟେ ରାଏ[2]
ତାହାକୁ ନିମନ୍ତ୍ରିଲା ପଣ୍ଡୁର ତନୟେ[3] ॥୫୪୪୫॥
ମଧୁ ଦେସରେ ଯେ ହୋଇଲା ପ୍ରବେସ
ମଧୁମଙ୍ଗଳ ନୃପତିକି ବରିଲା ମାଦ୍ରିସିସ ॥୫୪୪୬॥
ଜ୍ୱାଳାବାହୁ ଦେସରେ ପ୍ରବେସ ହୋଇଲା
ସୁଣିଣ ଅଜଟବାହୁ ଘୋର ଯୁଦ୍ଧ କଲା ॥୫୪୪୭॥
ଯୁଦ୍ଧରେ ଜିଣି ସହଦେବ ତାକୁ ବରି
ମାଳବ[4] ଦେସରେ ମାହେନ୍ଦ୍ରସେନ ଦଣ୍ଡଧାରି ॥୫୪୪୮॥
ମାଦ୍ରିର ପିଅର ସହଦେବର ଅଟେ ଅଜା
ବେନି ଦିନ ରହି ସହଦେବ ତହୁଂ ଗଲା ॥୫୪୪୯॥
ମାଲ୍ୟବ[5] ଦେସରେ କୁନ୍ତଭୁଜକୁ ନିମନ୍ତ୍ରିଣ
ପ୍ରବେସ ହେଲା ଯାଇ ଭୁପାଳ ଦେସେଣ ॥୫୪୫୦॥
ହନୁମତ ରାଜାକୁ ବରଣ କରିଣ ଚଳଇ
କପିଳ ମୁନିକି ଦ୍ରସନ କରଇ ॥୫୪୫୧॥
ନିମନ୍ତ୍ରଣ କରିଲା ଚଳିଲା ମନ୍ତ୍ରିବର
ବଜ୍ରଲାଭ ରାଜାକୁ ଦିଲା ନିମନ୍ତ୍ରଣ ଯୋଗାଡ଼ ॥୫୪୫୨॥
ଉଡ଼ଙ୍ଗ[6] ଦେସରେ କେତୁମାଳିକି ବରିଲା
ସିନ୍ଧୁ ଦେସରେ ଯାଇ ପ୍ରବେସ ହୋଇଲା ॥୫୪୫୩॥

୧ । ଘ ପୋଥି – ଇନ୍ଦ୍ରନୌମିକି
୨ । ଘ ପୋଥି – ରାଜା
୩ । ଘ ପୋଥି – ତନୁଜା
୪ । ଘ ପୋଥି – ମାଲବ୍ୟ
୫ । ଘ ପୋଥି – କଲ୍ମାବ
୬ । ଖ ପୋଥି – କଳିଙ୍ଗ
୬ । ଘ ପୋଥି – ତତୁଙ୍ଗ

ଜଦ୍ୟରଥ ରାଜା ଦୁର୍ଯୋଧନର ଭିଣୋଇଂ
ବେଗେ ଯାଆଂ ବୋଲି ତାକୁ ସହଦେବ କହି ॥୫୪୫୪॥
ବୈଧୃତି ଦେସରେ ବରିଲା ବିରୁପାକ୍ଷ
ତଦନ୍ତେ କାମପାଳକୁ ବରିଲା ମାଦ୍ରିବଛ ॥୫୪୫୫॥
ଚେଦି ଦେସରେ ସିସୁପାଳକୁ ବରିଲା
ବଦନ୍ତି ସଦାସିବ ସୁଣଗୋ ଗଉରା ॥୫୪୫୬॥

## ଯୁଧିଷ୍ଟିରଙ୍କର ରାଜସୂୟ ଯଜ୍ଞ ଓ ନିମନ୍ତ୍ରିତ ରାଜାମାନଙ୍କର ଯଜ୍ଞକୁ ଆଗମନ

ଲାଗିଲେ ବିନ୍ଧାଣି ତୋଳିଲେ ଯାଗସାଳ
ସାଠିୟେ ସହସ୍ର ମିଳିଲେ ତପସିଳ ॥୫୪୫୭॥
ବସିଷ୍ଟ ବିଶ୍ୱାମିତ୍ର ମାର୍କଣ୍ଡ ଅଗସ୍ତି
କର୍ମାଣି ହୋଇଲେ ବ୍ୟାସ ସହିତେ ପାଞ୍ଚଯତି ॥୫୪୫୮॥
ଯମୁନା ତଟ ମାଡ଼ି ତୋଳାଇଲେ ନବର
ଯହିଂରେ ବିଶ୍ରାମିବେ ଲକ୍ଷେକ ନୃପବର ॥୫୪୫୯॥
ଦ୍ୱାଦସ ଯୋଜନ ମାଡ଼ି ଘେରିଲେ[1] ପାଚେରି
ଚାରିଦିଗକୁ ରଖିଲେ ଚାରିଗୋଟା ଦ୍ୱାରି ॥୫୪୬୦॥
ପୁର୍ବରେ ପଦ୍ମନ ପଶ୍ଚିମରେ ସାମ
ଉତରେ ଗଦ କୁମାର ଜୟନ୍ତା[3] ଦକ୍ଷିଣ ॥୫୪୬୧॥
ଦ୍ରୋଣ ଅଶ୍ୱସ୍ତମାକୁ ବଦୟନ୍ତି ଭଗବାନ
ପିତାପୁତ୍ର ଦୁହେଂ ଅର୍ଣ୍ଣ କରିବ ରନ୍ଧନ ॥୫୪୬୨॥
ସଲ୍ୟକୁ ବୋଇଲେ ତୁମ୍ଭେ ଅଶ୍ୱକୁ ଚରଚିବ
କର୍ଣ୍ଣକୁ ବୋଇଲେ ତୁମ୍ଭେ ସନ୍ୟ ସମାର୍ଜିବ ॥୫୪୬୩॥
ଆପଣେ ଶ୍ରୀହରି ଦୁର୍ଯୋଧନକୁ ଦିଲେ ସାଢ଼ି
ବୋଇଲେ ଭଣ୍ଡାର ତୁ ହୋଇବୁ ଅଧିକାରି ॥୫୪୬୪॥
ଭୁରିସର୍ବା ରହିଲେ ଘୃତ ପରସଣିଂ
ରହିଲେ ସୋମଦତ୍ତ ପରିବା ନିଯୋଗାଣି ॥୫୪୬୫॥
ଦୁସାସନକୁ ବୋଇଲେ ସନ୍ୟକୁ ଦେବୁ ଅର୍ଣ୍ଣ
ହୋମକୁ ସମିଧ ଦେବ ସେ ବିଜୟେକର୍ଣ୍ଣ[4] ॥୫୪୬୬॥
ଆପଣେ ଶ୍ରୀହରି ପାଇଲେକ ସାଢି
ହସ୍ତରେ ବେତ ଯୋଡ଼ି ଅନନ୍ତ ପଢ଼ିହାରି ॥୫୪୬୭॥
କାଳିଜଂନ କାଳିଧ୍ୱଂସନ ଡଗର
ବୁଝନ୍ତି ଭଲମନ୍ଦ ସଭାରେ ଖଳବଳ ॥୫୪୬୮॥

୧ । ଘ ପୋଥି – ଯଜ୍ଞକୁ ଯିବ ବୋଲି
୨ । ଖ ପୋଥି – ବେଢ଼ିଲେ
୩ । ଘ ପୋଥି – ଜୟନ୍ତିନା
୪ । ଘ ପୋଥି – ଜୟେକର୍ଣ୍ଣ
୪ । ଖ ପୋଥି – ଜିୟସେନ

ଧର୍ମ[1] ପୁରୋହିତେ ଯାଗକୁଣ୍ଡ ନିର୍ବାଣିଲେ[2]
କୁସହସ୍ତ ହୋଇଣ ଯୁଧିଷ୍ଟି ବସିଲେ ॥୫୪୬୯॥
ତତୁଲ୍ୟ ନାମେ କରଣ ବଜ୍ରନାମେ ଯୋଗ
ମକର ସଙ୍କରାନ୍ତିକି ଛଡ଼ଦିନ[3] ଭୋଗ ॥୫୪୭୦॥
ହସ୍ତା ନାମେ ନକ୍ଷତ୍ର ବାର ନାମେ ପଣ୍ଡିତ
ସେ ଦିନ ଯଜ୍ଞରେ ବସିଲେ ଧର୍ମସୁତ ॥୫୪୭୧॥
ସମିଧ ସଂଯୋଗି ଅଗ୍ନି ଲଗାଇଲେ[4]
ଇଦଂ ସ୍ୱାହା ବୋଲି ଘୃତ ପରସିଲେ ॥୫୪୭୨॥
ଇଦଂ ହୁତାସନଂ ଦଦାମି[5]
ଇଦଂ ବ୍ରହ୍ମଭୁ ଦଦାମି
ଇଦଂ ରୁଦ୍ରଂ ଦଦାମି
ଇଦଂ ମରୁତଂ ଦଦାମି
ସଙ୍ଖ ପଦ୍ମଂ ମହାପଦ୍ମଂ କୁଳିକ କ୍ରକୋଟକଂ ଦଦାମି
ଶ୍ୱେତ ତକ୍ଷକ ଅନନ୍ତ ଜୟନ୍ତ ବାସୁକିଂ ଦଦାମି ॥୫୪୭୩॥
ୟେମନ୍ତ ବୋଲି ଘୃତ ଢାଳନ୍ତି ମୁନିବର
ଜଳିଲା ହୁତାସନ କରାଳ ବିକରାଳ ॥୫୪୭୪॥
ମୟ ଦତ୍ୟ ମାୟାସଭା ଆଣି ଥୋଇ
ସଭାକୁ ବର୍ଣ୍ଣିବାକୁ ମୋର ସକ୍ଷ ନାହିଂ ॥୫୪୭୫॥
ବୋଲନ୍ତି ସଦାସିବ ସୁଣଗୋ ଗଉରି[6]
ପଶ୍ଚିମ ଦିଗରୁ ଭିମ ଆଣିଲା ରାଜାବରି ॥୫୪୭୬॥
ୟେକ ଊଣା ପଞ୍ଚାସ ସହସ୍ର ନୃପବର
ଘେନିଣ ପ୍ରବେସ ପଶ୍ଚିମ ଦ୍ୱାରର ॥୫୪୭୭॥
ଶ୍ରୀହରିଙ୍କଠାରେ କାଳଧ୍ୱଂସନ କହିଲା
ଯୁଧିଷ୍ଟିଙ୍କ ଅଗ୍ରତେ[7] ଜଣାଇ ଚକାଡୋଳା ॥୫୪୭୮॥
ଯୁଧିଷ୍ଟି ଆଜ୍ଞା ଦିଲେ ସାମ ଛାଡ଼ ଦ୍ୱାର
ଆଜ୍ଞାପାଇଣ ଭିମସେନ ପସିଲା ଭିତର ॥୫୪୭୯॥
ଯୁଧିଷ୍ଟି ଶ୍ରୀହରିଙ୍କି ଭିମ ନମସ୍କାର କଲା
ଉତର ଦିଗକୁ ଯେ ଅର୍ଜୁନ ଯାଇଥିଲା ॥୫୪୮୦॥

୧ । ଖ ପୋଥି - ଧର୍ମ୍ୟ
୨ । ଖ ପୋଥି - ନିବାଡ଼ିଲେ
୩ । ଘ ପୋଥି - ଚଉଦ ଦିନ
୪ । ଖ ପୋଥିରେ ଉପରେ ଏହି ତିନି ଧାଡ଼ି ଅଧିକ ଅଛି -
ସ୍ୱସ୍ତି ଉଚ୍ଚାରିଣ ତହିଂ ଦେଲେକ ଅକ୍ଷତ
ପାଞ୍ଚରଷି ମାନେ ଯେ ଉଚ୍ଚାରିଲେ ବେଦମନ୍ତ୍ର
ବେଦମନ୍ତ୍ର ପଢ଼ିଣ ସେ କୁଣ୍ଡକୁ ଶୋଧିଲେ
୫ । ଘ ପୋଥିରେ ତଳ ତିନି ଧାଡ଼ି ନାହିଁ
୬ । ଘ ପୋଥି - ଶାକାମ୍ଭେରୀ
୭ । ଘ ପୋଥି - ଛାମୁରେ

ଦସ ଦିଗପାଳକୁ ନିମନ୍ତ୍ରଣ[1] କରି ଧନୁର୍ଜଇ[2]
ଉତର ଦ୍ୱାରେ ମିଳନ୍ତେ ଗଦ କୁମାର ଉଗାଳଇ ॥୫୪୮୧॥
ଯୁଧିଷ୍ଟିଙ୍କ ଆଜ୍ଞାରେ ଛାଡ଼ିଲା ବିର ଦ୍ୱାର
ୟେକଊଣା ଚାଳିସି ସହସ୍ର ରାଜା ଘେନି ପସିଲା ଭିତର ॥୫୪୮୨॥
ଉତର ଦିଗ ରାଜାମାନେ ଯୁଧିଷ୍ଟିଙ୍କ ପାଦେ ପଡ଼ି
ଜିତ ପ୍ରସାଦ ବୋଲି ସୁକ୍ଲାମ୍ବର ହସ୍ତ ଠାରି ॥୫୪୮୩॥
ଦକ୍ଷିଣ ଦ୍ୱାରେ ପ୍ରବେସ ହୋଇଲା ନକୁଳ
ସଙ୍ଗତେ ୟେକ ଊଣା ତିନି ସହସ୍ର ନୃପବର ॥୫୪୮୪॥
କାଳନ୍ଦିର ସୁତ ଜଇନ୍ତା ଉଗାଳିଲା
ବନମାଳିଙ୍କଠାରେ ଡଗର ଜଣାଇଲା ॥୫୪୮୫॥
ଯୁଧିଷ୍ଟି ଅଗ୍ରତେ ଜଣାଇ ବାସୁଦେବ
ଆଜ୍ଞା ହୋଇଲେ ନକୁଳ ଭିତରେ ପସିବ ॥୫୪୮୬॥
ଆସୁ ବୋଲି ଯହୁଂ ଧର୍ମସୁତ କହି
ନକୁଳ ଭିତରେ ପସି ଦ୍ରସନ କରଇ ॥୫୪୮୭॥
ଜିତ ପ୍ରସାଦ ବୋଲି ଡାକିଲେ ଧର୍ମନାନ
ଦ୍ରସନେ ଗତି ପାଇଲେ ସକଳ ରାଜନ ॥୫୪୮୮॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ପୁର୍ବଦ୍ୱାରେ ଆସି ପ୍ରବେସ ସହଦେବ ॥୫୪୮୯॥
ସଙ୍ଗତେ ୟେକ ଊଣା ସାତ ସହସ୍ର ରାଜନ
ଭିତରେ ପସନ୍ତେ ଯେ ଉଗାଳେ ପଦ୍ମନ ॥୫୪୯୦॥
ବୋଲନ୍ତି କେସବ ଠାକୁରଙ୍କ ଆଜ୍ଞା ହୋଇ
ଛାଡ଼ ଦ୍ୱାର ଭିତରେ ପସୁ ମାଦ୍ରିର ତନଇ ॥୫୪୯୧॥
ଶ୍ରୀହରି ଆଜ୍ଞାରେ ଦ୍ୱାର ଛାଡ଼ିଲା ସଏମ୍ବର ଅଇରି
ରାଜାଙ୍କୁ ଘେନି ସହଦେବ ଯୁଧିଷ୍ଟି ପାଦେ ପଡ଼ି ॥୫୪୯୨॥
ଜିତପ୍ରସାଦ ବୋଲି ଡାକିଲେ ଧର୍ମସୁତ
ଦ୍ରସନ କରିଣ ବସିଲେ ରାଜପୁତ୍ର[3] ॥୫୪୯୩॥
ଯୁଧିଷ୍ଟି ବିଜେକଲେ ବାହାର ଅବକାସ
ପଶ୍ଚିମରେ ବାଜିଲା ତିନି କୋଟି ସଙ୍ଖ ॥୫୪୯୪॥
ଉତରେ ସାତ କୋଟି ସଙ୍ଖଧ୍ୱନି ସୁଭେ
ଦକ୍ଷିଣେ ବେନି କୋଟି ସଙ୍ଖଧ୍ୱନି ବାଜେ ॥୫୪୯୫॥
ପୂର୍ବରେ ସୁଭିଲା ସଙ୍ଖ ସବଦ ପଞ୍ଚାସକୋଟି
କିମ୍ପେ ସଙ୍ଖ ସୁଭେ ବୋଲି ପଚାରନ୍ତି ଯୁଧିଷ୍ଟି ॥୫୪୯୬॥

୧ । ଘ ପୋଥି - ନିଉଂନ୍ତି
୨ । ଖ ପୋଥିରେ ଉପରେ ଏହି ଦୁଇ ଧାଡ଼ି ଅଧିକ ଅଛି -
ସାଧୁ ଦୁଷ୍ଟ ରାଜାଙ୍କୁ ସେ ନିମନ୍ତ୍ରି ଆଣିଲା
ଯଜ୍ଞକୁ ଯାଅ ବୋଲି ତାହାଙ୍କୁ କହିଲା
୩ । ଖ ପୋଥି - ସଭାରେ ମିଳିଲେ ସମସ୍ତ

ଶ୍ରୀହରି ପ୍ରତିବାଚ ଯେତେ ସଙ୍ଖ ବାଜି
ଯେକାବେଳେ ତେତେ ସନ୍ୟ ଗଲେ ଅର୍ଣ୍ଣ ଭୁଜିଂ ॥୫୪୯୭॥
ପବନ ବହନ୍ତେ ଉଚିଷ୍ଟ ପତ୍ର ଯାଏ ଉଡ଼ି
ପୃଥ୍ୱି ଧୋଇଗଲା ମେଘ ବରସିଲା ବାରି ॥୫୪୯୮॥
ସୁଣିଣ ବଇକୁଲ ହୋଇଲେ ଧର୍ମଙ୍କର ପୁଅ
ଉଚିଷ୍ଟ କାଢ଼ିବାରେ ରହିଲେ ପିତାମହ ॥୫୪୯୯॥
ସକଳ ଧର୍ମ ନଷ୍ଟ ହୋଇଲଇଂ ଦୋସି
ଯେଥିକି ଉପାୟେ କରହେ ହୃସୀକେସି ॥୫୫୦୦॥

## ମେରୁଶୂଳ ରଷି ଉପାଖ୍ୟାନ ଓ ଘଟୋତ୍କଚର ରାଜସୂୟ ଯଜ୍ଞକୁ ଆଗମନ

ବଦୟନ୍ତି ଭଗବାନ ଜଣେକ ପ୍ରବର୍ତିବା
ଭିମକୁ ବୋଇଲେ ମେଖଳା ବନକୁ ଯାଅ ବାବା[1] ॥୫୫୦୧॥
ମେରୁସୁଳ ରସିକି କହିଣ ଘେନିଆସ
ତାହାର ନୟନେ ଉଚିଷ୍ଟ ପତ୍ର ହୋଇଯିବ ଧ୍ୱଂସ ॥୫୫୦୨॥
ତାହାଙ୍କ ଠାବକୁ ନ ଯିବୁରେ ବାବୁ
ଖଣ୍ଡେ ଦୁରେ ଥାଇ ତାହାଙ୍କୁ ଡାକିବୁ[2] ॥୫୫୦୩॥
ଶ୍ରୀହରି ଆଜ୍ଞାପାଇଣ ଚଳିଲା ବିକୋଦର
ଭିମର ସଙ୍ଗତେ ଗମିଲା ସମିର ॥୫୫୦୪॥
ତିନି ଯୋଜନେ ଥାଇ ଯେକ ଡାକେକ ଡାକଇ
ଯଜ୍ଞକୁ ଯିବ ଆହେ ମେରୁସୁଳ ରସି ତୁହି ॥୫୫୦୫॥
ପଳାଇ ବିକୋଦର ପଛକୁ ନ ଚାହିଂ
ମେରୁସୁଳ ତେଜରେ ବୃକ୍ଷଲତା ଜଳିଯାଇ ॥୫୫୦୬॥
ବାରୁଣାକୁ ଚାରିଯୋଜନ ବସନ୍ତ ନାମେ ଗିରି
ସେଠାରେ ମେରୁସୁଳକୁ ରଖାଇଲେ ଦଇତାରି ॥୫୫୦୭॥
ବଦୟନ୍ତି ଗିରିଜା କିମ୍ପାଇଂ ରସିଙ୍କର ଯେଡ଼େ ତେଜ
କାହାର ସୁତ ସେହୁ କହ ହେ ସଦାସିବ ॥୫୫୦୮॥
ବଦୟନ୍ତି ସଙ୍କର ସେ ବ୍ରହ୍ମାଙ୍କ କୁମର
ଅଯୋନି ସମ୍ଭୁତ ସେ ତେଜେଣ ତ୍ରାପିତ ମୁନିବର ॥୫୫୦୯॥
ଯେତେବେଳେ ଭୁଜିଂଣ ସାରନ୍ତି ସର୍ବସନ୍ୟ
ତେତେବେଳେ ମୁନି ଚାହାନ୍ତି ନୟନ ॥୫୫୧୦॥
ପତ୍ର ପୋଡ଼ିଗଲେ ମେଘ ବରସଇ
ସୁଣଗୋ ଓମା ବୋଲି ସଙ୍କର ଯାନ୍ତି କହି ॥୫୫୧୧॥
ଘୃତ ପରସନ୍ତେ ଅଗ୍ନି ଜଳିଲେ ନିଉନ
ବ୍ୟାସେ ବୋଇଲେ ଯୁଧିଷ୍ଟିର ନାହିଂ ଯେ ନନ୍ଦନ ॥୫୫୧୨॥

୧ । ଘ ପୋଥି – ଯାଅ ଯା
୨ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଭିମସେନ ପୁତ୍ର ଅଛି ଘଟଉକ୍ରଟ[1]
ସେ ଅଇଲେ ଯିବ ଯୁଧିଷ୍ଟିର ପୁତ୍ର କଷ୍ଟ ॥୫୫୧୩॥
ଯେମନ୍ତ ବୋଲନ୍ତେ ଭିମ ପୁତ୍ରକୁ ସୁମରିଲା
ହିଡ଼ିମ୍ବିକି ନନ୍ଦନର ଆସନ କମ୍ପିଲା ॥୫୫୧୪॥
ଜନନି କି ବୋଇଲା ମୋତେ ଚିନ୍ତା କଲେ ପିତା
ଯାଗକୁ ଯିବି ମୁହିଂ ଆଜ୍ଞାଦିଅ ମାତା ॥୫୫୧୫॥
ହିଡ଼ିମ୍ବିକି ବୋଇଲା ଯେବେ ଯାଗକୁ ଯିବୁ ବାବୁ
ପଞ୍ଚୁଭ୍ରଥା ସ୍ତ୍ରି ଦୃପଦି କି ଉଳଗି ନୋହିବୁ ॥୫୫୧୬॥
କୁମର ବୋଇଲା ସେ ଯେ ଯୁଧିଷ୍ଟି କୋଳେ ଥିବେ
ନମସ୍କାର ନକଲେ କୋପ ସେ କରିବେ ॥୫୫୧୭॥
ହିଡିମ୍ବିକି ବୋଇଲା ତୋର ଅବିସେକ ସିର
ସ୍ତିରିଙ୍କି କେମନ୍ତେ ବାବୁ ହୋଇବୁ ନମସ୍କାର ॥୫୫୧୮॥
ଜନନି ବାରନ୍ତେ କୁମର ସଜ ହୋଇ
ପାଣିଦ୍ରବ୍ୟ ସତେ ରହୁବରେ ସେ ପୁରୋଇ ॥୫୫୧୯॥
ସତେକ କାଷ୍ଟ ଅଗର ବିମାନେ ଘେନି
ବାଉନ ସାଗର ସନ୍ୟ ଘେନି ଗମିଲା ବିରମଣି ॥୫୫୨୦॥
କୁମର ଚଳନ୍ତେ ହିଡ଼ିମ୍ବି ପଛରେ ଗୋଡ଼ାଇ
ବାରୁଣାରେ ମିଳନ୍ତେ ପାଛୋଟି ଭିମ ନେଇ ॥୫୫୨୧॥
ପିତାଙ୍କୁ ନମସ୍କାର ଯୁଧିଷ୍ଟି ଉଳଗି
ନମସ୍କାର ନ କରନ୍ତେ ସାପ୍ୟ ଦେଲେ ଦେବି ॥୫୫୨୨॥
ଦୃପଦି ବୋଇଲେ ବିନା ସମରେ ସିର ଛେଦନ ହୁଅ ତୁ
ହିଡିମ୍ବିକି ବୋଇଲା ତୋ କୁମରେ ସୟନେ ନାସ ଯାନ୍ତୁ ॥୫୫୨୩॥
ସାପ୍ୟ ଦେଇଣ ଯେ ହିଡ଼ିମ୍ବିକି ଚଳିଗଲା
ସୁଣଗୋ ଓମା ବୋଲି ବୋଲନ୍ତି ସିବଭୋଳା[2] ॥୫୫୨୪॥

## ଘଟୋତ୍କଚର ଲଙ୍କାକୁ ଯାତ୍ରା ଓ ବିଭୀଷଣର ରାଜସୂୟ ଯଜ୍ଞକୁ ଆଗମନ

ଘଟଉକ୍ରଟକୁ ଯେ ଶ୍ରୀହରି ଆଜ୍ଞା ଦେଲେ
ଲଙ୍କାରୁ ବିଭିସଣକୁ ଆଣ ଯା ବୋଇଲେ ॥୫୫୨୫॥
ବାସୁଦେବ ଆଜ୍ଞାରେ ଚଳିଲେ ଘଟଉକ୍ରଟ
ଲଙ୍କାରେ ଭେଟିଲା ଯାଇ ବିସର୍ବାର ଚାଟ[3] ॥୫୫୨୬॥
ଗୋବିନ୍ଦଙ୍କ ଆଜ୍ଞା ପାଇଣ ଲଙ୍କାମାଝି
ବାହାର ହୋଇଲା ସେ ନିଜ ବଳ ସାଜି ॥୫୫୨୭॥

୧ । ଖ ପୋଥି – ଘଟୋତ୍କଚ
୨ । ଘ ପୋଥି – ଦେବରାଜା
୩ । ଘ ପୋଥି – ପ୍ରବେଶ ହୋଇଲା ଯାଇଣ ଲଙ୍କରାଷ୍ଟ୍ର

ଦଇତ ବଳ ଯହୁଁ ପ୍ରବେସ ଜମ୍ବୁଦିପ
ଧୁଳି ଉଡ଼ି ଅଂସୁମାଳି ହୋଇଲେ ଅଦୃସ୍ୟ ॥୫୫୨୮॥
ଗୋବିନ୍ଦ ଆଜ୍ଞାଦେଲେ ଧାଇଂଲା ହନୁମତ
ହନୁକୁ ଦେଖି ନିସ୍ତେଜ ହୋଇଲେ ଦଇତ୍ୟ ॥୫୫୨୯॥
ଆପଣେ ଶ୍ରୀହରି ଖଣ୍ଡିୟେ ଦୂର ଗଲେ
ବିଭିସେଣକୁ ପ୍ରବୋଧି ଘେନିଣ ଅଇଲେ ॥୫୫୩୦॥
ବୋଇଲେ ସୁକ୍ଳାମ୍ବର ବିଷ୍ଣୁ ଅଟନ୍ତି ଯୁଧିଷ୍ଟି
ଦର୍ଶନେ ଓଳଗିଲେ ସର୍ବ ପାପ ତୁଟି ॥୫୫୩୧॥
ବିଭିସେଣ ବୋଇଲା ଦେବ ତୋ ଠାରୁ ଅନ୍ୟ ନାହିଂ
ବିଷ୍ଣୁ ଉପରେ ବିଷ୍ଣୁନାଥ ରଖିଅଛୁ କାହିଂ ॥୫୫୩୨॥
ଦକ୍ଷିଣେ ମିଳନ୍ତେ ଜଇନ୍ତା ଦ୍ୱାର ନ ଛାଡ଼ଇ
ପଶ୍ଚିମେ ସାମ ବୋଇଲା ଠାକୁରଙ୍କର ଆଜ୍ଞା ନାହିଂ ॥୫୫୩୩॥
ଉତରେ ଗଦକୁ ବୋଇଲେ ଭଗବାନ
ତେପନ ଗଣ୍ଡା ଯୁଗର ୟେ ଅଟଇ ରାଜନ ॥୫୫୩୪॥
ଯୁଧିଷ୍ଟି ଠାକୁରଙ୍କୁ ଦ୍ରସନ କରିବ
ଆଜ୍ଞା ନୋହିଲେ ଦ୍ୱାର ନ ଛାଡ଼ିବିଂ ବୋଇଲା ଗଦ ॥୫୫୩୫॥
ଦେଖିଣ ହୃଦଗତେ ଭାବଇ ବିଭିସଣ
ଯୁଧିଷ୍ଟି ବୋଲିଣ ସେ ଅଟଇ ୟେଡ଼େ ଜଣ ॥୫୫୩୬॥
ଆପଣେ ଗୋବିନ୍ଦ ୟେହା କପଟ କରିଛିଂ[୧]
ଗଜିଂବାକୁ ମୋତେ ଏତେ ଦ୍ୱାର ଫେରାଉଛି ॥୫୫୩୭॥
ପୁର୍ବରେ ପ୍ରବେସ ଅନନ୍ତ ପଡ଼ିହାରି
କାଖରେ ଜାକିଛନ୍ତି ସୁବର୍ଣ୍ଣ ବେତ ଯୋଡ଼ି ॥୫୫୩୮॥
ପଦ୍ମନକୁ କହନ୍ତେ ନ ଛାଡ଼ିଲା ଦ୍ୱାର
ଯୁଧିଷ୍ଟିଙ୍କ ଆଗେ ଜଣାଇଲା କାଳିଜଂନ[୨] ଡଗର ॥୫୫୩୯॥
ଆଜ୍ଞାଦେଲେ ଭିତରେ ପସିବେ ଶ୍ରୀହରି ବିଭିସେଣ
ଯୁଧିଷ୍ଟି ଚରଣେ ଯେ ପଡ଼ିଲେ ଭଗବାନ ॥୫୫୪୦॥
ଭଗବାନ ଚରଣେ ବିଭିସେଣ ପଡ଼ଇ
ଜିତପ୍ରସାଦ ବୋଲି ଡାକିଲେ ଧର୍ମର ତନଇ[୩] ॥୫୫୪୧॥
ଉଠିଣ ଗୋବିନ୍ଦ ବୋଇଲେ ୟେ ଅଟଇ ବିଭିସେଣ
ତେପନ ଗଣ୍ଡା ଯୁଗର ୟେ ଅଟଇ ରାଜନ ॥୫୫୪୨॥
ଶ୍ରୀରାମର ଅବିସେକି ୟେ ରାବଣର ଭାଇ
ପଡ଼ିଛି ତୁମ୍ଭ ପାଦତଳେ ୟେ ଆଜ୍ଞା ଦିଲେ ଉଠଇ ॥୫୫୪୩॥
ଯୁଧିଷ୍ଟି ଆଜ୍ଞାଦେଲେ ଉଠ ହେ ଲଙ୍କପତି
ଉଠି ସଭାରେ ବସିଲା ପୌଲସ୍ତିର ନାତି ॥୫୫୪୪॥

୧ । ଘ ପୋଥି – କପଟ ରଞ୍ଚିଛଇ
୨ । ଘ ପୋଥି – କାଳିଧ୍ୱଂସନ
୩ । ଘ ପୋଥି – ଆଦିତ୍ୟ ତନଇ

## ସୁବର୍ଣ୍ଣର ଅଷ୍ଟରାଜା ନିର୍ମାଣ

ବୋଲନ୍ତି କେସବ କାଳିଧ୍ୱଂସନ ମୁଖ ଚାହିଂ
କେ କେ ରାଜା ଅଇଲେ କେହୁ ଆସି ନାହିଂ ॥୫୫୪୫॥
ଡଗର ବୋଇଲା ପୁର୍ବୁ ନଇଲା ଉଗ୍ରସେନ[୧]
ପଶ୍ଚିମରୁ ନଇଲା ରାଜା ମୃଗସେନ[୨] ॥୫୫୪୬॥
ଉତରୁ କପିଳସେନ ନ ଅଇଲା
ନ ଆସି ଚିତ୍ରସେନ ଦକ୍ଷିଣେ ରହିଲା[୩] ॥୫୫୪୭॥
ଆଦ୍ୟରେ ଚାରି ଊଣା ଲକ୍ଷେକ ନୃପତି
ନଇଲେ ଚାରି ରାଜା ହୋଇଲେ ଅଷ୍ଟଗୋଟି ॥୫୫୪୮॥
ବିଶ୍ୱକର୍ମାକୁ ଭଗବାନ ଆଜ୍ଞାଦିଲେ
ସୁବର୍ଣ୍ଣର ଅଷ୍ଟରାଜା ସେହିକ୍ଷଣି ନିର୍ବାଣିଲେ[୪] ॥୫୫୪୯॥
ବ୍ୟାସେ ବୋଇଲେ ହରି ବିରାଟ ଆସିଛଇ
ସେ ଚିହ୍ନିଗଲେ ପାଣ୍ଡବେ ରହିବେ ଗୋପତ କାହିଂ ॥୫୫୫୦॥
ବଦୟନ୍ତି କେସବ ନ ଚିହ୍ନନ୍ତୁ ଯୁଧିଷ୍ଟିଙ୍କୁ
ଯାଅରେ ଭିମ ଅନ୍ତରିକ୍ଷେ ଆଣରେ ବିରାଟକୁ ॥୫୫୫୧॥
ଗୋବିନ୍ଦ ଆଜ୍ଞାରେ ଗମିଲା ବିକୋଦର
ବିରାଟକୁ ଗଳା ଧରିଣ ଆଣିଲା ଧାଡିକାର[୫] ॥୫୫୫୨॥
ଯୁଧିଷ୍ଟିଙ୍କ ପାଦତଳେ ପକାଇଲା ନେଇ
ପାଦ ଆଙ୍ଗୁଷ୍ଟି ଦେଖି ବିରାଟ ଗତିପାଇ ॥୫୫୫୩॥
ନେଉଟି ପଳାଇ ବାହାର ଗଡ଼ ଦ୍ୱାରେ
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କରେ ॥୫୫୫୪॥
ଅଗ୍ନିତେଜ ନିଉନ ଟଳିଲା କୁମ୍ଭ
ବ୍ୟାସେ ବୋଇଲେ ହୋ ଖଣ୍ଡଣ ହେଲା ଯାଗ ॥୫୫୫୫॥
ମାର୍କଣ୍ଡେ ବୋଇଲେ ହୋ କେହୁ ଆସିନାହିଂ
ବଦୟନ୍ତି କେସବ ପାତାଳୁ ବାସୁକି ଆସିନାହିଂ ॥୫୫୫୬॥
ଅର୍ଜୁନକୁ ଚାହିଂ[୬] ଆଜ୍ଞା ଦିଲେ ଭଗବାନ
ବାସୁକି ରାଜାକୁ ନିମନ୍ତ୍ରିଣ ଆଣ ॥୫୫୫୭॥

## ଅର୍ଜୁନଙ୍କ ଧନୁହୁଳରେ ମେଦିନୀ ଧାରଣ

ବିମାନେ ବସିଣ ଗମିଲା ଫାଲଗୁନି
ପାତାଳେ ପ୍ରବେସ ବାସୁକି ପୁରେ ପୁଣି ॥୫୫୫୮॥

୧ । ଘ ପୋଥି – ମୃଗସେନ
୨ । ଘ ପୋଥି – ଉଗ୍ରସେନ
୩ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୪ । ଘ ପୋଥି – ନିବାଡ଼ିଲେ
୫ । ଖ ପୋଥି – ତତପର
୬ । ଘ ପୋଥି – ରାଇ

ଶ୍ରୀହରି ଭାସା ବୃତାନ୍ତ ଜଣାଇଲା
ଅନନ୍ତ ବୋଇଲା ମୁଂ ବହିଛି ମହିଭାରା[1] ॥୫୫୫୯॥
ଯାଗକୁ ଗଲେ ମହି ପଡ଼ିବ ରାସାଙ୍ଗତ
ଅର୍ଜୁନ ବୋଇଲା ମୁଂ ବସାଇବି ମାଥ ॥୫୫୬୦॥
ବାସୁକି ବୋଇଲା ଯେହା ନୋହଇ ବୋଝଭାର
ସପତ ଦିପା ମେରୁ[2] ସହିତେ ସପତ ସାଗର ॥୫୫୬୧॥
ମୋହର ବିନୁ ଆନ କେ ଧରି ନପାରଇ
ସୁଣି ଧନୁହୁଳ ଦିଲାକ ଧନୁର୍ଜଇ ॥୫୫୬୨॥
ଡାକିଲା ପାଥ ସିର କାଢ଼ ହୋ ଅନନ୍ତ
ଧନୁହୁଳେ ଧଇଲା ନବଖଣ୍ଡ ଜଗତ ॥୫୫୬୩॥
ଧିରେ[3] ବାସୁକି ଯେ ଖସାଇଲା ଶିର
ଦେଖିଲା ମହିଭାରା ଧରିଛି ଧନୁର୍ଦ୍ଧର ॥୫୫୬୪॥
ବୋଇଲା ସୁଣରେ ପାଣ୍ଡେବ ସୁନ୍ଦର
ତୋଠାରେ ଯେଡ଼େ ଦୟା କରିଛି ଚକ୍ରଧର ॥୫୫୬୫॥
ଦୁହିତାକୁ ବୋଇଲା ତୁ ପାଥକୁ ଥିବୁ ଖଟି
ଯେତେ ବୋଲି ଯାଗକୁ ଗମିଲା ବାସୁକିଟି ॥୫୫୬୬॥
ଶ୍ରୀହରିଙ୍କି ଉଲଗି ଯୁଧିଷ୍ଠିଙ୍କି କଲାକ ଦ୍ରସନ
ଗୋପାଳଙ୍କୁ ରାଇ ଆଜ୍ଞା ଦିଲେ ଭଗବାନ ॥୫୫୬୭॥
ଖିର ଆଣି ଦିଅ ଭକ୍ଷନ୍ତୁ ନାଗବଳ
ଆଜ୍ଞାପାଇ ଦୁଧଭାର ଦିଅନ୍ତି ଗୋପାଳ ॥୫୫୬୮॥

## ଶିଶୁପାଳ ବଧ

ଯେଥୁ ଅନନ୍ତରେ ସୁଣଗୋ ଗଉରି
ଦେବଗଣ ଘେନି ବସିଲେ ବଜ୍ରଧାରି ॥୫୫୬୯॥
ଦେବତା ମାନବ ରାକ୍ଷାସ ଆବର ନାଗବଳ
ବସିଛନ୍ତି ସଭାରେ ହୋଇଣ ଯେକ ମେଳ ॥୫୫୭୦॥
ଦେବରସି ରାଜରସି ସନ୍ନ୍ୟାସି ବ୍ରହ୍ମରସି
ଛତିସ ବର୍ଣ୍ଣ ରାଜା ସମସ୍ତେ ଛନ୍ତି ବସି ॥୫୫୭୧॥
ସତ୍ରୁ ମିତ୍ରୁ ତହିଂ ନାହିଂ ପରାପର
ନାହିଂ ଖଳ ବାଦ ହିଂସା ଅହଙ୍କାର ॥୫୫୭୨॥
ଆପଣେ ଭଗବାନ ଅନନ୍ତ ପଡ଼ିହାରି
ବୁଝନ୍ତି ଭଲମନ୍ଦ ହସ୍ତରେ ବେତଯୋଡ଼ି ॥୫୫୭୩॥
ସୁଦର୍ସନ ଚକ୍ର ବୋଲଇ ଅନ୍ତରାଳ
ଅନ୍ୟାୟେ ବିଚାରିଲେ ମାଛି ହୁଏ ବେନିଫାଳ ॥୫୫୭୪॥

୧ । ଘ ପୋଥି - ମୋହାଭାରା
୨ । ଘ ପୋଥି - ମହୀ
୩ । ଘ ପୋଥି - ସଧୀରେ

ସଭାରେ ସ୍ତମ୍ଭକୁ ଆଉଜି ବସିଛନ୍ତି ନୃପବର
ଦ୍ରୋପଦର ନନ୍ଦନି ଅଛନ୍ତି କୋଳର[1] ॥୫୫୭୫॥
ରାତ୍ର ଦିବା ନ ଜାଣନ୍ତି ପିତୁଳା ମାନ ଦେଖି[2]
ନାନା ଚିତ୍ରମାନ ଘଟଣ ଉପଲେଖି[3] ॥୫୫୭୬॥
ରାଜାମାନେ ଆଣିଛନ୍ତି ଯେତେ ପାଣିଦ୍ରବ୍ୟ
ଭଣ୍ଡାରେ ରଖି ବିଧ୍ୱଂସଇ ମାନଗୋବିନ୍ଦ ॥୫୫୭୭॥
ଯେ ଯାହା ମାଗଇ ସେ ତାହା ନିଯେ ବହି
ଯେତେକ ସରଇ ତେତେକେ ହୁଅଇ ॥୫୫୭୮॥
ଯେମନ୍ତରେ ସଭା ହୋଇଲା ବିଦ୍ୟମାନ
ଛଡ଼ଦସ ଦିନେ ଯାଗ ହୋଇଲା ସଂପୂର୍ଣ୍ଣ ॥୫୫୭୯॥
ଯୁଧିଷ୍ଟି ପଚାରିଲେ ବ୍ୟାସଙ୍କ ମୁଖ ଚାହିଂ
ଆଜ ସେସ ଅର୍ଘ୍ୟ କାହାର ସିରେ ଦେବଇଂ[4] ॥୫୫୮୦॥
ବୋଇଲେ ବ୍ୟାସେ ସକଳ ବ୍ରହ୍ମାଣ୍ଡ ଠାକୁର ଚକ୍ରଧର
ପାଇବୁ ସଦଗତି ଅର୍ଘ୍ୟ ଦିଅ ତାଙ୍କ ସିର ॥୫୫୮୧॥
ସୁଣିଣ ଧର୍ମସୁତ ହରି ସିରେ ଦେଲେ ଅର୍ଘ୍ୟ
ଦେଖିଣ ବିସାଦ ଦୁର୍ଯୋଧନ ପାଇଲାକ ଖଙ୍ଗ[5] ॥୫୫୮୨॥
ସିସୁପାଳକୁ ବୋଇଲା ତୁ ଧିକ୍କାରି ଦିଅଗାଳି
ଆମ୍ଭେ ସାହା ହୋଇବୁ କୋପ କଲେ ବନମାଳି ॥୫୫୮୩॥
ଯୁଧିଷ୍ଟିଙ୍କି ସିସୁପାଳ ବୋଇଲା ତୁ ହୋଇଲୁ ଅଜ୍ଞାନ
ସଭାରେ ବସିଛନ୍ତି ଅଭିସେକି ରାଜାମାନ ॥୫୫୮୪॥
ଏମାନଙ୍କୁ ତେଜି ଯେ ଗୋପାଳ ସିରେ ଅର୍ଘ୍ୟଦେଲୁ
ସୁପଥ ଛାଡ଼ିଣ ତୁ ଅମଡ଼ା ମାଡ଼ିଲୁ[6] ॥୫୫୮୫॥
ତୁହି ନ ଜାଣିଲୁ ବୋଲି କାହୁଆ ଗଉଡ଼ ନ ଜାଣିଲା
ରାଜା ଯୋଗ୍ୟ ଅର୍ଘ୍ୟକୁ ଯେ ସିର ପାତିଦେଲା ॥୫୫୮୬॥
ସିଂହର ପଦାର୍ଥକୁ ସୃଗାଳ ଭୁଜଂଇ
ସର୍ପର ଆହାର କି ମଣ୍ଡୁକି ଛଡ଼ାଇ ॥୫୫୮୭॥
ଗଧର ଅଙ୍ଗେ କି ଅଗର ଚନ୍ଦନ
ମାଙ୍କଡ ଘୁସୁରି କି ଖାଇ ଗୁଆ ପାନ ॥୫୫୮୮॥
ନାହିଂ କୁଳ ମୂଳ ଯେ ବସୁଦେବର ପୁଅ ଗୋପାଳଟା
ହରିଲା ଗୋପାଳୁଣି ଗୋପାଳଙ୍କର ଖାଇଲା ଅଇଂଠା ॥୫୫୮୯॥

୧ । ଖ ଓ ଘ ପୋଥିରେ ଏହି ଧାଡ଼ି ନାହିଁ
୨ । ଘ ପୋଥି - ରାତ୍ର ଦିବା ନୟନେ ପିତୁଳା ଦେଖୁଛନ୍ତି
୩ । ଖ ଓ ଘ ପୋଥିରେ ଏହି ଧାଡ଼ି ନାହିଁ
୪ । ଘ ପୋଥି - ଆଜ ଯେ ଅର୍ଘ୍ୟ କାହା ଶିରେ ଦେବି ମୁହିଂ
୫ । ଖ ଓ ଘ ପୋଥି - ଦେଖିଣ ଦ୍ରିଯୋଧନ ପାଇଲାକ ବିସାଦ
୬ । ଘ ପୋଥି - ଅମଣ୍ଡା ମାଣ୍ଡିଲୁ

ବହୁତ ହତ୍ୟା ଯେ କନ୍ଧରେ ଅଛି ବହି
ତାହାକୁ ଛୁଇଂଲେ ବହୁତ ପାତେକ ବଢ଼ଇ ॥୫୫୯୦॥
ଯାଅରେ ଗୋପାଳେ ତୁ ନଥାଅ ସଭାର
ସିସୁପାଳ ଜିଘାସେ କୋପିତ ଚକ୍ରଧର ॥୫୫୯୧॥
ସୁଦ୍ରିସେନ ଚକ୍ରକୁ ରାଇ ବଦୟନ୍ତି ଭଗବାନ
କାଟ ସିସୁପାଳ ସିର ପଡୁ ଭୁମିରେଣ[1] ॥୫୫୯୨॥
ଆଜ୍ଞାପାଇ ଚକ୍ର ସିସୁପାଳ ମୁଣ୍ଡ କାଟି
ପଡ଼ିଲା ବେନି ଖଣ୍ଡ ହୋଇ ଦମଘୋସର ସନ୍ତତି ॥୫୫୯୩॥
ସାପ୍ୟ ପାର କରି ସେ ପାଇଲା ସଦଗତି
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି ॥୫୫୯୪॥
ମଲା ସିସୁପାଳ ତ୍ରାସ ପାଇଲେ ନୃପବର
ଭୟରେ ଦୁର୍ଯୋଧନ ବସିଲା ସଭାର ॥୫୫୯୫॥
ସେ ମାୟା ସଭା ଗରବ ନ ସହଇ
ତିନିତାଳ ଗଭିରେ ପଡ଼ିଲା ମାନଗୋବିନ୍ଦ ଯାଇ ॥୫୫୯୬॥
ଧରିଣ ବିକୋଦର ସଭାରେ ବସାଇଲା[2]
ନେଉଟି ଦୁର୍ଯୋଧନ ସଭାରେ ବସିଲା ॥୫୫୯୭॥
କରତାଳି ମାରିଣ ହସଇ ଭିମସେନ
ଯେଡ଼େ ନିର୍ବଳ ତୁ ହୋଇଲୁ ଦୁର୍ଯୋଧନ ॥୫୫୯୮॥
ସଭାରେ ବସିବାକୁ ଭାର୍ଜନ ନୋହିଲୁ
ଆଖି ଥାଉଂ ଥାଉଂ ଅନ୍ଧ ପ୍ରାୟେ ତୁ ହୋଇଲୁ ॥୫୫୯୯॥
ସୁଣିଣ କୁରୁମଣି ପାଇଲା ଅଭିମାନ
ଭାଇଙ୍କ ଘେନି ଗଲା ହସ୍ତିନା ଭୁବନ ॥୫୬୦୦॥
ଦୁର୍ଯୋଧନ ବୋଇଲା ସଙ୍କୁନି ମୁଖ ଚାହିଂ
ପାଣ୍ଡବେ ସଭାରେ ମୋତେ ନ ଦିଲେ ବସାଇ ॥୫୬୦୧॥
ସଙ୍କୁନି ବୋଇଲା ମୋର ଅଛଇ ଉପାୟେ
ସଭାରେ ଲଜା କରାଇବିଂ ଧର୍ମର ତନୟେ ॥୫୬୦୨॥
ସୁଣଗୋ ଓମା ବୋଲି ବୋଲନ୍ତି ସୁଳହସ୍ତ
ସରିଲା ଯାଗ ଯହୁଂ ଗମିଲେ ସମସ୍ତ ॥୫୬୦୩॥

## ଅର୍ଜୁନ ସହିତ ସନ୍ଧ୍ୟାବାଳୀର ପରିଣୟ

ବାସୁକି ପ୍ରବେସ ହୋଇଲା ନିଜପୁରେ
ଦେଖିଲା ଅର୍ଜୁନ ବହିଛି ପୃଥିଭାରେ ॥୫୬୦୪॥
ଅନନ୍ତ ସିରେ ଧଇଲେ ବସୁନ୍ଧରି
ଅର୍ଜୁନକୁ ପ୍ରଦାନ[3] କଲେକ ସନ୍ଧ୍ୟାବାଳି ॥୫୬୦୫॥
ବାସୁକି ଦୁହିତାକୁ ଅର୍ଜୁନ ବିଭାହୋଇ
ରହିଲା ତିନିମାସ ପାତାଳେ ଧନୁର୍ଜଇ ॥୫୬୦୬॥
ଅର୍ଜୁନ ବିର୍ଯ୍ୟେ ବାଳି ଗର୍ଭବାସ ହୋଇଲା
ପାଥକୁ ନ ଦେଖି ଯୁଧିଷ୍ଟି ବହୁତ ଚିନ୍ତାକଲା ॥୫୬୦୭॥
ଶ୍ରୀହରି ମୁଖ ଚାହିଂ ବିକଳତ ତାଙ୍କ ମନ
ଅର୍ଜୁନକୁ ନ ଦେଖିଲେ ମୁହିଂ ଛାଡ଼ିବି ଜିବନ ॥୫୬୦୮॥
ଗୋବିନ୍ଦ ସୁମରିଲେ ଆସରେ ଫାଲଗୁନି
ଜାଣିଲେ ଅର୍ଜୁନ ଚିନ୍ତାକଲେ ଚକ୍ରପାଣି ॥୫୬୦୯॥
ସନ୍ଧ୍ୟାବାଳି କି ବୋଇଲେ ତୁ ଥାଅ ଯେହିଠାରେ
ମୁହିଂ ଯାଉଅଛି ଯେବେ ଆପଣା ମନ୍ଦିରେ ॥୫୬୧୦॥
ସୁଣି ସନ୍ଧ୍ୟାବଳି ବଇକୁଳ ଦେହ
ତୁମ୍ଭେ ଗଲେ ସ୍ୱାମି ମୋତେ ସଙ୍ଗେ ନିଅ ॥୫୬୧୧॥
ଅର୍ଜୁନ ବୋଇଲା ରାଜୁଣି ଅଟେ ଦ୍ରୋପଦି
ତୁହି ଯାଇ ମିଳିଲେ କନ୍ଦଳ ହେବ ନିତି ॥୫୬୧୨॥
ସନ୍ଧ୍ୟାବାଳି ବୋଇଲା ମୋ ପେଟରେ ତିନିମାସ
କୁମର ଜନ୍ମିଲେ ନିକି ପଶ୍ଚାନ୍ତେ ମୋତେ ଦୋସ[1] ॥୫୬୧୩॥
ବାସବି ପ୍ରତିବାଚ ଯଦି ହୋଇବ ନନ୍ଦନ
କିଛି ନ ବିଚାରି ଦେବୁ ତୋହର ମୋହର ନାମ ॥୫୬୧୪॥
ସନ୍ଧ୍ୟାବାଳି ବୋଇଲା ତୁମ୍ଭେ କ୍ଷତ୍ରିବୃତି ସାଧ
କେମନ୍ତେ ଜାଣିବି ତୁମ୍ଭଙ୍କୁ ପଡ଼ିଲେ ପ୍ରମାଦ ॥୫୬୧୫॥
ସୁଣିଣ ଅର୍ଜୁନ ମନ୍ତ୍ର ପଢ଼ି କାଟେ ଗାର
ସେ ଗାରରୁ ଉତରିଲା ଅର୍ଜୁନ ତରୁବର ॥୫୬୧୬॥
ବୋଇଲା ଯେଉଁଦିନେ ମୋହର ମୃତ୍ୟୁ ହୋଇ
ସେହିଦିନେ ଯେହି ବୃକ୍ଷ ମଉଳିବ ସହି ॥୫୬୧୭॥
ସନ୍ଧ୍ୟାବାଳି ବୋଇଲା ପିତାଙ୍କୁ ଜଣାଇବିଂ ପୁଣିଂ
ଚାଲ ବୋଲି ସଜ ହୋଇଲା ଫାଲଗୁନି ॥୫୬୧୮॥
ଦୁହିତାକୁ ଦେଖି ବାସୁକି ପଚାରଇ
ସନ୍ଧ୍ୟାବାଳି ବୋଇଲା ତୋର ଯାଉଛି ଜୁଆଇଂ ॥୫୬୧୯॥
ନାଗରାଜା ବୋଇଲେ କିମ୍ପେ ଯାଉଛ ବାଭିୟେ
ଅର୍ଜୁନ ବୋଇଲା ମୋତେ ଚିନ୍ତିଲେ ଧର୍ମରାୟେ ॥୫୬୨୦॥
ଦୁର୍ଯୋଧନ ଆମ୍ଭର ଅସହଣି ଅଟଇ
ମୋତେ ନ ଦେଖିଣ ସେ ପ୍ରମାଦ ପାଞ୍ଚୁଥାଇ ॥୫୬୨୧॥
ମେଲାଣି ମାଗି ପାଥ ହୋଇଲା ବାହାର
ପ୍ରବେସ ହୋଇଲା ସେ ବାରୁଣା କଟକର ॥୫୬୨୨॥
ଶ୍ରୀହରି ଯୁଧିଷ୍ଟିଙ୍କି ନମସ୍କାର କରି
ବିଳମ୍ବ କିମ୍ପା ବୋଲି ପୁଛିଲେ ଦଇତାରି ॥୫୬୨୩॥

---

୧ । ଖ ପୋଥି – ଲଭୁ ଯେ ମରଣ
୨ । ଖ ପୋଥି – ଉଟାରି ଆଣିଲା
୩ । ଘ ପୋଥି – ବିଭା

୧ । ଘ ପୋଥି – କୁମର ଜନ୍ମିଲେ ପଶ୍ଚାନ୍ତେ ନିକି ବାଛ

ଅର୍ଜୁନ ବୋଇଲା ମୁଂ ବସୁଧା ବହିଲି
ସନ୍ଧ୍ୟାବାଳି ବୋଲି ଥିଲା ବାସୁକି ଦୁଲାଳି ॥୫୬୨୪॥
ମୋତେ ବିଭା ଦିଲେ ଯଜ୍ଞରୁ ରାଜାଯାଇ
ଗୋବିନ୍ଦ ପ୍ରସଂସିଲେ ଧନ୍ୟରେ ଧନୁର୍ଜଇ ॥୫୬୨୫॥
ଦ୍ୱାରିକାକୁ ଯିବାକୁ ଗୋବିନ୍ଦ ସଜ ହେଲେ
ଚାରି ପାଣ୍ଡବେ ସଙ୍ଗେ ପାଛୋଟିଣ ଗଲେ[୧] ॥୫୬୨୬॥

## ଯୁଧିଷ୍ଠିର ଓ ଦୁର୍ଯ୍ୟୋଧନଙ୍କ ପଶାଖେଳ

ହସ୍ତିନା ସଭାକୁ[୨] ଯୁଧିଷ୍ଠି ଦେବ ଗଲେ
ଦୁର୍ଯୋଧନ ସଭାରେ ପ୍ରବେସ ହୋଇଲେ ॥୫୬୨୭॥
ଭିସ୍ମ ଦ୍ରୋଣ କର୍ଣ୍ଣ ସଲ୍ୟ କୃପବ୍ରହ୍ମା
ସଙ୍କୁନି ସୋମଦତ୍ତ ଜଦ୍ୟରଥ ଅସ୍ୱସ୍ତମା ॥୫୬୨୮॥
ଦୁସାସନ ସହିତେ ଅନେଶ୍ୱତ ଭାଇ
ବସିଛନ୍ତି ସଭାରେ ଆନନ୍ଦ ଚିତ ହୋଇ ॥୫୬୨୯॥
ସଙ୍କୁନି ବୋଇଲା ଦୁର୍ଯୋଧନ ମୁଖ ଚାହିଂ
ପସା ଖେଳ ତୁମ୍ଭେ ଯୁଧିଷ୍ଠିକି ଦେବି ହରାଇ ॥୫୬୩୦॥
ଦୁର୍ଯୋଧନ ବୋଇଲା ଆସ ହେ ଯୁଧିଷ୍ଠି
ଖେଳିବା ମୋହର ହସ୍ତେ ଅଛଇ ପସାକାଠି ॥୫୬୩୧॥
ଆସନ ଯୋଗାଇଲା ବସିଲେ ଯୁଧିଷ୍ଠିର
ଖଡ଼ିରେ କୋଠାକାଟି ବସାଇଲେ ସାର ॥୫୬୩୨॥
ନାଗ ନାମେ କରଣ ବିତିପାତ ନାମେ ଯୋଗ
ମେସ ସଙ୍କରାନ୍ତି କି ସତର ଦିନ[୩] ଭୋଗ[୪] ॥୫୬୩୩॥
ଯୁଧିଷ୍ଠିରଙ୍କ ଅଟଇ ବିସାଖା ତୁଳ ରାସି
ଜନ୍ମରେ ସନିଶ୍ଚର ଦସମେ ବୃହସ୍ପତି ॥୫୬୩୪॥
ଅଷ୍ଟମରେ ମଙ୍ଗଳ ପଞ୍ଚମରେ ମନ୍ତ୍ରି
ବାର ନାମେ ଭୃଗୁ ଗଣ୍ଡ ନାମେ ରେବତି ॥୫୬୩୫॥
ଚନ୍ଦ୍ରନାମେ ଘାତ କାଳ ନାମେ ଘଡ଼ି
ସେଦିନ ଯୁଧିଷ୍ଠି ବସିଲେ ପସାଖେଳି ॥୫୬୩୬॥
ଦୁର୍ଯୋଧନ ବୋଇଲା ରଖିବା ପିଢ଼ କିସ ତୋର
ଯୁଧିଷ୍ଠି ବୋଇଲେ ରଖିଲି ମୁକୁଟ ଅଳଙ୍କାର ॥୫୬୩୭॥
ଦୁର୍ଯୋଧନର ବାମଞ୍ଝା ଯୁଧିଷ୍ଠିଙ୍କର ପଞ୍ଝୁଆତି
ସଙ୍କୁନି ମନ୍ତ୍ରି ତହିଂକି ହୋଇଲାକ ସାକ୍ଷି ॥୫୬୩୮॥
ଯୁଧିଷ୍ଠି ପାଡ଼ନ୍ତେ[୧] ପଡ଼ିଲା ବାମଞ୍ଝା
ସଙ୍କୁନି ବୋଇଲା ମୁକୁଟ ଅଳଙ୍କାର ପକା ॥୫୬୩୯॥
ସବୁ ଦୁସାସନ ନେଲାକ ହୁଞ୍ଚୁଡ଼ି
କଚଟି ବାହୁଟି ମୁକୁଟ ବିରବଳି ॥୫୬୪୦॥
ଦୁର୍ଯୋଧନ ବୋଇଲା ରଖ କିସ ପିଢ଼
ଯୁଧିଷ୍ଠିର ପ୍ରତିବାଚ ରଖିଲି ବାଉନ ଭଣ୍ଡାର ॥୫୬୪୧॥
ସଙ୍କୁନି ପସା ଦେଇ ଡାକଇ ଜିତ ଜିତ
ପଡ଼ିଲା ବାମଞ୍ଝା ଜିଣିଲା କୁରୁନାଥ ॥୫୬୪୨॥
ବୋଲଇ ଦୁର୍ଯୋଧନ ରଖିବୁ ଏବେ କିସ
ଇଦଂ ବାକ୍ୟେ ଯୁଧିଷ୍ଠି ରଖିଲେ ରାଜ୍ୟଦେସ ॥୫୬୪୩॥
ଯେତେ ବୋଲି ପସା ପାଡ଼ିଲେ ଯୁଧିଷ୍ଠିର
ପଡ଼ିଲା ବାମଞ୍ଝା ହାରିଲେ ରାଜ୍ୟ ଭାର ॥୫୬୪୪॥
କରତାଳି ମାରିଣ ହସିଲା ଦୁସାସନ
ଆମ୍ଭର କୋଠ ହୋଇଲା ଭଣ୍ଡାର ରାଜଧନ ॥୫୬୪୫॥
ଭିସ୍ମ ଦ୍ରୋଣ ବୋଇଲେ ଯୁଧିଷ୍ଠି ଯାଅ ଉଠି
କପଟ ପସାରେ ତୁ ନ ପକା ପସାକାଠି ॥୫୬୪୬॥
ହାରିଲୁ ରାଜଧନ ବଞ୍ଚିବୁ ଯେବେ କାହିଂ
ମାନଗୋବିନ୍ଦ ବୋଇଲା ଯେବେ ରଖୁ ପାଞ୍ଚଭାଇ ॥୫୬୪୭॥
ମୁହିଂ ଅନେଶ୍ୱତ ଭାଇଙ୍କି ରଖିଲି[୨]
ପସାରେ ହାରିଲେ ସମସ୍ତ ସମର୍ପିବିଂ ॥୫୬୪୮॥
ଯେଣୁ ସେ ଯୁଧିଷ୍ଠିଙ୍କି ଦଇବ ବାମ ହୋଇ
ଭାଇକି ପିଢ଼ କରି ନଉଟି ପସା ଆରମ୍ଭଇ ॥୫୬୪୯॥
ଯୁଧିଷ୍ଠି ବୋଇଲେ ଯେବେ ଉଲଟା ଦାନକର
ମୋହର ହେଲା ବାମଞ୍ଝା ପଞ୍ଝୁଆତି ହେଲା ତୋର ॥୫୬୫୦॥
ହେଉ ହେଉ ବୋଲି ରାଜା ସନମତ କରଇ
ପସାକାଠି ଘେନନ୍ତେ ସଙ୍କୁନି ଜିତ ଜିତ ଡାକଇ ॥୫୬୫୧॥
ପକାନ୍ତେ ଦୁର୍ଯୋଧନ ପଡ଼ିଲା ପଞ୍ଝୁଆତି
ଯୁଧିଷ୍ଠି ଦେବ ଯେ ହାରିଲେ ଭାଇଙ୍କି ॥୫୬୫୨॥
ହସିଲେ କଉରୋବେ ହୋଇଲେ ଆନନ୍ଦ
ଭିସ୍ମ ଦ୍ରୋଣ ଦେଖି ହୋଇଲେ ବିସାଦ ॥୫୬୫୩॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ଶ୍ରୀହରି ସଙ୍ଗେ ପଛୋଟି ଯାଇଥିଲେ ପାଣ୍ଡବ ॥୫୬୫୪॥
ଲେଉଟି ଆସିଣ ଯୁଧିଷ୍ଠିଙ୍କି ନ ଦେଖିଲେ
ଠାକୁରେ କାହିଂଗଲେ ବୋଲି ମାତାକୁ ପଚାରିଲେ ॥୫୬୫୫॥

---

୧ । ଘ ପୋଥି – ଚାରି ପାଣ୍ଡବେ ସଙ୍ଗତରେ ଗଲେ
୨ । ଘ ପୋଥି – ଭୁବନକୁ
୩ । ଘ ପୋଥି – ଛଡ଼ ଦିନ
୪ । ଘ ପୋଥିରେ ତଳ ଚାରି ଧାଡ଼ି ନାହିଁ

---

୧ । ଘ ପୋଥି – ପକାନ୍ତେ
୨ । ଖ ପୋଥି – ହାରିଲୁ ରାଜ୍ୟ ଧନ ବଞ୍ଚିବୁ ଯେବେ କାହିଂ

କଇନ୍ତା ବୋଇଲେ ସେ ଯେହିଠାରେ ଥିଲେ
ଆଗେ କହୁଥିଲା ସେ ହସ୍ତିନାକୁ ଯିବୁ ଭଲେ[୧] ॥୫୬୫୬॥
ସୁଣି ଭିମ ଅର୍ଜୁନ ନକୁଳ ସହଦେବ
ବୋଇଲେ କପଟ କି ପାଞ୍ଚନ୍ତି କଉରୋବ ॥୫୬୫୭॥
ଯେତେ ବୋଲି ବିଚାରି ପାଣ୍ଡବେ ଧାଇଂଲେ
ହସ୍ତିନା ସଭାରେ ପ୍ରବେସ ହୋଇଲେ ॥୫୬୫୮॥
ଦେଖିଲେ ଯୁଧିଷ୍ଟି ବସିଛନ୍ତି ସଭାତଳ
ସୁଖିଅଛି ବଦନ ଯେସନେ ଟସ୍କର ॥୫୬୫୯॥
ଦେଖିଣ ବିକୋଦର ହୋଇଲା କୋପଭର
କାଳାନଳମୁର୍ତି[୨] ଯେସନେ ନୃସିଂହ ଅବତାର ॥୫୬୬୦॥
ବିଶ୍ୱମୁର୍ତି ଧରିଣ ପବନ ନନ୍ଦନ[୩]
ସଭାକୁ ଆକ୍ରୋସିଲା ଯେସନେ ଦୁତିଯମ ॥୫୬୬୧॥
ରହ ରହ ବୋଲିଣ କୌରବେ ଡାକିଲେ
ଆମ୍ଭର ସେବକ ହୋଇଲ ବସ ସଭାତଳେ ॥୫୬୬୨॥
ଯୁଧିଷ୍ଟି ବୋଇଲେ ଦଇବ ବାମ ହୋଇଲା ଆମ୍ଭଙ୍କୁ
ପସାରେ ହାରିଲି ରାଜ ସିଂହାସନ ଆବର ତୁମ୍ଭଙ୍କୁ ॥୫୬୬୩॥
ସୁଣି ଚାରିଭାଇ ସଭା ତଳେ ବସିଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ[୪] ॥୫୬୬୪॥
ଦୁର୍ଯୋଧନ ବୋଇଲା ଯୁଧିଷ୍ଟି ମୁଖଚାହିଂ
ଯେବେ ଦୃପଦି କି ପିଢ଼ କର ତୁହି ॥୫୬୬୫॥
ଭାନୁବତି[୫] ରାଣି ମୋହର ରହିଲା ପରିଜା
ଯେହୁ ହାରିବ ସେ ତେଜିବ ଭାରିଯା ॥୫୬୬୬॥
ଯୁଧିଷ୍ଟି ବିଚାରଲେ ଯଜ୍ଞରୁ ଜନ୍ମିଛି ଜିଗ୍ନସେନି
ତାହାଙ୍କର ଧର୍ମେ ଅବା ମୁହିଂ ଖେଳରେ ଅବା ଜିଣି ॥୫୬୬୭॥
ଯେତେ ବିଚାରି ଯୁଧିଷ୍ଟି ବସିଲେ ନିଠିଆଇ
ଦୁର୍ଯୋଧନ ହସ୍ତକୁ ସଙ୍କୁନି ପସାକାଠି ଦେଇ ॥୫୬୬୮॥
ଜିତ ଜିତ ବୋଲିଣ ଡାକିଲା ସଙ୍କୁନି
ପଡ଼ିଲା ପଞ୍ଝୁଆତି ଜିଣିଲା କୁରୁମଣି ॥୫୬୬୯॥
ଯୁଧିଷ୍ଟି ପାଡ଼ନ୍ତେ[୬] ପଡ଼ିଲା ପଞ୍ଝୁଆତି
ହାରିଲେ ଧର୍ମରାୟେ ଦୃପଦ ଦୋହିତି ॥୫୬୭୦॥

୧ । ଘ ପୋଥିରେ ତଳେ ଦୁଇଧାଡ଼ି ଅଧିକ ଅଛି –
ଶୁଣ ଗୋ ଉମା ବୋଲି ବୋଲନ୍ତି ସଦାସିବ
ଶ୍ରୀହରି ସଙ୍ଗେ ଯାଇଥିଲେ ଚାରି ଯେ ପାଣ୍ଡେବ
୨ । ଖ ପୋଥି – କାଳାମୂର୍ତ୍ତି
୩ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୪ । ଘ ପୋଥିରେ ଏହି ଧାଡ଼ିଟି ନାହିଁ
୫ । ଖ ପୋଥି – ଭାନୁମତୀ
୬ । ଘ ପୋଥି – ପକାବନ୍ତେ

ଦୁସାସନ ମୁଖ ଚାହିଂ ବୋଇଲା ଦଣ୍ଡଧାରି
ଯୁଧିଷ୍ଟିଙ୍କି ଯେବେ ସଭାରୁ ଦିଅ କାଢ଼ି ॥୫୬୭୧॥
ଧଇଲା ଦୁସାସନ ଯୁଧିଷ୍ଟିଙ୍କ ଗଳା
ସଭାତଳେ ନେଇ କଚାଡ଼ି ପକାଇଲା ॥୫୬୭୨॥
ନିରେଖ ପ୍ରାୟେ ହୋଇ ସଭାତଳେ ବସିଲେ ଯୁଧିଷ୍ଟି
ନ କହନ୍ତି ଭାସା ସମସ୍ତଙ୍କୁ ଚାହାନ୍ତି ମିଟି ମିଟି ॥୫୬୭୩॥
ଯୁଧିଷ୍ଟିଙ୍କି ଯହୁଂ ଦୁସାସନ ଜିଙ୍ଘାସିଲା
ଭିସ୍ମେ ବୋଇଲେ ରେ ରହ ରହ ବାବା ଭଲା ॥୫୬୭୪॥
ରାଜୁସି ଯାଗକାଳେ ଯାହାର ମହିମା ଧନି
ଯାହାକୁ ଦ୍ରସନ କଲେ ଲକ୍ଷେ ନୃପମଣି ॥୫୬୭୫॥
ତିନିପୁର ଲୋକେ ଯାହାକୁ ପ୍ରସଂସି
ତାହାକୁ ଦୁସାସନ କିମ୍ପାଇରେ ଜିଙ୍ଘାସି ॥୫୬୭୬॥
ଯେହିକ୍ଷଣି ଯଦି ଉଠିବ ବିକୋଦର
ଗଦାରେ ପିଟିବ ଯେତେ ବସିଛ ସଭାର ॥୫୬୭୭॥

## ଦ୍ରୌପଦୀଙ୍କ ବସ୍ତ୍ର ହରଣ ଓ କୁଣ୍ଡଳି ଋଷି ଉପାଖ୍ୟାନ

ମାନଗୋବିନ୍ଦ ବୋଇଲା ଯାଅରେ ଦୁସାସନ
ଆମ୍ଭର ଭୃତ୍ୟ ହୋଇଲେ ପାଣ୍ଡେବ ପାଞ୍ଚଜଣ ॥୫୬୭୮॥
ଦ୍ରୌପଦିକି ଆଣ ଦେଖିବି ତାର ରୁପ
ଆଜ୍ଞାପାଇଣ ସେହୁ ଦୁସାସନ କଲା ଧାପ ॥୫୬୭୯॥
ବାରୁଣାବନ୍ତରେ ଯାଇ ପ୍ରବେସ ହୋଇଲା
ଦ୍ୱାରି ଉଗାଳନ୍ତେ କବାଟ ଭାଜିଂ ପକାଇଲା[୧] ॥୫୬୮୦॥
ଅନ୍ତସ୍ୱରେ ପସନ୍ତେ କୋଇନ୍ତା ଉଗାଳି
ତୁମ୍ଭର ଭୁବନକୁ ପୁତ୍ରେ ଅଛନ୍ତି ଚଳି[୨] ॥୫୬୮୧॥
ଯୁଧିଷ୍ଟି ସହିତେ ଯେ ପଞ୍ଚ କୁମର[୩]
କିମ୍ପେ ଆସିଅଛୁ କହ ମୋହ ଆଗର ॥୫୬୮୨॥
ନମାନି ଦୁସାସନ ପସନ୍ତେ ଭିତର[୪]
ଯେତେ ବୋଲି କୋଇନ୍ତା ମାଡ଼ି ବସିଲେ ଦୁଆର ॥୫୬୮୩॥
ଦୁସାସନ ବୋଇଲା ରାଡ଼ୁଣି ମନ୍ଦ ତୁହି
ଦ୍ରୋପଦିକି ନେବି ଆମ୍ଭର ପାଣ୍ଡବ ଭୃତ୍ୟ ହୋଇ ॥୫୬୮୪॥
ଯେତେ ବୋଲି ମୁଖ କରଇ ତମ ତମ
କୋଇନ୍ତା ବୋଇଲେରେ ବିନୟ ମୋର ଘେନ ॥୫୬୮୫॥

୧ । ଘ ପୋଥିରେ ଏହି ଧାଡ଼ି ନାହିଁ
୨ । ଘ ପୋଥି – ତୁମ୍ଭର ଭୁବନକୁ ପୋଏ ଯାଇଛନ୍ତି ଚଳି
୩ । ଖ ପୋଥିରେ ଏହି ଧାଡ଼ି ନାହିଁ
୪ । ଖ ଓ ଘ ପୋଥିରେ ଏହି ଧାଡ଼ି ନାହିଁ

ସୁଣିଣ ଦୁସାସନ କୋଇନ୍ତା ଭୁଜଧରି
ଫିଙ୍ଗି ଦେଲା ଖଣ୍ଡେ ଦୁରେ ପଡ଼ିଲେ ଭୁଜର ଦୁଲାଳି ॥୫୬୮୬॥
ଗୋଳସୁଣି ଦ୍ରୌପଦି ପସିଲେ ଗମ୍ଭିରି ଭିତରେ
କାହିଂଗଲୁ ବୋଲି ଦୁସାସନ ଅଣ୍ଡାଳେ ହସ୍ତରେ ॥୫୬୮୭॥
ଜିଘ୍ନସେନି କେସ ପଡ଼ିଲା ଦୁସାସନ ହସ୍ତେ
ଝିଙ୍କି ଘେନିଗଲା ଗାନ୍ଧାରିର ପୁତ୍ରେ ॥୫୬୮୮॥
ଛାଡ଼ ଛାଡ଼ ବୋଲି ଡାକେ ପାଣ୍ଡେବ ଘରଣି
ପାକାସ୍ୱତି ହୋଇଛି ନଛୁଅଂ ବିରମଣି ॥୫୬୮୯॥
ନ ସୁଣେ ଦୁସାସନ ଘେନି ଯାୟେ ପଥେ
ପାଞ୍ଚାଳି ଡାକ ଦିଲେ ରଖ ହୋ ଆଦିତ୍ୟେ ॥୫୬୯୦॥
ନିର୍ଦ୍ଦୋସି ଜନ ମୁହିଂ କାହାର ନୋହେ ଦୋସି
ବଳେ ଦୁସାସନ ନେଉଅଛି ଆକ୍ରୋସି ॥୫୬୯୧॥
ୟେମନ୍ତ କହୁଂ କହୁଂ ଦୁସାସନ ଧାଇଂ
ଦ୍ରୋପଦିଙ୍କର ପାଦ ଯେ ନ ପଡ଼ଇ ମହି ॥୫୬୯୨॥
ପହରକ ପଥ ଯେ ଦଣ୍ଡକେ ଚଳିଗଲା
ହସ୍ତିନା ସଭାରେ ଯାଇ ପ୍ରବେସ ହୋଇଲା ॥୫୬୯୩॥
ଦେଖିଣ ପାଣ୍ଡବେ ତଳକୁ ମଥା ପୋତି
ଭିସ୍ମ ଦ୍ରୋଣ କର୍ଣ୍ଣ ସଲ୍ୟ ସଙ୍କୁନି ଅଛନ୍ତି[୧] ॥୫୬୯୪॥
ମାନଗୋବିନ୍ଦ ବୋଇଲା ସୁଣରେ ଦୁସାସନ
ବିବସ୍ତ୍ର କର ୟେହାର ଦେଖିବା ଜାନୁ ଯଉବନ ॥୫୬୯୫॥
ସୁଣି ଦୁସାସନ ରାଜା ଆଜ୍ଞା ପାଇ
କାଢ଼ନ୍ତି ବସନ ଦ୍ରୋପଦି ଛନ୍ତି ଉଭା ହୋଇ ॥୫୬୯୬॥
ଦେଖି ବିକୋଦର ହୋଇଲା କମ୍ପମାନ
ଯୁଧିଷ୍ଟି ବୋଇଲେରେ ରହ ରହ ଭିମସେନ ॥୫୬୯୭॥
ଆମ୍ଭର ଅପ୍ରାଜୟ କାଳ ହୋଇ ଅଛଇ[୨]
ତୁହି କୋପ କଲେ ମନ୍ଦ ବୋଲିବେ ଜଗତଇ[୩] ॥୫୬୯୮॥
ବଦୟନ୍ତି ସଦାସିବ ସୁଣଗୋ ସସିମୁଖି
ଦ୍ରୋପଦି କସଣ ଭିସ୍ମ ଦ୍ରୋଣେ ଦେଖି ॥୫୬୯୯॥
ବୋଇଲେ ରାଜା ଅନ୍ୟାୟେ ନ କର
ଜିଘ୍ନସେନିକି ଜିଘାଂସ ନ କର ସଭାର ॥୫୭୦୦॥

---

୧ । ଘ ପୋଥି – ଡାକିଲେ ଗୋବିନ୍ଦ ତୁହି ହୋଅ ସାକ୍ଷି
୧ । ଘ ପୋଥିରେ ଏହାପରେ ଦୁଇ ଧାଡ଼ି ଅଧିକ ଅଛି
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଶଙ୍କୁନି ଭୁରିସର୍ବା
ସଭାରେ ବସିଛନ୍ତି ଯେତେକ ରଥି ଯୋଦ୍ଧା
୨ । ଘ ପୋଥି – ଭୀଷ୍ମ ଦ୍ରୋଣ ବୋଇଲେ ଶୁଣରେ ଦ୍ରିଯୋଧନ
୩ । ଘ ପୋଥି – ଜିଘାସ ନକର ସଭାରେ ଦ୍ରୁପଦ ଦୁଲଣ
୩ । ଘ ପୋଥିରେ ଏହା ପରେ ଚାରି ଧାଡ଼ି ନାହିଁ

ଅଗ୍ନିରୁ ଉତପତି ପ୍ରତକ୍ଷେ ଦୁର୍ଗାୟେଣି
ଦେବିଙ୍କି ଜିଘାସିଲେ ସମ୍ପଦ ତୁଟଇ ପୁଣି ॥୫୭୦୧॥
ମାନଗୋବିନ୍ଦ ବୋଇଲା ୟେ ଅଟଇ ଅସତି
କେଉଂଠାରେ ଦେଖିଛ ୟେକ ସ୍ତିରିକି ପାଞ୍ଚପତି ॥୫୭୦୨॥
ଯେଉଂଦିନେ ଦ୍ରୋପଦ କଲାକ ସ୍ୱୟମ୍ବର
ତୁମ୍ଭମାନଙ୍କୁ ଘେନି ମୁହିଂ ବସିଥିଲି ସଭାର ॥୫୭୦୩॥
ମୋତେ ଛାଡ଼ି ୟେ ମୁଢ଼ି ପାଣ୍ଡେବଙ୍କୁ ବରିଲା
ସେହିଦିନୁ ମୋହାର ଅହନ୍ତା ବହିଲା ॥୫୭୦୪॥
ୟେତେ କାଳେ ଦଇବ ସମର୍ପିଲା ମୋତେ
ଜାନୁ ଯଉବନ ଯୋନି ଦେଖିବିଂ ବେନି ନେତ୍ରେ ॥୫୭୦୫॥
ୟେ କଥାରେ ତୁମ୍ଭେମାନେ କିଛି ହିଂ ନ କୁହ
ଲଜା ପାଇଲ ଯଦି ସଭାରୁ ଉଠିଯାଅ ॥୫୭୦୬॥
ସୁଣିଣ ଭିସ୍ମ ଦ୍ରୋଣ ସଭାରୁ ଉଠିଗଲେ
ସଙ୍କର ମୁଖ ଚାହିଂ ପାର୍ବତି ପୁଚ୍ଛା କଲେ ॥୫୭୦୭॥
ଭିସ୍ମ ଦ୍ରୋଣେ ଦୁଇ ଜଣେ ଅଟନ୍ତି ମହାରଥି
କୁରୁସଭା ଯାକ ପକାଇଲେ ସେହୁ ମନ୍ତିଂ[୧] ॥୫୭୦୮॥
ଭିମ ବୋଲି ଯେହୁ ଯୁଧିଷ୍ଟିର ଭାଇ
ତାହାର କୋପକୁ ଇନ୍ଦ୍ର ସ୍ୱର୍ଗରେ ନ ରହି[୨] ॥୫୭୦୯॥
ତାହାର ଦେହ ୟେଡ଼େ ନିଷ୍ଠୁର ହୋଇଲା
ୟେଡ଼େ ଦାରୁଣ ଦୁଖରେ ସେ କୋପ ନ ବହିଲା ॥୫୭୧୦॥
ଇଶ୍ୱରେ ବୋଇଲେ ସୁଣଗୋ ଦେବି ଓମା
ଦୁର୍ଯୋଧନ ସମ୍ପଦ ସାରିବାକୁ କରିଛନ୍ତି ଗାରିମା ॥୫୭୧୧॥
ଧୃତିରାଷ୍ଟ୍ରଙ୍କର ଅନେଶ୍ୱତ ନନ୍ଦନ
ଦ୍ରୋପଦିଙ୍କି ଦ୍ରୋହକଲେ ହୋଇବେ ନିଧନ ॥୫୭୧୨॥
ସଙ୍କଟନ ରାଜାର ସତେକ ନନ୍ଦନ
ପୃଥିକି ଭାରା ହୋଇଲେ ୟେହୁ ପୁଣ ॥୫୭୧୩॥
ବସୁମତି ଗୁହାରି କରିଛି ପ୍ରଭୁଙ୍କଠାର
ୟେହାଙ୍କ ଭାରାରେ ନାସଗଲାକ ସଂସାର ॥୫୭୧୪॥
ଶ୍ରୀକୃଷ୍ଣ ମାୟାରେ ୟେମାନେ କିଛି ନ ବୋଇଲେ
ଦ୍ରୋପଦିଙ୍କ ଦୃଷ୍ଟିରେ ୟେମାନଙ୍କୁ ମରାଇବେ ॥୫୭୧୫॥
ସଙ୍କର ମୁଖ ଚାହିଂ ପାର୍ବତି ପୁଚ୍ଛାକଲେ
ଭିସ୍ମ ଦ୍ରୋଣ ରଥି ସଭାରୁ ଉଠିଗଲେ[୩] ॥୫୭୧୬॥
ଦ୍ରୋପଦିଙ୍କି ଦୁସାସନ କଲା ବିବସନ
ସ୍ତିରି କୁଳକୁ ୟେ ଅଟଇ ବଡଈ ଦୁସଣ ॥୫୭୧୭॥

---

୧ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୨ । ଘ ପୋଥି – ଡରଇ
୩ । ଖ ପୋଥିରେ ଭୀମ ବୋଲି ଯେହୁ ଠାରୁ
ସଭାରୁ ଉଠିଗଲେ ପର୍ଯ୍ୟନ୍ତ ନାହିଁ

ରୁପ ଦେଖିଲା କି ନ ଦେଖିଲା ଦୁର୍ଯୋଧନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ।।୫୭୧୮।।
ଯେତେବେଳେ ଦୁସାସନ ଅଙ୍ଗରୁ ବସ୍ତ୍ର ଫେଇ
ଡାକିଲେ ପାଞ୍ଚାଳି ରଖ ହେ ଛାୟାସାଇଂ ।।୫୭୧୯।।
ବାରମାସେ ବାର ଆଦିତ୍ୟ କିରଣ ଜୋତିପ୍ରଭା
ତୁମ୍ଭେ ରଖ ଅଙ୍ଗ ନ ଦେଖନ୍ତୁ କଉରୋବା ।।୫୭୨୦।।
ଯେମନ୍ତେ ସୁର୍ଯଙ୍କୁ ଯହୁଂ ଡାକିଲେ ଜିଷ୍ଣସେନି
ଛପନ କୋଟି  ବସ୍ତ୍ର ଦିଲେକ ଦିନମଣି ।।୫୭୨୧।।
ଛାୟା ମାୟା ବେନି ସ୍ତିରି ରହିଲେ ସୁନ୍ୟର
ଦ୍ରୋପଦି ଅଙ୍ଗୁ ବସ୍ତ୍ର କାଢ଼ନ୍ତି ବେନିବିର ।।୫୭୨୨।।
ଯେତେକ କାଢ଼ନ୍ତି ତେତେକ ଜଡ଼ିହୋଇ
ପାଞ୍ଚାଳିର ଅଙ୍ଗ ଯେ ନ ଦେଖିଲେ କେହି ।।୫୭୨୩।।
ତେତେବେଳେ ପାଣ୍ଡବେ ଚାରିଭାଇ ଦେଖି କଲେ ତମ
ବିଶ୍ୱମୁର୍ତି ଧରିଣ ଉଠିଲା ପବନନନ୍ଦନ ।।୫୭୨୪।।
କାଳେବର ଗଦା ଭିମ ବୋଲାଇ ଅନ୍ତରାଳେଂ
ଅର୍ଜୁନ ଦେହ ସେ କମ୍ପଇ କଦଳି ପତ୍ର ପ୍ରାଏ ।।୫୭୨୫।।
ନକୁଳ ସହଦେବ ମହାକୋପ ବହିଂ
କିଞ୍ଚିତେ ଆଜ୍ଞା ଯେ ଦିଅନ୍ତେ ଦ୍ରୋପଦିର ସାଇଂ ।।୫୭୨୬।।
ସେହିକ୍ଷଣି ନାରାଜେ ନାସନ୍ତା ବାସେବନନ୍ଦନ
ଅଜାତସତୃ ସେ ଯେ ସୁର୍ଯଙ୍କର ନାନ ।।୫୭୨୭।।
ଯେଡ଼େକ କଷ୍ଟରେ କୋପ ନ ବହିଲେ ମନେଣ
ଯୁଧିଷ୍ଟି ବୋଇଲେ ଯେ ରହ ରହ ଭିମ ।।୫୭୨୮।।
ଆମର ଅପ୍ରାଜୟେ ଯେ କାଳ ହୋଇଛଇ
ତୁମ୍ଭେ କୋପ କଲେ ମନ୍ଦ ବୋଲିବେ ଜଗତଇଂ[୧] ।।୫୭୨୯।।
ପାର୍ବତି ପୁଛାକଲେ ସୁଣ ହେ ବିଶ୍ୱନାଥ
ଅସମ୍ଭବ କଥା ତ କହିଲ ବିପରିତ ।।୫୭୩୦।।
ଛପନ କୋଟି ବସ୍ତ୍ର ଥିଲା କେଉଂଠାର
ଦ୍ରୋପଦି ମାଗନ୍ତେ ଯେ ଦିଲେ ଦିନକର ।।୫୭୩୧।।

୧ । ଖ ପୋଥିରେ ତେତେବେଳେ ପାଣ୍ଡବେ ଠାରୁ
ସର୍ବେ ବୋଲିବେ ଜଗତଇ ପର୍ଯ୍ୟନ୍ତ ନାହିଁ
୧ । ଘ ପୋଥିରେ ତଳେ ଚାରିଧାଡ଼ି ଅଧିକ ଅଛି –
ସଦାଶିବ ବୋଲନ୍ତି ଶୁଣ ଗୋ ଶଶୀମୁଖି
ଦ୍ରୋପଦୀଙ୍କ କଷଣ ଭୀଷ୍ମ ଦ୍ରୋଣ ଦେଖି
ବୋଇଲେ ରାଜା ହେ ଅନ୍ୟାୟ ନକର
ଯେହା ଯେ ଦେଖିଲେ ଦେହ ନସହେ ଆମ୍ଭର

ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର
ସତ୍ୟଯୁଗରେ ତପ କରନ୍ତି କୁଣ୍ଡଳି ମୁନିବର ।।୫୭୩୨।।
ଗଙ୍ଗାତଟେ ବସି ସେ ଯେ ତପ କରୁଥିଲେ
ପଞ୍ଚାଣ୍ଡବେ ସହସ୍ର ବରସ ପୋହାଇଲେ ।।୫୭୩୩।।
ବାଜିଣ ଲହରି ମାଟି ଖୋଳିଗଲା
କୁଣ୍ଡଳି ମୁନିଙ୍କର କର୍ପଟି ଖଣ୍ଡି ଜଳେ ଭାସିଗଲା ।।୫୭୩୪।।
ଉଲଗ୍ନ ହୋଇ ମୁନି ରହିଲେ ଜଳର
ଲଜାରେ ବ୍ରହ୍ମରସି ନ ଉଠେ କୁଳର[୧] ।।୫୭୩୫।।
ଯେକଦିନେ ଯେକବଳା ଜଳକୁ ଯାଇଥିଲେ
କୁଣ୍ଡଳି ମୁନି ବସ୍ତ୍ର ଖଣ୍ଡିୟେ ମାଗିଲେ ।।୫୭୩୬।।
ଯେକବଳା ବୋଇଲେ ଦୋସଢ଼ା[୨] ବସ୍ତ୍ର ନାହିଂ
ଗୃହରୁ ବସ୍ତ୍ର ଖଣ୍ଡିୟେ ଆଣି ମୁଂ ଦେବଇଂ ।।୫୭୩୭।।
କୁଣ୍ଡଳି ବୋଇଲେ ଗୃହକୁ ଯେବେ ଯିବୁ
ଲେଉଟି ଅଇଲେ ତୁ ମୋତେ ନ ଦେଖିବୁ ।।୫୭୩୮।।
ଦେଖ ଗଙ୍ଗାଜଳ ଆସୁଅଛି ଟେକି
ମଛ କଛପ ମଗର ମୋତେ ଯିବେ ଭକ୍ଷି ।।୫୭୩୯।।
କୁଳକୁ ଗଲେ ତ ମରଣୁ ଲଜା ବଳି
ଯେମନ୍ତ ବୋଲି ଯହୁଂ ବୋଇଲେ କୁଣ୍ଡଳି ।।୫୭୪୦।।
ସୁଣିଣ ଯେକବଳା[୩] ପଣତ ଖଣ୍ଡେ ଛିନି
ଦିଲେ କର୍ପଟି କରି ତାହା ପିନ୍ଧିଲେ ବ୍ରହ୍ମମୁନି ।।୫୭୪୧।।
ପ୍ରବେସ ହୋଇଲେ ଦୁର୍ଗାଙ୍କ ଛାମୁର
ବୋଇଲେ ଦେବିତୁ ମୋ ଲଜା କଲୁ ଦୁର ।।୫୭୪୨।।
ପଞ୍ଚଦସ ଅଙ୍ଗୁଳି ବସ୍ତ୍ର ମୋତେ ଦିଲୁ
ତେଣୁ ପଞ୍ଚାଉନ କୋଟି ବସ୍ତ୍ର ତୁ ପାଇବୁ ।।୫୭୪୩।।
ଦ୍ୱାପର ଯୁଗେ ଦ୍ରୋପଦ ଘରେ ହେବୁ ଜାତ
ପଞ୍ଚୁ ପାଣ୍ଡବେ ସେ ହୋଇବେ ତୋର କାନ୍ତ ।।୫୭୪୪।।
ପସାଖେଳେ ତୋତେ ହାରିବେ ଯୁଧିଷ୍ଟି
ବାଳଧରିଣ ତୋତେ ନେବେ ଧୃତିରାଷ୍ଟ୍ରି ।।୫୭୪୫।।
ପାଞ୍ଚ ଅଙ୍ଗୁଳ ବସ୍ତ୍ର ଆମ୍ଭଙ୍କୁ ଅଛ ଦେଇ
ପଞ୍ଚାଉନ କୋଟି ବସ୍ତ୍ର ମିଳିବ ତୋତେ ତହିଂ ।।୫୭୪୬।।
ଯେମନ୍ତ ବୋଲି ମୁନି ବର ଦେଇଗଲେ
ସୁଣଗୋ ଓମା ବୋଲି ବୋଲନ୍ତି ଗଙ୍ଗାଧରେ ।।୫୭୪୭।।
ପଞ୍ଚାଉନ କୋଟି ଦୁର୍ଗା ରଖିଥିଲେ ବସ୍ତ୍ର
ସନିଶ୍ଚର ଅଟଇ ଯେ ସୁର୍ଯର ଆତ୍ମଜ ।।୫୭୪୮।।

୧ । ଘ ପୋଥିରେ ଏହି ଧାଡ଼ି ନାହିଁ
୨ । ଘ ପୋଥି – ଦୋସରା
୩ । ଘ ପୋଥି – ପାର୍ବତୀ

ବୁଧଶ୍ରବା ଦୁହିତା ନାମ ତା ଅଶ୍ୱିନି
ପୁତ୍ର ପାଇଂ ସେ ତାହାକୁ ବରିଲେ ଦିନମଣି ॥୫୭୪୯॥
ବୁଧଶ୍ରବା ବୋଇଲେ ଯେବେ ଦେବଇଂ କୁମାରି
ସନିଶ୍ଚର ଦୃଷ୍ଟି ପଡ଼ି ଦୁହିତା ଯିବ ଜଳି ॥୫୭୫୦॥
ପାଟୋଳି ବସ୍ତ୍ର ଦେବ ପଞ୍ଚାଉନ କୋଟି
ବିଭା ହୋଇବ ଯେ ଅଶ୍ୱିନି ଦେହେ ତାଙ୍କି ॥୫୭୫୧॥
ଆଦିତ୍ୟ ଦୁର୍ଗାଠାରୁ ବସ୍ତ୍ର ମାଗି ନେଲେ
କୋଟିଯେ କଳନ୍ତର ଦେବୁ ଯେକବଳା କହିଲେ ॥୫୭୫୨॥
ପୁତ୍ରକୁ ବିଭା କରି ଆଦିତ୍ୟ ରଖିଥିଲେ
କୌରୋବ ସଭାତଳେ ଦ୍ରୋପଦି କି ଦିଲେ ॥୫୭୫୩॥
ପାଞ୍ଚ ଆଙ୍ଗୁଳି ବସ୍ତ୍ର ଦେଇଥିଲେ ଦେବି
ତେଣୁ ପଞ୍ଚାଉନ କୋଟି ବସ୍ତ୍ର ପାଇଲେକ ମାଗି ॥୫୭୫୪॥
ଆହେ ସାଧୁଜନମାନେ ଦିଅ ବସ୍ତ୍ର ଦାନ
ଗୁଣେ ଦେଲେ କୋଟିଯେ ଗୁଣେ ପାଇବ ବସନ ॥୫୭୫୫॥
ବସ୍ତ୍ର ସେ ଅଙ୍ଗକୁ ସେ ଅଟଇ ଆଭରଣ
ବସ୍ତ୍ର ଦିଲା ଲୋକ ଅଟନ୍ତି ବଡ଼ଜଣ ॥୫୭୫୬॥
ଅର୍ଣ୍ଣ ତେଜିଲା ଲୋକେ ଅଛନ୍ତି କୋଟି କୋଟି
ବସନ ତେଜିଲା ହାଦେ ନାହିଂ ଯେକ ଗୋଟି ॥୫୭୫୭॥
ବସ୍ତ୍ର ଦେହକୁ ଅଟଇ ଭୁସଣ
ଜିବକୁ କାରଣ ଅଟଇ ହରିନାମ ॥୫୭୫୮॥
ହରିନାମଠାରୁ ନାହିଂ ଆଉ ଗତି ମୁକ୍ତି
ହରି ଭଜିଲା ଲୋକେ ଅମର ହୋଇଛନ୍ତି ॥୫୭୫୯॥
ହରି ସେ ପରମ କୈବଲ୍ୟ ଗତି ଦେଇ
ହରି ସେ ଧାରଣ ଜଗତ୍ରେ ଅଟଇ ॥୫୭୬୦॥
ହରି ଭଜିଲା ଲୋକେ ତରଇ ଇହପର
ହରି ନାମ ନଉକା ଅଟଇ କଣ୍ଡେୟାରଂ[୧] ॥୫୭୬୧॥
ମୁହି ମୁର୍ଖ ମାନବ ଅଟଇ ପାମର
ଯେ ଭବ ସଂସାରୁ ଶ୍ରୀହରି ପାରିକର ॥୫୭୬୨॥
ଯେ ଭବ ସଂସାର ଜଳଧି ଅଟଇ
ଯେଥୁଂ ପାରି ହେବାକୁ ଭରସା କାହାର ଅଛଇ ॥୫୭୬୩॥
ଯେବେ ଶ୍ରୀହରିର ଦୟା ମୋତେ ଥିବ
ଦୁର୍ଗତିରୁ ତାରିଣ ରଖିବେ ଭଲ ଠାବ ॥୫୭୬୪॥
ହରି ସେ ମୋହର ସଖା ବନ୍ଧୁ ଇଷ୍ଟ
ହରି ପାଦେ ସରଣ ସାରୋଳା ଚଣ୍ଡି ଦାସ ॥୫୭୬୫॥

---

୧ । ଖ ପୋଥି – ସପତ ସାଗର

## ଦ୍ରୌପଦୀଙ୍କ କୋପରେ ଦୁର୍ଯ୍ୟୋଧନର ଅନ୍ତପୁର ପୋଡ଼ି

ବଦୟନ୍ତି ସାରୋଳାଂ[୧] ସୁଣ ହେ ସଦାସିବ
ଦ୍ରୌପଦି ବିବସନ କଥା ମୋତେ ସେ କହିବ ॥୫୭୬୬॥
ସୁଣଗୋ ଓମା ବୋଲି ବୋଲନ୍ତି ଦେବସୁଳି
ଦ୍ରୋପଦି କୋପରୁ କୌରୋବ ନବରଂ[୨] ଗଲା ଜଳି ॥୫୭୬୭॥
ପୁଡ଼ି ମରୁ ମରୁ ପଳାଇଲା ଭାନୁବତି ନାରି
ଦୁର୍ଯୋଧନ ଆଗେ ମିଳିଲା ଉଲଗ୍ନ ହୋଇ କରି ॥୫୭୬୮॥
ସମସ୍ତେ ସଭାରେ ଦେଖୁଛନ୍ତି ରହି
ଦେଖି ମାନଗୋବିନ୍ଦ ଆଶ୍ଚାର୍ଯ୍ୟ ହୋଅଇ ॥୫୭୬୯॥
କରତାଳି ମାରିଣ ହସିଲା ଭିମସେନ
ଲଜାରେ କଉରୋବେ ସେ ପୋତିଲେ ବଦନ ॥୫୭୭୦॥
ଆରେ ଦୁସାସନ ବୋଲି ଡାକଇ ମାରୁତି
ଦ୍ରୋପଦି କି ଛାଡ଼ି ସମ୍ଭାଳ ତୋ ଭାନୁମତି ॥୫୭୭୧॥
ଧିକରେ କଉରୋବେ ଜିବନ ତୁମ୍ଭର ଧିକ
ଭାରିଯା ଉଲଗ୍ନ କରି ସଭାରେ ବସି ଦେଖ ॥୫୭୭୨॥
ଅଗ୍ନିରୁ ଉତପତି ଯେବଣ ମହାମାଇ
ତୁ ତାହାକୁ ଜିଙ୍ଘାସିଲୁ ନିଲଜ ପଣ ହୋଇ ॥୫୭୭୩॥
ପର୍ବତ ସମାନେ ଯେଥେ ପଡ଼ିଅଛି ବସ୍ତ୍ର
ଖଣ୍ଡିଯେ ଯେଥୁ ନେଇ ଭାନୁବତି ଅଙ୍ଗେ ଢାଙ୍କ ॥୫୭୭୪॥
ପରକୁ ପରମାଦ ଚିନ୍ତଇ ଯେଉଂ ପ୍ରାଣି
ଆପଣାକୁ ପିଡ଼ା ସେ ମୁଢ଼ ନ ଜାଣି ॥୫୭୭୫॥
ପର ସେ ପରମ ପଣ୍ଡିତ ଅଟଇ
ପର ପିଡ଼ା ଲୋକେ ନର୍କରେ ପଡ଼ଇ ॥୫୭୭୬॥
ପରମ ବ୍ରହ୍ମ ପୁରୁଷ ଅଟଇ ଆଦିମୁଳ
ପରମ ଦେବତା[୩] ସଜିଂବନି ନିରାକାର ॥୫୭୭୭॥
ସେ ପରମ ବ୍ରହ୍ମ ପୁରୁଷ ଚରଣେ ଦଇନି
ସରଣ ପସେ ସାରୋଳା ଦାସ ସୁଦ୍ରମୁନି ॥୫୭୭୮॥
ସୁଣଗୋ ଦୁର୍ଗା ବୋଲି ବୋଲନ୍ତି ଶଙ୍କର
ଭାରତ ହରିବଂସ ଯେ ଅମୃତ ରସସାର ॥୫୭୭୯॥
ସୁଣନ୍ତା ଗୁଣନ୍ତା କୋଟି ପୁରୁଷ ତାରଇ
ଇହ ପର ଲୋକରେ ମୁକତ ସେହୁ ଲଭଇ ॥୫୭୮୦॥

---

୧ । ଘ ପୋଥି – ଗିରିଜା
୨ । ଘ ପୋଥି – ଭୋବନ
୩ । ଘ ପୋଥି – ପରମ ପଞ୍ଚଦେବତା

ଯେତେବେଳେ ଧିକ୍କାର କଲା ଭିମସେନ
ଧୃତିରାଷ୍ଟ୍ର ପୋୟେ ସେ ପୋଡିଲେ ବଦନ[୧] ॥୫୭୮୧॥
ସଞ୍ଜୟକୁ ଧୃତିରାଷ୍ଟ୍ର ସଙ୍ଗତେ ଘେନିଗଲା
ଜିଘ୍ନସେନି ଠାରେ ଯାଇ ପ୍ରବେସ ହୋଇଲା ॥୫୭୮୨॥
ବୋଇଲେ ମହାମାଇ ଉପେକ୍ଷା ଦୋସ କର
ନଜାଣି କୋପ କଲେ ମୋହର କୁମର ॥୫୭୮୩॥
ତେଣୁ ଯେ ଦଣ୍ଡ ପାଇଲେନି ଯେବେ
ପୁର ଦହନ ହୋଇଲାନି ତୋହ କୋପେ ଯେବେ ॥୫୭୮୪॥
ତୋହର କୋପକୁ ମାୟେ ତୁହି ସେ ସଂହର
ମୁହିଂ କିସ ବର୍ଣ୍ଣିବି ମହିମାଂ ତୋହର ॥୫୭୮୫॥
ଯତି ସତି ଗୁରୁ ବ୍ରାହ୍ମଣ ଦେବତାନ୍ତ
ଯେହାଙ୍କୁ ଜିଘାସିଲେ ଆପଣା ଶିରି ହୁଏ ହତ ॥୫୭୮୬॥
ଧୃତିରାଷ୍ଟ୍ର ବଚନେ ବଦୟନ୍ତି ପାଞ୍ଚାଳି
ଥନଥନ ବଦନ ହୋଇଲେ ନିଉଛାଳି ॥୫୭୮୭॥
ବୋଇଲେ ତାତ ହୋ ବିନୟ ମୋର ଘେନ
ମୁଂ ତୁମ୍ଭର କୁଳବଧୂ ନୁହଇ ପର ଆନ ॥୫୭୮୮॥
ତୁମ୍ଭର ପୁତ୍ର ଅତି ଅନ୍ୟାୟେ ବିଚାରିଲେ
କପଟ ପସାରେ ମୋ ସ୍ୱାମିକି ହରାଇଲେ ॥୫୭୮୯॥
ଗୁରୁ ଗଉରୋବ ଜନେ ଅଛନ୍ତି ସଭାର
ବିବସନ କରିତେ ଲୋଡ଼ନ୍ତି ପାମର ॥୫୭୯୦॥
ମୋତେ ଧର୍ମ ସାହା ନୋହିଲେ ହୁଅନ୍ତି ବିବସନ
ତୁମ୍ଭ ଭାନୁମତି ମୋପାଇଂ ହୋଇଲା ଉଲଗ୍ନ ॥୫୭୯୧॥
ମୋତେ ଯେ ବୋଇଲ ସ୍ୟାନ୍ତି କର ତମ
ରାଜ୍ୟ ଭଣ୍ଡାର ସ୍ୱାମି ସହିତେ ଯେତେ ଧନ ॥୫୭୯୨॥
ଯେମାନଙ୍କୁ ଦିଲେ ମୁହିଂ ଘେନିଣ ଯିବି
ଯେକାକି ଯାଇଣ କିସ ଘେନିଣ ରହିବିଂ ॥୫୭୯୩॥
ବଦୟନ୍ତି ଧୃତିରାଷ୍ଟ୍ର ସମସ୍ତ ତୋର ନିଅ
ସିତଳ ନୟନେ ଅନାଇଂ ଅନଳ ନିବାଅ ॥୫୭୯୪॥
ସୁଣିଣ ଦ୍ରୋପଦି ସ୍ୟାନ୍ତି କଲେ ମନ
ଲିବିଲା ଅନଳ ଯେ ହରସ ସର୍ବଜନ ॥୫୭୯୫॥
ଯୁଧିଷ୍ଟିଙ୍କି ଧୃତିରାଷ୍ଟ୍ର କହିଲା ବୁଝାଇ
ମୁକୁଟ ଅଳଙ୍କାର ଦୁସାଠାରୁ ନିଲା ଛଡ଼ାଇ ॥୫୭୯୬॥
ଯୁଧିଷ୍ଟିକି ମଣ୍ଡିଲା ଅମ୍ବିକା କୁମର
ଗମିଲେ ପାଣ୍ଡବେ କରିଣ ନମସ୍କାର ॥୫୭୯୭॥
ଭାନୁମତି ସହିତେ ଗାନ୍ଧାରି ଆଦିକରି
ଗୌରବ କରି ଦ୍ରୋପଦି କି ନିଲେ ନିଜ ପୁରି ॥୫୭୯୮॥

୧ । ଘ ପୋଥି – ତାହା ଶୁଣି ଧୃତିରାଷ୍ଟ୍ର ନ ସ୍ଫୁରେ ବଚନ

ବହୁତ ସ୍ନେହପାଇ ଦେବି ରହିଲେ ତହିଂ ଦିନେ
ଆରଦିନେ ହାନ୍ଦୋଳାରେ ବସି ଗମିଲେ ଭୁବନେଂ ॥୫୭୯୯॥
ପାଣ୍ଡବେ ସେହି ରୁପେ ଆପଣା ରାଜ୍ୟେ ରହି
ସୁଣ ଗୋ ପ୍ରିୟା ବୋଲି ସଦାସିବ କହି ॥୫୮୦୦॥

## ନାଗାର୍ଜୁନର ଜନ୍ମ ଓ ଶିବଙ୍କଠାରୁ ବରପ୍ରାପ୍ତି

ସଙ୍କର ମୁଖ ଚାହିଂ ପଚାରିଲେ ଗଉରି
ଅର୍ଜୁନ ବିଭା ହେଲା ଯେ ବାସୁକି କୁମାରି ॥୫୮୦୧॥
ଗର୍ଭରେ ତିନିମାସ ଛାଡ଼ି ଗଲା ପାଥ
ଯେ କଥା ମୋର ଆଗେ କହ ହେ ବିଶ୍ୱନାଥ ॥୫୮୦୨॥
ତାହାର ଗର୍ଭରୁ ଜନ୍ମ କିସ ହେଲେ
ସୁଣ ଗୋ ଓମା ବୋଲି ସଦାସିବ କହିଲେ ॥୫୮୦୩॥
ଦସମାସ ସମ୍ପୁର୍ଣ୍ଣେ ବଥାଇଲା ପେଟ
ସୁଭ ଲଗ୍ନ ଜାଣିଣ କୁମରେ ହେଲା ଜାତ[୧] ॥୫୮୦୪॥
ସୁଣିଣ ବାସୁକି ହରସ ହୋଇଲା
ଧାଇ ମୁଦୁସୁଲି ଦେଇ ପୁତ୍ରକୁ ପାଳିଲା ॥୫୮୦୫॥
ଯେକୋଇସ ଦିନରେ ପୁତ୍ରର ଦିଲେ ନାମ
ମାତା ପିତା ନାମରେ ପାଇଲା ନାଗାଅର୍ଜୁନ ॥୫୮୦୬॥
ବଢ଼ିଲା ନନ୍ଦନ ଆକାସ ଚାନ୍ଦ ପ୍ରାୟେ
ସପତ ବରସରେ ତପ କରି ଯାୟେ ॥୫୮୦୭॥
ହର ଉଦ୍ୟାନେ ବସି ଚିନ୍ତିଲା ସଙ୍କର
ପ୍ରସନ୍ନ ହୋଇଣ ସିବ ଯାଚି ଦିଲେ ବର ॥୫୮୦୮॥
ଅବସ୍ୟ ଦେବି ବର ବୋଇଲେ ସୁଳପାଣି
କୁମର ବୋଇଲା କାହାରି ହସ୍ତେ ନାସ ନୋହିବି ପୁଣି ॥୫୮୦୯॥
ମୁହିଂ ସମସ୍ତଙ୍କୁ ଜିଣିବି ଯୁଦ୍ଧର
କାହାରି ସହସ୍ର ନ ଭେଦିବ ମୋହ ଅଙ୍ଗର ॥୫୮୧୦॥
ଅସ୍ତୁ ହେଉ ବୋଲିଣ ବୋଇଲେ ସଙ୍କର
ତିନିପୁର ମଧ୍ୟରେ ହୋଇଲୁ ଅକ୍ରାମ୍ୟର ॥୫୮୧୧॥
ପାର୍ବତି ବୋଇଲେ ବାବୁ କଥାୟେକ କରିବୁ
ମୋହର ଗଣ୍ଡାଗୋଟି ଆକଟ କରିଥିବୁ ॥୫୮୧୨॥
ହର ଗଉରିଠାରୁ ବିଦ୍ୟା ବର ପାଇ
ନେଉଟି ନାଗାଅର୍ଜୁନ ପାତାଳେ ମିଳଇ ॥୫୮୧୩॥
ନାଗ କୁମରଙ୍କ ସଙ୍ଗେ ଲଗାଇଲା ବାହୁ ଯୁଦ୍ଧ
ତକ୍ଷକ ଆଦି କରି ଜିଣିଲା କୁମର ସିଦ୍ଧ[୨] ॥୫୮୧୪॥

୧ । ଖ ପୋଥି – ଶୁଭବେଳେ ଶୁଭଲଗ୍ନେ ହୋଇଲା ପୁତ୍ର ଜାତ
୨ । ଖ ପୋଥି –ସକଳ ବାଳକ

ଯେଥୁ ଅନ୍ୟନ୍ତରେ କିଛି ଦିନ ଯାଇ
ସୁଣଗୋ ଓମା ବୋଲି ସଦାସିବ କହି ॥୫୮୧୫॥

## ଅର୍ଜୁନ ଓ ନାଗାର୍ଜୁନ ଯୁଦ୍ଧ

ଯେକଦିନେ ଯୁଧିଷ୍ଟି ସଭାରେ ବସିଥିଲେ
ନାରଦ ମିଳିଲେ ସେ ସଭାରେ ବସାଇଲେ[୧] ॥୫୮୧୬॥
ପ୍ରଣପତ୍ୟ ହୋଇ ଯୁଧିଷ୍ଟି ପଚାରନ୍ତି
କେବଣ ଭୁବନେ ରହିଥିଲ ବ୍ରହ୍ମପତି ॥୫୮୧୭॥
ନାରଦେ ବୋଇଲେ ସଜିଂବନି ପୁରେ ଥିଲୁ
ପିତା ପଣ୍ଡୁ ତୋହର ଦେଖିଣ ଅଇଲୁ[୨] ॥୫୮୧୮॥
ଯେ ତିନି ପାବଛ ତଳେ ଉଭା ହୋଇଥିଲା
ରାଜୁସି ଯାଗ କରନ୍ତେ ବେନି ପାବଛ ଉଠିଲା ॥୫୮୧୯॥
ଆଉ ଯେକ ପାବଛ ତଳେ ଉଭା ହୋଇ
ବସ ବୋଲି ଯମ ଦେବତା ନ ବୋଲଇ ॥୫୮୨୦॥
ପଣ୍ଡୁର ଦୁଖ ଦେଖି କହିଲଇଂ ତୋତେ
ଗଣ୍ଡା ମାରି ପିତୃଶ୍ରାଦ୍ଧ କର ଧର୍ମସୁତେ ॥୫୮୨୧॥
ତେବେ ପିତା ତୁମ୍ଭର ବସିବ ସଭାର
ଯେମନ୍ତ କହିଣ ଯେ ଗଲେ ମୁନିବର ॥୫୮୨୨॥
ସୁଣି ଧର୍ମସୁତ ହୋଇଲେ କ୍ରୋଧଭର
ରାଜୁସି ଯଜ୍ଞ କଲି ପିତା ନ ବସିଲେ ସଭାର ॥୫୮୨୩॥
ତେଡ଼େ ପୁନ୍ୟରେ ପିତା ବ୍ରହ୍ମହତ୍ୟା ନ ଗଲା
ଯାଅରେ ଅର୍ଜୁନ ଗଣ୍ଡା ମାରିଆଣ ଭଲା ॥୫୮୨୪॥
ପିତୃଶ୍ରାଦ୍ଧ କଲେ ଯେବେ ମୁକତି ପିତା ହୋଇ
ସୁଣିଣ ବନକୁ ବାହାର ଧନୁର୍ଜଇ ॥୫୮୨୫॥
ଗଣ୍ଡା ମାରିବାକୁ ଗମିଲା ଅର୍ଜୁନ
ଧାବଣା କାଷ୍ଟରେ ଧନୁ କଣ୍ଟାବାୟେଂସର ଗୁଣ ॥୫୮୨୬॥
ରକ୍ତ ଚନ୍ଦନର ଚିତା ଗୁଜଂରାମାଳି ମାଥ
ସବର ରୁପ ଯେ ହୋଇଲା ବିର ପାଥ[୩] ॥୫୮୨୭॥
ନିଘୋର ଅରଣ୍ୟରେ ଖୋଜଇ ଗଣ୍ଡାଜିବ
ଅନେକ ବନ ଗିରି ଯେ ଖୋଜିଲା ବିର ସର୍ବ[୪] ॥୫୮୨୮॥
ନପାଇ ବିମୁଖ ହୋଇଲା ଧନୁର୍ଜଇ
ହର ଉଦ୍ୟାନକୁ ଯାଅ ବୋଲି ସୁନ୍ୟ ସବଦ ସୁଭଇ ॥୫୮୨୯॥

୧ । ଖ ଓ ଘ ପୋଥି – ଆସନେ ବସିଲେ
୨ । ଖ ପୋଥି – ତୋହର ପିତା ଯେ ପଣ୍ଡୁକୁ ଦେଖିଲୁ
୩ । ଘ ପୋଥି – ଗାଣ୍ଡିମ ଧନୁ ପାଥ ଧରିଅଛି ହସ୍ତ
୪ । ଘ ପୋଥି – ପାର୍ଥିବ

ସୁଣିଣ ବାସେବି ହର ଉଦ୍ୟାନେ ଯାଇ ମିଳି
ଦେଖିଲା ନାନା ଜିବେ କରନ୍ତି ତହିଂ କେଳି ॥୫୮୩୦॥
ନପାଇ ଗଣ୍ଡା ଜିବ ଜଗି ବସିଲା ଜଳଘାଟ
ପାର୍ବତିଙ୍କ ଗଣ୍ଡା ଯେ ପ୍ରବେସ ନଦି ତଟ ॥୫୮୩୧॥
ତୃସାରେ ଜଳ ଭଖି ବାହୁଡ଼ିବାର ବେଳେ
ବିନ୍ଧିଲା ନାରାଜ ଗଣ୍ଡା ପଡ଼ିଲା ସେହିଠାରେ ॥୫୮୩୨॥
ଦେଖିଲା ବାସେବି ଗଣ୍ଡା ଦେହରେ ଅଳଙ୍କାର
ପୋୟେଲା ସୁବର୍ଣ୍ଣ ଯେ ସଙ୍ଗତେ ପଥର ॥୫୮୩୩॥
ବିଚାରେ ସର୍ବସାଚି ହରିବିଂ କେମନ୍ତେ ପରଧନ
ଗଣ୍ଡାକୁ ଡାଙ୍କି ଦେଇଣ ବସିଲା ମଉନ ॥୫୮୩୪॥
ପାତାଳେ ଯେ ନାଗାଅର୍ଜୁନ ଥିଲା ରହି
ବାମ ଚକ୍ଷୁ ସ୍ଫୁରନ୍ତେ ଯେ ମାତାକୁ ପୁଛଇ ॥୫୮୩୫॥
ଯାଉଛି ହର ଉଦ୍ୟାନକୁ ଦ୍ରସନ କରିବି ଉମାସାଇଂ
କିବା ଗଣ୍ଡା ମଲା ଆମ୍ଭ ମୋ ବଇକୁଲ୍ୟ ହୋଇ ॥୫୮୩୬॥
ସନ୍ଧ୍ୟାବାଳି ବୋଇଲା ନିକି ପାଣ୍ଡବେ ଆସିଥାନ୍ତି
କାହିଂଅଛି ହସ୍ତିନା କପିଳାସ ଯେଥି ॥୫୮୩୭॥
ସନ୍ଧ୍ୟାବାଳି ବୋଇଲା ତୋ ପିତା ସେ ଅର୍ଜୁନ
ଯେକ ଦିବସେକ ଗମଇ ଲକ୍ଷେକ ଯୋଜନ ॥୫୮୩୮॥
ଯାହାର ସାଖା ଅଟନ୍ତି ଭଗବାନ
ସେ ପାଣ୍ଡବଙ୍କର ମହିମା ସୁଣରେ ନନ୍ଦନ[୧] ॥୫୮୩୯॥
ମାତା ବୋଲ ନ ସୁଣି ଧାଇଂଲା ବାଳ ପୋଇ
ହର ଉଦ୍ୟାନେ ଦେଖିଲା ଗଣ୍ଡା ପଡ଼ିଛଇ ॥୫୮୪୦॥
ଦେଖିଲା ଡାଳ କାଢ଼ିଣ ସେ ବାଳକ ତନୟି
ଗଣ୍ଡାର ଦେହରେ ଯେ ସର ବାଜିଛଇ ॥୫୮୪୧॥
ବାଜିଛି ସର ଦେଖି କୋପିତ ପାର୍ଥସୁତ
ବୋଇଲା ଯେ ଗଣ୍ଡା ଗୋଟି କେହୁ କଲା ହତ ॥୫୮୪୨॥
ହରିହର ଯଦି ହୁଅନ୍ତେ ଦିଗପାଳ
ଆଜ ତାହାଙ୍କର ଯେ ପୁରୋଇବି କାଳ[୨] ॥୫୮୪୩॥
ସୁଣିଣ ଅର୍ଜୁନ ଲତାରୁ ଉଠେ ଝାଡ଼ି
ବୋଇଲା ତପସ୍ବି ତୋର ଅଳଙ୍କାର ନିଅ କାଢ଼ି ॥୫୮୪୪॥
ଗଣ୍ଡାକୁ ନେବି ମୁଂ ହୋଇବ ପିତୃକାର୍ଯ୍ୟ
ସୁଣିଣ ନାଗାଅର୍ଜୁନ ହୋଇଲା ବଇରାଗ ॥୫୮୪୫॥
ଧନୁରେ ଗୁଣ ଦେଇ ନାରାଜ ସନ୍ଧିଲା
ଛାର ସବରାରେ ନାସିଲୁ ଗଣ୍ଡା ଭଲା ॥୫୮୪୬॥

୧ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ
୨ । ଖ ଓ ଘ ପୋଥି – ତେବେ ମୋହର ନାରାଜେ
ହୋଅନ୍ତେ ବେନି ଫାଳ

ଯେହିକ୍ଷଣି ଯେବେ ତୋହର ଯେ ପ୍ରାଣ ହରିବଇ
ଗଣ୍ଡା ସହିତେ ତୋତେ ନେବେ ଜନ୍ତୁସାଇଂ ॥୫୮୪୭॥
ଏତେ ବୋଲି ନାରାଜ ଗୋଟିଏ ଦିଲା ଛାଡ଼ି
କକଡ଼ା ମାସରେ ଯେହ୍ନେ ମେଘ ଘଡ଼ଘଡ଼ି ॥୫୮୪୮॥
ଅର୍ଜୁନ ପାଦତଳେ ନାରାଜ ଯାଇ ପଡ଼ି
ଦେଖିଣ ବାସବି ଯେ ସର ଦିଲା ଛାଡ଼ି ॥୫୮୪୯॥
କୁମରର ସିରେ ଆସିର୍ବାଦ କଲା
ଦେଖିଣ କୋପିତ ସେ ନାଗିଣିର ବଳା ॥୫୮୫୦॥
ବିନ୍ଧିଲା ସାତବାଣ ଘୋଟିଲା ଆକାସ
ପିତା ପୁତ୍ର ସମର ଦେଖନ୍ତି ତ୍ରିଦସ୍ୟ ॥୫୮୫୧॥
ପ୍ରତିସର କରି ଅର୍ଜୁନ ତା ଛେଦିଲା
ପସୁପତ୍ର ସର କୁମର ବିନ୍ଧିଲା ॥୫୮୫୨॥
ଅର୍ଜୁନ ସୁମରନ୍ତେ ପସୁପତ୍ର ମିଳି
ନାଗାଅର୍ଜୁନ ବୋଇଲାରେ ସବରା ଯେଡ଼େ ଭଳି ॥୫୮୫୩॥
ଯେଡ଼େକ ବିଦ୍ୟା ତୁ ପାଇଲୁ କାହାଠାର
ଅର୍ଜୁନ ବୋଇଲା ଧନ୍ୟ ତୋ ଜନନି ପିଅର ॥୫୮୫୪॥
ଯେତେ ସହସ୍ର  ତୁ ବିନ୍ଧିଲୁ ନିଠିଆଇ
ମୁହିଂ କ୍ଷେତ୍ରି ବୋଲି ସମ୍ଭାଳିଣ ରହିଛଇଂ ॥୫୮୫୫॥
ଯେତେକ ଅସୁର ପୃଥିରେ ମାଇଲି
କୌରବ ସଭାରେ ଲାଖ ମୁଂ ବିନ୍ଧିଲି ॥୫୮୫୬॥
ସୁଗନ୍ଧିକା ହରଣେ ପୁଷ୍ପ ଆଣିଲି ହନୁମତ ଛଳେ
ରାଜୁସି ଯଜ୍ଞ ପୃଥିରେ ଧଇଲି ଧନୁ ହୋଳେ[1] ॥୫୮୫୭॥
ଯେତେ ବୋଲି ପାଥ ସାଠିଏ ବାଣ ବିନ୍ଧିଲା
ଦିବସରେ ତହିଂ କୁହୁଡ଼ି ଘୋଟିଲା ॥୫୮୫୮॥
ପ୍ରତିସର କରି ଛେଦିଲା ପାଥସୁତ
ଦୁତିୟ ପ୍ରହର ହୋଇଲେ ଛାୟାକାନ୍ତ ॥୫୮୫୯॥
ଦୁହିଙ୍କର ଅଙ୍ଗରୁ କର୍ଣ୍ଣିଲା ସର୍ମଝାଳ
ଦୁହେଂ ମହାକ୍ଷତ୍ରି ତେଜରେ ଅନର୍ଗଳ ॥୫୮୬୦॥
ମାନବ ଅସ୍ତ୍ର ଦେବ ଅସ୍ତ୍ର ନାଗ ସର ବିନ୍ଧିଲେ
କେହି କାହାକୁ ହିଂ ଜିଣି ନ ପାରିଲେ ॥୫୮୬୧॥
ତେଜରେ ତାପିତ ନାଗେଣିର ବାଳ
ସୁମରଣା କରନ୍ତେ ମିଳିଲା ମହାକାଳ ॥୫୮୬୨॥
ହସ୍ତରେ କାତି ଖପର ଗଳାରେ ମୁଣ୍ଡମାଳି
ରଟମଟ ଦନ୍ତ ଭଇରୋବି ବେନ୍ତାଳି ॥୫୮୬୩॥
ନାଗାଅର୍ଜୁନ ତାହାକୁ ବସାଇ ଗୁଣର
ଛାଡ଼ି ଦେଇ କହିଲା ନାସ ଯେ ସବର ॥୫୮୬୪॥

୧ । ଖ ପୋଥିରେ ଉପର ଚାରି ଧାଡ଼ି ନାହିଁ

ଖେପିଲା ନାରାଜ ମାଡ଼ିଣ ସ୍ୱର୍ଗ ମହିଂ
ଅର୍ଜୁନ ସରରେ[1] ଦେବ ସର ନାହିଂ ॥୫୮୬୫॥
ମହାକାଳ ବୋଇଲା ସୁଣରେ ଅର୍ଜୁନ
ଅଣ ନଉଟଣ ଅଟଇ ମୋର ନାମ ॥୫୮୬୬॥
ଦିଗପାଳ ହୋଇଲେ ଗୋଟାଏ ନାସଇ
ଗୋଟିଏ ଦେବ ସର ବିନ୍ଧରେ ପାଥ ତୁହି ॥୫୮୬୭॥
ଅର୍ଜୁନ ବୋଇଲା ମୋର ନାହିଂ ଦେବ ସର
ସର ବୋଇଲା ଗୋଟିଏ ପାଲଟ ବିନ୍ଧ ମୋ ଉପର ॥୫୮୬୮॥
ଅର୍ଜୁନ ବୋଇଲା ବିନ୍ଧିଲା ସର ମୁଂ ନ ବିନ୍ଧଇ
ଯେତେବେଳେ ସାହାପକ୍ଷ କମଳାର ସାଇଂ ॥୫୮୬୯॥
ମହାକାଳ ବୋଇଲା ମୋର ଦୋସ ନାହିଂ
ଆହେ ଭୋ ଧର୍ମ ଦେବତା ସାକ୍ଷି ହୁଅ ତୁହି[2] ॥୫୮୭୦॥
ଦସ ଦିଗପାଳଙ୍କୁ ବାଣ ସାକ୍ଷି କଲା
ଅର୍ଜୁନର କଟିଭାଗେ ଗର୍ଜିଣ ପଡ଼ିଲା ॥୫୮୭୧॥
ବେନିଖଣ୍ଡ ହୋଇ ପଡ଼ିଲା ବାସେବର ସୁତ
ରକ୍ତଚିତାଏ ନାଗା କାଟିଲା ଭାଲପଟ ॥୫୮୭୨॥
ରଣ ଜୟେ କରିଣ ବାହୁଡ଼ିଲା ନନ୍ଦନ
ଅର୍ଜୁନ ଉପରେ ପୁସ୍ୟ ବୃଷ୍ଟି କଲା ଚିତ୍ରସେନ ॥୫୮୭୩॥

## ଅର୍ଜୁନଙ୍କ ମୃତ୍ୟୁରେ ସନ୍ଧ୍ୟାବାଳୀର ଶୋକ, ହରିହର ଯୁଦ୍ଧ ଓ ଅର୍ଜୁନଙ୍କୁ ଯମର ଜୀବନ୍ୟାସ

ଯେଥୁଂ ଅନନ୍ତରେ ସୁଣଗୋ ହେମବନ୍ତି
ନାଗାଅର୍ଜୁନ ପ୍ରବେସ ହୋଇଲା ମାତା କତି ॥୫୮୭୪॥
ସନ୍ଧ୍ୟାବାଳି ବୋଇଲା ତୋର ସମର କେଉଂଠାରେ
ରୋଧିର ଚିତା ତ କାଟିଛୁ ଲଲାଟରେ ॥୫୮୭୫॥
ନନ୍ଦନ ବୋଇଲା[3] ଗଣ୍ଡାକୁ ସବର ମାରିଥିଲା
ବିନ୍ଧିଲି ନାରାଜ[4] ଗୋ ସବର ପ୍ରାଣଗଲା ॥୫୮୭୬॥
ସନ୍ଧ୍ୟାବାଳି ବୋଇଲା ସେ ସବର ନୁହଇ
ସେ ନିକି ତୋ ପିତା ଅଟନ୍ତି ଧନୁର୍ଜୟି ॥୫୮୭୭॥
ସୁଣିଣ ଆତ୍ମା ମୋର ବଇକୁଲ୍ୟ ହୋଇ
ମରିବା ବେଳେ ସବର କିସ ଗଲା କହି ॥୫୮୭୮॥
କୁମର ବୋଇଲା ସେ ସବର କହୁଥିଲା
ଯାଗ କାଳେ ଧନୁହୁଳେ ଧଇଲି ବସୁନ୍ଧରା ॥୫୮୭୯॥

୧ । ଘ ପୋଥି – ହସ୍ତରେ
୨ । ଖ ପୋଥିରେ  ମହାକାଳ ବୋଇଲା ଠାରୁ ସାକ୍ଷୀ ହୁଅ ତୁହି ପର୍ଯ୍ୟନ୍ତ ନାହିଁ
୩ । ଖ ପୋଥି – ପାର୍ବତୀଙ୍କ
୪ । ଖ ପୋଥି – ଯୁଦ୍ଧରେ ମାଇଲି

ସୁଣିଣ ସୋକ କରି ଉଠିଲା ସନ୍ଧ୍ୟାବାଳି
ଦେଖିଲା ଅର୍ଜୁନ ବୃକ୍ଷ ଯାଇଅଛି ଜଳି ॥୫୮୮୦॥
ବୋଇଲା କୁମରରେ ମୋତେ ବିଧବା କଷ୍ଟଦେଲୁ
ଜନ୍ମକଲା ପିତାକୁ ଯେ ତୁହି ନାସକଲୁ[1] ॥୫୮୮୧॥
ଧରି ନ ପାରିବିଂ ପ୍ରାଣ ଖାଇବଇଂ ଜୁଇ
ପ୍ରାଣନାଥ ଠାବକୁ ପୁତ୍ର ନିଅ ତୁ କଢ଼ାଇ ॥୫୮୮୨॥
ନାଗାଅର୍ଜୁନ କଢ଼ାଇ ନିଲା ପଥ[2]
ପ୍ରବେସ ହେଲେ ଯାଇ ଯହିଂ ପଡ଼ିଛି ବିରପାଥ ॥୫୮୮୩॥
ସ୍ୱାମିକି କୋଳେ ଘେନି ସନ୍ଧ୍ୟାବାଳି କରଇ ରୋଦନ[3]
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୫୮୮୪॥
ନାରଦେ ଦେଖିଯାଇଂ ହରିଙ୍କି କହିଲେ
ସୁଣିଣ ହରି ବଳରାମ ମନେ ଚିନ୍ତାକଲେ ॥୫୮୮୫॥
ଦାରୁକ ସାଜିଲା ଯେ ନନ୍ଦିଘୋସ ଯାନ
ତାଳଧ୍ୱଜ ରଥରେ ବିଜୟେ ବଳରାମ ॥୫୮୮୬॥
ଯାଦବ ସନ୍ୟ ଘେନି ରାମ ଜଗନ୍ନାଥ ଗଲେ
ବାରୁଣାବନ୍ତରେ ଯାଇ ପ୍ରବେସ ହୋଇଲେ ॥୫୮୮୭॥
ଇଶ୍ୱର ଗଣପୁତ୍ର ନାସିଲା ଅର୍ଜୁନକୁ
ଆସ ହୋ କପିଳାସେ ନାସିବା ଇଶ୍ୱରଙ୍କୁ ॥୫୮୮୮॥
ସୁଣିଣ ଯୁଧିଷ୍ଟି ହୋଇଲେ ସୋକଭର
ଅର୍ଜୁନ ବିହୁନେ ଦିବସ ହୋଇଲା ଅନ୍ଧାର ॥୫୮୮୯॥
ଭିମ ସହଦେବ ନକୁଳ କୋପ କଲେ
ଆଜ କପିଳାସ ପକାଇବା ରାସାଂତଳେ ॥୫୮୯୦॥
ସୁଣିଣ ଦୁର୍ଯୋଧନ ସାଜିଲା ନିଜବଳ
ଭିସ୍ମ ଦ୍ରୋଣ କର୍ଣ୍ଣ ସାକଲ୍ୟର ବାଳ ॥୫୮୯୧॥
କଉରବ ପାଣ୍ଡବ ଯାଦବ ବଳ ତିନି
ତିନି ସନ୍ୟ ଗମନ୍ତେ କମ୍ପିଲା ମେଦିନି ॥୫୮୯୨॥
ପ୍ରବେସ ହେଲେ ଯାଇ ହର ଉଦ୍ୟାନ ବନର
ଦେଖିଣ ପଳାଇଲା ନାଗେଣି କୁମର ॥୫୮୯୩॥

୧ । ଘ ପୋଥି – ସ୍ୱହସ୍ତେ ବଧ କଲୁ
୨ । ଖ ପୋଥି – ନାଗାଅର୍ଜୁନ ପଛରେ ସନ୍ଧ୍ୟାବାଳୀ ଗମେ ପଥ
୩ । ଘ ପୋଥିରେ ଏହା ତଳେ ଛଅ ଧାଡ଼ି ଅଧିକ ଅଛି –
ଯେ ଯୁବା କାଳେ ନାଥ ବିହିଲୁ ବିଧବା ଲକ୍ଷଣ
ହା ହା ପ୍ରାଣନାଥ ପ୍ରାଣର ଠାକୁର
ସମ୍ପୂର୍ଣ୍ଣ ଚନ୍ଦ୍ର ପ୍ରାୟେ ବଦନ ତୋହର
ଯେ ଘୋର ଅରଣ୍ୟରେ ପାଥ ଜୀବନ ହାରିଲୁ
ଆହାରେ ପୁତ୍ର ମୋତେ ଯେତେ କଷ୍ଟ ବିହିଲୁ
ଯେମନ୍ତେ ସନ୍ଧ୍ୟାବାଳୀ କରଇ ରୋଦନ

ସଦାସିବ ଅଗ୍ରତେ କହିଲା ବାରତ
ରୁଦ୍ରବଳ ଘେନିଣ ଧାଇଂଲେ ଉମାକାନ୍ତ ॥୫୮୯୪॥
ଶ୍ରୀହରି ଯୁଧିଷ୍ଟି ମିଳିଲେ ପାଥଠାର
ଦେଖି ସନ୍ଧ୍ୟାବାଳି ତହୁଂ ହୋଇଲା ଅନ୍ତର ॥୫୮୯୫॥
ଅର୍ଜୁନ ଗଣ୍ଡିଧରି ଶ୍ରୀହରି ଯୁଧିଷ୍ଟି ସୋକ କଲେ
ହା ହା ପୁତ୍ର ବୋଲି କାନ୍ଦଇ ବଜ୍ରଧରେ ॥୫୮୯୬॥
ସନ୍ୟ ମୁଖରାବ ସିନ୍ଧୁଘୋସ ଜାଣି
ଧୂଳି ଉଡ଼ନ୍ତେ ଅଦୃସ୍ୟ ହୋଇଲେ ଦିନମଣି ॥୫୮୯୭॥
ଯେଥୁ ଅନ୍ୟନ୍ତରେ ଯେ ଦେବ ତ୍ରିପୁରାରି
ରୁଦ୍ରବଳ ସଙ୍ଗତେ ଘେନିଣ ବାହାରି ॥୫୮୯୮॥
ପ୍ରବେସ ହୋଇଲେ ହର ଉଦ୍ୟାନ ବନର
ସେହି ସମୟରେ ଆସି ମିଳିଲେ ବଜ୍ରଧର[1] ॥୫୮୯୯॥
କୋଟି କୋଟି ନାରାଚ ବିନ୍ଧିଲେ ସୁଳପାଣି
ଯାଦେବ ବଳ ସବୁ ପକାଇଲେ ହାଣି ॥୫୯୦୦॥
ନନ୍ଦିର ସଙ୍ଗତେ ଯେ ଦ୍ରୋଣ କଲେ ରଣ
ଭୃକୁଟି ସଙ୍ଗତେ ଯୁଝିଲେ ପଦ୍ମନ ॥୫୯୦୧॥
ଖେଚରି ସଙ୍ଗତେ ଦେଖି ଧାଇଂଲା ଦୁସାସନ
ବିକୋଦର ସଙ୍ଗେ ରଣ କଲା ବୈଲୋଚନ[2] ॥୫୯୦୨॥
ବଟେଶ୍ୱର ବିରୁପାକ୍ଷ ଲାଗିଲେ ବିବାଦ
ଚିତ୍ରରଥ ସଙ୍ଗତେ ଯୁଦ୍ଧ ଲାଗିଲା ସିଙ୍ଘନାଦ ॥୫୯୦୩॥
ବୈଧୃତି ସଙ୍ଗତେ ସାତ୍ୱିକି ରଣକଲା
ସଏମ୍ବର ସଙ୍ଗତେ ସଲ୍ୟ ରହିଲା ॥୫୯୦୪॥
ନକୁଳ ନିମ୍ଭେଶ୍ୱର ହୋଇଲେ ଭେଟାଭେଟି
ତ୍ରିହୋତ୍ରିକି ଦେଖି ଭୁରିଶ୍ରବା ଆକଟି ॥୫୯୦୫॥
ଭିସ୍ମଙ୍କ ସଙ୍ଗତେ ଭୟାଳୁ ରଣ କଲା
କର୍ଣ୍ଣ ଜଟେଶ୍ୱର ଭେଟାଭେଟି ହୋଇଲା ॥୫୯୦୬॥
ଉତ୍ପଳାକୁ ଦେଖିଣ ଉଗାଳେ ଚିତ୍ରସେନ
ଚଣ୍ଡର ସଙ୍ଗତେ ଯେ ଜୁଝିଲା ଦ୍ରିଯୋଧନ ॥୫୯୦୭॥
ମୁଣ୍ଡ ଅନାଧୃଷ୍ଟର ଯେ ହୋଇଲା ଘୋରରଣ
ନାଗାଅର୍ଜୁନ ସଙ୍ଗତେ ଯେ ରଣ ମଘବାନ ॥୫୯୦୮॥
ଯେମନ୍ତେ ଘୋରରଣ ହୋଇଲାକ ତହିଂ
ନରବଳ ରୁଦ୍ରବଳ ଦେବବଳ ହୋଇ ॥୫୯୦୯॥
ଯେହିରୁପେ ଯହୁଂ ଲାଗିଲା ଘୋରରଣ
ସଦାସିବ ସଙ୍ଗତେ ଯୁଝନ୍ତି ନାରାୟଣ ॥୫୯୧୦॥

୧ । ଖ ପୋଥି – ଦେବହର
୨ । ଘ ପୋଥିରେ ତଳ ଦୁଇ ଧାଡ଼ି ନାହିଁ

ବାଣ ଜାଳା ତେଜ ଆକାସକୁ ଲାଗି
ପଳାଇଲେ ବିବୁଧେ ଭାଜିଲା ସମାଦି ॥୫୯୧୧॥
ଦେବତାଯେ କହିଲେ ଯେ ବ୍ରହ୍ମାଙ୍କର ଆଗେ ଯାଇ
ହରିହର ସମରେ ପ୍ରଭୁ ନାସ ଗଲା ମହି ॥୫୯୧୨॥
ସୁଣିଣ ବେଦବର ମରାଳଂ ପୃଷ୍ଟେ ବସି
ସଂଗ୍ରାମେ ମିଳିଣ ବହୁତ କଲେ ସ୍ତୁତି ॥୫୯୧୩॥
ବଦୟନ୍ତି ଗୋବିନ୍ଦ ସୁଣ ହୋ ବେଦବର
ଅର୍ଜୁନ ଜିଇଂଲେ ସିନା ତେଜିବିଂ ସମର ॥୫୯୧୪॥
ପାଥର ବିନା ସେ ସିନା ଆଜ କରିବି ସୃଷ୍ଟି ନାସ[2]
ସୁଣିଣ ବଦୟନ୍ତି ସାବିତ୍ରିର କାନ୍ତ ॥୫୯୧୫॥
ଅର୍ଜୁନ ସହିତେ ଯେତେକ ସଇନି
ସମସ୍ତେ ଜିଇଂବେ ତୁମ୍ଭେ ସ୍ୟାନ୍ତି କର ପୁଣି ॥୫୯୧୬॥
ସୁଣିଣ ଜଗବନ୍ଧୁ ସନ୍ତୋସ ହୋଇଲେ
ରହ ରହ ବୋଲନ୍ତେ ଯେ ସମସ୍ତେ ରହିଲେ ॥୫୯୧୭॥
ଚିନ୍ତିଲେ ବିଧାତା ପ୍ରବେସ ଜନ୍ତୁପତି
ସେ ବୋଇଲା କୁଷ୍ଟବ୍ୟାଧି ମୋହର ହୋଇଅଛି[3] ॥୫୯୧୮॥
ସାବତ ଜନନିର ସାପ୍ୟ ଅଛି ହୋଇ
ତେଣୁ ମୋ ବେନିପାଦ ଯାଉଛି ମିଳାଇ ॥୫୯୧୯॥
ତାହା ସୁଣି ବ୍ରହ୍ମା ମନରେ ବିଚାରିଲେ
ମାତାର ସାପ୍ୟ ପୁତ୍ର ନ ଲାଗିବ ଭଲେ ॥୫୯୨୦॥
ଯେବେ ମାତାର ସାପ୍ୟ ପୁତ୍ରଠାରେ ପଡ଼ିବ
ସଚରାଚର ପୃଥି ଆଉ କି ରହିବ ॥୫୯୨୧॥
ମାତାର ସାପ୍ୟେ ଯମର ପାଦ ଯାଉଛି ମିଳାଇ
ଆଜଠାରୁ ମାତାଙ୍କର ସାପ୍ୟ ନ ବାଧଇ ॥୫୯୨୨॥
ଯମ ବୋଇଲେ ବ୍ରହ୍ମା କଥାଯେ ଯେବେ ହୋଇବ
ମୋହର ବ୍ୟାଧି ଯେବେ ତୁମ୍ଭେ ଭଲ କରିବ[4] ॥୫୯୨୩॥
ବ୍ୟାଧି ଭଲ ହୋଇଲେ ଜିଇବ ବିରପାଥ
ତେବେ ସଭାରେ ବସିବ ପଣ୍ଡୁ ନୃପନାଥ ॥୫୯୨୪॥
ସୁଣିଣ ସିବ ପାଦେ ପୋଛିଲେ ବ୍ୟାଧିତାର
କୁଷ୍ଟ ବ୍ୟାଧି ନାସ ହୋଇଲା ନାସ୍କରର ॥୫୯୨୫॥
ଜନ୍ତୁପତି ଅର୍ଜୁନକୁ ଦେଲା ଜିବଦାନ
ଜିଇଂଲା ଅର୍ଜୁନ ତେଜ ଗତୁଂ ସତେଗୁଣ ॥୫୯୨୬॥

୧ । ଘ ପୋଥି – ମରୁଳ
୨ । ଖ ପୋଥି – ପାଥର ଅଭାବେ ସୃଷ୍ଟି କରିବି ରସାଙ୍ଗତ
୩ । ଘ ପୋଥରେ ତଳ ଦୁଇ ଧାଡ଼ି ନାହିଁ
୪ । ଖ ପୋଥିରେ ତାହା ଶୁଣି ବ୍ରହ୍ମା ଠାରୁ ତୁମ୍ଭେ ଭଲ କରିବ ପର୍ଯ୍ୟନ୍ତ ଆଠ ଧାଡ଼ି ନାହିଁ

ଯେତେକ ସନ୍ୟ ସମରେ ପଡ଼ିଥିଲେ
ସମସ୍ତଙ୍କୁ ଯମଂ ଯେ ଜିବଦାନ ଦେଲେ ॥୫୯୨୭॥
ପିତାପୁତ୍ର ତହିଂ ହେଲେ ଭେଟା ଭେଟି
ସୁଣଗୋ ଓମା ବୋଲି ବୋଲନ୍ତି ଦୃଜଟି ॥୫୯୨୮॥
କୁମରକୁ ପ୍ରସଂସା କରନ୍ତି ସର୍ବଜନ
ପ୍ରବେସ ଜଗନ୍ନାଥ ଦ୍ୱାରିକା ଭୁବନ ॥୫୯୨୯॥
ପାତାଳ ପୁରକୁ ଗମିଲା ତନଇ
ପଞ୍ଚୁ ପାଣ୍ଡବେ କଉରୋବେ ବେନି ରାଜ୍ୟେ ରାଜା ହୋଇ ॥୫୯୩୦॥
ସଜିଂବନି ପୁରେ ଜନ୍ତୁପତି ଯେ ମିଳିଲା
ପଣ୍ଡୁ ନୃପତିଙ୍କ ନେଇ ସଭାରେ ବସାଇଲା ॥୫୯୩୧॥

## ଯୁଧିଷ୍ଠିରଙ୍କ ଅହଙ୍କାର ଓ ଶ୍ରୀକୃଷ୍ଣଙ୍କର ଶିକ୍ଷାଦାନ

ଯେକଦିନେ ଯୁଧିଷ୍ଟି ବିଚାର କଲେ ମନ
ଭଲ ଯଜ୍ଞ ଗୋଟିଏ ଆମ୍ଭେ କଲୁ ପୁଣ ॥୫୯୩୨॥
ଯୁଧିଷ୍ଟିର ଗର୍ବ ଯେ ଗୋବିନ୍ଦ ଜାଣିଲେ
ସଙ୍ଗତେ ଘେନି ଦିଗ ଭ୍ରମିବାକୁ ଗଲେ ॥୫୯୩୩॥
ଖେଟ ଖର୍ବଟ[2] ପର୍ବତ ବନ ଗିରି
ଦେଖିଲେ ସୁବର୍ଣ୍ଣ ପଡ଼ିଛି କୁଢ଼ି କୁଢ଼ି ॥୫୯୩୪॥
କେଉଂଠାରେ ବସ୍ତ୍ର ପଡ଼ିଛି ମେରୁର ଆକାର
କାହିଂ ହିରା ନିଳା ମାଣିକ୍ୟ ପଡ଼ିଛି ପଥର ॥୫୯୩୫॥
କାହିଂ ଅଷ୍ଟ ରତ୍ନେ ପଡ଼ି ହୋଇଛି ପର୍ବତ
କାହିଂ ଧାନ୍ୟ ରାସି ମେରୁ ପ୍ରାୟେ ଉଞ୍ଚ ॥୫୯୩୬॥
ବଦୟନ୍ତି ଯୁଧିଷ୍ଟି ସୁଣ ହେ ଭଗବାନ
ପଥେ କିପାଇଂ ପଡ଼ିଛି ଯେହୁ ଦ୍ରବ୍ୟମାନ ॥୫୯୩୭॥
ସୁଣି ଭଗବାନ ବିଚାର କଲେ ପୁଣ
ଏହିଠାରେ ଯୁଧିଷ୍ଟି ଗରବ ଗଜିଂବା ବହନ[3] ॥୫୯୩୮॥
ଗୋବିନ୍ଦ ପ୍ରତିବାଚ ବାସୁକି ଯଜ୍ଞକୁ ବ୍ରାହ୍ମଣେ ଆସିଥିଲେ
ନେଇ ନ ପାରି ଯେ ଦ୍ରବ୍ୟ ପକାଇଣ ଗଲେ ॥୫୯୩୯॥
ତେଣୁ ଯେ ଦ୍ରବ୍ୟମାନ ରହିଅଛି ପଡ଼ି
ସୁଣିଣ ଆଷ୍ଚାର୍ଯ୍ୟ ହୋଇଲେ ଦଣ୍ଡଧାରି ॥୫୯୪୦॥
ମୋ ଠାରୁ ଏଡ଼େ ଯଜ୍ଞ କରିଅଛି ସେହି
ଯେତେ ପଡ଼ିଅଛି କେତେ ନେଲେ ବହି ॥୫୯୪୧॥
ଯେତେ ଧନ ଦ୍ରବ୍ୟ ଥିଲା ମୋ ଭଣ୍ଡାର
ତହୁଂ ତିନିଗୁଣେ ଯେ ପଡ଼ିଛି ବାଟର ॥୫୯୪୨॥

୧ । ଘ ପୋଥି – ଜନ୍ତୁପତି
୨ । ଘ ପୋଥି – କପିତ
୩ । ଖ ପୋଥିରେ ଉପର ଦୁଇ ଧାଡ଼ି ନାହିଁ

ତହୁଂ ହରି ବେଗେ କଲେକ ଗମନ
ବାଟରେ ଦେଖିଲେ ବାସନ ପର୍ବତ ସମାନ ॥୫୯୪୩॥
ଖଣ୍ଡିଏକ ତହୁଂ ଖସି ପଡ଼ିଲା ପ୍ରାଏକ ତ ଦିସଇ
ବୋଲନ୍ତି ଯୁଧିଷ୍ଠି ହରି ଯେ କିସ ଅଟଇଂ[1] ॥୫୯୪୪॥
ଶ୍ରୀହରି ବୋଇଲେ ବଳିର ଯଜ୍ଞ ବାସନ
ବଳି ଯଜ୍ଞକାଳେ ବ୍ରାହ୍ମଣେ କରନ୍ତି ଭୋଜନ ॥୫୯୪୫॥
ଯୁଧିଷ୍ଠି ବୋଇଲେ ସୁଣ ଯଦୁସାଇଂ
ଖଣ୍ଡିଏ କଂସାରୁ ଊଣା ହୋଇଲା କିସ ପାଇଂ ॥୫୯୪୬॥
ଶ୍ରୀହରି ବୋଇଲେ ସୁଣ ଯୁଧିଷ୍ଠିର
ତୁମ୍ଭ ଯଜ୍ଞକୁ ନେଇଥିଲା ବିକୋଦର ॥୫୯୪୭॥
ତାହା ସୁଣି ଯୁଧିଷ୍ଠି ଆଶ୍ଚାର୍ଯ୍ୟ ହୋଇଲେ
ମୁଁ ବଡ଼ ଯଜ୍ଞ କଲି ବୋଲି ବୋଲନ୍ତେ ଶ୍ରୀକୃଷ୍ଣ ଗଜାଂଇଲେ[2] ॥୫୯୪୮॥
ଯେତେ କହି ଯୁଧିଷ୍ଠି ହୋଇଲେ ମଉନ
ମାୟାକରି ଅଛନ୍ତି ମୋତେ ପ୍ରଭୁ ଭଗବାନ ॥୫୯୪୯॥
ଯୁଧିଷ୍ଠିକି ଘେନି ହରି ନାଗପୁରେ ଯାଇମିଳି
ଦେଖିଣ ନାଗରାଜା ପ୍ରଭୁ ପାଦେ ନିଉଛାଳି ॥୫୯୫୦॥
ଯୁଧିଷ୍ଠିଙ୍କି ଯହୁଂ ନ କଲା ନମସ୍କାର
ଯୁଧିଷ୍ଠିଙ୍କି ଚାହିଂ ଉଳଗି ଚକ୍ରଧର ॥୫୯୫୧॥
ଶ୍ରୀହରିଙ୍କି ବାସୁକି ବହୁତ ପୁଜା କଲା
ଯୁଧିଷ୍ଠିଙ୍କି ଚାହିଂ ନାଗ ରାଜା ପୁଛିଲା ॥୫୯୫୨॥
ତୋତେ ଯେ ନମସ୍କାର ହୋଇଲେ ଶ୍ରୀବଛି
କାହାର ହସ୍ତରେ ମୁକତି ତୋର ଅଛି ॥୫୯୫୩॥
ବଦୟନ୍ତି ଧର୍ମସୁତ ମୋ ସାହା ଦେବହରି
ସେହି ସେ ଗତିକର୍ତା ଅଟଇ ମୋହରି[3] ॥୫୯୫୪॥
ବାସୁକି ପ୍ରତିବାଚ ଯେବେ ସାହା ସେହି
ତାହାକୁ ପଚାରିବୁଟି କି ରୁପେ ଯିବେ କହି ॥୫୯୫୫॥
ଅନନ୍ତର କଥା ନୃପତି ମନେ ଘେନି
ବାରୁଣାରେ ପ୍ରବେସ ଯୁଧିଷ୍ଠି ଚକ୍ରପାଣି ॥୫୯୫୬॥
ଶ୍ରୀହରି ଚରଣେ ଯୁଧିଷ୍ଠି ପଡ଼ିଲେ
ଦେଖିଣ ଜଗନ୍ନାଥ ଆଶ୍ଚାର୍ଯ୍ୟ ହୋଇଲେ ॥୫୯୫୭॥
ବୋଇଲେ ଧର୍ମସୁତ ଅନ୍ୟାୟ ଆଚରିଲ
ପଡ଼ିଲ ମୋର ପାଦେ ଆୟୁସ୍ୟ ହାନି କଲ ॥୫୯୫୮॥

୧ । ଖ ପୋଥିରେ ତହୁଂ ହରି ବେଗେ ଠାରୁ ଏ କିସ ଅଟଇ ପର୍ଯ୍ୟନ୍ତ ଚାରି ଧାଡ଼ି ନାହିଁ
୨ । ଖ ପୋଥିରେ ଶ୍ରୀହରି ବୋଇଲେ ଠାରୁ ଗଞ୍ଜାଇଲେ ପର୍ଯ୍ୟନ୍ତ ଆଠ ଧାଡ଼ି ନାହିଁ
୩ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଯେତେଦିନ ଯାଏ ନ ଦେଖିଲି ଯେହା
ଆଜ ଭୋଳ ହୋଇଲକି ଦ୍ରୌପଦିର ନାହା ॥୫୯୫୯॥
ଯୁଧିଷ୍ଠି ବୋଇଲେ ମୁଁ ହୋଇଲି ଅଜ୍ଞାନ
ନ କଲି ସେବା ତୋତେ ବଞ୍ଚିଲି ଅକାରଣ ॥୫୯୬୦॥
ଯେ ଭବ ସଂସାରୁ ମୁଁ ତରିବି କେମନ୍ତେ
ଯେ ଦେହ ଘେନି କେମନ୍ତେ ଯିବଇଂ ସ୍ୱର୍ଗପଥେ ॥୫୯୬୧॥
ଯେହି ସନ୍ଧି କଥା କହ ଦେବହରି
ତେବେ ସେ ପଦ୍ମପାଦ ଛାଡ଼ିବିଂ ତୋହରି ॥୫୯୬୨॥
ସୁଣିଣ ସ୍ତମ୍ଭିଭୁତ ହୋଇଲେ ହୃସିକେସି
ଯେହାକୁ ଗ୍ୟାନ କଥା କହିଲା ବାସୁକି ॥୫୯୬୩॥
ବୋଇଲେ ଭଗବାନ ସୁଣ ହେ ଯୁଧିଷ୍ଠିର
ସତ୍ରୁ ମିତ୍ର ଏକତ୍ୱ ନାହିଂ ତୋ ପରାପର ॥୫୯୬୪॥
ଦାନରେ ସାର୍ଥ ତୁମ୍ଭେ ଦୟାରେ ସାଗର[1]
ସତ୍ୟବାଦି ମିଥ୍ୟା ନାହିଂ ତୋହର ଦେହର[2] ॥୫୯୬୫॥
ଧର୍ମକଥା ବିନୁଂ ଅଧର୍ମ ତୋର ନାହିଂ
ଯେଥିରେ ଗତିନାହିଂ କିସ ପଚାରୁ ନୃପସାଇଂ ॥୫୯୬୬॥
ଯୁଧିଷ୍ଠି ବୋଇଲେ ତୁମ୍ଭେ କପଟି ମାୟାଧର
ମୋଠାରେ ହରି ତୋହର ଅଛଇ ଅନ୍ତର ॥୫୯୬୭॥
ଯେବେ ହରି ମୋତେ ନ କହିବୁ ଗତି[3]
ତେବେ ନାସ ଯିବି ଜାଳିଣ ବହ୍ନିଟି[4] ॥୫୯୬୮॥
ବଦୟନ୍ତି କେସବ ଯୁଧିଷ୍ଠି ଚିନ୍ତା ଛାଡ଼
ତୋହର ଗତି ଅଛି ଦ୍ରୌପଦି ହସ୍ତର ॥୫୯୬୯॥
ଯେବେ ଦୟାକରି ଅଛଇ ଜିଗ୍ନସେନି
ତେବେ ତୁ ସ୍ୱର୍ଗକୁ ଯିବୁ ଯେହି ଦେହ ଘେନି ॥୫୯୭୦॥
ଦ୍ରୋପଦି ନ ଛାଡ଼ିଲେ ନ ପାରିବୁ ଯାଇ
ଯେତେ ବୋଲି ଦ୍ୱାରିକାକୁ ଗଲେ ଭାବଗ୍ରାହି ॥୫୯୭୧॥

## ଯୁଧିଷ୍ଠିରଙ୍କୁ ମୁକ୍ତି ପ୍ରଦାନ ପାଇଁ ଦ୍ରୌପଦୀଙ୍କ ବରଦାନ

ସୁଣିଣ ଯୁଧିଷ୍ଠି ଭାଳିଲେ ହୃଦୟର
ଦ୍ରୋପଦି ଯେଡ଼େ ଲୋକ ହୋଇଛି ପତ୍ନି ମୋର ॥୫୯୭୨॥
ଯେବେ ତାହାଠାରେ କରିବଇଂ ସେବା
ସେହି ବର ଦେଲେ ଦେଖିବିଂ ସ୍ୱର୍ଗ ଦେବା ॥୫୯୭୩॥
ଯେମନ୍ତ ଭାଳନ୍ତେ ଦିବସ ହୋଏ ସେସ
ସୁଣଗୋ ଓମା ବୋଲି ବୋଲନ୍ତି ଦିଗବାସ ॥୫୯୭୪॥

୧ । ଘ ପୋଥି - ପରାୟଣ
୨ । ଘ ପୋଥି - ଦେହେଣ
୩ । ଖ ପୋଥି - ଯେବେ ଦୟା ମୋତେ ନ କରିବୁ ଦାଶରଥି
୪ । ଖ ପୋଥି - ହୋଇବିଂ ଅଗତି

ଅନ୍ତପୁରେ ଯାଇ ଯୁଧିଷ୍ଠି ପଡ଼ିଲେ ଦେବିପାଦ
ଦେଖିଣ ଦ୍ରୋପଦି ହୋଇଲେ ଆଶ୍ଚର୍ଯ୍ୟ ॥୫୯୭୫॥
ବୋଇଲେ ଭୋ ସ୍ୱାମି ମୁଂ ତୁମ୍ଭର ଯେ ନାରି
ମୋତେଂ ଉଳଗିଲ ହେ କଥା ନ ବିଚାରି ॥୫୯୭୬॥
ଯୁଧିଷ୍ଠି ବୋଇଲେ ତୁ ଭଇରୋବି ଚଞ୍ଚଳା
ତୁହି କାଳରାତ୍ରି ଯେ ନାରାୟଣି ମଙ୍ଗଳା ॥୫୯୭୭॥
ତୁହି ସେ ତାରଣ ସଂହାରଣ କରୁ
ଅପାପି ଆତ୍ମା ତୋର ଅନୁ ଆନ ରୁପ ଧରୁ ॥୫୯୭୮॥
ତୋହର ହସ୍ତରେ ଅଛଇ ମୋହର ଗତିପଥ
ବଦୟନ୍ତି ଦ୍ରୋପଦି ସୁଣ ହେ ନିଜକାନ୍ତ ॥୫୯୭୯॥
ସ୍ଥାବର ଜଙ୍ଗମ କିଟ ପତଙ୍ଗ ଚାରିଖାନି
ସମସ୍ତଙ୍କୁ ଉଦ୍ଧାରନ୍ତା ଦେବ ଚକ୍ରପାଣି ॥୫୯୮୦॥
ସ୍ତିରି ନିଲକ୍ଷଣି ମୁଂ ଅଟଇ ତୁମ୍ଭର ଦାସି
ମୁଂ କାହୁଂ ଜାଣିବି ଉଦ୍ଧାରନ୍ତା ଗତି ॥୫୯୮୧॥
କେଉଂଠାରେ ସ୍ତିରିକି ପୁରୁଷ ଜ୍ଞାନ ମାଗି
ଲଜ୍ୟା ପାଇବଟି ତ୍ରିଭୁବନେ କହିବେ ଅଲାଗିଂ[1] ॥୫୯୮୨॥
ଦ୍ରୋପଦି ବଚନେ ମଉନ ଧର୍ମସୁତ
କିଛିଦିନ ଅନ୍ତରେ ଭେଟିଲେ ଜଗନ୍ନାଥ ॥୫୯୮୩॥
ଶ୍ରୀହରି ପାଦରେ ପଡ଼ିଲା ରାଜା ସୋଇ
ଗୋବିନ୍ଦ ବୋଇଲେ ଉଠ ଉଠ ଭାଇ ॥୫୯୮୪॥
ଯେଉଂ କଥା ମାଗିଲ ତାହା ଦେଲୁଂ କହି
ଯୁଧିଷ୍ଠି ବୋଇଲେ ହରି କପଟ କଲୁ ତୁହି ॥୫୯୮୫॥
ଦ୍ରୋପଦି ବୋଲି ସେ ଭାରିଯା ଆମ୍ଭରି
ବୟସରେ ଅଟେ ସାନ ପ୍ରତକ୍ଷେ ଅଟେ ସ୍ତିରି ॥୫୯୮୬॥
ତାହାକୁ କହିଲିଂ ସେ କଲା ଉପହାସ
ସ୍ତିରିଙ୍କି ଜ୍ଞାନ କାହିଂ ମାଗନ୍ତି ପୁରୁଷ ॥୫୯୮୭॥
ଯେମନ୍ତ ବୋଇଲା ସେ ଲଜା ମୋତେ ହୋଇ
ଗୋବିନ୍ଦେ ବୋଇଲେ ସେ ଯେମନ୍ତେ କହିବେ କି ସେହି ॥୫୯୮୮॥
ପାକାଶ୍ରୋଣିତ ସ୍ନାହାନ କରିବ ଯେଉଂକାଳେ
ବସ୍ତ୍ର ଛାଡ଼ି ନ ଦେବ କହିବ ସେହିବେଳେ ॥୫୯୮୯॥
ଗୋବିନ୍ଦଙ୍କ ବଚନେ ଯେ ରହିଲେ ଯୁଧିଷ୍ଠି
ଯେମନ୍ତ ସମୟେ ଦିନେ ଦ୍ରୋପଦି ରଜବତି ॥୫୯୯୦॥
ସଷ୍ଟ ଦିନ ଯାଇ ସପ୍ତମ ଦିନ ହୋଇ
ପ୍ରଭାତୁ ଦ୍ରୋପଦି ସ୍ନାହାନ କରିଯାଇ ॥୫୯୯୧॥

୧ । ଖ ପୋଥି – ତ୍ରିଭୁବନେ ଲଜ୍ୟା ଶୁଣିଲେଂ ହୋଇଲ ଉଳଗି
୧ । ଘ ପୋଥି – ଲଜ୍ୟା ପାଇବଟି ତ୍ରିଭୁବନ ମଝି

ଉଜ୍ଜ୍ୱଳ ବସନ ଥୋଇଲେ କୋଳେଣ
ଗନ୍ଧ ଅଯେଁଳା ଲେପି କଲେକ ସ୍ନାହାନ ॥୫୯୯୨॥
ସ୍ନାହାନ ସାରି ଦେବି କୁଳରେ ଉଠିଲେ
ପାଲଟି ବସନ ପିନ୍ଧନ୍ତେ ଯୁଧିଷ୍ଠି ଧଇଲେ ॥୫୯୯୩॥
ପିନ୍ଧି ନ ପାରି ଦ୍ରୋପଦି ରହିଲେ ଛିଡ଼ା ହୋଇ
ଛାଡ଼ ବସନ ବୋଲି ଯୁଧିଷ୍ଠିଙ୍କି ଡାକଦେଇ ॥୫୯୯୪॥
ଲଜା ପାଇ ଦ୍ରୋପଦି ଧରିଛନ୍ତି ବସ୍ତ୍ର
ଯେତେଡ଼େ ଅଜ୍ଞାନ ତୁ ହୋଇଲୁ ନୃପନାଥ ॥୫୯୯୫॥
ଆଦିତ୍ୟ ଦେବତା ଯେ ମୋହର ସ୍ୱସୁର
ସେହି ଉଦେ ନୋହୁଣୁ ମୁଂ ଯାଇ ପସିବିଂ ଘର ॥୫୯୯୬॥
ତୁମ୍ଭେ କିମ୍ପା ଜଞାଂଳ କର ଏତେବେଳେ
ଯାହା ମାଗିବ ତାହା ଦେବଇ ଯାଇ ଘରେ ॥୫୯୯୭॥
ତୁମ୍ଭେ ସ୍ୱାମି ମୋର ଧରିଅଛ ବସ୍ତ୍ର
ମୋ ଅଙ୍ଗ ତୁମ୍ଭେ ଛାଡ଼ ଦେଖିବ ଜନ ରୁପଂ[1] ॥୫୯୯୮॥
ମରଣୁ ଲଜାତ ଯିବ ମୋତେ ହୋଇ
ଯୁଧିଷ୍ଠି ବୋଇଲେ ମୁଂ ତୋତେ ମୁକତି ମାଗୁଛଇ ॥୫୯୯୯॥
ଯେମନ୍ତେ ଯେହି ଦେହ ସ୍ୱର୍ଗେ ଯିବିଂ ଘେନି
ଯେହି ବର ମୋତେ ଗୋ ଦିଅ ଜିଗ୍ନସେନି ॥୬୦୦୦॥
ତୁହି ଦୟାକଲେ ସଂସାର ଜିଣିବି ପୁଣି
ତୁହି ପୁଣି ଯେଡ଼େ ଲୋକ ହୋଇଛୁ ମୋର ପତ୍ନି ॥୬୦୦୧॥
ଯେବେ ତୁ ମୋହର ପୁଜ୍ୟକ ହୋଇବୁ
ଗତି ଦିଅ ଛାଡ଼ିବି ବସ୍ତ୍ର ତୁ ପିନ୍ଧିବୁ ॥୬୦୦୨॥
ଯେତେ ବୋଲି ଯୁଧିଷ୍ଠି ଧଇଲେ ପାଦ ବେନି
ହୃଦେ ଦୟା ବସିଲା କହିଲେ ଜିଗ୍ନସେନି ॥୬୦୦୩॥
ବିଚାରିଲେ ଯେହାକୁ କହିଲେ ବାସୁଦେବ[2]
ମୁହିଂ ନ କହିଲେ ଯେ ମୋତେ ନ ଛାଡ଼ିବ ॥୬୦୦୪॥
ଅନ୍ଧାର ତୁଟିଲେ ଉଦେ ହେବ ଦିନ
ରୁପ ଦେଖିବେ ଦେବେ ଅଙ୍ଗେ ନାହିଂ ମୋ ବସନ ॥୬୦୦୫॥
ଯେତେ ବିଚାରି ଦେବି କହିଲେ ଯୁଧିଷ୍ଠିଙ୍କି
ରଖିଲିଂ ତୋତେ ଯେବେ ବିକଳ ତୋର ଦେଖି ॥୬୦୦୬॥
ଚାରିଭାଇଙ୍କି ତୋର କରିବିଂ ଆହାର
ନିଜ ଦେହ ଘେନି ତୁ ଯିବୁ ସ୍ୱର୍ଗପୁର ॥୬୦୦୭॥

୧ । ଖ ପୋଥି – ମୋ ଅଙ୍ଗ ତୁଚ୍ଛା ଦେଖିବେ ସୁର ନର
୨ । ଖ ପୋଥିରେ ଉପରେ ଏହି ଦୁଇ ଧାଡ଼ି ଅଧିକ ଅଛି –
ସେହିଦିନୁ ଯୁଧିଷ୍ଠିର ପୂଜ୍ୟକ ଦ୍ରୌପଦୀ ଯେ ଦେବୀ
ଶୁଣ ଗୋ ଉମା ବୋଲି ଶଙ୍କର କହନ୍ତି

ହୋଇଲା ସତ୍ୟ ମୋର ଗତି ଦିଲିଂ ତୋତେ
ସୁଣିଣ ବସନ ଛାଡ଼ିଦେଲେ ନୃପନାଥେ ॥୬୦୦୮॥
ବସ୍ତ୍ର ପିନ୍ଧି ଗୃହକୁ ଚଳିଲେ ଜିଘ୍ନସେନି
ସେହିଦିନୁ ଯୁଧିଷ୍ଠିର ପୁଜ୍ୟକ[1] ହେଲେ ପୁଣି ॥୬୦୦୯॥
ମାତା ସମ କରି ମାନିଲେ ଯୁଧିଷ୍ଠିର
ସେହିଦିନୁ ଆଉ ନ କଲେ ଶୃଙ୍ଗାର ॥୬୦୧୦॥
ଭଣ୍ଡାର ଜୁର କରି ଯୁଧିଷ୍ଠି ଦାନ ଦିଲେ
ସଙ୍କର ମୁଖ ଚାହିଂ ଗୌରି ପଚାରିଲେ ॥୬୦୧୧॥

## କେତୁକା ଉପାଖ୍ୟାନ ଓ ଦ୍ରୌପଦୀଙ୍କର ପୂର୍ବଜନ୍ମ ବୃତ୍ତାନ୍ତ

ପଞ୍ଚୁ ପାଣ୍ଡବେ ସେ ଦ୍ରୋପଦିର ସ୍ୱାମି
ତାଙ୍କୁ ଖାଇତେ କେମନ୍ତେ ଲୋଡ଼ନ୍ତି ଜିଘ୍ନସେନି ॥୬୦୧୨॥
ବଦୟନ୍ତି ସଦାସିବ ସୁଣଗୋ ଗଉରି
ସତ୍ୟ ଯୁଗେ ଦେବି ଯେ କେତୁକା ରୁପ ଧରି ॥୬୦୧୩॥
ପଥରେ ଗାଧାଅନ୍ତେ[2] ତାର ମାତାକୁ ଦେଖଇ
ଦେଖି ମାତାକୁ ତାର ହାସ୍ୟ ଯେ କରଇ[3] ॥୬୦୧୪॥
ମାତା କପିଳା ତାର ହୋଇଛି ରଜବତି
ପଞ୍ଚଗୋଟା ସଣ୍ଢ ତାର ପଛରେ ଗୋଡ଼ାବନ୍ତି ॥୬୦୧୫॥
କେତୁକା ବୋଇଲେ ଜନନି ତୁ ଏଡ଼େ ବାଇ
ପାଞ୍ଚଗୋଟା ସଣ୍ଢକୁ ତୁ ଅଛୁ ଭଣ୍ଡାଇ ॥୬୦୧୬॥
ଯେକା ଯୁବତିକି କାହିଂ ପଞ୍ଚୁପତି
ସଂସାରେ ସୁଣିଲେ ବୋଲିବେ ଅସତି ॥୬୦୧୭॥
ସୁଣି କପିଳା ବୋଇଲେ ତୁ ବହିଲୁ ଯେଡ଼େ ଗର୍ବ
ମୁହିଂ ତୋହର ଜନନି ବୋଇଲୁ ମୋତେ ମନ୍ଦ ॥୬୦୧୮॥
ମୁହିଂ ତ ଗୋରୁ ରୁପ ଯେ ଆମ୍ଭର ଭୁସଣ
ଗୋଡ଼ାନ୍ତି ପାଞ୍ଚଗୋଟା ରମନ୍ତି ଯେକ ଜଣ ॥୬୦୧୯॥
ଯେଥିକି କେତୁକା ବାଛିଲୁ ନ ଜାଣି
ଯେହି ପଞ୍ଚୁସଣ୍ଢ ହୋଇବେ ତୋର ସ୍ୱାମି ॥୬୦୨୦॥
ଯେମନ୍ତ ବୋଲି ଯହୁଂ ବୋଇଲା କପିଳା
ସେହିକ୍ଷଣି କେତୁକା ସଣ୍ଢକୁ ଗୋଡ଼ାଇଲା ॥୬୦୨୧॥
ବିଚାରିଲା ଯେ ଯଦି ହୋଇବେ ମୋର ବର
ଯେହାଙ୍କୁ ନାସ କରି କରିବିଂ ଆହାର ॥୬୦୨୨॥

୧ । ଘ ପୋଥି – ନପୁଂସେକ
୨ । ଘ ପୋଥି – ଯାଆନ୍ତେ
୩ । ଖ ପୋଥିରେ ଏହି ଦୁଇ ଧାଡ଼ି ନାହିଁ

ଯେ ନାସ ଗଲେ ସରିବ ମୋର ସଳି
ରହିଥିଲେ ମୋତେ ଯେ ଲଗାଇବେ କାଳି ॥୬୦୨୩॥
ଯେମନ୍ତ ବୋଲି ଦେବି ଗୋଡ଼ାନ୍ତି କୋପଭର
ଭୟରେ ବୃସଭେ ପଳାଇଲେ ଖର ॥୬୦୨୪॥
ବହୁତ ଦୁରକୁ ବୃସଭେ ପଳାଇ
ବନଗିରି କନ୍ଦର ଦୃଗମ ଯେତେ ମହି ॥୬୦୨୫॥
କେହୁଣସି ଠାରେ ସଣ୍ଢ ରହି ନ ପାରିଲେ
ସୁରପତି ଠାରେ ସରଣ ପସିଲେ ॥୬୦୨୬॥
ସରଣ ପସନ୍ତେ ଇନ୍ଦ୍ର ରଖିଲେ ସରଣ
କେତୁକା ବୋଇଲେ ମୁଂ ଖାଇବିଂ ଦେବଗଣ ॥୬୦୨୭॥
କେତୁକା ରୁପ ଦେଖି ଇନ୍ଦ୍ର ପଳାଇଲା
ପଞ୍ଚ ବୃସଭଙ୍କୁ କେତୁକା ଗୋଡ଼ାଇଲା ॥୬୦୨୮॥
ଯସୋବନ୍ତି ପୁରେ ପସିଲେ ପଳାଇ
ରହ ରହ ବୋଲି ଡାକିଲେ ବେଦସାଇଂ ॥୬୦୨୯॥
କେତୁକା ବୋଇଲେ ଅଜ୍ଞାନି ବେଦବର
ଯେହାଂକର ସଙ୍ଗେ ତୋତେ କରିବି ଆହାର ॥୬୦୩୦॥
ସୁଣିଣ ବିଧାତା ଭୟରେ ପଳାଇଲା
ସଣ୍ଢକୁ ଘେନି ଆମ୍ଭ ଛାମୁରେ ମିଳିଲା ॥୬୦୩୧॥
ଆମ୍ଭେ ବୋଇଲୁ ତୁମ୍ଭେ ରୁହ ଛଡ଼ଜଣ
ରହନ୍ତେ କେତୁକା ପ୍ରବେସ ସେହିକ୍ଷଣ ॥୬୦୩୨॥
ଭଇରୋବି ମୁର୍ତ୍ତି ଧରି ବିମ୍ବାଓଷ୍ଠି
କି ଅବା ସଂହାର କରିବ ନବସୃଷ୍ଟି ॥୬୦୩୩॥
ଦେବି ରୁପ ଦେଖିଣ ଆମ୍ଭେ ପଳାଇଲୁ
ବ୍ରହ୍ମା ଇନ୍ଦ୍ର ସହିତେଂ ସଙ୍ଗତେ ଘେନିଗଲୁ[1] ॥୬୦୩୪॥
ବୈକୁଣ୍ଠ ବିଷ୍ଣୁଂଠାରେ କହିଲୁଂ ଆଦିଅନ୍ତ[2]
ସେହିଠାରେ କେତୁକା ମିଳିଲା ତୁରିତ ॥୬୦୩୫॥
ବିଷ୍ଣୁ ଭୟ କରି ରହି ନ ପାରିଲେ
ଆମ୍ଭଙ୍କୁ ସଙ୍ଗେ ଘେନି ସେହି ପଳାଇଲେ ॥୬୦୩୬॥
ସପତ ସିନ୍ଧୁ ଜଳେ ପସିଲୁ ଯେ ବୁଡ଼ି
ତହିଂକି କେତୁକାର ପଡ଼ିଲାକ ଧାଡ଼ି ॥୬୦୩୭॥
ଜଳଭୁବନ ଛାଡ଼ି ପଳାଇଲୁ ଆମ୍ଭେ ପୁଣ
ନିରାକାରଠାରେ ପସିଲୁ ସରଣ ॥୬୦୩୮॥
ପିତାଙ୍କ ପାଦେ ପଡ଼ି କହିଲୁଂ ଆଦିଅନ୍ତ
କେତୁକା ସେହିକ୍ଷଣି ହୋଇଲେ ପ୍ରବେସ ତ ॥୬୦୩୯॥

୧ । ଖ ପୋଥି – ସେ ପଞ୍ଚ ବ୍ରହ୍ମା ସହିତେଂ ଆମ୍ଭେ ସ୍ୱର୍ଗପୁର ଗଲୁ
୨ । ଖ ପୋଥି – ବୈକୁଣ୍ଠ ବିଷ୍ଣୁଙ୍କ ଛାମୁରେ ସର୍ବ କହିଲୁଂ ବୃତାନ୍ତ

ପଞ୍ଚ ବୃସଭଙ୍କୁ ଆକ୍ରୋସିଲା ଯାଇ
ରହ ରହ ବୋଲି ଡାକିଲେ ଗୋସାଇଂ ॥୬୦୪୦॥
କେତୁକା ବୋଇଲେ ମୁଂ ଯେହାଙ୍କୁ କରିବଇଂ ଭକ୍ଷ୍ୟ
ଯେ ମୋର ସ୍ୱାମି ବୋଲି କପିଲା ଦିଲେ ସାପ୍ୟ ॥୬୦୪୧॥
ନିରାକାର ବୋଇଲେ ଯାହା ବୋଇଲେ ତୋର ମାତ
ଅବସ୍ୟ ହୋଇବେ ଯେ ତୋହର ଗିରସ୍ତ ॥୬୦୪୨॥
ତୁହି ଗୋଡ଼ାଇଛୁ ଖାଇବା ନିମନ୍ତେ
ଅନ୍ୟସ୍ଥା ନୋହିବ ଯେ ଫଳିବ ଯୁଗତେ ॥୬୦୪୩॥
ସତ୍ୟଯୁଗ ଯାଇ ତ୍ରେତୟା ସରିବ
ଦ୍ୱାପର ହୁଅନ୍ତେ ଜନ୍ମିବେ ବାସୁଦେବ ॥୬୦୪୪॥
ଯେ ପଞ୍ଚସଣ୍ଢ ପଞ୍ଚୁପାଣ୍ଡବେ ହୋଇବେ
ତୁହି ଜନ୍ମ ହୋଇବୁ ଦ୍ରୁପଦ ରାଜା ଘରେ ହାଦେ ॥୬୦୪୫॥
ଦ୍ରୋପଦି ନାମ ଧରି ବରିବୁ ପାଣ୍ଡେବଂଙ୍କୁ
ସମୟେ ଭୋଗ କରି ଖାଇବୁ ତାହାଙ୍କୁ ॥୬୦୪୬॥
ଯେମନ୍ତ ବୋଲି ଯହୁଂ ବୋଇଲେ ନିରାକାର
ହରସ ବିସ୍ମୟେ କେତୁକା ମନର ॥୬୦୪୭॥
ବ୍ରହ୍ମା ବିଷ୍ଣୁ ସଙ୍କର ବୃସଭ ସହିତରେ
କେତୁକା ମୁଖରୁ ଉବୁରିଣ ଗଲେ ॥୬୦୪୮॥

## ତୁଙ୍ଗଭଦ୍ରା ରଷି ଉପାଖ୍ୟାନ

ସତ୍ୟ ଯୁଗ ଯାଇ ତ୍ରେତୟା ହୋଇଲା
କେତୁକା ନାମ ଯାଇ ହୋଇଲା ଯେକବଳା ॥୬୦୪୯॥
ସୁଣଗୋ ଓମା ବୋଲି ସଦାସିବ କହି
ସେ ପଞ୍ଚସଣ୍ଢ ଯେକଦିନେ ନାସ ଯାଇ ॥୬୦୫୦॥
କାଳ ବିକାଳ ଯେକାବେଳେ ବାନ୍ଧି ନେଲେ
ସଜିଂବନି ପୁରେ ପ୍ରବେସ ହୋଇଲେ ॥୬୦୫୧॥
ଚିତ୍ରଗୁପ୍ତ ଦେଖିଲେ ତାଙ୍କ ପତ୍ର
ବୋଇଲେ ବୃସଭେ ଅଟନ୍ତି ପୁଣ୍ୟବନ୍ତ ॥୬୦୫୨॥
ଯେତେକ ପାତେକ ଯେହାଂକର ଥିଲା
ନିରାକାର ଦ୍ରସନେ ସକଳ କ୍ଷୟଗଲା ॥୬୦୫୩॥
ବ୍ରାହ୍ମଣ କୁଳେ ଯେହୁ ହୋଇବେ ଜନମ
ଯେମନ୍ତ ବୋଲି ସେ କହିଲେ କରଣ ॥୬୦୫୪॥
ସୁଣଗୋ ଓମା ବୋଲି ବୋଲନ୍ତି ଦେବକାସି
ତୁଙ୍ଗଭଦ୍ରା ବୋଲିଣ ଯେକଇ ବ୍ରହ୍ମରସିଂ[1] ॥୬୦୫୫॥
ସତୁରି ସହସ୍ର ବରସ ବଞ୍ଚିଲା ସେହି ଯେକା[2]
କନ୍ୟାଯେ ବିଭା ହେଲା ନାମ ତା ଇନ୍ଦୁରେଖା ॥୬୦୫୬॥

---

୧ । ଖ ପୋଥି – ଦେବରଷି
୨ । ଘ ପୋଥି – ତପ କଲା ଯେକା

ପତିପତ୍ନି ତହିଂ ବଞ୍ଚିଲେ କିଛିକାଳ
ସନ୍ତତି ନୋହିବାରୁ ଭାଳିଲେ ମୁନିବରଂ[1] ॥୬୦୫୭॥
ଉତରା ଅଙ୍କ ତିରେ ତପ କଲେ ଯାଇ
ନଉ ସହସ୍ର ବରସ ତପରେ ଦିନ ନେଇ ॥୬୦୫୮॥
କଠୋର ତପରେ ଆମ୍ଭେ ହୋଇଲୁ ପ୍ରସନ୍ନ
ବର ଯାଚି ଦିଅନ୍ତେ ସେ ମାଗିଲେ ନନ୍ଦନ ॥୬୦୫୯॥
ବୋଇଲା ପଞ୍ଚ ନନ୍ଦନ ମୋତେ ଦେବ
ଅସ୍ତୁ ହେଉ ବୋଲିଣ ବୋଇଲୁଂ ସେ ବେଗ ॥୬୦୬୦॥
ଯେତେବେଳେ ଆମ୍ଭେ ତାକୁ ଦିଲୁ ବର
ଦେଖିଲୁ ଯେକ ନନ୍ଦନ ଅଛଇ ଲଲାଟର[2] ॥୬୦୬୧॥
ଆମ୍ଭେ ବୋଇଲୁ ତୁ ମାଗିଲୁ ପାଞ୍ଚଗୋଟି
ଯେକଇ ନନ୍ଦନ ତୋ ଲଲାଟରେ ଅଛି ॥୬୦୬୨॥
ତୁଙ୍ଗଭଦ୍ରା ବୋଇଲେ ଗୋଟିଯେ କିସ ହେବ
ମୋହର ଦୁଖ କି ସେ ଖଣ୍ଡିଣ ପାରିବ ॥୬୦୬୩॥
ପୁତ୍ର ଜନ୍ମ କରି ଯେ ଅନ୍ୟକୁ କଲା ଆସ
ତେବେ ଧିକ ତାହାର ଜନ୍ମ କଲା ସୁତ ॥୬୦୬୪॥
ଦେଖ ମୁଂ ମହିରେ ହୋଇଅଛି ଜନ୍ମ
ରଣକାରି ହୋଇଣ ଗଲା ମୋର ଦିନ ॥୬୦୬୫॥
ଆମ୍ଭେ ବୋଇଲୁଂ ତୁମ୍ଭେ ତ ଅଟ ବେନିପ୍ରାଣି
କିବା ପୋସି ନୋହିଲ ହୋଇଲ ପରରଣି[3] ॥୬୦୬୬॥
ଧନ ବସ୍ତ୍ର ଆଣିଣ କାହାକୁ ତୁମ୍ଭେ ଦିଲ
ବଦୟନ୍ତି ମୁନିବର ସୁଣ ହେ ସଦାସିବ ॥୬୦୬୭॥
କାହାରି ଅନ୍ନ ବସ୍ତ୍ର ମୁହିଂ ଖାଇନାହିଂ
ବିଅର୍ଥେ ଜନ୍ମ ହୋଇଣ ରହିଅଛି ମୁହିଂ ॥୬୦୬୮॥
ଯେଣୁ ବାସୁକି ମୋର ଅର୍ଦ୍ଦଳି ସହଇ
ତେଣୁ ତାହାର ମୁଂ ରଣି ହୋଇଛଇ[4] ॥୬୦୬୯॥
ସ୍ୱର୍ଗର ଇନ୍ଦ୍ର ବରସଇ ପାଣି
ସେହି ଜଳ ଭକ୍ଷି ମୁଂ ହୋଇଅଛି ରଣି ॥୬୦୭୦॥
ସୁର୍ଯଙ୍କ ଆହାଳାଦେ ବ୍ରତନ୍ତି ତପି ମୁନି
ଆଦିତ୍ୟର ତେଣୁ ମୁଂ ହୋଇଅଛି ରଣି[5] ॥୬୦୭୧॥
ପବନ ଦେବତା ପବନ ବହଇ
ତାହାଙ୍କର ରଣି ମୁହିଂ ପବନ ହିଂ ଖାଇ ॥୬୦୭୨॥

---

୧ । ଘ ପୋଥି – ମନର
୨ । ଘ ପୋଥି – କପୋଳର
୩ । ଖ ପୋଥି – ରଣକାରୀ
୪ । ଘ ପୋଥି – ଯେଥକୁ ବିଚାର କର ହେ ଶୁଳପାଣି
୫ । ଖ ପୋଥି – ତେଣୁ କରି ତପରେ ହୋଇଅଛି ରଣୀ

ଯଦି ପାଞ୍ଚ ଗୋଟି ନନ୍ଦନ ମୋତେ ଦେବ
ଗୋଟିଏ ବସୁଧା ସିରରେ ବହିବ ।।୬୦୭୩।।
ପୁତ୍ରର ସିରରେ ବସିବଇଂ ମୁହିଂ
ଗୋଟିଏ ସ୍ୱର୍ଗରେ ହୋଇବ ସଚିସାଇଂ ।।୬୦୭୪।।
ପୁତ୍ର ଦେଲା ନିର କରିବି ଆହାର
ଗୋଟିଏ ହୋଇବ ନୃପତି ରତ୍ନାକର ।।୬୦୭୫।।
ଗୋଟିଏ ସୁର୍ଯ ହୋଇ କରିବ ଆହାଲାଦ
ଗୋଟିୟେ ମଳୟ ପବନ ବହୁଥିବ ।।୬୦୭୬।।
ପୁତ୍ର ବିନୁଂ ମୋହର ନଥିବ ଅନ୍ୟ ଆସ
ତେଣୁ ତୁମ୍ଭଙ୍କୁ ମାଗଇ ପାଞ୍ଚ ପୁତ୍ର ମହେସ ।।୬୦୭୭।।
ଯେବଣ ଜନ ପୁତ୍ର ଜନ୍ମ କରିଥାଇ
ପୁତ୍ର ଯେବେ ତାହାର ଦୁଖ ନ ଦିଅଇ[୩] ।।୬୦୭୮।।
ପୁତ୍ର ଥାଉ ପିତା ଯେବେ ଅନ୍ୟକୁ କରେ ଆସ
ତେବେ ତାହାର ପୁତ୍ର ଜନ୍ମ କଲା ଅନ୍ୟାୟସ[୪] ।।୬୦୭୯।।
ଆମ୍ଭେ ବୋଇଲୁ ତୋତେ ଯେକଇ ପୁତ୍ର ଦେବା
ବିଧାତା ଲେଖନ ଅନ୍ୟସ୍ତା ନ କରିବା ।।୬୦୮୦।।
ପଞ୍ଚଗୁଣ ଧରି ଯେକଇ ପୁତ୍ର ଦେବା
ତିନିପୁର ପାଳିବ ହୋଇବ ସେ ରାଜା ।।୬୦୮୧।।
ତୋତେ ବସାଇବ ଅମର ମଣ୍ଡଳର
ଯେମନ୍ତ କହି ଆମ୍ଭେ ହୋଇଲୁ ଅନ୍ତର ।।୬୦୮୨।।
ବର ପାଇ ମୁନି ମଢ଼ିଆକୁ ଗଲା
ଭାରିଯା ଋତୁକାଳେ ଅଙ୍ଗସଙ୍ଗ ହେଲା ।।୬୦୮୩।।
ପାଞ୍ଚବେଳ ମୁନି କଲାକ ରମଣ
ପଞ୍ଚଧାରା ବିର୍ଯ୍ୟ ହୋଇଲା ଯେକସମ ।।୬୦୮୪।।
ଚତୁର୍ଥ ମାସରେ ବିର୍ଯ୍ୟ ହୋଇଲାକ ପିଣ୍ଡ[୧]
ପାଞ୍ଚ ମାସରେ ଲୋଡ଼ା ହୋଇଲା ଜିବ ବ୍ରହ୍ମାଣ୍ଡ ।।୬୦୮୫।।
ପଞ୍ଚ ବୃସଭଙ୍କ ପ୍ରାଣ ଥିଲା ରହି
ତାହା ଜନ୍ତୁପତି ସେ ପିଣ୍ଡେ ନିବେସଇ ।।୬୦୮୬।।
ଦସମାସ ସମ୍ପୁର୍ଣ୍ଣେ ଜନମ କୁମର
ଯେକ ଗୋଟା ପିଣ୍ଡରୁ ପାଞ୍ଚ ଗୋଟା ସିର ।।୬୦୮୭।।
ଦିନକୁ ଦିନ ବଢ଼ି ହୋଇଲାକ ଯୁବା
ଦିଗପାଳ ସମାନେ ଦିସଇ ବିର ସୋଭା ।।୬୦୮୮।।
ପିଅର ଜନନି ଦେଖିଣ ତୋସ ହୋଇ
ତୃଷ୍ଣାଜଳ ବୋଲିଣ ପୁତ୍ରର ନାମ ଦେଇ ।।୬୦୮୯।।

---

୧ । ଘ ପୋଥି – ନିଅଇ
୨ । ଘ ପୋଥି – କରିବା ବିଅର୍ଥ
୩ । ଘ ପୋଥି – ହୋଅଇ କୁଳିପିଣ୍ଡ

## ତୃଷ୍ଣାଜଳ ଋଷି ଉପାଖ୍ୟାନ

ତୃଷ୍ଣାଜଳ ହୋଇଲା ପୁଣ୍ୟ ପରାୟଣ
ଗଙ୍ଗାତଟେ[୧] ବସିଣ ଘୋଷିଲା ହରିନାମ ।।୬୦୯୦।।
କିଛିଦିନ ଅନ୍ତେ ପ୍ରସନ୍ନ ଦେବହରି
ଅମର ମଣ୍ଡଳେ ତାକୁ କଲେ ବଜ୍ରଧାରି ।।୬୦୯୧।।
ଯହୁଂ ତୃଷ୍ଣାଜଳ ହୋଇଲା ନୃପନାଥ[୨]
ପୁଷ୍ପ ବିମାନେ ବସାଇ ନିଲା ପିତାମାତ ।।୬୦୯୨।।
ତୁଙ୍ଗଭଦ୍ରା ମୁନି ବସିଲେ ସ୍ୱର୍ଗପୁର
ପୁତ୍ର ସୁରପତି କାହାକୁ ନାହିଂ ଡର ।।୬୦୯୩।।
ତୃଷ୍ଣାଜଳ ରସି ସ୍ୱର୍ଗରେ ଇନ୍ଦ୍ର ହୋଇ
ପଞ୍ଚାଣ୍ଡବେ[୩] ସହସ୍ର ବରସ ଗଲା ବହି ।।୬୦୯୪।।
କୃପାମହି ବୋଲି ଅନୁଷ୍ଟକ ରସିର ନନ୍ଦନ
ତପ କରି ସେହୁ ତୋସିଲା ଭଗବାନ ।।୬୦୯୫।।
ଶ୍ରୀହରି ବର ଦିଲେ ମାଗିଲେ ତପସାଇଁ
ଅନ୍ୟରେ କାର୍ଯ୍ୟ ନାହିଁ ହୋଇବିଂ ଇନ୍ଦ୍ର ମୁହିଂ ।।୬୦୯୬।।
ଅସ୍ତୁ ହେଉ ବୋଲିଣ ଶ୍ରୀହରି ବୋଇଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ।।୬୦୯୭।।
କୃପାମହି ରସି ହରି ବରପାଇ
ଅମର ମଣ୍ଡଳେ ସେ ପ୍ରବେସ ହେଲେ ଯାଇ ।।୬୦୯୮।।
ଡଗରକୁ ବୋଇଲା ସିଘ୍ରେ ଯାଅ ଚଳି
ଇନ୍ଦ୍ରକୁ କହିବୁ ସେ ଆସ୍ଥାନ ଯାଉ ଛାଡ଼ି ।।୬୦୯୯।।
ନୋହିଲେ ପ୍ରାଣେ ତାକୁ କରିବଇଂ ନାସ
ଯେମନ୍ତ ଆଜ୍ଞା ଦେଲେ ଅନୁଷ୍ଟକ ସିସ୍ୟ ।।୬୧୦୦।।
ଡଗର ମୁଖୁ ସୁଣି ତୃଷ୍ଣାଜଳ ରସି
ବୋଇଲେ ମୋତେ ଯାହା ମାରିବ ସେହି ଆସି ।।୬୧୦୧।।
ଯେମନ୍ତେ ବୋଲିଣ ସେ ମଉନେ ବସିଲା
ପିଣ୍ଡରୁ ପଞ୍ଚ ଆତ୍ମା ପୁରୁଷ କାଢ଼ିଲା ।।୬୧୦୨।।
ପ୍ରାଣ ପାନ ବ୍ୟାନ ଉଦ୍ୟାନ ସମାନ
ପଞ୍ଚଠାବ କରିଣ ରଖିଲା ମଘବାନ ।।୬୧୦୩।।
ସୁର୍ଯମଣ୍ଡଳକୁ ପ୍ରାଣ ଗଲା ଚଳି
ପାନ ପବନକୁ ରହିଲା ଆବୋରି[୪] ।।୬୧୦୪।।
ବ୍ୟାନ ବଜ୍ରଧର ଦେହରେ ବିଶ୍ରାମିଲା
ଅଶ୍ୱିନି କୁମାରକୁ ଉଦ୍ୟାନ ଆଶ୍ରେ କଲା ।।୬୧୦୫।।

---

୧ । ଘ ପୋଥି – ଯୋଗାଧି
୨ । ଘ ପୋଥି – ସୁରନାଥ
୩ । ଘ ପୋଥି – ପଞ୍ଚାଉନ
୪ । ଘ ପୋଥି – ଆଶ୍ରେକରି

ଯୋଗ ଅନେକେ ଯହୁଁ ଇନ୍ଦ୍ରଗଲା ନାସ
କାଳ ବିକାଳେ ତାକୁ ବାନ୍ଧିଲେ ଚର୍ମଫାସ ॥୬୧୦୬॥
ଯମଠାରେ ଦେଲେ ପତ୍ର ପଢ଼ିଲେ କରଣ
ବୋଇଲେ ଯେ ମୁନିର ବହୁତ ଅଛି ପୁଣ୍ୟ ॥୬୧୦୭॥
କଥା ଗୋଟିଯେକ କରିଅଛି ଅସାର
ପରନାରି ହରି ପାପ ବହିଛି କନ୍ଧର ॥୬୧୦୮॥
ବିଶ୍ୱାବସୁ ଗନ୍ଧର୍ବ ଭାରିଯା ମାନସେନି
ସ୍ନାହାନ କରିଗଲା ଗଙ୍ଗାଜଳେ ପୁଣି ॥୬୧୦୯॥
ସଚିଠାରୁ ଦୁଗୁଣ ଅଟଇ ସୁନ୍ଦର
କାମେ ମତ୍ତ ହୋଇ ହରିଲା ବଜ୍ରଧର ॥୬୧୧୦॥
ସୁଣିଣ ଗନ୍ଧର୍ବ ଇନ୍ଦ୍ରକୁ ସାପ୍ୟ ଦିଲା
ଅବସ୍ୟ ମହିରେ ଜନ୍ମ ହୋଇବୁ ବୋଇଲା ॥୬୧୧୧॥
ତୋହର ଭାରିଯା ରମ୍ଭିବ ଅନ୍ୟ ପୁରୁଷକୁ
ଯେମନ୍ତ ବୋଲିଣ ସାପ୍ୟ ଦିଲା ବିଶ୍ୱାବସୁଂ ॥୬୧୧୨॥
ତେଣୁ ଯେ ବସୁଧାରେ ହୋଇବ ଜନମ
ଯେମନ୍ତ ବୋଲି ସେ ବୋଇଲେ କରଣ ॥୬୧୧୩॥
ସୁଣିଣ ଜନ୍ତୁପତି ତାହାକୁ ଦୟାକଲା
ସୋମବଂସେ ବ୍ୟାସ ବିର୍ଯ୍ୟରେ ଜନମିଲା ॥୬୧୧୪॥
ସେହି ସେ ପଣ୍ଡୁ ନୃପତି ହୋଇଲେ
ବ୍ରହ୍ମସାପେ କଇଂତାକୁ ରମଣ ନକଲେ ॥୬୧୧୫॥
ଦୁର୍ବାସାଙ୍କ ଜପାମାଳି କଇଂତା ଥିଲା ପାଇ
ମାଳାଧରି ସୁମରନ୍ତେ ରମିଲେ ଛାୟାସାଇଂ ॥୬୧୧୬॥
ଆଦିତ୍ୟଙ୍କ ବିର୍ଯ୍ୟରେ ପୁତ୍ର ହେଲା ଜାତ
ଯୁଧିଷ୍ଟି ନାମ ତାର ହୋଇଲା ବିଖ୍ୟାତ ॥୬୧୧୭॥
ପବନ ବିର୍ଯ୍ୟେରେ ଭିମ ଜନମିଲା
ଇନ୍ଦ୍ରର ବିର୍ଯ୍ୟେରେ ଅର୍ଜୁନ ଜାତ ହେଲା ॥୬୧୧୮॥
ଅଶ୍ୱିନି କୁମାରଙ୍କ ପୁତ୍ର ସେ ନକୁଳ
ପଣ୍ଡୁ ସଙ୍ଗ ହୋଇଲା ମାଦ୍ରିର ସଙ୍ଗତର ॥୬୧୧୯॥
ପୁତ୍ର ଜନ୍ମ ହୋଇଲା ପଣ୍ଡୁ ନାସ ଗଲା
ସହ ମାରି ସହଦେବ ନାମ ସେ ପାଇଲା ॥୬୧୨୦॥
ତେଣୁ ସେ ପଞ୍ଚୁପାଣ୍ଡେବ ନାମ ପାଇ
ଦ୍ରୁପଦର ଘରେ ଯେକବଳା ଜନ୍ମ ହୋଇ ॥୬୧୨୧॥
ବର୍ଣ୍ଣମାଳା ଦେଇ ପାଣ୍ଡେବଙ୍କୁ ବରି
ପୁର୍ବକଥା ଚେତିଣ ରହିଲା ଆବୋରି ॥୬୧୨୨॥

୧ । ଘ ପୋଥିରେ ତଳେ ତେଣୁ ଯେ ବସୁଧାରେ ଠାରୁ ରମଣ ନକଲେ ପର୍ଯ୍ୟନ୍ତ ନାହିଁ

ତେଣୁ ଦ୍ରୋପଦିର ପାଣ୍ଡେବ ହେଲେ ଭକ୍ଷ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିୟମ୍ବକ ॥୬୧୨୩॥

## ଦ୍ରୌପଦୀ ସହିତ ପଞ୍ଚୁପାଣ୍ଡବଙ୍କର ବନଗମନ

କହ ହେ ବିଶ୍ୱନାଥ ବୋଲି ପଚାରେ ଗଉରି
ତଦନ୍ତେ କିସ ଚରିତ କହ ସୁଳଧାରି ॥୬୧୨୪॥
କହନ୍ତି ସଦାସିବ ସୁଣଗୋ ଗଉରି
ବୃସଭ[1] ସୁକ୍ଳ ଚଉଠି ବାର ନାମ ସଉରି ॥୬୧୨୫॥
ଯୁଧିଷ୍ଟି ବିଜେ କଲେ ହସ୍ତିନା ଭୁବନ
ଦେଖିଣ ଆନନ୍ଦ ସେ ହୋଇଲା ଦୁର୍ଯୋଧନ ॥୬୧୨୬॥
ଯୁଧିଷ୍ଟି ବସିଲେ ଯାଇଣ ଆସନ
ସକ୍କୁନି ବୋଇଲା ପସାଖେଳ ବେନିଜନ ॥୬୧୨୭॥
ସୁଣିଣ ଯୁଧିଷ୍ଟି ପସାକୋଠି କାଟି
ଦୁର୍ଯୋଧନ ସଙ୍ଗତେ ପସାଖେଳି ବସିଲେଟି ॥୬୧୨୮॥
ଦୁର୍ଯୋଧନ ବୋଇଲା ରଖିବ ପିଢ଼ କିସ
ସକ୍କୁନି ବୋଇଲା ରଖ ଧନ ଦେସ ॥୬୧୨୯॥
ଯେହୁ ସେ ହାରିବ ନ ରହିବ ଗ୍ରାମ
କୁଟୁମ୍ବ ସହିତେ ଘେନି ପସିବ ଘୋର ବନ ॥୬୧୩୦॥
ଦୁର୍ଯୋଧନ ବୋଇଲେ ଯାହା ମାମୁଂ ମୋ କହିଲା
ମୋହର ମନକୁ ସେ କଥା ଯୋଗାଇଲା ॥୬୧୩୧॥
ବାର ବରସ ପୁରିଲେ ରାଜ୍ୟକୁ ଆସିବ
ଗୁପତରେ ଥିବ ପ୍ରକଟ ନୋହିବ ॥୬୧୩୨॥
ହେଉ ହେଉ ବୋଲିଣ ବୋଇଲେ ଯୁଧିଷ୍ଟି
ସକ୍କୁନିକି ବୋଇଲେ ମାମୁ ଆଣ ପସାକାଠି ॥୬୧୩୩॥
ମାନଗୋବିନ୍ଦ ବୋଇଲେ ମୋର ହୋଇଲା ପଞ୍ଚୁଆତି
ବାମଞ୍ଝା ନ ପଡ଼ିଲେ ତୁ ହାରିବୁ ଯୁଧିଷ୍ଟି ॥୬୧୩୪॥
ପିଢ଼ ରଖି ଯୁଧିଷ୍ଟି ପସା ଗଡ଼ାଇଲେ
ପଡ଼ିଲା ପଞ୍ଚୁଆତି ସକଳ ହାରିଲେ ॥୬୧୩୫॥
ତଦନ୍ତରେ ମାନଗୋବିନ୍ଦ ପସାକାଠି ଘେନିଲା
ଜିତ ଜିତ ବୋଲିଣ ସକ୍କୁନି ଡାକିଲା ॥୬୧୩୬॥
ପଡ଼ିଲା ପଞ୍ଚୁଆତି ଜିଣିଲେ ଦୁର୍ଯୋଧନ
କରତାଳି ମାରିଣ ହସିଲା ଦୁସାସନ ॥୬୧୩୭॥
ଭାଇକି ଘେନି ଯୁଧିଷ୍ଟି ଯାଅ ହେ ବନକୁ
ରାଜ ଭଣ୍ଡାର ପ୍ରଜା ଦେଇଣ ଆମ୍ଭଙ୍କୁ ॥୬୧୩୮॥
ଯାଅ ଯା ଯୁଧିଷ୍ଟି ନ ଥାଅ ଯେଠାର
ପେଲି ପକାଇଲା ଗାନ୍ଧାରି କୁମର ॥୬୧୩୯॥

୧ । ଘ ପୋଥି – ଋଷଭ

ହୋଇଲେ ଆଶ୍ଚାର୍ଯ୍ୟ ଦେଖି ଭିସ୍ମ ଦ୍ରୋଣ
ଦୁସାସନକୁ ଆଜ୍ଞା ଦିଲା ଦୁର୍ଯୋଧନ[1] ॥୬୧୪୦॥
ଯୁଧିଷ୍ଠିଙ୍କି ଘେନି ଯାଅ ଯାଅ ବୋଲି
ପଞ୍ଚୁପାଣ୍ଡବଙ୍କୁ ରାଜ୍ୟରୁ ଦିଅ କାଢ଼ି ॥୬୧୪୧॥
ରାଜ୍ୟ ଧନ ଭଣ୍ଡାର ଆମ୍ଭର ହେଲା କୋଠ
ଯେମନ୍ତ ବୋଲି ଦୁର୍ଯୋଧନ ମନରେ ହେଲା ହୃଷ୍ଟ[2] ॥୬୧୪୨॥
ଆଉ ନ ଯାଆନ୍ତୁ ବାରୁଣାବନ୍ତ ଭୁବନ[3] ॥୬୧୪୩॥
ଯେମନ୍ତ ବୋଲି ଆଜ୍ଞା ପାଇଣ ଚଳଇ ଦୁସାସନ
ଯୁଧିଷ୍ଠିଙ୍କି ଘେନିଣ ଗଲା ଅନ୍ଧର ନନ୍ଦନ[4] ॥୬୧୪୪॥
ଥୋକାଯେକ ସନ୍ୟ ସଙ୍ଗତରେ ନେଇ
ପାଣ୍ଡେବଙ୍କ ସଙ୍ଗତେ କନ୍ଦଳ ଲଗାଇ ॥୬୧୪୫॥
ଚାରିଭାଇ ଦେଖିଣ ହୋଇଲେ ଆଶ୍ଚାର୍ଯ୍ୟ
ଯୁଧିଷ୍ଠି ବୋଇଲେ ଭାଇ ହୋଇଲା ପ୍ରମାଦ ॥୬୧୪୬॥
ପସାରେ ରାଜ୍ୟଧନ ହାରିଅଛି ମୁହିଂ
ତୁମ୍ଭଙ୍କୁ ଘେନିଣ ବନକୁ ଯିବଇଂ ॥୬୧୪୭॥
ସୁଣିଣ ଚାରିଭାଇ ହୋଇଲେ ମଉନ[5]
କୋଇଂତା ଭାଳିଣ କଲେକ ରୋଦନ ॥୬୧୪୮॥
ବୋଇଲେ ଯୁଧିଷ୍ଠି ତୁ ହୋଇଲୁ ଅପାଣ୍ଡୁକ
କିମ୍ପେ ପସା ଖେଳିଲୁ ମାନଗୋବିନ୍ଦ ସଙ୍ଗ ଯେକ ॥୬୧୪୯॥
ଯେବେ ତାଙ୍କ ସଙ୍ଗତେ ପସା ତୁ ଖେଳିବସିଲୁ
ବନକୁ ଯିବୁ ବୋଲି କିପାଇଂ ପିଢ଼ କଲୁ ॥୬୧୫୦॥
ପୁର୍ବେ ତୁମ୍ଭକୁ ଘେନି ଗଲିରେ ବନକୁ
ଯେତେ କଷ୍ଟ ଦେଲି ବାବୁ ଯେ ମୋର ଦେହକୁ ॥୬୧୫୧॥
ଦିନେ ଅନ୍ନ ମିଳିଲେ ନ ମିଳେ ପାଞ୍ଚଦିନ
କାହିଂ ଜଳ ନ ମିଳେ ତୃସାରେ ନିଏ ଦିନ ॥୬୧୫୨॥
କେତେ ଦିନ କଷ୍ଟ ବାବୁ ସହିଲି ବନର
ପୁଣି ଆସି ସମ୍ପଦ ଅର୍ଜିଲି ରାଜ୍ୟର ॥୬୧୫୩॥
ଯେବେ ପୁଣି ହାରିଲ ବନସ୍ତକୁ ଯିବ ତୁମ୍ଭର
ବନ ଭ୍ରମିବାକୁ ମୋ ସରିରେ ନାହିଂ ବଳ ॥୬୧୫୪॥
ଯେମନ୍ତ କହି କୁନ୍ତି କଲେକ ରୋଦନ
ଯୁଧିଷ୍ଠି ବୋଇଲେ ମାଗୋ ସ୍ଥିର କର ମନ ॥୬୧୫୫॥

୧ । ଘ ପୋଥିରେ ଏହା ତଳେ ଯୁଧିଷ୍ଠିଙ୍କି ଘେନି ଠାରୁ ଚଳଇ ଦୁଶାସନ ପର୍ଯ୍ୟନ୍ତ ନାହିଁ
୨ । ଖ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ପୋଥି – ଆଶ୍ୱାସି ଆସ ଯାଇ ବାରୁଣାବନ୍ତ ଲୋକ
୪ । ଘ ପୋଥି – ଧୁଶାସନ
୫ । ଘ ପୋଥି – ବୈଗୁନ୍ୟ

ଯାହା ସେ ଭାଲ ପଟେ ଦଇବ ଅଛି ଲିହି
କାହାରି ବୋଲେ ସେ ଅନ୍ୟସ୍ଥା ନୋହଇ ॥୬୧୫୬॥
ଯେମନ୍ତ କହୁଂ କହୁଂ ପ୍ରବେସ ଦୁସାସନ
ବୋଇଲା ଦଣ୍ଡେ ତୁମ୍ଭେ ନଥାଅ ଯେହୁ ସ୍ଥାନ ॥୬୧୫୭॥
କୋଇନ୍ତା ବୋଇଲେରେ ଥିବା ଦିନା ଚାରି
ଦୁସାସନ ବୋଇଲା ଯାଅ ଗୋ ବାହାରି ॥୬୧୫୮॥
ଯେତେ ବୋଲି ଦୁସାସନ ହୋଇଲା ତମ ତମ
ଯେଣୁ ପାଣ୍ଡବଙ୍କୁ ଦଇବ ହେଲା ବାମ ॥୬୧୫୯॥
ଯୁଧିଷ୍ଠି ବୋଇଲେ ଅର୍ଜୁନଙ୍କୁ ଚାହିଂ
ଚାଲ ଯିବା ବାବୁ ଯେ ପୁରେ ଦଣ୍ଡେ ନଥିବାକ ରହି ॥୬୧୬୦॥
ପୁତ୍ର ପନି ତୋହର ଆଣ ସମ୍ଭାଳିଣ
ପ୍ରବର୍ତ୍ତି ଦିଅ ତାଙ୍କୁ ଦ୍ୱାରିକା ଭୁବନ ॥୬୧୬୧॥
ସୁଣିଣ ସର୍ବସାଚି ଅନ୍ତପୁରେ ଗଲା
ଦ୍ରୋପଦି ସୁଭଦ୍ରାକୁ କହିଂଣ ଆଣିଲା ॥୬୧୬୨॥
ବନ ଯିବାକୁ ସମସ୍ତେ ସଜ ହେଲେ
ନଗ୍ରଜନମାନେ ହାହାକାର କଲେ ॥୬୧୬୩॥
ପଞ୍ଚୁ ପାଣ୍ଡେବ ଭାରିଯା ମାତା ସଙ୍ଗେ ଘେନି
ଅନକୁଳ କଲେ ନକ୍ଷତ୍ର ଅଶ୍ୱିନି ॥୬୧୬୪॥
ଦୁସାସନ ଆଜ୍ଞାରେ ସେନାଯେ ଚଳିଗଲେ
ପାଣ୍ଡେବଙ୍କୁ ରାଜ୍ୟରୁ ପେଲି ପକାଇଲେ ॥୬୧୬୫॥
ଗ୍ରାମରୁ ପାଣ୍ଡବ ପାଞ୍ଚଭାଇ ହୋଇଲେ ବାହାର
ମୁଖମାଡ଼ି କୋଇଂତା ପଡ଼ିଲେ ଭୁମିର ॥୬୧୬୬॥
କୋଇଂତା ବିକଳ ଦେଖିଲେ ଯୁଧିଷ୍ଠିର
ବୋଇଲେ ମାତା ଯାଅ ବିଦୁରର ଘର ॥୬୧୬୭॥
ଆମ୍ଭେ ଯେଉଂକାଳେ ହୋଇବୁଂ ବିଦିତ[1]
ତୁମ୍ଭେ ସେହିକାଳେ ଆସିବ ଗୋ ମାତ ॥୬୧୬୮॥
କ୍ରୋଧଭର ହୋଇ କୋଇଂତା ବାହୁଡ଼ିଲେ
ହସ୍ତଧରି ବିଦୁର ତାହାଙ୍କୁ ଘରକଇ ନିଲେ ॥୬୧୬୯॥
ପୁଣି କିଛି ଦୁର ଗଲେ ପଥ ବହି
ସୁଭଦ୍ରା ପଥରେ ନ ପାରିଲେ ଯାଇ ॥୬୧୭୦॥
ଯୁଧିଷ୍ଠି ବୋଇଲେ ଅର୍ଜୁନ ମୁଖ ଚାହିଂ
ଦ୍ୱାରିକାରେ ଯେହାଂକୁ ଛାଡ଼ି ଆସ ଯାଇ ॥୬୧୭୧॥
ସୁଭଦ୍ରାକୁ ଦ୍ୱାରିକାକୁ ନିଲା ସର୍ବସାଚି
ଦେଖିଣ ବିସାଦ ହୋଇଲେ ଶ୍ରୀବଚ୍ଛି ॥୬୧୭୨॥
ଅର୍ଜୁନକୁ ଗୋବିନ୍ଦ ଆଶ୍ୱାସି କହିଲେ
ସୁଭେ ବନବାସ କରି ଆସ ଭଲେ ॥୬୧୭୩॥

୧ । ଘ ପୋଥି – ଉଦିତ

ଦିନେ ଦ୍ୱାରିକାରେ ଥାଅ ବାବୁ ରହି
ଅର୍ଜୁନ ବୋଇଲା ବାଟରେ ଆସିଛି ବସାଇ ।।୬୧୭୪।।
ନମସ୍କାର କରନ୍ତେ କଲ୍ୟାଣ କଲେ ଭଗବାନ
ଗୋବିନ୍ଦଠାରୁ ବାସେବି କଲାକ ଗମନ ।।୬୧୭୫।।
ଦ୍ରୋପଦିଙ୍କି ଘେନି ପାଣ୍ଡେବ ପାଞ୍ଚଭାଇ
ଦକ୍ଷିଣ ଦିଗକୁ ଗଲେ ପଥ ବହି ।।୬୧୭୬।।
ସରଭଙ୍ଗ ନଦି ପାର ହୋଇଗଲେ
ତିନିଦିନେ ଗଙ୍ଗାତଟରେ ରହିଲେ ।।୬୧୭୭।।
କଇବ୍ରତ ନାବରେ ପାରି କରିଦିଲା
ସୁରଭି ବନସ୍ତରେ ସନ୍ଧ୍ୟାକାଳ ହେଲା ।।୬୧୭୮।।
ସନ୍ଧ୍ୟା ସୁମରିଣ ଭକ୍ଷିଲେ କନ୍ଦମୁଳ
ସୁଣଗୋ ଓମା ବୋଲି ବୋଲନ୍ତି ସୁଳଧର ।।୬୧୭୯।।
ଭାରତ ହରିବଂସ ଯେ ଅପୁର୍ବ ରସବାଣି
ପାପ ବିନାସଇ ବକତା ସୁଣନ୍ତା ପ୍ରାଣି ।।୬୧୮୦।।
ଭାରତ ଭାଗବତ ଆବର ରାମାୟଣ
ଯେମାନ ସୁଣିଲେ ଯେତେକ ହୁଏ ପୁଣ୍ୟ ।।୬୧୮୧।।
ଯେ ସାହାସ୍ର ସୁଣନ୍ତେ ତେତେ ପୁଣ୍ୟ ହୋଇ
ବୈବସୁତ ଆଗେ ଅଗସ୍ତି ଛନ୍ତି କହି ।।୬୧୮୨।।
ସୁଣିଲେ ସପ୍ତପୁରୁଷଙ୍କ ପାପ ହୋଇ ଧ୍ୱଂସ
ଶ୍ରୀହରି ଚରଣେ ସରଣ ସାରୋଳା ଚଣ୍ଡି ଦାସ ।।୬୧୮୩।।
ଜୟତୁ ବାକ୍ୟ ଦେବି ସିଧ୍ୟ ଗୋ ସାରୋଳା
ସର୍ବସୁଭ ଦାୟେନି ସର୍ବଜନ ସଙ୍କୁଳା ।।୬୧୮୪।।
ଯଂଖେରପୁରବାସି କନକପୁରକୁ ତୋରଦୃଷ୍ଟି
କଳିକାଳ ସଂସାରକୁ ତୁ ଅଛୁ ଆକଟି ।।୬୧୮୫।।
ସଂସାର ଜନମାନେ କରନ୍ତି ତୋତେ ଚିନ୍ତା
ସଙ୍କଟତାରେଣି ନାମ ଦେଇଛି ବିଧାତା ।।୬୧୮୬।।
କହ କହ ମହ ମହ ଲହ ଲହ ଜିହ୍ୱା
ଭଇରୋବି ମୁରତି ପୃଥିବି ଆଚ୍ଛାଦି ଭୈରବା ।।୬୧୮୭।।
ନୟନେ କଜ୍ୱଳ କଟିରେ ରତ୍ନସାଢି
ଫରହର ନେତ ଉଡ଼ଇ ତୋହରି ।।୬୧୮୮।।
ଆଦ୍ୟ ଅବତାରେ ଜନ୍ମିଣ ପୃଥିବି ସଞ୍ଜି
ଯେକ ରୁପ ହୋଇ ଅନେକ ରୁପେ ବସି ରଞ୍ଜି ।।୬୧୮୯।।
ମୁହିଂ ମୁର୍ଖ ମାନେବ ତୋର ସେବକ ଅଟଇ
ତୋତେ ଆଶ୍ରେ କରି ମୁଂ ସାହାସ୍ର ଲେଖଇଂ ।।୬୧୯୦।।
ଭାରତ ହରିବଂସ ଯେ ଅପୁର୍ବ ବାରାନିଧି
ତାହା ମନ୍ଥିବାକୁଂ[1] ମୁଂ କରିଅଛି ବୁଦ୍ଧି ।।୬୧୯୧।।

୧ । ଘ ପୋଥି – ଗ୍ରନ୍ଥିବାକୁ

କିଞ୍ଚିତେ ଦୟା ମୋତେ କର ମହାମାଇ
ସୁଦ୍ରମୁନି ସାରୋଳା ଦାସ ସରଣ ପସଇ ।।୬୧୯୨।।

## ସତ୍ୟ ଆମ୍ଭ ଉପାଖ୍ୟାନ

ସୁଣଗୋ ଓମା ବୋଲି ବୋଲନ୍ତି ମହେସ
ସକଞ୍ଚନଂ[1] ରାଜାର ହୋଇଲା ସତେ ସିସ ।।୬୧୯୩।।
ତାହାଙ୍କର ଭାରା ସହି ନ ପାରିଲା ମହି
ହୃଦେ ଚିନ୍ତା କରି ବିଚାରିଲେ ସାବିତ୍ରିର ସାଇଂ ।।୬୧୯୪।।
ଦୁର୍ଯୋଧନ ଯୁଧିଷ୍ଠିଙ୍କି ପସା ଖେଳାଇଲେ
ଯୁଧିଷ୍ଠିଙ୍କି ହରାଇ ବନସ୍ତକୁ ପେସିଲେ ।।୬୧୯୫।।
ଦ୍ରୋପଦି ଯେମନ୍ତେ ରହନ୍ତେ ରାଜ୍ୟର
କିଞ୍ଚେକ ନ ମରନ୍ତା ନ ଯାନ୍ତା ରାଜ୍ୟଭାର ।।୬୧୯୬।।
ଦୃଷ୍ଟ ନିବାରିବାକୁ ଦ୍ରୋପଦି ଗଲେ ବନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ।।୬୧୯୭।।
ଗଙ୍ଗା କୁଳରୁ ପାଣ୍ଡବେ ଚଳିଗଲେ
ଦୁସାସନି ଦେସରେ ପ୍ରବେସ ହୋଇଲେ ।।୬୧୯୮।।
ସେ ରାଜ୍ୟରେ ଲୋକେ ସବୁ ଗଣେସ ପୁଜାକରି
ଗଣେସ ପ୍ରସନ୍ନେ ନଥାଇ ରୋଗ ବ୍ୟାଧି କରି ।।୬୧୯୯।।
ବୃକ୍ଷଲତା ଗୁଳ୍ମ ଯେତେକ ଅଛଇ
ସମସ୍ତେ ପଲମ୍ବିତେ ମଜଂରା ନ ଖାଇ ।।୬୨୦୦।।
ନିର୍ମଳ ସ୍ଥାନ ଦେଖି ରହିଲେ ପାଣ୍ଡବେ
ମାସେକ ରହି ତହୁଂ ଚଳିଗଲେ ବେଗେ ।।୬୨୦୧।।
ନର୍ମଦା ତିରେ ଯାଇଂ ହୋଇଲେ ପ୍ରବେସ
ସେଠାରେ ଅଛନ୍ତି ଅନେକ ମୁନିସିସ୍ୟ ।।୬୨୦୨।।
କୁଡ଼ିଆ କରି ତହିଂ ରହିଲେ ମାସ ଚାରି
ପିତୃଶ୍ରାଦ୍ଧ କରିତେ ମୃଗଜିବ ମାରି ।।୬୨୦୩।।
ସୁଣଗୋ ଓମା ବୋଲି ବୋଲନ୍ତି ଦିଗାମ୍ବର
ଦୁସାସନ କହିଲା ମାନଗୋବିନ୍ଦ ଆଗର ।।୬୨୦୪।।
ବୋଇଲା ପାଣ୍ଡବେଙ୍କୁ ରାଜ୍ୟରୁ ଦିଲିଂ କାଢ଼ି
ସୁଣିଣ ଆନନ୍ଦ ହୋଇଲା ଦଣ୍ଡଧାରି ।।୬୨୦୫।।
ପୁରଜଂନ ପଣ୍ଡା ସୁତ ସୁରଜଂନ ପଣ୍ଡା
ପାଣ୍ଡେବଙ୍କୁ ଠାବ କର ବୋଲି ନୃପତି ଆଗ୍ୟାଂ ଦିଲା ।।୬୨୦୬।।
ଯେବେ ପାଇବୁ ତୁ ପାଣ୍ଡେବଙ୍କ ଲେସ[2]
ଲେଉଟି ବନରେ ରହିବେ ସେ ଦ୍ୱାଦସ ବରସ ।।୬୨୦୭।।

୧ । ଘ ପୋଥି – ସଙ୍କଚନ
୨ । ଘ ପୋଥି – ସନ୍ଦେସ

ମାଗିବୁ ଆମ୍ବଫଳ ଦେବେ ଯେବେ ସେହି
ଜାଣିମା ଅଟନ୍ତି ସେ ପାଣ୍ଡେବ ପାଞ୍ଚ ଭାଇ ॥୬୨୦୮॥
ନୃପତି ଆଗ୍ୟାଂରେ କପଟି ବିପ୍ର ଚଳିଗଲା
ବହୁତ ବନଗିରି ଖୋଜି ପାଣ୍ଡେବଙ୍କୁ ଠାବକଲା ॥୬୨୦୯॥
ଯୁଧିଷ୍ଟି ବୋଇଲେ ଫଳ ଯୋଗାଅ ହେବା ବ୍ରାହ୍ମଣଙ୍କୁ
ଭୋଜନ କରି ସୁସ୍ଥ କରିବେ ଦେହକୁ ॥୬୨୧୦॥
ବ୍ରାହ୍ମଣ ବୋଇଲା ମୁଂ ଅନ୍ୟ ଫଳ ନ ଭକ୍ଷଇ
ଆମ୍ବଫଳ ଦିଲେ କିଛି ଆହାର କରିବଇଂ ॥୬୨୧୧॥
ଯୁଧିଷ୍ଟି ବୋଇଲେ ବ୍ରାହ୍ମଣ ଦେବ କି କସଣ
ଯେ ସଙ୍କଟୁ ରକ୍ଷା କର ହେ ନାରାୟଣେ[1] ॥୬୨୧୨॥
ନାରାୟଣ ନାମ ଧରନ୍ତେ ପ୍ରବେସ ଭାବଗ୍ରାହି
ଦେଖିଣ ପାଣ୍ଡେବ ଆନନ୍ଦିତ ହୋଇ[2] ॥୬୨୧୩॥
ଯୁଧିଷ୍ଟି ବୋଇଲେ ଯେ ବ୍ରାହ୍ମଣର କସଣ[3]
ଯେ ସଙ୍କଟରୁ ରକ୍ଷା କରହେ ନାରାୟଣ[4] ॥୬୨୧୪॥
ଆଜ କନ୍ୟମାସ ଆମ୍ବ କାହିଂ ଅଛି
ଗୋବିନ୍ଦ ବୋଇଲେ ଯେବେ ସତ୍ୟାଚାରେ ବ୍ରତି ॥୬୨୧୫॥
ତେବେ ସେ ଯେହିକ୍ଷଣି ଉଠିବ ଚୁତବୃକ୍ଷ
ଫଳ ଧରି ପାଚିବ ଭକ୍ଷିବ ଯେହୁ ବିପ୍ର ॥୬୨୧୬॥
ଯୁଧିଷ୍ଟି ବିକୋଦର ନକୁଳ ସହଦେବ ଫାଲଗୁନି
ସତ୍ୟ ସତ୍ୟ ବୋଲି ହସ୍ତ ମାଇଲେକ ଭୁମିଁ[5] ॥୬୨୧୭॥
ଉଠିଲା ଚୁତବୃକ୍ଷ ପଲ୍ଲବି ବଉଳିଲା
ଫଳ ଧରି ପାଚି ଭୁମିରେ ପଡ଼ିଲା ॥୬୨୧୮॥
ଦିଲେକ ବ୍ରାହ୍ମଣଙ୍କୁ ଘେନିଣ ଚଳିଗଲା
ଗୋବିନ୍ଦ ବିଚାରିଲେ ଆସି ପ୍ରମାଦ ପଡ଼ିଲା ॥୬୨୧୯॥
ବ୍ରାହ୍ମଣ ଆମ୍ବ ନିଲା ଚିହ୍ନିବେ କଉରୋବେ
ଲେଉଟି ବାରବରସେ ରହିବେ ପାଣ୍ଡବେ ॥୬୨୨୦॥
ଯେତେ ବିଚାରି ପଛେ ଗୋଡ଼ାଇ ଭଗବାନ
ଭେଟିଲେ ବ୍ରାହ୍ମଣକୁ କରୁଛି ସ୍ନାହାନ ॥୬୨୨୧॥
ମାୟାରେ ବ୍ରାହ୍ମଣକୁ କୁଳ ନ ଦିସଇ
ତେଣେ ଆମ୍ବ ଫଳକୁ ନିଲେକ ଚୋରାଇ ॥୬୨୨୨॥
ସ୍ନାହାନ ସାରି ବିପ୍ର ଦେଖିଲାକ ଝୁଲି
ଆମ୍ବଫଳ ନ ଦେଖି ହସ୍ତିନାରେ ମିଳି ॥୬୨୨୩॥

୧ । ଘ ପୋଥରେ ତଳ ଚାରି ଧାଡ଼ି ନାହିଁ
୨ । ଖ ପୋଥିରେ ଏହି ଧାଡ଼ି ନାହିଁ
୩ । ଖ ପୋଥି – ଯୁଧିଷ୍ଟି ବୋଇଲେ ଯେ ବିପ୍ର ଆମ୍ବ ମାଗୁଛଇ
୪ । ଖ ପୋଥିରେ ଏହି ଧାଡ଼ି ନାହିଁ
୫ । ଖ ପୋଥି – ଫାଲଗୁନି ଦୃପଦୀ ସତ୍ୟ ସତ୍ୟ ବୋଇଲେ ତତକାଳ

ବୋଇଲା ପାଣ୍ଡେବଙ୍କୁ ଅଇଲଇ ଦେଖି
ପାଣ୍ଡବେ ସତ୍ୟ କଲେ ଆମ୍ବବୃକ୍ଷ ଉଠି ॥୬୨୨୪॥
ଆଣୁଥିଲି ଆମ୍ବ କେହୁ ହରି ଘେନିଗଲା
ସୁଣି କଉରୋବେ ତା ମୁଖେ ଦେଲେ ବିଣ୍ଡା ॥୬୨୨୫॥
ବୋଇଲେ ପିତା ତୋର ପୁରଜଂନ ପଣ୍ଡା ଥିଲା
ପାଣ୍ଡେବଙ୍କୁ ମାରିତେ ଯେ ଜଉଘର କଲା ॥୬୨୨୬॥
ତାହାକୁ ପୋଡ଼ି ମାରି ପାଣ୍ଡବେ ପଳାଇଲେ
ତୋତେ ପୁଣ ଦୁତ କଲି ଯେହୁ କାଳେ ॥୬୨୨୭॥
ଅଇଲୁ ବାହୁଡ଼ିଣ ତାହାଙ୍କୁ ନ ପାଇ
ଯେତେ ବୋଲି ବିପ୍ରକୁ ଦୁର କରି ଦେଇ ॥୬୨୨୮॥
ଯାହାଙ୍କୁ ସାହା ହୋଇଛନ୍ତି ଦେବହରି
କୋଟିଏ ଦୃଷ୍ଟ ହୋଇ ତାହାଙ୍କୁ କିସ କରି ॥୬୨୨୯॥
ହରି ସେ ପରମଗତି ପାରେ ତାକୁ କେହି
ହରି ବିନୁ ଅନ୍ୟ ଆଶ୍ରେ ମୋର ନାହିଂ ॥୬୨୩୦॥
ହରି ସେ ସରଣ ରକ୍ଷଣ ଜଗତ
ହରିପାଦେ ସରଣ ସାରୋଳା ଚଣ୍ଡି ଦାସ ॥୬୨୩୧॥

## ସଚଳା ହରଣ ଓ ଇନ୍ଦ୍ର ଗୋବିନ୍ଦ ଯୁଦ୍ଧ

ବୋଲନ୍ତି ସାକାମ୍ବେରି ଶୁଣହେ ସଦାସିବ
ଶ୍ରୀହରି ଚରିତ ମୋ ଆଗରେ କହିବ ॥୬୨୩୨॥
ଦୁଷ୍ଟକୁଳ ନାସି ତାରଇ ବିବୁଧାଦି
ଦେଖଇ ହଟକୁଟ କାହାରି ନୋହେ ବାଦି ॥୬୨୩୩॥
ସୁଣଗୋ ପ୍ରିୟା ବୋଲି ବୋଲନ୍ତି ସଦାସିବ
ଇନ୍ଦ୍ର ଗୋବିନ୍ଦର ପୁଣ ହୋଇଲା ବିବାଦ ॥୬୨୩୪॥
ତାହା ତୋତେ କହିବା ସୁଣ ସ୍ଥିର ହୋଇ
ଜାହା ସୁଣିଲେ ପାପ ଭାରା ସେ ଛେଦଇ ॥୬୨୩୫॥
ବୈସାଖ ସୁକଳ ଚଉଠି ଭୃଗୁବାର
ଚିତ୍ରାନାମେ ନକ୍ଷତ୍ର ଭୋଗ୍ୟ ସେ ଦିନର ॥୬୨୩୬॥
ବବନାମେ କରଣ ପଣ୍ଡିତ ନାମେ ଯୋଗ
ସେଦିନ ଦ୍ୱାରିକାରେ ହୋଇଛି ଉଛବ ॥୬୨୩୭॥
ଶ୍ରୀକୃଷ୍ଣଙ୍କ ନାରି ସେଦିନରେ କରନ୍ତି ସ୍ନାହାନ
ସୁନ୍ୟରେ ଯାଉଥିଲା ଗନ୍ଧର୍ବ ଚିତ୍ରସେନ ॥୬୨୩୮॥
ଜମ୍ବୋବତି ଦୁହିତା ନାମ ତା ସଚଳା
କୋଟିଏ ସସିଠାରୁ ତା ରୁପ ଉଜଳା ॥୬୨୩୯॥
ଦେଖି ଚିତ୍ରସେନ ରଥ ଖସାଇଲା
କନ୍ୟାକୁ ହରି ଘେନି ଆକାସ ମାର୍ଗେଂ ଗଲା ॥୬୨୪୦॥
ନିଜ ଭୁବନରେ ପ୍ରବେସ ହେଲା ଯାଇ
ସଚଳା କନ୍ୟାକୁ ଗନ୍ଧର୍ବ ସୁରତି ମାଗଇ ॥୬୨୪୧॥

କନ୍ୟା ବୋଇଲା ମୁଁ ହୋଇଛି ଅବିଭାଇ
ଅବଳା ନାରି ମୁଁ ସୁରତି ନ ଜାଣଇ ।।୬୨୪୨।।
ପିତା ମୋର ଅଟନ୍ତି ଜଗତ ଅଧିକାରି
ସେହି ବିଭା ଦିଲେ ମୁଁ ହୋଇବି ତୁମ୍ଭରିଂ ।।୬୨୪୩।।
ସୁଣିଣ ଗନ୍ଧର୍ବ ରଖିଲା ଜତ୍ନ କରି
ସଙ୍କର ମୁଖଚାହିଂ ପଚାରେ ଗଉରି ।।୬୨୪୪।।
ଶ୍ରୀକୃଷ୍ଣର ଦୁହିତା ଚିତ୍ରସେନ ନିଲା
ଏଡ଼େଗର୍ବ କେମନ୍ତେ ଗନ୍ଧର୍ବ ବିହିଲା ।।୬୨୪୫।।
କହନ୍ତି ସଦାସିବ ସୁଣଗୋ ପ୍ରାଣସହି
ପୁର୍ବେ ବ୍ରହ୍ମାଙ୍କଠାରୁ ସେ ଥିଲା ବର ପାଇ ।।୬୨୪୬।।
ଦିନେ ସୁଧର୍ମା ସଭାରେ ହେଉଥିଲା ନୃତ୍ୟ
ନାଚନ୍ତି ଅପକ୍ଷରି ଗନ୍ଧର୍ବେ ଗାବନ୍ତି ଗିତ ।।୬୨୪୭।।
ବ୍ରହ୍ମା ବିଷ୍ଣୁ ନାରଦ ଆମ୍ଭ ସହିତରେ
ସମସ୍ତେ ବସିଛନ୍ତି ସୁଧର୍ମା ସଭାରେଂ ।।୬୨୪୮।।
ଚିତ୍ରସେନ ଗନ୍ଧର୍ବ ଧରିଥିଲା ତାଳ
ସଭାରେ ଥୁ ଥୁ କରି ପକାଇଲା ତାମ୍ବୁଳ ।।୬୨୪୯।।
ଦେଖିଣ କୋପିତ ହୋଇଲେ ବେଦବର
ଥୁ ଥୁ କରି ତାମ୍ବୁଳ ପକାଇଲୁ ଏ ସଭାର ।।୬୨୫୦।।
ତେଣୁ କରି ସ୍ୱାନ ଜନ୍ମ ହୁଅ ଯାଇ ମଞ୍ଚ
ସୁଣି ଚିତ୍ରସେନ ପଡ଼ିଲା ପାଦଗତ ।।୬୨୫୧।।
ଅଳପ ଦୁସକୁ ସାପ୍ୟ ତୁମ୍ଭେ ଦିଲ
କେମନ୍ତେ ଗତି ପାଇ ହୋଇବି ଗନ୍ଧର୍ବ ।।୬୨୫୨।।
ବ୍ରହ୍ମା ବୋଇଲେ ତୁ ସ୍ୱାନ ହୋଇଥିବୁ
ସତ୍ୟ ତ୍ରେତୟା ଜାଇ ଦ୍ୱାପର ହୋଇବ ବାବୁ[2] ।।୬୨୫୩।।
ଜ୍ୱଳାବାହୁ ନଗ୍ରେ ଥିବୁ ଦେହବହି
ସେହି ନଗ୍ରେଂ ଦ୍ୱିଜବର ବିଷ୍ଣୁ ପାଣିଗ୍ରାହିଂ ।।୬୨୫୪।।
ସ୍ନାହାନ କରି ଜଳେ ପାଦ ଜିବ ଧୋଇ
ସେ ପାଦଜଳେ ତୁହି ପଡ଼ିବୁ ଯେ ସୋଇ ।।୬୨୫୫।।
ବ୍ରାହ୍ମଣ ସେବକ ତୋତେ ଟେକାଏ ମାରିବ
ସେ ଟେକା ବାଜନ୍ତେ ପ୍ରାଣ ବିସର୍ଜିବ ।।୬୨୫୬।।
ସେକାଳେ ପ୍ରାଣ ଛାଡ଼ି ପାଇବୁ ନିଜ ଦେହ
ଜାଅରେ ସ୍ୱାନ ହୋଅ ବୋଲି ବୋଲନ୍ତି ପିତାମହ ।।୬୨୫୭।।
ଗନ୍ଧର୍ବ ବୋଇଲା ଯଦି ପାଇବି ଏଡ଼େ ଦୁଖ
ଗତିପାଇ ଆସିବାରେ ହୋଇବ କେଉଂସୁଖ ।।୬୨୫୮।।
ବିଧାତା ବୋଇଲେ ଯେବେ ଦ୍ୱାପର ହୋଇବ
ଦେବକି ଗର୍ଭରେ ଜନ୍ମିବେ ବାସୁଦେବ ।।୬୨୫୯।।
ସୋଳ ସହସ୍ର କନ୍ୟା ଅଷ୍ଟନାରି ବିଭାହେବେ
କନ୍ୟାକେ ଦସ ପୁତ୍ର ଏକ ଦୋହିତା ଜନମିବେ ।।୬୨୬୦।।
ସଚଳା ବୋଲି କନ୍ୟା ଜମ୍ବୋବତିର ନନ୍ଦନି
ସ୍ନାହାନ କରୁଥିବ ଆସିବୁ ତାକୁ ଘେନି ।।୬୨୬୧।।
ଏମନ୍ତ ବୋଲି ଯହୁଂ ବୋଇଲେ ଚଉମାଥ
ସେହିକ୍ଷଣି ସ୍ୱାନ ହୋଇଲା ଇନ୍ଦ୍ରସୁତ ।।୬୨୬୨।।
ମଞ୍ଚପୁର ରହନ୍ତେ ତିନିଯୋଗ ଗଲା
ବ୍ରାହ୍ମଣ ପାଦଜଳେ ମୁକତି ପାଇଲା ।।୬୨୬୩।।
ବଦୟନ୍ତି ସଦାସିବ ସୁଣଗୋ ଗଉରି
ଜେତେବେଳେ ଗନ୍ଧର୍ବ କନ୍ୟାନିଲା ହରି ।।୬୨୬୪।।
ନିଲା ନିଲା ବୋଲି ଚହଳ ପଡ଼ିଲା
କେହୁ କାହାକୁ ନିଲା କେହି ତଥ୍ୟ ନ ଜାଣିଲା ।।୬୨୬୫।।
ନନ୍ଦ ଉପନନ୍ଦ ଉଗ୍ରସେନ ଆଦି କରି
ସମସ୍ତେ କନ୍ୟାକୁ ନପାଇଲେ ଲୋଡ଼ି ।।୬୨୬୬।।
ହରି ବଳରାମ ପାଇଲେ ବିସାଦ
ଏମନ୍ତ ସମଏ ମିଳିଲେ ନାରଦ ।।୬୨୬୭।।
ସମସ୍ତେ ମୁନିକି କଲେ ନମସ୍କାର
ଆସନ ଯୋଗାଇଲେ ବସିଲେ ମୁନିବର ।।୬୨୬୮।।
ନାରଦ ବୋଇଲେ ଆଜ ବିରସ ତୁମ୍ଭରି
ଗୋବିନ୍ଦ ବୋଇଲେ କେ ହରିନିଲା କୁମାରି ।।୬୨୬୯।।
ନାରଦେ ବୋଇଲେ ହରିନିଲା ଇନ୍ଦ୍ରକୁମର ଚିତ୍ରସେନ
କନ୍ୟାକୁ ବସାଇ ନେଉଛି ବିମାନ ।।୬୨୭୦।।
ଅଇଲଇଂ ଦେଖି କହିଲଇଂ ତୁମ୍ଭଙ୍କୁ
ପାରିଲେ ରଣ କରି ଆଣହେ କନ୍ୟାକୁ ।।୬୨୭୧।।
ଏମନ୍ତ ବୋଲି ମୁନି ହୋଇଲେ ଅନ୍ତର
ଉଗ୍ରସେନକୁ ଆଜ୍ଞା ଦିଲେ ଚକ୍ରଧରଂ ।।୬୨୭୨।।
ସନ୍ୟ ସଜକର ସ୍ୱର୍ଗପୁର ଜିବା
ଇନ୍ଦ୍ର ସହିତେ ଦେଖିବା ସର୍ବଦେବା ।।୬୨୭୩।।
ସୁଣିଣ ଉଗ୍ରସେନ ଘୋଷଣ ଦିଆଇ
ସାତବଂସ ଜାଦବ ବାହାରି ସଜହୋଇ ।।୬୨୭୪।।
ଶ୍ରୀହରି ଆଜ୍ଞାଦିଲେ ଜାଅରେ ପଦ୍ମନ
ବନସ୍ତରୁ ଘେନିଆସ ପାଣ୍ଡେବ ଅର୍ଜୁନ ।।୬୨୭୫।।
ଅର୍ଜୁନ ଅଇଲେ ଯେ ଇନ୍ଦ୍ରକୁ ଜିଣିବା
ବିଳମ୍ବ ନ କରିଣ ଗମନ କର ବାବା ।।୬୨୭୬।।

୧ । ଘ ପୋଥି – ତୋର ନାରୀ
୨ । ଘ ପୋଥି – ସେହିରୂପେ କିଛି ଦିନ ଯିବ ବାବୁ

ବାସୁଦେବ ଆଜ୍ଞାରେ ପଦ୍ମନ ଗଲା ଚଳି
ସୁଣଗୋ ଓମା ବୋଲି ବୋଲନ୍ତି ଦେବସୁଲି ॥୬୨୭୭॥
ଦାରୁକ ସାଜିଲା ନନ୍ଦିଘୋସ ରଥ
ବସିଲେ ବାସୁଦେବ ସୁଦ୍ରିସେନ ଘେନି ହସ୍ତ ॥୬୨୭୮॥
ବିଜଏ ବଳରାମ ତାଳଧ୍ୱଜ ରଥେ
ଜାଦବ ବଳ ସଇନି ଘେନିଲେ ସଙ୍ଗତେ ॥୬୨୭୯॥
ମେରୁ ମେଖଳାରେ ପ୍ରବେସ ହୋଇଲେ
ନାରଦ ଦେଖି ଜାଇ ଇନ୍ଦ୍ରକୁ କହିଲେ ॥୬୨୮୦॥
ସୁଣିଣ ସୁରପତି ହୃଦରେ ବହି କୋପ
ଜାଦବ ବଳ ଆଜ କରିବଇ ଦହିଜ ॥୬୨୮୧॥
ମାନବ ହୋଇଣ ଏଡ଼େ ଭରସା କାହାର
ଦେବତା ସଙ୍ଗତେ କେମନ୍ତେ କରିବେ ସମର ॥୬୨୮୨॥
ନନ୍ଦ ଗଉଡ଼ ପୁଅ ଅଟନ୍ତି ରାମହରି
କିଞ୍ଚିତ ଯୁଦ୍ଧକରି ପକାଇବି ମାରିଂ ॥୬୨୮୩॥
ଏମନ୍ତ କହି ଇନ୍ଦ୍ର ସାଜିଲା ଦେବଗଣ
ଆଜ୍ଞାଦିଲା ମଞ୍ଚକୁ ଜାଅରେ ଚିତ୍ରସେନ ॥୬୨୮୪॥
ନିସ୍କାଞ୍ଚନ ବନରେ ପାଣ୍ଡବ ଛନ୍ତି ରହି
ଅର୍ଜୁନକୁ ଘେନିଆସ ଯୁଧିଷ୍ଟିଙ୍କୁ କହିଂ ॥୬୨୮୫॥
ଅଇଲେ ସର୍ବସାଚି କରିବିଂ ସମର
ଜାହାକୁ ଭଏ କରନ୍ତି ତିନିପୁର ॥୬୨୮୬॥
ଆଜ୍ଞାପାଇ ଗନ୍ଧର୍ବ ପୁଷ୍ପବିମାନ ସାଜି
ଗମନ କରିଗଲା ତ୍ରିଭୁବନ ମଝି ॥୬୨୮୭॥
ଯୁଧିଷ୍ଟି ନଦିରେ କରୁଥିଲେ ସ୍ନାହାନ
ସୁର୍ଯ୍ୟ ଦେବତାକୁ ଦିଅନ୍ତି ଜଳଦାନ ॥୬୨୮୮॥
ଜଳଟେକି ଦିଅନ୍ତେ ଦେଖିଲେ ପୁଷ୍ପଜାନ
ପ୍ରବେସ ହୋଇଲା ଗନ୍ଧର୍ବ ଚିତ୍ରସେନ ॥୬୨୮୯॥
ସୁଣଗୋ ଓମା ବୋଲି ସଦାସିବ କହିଂ
ଅର୍ଜୁନଠାରେ ତେଣେ ପଦ୍ମନ ମିଳଇ ॥୬୨୯୦॥
କହିଲା ଆଦିଅନ୍ତ ସୁଣିଲା ଧନୁର୍ଜଇ
ବୋଇଲେ ଚାଲ ଜିବା ଯୁଧିଷ୍ଟିକି କହି ॥୬୨୯୧॥
ଏମନ୍ତ ବିଚାରନ୍ତେ ପ୍ରବେଶ ଯୁଧିଷ୍ଟି
ବୋଇଲେ ସ୍ୱର୍ଗକଇ ଜାଅରେ କିରଟି ॥୬୨୯୨॥
ଇନ୍ଦ୍ର ଗୋବିନ୍ଦର ହୋଇବ ସମର
ଆସିଛି ଚିତ୍ରସେନ ଜାଅ ଧାତିକାର ॥୬୨୯୩॥
ଅର୍ଜୁନ ବୋଇଲା ସେହି ସମର ନିମନ୍ତେ
ପଦ୍ମନକୁ ପେସି ଦେଇ ଅଛନ୍ତି ଜଗନ୍ନାଥେଂ ॥୬୨୯୪॥
ଜାଉଛି ଶ୍ରୀହରିଙ୍କି କରିବିଂ ଦ୍ରସନ
ଯୁଧିଷ୍ଟି ବୋଇଲେ ମୋତେ ପଡ଼ିଲା କସଣ ॥୬୨୯୫॥
ଇନ୍ଦ୍ର ଆମ୍ଭ ପିତା ଗୋବିନ୍ଦ ଅଟନ୍ତି ହିତକାରି
କାହାଠାକୁ ଜିବା ବାବୁ କହନି ବିଚାରି ॥୬୨୯୬॥
ମୁହିଂତ ଅଗ୍ରତରେ ଦେଖିଲିଂ ଚିତ୍ରସେନ
ଅର୍ଜୁନ ବୋଲଇ ମୁଂ ଆଗେଂ ଦେଖିଲି ପଦ୍ମନ ॥୬୨୯୭॥
ଜାହାକୁ ଅଗ୍ର ମୁଂ ଦେଖିଲି ନୟନର
ଅନ୍ୟ ନ ବିଚାରି ଜିବି ତାହାର ସଙ୍ଗତର ॥୬୨୯୮॥
ଯଧିଷ୍ଟି ବୋଇଲେ ଜେବେ ପଦ୍ମନ ସଙ୍ଗତେ ଜିବୁ
ଇନ୍ଦ୍ରରାଜା ସଙ୍ଗତେ ବିବାଦ ନ କରିବୁଂ ॥୬୨୯୯॥
ଜାଦବକୁଂ ଆଶ୍ୱାସି ଦେବଙ୍କୁ ରଖଜାଇ
ବେନି ବଳେ ପୌରୋଷ ଆମ୍ଭର ଥିବ ରହିଂ ॥୬୩୦୦॥
ଏମନ୍ତ ବୋଲି ପାଥକୁ ତିଆରି ଯୁଧିଷ୍ଟି
କାମଦେବ ସଙ୍ଗତେ ଗମିଲା କିରଟି ॥୬୩୦୧॥
ମେରୁ ମେଖଳାରେ ଭେଟିଲେ ବନମାଳି
ପଚାରଇ ଆଦିଅନ୍ତ ଗୋବିନ୍ଦ ପାଦେଂ ପଡ଼ିକରି ॥୬୩୦୨॥
ସକଳ କହିଲେ ହରି ସୁଣିଲା ଧନୁର୍ଜଇ
ବୋଇଲା ମୋତେ ଜେବେ ଆଣିଲ ଡକାଇ ॥୬୩୦୩॥
ତୁମ୍ଭେ କିପାଂ ସନ୍ୟ ଘେନି ଜୁଝିବ ଚକ୍ରଧର
ମୁହିଂ ଏକାୟେଂ ଜାଇ କରିବି ସମର ॥୬୩୦୪॥
ଇନ୍ଦ୍ର ସହିତେ ଗନ୍ଧର୍ବବଳ ଜିଣିଂ
ଘେନିଣ ଆସନ୍ତି ତୁମ୍ଭର ନନ୍ଦନି ॥୬୩୦୫॥
ଯୁଧିଷ୍ଟି ଆଜ୍ଞା ନାହିଂ ଇନ୍ଦ୍ରକୁ ଜିଣିତେ
ନ କରିବି ରଣ ଜିବିଂ ତୁମ୍ଭର ସଙ୍ଗତେଂ ॥୬୩୦୬॥
ବଦୟନ୍ତି ମହେସ ସୁଣଗୋ ପ୍ରାଣସହିଂ
କହିଲା ଚିତ୍ରସେନ ଇନ୍ଦ୍ର ଆଗେଂ ଜାଇ ॥୬୩୦୭॥
ନଇଲା ଅର୍ଜୁନ ପଦ୍ମନ ଗଲା ଘେନି
ସୁଣିଣ ବିରସ ହୋଇଲା ବଜ୍ରପାଣିଂ ॥୬୩୦୮॥
ଐରାବ୍ରତେ ବିଜେ ଘେନିଣ ବଜ୍ର ପୁଣିଂ
ସଙ୍ଗତେ ଘେନିଲା ଗନ୍ଧର୍ବ ସଇନି ॥୬୩୦୯॥
ଜେ ଜାହା ଆୟଧ ଘେନିଣ ହସ୍ତର
ପ୍ରବେସ ହୋଇଲେ ଜାଇ ମେରୁ ମେଖଳାର ॥୬୩୧୦॥
ବାଜିଲାକ ରଣ ହୋଇଲେ ଏକମେଳ
ସେନାକୁ ସେନାଏ ହୋଇଲେ ମହାଗୋଳ ॥୬୩୧୧॥
ସାତ୍ୟକିର ସଙ୍ଗେ ଜୁଝିଲା ମାତଳି
ଚନ୍ଦ୍ରସିରାକୁ ଦେଖି ପଦ୍ମନ ଉଗାଳି ॥୬୩୧୨॥
ଗଦର ସଙ୍ଗତେ ପତି[1]ରଣ କଲା
ସାମ ସମିରଣ[2] ସମର ହୋଇଲା ॥୬୩୧୩॥

---

୧ । ଘ ପୋଥି – ଗବ
୨ । ଘ ପୋଥି – ସାଜ ସମିର

ଦୃଭାନୁ ରଣକଲା ସତଧନୁ ତୁଲେ
ହୁହୁ ହବି ବେନି ସମର ଘୋର କଲେ ॥୬୩୧୪॥
ଅନାଦୃଷ୍ଟ ଭୁମନୁ କଲେକ ଘୋର ରଡ଼ି
ଅଜିତ କୁଳସ ଲାଗିଲେ ଗଡ଼ାଗଡ଼ି ॥୬୩୧୫॥
ଉଦ୍ଧବ ସଙ୍ଗତେ ଜୁଝିଲା ବୁଧଶ୍ରବା
ଜୟନ୍ତାକୁ ଦେଖି ଜୟନ୍ତସେନ ହୋ ଗୋଡ଼ାଇଲା ॥୬୩୧୬॥
କଟାକ୍ଷ ସଙ୍ଗେ ଜୁଝିଲା ପାରିସଦ
ବିଶ୍ୱାବସୁକୁ ଉଗାଳିଲେ ମହାନାଦ ॥୬୩୧୭॥
ଅନଳସେନ ସଙ୍ଗେ ସତ୍ୟା[1] ଜୁଝିଲା
ସିଂହନାଦ[2]କୁ ଦେଖି ନୈରୁତ ଓଗାଳିଲା ॥୬୩୧୮॥
ବିରଭଦ୍ର ସଙ୍ଗତେ ଜୁଝିଲା ବିଭାନୁ
ଅଙ୍ଗାରପନ୍ନଗକୁ ଓଗାଳିଲେ କୃଷ୍ଣତନୁ ॥୬୩୧୯॥
ଉଦୟକୁ ଦେଖି ହବି ଗୋଡ଼ାଇଲା
ସୋମଦତ ସଙ୍ଗତେ ସମିଷ୍ଟ ବାଦକଲା ॥୬୩୨୦॥
ଏମନ୍ତେ ଏକକୁ ଆରେକ ଲାଗିଲେ ସମର
କେ କାହାକୁ ହାଣଇ କେହୁ ବିନ୍ଧେ ସର ॥୬୩୨୧॥
ବଳରାମ ସଙ୍ଗତେ ଜୁଝିଲା ମରୁତ
ତ୍ରିହୋତ୍ରି ଦେଖି ଓଗାଳେ ସୋମଦତ ॥୬୩୨୨॥
ଇନ୍ଦ୍ର ଗୋବିନ୍ଦର ହୋଇଲା ଭେଟାଭେଟି
ବିନ୍ଧନ୍ତି ନାରାଜ ହୋଅନ୍ତି ହକାହକି ॥୬୩୨୩॥
କହନ୍ତି ସୁରପତି ସୁଣରେ କହ୍ନାଇ
ଇତର ଜନପ୍ରାୟେ ମୋତେ ମଣୁ ତୁହି ॥୬୩୨୪॥
ସୁଚିମୁନରେ କି ମେରୁ ଉପୁଡ଼ଇ[3]
ପବନ ବହିଲେକି ପୃଥିବି ଉଡ଼ିଯାଇ ॥୬୩୨୫॥
ସୂର୍ଯ୍ୟ କିରଣରେ କି ସୁଖଇ ସିନ୍ଧୁଜଳ
ଟେକା ବାଜି ଚୁନା କି ଆକାସମଣ୍ଡଳ ॥୬୩୨୬॥
ସୁତାଖିଅ କରେ କି ନକ୍ଷତ୍ରମାଳ ଗୁନ୍ଥି
ପବନ ବନ୍ଦ ହୋଇବ କି ବସାଇଲେ ଫାସି ॥୬୩୨୭॥
ଅର୍ଘା ବକା ସଣ୍ଢା କଂସ କେସି ନାସି
ସେହିମତେ ମୋତେ ଅଛୁରେ ଭରସି ॥୬୩୨୮॥
ଏହିକ୍ଷଣି ନାସ କରିବିଂ ବେନି ଭାଇ
ଯାଦବ ବଳ ସନ୍ୟ ସବୁ ଦେବିଂରେ ଉଡ଼ାଇ ॥୬୩୨୯॥
ବଦୟନ୍ତି କେସବ ସୁଣହେ ସଶ୍ରଯୋନି
ତୋ ପୁତ୍ର ଆଣିଲା ଯେ ମୋହର ନନ୍ଦନି ॥୬୩୩୦॥

୧ । ଘ ପୋଥି – ସତ୍ୟାସେନ
୨ । ଘ ପୋଥି – ମେଘନାଦ
୩ । ଘ ପୋଥି – ସୁମେରୁ ଫୁଟଇ

ତେଣୁ କରି ଆମ୍ଭେ ଯେ ଅଇଲୁ ସମର କରି
ତୁହି ସମର କରୁ କଥାତ ନ ବିଚାରି ॥୬୩୩୧॥
ତୁହି ଜେ କହିଲୁଂ ମୁହିଂ ବଡ଼ଲୋକ
ମୁହିଂ ହୋଇଥିଲିଂ ଗୋପର ବାଳେକ ॥୬୩୩୨॥
ସେକାଳେ ବାଦ କଲୁଂ ମୋହର ସଙ୍ଗତର
ଅଠର ଖଣ୍ଡ ମେଘଂ ବରସିଲେ ଜଳ ॥୬୩୩୩॥
ତୁହି ରଣ କଲୁଂ ପବନକୁ ଘେନି
ତୋଳିଲିଂ ଗିରିବର ହସ୍ତରେ ଧଇଲିଂ ॥୬୩୩୪॥
ସମରେ ସପ୍ତଦିନେ ତୁହି ଗଲୁଂ ହାରି
ଥକିଣ ରହିଲୁଂ ତୁ ବରସିଣ ବାରି ॥୬୩୩୫॥
ଗୋପି ଗୋପାଳଙ୍କର ନ ତିନ୍ତିଲା ରୋମ
ସେହି ଇନ୍ଦ୍ର ସିନା ତୁ କହୁଅଛୁ ଢମଂ ॥୬୩୩୬॥
ଶ୍ରୀହରି କହନ୍ତେ କୋପିତ ବଜ୍ରଧର
ଅଦ୍ରାବଳି ଧନୁ ଧଇଲେ ବାମକର ॥୬୩୩୭॥
ତିନିକୋଟି ନାରାଜ ବାଛିଣ ବିନ୍ଧିଲା
ତିନି କୁଳକୁ ନାରାଜ ତେଜ ପ୍ରକାସିଲା ॥୬୩୩୮॥
ଘୋଟିଲା ରଣଭୁମି ଇନ୍ଦ୍ର ଆଜ୍ଞାପାଇ
ଦେଖି ତିନିବାଣ ବିନ୍ଧିଲେ ଯେ ଭାବଗ୍ରାହି ॥୬୩୩୯॥
ଇନ୍ଦ୍ର ନାରାଜ ସଂହାରଣ ହେଲା
ପୁଣି ସୁରପତି ସହସ୍ରେ ନାରାଜ ବିନ୍ଧିଲା ॥୬୩୪୦॥
ସାତ ବାଣେ ତାହା ଛେଦିଲେ ଭାବଗ୍ରାହି
ଦେଖିଣ ନାଗଫାସ ଇନ୍ଦ୍ର ଛାଡ଼ି ଦେଇ[1] ॥୬୩୪୧॥
ଧାଇଂଲେ ନାଗବଳ ଦେଖିଲେ ନାରାୟଣ
ସୁମରନ୍ତେ ପ୍ରବେସ ବିନତା ନନ୍ଦନ ॥୬୩୪୨॥
ଗରୁଡ଼କୁ ଦେଖିଣ ପଳାଇଲେ ସର୍ପ
ଗରୁଡ଼ ପକ୍ଷି ହୋଇଲା ଅଣଚାସ ବାତ ॥୬୩୪୩॥
ଗରୁଡ଼ ବାତ ଘାତେ ଉଡ଼ିଲେ ଦେବଗଣ
ଗରୁଡ଼କୁ ମାଇଲା ଇନ୍ଦ୍ର ବଜ୍ରବାଣ ॥୬୩୪୪॥
ବଜ୍ରକୁ ଅଣ୍ଟାଳି ଧରି ଖଗେବର
ପିଟିଲା ନେଇ ଐରାବ୍ରତ ଗଜ ଉପର ॥୬୩୪୫॥
ହସ୍ତିକୁମ୍ଭ ସ୍ଥଳେଂ ବାଜିଲାକ ବଜ୍ର
ମୁଖମାଡ଼ି ପଡ଼ନ୍ତେ ପଳାଇଲା ଦେବରାଜ ॥୬୩୪୬॥
ମାତଳି ଯୋଗାଇଲା ପୁଷ୍ପେକ ବିମାନ
ରଥେ ବସି ନାରାଜ ବିନ୍ଧିଲା ମଘବାନ ॥୬୩୪୭॥
ଆସନ୍ତେ ନାରାଜ ଜଗନ୍ନାଥେ ଦେଖିଲେ
କୌମୋଦି ଗଦା ଗୋବିନ୍ଦ ନିବାରିଲେ ॥୬୩୪୮॥

୧ । ଘ ପୋଥି – ଟାଣ
୨ । ଘ ପୋଥି – ଦେଖି ଇନ୍ଦ୍ର ରାଜା ନାଗଫାଶ ବିନ୍ଧଇ

ନଉଟି ସୁରପତି ବଜ୍ର ପ୍ରହାରିଲା
ଦେଖିଲେ ଶ୍ରୀହରି ପେସିଲେକ ଗଦା ଭଲା ॥୬୩୪୯॥
ଦୁଇ ସହସ୍ର ସମ୍ଭାସନାଂ ହେଲେଂ
ଝଲିକି ଅନଳ ଚାରି ଦିଗ ତ୍ରାହିଲେଂ[୧] ॥୬୩୫୦॥
ଦିଗପାଳମାନେ ନ ପାରିଲେ ରହି
ଅସ୍ତକଲା ପୁରୁଷ[୨] ଗଲେକ ପଳାଇ ॥୬୩୫୧॥
ଇନ୍ଦ୍ର ଗୋବିନ୍ଦର ଆଗୋଚର ରଣ
ଯାଦବ ସଙ୍ଗତେ ଯୁଝନ୍ତି ଦେବଗଣ ॥୬୩୫୨॥
ଲକ୍ଷେ ସାଠିଏ ସହସ୍ର ଅଣାସି କୁମର
ବହେଣିର ଛଳେ କରନ୍ତି ସମର ॥୬୩୫୩॥
ଗଜ ଗରୁଡ଼ର ସମର ହୋଇଲା
କେହୁମାରେ ଲାହୁଡ଼ କେହୁ ଥୋରରେ ପିଟିଲା ॥୬୩୫୪॥
ଇନ୍ଦ୍ର ଗୋବିନ୍ଦର ସମର ହୁଅନ୍ତେ
ପଡ଼ିଲା ସୁରପତି ଗୋବିନ୍ଦ ସରଘାତେ ॥୬୩୫୫॥
ଇନ୍ଦ୍ର ମୋହ ଜାନ୍ତେ ମାତଳି ରଥନେଇ
ଆକାସ ମଣ୍ଡଳରେ ରଖିଲା ଲୁଚାଇଂ ॥୬୩୫୬॥
ଶ୍ରୀକୃଷ୍ଣର ସୁତେ କଲେ ଘୋରରଣ
ପଏଡ଼ ପଡ଼ିଲେ ଭାଜିଲେ ଦେବଗଣ ॥୬୩୫୭॥
ମୁସଳ ଘେନିଣ ବଳରାମେ ଗୋଡ଼ାଇଲେ
ରହ ରହ ବୋଲନ୍ତେ କେହି ନରହିଲେ ॥୬୩୫୮॥
ଦେଖିଲେ ଜଗନ୍ନାଥ ଦେବକଂ ବିକଳ
ଡାକିଲେ ରହ ରଣ ନକର କାମପାଳ ॥୬୩୫୯॥
ଇନ୍ଦ୍ର ଆମର ବଇରି ସେହୁ ପଳାଇଲା
ଏ ଆମ୍ଭର ସେବକ ଏହାକୁ ନ ମାରିବା ॥୬୩୬୦॥
ଇନ୍ଦ୍ରପୁର ଚାଲ ଆଣିବା ଜୁର କରି
ଅଳଂକାର ଭଣ୍ଡାର ଆମ୍ଭର କୁମାରି ॥୬୩୬୧॥
ଏତେ ବୋଲିଂ ହରି ସନ୍ୟ ଚଳାଇଲେ
ପଦ୍ମୁନ ବଳରାମ ଆଗିୟାଣି ହେଲେ ॥୬୩୬୨॥
କଲେ ହୁରି ଜୁରି ପସିଣ ସ୍ୱର୍ଗପୁର
ସଚି ଆଗେଂ କହିଲେ ବ୍ରହ୍ମାଙ୍କ କୁମର ॥୬୩୬୩॥
ହରି ବଳରାମ ତ ଇନ୍ଦ୍ରକୁ ମୋହ କରି
ଭାଜିଲେ ସ୍ୱର୍ଗପୁର ଭଣ୍ଡାର କଲେ ଜୁରି ॥୬୩୬୪॥
ସଚି ବୋଇଲେ ସେ ବ୍ରହ୍ମାଣ୍ଡ ଠାକୁର
ତାହାଙ୍କର ସଙ୍ଗେ କିମ୍ପାଇ ବିବାଦ ଆମ୍ଭର ॥୬୩୬୫॥

୧ । ଘ ପୋଥି – ତ୍ରାସିଲା ଚାରିଦିଗେ
୨ । ଘ ପୋଥି – ଅପକ୍ଷରା

ତୁମ୍ଭେ ଘେନି ଆସ ଜାଇ ବେଦବର
ସମସ୍ତେ ସ୍ୟାନ୍ତି କରାଇବା ଚକ୍ରଧର ॥୬୩୬୬॥
ଏମନ୍ତ ବିଚାରି ସେ ସଚି ଠାକୁରାଣି
ଅର୍ଘ୍ୟସ୍ଥାଳି ଗୋଟିଏ ବେନି ହସ୍ତେଂ ଘେନି ॥୬୩୬୭॥
କୋଟିଏ ଯୁବତି ଘେନି ସଙ୍ଗତର
ପ୍ରବେସ ହେଲେ ଜାଇ ଜହିଂ ଯୋଗେସ୍ୱର[୧] ॥୬୩୬୮॥
ବେନି କର ଯୋଡ଼ି ସ୍ତୁତି ଆରମ୍ଭିଲା
ଜୟ ତୁ ଜଗବନ୍ଧୁ ଜୟ ଚକାଡୋଳା ॥୬୩୬୯॥
ତିନିପୁର ମଧ୍ୟରେ ଅଟୁ ଅଧିକାରି
ତୋହୋର ସଚିଂଲା ବାସୁକି ବିଧାତା ବଜ୍ରଧାରି ॥୬୩୭୦॥
ତୁହି ସେ ସୁରପତି ସଚିଂତ କଲୁଂ ସ୍ୱର୍ଗ
ଏବେ ନାସ କଲେ କେ ଆନ କରିବ ॥୬୩୭୧॥
ଇନ୍ଦ୍ର ତୋହର ସେବକ ମୁହିଂ ତୋହର ପରିବାରି
ମୋ ପୁତ୍ର ପରିଚାର ସୁଖି ତୋ କୁମାରି ॥୬୩୭୨॥
ସୁଖି ଜନକୁ ଯେବେ ଦୁଖି ଆଶ୍ରେକରେ
ତାହାର ଦୁଖକି ରହଇ ସଂସାରେ ॥୬୩୭୩॥
ତୁମ୍ଭେ ସେ ମୌସୋଧି ଆମ୍ଭେ ଅଟୁ ରୋଗି
ତୁମ୍ଭେ ସେ ଗଂଗାଜଳ ଆମ୍ଭେଂ ଅଟୁ ନଦି ॥୬୩୭୪॥
ତୁମ୍ଭେ ସେ ମେରୁ ହରି ଆମ୍ଭେଂ ସେ ପର୍ବତ
ଆମ୍ଭେ ସେ ଦୁଷ୍ଟଜନ ତୁମ୍ଭେ ସେ ମହତ ॥୬୩୭୫॥
ଯଦି ସେ ମହତ କୋପ ନ ସଂହରି
ତେବେ ସେ ତାହାକୁଂ ବୋଲି ଅହଂକାରି ॥୬୩୭୬॥
ଜେ ସେ ଅହଂକାରି ଚାଣ୍ଡାଳ ବୋଲି କହିଂ
ଜେ ସେ ଚାଣ୍ଡାଳ ଦୟା ତା ନଥାଇ ॥୬୩୭୭॥
ଜେ ସେ ନିର୍ଦ୍ଦୟା ମନ୍ଦପ୍ରାଣି
ତାହାକୁ ନର୍କରେ ପକାଇ ଜନ୍ତୁମଣି ॥୬୩୭୮॥
ଜେଣୁ ତୁମ୍ଭ ସଙ୍ଗେ ଦ୍ୱନ୍ଦ କଲେ ମଘବାନ
ତେଣୁ ଦଣ୍ଡ ପାଇଲା ହୃଦରେ ନାହିଂ ଜ୍ଞାନ ॥୬୩୭୯॥
ଚିତ୍ରସେନ ଆଣିଲା ତୋହର ଦୋହିତା[୨]
ଲଲାଟରେ ଅବା ବିହିଛି[୩] ବିଧାତା ॥୬୩୮୦॥
ପାରିଲେ ଦିଅ ଦୋହିତା ନୋହିଲେ ଯାଅ ଘେନି
ଏଥକୁ କିମ୍ପାଂ କୋପ କରୁଛ ଚକ୍ରପାଣି ॥୬୩୮୧॥
ସଚିର ବଚନେ ହରସ ଚକ୍ରପାଣି
ଡାକିଲେ ପାସକୁ ଆସ ଗୋ ଠାକୁରାଣି ॥୬୩୮୨॥

୧ । ଘ ପୋଥି – ବିଜୟେ ଚକ୍ରଧର
୨ । ଘ ପୋଥି – ସୂତା
୩ । ଘ ପୋଥି – ଲେଖିଅଛି

ଆଦିଅନ୍ତ କଥା କହିବା ସମାଚାର
ସଚି ଅର୍ଘ୍ୟ ଦିଲା ସେ ଗୋବିନ୍ଦଂ[1] ପୟର ।।୬୩୮୩।।
ବୋଇଲା ହରି ପୁଜା କଲଇଂ ତୁମ୍ଭପାଦ
ଆଜିଠାରୁ ସମନ୍ଧି ହୋଇଲ ଗୋବିନ୍ଦ ।।୬୩୮୪।।
ସଚିର ବଚନେ ହସିଲେ ଚକ୍ରଧର
ସେହି ସମୟରେ ଆସି ପ୍ରବେସ ବେଦବର ।।୬୩୮୫।।
ହରିକିଂ ଚାହିଂ ବ୍ରହ୍ମା ପୁଛିଲେ ଆଦିଅନ୍ତ
ମୋହରି ନନ୍ଦନି କି ହରି ଆଣିଲେ ଇନ୍ଦ୍ରସୁତ[2] ।।୬୩୮୬।।
ଦୁଲଣିର ଛଳେଂ ଆମ୍ଭେ କଲୁଂ ରଣ
ନଜାଣି ଦ୍ୱନ୍ଦ କରି ହାରିଲା ମଘବାନ ।।୬୩୮୭।।
ବିଧାତା ବୋଇଲେ ଯଦି ହାରିଲା ସୁରପତି
ଆଉ କିପାଂ କୋପ କରୁଛ ଦାସରଥି ।।୬୩୮୮।।
ନାରଦକୁଂ ବୋଇଲେ ସାବିତ୍ରିର ସାଇଂ
କାହିଂଅଛି ଇନ୍ଦ୍ରକୁ ଘେନି ଆସ ଜାଇ ।।୬୩୮୯।।
ବିଧାତା ଆଜ୍ଞାରେ ଚଳିଲେ ମୁନିବର
ଇନ୍ଦ୍ରକୁ ଭେଟିଲେ ଜାଇ ଆକାସ ଗୁମ୍ଫାର ।।୬୩୯୦।।
କହିଲେ ଆଦି ଅନ୍ତ ଗମିଲେ ସୁରପତି[3]
ପ୍ରବେସ ହୋଇଲେ ଯହିଂ ଶ୍ରୀକୃଷ୍ଣ ବେଦପତି ।।୬୩୯୧।।
ଯାଦବ ସହିତେ ସନ୍ୟ ବଳରାମ
ସଚି ଅପକ୍ଷରି ଆଦି ଚିତ୍ରସେନ ।।୬୩୯୨।।
ଲଜ୍ୟାଭରେ ଇନ୍ଦ୍ର ଡରଡର ହୋଇ
ଶ୍ରୀକୃଷ୍ଣ ପାଦତଳେ ପଡ଼ିଲାକ ସୋଇ ।।୬୩୯୩।।
ଦୟାକରି ଗୋବିନ୍ଦ ଉଠ ଉଠ ବୋଲିଂ
ଉଠିଣ ସୁରପତି ସିରେ କର ଯୋଡ଼ିଂ ।।୬୩୯୪।।
ବୋଇଲେ ଜଗବନ୍ଧୁ ମୁହିଂ କଲି ମନ୍ଦ
ସରଣ ପସୁଛି ଏବେ ରଖ ହେ ଗୋବିନ୍ଦ ।।୬୩୯୫।।
ଇନ୍ଦ୍ରକୁ ଚାହିଂଣ ବୋଲନ୍ତି ବେଦବର
ସାମଗ୍ରି ଭିଆଅ ସଜକର କନ୍ୟାବର ।।୬୩୯୬।।
ସଚଳା କନ୍ୟାକୁ ଚିତ୍ରସେନ ବିଭାହୋଇ
ପୁର୍ବହୁଂ ଏହିକଥା ଦଇବ ଅଛି ଲିହିଂ ।।୬୩୯୭।।
କୁମାରି ଜନ୍ମିଲେ ଅବଶ୍ୟ ନେଇ ପର
ଏଥିକି କିମ୍ପାଇଂ ନାସ୍ତିକର ଚକ୍ରଧର ।।୬୩୯୮।।
ଇନ୍ଦ୍ରଠାରୁ ବନ୍ଧୁକି ଆଉ ପାଇବ ବଡ଼ଜଣ
ତୁମ୍ଭେ ସଂସାର[4] କାରେଣି ସେ ସ୍ୱର୍ଗରେ ରାଜନ ।।୬୩୯୯।।

୧ । ଘ ପୋଥି – ଶ୍ରୀକୃଷ୍ଣ
୨ । ଘ ପୋଥି – ବୋଇଲେ ଅଚ୍ୟୁତ
୩ । ଘ ପୋଥି – କହିଲେ ସୁରପତି ଆଦି ଅନ୍ତ ଗତି
୪ । ଘ ପୋଥି – ସର୍ବ

ବିଧାତାର ବଚନେ ସ୍ୟାନ୍ତି ହେଲେ ଭଗବାନ
ହେଉ ହେଉ ବୋଲିଣ ବୋଇଲେ ବଳରାମ ।।୬୪୦୦।।
ବଦୟନ୍ତି ବଳରାମ ଗୋବିନ୍ଦ ମୁଖ ଚାହିଂ
ସବୁଦିନେ ଆମ୍ଭକୁ ଇନ୍ଦ୍ର ବାଛୁଥାଇ ।।୬୪୦୧।।
ଏହାର ଆମ୍ଭର ଯେବେ ବନ୍ଧୁପଣ ହୋଇଲା
ଏଥିରୁ ପୌରୋଷ ନାହିଂ ହେ ଚକାଡୋଳା ।।୬୪୦୨।।
ବିଭା କରାଇଣ ଆସ ହେ ବନମାଳି
ମୁହିଂ ସେ ଦ୍ୱାରିକାକୁ ଯାଉଅଛି ଚଳି ।।୬୪୦୩।।
ସୁଣିଣ ହରସ ହୋଇଲେ ଭଗବାନ
ସୁରପତି ସାମଗ୍ରି କଲାକ ଭିଆଣ ।।୬୪୦୪।।
ଅମୃତ ବୃଷ୍ଟି ହୋଇଲା ସ୍ୱର୍ଗପୁର
ଜିବ ଗଲାଲୋକ ପାଇଲେ ସ୍ୱରିର ।।୬୪୦୫।।
ସନ୍ୟ ଘେନି ଦ୍ୱାରିକାକୁ ଗମିଲେ ବଳରାମ
ଉଛବ କରାଇଲା ସ୍ୱର୍ଗରେ ମଘବାନ ।।୬୪୦୬।।
କନେକ ବେଦି ନିଳାର ଛାମୁଡ଼ିଆ
ତହିଂ ପାଖେଂ ଖଜିଂଲେ ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ।।୬୪୦୭।।
ଧର୍ମ ପ୍ରୋହିତ[1] ସହିତେ ବେଦବର
ଆଚାର୍ଯ୍ୟ ହୋଇଣ ବସିଲେ ବେଦିର ।।୬୪୦୮।।
ସୁରପତି କୋଳେଂ ବସିଲା ଚିତ୍ରସେନ
ସଚଳାକୁ ଘେନି ବସିଲେ ଭଗବାନ ।।୬୪୦୯।।
ଲକ୍ଷ ଲକ୍ଷ ସଙ୍ଖ ବାଜଇ ହୁଳହୁଳି
ଗନ୍ଧର୍ବ ଗାୟନ ନାଚନ୍ତି ଅପକ୍ଷରି ।।୬୪୧୦।।
ସରିଲା ହସ୍ତସୁତ୍ର ଗୋବିନ୍ଦ ଦିଲେ ସମର୍ପି
ଲଜ୍ୟା ହୋମ ସାରି ବରକନ୍ୟାୟେଂ ଗଲେ ଉଠି ।।୬୪୧୧।।
ମଣୋହି ସାରି ରାତ୍ରରେ କଲେକ ସୟନ
ବହୁତ ବିନୋଦରେ କଲେକ ରମଣ ।।୬୪୧୨।।
ଆନନ୍ଦ ହେଉଛନ୍ତି ସ୍ୱର୍ଗର ନାଏକା
ଗୋବିନ୍ଦ ଉପରକୁ ମାରନ୍ତି ଚନ୍ଦନ ପିଚିକା ।।୬୪୧୩।।
ହସ୍ତରେ ଅର୍ଘ୍ୟ ଘେନି ସଚି ଠାକୁରାଣି
ଢାଳିଲେ ସିରେ ଉଭା ହୋଇଛନ୍ତି ଚକ୍ରପାଣି ।।୬୪୧୪।।
ବୋଇଲେ ମୋତେ ଦୟା ରଖିଥିବ ଭଗବାନ
ଏହି ରୁପେଂ ମୋର ଯାଉଥିବ ଦିନ ।।୬୪୧୫।।
ଅଳପ ହସିଣ ବୋଇଲେ ମୋହାବାହୁ
ଆହୁରି ଚାରିଗୋଟା ବର ତୋତେ ହେଉ ।।୬୪୧୬।।
ସଚି ଜଗନ୍ନାଥେଂ କଥା ହୁଅନ୍ତେଣ
ଅମୃତ କୁମ୍ଭ ଘେନି ପ୍ରବେସ ମଘବାନ ।।୬୪୧୭।।

୧ । ଘ ପୋଥି – ପୁରୋହିତ

ହାସ୍ୟରେ ହରି ଅଙ୍ଗେ ଲେପିଲେକ ନେଇ
ସେସ ଭାଗେ ହରି ଇନ୍ଦ୍ର ସିରେ ଦିଲେ ନେଇ[୧] ॥୬୪୧୮॥
ଇନ୍ଦ୍ର ଗୋବିନ୍ଦର ତହିଂ ବହୁତ ପରିହାସ୍ୟ
ସେହିଠାର ଚିତ ରହିଲା ସାରୋଳା ଚଣ୍ଡି ଦାସ ॥୬୪୧୯॥

## ଚନ୍ଦ୍ରାବତୀ ହରଣ

ଅମୃତ ପାନ ତହିଂ କଲେକ ଭଗବାନ
ଦ୍ୱାରିକାକୁ ବାହାର ପାଛୋଟି ଗଲେ ମଘବାନ[୨] ॥୬୪୨୦॥
ବିଜୟେ ଜଗନ୍ନାଥେଂ ଦ୍ୱାରିକା ଭୁବନ
ଯୁଧିଷ୍ଟିଙ୍କ ଆଗେଂ ସବୁ କହିଲେ ଅର୍ଜୁନ ॥୬୪୨୧॥
ବଦୟନ୍ତି ଗିରିଜା ସୁଣହେ ସଦାସିବ
ତଦଅନ୍ତେ ବନସ୍ତେ କିସ କଲେକ ପାଣ୍ଡେବ ॥୬୪୨୨॥
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି
ସାଠିଏ ସହଶ୍ର ମୁନି ଘେନି ମିଳିଲେ ବ୍ୟାସଜତି ॥୬୪୨୩॥
ଯୁଧିଷ୍ଟି ନିଉଛାଳି କରି ଆସନ ଯୋଗାଇଲେ
ବସିଣ ବ୍ୟାସଜତି ଅର୍ନ୍ନ ହିଂ ମାଗିଲେ ॥୬୪୨୪॥
ଯୁଧିଷ୍ଟି ବୋଇଲେ ବନେ କାହୁଂ ଦେବି ଅର୍ନ୍ନ
ହୃଦରେ ଚିନ୍ତାକଲେ ପ୍ରବେସ ଭଗବାନ ॥୬୪୨୫॥
ଗୋବିନ୍ଦ ପଚାରନ୍ତେ କହିଲେ ଯୁଧିଷ୍ଟି
ବ୍ୟାସେ ଆସିଛନ୍ତି ସାଠିଏ ସହସ୍ର ଋଷି ॥୬୪୨୬॥
ମାଗୁଛନ୍ତି ଅର୍ନ୍ନ କାହୁଂଦେବିଂ ଆଣିଂ
ଗରୁଡ଼କୁ ପେସିଲେ ଦେବ ଚକ୍ରପାଣିଂ ॥୬୪୨୭॥
ବୋଇଲେ ଘେନିଆସ ରକ୍ମଣିକି ଯାଇ
ଆଜ୍ଞାପାଇ ଗରୁଡ଼ ଦ୍ୱାରିକାରେ ହୋଇ ॥୬୪୨୮॥
କହିଲେ ଆଦିଅନ୍ତ ସୁଣିଲେ ରକ୍ମଣିଂ
ଗରୁଡ଼ ପୃଷ୍ଟେ ବସିଂ ଗମିଲେ କମଳଣିଂ ॥୬୪୨୯॥
ପାଣ୍ଡେବଙ୍କ କୋଡ଼ିଆରେ ପ୍ରବେସ ହୋଇଲେ
ଗୋବିନ୍ଦ କହନ୍ତି ସେ ରୋସଇ ସଞ୍ଚାକଲେ ॥୬୪୩୦॥
ଜଳ ଗୋଟିଏ ଯେ ତଣ୍ଡୁଳ ଗୋଟିଏ
ଏତେକ ରନ୍ଧନ କଲେ ମହାମାଏ ॥୬୪୩୧॥
ସରିଲାକ ପାକ ରକ୍ମଣି ଆଜ୍ଞାଦିଲେ
ଆସନ୍ତୁ ସ୍ନାନକରି ଭୁଜଂନ୍ତୁ ମୁନିବରେ ॥୬୪୩୨॥
ସ୍ନାହାନ କରି ଭୋଜନ କଲେ ସର୍ବରଷି
ବାଢ଼ିଲେ ରକ୍ମଣିଂ ପରସିଲେ ହୃଷିକେସି ॥୬୪୩୩॥

୧ । ଘ ପୋଥି – ହରି ଶେଷଭାଗ ଇନ୍ଦ୍ର ଶିରେ ଦେଇ
୨ । ଘ ପୋଥି – ସନ୍ୟ

ଭୋଜନ ସାରି ମୁନି କଲେ ଆଞ୍ଚୋବନ
ଧନ୍ୟ ଯୁଧିଷ୍ଟି ବୋଲି ବାଞ୍ଛିଲେ କଲ୍ୟାଣ[୧] ॥୬୪୩୪॥
ସଙ୍କର ମୁଖ ଚାହିଂ ଗିରିଜା ପଚାରିଲେ
ପାଣ୍ଡେବ ଘରେ ଯେ ଦ୍ରୋପଦି ଦେବି ଥିଲେ ॥୬୪୩୫॥
ସେ କିପାଇଂ ଅର୍ନ୍ନ ରାନ୍ଧି ନ ଦିଲେ ସେହି
ରକ୍ମଣି କି କିପାଂଇଂ ଆଣିଲେ ଭାବଗ୍ରାହିଂ ॥୬୪୩୬॥
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି
ଅନ୍ନପୁର୍ଣ୍ଣା ନୋହନ୍ତି ସେ ପାଣ୍ଡେବଙ୍କ ଯୁବତି ॥୬୪୩୭॥
ସୋଏଂ କମଳଣିଂ ସେ ଭିସ୍ମକଂ ରାଜଜେମା
ଦେବିଂଙ୍କର ସିରୋମଣିଂ ସେ ଅଟନ୍ତି ଅନ୍ନପୁର୍ଣ୍ଣା ॥୬୪୩୮॥
ତେଣୁ ଏକ ତଣ୍ଡୁଳ ସାଠିଏ ସହସ୍ର ମୁନିଖାଇ
ପାଣ୍ଡେବଙ୍କୁ ଘେନି ଭୁଜିଂ ବସିଲେ ଭାବଗ୍ରାହି ॥୬୪୩୯॥
ତେବେକେ ଅର୍ନ୍ନ ନ ସରିଲା ଥୋକାଏକ ରହିଲା ପୁଣ
ସାଧୁ ରକ୍ମଣିଂ ବୋଲି ସୁଭିଲା ବୟାଣ ॥୬୪୪୦॥
ବୋଲନ୍ତି ବ୍ୟାସେଂ ଶୁଣ ହେ ଭଗବାନ
ଗୋପତ ହେବେ ପାଣ୍ଡବେ ବରସେ ତେରଦିନ ॥୬୪୪୧॥
ବିରାଟ ରାଜ୍ୟରେ ରହିବେ ନଜାଣିବେ କୁରୁମଣିଂ
ହେଉ ହେଉ ବୋଲିଂ ବୋଇଲେ ଚକ୍ରପାଣି ॥୬୪୪୨॥
ମୁନିଗଣ ଘେନି ବ୍ୟାସେ ଗଲେ ଚଳି
ସୁଣଗୋ ଓମା ବୋଲି ବୋଲନ୍ତି ଦେବସୁଲି ॥୬୪୪୩॥
ଦୁର୍ଯୋଧନ ଦୋହିତା ଚନ୍ଦ୍ରାବତି ନାମ
କୋଟିଏ ଚନ୍ଦ୍ରମା ପ୍ରାଏ ଦିଶଇ ବଦନ ॥୬୪୪୪॥
ଦୁଲଣି ଅନୁରୁପେଂ ନ ପାଇଲେ ବର
ତେଣୁ ମାନଗୋବିନ୍ଦ କଲା ସଏମ୍ବର ॥୬୪୪୫॥
ନାରଦ ଦେଖି ଜାଇ ସାମକୁ କହିଲେ
ସୁଣି କୃଷ୍ଣସୁତ ଗମିଲେ ରାତ୍ରରେଂ ॥୬୪୪୬॥
ଗୋପତେ କନ୍ୟାଠାରେ ପ୍ରବେସ ହୋଇଲେ
ପତି ପତ୍ନି ପ୍ରାଏ ପିରତି ତହିଂ କଲେ ॥୬୪୪୭॥
ରମଣ କରନ୍ତେ ରଜନି ଗଲା ପାହି
ଶ୍ରୀକୃଷ୍ଣର ସୁତ ନପାରିଲା ଜାଇ ॥୬୪୪୮॥
ବାରତା ପାଇ କୋପ କଲା ଦୁର୍ଯୋଧନ
ସନ୍ୟକୁ ଆଜ୍ଞାଦିଲା ବାନ୍ଧ ଗଉଡ଼ ନନ୍ଦନ ॥୬୪୪୯॥
ଅନେସ୍ୱତ ଭାଇତୁଲେ ସଲ୍ୟ ସକୁନି
ଭୁରିସର୍ବା ସୋମଦତ ଭିସ୍ମ ଦ୍ରୋଣ ପୁଣିଂ ॥୬୪୫୦॥
ସମସ୍ତେ ଉଠିଲେ ସହଶ୍ର ଘେନିଣ
ଦେଖିଣ ରଣ କଲା ଶ୍ରୀହରି ନନ୍ଦନ ॥୬୪୫୧॥

୧ । ଘ ପୋଥି – ଶୁଭିଲା ବୟାଣ

ବହୁତ ସନ୍ୟମାରି ବନ୍ଧନେ ପଡ଼ିଲା
ବଳରାମ ଅଗ୍ରତେ ଯେ କହିଲେ ବ୍ରହ୍ମବଳା ।।୬୪୫୨।।
ସୁଣି କୋପକଲେ ରେବତିରମଣ
ଏକାୟେଂ ଗମିଲେ ହସ୍ତିନା ଭୁବନ ।।୬୪୫୩।।
ଦେଖିଣ ଦୁର୍ଯୋଧନ ଉପହାସ୍ୟ କଲା
ଗଉଡ଼ ବାଉଡ଼ ବୋଲିଣ ଗାଳି ଦିଲା ।।୬୪୫୪।।
ସୁଣିଣ କୋପିତ ହୋଇଲେ କାମପାଳ
ଲଙ୍ଗଳେ ତାଡ଼ିଲେ ହସ୍ତିନା ମଣ୍ଡଳ ।।୬୪୫୫।।
ବିଚାରିଲେ ଆଜ କୌରୋବକୁ ମୁହିଂ
ସାହେର ମଧ୍ୟରେ ପକାଇବି ନେଇ ।।୬୪୫୬।।
ଏତେ ବୋଲି ରାମ ତାଡ଼ିଲେ ଲଙ୍ଗଳ
ହସ୍ତିନାପୁର ଲୋକେ ହୋଇଲେ ବିକଳ ।।୬୪୫୭।।
ଭୟରେ ଦୁର୍ଯୋଧନ କଲା ସ୍ତୁତି ବହୁତ[1]
ଭୋ ବଳରାମ ଆମ୍ଭେଂ ହୋଇଲୁ ନିରେଖ ।।୬୪୫୮।।
ଆମ୍ଭକୁଂ ନାସ ନକର ରହୁ ଏ ହସ୍ତିନା
ତୋହର ପୁତ୍ରବଧୁ ସମ୍ଭାଳ ଏବେ କି ନା ।।୬୪୫୯।।
ଅପ୍ରାଧ କ୍ଷେମା କର ଏବେ କାମପାଳ
ସୁଣି ସ୍ୟାନ୍ତି ହୋଇଲେ ରାମ କାଢ଼ିଲେ ଲଙ୍ଗଳ ।।୬୪୬୦।।
ସାମଗ୍ରି ଭିଆଅ ବୋଲି ଦୁର୍ଯୋଧନକୁ ବୋଇଲେ
ପୁତ୍ରକୁ ଘେନି ଆସ ଦେଖଇ ନୟନରେ ।।୬୪୬୧।।
ସାମର କରୁ ଏବେ ଫେଡିଲେ ବନ୍ଧନ
ବିଭାକୁ ସମାଗ୍ରି ବେଗେଂ କଲେକ ଭିଆଣ ।।୬୪୬୨।।
ବ୍ୟାସେ ଗାର୍ଗମୁନି ମିଳିଲେକ ଜାଇ
ବରକନ୍ୟାକୁ ବେସକରାଇ ବେଦିରେ ବସାଇ ।।୬୪୬୩।।
ବହୁତ ଉଛବ ହସ୍ତିନା ଭୁବନ
ଚନ୍ଦ୍ରାବତି କି ସମର୍ପି ଦିଲା ଦୁର୍ଯୋଧନ ।।୬୪୬୪।।
ରଥ ଗଜ ଅସ୍ୱ ଜଉତୁକ ଦିଲା
ଭଣ୍ଡାର ସହିତେ ନୃପତି ସମର୍ପିଲା ।।୬୪୬୫।।
ସରିଲା ଲଜା ହୋମ ଶଯ୍ୟା ଆରୋପିଲେ
ସମସ୍ତ ସନ୍ୟ ସେନା ନିଦ୍ରାରେ ରହିଲେ ।।୬୪୬୬।।
ରଜନି ପାହାନ୍ତେ ସମସ୍ତେ ଉଠିଲେ
କନ୍ୟା ବସିବାକୁ ଆନ୍ଦୋଳା ସଜକଲେ ।।୬୪୬୭।।
ବିଜୟେ ନିଳାମ୍ବର ହସ୍ତି ଏକଚଢ଼ି
ବାଜଇ ବିଜିଘୋସ ମଙ୍ଗଳ ମହୁରି ।।୬୪୬୮।।
ଜଉତୁକ ଦ୍ରବ୍ୟ ସଙ୍ଗତରେ ଘେନି
ନୃପତି ସମର୍ପିଲା ବହୁତ ସଇନି ।।୬୪୬୯।।
ଦୁର୍ଯୋଧନ ପଛୋଟି ଜାଇଣ ବାହୁଡ଼ଇ
ଭୋ ବଳରାମ ମୋତେ ହେଉଥିବୁ ସାହିଂ ।।୬୪୭୦।।
ବଦୟନ୍ତି ନିଳାମ୍ବର ନିଶ୍ଚନ୍ତେ ଥାଅ ରହିଂ
ଲେଉଟିଲା କୁରୁମଣି ଗମିଲେ ହଳସାଇଂ ।।୬୪୭୧।।
ପ୍ରବେସ ହେଲେ ଜାଇ ଦ୍ୱାରିକା ଭୁବନ
ଉଛବ କରାଇଲେ ପୁତ୍ରବଧୁକୁ ସମ୍ଭାଳିଣ ।।୬୪୭୨।।
ବଳରାମକୁ ସମସ୍ତେ ପ୍ରସଂସା କରନ୍ତି
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି ।।୬୪୭୩।।
ରକ୍ମଣି ବାସୁଦେବ ପାଣ୍ଡେବକଂଠାରେ ଥିଲେ
ଯଧିଷ୍ଟିଙ୍କଠାରୁ ଜାଇ ଦ୍ୱାରିକାରେ ମିଳିଲେ ।।୬୪୭୪।।
କହିଲେ ଆଦିଅନ୍ତ ସୁଣିଲେ ବନମାଳି
ପୁତ୍ରବଧୁ ଦେଖି ହୋଇଲେ କୁତୁହୋଳି ।।୬୪୭୫।।

## ଧର୍ମବକ ଯୁଧିଷ୍ଟିର ସମ୍ବାଦ

ନିସ୍କାଞ୍ଚନ ବନୁ ପାଣ୍ଡବେ ଚଳିଗଲେ
ମନୋହର ବନେ ପ୍ରବେସ ହୋଇଲେ ।।୬୪୭୬।।
ଯୁଧିଷ୍ଟି ଦ୍ରୋପଦି ବସିଲେ ଥକାହୋଇ
ଜଳ ଖୋଜିବାକୁ ଗଲେ ଚାରିଭାଇ ।।୬୪୭୭।।
ଅନ୍ଧେକ ସରୋବରେ ପ୍ରବେସ ହୋଇଲେ
ଜଳ ଭକ୍ଷି ଚାରି ପାଣ୍ଡବେ ପଡ଼ିଲେ ।।୬୪୭୮।।
ଚାରି ପାଣ୍ଡବେ ଜହୁଂ ହୋଇଲେ ଅସାଷ୍ଟମ
ଯୁଧିଷ୍ଟି ନଦେଖିଣ ବୈକୁଲ୍ୟ ମନ ।।୬୪୭୯।।
ସରୋବରଠାରେ ପ୍ରବେସ ଯୁଧିଷ୍ଟିର
ଦେଖିଲେ ଅଚେଷ୍ଟ ଚାରି ସହୋଦର ।।୬୪୮୦।।
ଜଳ ଭକ୍ଷିବାକୁ ଜଳ ଭିତରେ ପସିଲେ
ନଖାଅ ଜଳ ବୋଲି ଧର୍ମବକ[1] ଡାକଦିଲେ ।।୬୪୮୧।।
ଏ ଜଳ ଭକ୍ଷିଲେ ପ୍ରାଣ ରହିବ ତୋର ନାହିଂ
ଯୁଧିଷ୍ଟି ବୋଇଲେ ମୋର ମଲେ ଚାରିଭାଇ ।।୬୪୮୨।।
ଧର୍ମବକ ବୋଇଲେ ଯଦି ଅଛି ତୋର ସତ୍ୟ
ଏହିକ୍ଷଣି ଜିବ ପାଇବେ ତୋର ଭ୍ରାତ ।।୬୪୮୩।।
ଯୁଧିଷ୍ଟି ବୋଇଲେ ଅହିଂସା ଇନ୍ଦ୍ରିକି ନିବାରି
ଦୟା କ୍ଷମା ପୁଷ୍ପରେ ପୁଜଇ ନରହରି ।।୬୪୮୪।।
ଧର୍ମବକ ବୋଇଲେ କହ ଧର୍ମତତ୍ୱ
ଯୁଧିଷ୍ଟି ବୋଇଲେ ଆପ ତେଜ ବାଇବ ଆକାସ ।।୬୪୮୫।।

୧ । ଘ ପୋଥି – ବାଚ

୧ । ଘ ପୋଥି – ଧର୍ମକାକ

ଧର୍ମବକ ବୋଇଲେ କେ କେ ପଞ୍ଚମନ
ଯୁଧିଷ୍ଠି ବୋଇଲେ ସୁମନ କୁମନ ଦୁମନ ପିମନ ॥୬୪୮୬॥
ଧର୍ମବକ ବୋଇଲେ ହସ୍ତଦିଅ ଜିଇବେ ସହୋଦର[୧]
ସୁଣି ଯୁଧିଷ୍ଠି ହସ୍ତଦିଲେ ଭାଇଙ୍କ ଉପର ॥୬୪୮୭॥
ଚାରିଭାଇ ଉଠିଲେ ନିଜଦେହ ଘେନି
ଯୁଧିଷ୍ଠି ବୋଇଲେ ବକ ତୁମ୍ଭେ କିଏ ପୁଣିଂ ॥୬୪୮୮॥
ଧର୍ମବକ ବୋଇଲେ ଆମ୍ଭେ ସେ ଆଦିତ୍ୟ
ସତ୍ୟ ବିଡ଼ିବା ନିମନ୍ତେ ହୋଇଥିଲିଂ ବକ ॥୬୪୮୯॥
କହିଣ ନିଜରୁପ ଧଇଲେ ଦିବାକର
ଦେଖି ଚାରିପାଣ୍ଡବେ କଲେ ନମସ୍କାର ॥୬୪୯୦॥
ଯୁଧିଷ୍ଠି ବୋଇଲେ ପିତା ଏ ସରୋବର କିସ
ଜଳ ଖାଇଣ ମୋ ଭାଇ ହୋଇଲେକ ନାସ ॥୬୪୯୧॥
ଆଦିତ୍ୟ ବୋଇଲେ ଯେ ତ୍ରେତୟା ଯୋଗର
କୁମ୍ଭକର୍ଣ୍ଣ ବୋଲି ସେ ରାବଣ ସହୋଦର ॥୬୪୯୨॥
ଯୁଦ୍ଧରେ ଶ୍ରୀରାମ ଦତ୍ୟର ସିର ହାଣିଂ
ପବନାସରେ ଉଡ଼ାଇ ଦିଲେ ରଘୁମଣି ॥୬୪୯୩॥
ବନରେ ପଡ଼ି ହୋଇଲା ସରୋବର
ବିସଜଳ ହୋଇଲା ଏ କୁମ୍ଭକର୍ଣ୍ଣ ଶରିର[୨] ॥୬୪୯୪॥
ଏତେ କହି ଆଦିତ୍ୟ ଅନ୍ତର ହୋଇଲେ
ଅମୃତ ଜଳକରି ପାଣ୍ଡବେ ସ୍ନାନ କଲେ[୩] ॥୬୪୯୫॥
ସୁଣଗୋ ପ୍ରିୟା ବୋଲି ବୋଲନ୍ତି ପସୁପତି
ଏଣେ ଏକାଥିଲେ ଯେ ଦ୍ରୋପଦ ଦୁହିତି ॥୬୪୯୬॥
ଯଦ୍ୟରଥ ପ୍ରବେସ ହେଲେ ଦେବିଠାର
ଦ୍ରୋପଦିକି ବୋଇଲେ ତୁ ମୋତେ ଦିଅ ଶୃଙ୍ଗାର ॥୬୪୯୭॥
ନାସ୍ତି କରନ୍ତେ ଆକ୍ରୋସି ଧଇଲା ମହାବଳି
ପାଣ୍ଡବେ ରଖ ବୋଲି ଡାକିଲେ ପଞ୍ଚାଳି ॥୬୪୯୮॥
ସୁଣିଲେ ପାଣ୍ଡବେ ଧାଇଂଲା ବିକୋଦର
ଯଦ୍ୟରଥକୁ ଭେଟିଲା ଅର୍ଦ୍ଧ ଆକାସର ॥୬୪୯୯॥
ଡାକିଲେ ଯୁଧିଷ୍ଠି ରହରେ ପାବେନି
ବିଧବା ହେବ ଆମ୍ଭର ଦୋସଳା ବହେଣିଂ ॥୬୫୦୦॥
ସୁଣି ଭିମ ଧଇଲା ଯଦ୍ୟରଥର କେସ
ସାତବେଣ୍ଟି କରି ବୋଇଲା ହୋଇଲୁଂ ପାଣ୍ଡେବଙ୍କର ଭୃତ୍ୟ ॥୬୫୦୧॥

୧ । ଘ ପୋଥି – ଧର୍ମକାକ ବୋଇଲେ ହସ୍ତଦିଅ ଭାଇଙ୍କ ଅଙ୍ଗର
ଶୁଣି ହସ୍ତ ଦିଲେ ଚାରି ସହୋଦ୍ର ଉପର
୨ । ଘ ପୋଥି – ଖପର
୩ । ଘ ପୋଥି – ଏତେ କହି ଆଦିତ୍ୟ ହୋଇଲେ ଅନ୍ତର
ଅମୃତ ଜଳ ଭକ୍ଷି ପାଣ୍ଡବେ କଲେ ନମସ୍କାର

ଜାନୁତଳେ ଗଳାଇ ଦିଲା ବିକୋଦର
ଅଭିମାନେ[୧] ଯଦ୍ୟରଥ ରହିଲା ବନସ୍ତର ॥୬୫୦୨॥
ତପ କରନ୍ତେ ପ୍ରସନ ହୋଇଲେ ସଦାସିବ
ଯଦ୍ୟରଥ ବୋଇଲା ମୁଂ ଜିଣିବି ପାଣ୍ଡବ ॥୬୫୦୩॥
ସିବ ବୋଇଲେ ଜିଣି ନ ପାରିବୁ ଅର୍ଜୁନକୁ
ବରଦେଇ ସଙ୍କର ଗମିଲେ ଭୁବନକୁ ॥୬୫୦୪॥

## ଶକୁନ୍ତଳା ସହ ଜଇନ୍ତାଙ୍କ ବିବାହ

ଏଥୁଂ ଅନ୍ୟନ୍ତରେ ସୁଣଗୋ ଗୌରି
ଦିନେ ହୃଦେ ଗର୍ବ ବହିଲେ ବଜ୍ରଧାରି ॥୬୫୦୫॥
ଗୋବିନ୍ଦ ନନ୍ଦନିକି ବିଭା ହୋଇଲା ମୋ ନନ୍ଦନ
ମୋ ଠାରୁ ତିନିପୁରେ ନାହିଂ ବଡ଼ଜଣ ॥୬୫୦୬॥
ସୁରପତି ଗରବ ଜାଣିଲେ ଭାବଗ୍ରାହି
ରୋମେକ ଓପାଡ଼ି ଜିବନ୍ୟାସ ଦେଇ ॥୬୫୦୭॥
ରୋମାଞ୍ଚକ ବୋଲି ତାହାର ଦିଲେ ନାମ
ବୋଇଲେ ସ୍ୱର୍ଗରେ ତୁ ଜିଣ ମଘବାନ ॥୬୫୦୮॥
ଶ୍ରୀକୃଷ୍ଣ ଆଜ୍ଞାପାଇଣ ରୋମାଞ୍ଚକ
ଆଡ଼େ ଦିର୍ଘେଂ ବଢ଼ିଲା ଯୋଜନ ଚାରି ଲକ୍ଷ ॥୬୫୦୯॥
ମଞ୍ଚ ଆକାସ ସହିତେ ଘୋଟିଲା
କୁହୁଡ଼ି ପ୍ରାଏ ହୋଇ ସଂସାର ଆଦିତ୍ୟ ନ ଦିସିଲା ॥୬୫୧୦॥
ସ୍ୱର୍ଗପୁର ପସି କଲା ହୁରିଜୁରି
ପଳାଇଲା ଇନ୍ଦ୍ର ସୁଧର୍ମା ସଭା ଛାଡ଼ି ॥୬୫୧୧॥
ପଳାନ୍ତେ ଇନ୍ଦ୍ରକୁ ଗୋଡ଼ାଇ ରୋମାଞ୍ଚକ
ଆଡ଼େ ଦିର୍ଘେ ମୁଖମାଡ଼ି ପଡ଼ିଲା ସ୍ୱର୍ଗର ନାଏକ ॥୬୫୧୨॥
ମୋହମାନ ହୋଅନ୍ତେ ଦଇତ୍ୟ ଧଇଲା
ବିଦ୍ୟାଧରି କିନ୍ନରି ପଳାଇଲେ ଭଲା ॥୬୫୧୩॥
ପାରଭଦ୍ରା[୨] ବୋଲି ଇନ୍ଦ୍ରର ମନୋହାରି
ସକୁଂତୋଳା[୩] ବୋଲିଣ ତାହାର କୁମାରି ॥୬୫୧୪॥
କନ୍ୟାକୁ ରାକ୍ଷସ ପୁଷ୍ପ ବିମାନେ ବସାଇ
ରହୁବର ସ୍ତମ୍ଭରେ ବାନ୍ଧିଲା ସଚିସାଇଂ ॥୬୫୧୫॥
ଇନ୍ଦ୍ର ବିମାନେ ବସି ଗମିଲା ରୋମାଞ୍ଚକ
ସୁଣଗୋ ଓମା ବୋଲି ବୋଲନ୍ତେ ତ୍ରିୟମ୍ବେକ ॥୬୫୧୬॥
ଶ୍ରୀକୃଷ୍ଣର ସୁତେ ମୃଗୟା ଜାଇଥିଲେ
ଇନ୍ଦ୍ରନିଳ ବନେ ଦଇତ୍ୟକୁ ହାବୋଡ଼ିଲେ ॥୬୫୧୭॥

୧ । ଘ ପୋଥି – ମାନଭରେ
୨ । ଘ ପୋଥି – ପାରୁଭଦ୍ରା
୩ । ଘ ପୋଥି –ସଙ୍ଗଂତୋଳା

କାଳନ୍ଦିର ସୁତେ ଜଇନ୍ତା[1] ନାମେ ବିର
ରୋମାଞ୍ଚକ ସଙ୍ଗେ କଲାକ ସମର ॥୬୫୧୮॥
ଗୋବିନ୍ଦ ପୁତ୍ର ବୋଲି ରୋମାଞ୍ଚକ ନ ଜାଣିଲା
ଜଇନ୍ତା ସଙ୍ଗେ ସମର ଘୋର କଲା ॥୬୫୧୯॥
ଗୋବିନ୍ଦ କୁମରେ ଅଟନ୍ତି ମହାବଳି
ଲକ୍ଷେଂ ଲକ୍ଷେଂ ସର ଏକାବେଳେ ବିନ୍ଧି ॥୬୫୨୦॥
ଚଉଦ[2] ଭୁବନ ଉଲୁକାପାତ ହେଲା
ସମର କରନ୍ତେ ସତର ଦିନ ଗଲା ॥୬୫୨୧॥
ଜଇନ୍ତା ବାଣେ ନାସ ଗଲା ରୋମାଞ୍ଚକ
କନ୍ୟାକୁ ଦେଖି ଲୋଭ କଲା କୃଷ୍ଣସୁତ ॥୬୫୨୨॥
ବିମାନ ସହିତେ ଇନ୍ଦ୍ରକୁ ଘେନିଗଲା
ବାସୁଦେବ ଅଗ୍ରତେ ନେଇଣ ଦେଖାଇଲା ॥୬୫୨୩॥
କହିଲା ଆଦିଅନ୍ତ ସୁଣିଲେ ଭଗବାନ
ଫିଟାଇଣ ଦିଲେ ଇନ୍ଦ୍ର ରାଜାର ବନ୍ଧନ ॥୬୫୨୪॥
ସଚେତ ହୋଇଣ ଇନ୍ଦ୍ର ଶ୍ରୀକୃଷ୍ଣ ପାଦେ ପଡ଼ି
ଚାଣ୍ଡାଳ ଦୈତ୍ୟ ମୋତେ କଲା ଏତେ ସରି ॥୬୫୨୫॥
କଲା ନାରଖାର ଅମର ଭୁବନ
ଦୁଲଣି ସହିତେ ମୋତେ ଆଣିଲା ବାନ୍ଧିଣ ॥୬୫୨୬॥
କାହିକିଂ ଘେନିଜାନ୍ତା ଜିବନେ ନ ରଖନ୍ତା
ସୁଭବେଳେ ଭେଟ ପାଇଲି ଜଇନ୍ତା[3] ॥୬୫୨୭॥
ଧନ୍ୟ ସେ ତୁମ୍ଭର କୁମର ଅଟଇ
ରାକ୍ଷସକୁ ମାରି ମୋତେ ଆଣିଲା ମୁକୁଳାଇ ॥୬୫୨୮॥
ଗୋବିନ୍ଦେ ବୋଲିଲେ ତୋ ଦୁହିତାକୁ ଜାଅ ଘେନି
ଇନ୍ଦ୍ର ବୋଇଲେ ମୁଂ ନ ନେବି ଦୁଲଣି ॥୬୫୨୯॥
ପ୍ରଦାନ କରିଦେବିଂ ତୁମ୍ଭର କୁମରକୁ
ବହୁତ ଉପଗାରି ଏ ହୋଇଲା ଆମ୍ଭକୁ ॥୬୫୩୦॥
ଦୋହିତାକୁ ଦେଇ ମୁଂ ପସିବି ସରଣ
ମୋହର ରାଣ ହରି ନ କର ତୁମ୍ଭେ ଆନ ॥୬୫୩୧॥
ସୁରପତିର ବଚନେ ଗୋବିନ୍ଦ ଦୟାକଲେ
ବିଭାର ସାମଗ୍ରି ଭିଆଅ ଉଗ୍ରସେନକୁ ଆଜ୍ଞା ଦିଲେ ॥୬୫୩୨॥
ଆଜ୍ଞା ପ୍ରମାଣେ ଭିଆଇଲା ରାଜା ଉଗ୍ରସେନ
କଣୟ ବେଦି ବାନ୍ଧି ତୋରଣା ଖଜିଂଲା ବହନ ॥୬୫୩୩॥
ଲାଗିଲା ଉଛବ ଦିଅନ୍ତି ହୁଳହୁଳି
ବରକନ୍ୟା ବେନି କୋଇଲି ବୁଢ଼ ଗାଳି ॥୬୫୩୪॥

୧ । ଘ ପୋଥି – ଜଇନ୍ତିନା
୨ । ଘ ପୋଥି – ଚତୁର୍ଦ୍ଦଶ
୩ । ଘ ପୋଥି – ଧନ୍ୟ ସେ କୁମର ତୋହର ବଳବନ୍ତା

ପୁଷ୍ୟାନାମେ ନକ୍ଷତ୍ର ବାର ନାମେ ଚନ୍ଦ୍ର
ତତୁଲ୍ୟ ନାମେ କରଣ ପରିଘ ନାମେ ଯୋଗ[1] ॥୬୫୩୫॥
ରିଷଭ ସଙ୍କରାନ୍ତିକି ଦ୍ୱାଦସ ଘଡ଼ି ଭିତରେ
ବରକନ୍ୟା ଯାଇ ବସିଲେ ବେଦି ଉପରେ ॥୬୫୩୬॥
ଗାର୍ଗବ ବାକ୍ୟ ପଢ଼ି କରାଇଲେ ବିଭା
ସମର୍ପି ଦେଇଣ ସ୍ୱର୍ଗକଇ ଗଲା ସୁରଦେବା ॥୬୫୩୭॥
ଇନ୍ଦ୍ରର ଦୋହିତା ହୋଇଲା ଗୋବିନ୍ଦଙ୍କ ବଧୁ
ଦ୍ୱାରିକାର ଜନେ କରନ୍ତି ସାଧୁ ସାଧୁ[2] ॥୬୫୩୮॥
ସଙ୍କତୋଳା ହରଣ ଏ ବିଚିତ୍ର ଅଟଇ
ସୁଣଗୋ ଓମା ବୋଲି ସଙ୍କର ଜାନ୍ତି କହି ॥୬୫୩୯॥
ଯେଣୁ ସୁରପତି ବହିଲା ହୃଦେ ଗର୍ବ
ରୋମାଞ୍ଚକ ଆସ୍ରେ ଗଞ୍ଜିଲେ ବାସୁଦେବ ॥୬୫୪୦॥
ଗର୍ବ ଯେ କରଇ ହରି ସହି ନ ପାରଇ
ବୃକ୍ଷରେ ଉଠାଇଣ ନିସାଣି କାଟଇ[3] ॥୬୫୪୧॥
ଗରବଗଞ୍ଜନ ବାନା ସେ ନାମ ନରହରି
ଚଉଦ ବ୍ରହ୍ମାଣ୍ଡର ସେ ପ୍ରଭୁ ଅଧିକାରି ॥୬୫୪୨॥
ସେ ହରି ମହିମା କେ କରୁ ଅନ୍ତ
ସେ ହରି ପାଦେ ସରଣ ସାରୋଳା ଚଣ୍ଡି ଦାସ ॥୬୫୪୩॥

## ହାରାବତୀ କଥା ଓ ନିକୁମ୍ଭା ଦୈତ୍ୟ ବଧ

ସଙ୍କର ମୁଖଚାହିଂ ଗିରିଜା ପଚାରିଲେ
ମନୋହର ବନେ ପାଣ୍ଡବେ କି କି କଲେ ॥୬୫୪୪॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ମନୋହର ବନେ ଥିଲେ ଯେ ପାଣ୍ଡେବ ॥୬୫୪୫॥
ଚୈତ୍ର ଦ୍ୱାଦସି ନକ୍ଷତ୍ର ପୁର୍ବଭୋଦ୍ରୁ ଜାଣ
ଘୋସଜାତ୍ରା ଦେଖିତେ କୌରୋବେ ଚଳିଲେକ ପୁଣ ॥୬୫୪୬॥
ଚିତ୍ରସେନ ଗନ୍ଧର୍ବ ଦେଖିଣ କୋପକଲା
ଦୁର୍ଯୋଧନକୁ ବାନ୍ଧି ରଥରେ ଘେନିଗଲା ॥୬୫୪୭॥
ସୁନ୍ୟେ ଯାନ୍ତେ ବୋବାଳି ଛାଡ଼ିଲା ଧୃତରାଷ୍ଟି
ଯୁଧିଷ୍ଟି ଦେଖି ବୋଇଲେ ଜାଅରେ କିରଟି ॥୬୫୪୮॥
ଯୁଧିଷ୍ଟି ଆଜ୍ଞାରେ ବାସେବି ଗଲା ଧାଇଂ
ଗମନ୍ତେ ଚିତ୍ରସେନ ଓଗାଳିଲା ଯାଇ ॥୬୫୪୯॥

୧ । ଘ ପୋଥି – ବାଲବ୍ୟ ନାମେ କରଣ ତତୁଲ୍ୟ ନାମେ ଯୋଗ
୨ । ଘ ପୋଥିରେ ତଳେ ଏହି ଧାଡ଼ି ଅଧିକ ଅଛି–
ଏମନ୍ତ ମହିମା ସେ କଲେ ଭାବଗ୍ରାହି
୩ । ଘ ପୋଥିରେ ସୁଣ ଗୋ ଓମାଠାରୁ ନିଶାଣି କାଟଇ ପର୍ଯ୍ୟନ୍ତ ନାହିଁ

ଡାକିଲା ଛାଡ଼ିଦିଅ ଏ ଗାନ୍ଧାରି ନନ୍ଦନ
ଲୋହିଲେ ନାସ ତୋତେ କରିବି ଚିତ୍ରସେନ ।।୬୫୫୦।।
ଗନ୍ଧର୍ବ ବୋଇଲା ଏ ତୁମ୍ଭର ବଇରି
କିମ୍ପା ଡାକୁଛୁ ତ ଛାଡ଼ ଛାଡ଼ ବୋଲି କରି ।।୬୫୫୧।।
ଅର୍ଜୁନ ବୋଇଲା ଏ ଆମ୍ଭର ସହୋଦର
ପଡ଼ି ମରୁ ବୋଲି ଫିଙ୍ଗିଦିଲା ଇନ୍ଦ୍ରର କୁମର ।।୬୫୫୨।।
ଯୁଧିଷ୍ଠି ପାଦତଳେ ପଡ଼ିଲା ଦୁର୍ଯୋଧନ
ଲଜ୍ୟାରେ ପଳାଇଲା ଗାନ୍ଧାରି ନନ୍ଦନ ।।୬୫୫୩।।
କର୍ଣ୍ଣ ସଙ୍କୁନି ରାତ୍ରରେ ଭେଟ ହୋଇ
ପଳାଉଥିଲେ ସେ ଗନ୍ଧର୍ବ ଭୟେ ପାଇ ।।୬୫୫୪।।
ଦୁର୍ଯୋଧନକୁ ଦେଖି ଆନନ୍ଦ ହୋଇଲେ
ମାନଭଗ୍ନେଂ ହସ୍ତିନାପୁରକୁ ବିଜେକଲେ ।।୬୫୫୫।।
ଯୁଧିଷ୍ଠିଙ୍କଠାରେ ପ୍ରବେସ ଧନୁର୍ଜଇ
ସୁଣଗୋ ଓମା ବୋଲି ସଦାଶିବ କହିଂ ।।୬୫୫୬।।
ଏକଦିନେ ନକୁଳ ଗଲା ଫଳ ଆଣିଂ
ରେବା ଦୈତ୍ୟକୁ ଭେଟିଲା ବନେ ପୁଣିଂ ।।୬୫୫୭।।
ଦଇତ୍ୟ ବୋଇଲା ଖାଇବିଂ ଆଜ ତୋତେ
ନକୁଳ ବୋଇଲା ମୁଂ କହିଆସେ ଯୁଧିଷ୍ଠି ଅଗ୍ରତେ ।।୬୫୫୮।।
ସତ୍ୟକରି ଯୁଧିଷ୍ଠି ଆଗେ ପ୍ରବେସ ନକୁଳ
ଯୁଧିଷ୍ଠି ବୋଇଲେ କିପାଇଂ କଲୁ ଉଛୁର ।।୬୫୫୯।।
ନକୁଳ ବୋଇଲା ରାକ୍ଷାସ ଦେଉଥିଲା ଗିଳି
ସତ୍ୟ କରିଅଛି ଏହିକ୍ଷଣି ଆସିବିଂ ବୋଲି ।।୬୫୬୦।।
ନ ଗଲେ ସତ୍ୟଭଗ୍ନେଂ ପଡ଼ିବି ନର୍କର
ଯୁଧିଷ୍ଠି ବୋଇଲେ ସଙ୍ଗେ ଯାଅ ବିକୋଦର ।।୬୫୬୧।।
ଯୁଧିଷ୍ଠିଙ୍କ ଆଜ୍ଞାରେ ଗମିଲେ ବେନି ଜନ
କାହିଂ ଦୈତ୍ୟ ବୋଲିଂ ସେ ପଚାରେ ଭିମସେନ ।।୬୫୬୨।।
ନକୁଳ ବୋଇଲା ସେ ବସିଥିଲା ନଦି ତଟ
ବିକୋଦର ବୋଇଲା ଆଗେଂ କରିଆସ ଭେଟ ।।୬୫୬୩।।
ଅୟେଂଳା ବୃକ୍ଷମୁଳେଂ ବସିଲା ମାରୁତି
ନକୁଳ ପ୍ରବେସ ଦାନବର କତି ।।୬୫୬୪।।
ଦୈଇତ୍ୟ ବୋଇଲାରେ ଉଛୁର କିପାଇଂ କଲୁଂ
ନକୁଳ ବୋଇଲା ଏବେ ତୁ ଖାଅ ବାବୁ ।।୬୫୬୫।।
କହୁଂ କହୁଂ ଦୈତ୍ୟ ବିସ୍ତାରିଲା ପାଟି
ନକୁଳକୁ ଧରି ଗର୍ଭକୁ ଦିଲା ଖେପିଟି ।।୬୫୬୬।।
ଗିଳିଦେଇ ଦୈତ୍ୟ ବାଟରେ ଜଗି ବସିଛି
ନକୁଳ ନକୁଳ ବୋଲି ଭିମସେନ ଡାକୁଛି ।।୬୫୬୭।।

କାହୁଂ ସେ ସୁଣିମ ଦୈତ୍ୟ ଦିଲା ଗିଳି
କୋପେ ବିକୋଦର ବୃକ୍ଷକୁ ଉପାଡ଼ି ।।୬୫୬୮।।
ଦୈତ୍ୟର ଉପରେ ପିଟି ବୃକ୍ଷ ଚୁନା ହେଲା
କୋପେଂ ଦାନେବ ଭିମସେନକୁ ଧଇଲା ।।୬୫୬୯।।
ଦୈଇତ୍ୟ ଗିଳିଦିଲା ଭିମସେନ
ଗର୍ଭରେ ଜାଇ ଥଳ ନ ପାଇଲାକ ପୁଣ ।।୬୫୭୦।।
ଦୈଇତ୍ୟ ଗର୍ଭରେ ପଶିଲା ମାରୁତି
ମେରୁ ପସିଗଲା କି ଫାଟିଗଲା ପୃଥି ।।୬୫୭୧।।
ଗର୍ଭରେ ନକୁଳକୁ ଦେଖିଣ ଭିମସେନ କହିଂ
ଦୈଇତ୍ୟକୁ ମାରି ନିକଳି ଯିବା ବେନି ଭାଇ ।।୬୫୭୨।।
ନକୁଳ ବୋଇଲା ସତ୍ୟଂ କରିଅଛି ମୁହିଂ ପୁର୍ବେଂ
ମୁହିଂ ମରେଂ ଦୈଇତ୍ୟ ଜିଇଂ ଥାଉ ଏବେ ।।୬୫୭୩।।
ସୁଣିଣ ବିକୋଦର କୋପିତ ଗଲା ହୋଇ
ରାକ୍ଷାସ ପରି[୧] ଶତୃ ହୋଇଲୁ ମର ତୁହିଂ ।।୬୫୭୪।।
ଗଲୁଂ ସତ୍ୟ କରି ଅଣାଇଲୁଂ ମୋତେ
ଦାନବ ଗର୍ଭରେ ଭରିଲା ତୋତେ ମୋତେ ।।୬୫୭୫।।
ମୁହିଂ ନାସ୍ତି କରନ୍ତେ ବୋଇଲୁ ମୋତେ ବାରି
ରାକ୍ଷସ ଜିଇ ଥାଉ ପକାଇବିଂ ତୋତେ ମାରି ।।୬୫୭୬।।
ଏତେ ବୋଲି ଭିମ ଧଇଲା ନକୁଳକୁ
ନକୁଳ କୋପଭରେ ଧଇଲା ଭିମକୁ ।।୬୫୭୭।।
ବେନି ସହୋଦରେ ଲାଗିଲେ ମାଲବନ୍ଧ
ମୁଣ୍ଡକୁ ମୁଣ୍ଡ ମାରି ଭୁଜ ଛନ୍ଦାଛନ୍ଦ ।।୬୫୭୮।।
ମୁଥକୁ ମୁଥ ମାରି ଦିଅନ୍ତି ପରିତାଳ
ବେନି ଷଣ୍ଢେ ଜେସନେ ଲାଗନ୍ତି ମହିୟାଳ ।।୬୫୭୯।।
ଉଠନ୍ତି ପଡ଼ନ୍ତି ନାଗନ୍ତି ଗଡ଼ାଗଡ଼ି
ଦୁହିଙ୍କ ଦେହ ବାଜି ଦୈଇତ୍ୟ ଅନ୍ତ ଛିଡ଼ି ।।୬୫୮୦।।
ବଦୟନ୍ତି ଓମା ସୁଣ ହେ ଦେବସୁଳି
ସୋଦରେ ସୋଦରେ ଲାଗିଲେ କେତେ କଳି ।।୬୫୮୧।।
କିବା ତାହାଙ୍କର ହରିଲା କେହୁ ଜ୍ଞାନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ।।୬୫୮୨।।
ଏକଦିନେ ପଣ୍ଡୁ ନକୁଳକୁ ଘେନିଥିଲେ
ବଳେ ବିକୋଦର ଜାଇ ବସିଲା କୋଳେଂ ।।୬୫୮୩।।
କାନ୍ଦିଲେ ବେନିଭାଇ ଲାଗିଲେ କନ୍ଦଳ
ଘେନିଥିଲା ପଣ୍ଡୁ ହୋଇଲା ଅସମ୍ଭାଳ ।।୬୫୮୪।।
ପ୍ରାସ ପାଇ ପଣ୍ଡୁ ପୁତ୍ରକୁ ସାପ୍ୟଦିଲେ
ସମର କରିବ ପଛେ ବେନିଭାଇ ବେଳେ ।।୬୫୮୫।।

---

୧ । ଘ ପୋଥି – ଦଇତ୍ୟଠାରୁ

ଅନ୍ୟେ ଅନ୍ୟ ହୋଇବ ବେନି ସହୋଦର
କୋନ୍ତି ବୋଇଲେ ନାଥ କଲ ଅବିଚାର ॥୬୫୮୬॥
ଏକଇ ସହୋଦରେ କଲ ଛେଦଭେଦ
ପଣ୍ଡୁ ବୋଇଲେ ସେହୁ ରଣେଂ ଲୋହିବେ ବଧ ॥୬୫୮୭॥
ରେବାସୁର ବୋଲି ମୁଢ଼ାସୁର ବଳା
ଗିଳିବ ବୋଲି ଦିନେ ମୋତେ ଗୋଡ଼ାଇଲା ॥୬୫୮୮॥
ପଳାଉଂ ପଳାଉଂ ମୋତେ ମାଇଲା ବିଧାଏ
ମୁହିଂ ଗଡ଼ିଗଲିଂ[୧] ଯୋଜନ ସାଠିଯେ ॥୬୫୮୯॥
ପଡ଼ିଣ ସୋକଭରେ ସାପ୍ୟ ତାକୁ ଦିଲିଂ
ମୋହର ପୁତ୍ର ହସ୍ତେ ମରିବୁ ତୁହିଂ ବୋଲି ॥୬୫୯୦॥
ଯୁଦ୍ଧ କରିଣ ତାହାକୁ ଜିଣି ନପାରିବେ
ଗର୍ଭରେ ପଶି ଦୈତ୍ୟକୁ ମାରିବେ ॥୬୫୯୧॥
ଦୈତ୍ୟ ମରିବ ଏହାଙ୍କ ସାପ୍ୟ ଜିବ
ଏମନ୍ତ ବୋଲି ପଣ୍ଡୁ କହିଲେ କୋନ୍ତି ଆଗ[୨] ॥୬୫୯୨॥
ସୁଣଗୋ ଓମା ବୋଲି ସଦାସିବ କହିଂ
ତେଣୁ ପିତା ସାପ୍ୟରୁ ସମର ବେନିଭାଇ ॥୬୫୯୩॥
ଭିମ ନକୁଳର ହୋଇଲା ସମର
ଦୋହିଙ୍କି ଘେନିଂ ଗର୍ଭେ ଗମିଲା ଅସୁର ॥୬୫୯୪॥
ନକୁଳ ଭିମକୁ ଯହୁଂ ଯୁଧିଷ୍ଟି ନ ଦେଖିଲେ
ଅର୍ଜୁନକୁ ବୋଇଲେ ଜାଅ ତହିଂ ବେଗେ ଭଲେ ॥୬୫୯୫॥
ଆଜକୁ ସପ୍ତଦିନ ଗଲେ ବେନିଭାଇ
କିଅବା ଦୈଇତ୍ୟ ତାହାଙ୍କୁ ଦେଲା ଖାଇ ॥୬୫୯୬॥
ଆମ୍ଭା ମୋର ବିକଳ ଜାଅରେ ଅର୍ଜୁନ
ତାହାକୁଂ ଖୋଜି ଗଣ୍ଡା ଗୋଟାଏ ମାରିଆଣ ॥୬୫୯୭॥
ଆସୁଅଛି ପିତୃତିଥି କରିବା କାମ୍ୟଶ୍ରାଦ୍ଧ
ଆଜ୍ଞା ପାଇ ଗମନ କଲାକ ପାର୍ଥିବ ॥୬୫୯୮॥
ଅରନ୍ୟ କନ୍ଦର ଖୋଜିଲା ଗ୍ରାମ ଦେସ
ଖୋଜି ଖୋଜି ନ ପାଇଲା ଭାଇଙ୍କ ସନ୍ଦେସ ॥୬୫୯୯॥
ବିଚାରେ କେଉଂ କତିକି ଗଲେ ସେ ପଳାଇ
ଦୈତ୍ୟ ଖାଇଗଲେ ଅସ୍ତି ଥାନ୍ତା ରହିଂ ॥୬୬୦୦॥
ଭ୍ରମନ୍ତେ ସର୍ବସାଚି କାମାଖି ବନେମିଳି
ବହୁତ ଫଳବୃକ୍ଷ ଲତାରେ ଉହୁଳି ॥୬୬୦୧॥
କ୍ଷୁଧାର ଆରତେ ଅର୍ଜୁନ ଫଳଖାଇ
ସୋଇଲା ବୃକ୍ଷମୁଳେଂ ଦେହକୁ ସର୍ମ ପାଇ ॥୬୬୦୨॥

୧ । ଘ ପୋଥି -ଉଡ଼ିଗଲି
୨ । ଘ ପୋଥି -ଏମନ୍ତ ବୋଲି ପଣ୍ଡୁ ଶାପ୍ୟ ଦିଲେ ଆଗ

ବୋଲନ୍ତି ସଦାସିବ ସୁଣଗୋ ଦେବି ଓମା
ହାରାବତି ବୋଲିଣ ଅଟଇ ଇନ୍ଦ୍ରଜେମା ॥୬୬୦୩॥
ନିକୁମ୍ଭା ଦୈତ୍ୟ ଆଣିଲା ତାକୁ ହରି
ରମଣ ମାଗନ୍ତେ ନାସ୍ତିକଲା ସେ ସୁନ୍ଦେରି ॥୬୬୦୪॥
ବୋଇଲା ଦ୍ୱାଦସ ବରସ ବ୍ରତ ଅଛି
ବ୍ରତ ସମ୍ପୁର୍ଣ୍ଣ ହୋଇଲେ ତୁ ହୋଇବୁ ମୋର ପତି ॥୬୬୦୫॥
ବଳତ୍କାର କଲେ ପ୍ରାଣ ଜିବଟି ତୋହର
ଶୁଣି ଦୈଇତ୍ୟ ରଖିଲା ତୋଳାଇ ନବର ॥୬୬୦୬॥
ରହିଲା ଇନ୍ଦ୍ରଜେମା ଦାନବର ଘରେ
କାମାଖ୍ୟଂ ବୋଲି ଦେବି ଅଛି ସେହି ନିକଟରେଂ ॥୬୬୦୭॥
ନିତି ହାରାବତି ଦେବିଂକି କରେ ପୁଜା
ବୋଇଲେ ଗୋ ମାହାମାଇ ଗୋଟିଏ ବର ମୋତେ ଦେବା ॥୬୬୦୮॥
ନିକୁମ୍ଭା ନାସ ଯିବ ମିଳିବ ମତେ କାନ୍ତ
ଏହି କଥା ତୋତେ ସେ ଲାଗିଲା ଗୋ ମାତ ॥୬୬୦୯॥
ଏହିମତି ହାରାବତି ଦେବିକିଂ ଯେ କହିଂ
ଏଗାର ବରଷ ସପ୍ତ ମାସ ଗଲାନି ବହି ॥୬୬୧୦॥
ସେହିକାଳେ ଦେବି ହୋଇଲେ ପ୍ରସନ
ବୋଇଲେ ହାରାବତି ସ୍ୱାମି ପାଇବୁ ତୁ ଆଜଦିନ ॥୬୬୧୧॥
ଦେବିଙ୍କ ଆଜ୍ଞାପାଇ ଖୋଜିଲା ହାରାବତି
କାମାକ୍ଷି ବନ କନ୍ଦର ଚଉକତି ॥୬୬୧୨॥
ବକୁଳ ବୃକ୍ଷ ମୁଳେ ମାଧବିଲତା ତଳେ
ସୋଇଛି ପୁରୁଷେକ ଦେଖିଲା ବେନି ଡୋଳେଂ ॥୬୬୧୩॥
କାନ୍ତି କନ୍ଦର୍ପଠାରୁଂ[୧] ରୁପ ତାର ସୋଭା
ଏହି ମୋର ବରବୋଲି କୋଳ କଲା ହାରା ॥୬୬୧୪॥
ରଥରେ ବସାଇ ଘରକୁ ଘେନି ଗଲା
ସାଷ୍ଟମ କରିଣ ଅର୍ଜୁନକୁ ବସାଇଲା ॥୬୬୧୫॥
ବୋଇଲା ପ୍ରାଣନାଥ ତୁ ମୋର ହେଲୁଂ ପତି
ତୁଟିବ କାମବାଣ କରହେ ସୁରତି ॥୬୬୧୬॥
ଅର୍ଜୁନ ବୋଇଲା ମୁଂ ନ ହରେ ପରନାରି
ତୁହି ପୁଣ ଅଟୁ ସେ କାହାର କୁମାରି ॥୬୬୧୭॥
ହାରାବତି ବୋଇଲା ମୁଂ ଇନ୍ଦ୍ରର ନନ୍ଦନି
ଅର୍ଜୁନ ବୋଇଲା ତୁ ଅଟୁ ମୋହର ବହେଣି ॥୬୬୧୮॥
କୋଇନ୍ତା ମୋର ମାତ ଇନ୍ଦ୍ର ମୋର ତାତ
ତୁ ହୋଇଲୁଂ ବହେଣି କେମନ୍ତେ ହେବି କାନ୍ତ ॥୬୬୧୯॥
ସୁଣିଣ ହାରାବତି ଲଜ୍ୟା ଉପେକ୍ଷିଲା
ବିବସନ ହୋଇ ପାଥକୁ କୋଳେଂ ବସାଇଲା ॥୬୬୨୦॥

୧ । ଘ ପୋଥି -କାନ୍ତି କାର୍ତ୍ତିକଠାରୁ

ହିୟାକୁ ହିୟା ଦେଇ କରଇ ଚୁମ୍ବନ
ଅର୍ଜୁନ ହୃଦକୁ ଦେଇ ବେନି ଯଉବନ ।।୬୬୨୧।।
ବୋଲଇ ପାର୍ଥ ମୋତେ କରହେ ଶୃଙ୍ଗାର
ଅର୍ଜୁନ ବୋଇଲା ତୁ ନକର ବଳକ୍ସାର ।।୬୬୨୨।।
ନ ହରେ ପରନାରି ନ ହରେ ପରଧନ
ହରିବିଂ ଯେଉଂଦିନେ ବାନ୍ଧିନେବ ଜମ ।।୬୬୨୩।।
ପୁଣି ତୁହି ମୋହର ହୋଇଲୁଂ ବହେଣି
କେତେ ଯୋଗ ନର୍କରେ ପଡ଼ିବି ମୁହିଂ ପୁଣିଂ ।।୬୬୨୪।।
ଧନ୍ୟ ସେ ଅର୍ଜୁନ ମହିମା ଅଟଇ
ହାରାବତି ରୁପ ଦେଖି ଲୋହିଲାକ ମୋହି ।।୬୬୨୫।।
ସୋଳସା ବୟସ ଏକେ ହେଂ ଇନ୍ଦ୍ରଜେମା
ଯାହାକୁ ଦେଖିଣ କାମଦେବ ଗର୍ବ ଚୁନା[1] ।।୬୬୨୬।।
ତାହାକୁ ଦେଖିଣ ପାର୍ଥ ଲୋହିଲାକ ମୋହିଂ
କୋପେଣ ହାରାବତି ଅର୍ଜୁନକୁ ବୋଲଇ ।।୬୬୨୭।।
ଏହିକ୍ଷଣି ତୋତେ ମୁଂ ପକାଇବିଂ କୋପର
ଜିଇଂବାକୁ ଆସ ଥିଲେ ହୁଅ ମୋର ବର ।।୬୬୨୮।।
ଅର୍ଜୁନ ବୋଇଲା ମୋର ମରିବା ନିୟତ
ସୁରତି ନ କରିବିଂ ତୋହର ସଙ୍ଗତ ।।୬୬୨୯।।
ସୁଣି ହାରାବତି ଅର୍ଜୁନକୁ ଧରି
ପକାଇଦିଲା ପାର୍ଥ ଜିର୍ଣ୍ଣକୁପେଂ ପଡ଼ି ।।୬୬୩୦।।
ଏକାସି ତାଳ ଗଭିରେ ଅର୍ଜୁନ ପଡ଼ିଲା
ସନ୍ଧ୍ୟାକାଳ ହୁଅନ୍ତେ ଦୈଇତ୍ୟ ମିଳିଲା ।।୬୬୩୧।।
ଦେଖି ହାରାବତି କବାଟ ପାଡ଼ଇ
ଦଇତ୍ୟ ଦ୍ୱାରେ ରହନ୍ତେ ରଜନି ଗଲା ପାହି ।।୬୬୩୨।।
ଫେଇଲେ କବାଟ ପସିଲେ ଭିତର
କନ୍ୟାକୁ ବୋଇଲା କିମ୍ପାଇ ପାଡ଼ିଲୁ ଦୁଆର ।।୬୬୩୩।।
ହାରାବତି ବୋଇଲା ରାତ୍ରେ ପୁରଷକୁ କବାଟ ନ ଫେଡ଼ଇଂ
ସାଧୁ ସୁନ୍ଦର ବୋଲି ନିକୁମ୍ଭା ବୋଲଇ ।।୬୬୩୪।।
ବଦୟନ୍ତି ଗିରିଜା ସୁଣହେ ଗଙ୍ଗାଧର
ଜିର୍ଣ୍ଣକୁପରେ ପଡ଼ିଲା ଯେ ବାସେବକୁମର ।।୬୬୩୫।।
ରେବାସୁର ଗର୍ଭରେ ନକୁଳ ଭିମ ରହିଂ
ନଦେଖି କିସ କଲେ ଧର୍ମର ତନଇ ।।୬୬୩୬।।
ବୋଲନ୍ତି ସଦାସିବ ସୁଣଗୋ ଗିରିଜା[2]
ଭିମ ନକୁଳର ସମର ହୋଇଲା ଜା ଜା[3] ।।୬୬୩୭।।

ଦୈଇତ୍ୟର ଗର୍ଭେ ପସି ବିବାଦ ବେନିଭାଇ
ସମର କରନ୍ତେ ଚଉଦ ଦିନଂ ଗଲା ବହି ।।୬୬୩୮।।
ସତେସିଙ୍ଘ ଗିରିକି ଭିମ ସୁମରିଲା
ମାରନ୍ତେ ବଜ୍ର ମୁଥେ ନକୁଳ ଆଡ଼େ ହେଲା ।।୬୬୩୯।।
ଦାନବ ଗର୍ଭରେ ବାଜିଲା ଭିମର ବଜ୍ରମୁଥ
ବେନିଫାଳ ହୋଇ ଫାଟିଲା ଦଇତ୍ୟ ।।୬୬୪୦।।
ଦଇତ୍ୟ ମଲା ଗର୍ଭୁଂ ବାହାର ବେନି ଭାଇ
ଭିମ ବୋଇଲା ଆସ ଯିବାରେ ଚଳାଇ ।।୬୬୪୧।।
ଯୁଧିଷ୍ଟି ଅଗ୍ରତେ ପ୍ରବେଶ ଭାଇବେନି
ଧର୍ମସୁତ ବୋଇଲେ କାହିଂ ଗଲାକି ଫାଲଗୁନି ।।୬୬୪୨।।
ବିକୋଦର ବୋଇଲା ଆମ୍ଭେ ଦେଖିନାହୁଂ ଅର୍ଜୁନ
ଦୈତ୍ୟ ଗିଳିଥିଲା ଅଇଲୁ ମୁକୁଳିଣ ।।୬୬୪୩।।
ଶୁଣିଣ ବିସାଦ ଯୁଧିଷ୍ଟି ପାଇଲେ
କାହିଂ ଗଲା ପାଥ ସହଦେବକୁ ପଚାରିଲେ ।।୬୬୪୪।।
ସହଦେବ ବୋଇଲେ ତୁମ୍ଭ ଆଜ୍ଞାରେ ଗଲେ ଚଳି
ଖୋଜି ଖୋଜି ଯାଇ କାମାକ୍ଷି ବନେ ମିଳି ।।୬୬୪୫।।
ହାରାବତି ବୋଲିଣ ସେ ଇନ୍ଦ୍ରର ଦୁଲଣିଂ
ନିକୁମ୍ଭା ଦୈତ୍ୟ ତାକୁ ବନ୍ଦି କରିଥିଲା ପୁଣିଂ ।।୬୬୪୬।।
ସେହି ଘେନି ଜାଇ ପାଥକୁ ଶୃଙ୍ଗାର ମାଗିଲା
କିରଟି ନାସ୍ତି କରନ୍ତେ ଜିର୍ଣ୍ଣକୁପରେ ପକାଇଲା ।।୬୬୪୭।।
ଏକାସି ତାଳ ଗଭିରେ ପଡ଼ି ଅଛନ୍ତି ଅର୍ଜୁନ
ସୁମର ଏହିକ୍ଷଣି ଆସନ୍ତୁ ଭଗବାନ ।।୬୬୪୮।।
କହନ୍ତେ ସହଦେବ ଯୁଧିଷ୍ଟି ମୂର୍ଚ୍ଛା ଗଲେ
ଧରିଣ ଭିମ ନକୁଳ ସାଷ୍ଟମ କରାଇଲେ ।।୬୬୪୯।।
ବୋଇଲେ ମୋ ଜିବ କିପାଂଇ ରହିଛି ନଜାଇ
ଜିର୍ଣ୍ଣକୁପେ ପଡ଼ିଲା ଅର୍ଜୁନ ପରାଭାଇ ।।୬୬୫୦।।
ଏତେ ବୋଲି ହରିକିଂ ଚିନ୍ତିଲେ ଧର୍ମନାନ
ପ୍ରବେସ ହୋଇଲେ ଗୋବିନ୍ଦ ଗରୁଡ଼ ଆରୋହିଣ ।।୬୬୫୧।।
ଯୁଧିଷ୍ଟିକିଂ ଓଳଗି କୁସଳ ପଚାରିଲେ
ଯୁଧିଷ୍ଟି ବୋଇଲେ ପାଥ ପଡ଼ିଲେ ବନ୍ଦିରେ ।।୬୬୫୨।।
ରଖିଲା ହାରାବତି କୁପରେ ପକାଇ
ଭୋ ଜଗବନ୍ଧୁ ଆଣିଦିଅ ମୋର ଭାଇ ।।୬୬୫୩।।
ଶ୍ରୀହରି ପଚାରନ୍ତେ ସହଦେବ କହିଂ
ଗୋବିନ୍ଦ ଉଦବେଗ ବାରତା ତଥ୍ୟ ପାଇ ।।୬୬୫୪।।
ଭିମ ଭଗବାନ ଗରୁଡ଼ ପୃଷ୍ଟେଂ ବସି
ସୁନ୍ୟରେ ଉଡ଼ିଗଲେ ବିନନ୍ତାର ବଛି ।।୬୬୫୫।।

୧ । ଘ ପୋଥି - ଯାହାକୁ ଦେଖି କାମ ଯେ ଦହେ ପଞ୍ଚୁଆତ୍ମା
୨ । ଘ ପୋଥି - ଗଉରୀ
୩ । ଘ ପୋଥି - ହାଦେ କରି

କାଳଞ୍ଜନ[1] ନଗ୍ରେ ଜାଇ ହୋଇଲେ ପ୍ରବେସ
ଗରୁଡ଼ ପଖିଘାତେ ବହିଲା ଅଣଞ୍ଚାସ ||୬୬୫୬||
ମଣ୍ଡୋପ ଅଟ୍ଟାଳି ଭାଜିଣ ପଡ଼ିଗଲେ
ଭଗନସ୍ତ ହୋଇ ଦଇତ୍ୟେ ପଡ଼ିଲେ ||୬୬୫୭||
ଦାନବଙ୍କ ସଙ୍ଗେ ସମର କଲା ଭିମ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ||୬୬୫୮||
ହାରାବତିଠାରେ ପ୍ରବେସ ଭାବଗ୍ରାହିଂ
ହରିଙ୍କି ଦେଖି ହାରା ପୟରେ ପଡ଼ଇ ||୬୬୫୯||
ବୋଇଲା ହରି ମୁହିଂ ହୋଇଅଛି ବନ୍ଦି
କଣୟ ପୁଷ୍ପ ହୋଇ ହୋଇଲିଂ ଅଗାଡ଼ି ||୬୬୬୦||
ଦେଖ ମୋହର ଯୁବା ବୟସ ଅକାରଣ
ଆଜ ହେବ ସୁଫଳ ଦେଖିଲିଂ ନାରାୟଣ ||୬୬୬୧||
ଦେବ ସ୍ୱାମି ଦାନ କହୁଅଛି ଏତେ
ଅର୍ଜୁନ କାହିଂ ବୋଲି ବୋଲନ୍ତି ଜଗନ୍ନାଥେଂ ||୬୬୬୨||
ଦେଖିବଇଂ ଆଣି ଦିଅ ସର୍ବସାଚି
ସତ୍ୟକର ବୋଲିଂ ବୋଇଲା ହାରାବତି ||୬୬୬୩||
ଜେମନ୍ତେ ଦେବ ପାଥ ହୋଇବ ବର ମୋର
ହେଉ ହେଉ ବୋଇଲେ ଦେବକି କୁମର ||୬୬୬୪||
ଗନ୍ଧର୍ବ ବିଦ୍ୟା ଜେ ପଢ଼ିଲା ହାରାବତି
ଜିର୍ଣ୍ଣ କୁଫୁଂ ବାହାର ହୋଇଲା ସର୍ବସାଚି ||୬୬୬୫||
ଶ୍ରୀହରି ପଦ୍ମପାଦେ କଲା ନମସ୍କାର
କୋଳକରି ଧଇଲେ ଜଗତ ଇଶ୍ୱର ||୬୬୬୬||
ଅର୍ଜୁନ ବୋଇଲା ମୋତେ ବନ୍ଦିକଲା ହାରାବତି
ଗୋବିନ୍ଦ ବୋଇଲେ ଆସ ଦୈତ୍ୟକୁ ମାରିବାଟି ||୬୬୬୭||
ଅର୍ଜୁନ ବାହାରିଲା ଘେନିଣ ଧନୁସର
ସୁଣଗୋ ଓମା ବୋଲିଂ ବୋଲନ୍ତି ସଙ୍କର ||୬୬୬୮||
ଭିମ ଅର୍ଜୁନ ଜହୁଂ କଲେ ହୁରିଜୁରି
ଜାଣିଣ ଦାନେବ ପ୍ରବେସ ନଗରି ||୬୬୬୯||
ବିକୋଦର ସଙ୍ଗେ ଲଗାଇଲା ରଣ
ଭିମକୁ ସାହା ହୋଇଲେ ଅର୍ଜୁନ ଭଗବାନ ||୬୬୭୦||
ଭିମ ଅର୍ଜୁନ ସହିତେ ଚକ୍ରପାଣିଂ
ତିନିଜଣେ ରଣକଲେ ଗରୁଡ଼କୁ ଘେନି ||୬୬୭୧||
ତିନିଜଣ ଜେତେ ବିନ୍ଧିଲେକ ସର
ତିଳେଂ ନଭେଦିଲା ଦୈଇତ୍ୟ ଅଙ୍ଗର ||୬୬୭୨||
ଲକ୍ଷ ଲକ୍ଷ ସର ଦାନବ ବିନ୍ଧିଲା
ହରି ଅର୍ଜୁନ ଦେହ ସେ ରୁଧିର ବର୍ଣ୍ଣହେଲା ||୬୬୭୩||

୧ । ଘ ପୋଥି – କାଳନ୍ଦି

ଭିମର ରୋମେ ରୋମେ ନାରାଜ ଜନ୍ତି ହୋଇ
ଗୋବିନ୍ଦ ଛୋଟାହୋଇ ନ ପାରନ୍ତି ଜାଇ ||୬୬୭୪||
ଏହି ରୁପେ ହୋଇ ବିନ୍ଧୁଛନ୍ତି ସର
ତେଜରେ ଜଳିଗଲା ନତା ତରୁବର ||୬୬୭୫||
ବନଜିବମାନେ ମରିଣ ସୋଇଲେ
ଜିବ ଥିଲା ଆଉ ଗୋଟିଏ ନରହିଲେ ||୬୬୭୬||
ତେଜରେ ତାତିଲା ସପତସିନ୍ଧୁ ଜଳ
ଜଳଜିବେ ମରିଆସି ଲାଗିଲେ କୋଳ ||୬୬୭୭||
ବିଦ୍ୟାଧର ପୁରୁଷେଂ ନପାରିଲେ ରହିଂ
ଛାଡ଼ିଣ ଦିଗମାନେ ଗଲେ ସେ ପଳାଇ ||୬୬୭୮||
ନିକୁମ୍ଭା ଦୈଇତ୍ୟ ଯେ କୋପଭର ହୋଇ
ନାରାଜେ ଛାଡ଼ିଦେଇ ନାରାଜେ ବିନ୍ଧଇ ||୬୬୭୯||
ଜେତେ ସର ବିନ୍ଧନ୍ତି ଶ୍ରୀହରି କିରଟି
ଦୈଇତ୍ୟକୁ ଲାଗଇ ଜେସନେ ପାଣିଫୁଟି ||୬୬୮୦||
ଭିମସେନ ଜେତେବେଳେଂ ଗଦା ପ୍ରହାରଇଂ
ଫୁଲମଣ୍ଡା ପ୍ରାଏକ ନିକୁମ୍ଭା ମଣଇ ||୬୬୮୧||
ବାଣ ବିନ୍ଧିବିନ୍ଧି ଅର୍ଜୁନ ଥକିତେ ରହଇ
ଗାଣ୍ଡିମ ଧନୁରୁ ଗୁଣ ଛିଡ଼ିଣ ସେ ଜାଇ ||୬୬୮୨||
ବାସୁଦେବ ତୁଣିରୁ ସରିଲା ସବୁ ସର
ଗଦା ଭାଜିଂ ତୁଚ୍ଛା ହସ୍ତ ହୋଇଲା ବିକୋଦର ||୬୬୮୩||
ଭିମକୁ ଦରାଣ୍ଡି ଧଇଲା ଅସୁର
ମାଲବନ୍ଧେ ଗଡ଼ାଗଡ଼ି ଲାଗିଲେ ବେନି ବିର ||୬୬୮୪||
ଖାଲ ଟିକର ଖଣା ସମତୁଲ ହେଲା
ବିକୋଦରକୁ ଅସୁର ମାଡ଼ିଣ ବସିଲା ||୬୬୮୫||
ଭିମ ଅସାଷ୍ଟମ ରାକ୍ଷାସ ଭାରା ପାଇ
ଅର୍ଜୁନ ବୋଇଲେ କିସ ଦେଖୁଛ ଭାବଗ୍ରାହିଂ ||୬୬୮୬||
ଦେଖୁଂ ଦେଖୁଂ ଠାକୁରେ ହେଉଛନ୍ତି ହତ
ଗୋବିନ୍ଦେ ବୋଇଲେ ସର ବିନ୍ଧ ବିରପାଥ ||୬୬୮୭||
ଅର୍ଜୁନ ବୋଇଲେ ମୋ ଧନୁରେ ନାହିଂ ଦ୍ରୋଣ[1]
ତୁମ୍ଭେ ଆଗେଂ ନାରାଜ ବିନ୍ଧ ହେ ନାରାୟଣ ||୬୬୮୮||
ଶ୍ରୀହରି ବୋଇଲେ ମୋ ତୃଣରେ ନାହିଂ ସର
ଆଣିବାକୁ ଯାଇଅଛି ବିନନ୍ତା କୁମର ||୬୬୮୯||
ଏଥୁଂ ଅନ୍ୟନ୍ତରେ ବିନତା ତନଇ
ଅସୁରଙ୍କ ଘରୁ ନାରାଜ ଆଣେ ବହିଂ ||୬୬୯୦||
ସର ଦେଖି ଆନନ୍ଦ ହୋଇଲେ ଗୋବିନ୍ଦ
ଏକାବେଳେ ଲକ୍ଷେ ନାରାଜ ବିନ୍ଧିଲେ ଆଦିକନ୍ଦ ||୬୬୯୧||

୧ । ଘ ପୋଥି – ଗୁଣ

ନିକୁମ୍ଭା ହସ୍ତେଂ ଧରି ପକାଇଲା ଭାଜିଂ
ବିକୋଦର ଉପରେ ବସିଲା ଗଳଗାଜିଂ ॥୬୬୯୨॥
ପୁଣି ବାସୁଦେବ ବିନ୍ଧିଲେ ସାଠିଏ
ବେନି ଲକ୍ଷ ନାରାଜ ବିନ୍ଧିଲେ ଧନୁର୍ଜ୍ଜୁଏ ॥୬୬୯୩॥
ଦୈଇତ୍ୟ ଧରିଣ ଭାଜିଣ ଚୁନାକଲା
ପୁଣି ଲକ୍ଷେଂ ବାଣ ବିନ୍ଧିଲେ ଚକାଡୋଳା ॥୬୬୯୪॥
ଅର୍ଜ୍ଜୁନ ବିନ୍ଧିଲେ ପଞ୍ଚାଉନ କୋଟି
ଦେଖିଣ ଦନୁଜ ବିସ୍ତାରିଲା ପାଟି ॥୬୬୯୫॥
ଗର୍ଭରେ ପସି ବାଣ ସିତଳ ଗଲା ହୋଇ
ହାଇମାରି ଦୈଇତ୍ୟ ବୋଲଇ ଆଇ ଆଇ ॥୬୬୯୬॥
ସୁଣି ସର୍ବସାଚି ବିନ୍ଧିଲା ପଞ୍ଚାନବେ
ସତର ଲକ୍ଷ ସର ବିନ୍ଧିଲେ ବାସୁଦେବେ ॥୬୬୯୭॥
ଜଗତ ଜାକ ସବୁ ଉଲୁଂକାପାତ ହେଲା
କୋଟିଏ ଅଗ୍ନିଂକି ଏକାବେଳେ ଗିଳିଲା ॥୬୬୯୮॥
ଦୈଇତ୍ୟର ଅଙ୍ଗେ ତିଳେ ନ ଭେଦଇ
ସୁଣଗୋ ଓମା ବୋଲି ସଙ୍କର ଜାନ୍ତି କହିଂ ॥୬୬୯୯॥
ଦୈଇତ୍ୟର ଭୁବନୁ ଜହୁଂ ସରିଲା ସହସ୍ର
ସ୍ୱର୍ଗକୁ ଧାଡ଼ିଦିଲା ବିନନ୍ତାର ସିସ ॥୬୭୦୦॥
ଗୋବିନ୍ଦଙ୍କଠାରେ ଦେବବାଣ ଦେଇ
ସୁଣଗୋ ପ୍ରିୟା ବୋଲି ବୋଲନ୍ତି ଭାବଗ୍ରାହିଂ ॥୬୭୦୧॥
ଦେବତାଙ୍କ ସର ସରିଲା ଜେତେବେଳେଂ
ସୁଦର୍ଶନଂ[1] ଚକ୍ରକୁ ଗୋବିନ୍ଦ ପ୍ରହାରିଲେ ॥୬୭୦୨॥
ଦୈଇତ୍ୟର ଅଙ୍ଗେ ତିଳେ ନ ଭେଦିଲା
ଲଜ୍ୟାରେ ସୁଦର୍ଶନ ବାହୁଡ଼ି ଅଇଲା ॥୬୭୦୩॥
ସ୍ଥମ୍ଭିଭୁତେ ରହିଲେ ଦେବ ଭଗବାନ
ଦେଖିଣ ସର୍ବସାଚି କଲାକ ରୋଦନ[2] ॥୬୭୦୪॥
ଭିମସେନ ଠାକୁରେ ଆଉ ଜିବନେ ନାହାନ୍ତି
ଘଡ଼ଘଡ଼ି ସବଦେ ଦାନବ ମାଡ଼ ସୁଭୁଅଛିଟି ॥୬୭୦୫॥
ବିକୋଦର ଜେମନ୍ତେ ଦୈତ୍ୟେ ହସ୍ତେଂ ବଧ
କିସ କହିବା ଜାଇ ଯୁଧିଷ୍ଠିଙ୍କ ଆଗ ॥୬୭୦୬॥
ଗୋବିନ୍ଦେ ବୋଇଲେ ହୋ ଜାଳ ହୁତାସନ
ସହି ନ ପାରିବା ଯୁଧିଷ୍ଠିଙ୍କ ବଚନ ॥୬୭୦୭॥
ପୁର୍ବେ କେତେ ଦୈତ୍ୟେ ଆମ୍ଭେ ଅଛୁ ମାରି
ଏହାର ସମାନେ କେହି ନଥିଲେ ବଳି ॥୬୭୦୮॥

୧ । ଘ ପୋଥି – ସୁନ୍ଦ୍ରିସେନ
୨ । ଘ ପୋଥି – ଏଥକୁ ଉପାୟେ କରହେ ଦେବଗଣ

ନ ମାରି ନ ମରି ଭିମକୁ ଛାଡ଼ି ଦେନ୍ତା
ହୁଅନ୍ତା ଅପଜସ ଜିବନ ରହିଥାନ୍ତା ॥୬୭୦୯॥
କେବଣ ବିଧାତା ଏହାକୁ ଦେଇଅଛି ବର
ନ ଭେଦଇ ସୁଦର୍ଶନ ନକାଟଇ ସର ॥୬୭୧୦॥
ଏମନ୍ତ ବିଚାରନ୍ତେ ଅସୁର ଦେଖିଲା
ଭାଳୁଛ କିସ[1] ତୁମ୍ଭେ ନାରାଜ ବିନ୍ଧ ଭଲା ॥୬୭୧୧॥
କରୁଥିଲ ରଣ ଇତର ମୋତେ ମଣିଂ
ଏବେ ଥକିଣ ଭାଳୁଛ ତୁମ୍ଭେ ପୁଣିଂ ॥୬୭୧୨॥
ଏହାକୁ ଧରିଅଛି କରିବିଂ ଆହାର
ତୁମ୍ଭଂକୁ ଉଡ଼ାଇବି ନିସ୍ୱାସ ପବନର ॥୬୭୧୩॥
ପକ୍ଷି ଗୋଟାଏ ଆଣିଥିଲ ପୋସି
ପୋଡ଼ିଣ ଖାଇବି ତାହାକୁ ବିନାସି ॥୬୭୧୪॥
ପୁର୍ବର ବଇରି ମୁଂ ନୁହଇ ତୁମ୍ଭର
ଅକାରଣେ କୁଝ[2] ହୋଇବ ଅପହାର ॥୬୭୧୫॥
ଗୋବିନ୍ଦ ବୋଇଲେ ତୁ କହିଲୁଂ ନିଅତ
ମରିବାର ଲୋକେ କହୁଥାନ୍ତି ଏମନ୍ତ ॥୬୭୧୬॥
ଜାହାର ପରମାୟୁ ଯେ କାଳେଂ ସରଇ
ନମାନେ ଗୁରୁଜନ କହଇ ବଡ଼ାଇ ॥୬୭୧୭॥
ଏମନ୍ତ କହୁଂ କୁହୁଂ ସୁଭିଲା ଦେବବାଣି
ସୁର୍ଯାବ୍ରତ ଚକ୍ର ପେସ ହେ ଚକ୍ରପାଣି ॥୬୭୧୮॥
ସୁନ୍ୟବାଣି ସୁଣି ସୁର୍ଯ୍ୟାବ୍ରତ ବିନ୍ଧିଲେ ଚକାଡୋଳା
ଦୈଇତ୍ୟ କଂଠେ ପଡ଼ି ବେନି ଖଣ୍ଡ କଲା ॥୬୭୧୯॥
ଦାନବ ନାସ ଜାନ୍ତେ ଉଠିଲା ଭିମସେନ
ପୁଷ୍ପ ବୃଷ୍ଟି କଲେ ସ୍ୱର୍ଗରେ ଦେବଗଣ ॥୬୭୨୦॥
ସଙ୍କର ମୁଖ ଚାହିଂ ପଚାରନ୍ତି ଗଉରି
କାହାର ପୁତ୍ର ସେ ଅଟଇ ମହାବଳି ॥୬୭୨୧॥
ସୁଣଗୋ ଓମା ବୋଲି ବୋଲନ୍ତି ଦିଗାମ୍ବର
ସତ୍ୟ ଯୁଗେ ଥିଲା ଉଲୁଂକା ଅସୁର ॥୬୭୨୨॥
ସେହି ଚାଲନ୍ତେ ପୃଥିବି ଉଲୁଂକାପାତ ହୋଇ
କାଳିଞ୍ଜନ ବୋଲି ଏହାର ତନଇ ॥୬୭୨୩॥
ତାହାର ନନ୍ଦନ ନାମ ଚନ୍ଦ୍ରଜୋତି[3]
ଚନ୍ଦ୍ରକୁ ଜିଣି ଜସ ରଖିଲାକ ପୃଥି ॥୬୭୨୪॥
ଚନ୍ଦ୍ରଜୋତି ସୁତ ନାମ ନକ୍ଷତ୍ର ହୋଇଲା
ନକ୍ଷତ୍ରକୁ ଗୁନ୍ଥି ଗଳାକୁ ମାଳା କଲା ॥୬୭୨୫॥

୧ । ଘ ପୋଥି – କିମ୍ପେ
୨ । ଘ ପୋଥି – ଗଞ୍ଜିହୋଇ
୩ । ଘ ପୋଥି – ମଛଇନ୍ଦ୍ର ଜୋତି

ସର୍ବଣା ବୋଲି ତାହାର ତନଏ
ତାହାର ବିର୍ଜ୍ଜୁଂ ଅଇରିବିନ୍ଦୁ ଜାତ ହୋଏ ॥୬୭୨୬॥
ହୁତାସନ ବୋଲିଣ ତାହାର ନନ୍ଦନ
ତାହାର ତେଜକୁ ଡରଇ ବରୁଣ ॥୬୭୨୭॥
ତାହାକୁ ସମରେ ନାସିଲା ପୁରନ୍ଦର
ତାହର ନନ୍ଦନ ନିକୁମ୍ଭା ଅସୁର ॥୬୭୨୮॥
ପିତୃ ବଇରି ସାଧିତେ ସେବିଲା ଦିନକର
ପ୍ରସନ ହୋଇଣ ଆଦିତ୍ୟ ଦିଲେ ବର ॥୬୭୨୯॥
କେହୁଣସି ବାଣେଂ ମୃତୁ ନୋହିବ ତୋହର
ସୁର୍ଯାବ୍ରତ ଚକ୍ରେ ମରିବୁ ଅସୁର ॥୬୭୩୦॥
ଏମନ୍ତ ବରଦେଇ ଅନ୍ତର ନିରଜଂନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୬୭୩୧॥
ନିକୁମ୍ଭା ଦୈଇତ୍ୟ ଜହୁଂ ଗଲାମରି
ମାତଳିକି ପ୍ରବର୍ତ୍ତି ଦିଲେ ବଜ୍ରଧାରି ॥୬୭୩୨॥
ଅର୍ଜୁର୍ନକୁ ଆଣ ମୁଂ ଦେଖିବି ବଦନ
ତାହାକୁ ସୁଣି ଅର୍ଜୁର୍ନକୁ ବୋଇଲେ ନାରାୟଣ ॥୬୭୩୩॥
ମାତଳି ସଙ୍ଗେ ଏବେ ଯାଅରେ ଧନୁର୍ଜଇ
କନ୍ୟାକୁ ବିଭାହେବୁ ଅମରପୁରେ ଜାଇ ॥୬୭୩୪॥
ଏତେବୋଲି ହରି ଭିମକୁ ସଙ୍ଗେ ଘେନି
ଗରୁଡ଼ ପୃଷ୍ଟେ ବସି ଗମନ କଲେକ ପୁଣି ॥୬୭୩୫॥
ଯୁଧିଷ୍ଟିଙ୍କ ଅଗ୍ରତେ କହିଲେ ସମାଚାର
ଦ୍ୱାରକା ପୁରକୁ ଗମିଲେ ଦାମୋଦର ॥୬୭୩୬॥
ଅର୍ଜୁନ ହାରାବତି କି ରଥରେ ବସାଇ
ମାତଳି ଗମିଜାଇ ଅମରପୁରେ ହୋଇ ॥୬୭୩୭॥
ଦେଖିଣ ସୁରପତି ଅର୍ଜୁର୍ନକୁ କୋଳକଲା
ଦୈଇତ୍ୟ ନାସ କରି ଅମର ରଖିଲୁଂ ବୋଇଲା ॥୬୭୩୮॥
କିସ ଉପହାର ଦେବିରେ ଫାଲଗୁନି
ହାରାବତି କନ୍ୟାକୁ ବିଭାହୁଅ ପୁଣି ॥୬୭୩୯॥
ଏତେ ବୋଲି ଇନ୍ଦ୍ର ଉଛବ କରାଇ
ଗାନ୍ଧର୍ବ ବେଭାରେଂ[୧] ଅର୍ଜୁନ ବିଭା ହୋଇ ॥୬୭୪୦॥
ଅର୍ଜୁନ ବିଭାହୋଇ ହୋଇଲା ଅମର
ହାରାବତି ସଙ୍ଗେ ଜେ ବଢ଼ିଲା ସୃଙ୍ଗାର ॥୬୭୪୧॥
ଅର୍ଜୁନ ବିର୍ଜେଂ ଗର୍ଭବାସ ହାରାବତି
ହୋଇଲା ପାଞ୍ଚମାସ ବାହାର ସର୍ବସାଚି ॥୬୭୪୨॥
ଇନ୍ଦ୍ରଠାରୁ ମେଲାଣି ହୋଇଲା ଅର୍ଜୁନ
ପ୍ରବେସ ହୋଇଲା ଜାଇ ରଇବତ ବନ ॥୬୭୪୩॥

୧ । ଘ ପୋଥି – ବିଦ୍ୟାରେ

ଯୁଧିଷ୍ଟିଠାରେ ମିଳି ନମସ୍କାର କଲେଂ
କଲ୍ୟାଣ ବାଞ୍ଛି ଦେବେଂ କୁସଳ ପଚାରିଲେ ॥୬୭୪୪॥
ଆଦିଅନ୍ତ କରି କହିଲା ପାର୍ଥିବ
ଯୁଧିଷ୍ଟି ପଚାରିଲେ ସୁଣରେ ସହଦେବ ॥୬୭୪୫॥
ଯେ ଦିନୁ ଛାଡ଼ିଲୁଂ ହସ୍ତିନା ଭୁବନ
ଆଜକୁ ଲେଖାକର ହୋଇଲା କେତେଦିନ ॥୬୭୪୬॥
ଯୁଧିଷ୍ଟିର ବଚନେ ବୋଇଲା ମାଦ୍ରିସୁତ
ଆଜକୁ ହୋଇଲା ଦଶବରସ ଚାରିମାସ ॥୬୭୪୭॥
ସପ୍ତମାସ ସତର ଦିନ ବନସ୍ତରେ ଥିବା
ବରଷେ ତେରଦିନ ବନସ୍ତରେ ଗୋପତରେ ରହିବା ॥୬୭୪୮॥
ଏମନ୍ତ ବିଚାରି ସେ ବନସ୍ତକୁ ଚଳିଗଲେ
ପାରିଜାତ ବନରେ ଜାଇଣ ରହିଲେ ॥୬୭୪୯॥

## ମଣିକୁଣ୍ଡଳ ଶିବ କଥା, ବବ୍ରୁବାହନ ଜନ୍ମ

ମଣିକୁଣ୍ଡଳ ବୋଲି ଅଛଇ ଗିରିବର
ପାରିଭଦ୍ର ନଦି ବହଇ ତହିଂର ॥୬୭୫୦॥
ଲିଙ୍ଗରାଜା ବୋଲିଂ ତହିଂ ଅଛନ୍ତି ତ୍ରିଲୋଚନ
ତ୍ରେତୟା ଯୋଗେଂ ତାହାକୁ ସେବିଲେ ଶ୍ରୀରାମ ॥୬୭୫୧॥
ପାତାଳକୁ ବାଟ ଅଛଇ ସେହିଠାର
ମଣିକର୍ଣ୍ଣିକା ତିର୍ଥ ନାମ ସେ ତାହାର ॥୬୭୫୨॥
ସେ ବନରେ ପାଣ୍ଡବେ ରହିଲେ କରି ବାସ
ଯହିଂରେ ସ୍ନାନକଲେ ଗୋ ହତ୍ୟା ଜାଏ ନାସ ॥୬୭୫୩॥
ଗୋମାଂସ ମଦିରା ଜେ କରଇ ଭୋଜନ
ଯେ ନର ହରଇ ବ୍ରହ୍ମତ୍ର ସାସନ ॥୬୭୫୪॥
ଏମାନଙ୍କ ପାପଭାରା ନ ସହେ ଧରଣିଂ
ଲିଙ୍ଗରାଜ ଦର୍ଶନେ ଖଣ୍ଡଣ ହୋଏ ପୁଣିଂ ॥୬୭୫୫॥
ଦ୍ରସନେ ପାଣ୍ଡବେ ପାପକରେ ନାସ
ବଦୟନ୍ତି ଗିରିଜା ସୁଣ ହେ ଦିଗବାସ ॥୬୭୫୬॥
ତୁମ୍ଭ ବିନେ ଅନ୍ୟ ନାହିଂ ହେ ମହେସ
ସଂସାରେ ତୁମ୍ଭେ ସିନା ଏକଇ ଦିଗବାସ ॥୬୭୫୭॥
ଗ୍ରାମ ଗ୍ରାମକେ ମହେସ କାହୁଂ ସେ ହୋଇଲେ
ସୁଣଗୋ ଓମା ବୋଲି ସଂକର କହିଲେ ॥୬୭୫୮॥
ନିରଞ୍ଜନ ବୋଲିଂ ମନୁ ଏକ ହୋଇ
ବାଇମୋଚନ ବୋଲିଂ ସତ୍ୟ ଯୋଗ ବୋଲାଇ ॥୬୭୫୯॥
ବିଧାତା ବୋଲି କରି ବ୍ରହ୍ମାଙ୍କର ନାମ
କୁଣ୍ଡଳି ସିବ ବୋଲି ସପତ ଲୋଚନ ॥୬୭୬୦॥
ଦେବିଙ୍କର ନାମ ଅଟଇ ଯୋଗମୁଦ୍ରା
କୁଣ୍ଡଳି ସିବକୁ ଲାଗିଲାକ ନିଦ୍ରା ॥୬୭୬୧॥

ସୟନ କରନ୍ତେ ସତୁରି ସହସ୍ର ବରସ ଗଲା
ପାର୍ବତିର ଅଙ୍ଗେ କାମପିଡ଼ା କଲା ॥୬୭୬୨॥
ମଦନେ ବିହୋଳିତ ହୋଇଲେ ଗୋସାମଣିଂ
ସଦାସିବଙ୍କ କର୍ପଟି ପକାଇଲେ ଛିନିଂ ॥୬୭୬୩॥
ଆପଣେ ମହାମାଇ ବିବସନ ହେଲେ
ଯୋନିରେ ଅଣ୍ଡଦେଇ ମୁଖମାଡ଼ିଂ ସୋଇଲେଂ ॥୬୭୬୪॥
ରମଣଂ କରନ୍ତେ କୁଣ୍ଡଳି ଜାଣିଲେ
କେହୁ ନିଦ୍ରା ଭାଙ୍ଗିଲା ବୋଲି ବିଚାରିଲେ ॥୬୭୬୫॥
ମାୟାରେ ଅଣ୍ଡକୁ ବଢ଼ାଇଲେ ସିବ
ଚାରିଲକ୍ଷ ଜୋଜନ ବଢ଼ିଗଲା ଅଣ୍ଡଜ ॥୬୭୬୬॥
ଚାରିଲକ୍ଷ ଜୋଜନ ଅଣ୍ଡଗଲା ବଢ଼ି
ଯୋଗମାୟା ସୋଇଣ ଅଛନ୍ତି ମୁଖମାଡ଼ି ॥୬୭୬୭॥
ଜୋନି ଅଣ୍ଡ ତାଙ୍କ ଜାଇଅଛି ଜଡ଼ି
ଆକାସ ମାର୍ଗରେ ଦେବି ଲାଗିଲେ ଜାଇକରି ॥୬୭୬୮॥
ବୋଲନ୍ତି ସଦାସିବ ଶୁଣଗୋ ଗଉରି
ବୈସାଳିପୁର ଲୋକେ ହସିଲେ କରତାଳି ମାରି ॥୬୭୬୯॥
ଲୋକ ଅପବାଦେ ଲଜ୍ୟା ପାଇଲେ ମହାମାଇ
ହୃଦେ ସୁମରିଲେ ରକ୍ଷା କରହେ ଭାବଗ୍ରାହି ॥୬୭୭୦॥
କାମର ଆରତେ ବଳାଇଲିଂ ଆସ
ଇଶ୍ୱର ଅଣ୍ଡେ ପଡ଼ି ରହିଲିଂ ଆକାସ ॥୬୭୭୧॥
ହୋଇଲାକ ଲଜ୍ୟା ହସିଲେ ନରନାରି
ଲଜ୍ୟା ସାଗରୁ ପାରିକର ହେ ନରହରି ॥୬୭୭୨॥
ଜହୁଂ ସେ ଯୋଗମୁଦ୍ରା ଚିନ୍ତିଲେ ନାରାୟଣ
ଜାଣିଣ ଶ୍ରୀହରି ବୋଇଲେ ଜାଅ ସୁଦର୍ସନ ॥୬୭୭୩॥
ଗୋବିନ୍ଦ ଆଜ୍ଞାରେ ଚକ୍ର ଗମିଲା ବ୍ରହ୍ମାଣ୍ଡ
ଇଶ୍ୱର ଅଣ୍ଡକାଟି କଲାକ ଖଣ୍ଡ ଖଣ୍ଡ ॥୬୭୭୪॥
ଆକାସରୁ ଖସି ଦେବି ଭୁମିରେ ପଡ଼ିଲେ
ବୈସାଳିପୁର ଲୋକକୁ ଦେବି ସାପ୍ୟ ଦିଲେ ॥୬୭୭୫॥
ବୋଇଲେ ମୋତେ ତୁମ୍ଭେ କଲ ଉପହାସ୍ୟ
ଏହି ଦୋଷୁ ତୁମ୍ଭେ ହୋଅ ନପୁଂସେକ ॥୬୭୭୬॥
ସୁଣିଣ ନଗ୍ରଲୋକେ ଦେବିଂର ପାଦେ ପଡ଼ିଲେ
ଅଳପ ଦୋଷକୁ ବହୁତ ସାପ୍ୟ ଦିଲେ ॥୬୭୭୭॥
ଏଥକୁ ଗତି ଏବେ ଦିଅ ଗୋ ମହାମାଇ
ଦେବି ବୋଇଲେ ନପୁଂସକ ହୋଇଥିବ ରହିଂ ॥୬୭୭୮॥
ବରସେଂ ପୁରିଲେ ଦିନେ କରିବ ରମଣ
ରହିବାକ ବିର୍ଯ୍ୟ ଯେ ରହିବ ସନ୍ତାନ ॥୬୭୭୯॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି
ଚାରିଲକ୍ଷ ଯୋଜନ ଅଣ୍ଡ ଥିଲା ବଢ଼ି ॥୬୭୮୦॥
ଖଣ୍ଡ ଖଣ୍ଡ କରି ଚକ୍ର ପକାଇଲା କାଟି
ରହିଲା ଅବସେସ ଅଣ୍ଡ ବେନି ମୁଷ୍ଟିଂ ॥୬୭୮୧॥
ତେତେବେଳେ ନିଦ୍ରା ଭାଜିଲା ସିବଙ୍କର
ଚକ୍ରକୁ ଗୋଡ଼ାଇଲେ ହୋଇଣ କୋପଭର ॥୬୭୮୨॥
ଗୋବିନ୍ଦଠାରେ ଚକ୍ର ପସିଲା ସରଣ
ସପତ ଲୋଚନ ସିବ ପ୍ରବେସ ସେହିକ୍ଷଣ ॥୬୭୮୩॥
ସଦାସିବ ରୁପ ଦେଖିଲେ ଗୋବିନ୍ଦ
ବେନି ଜାନୁରେ ବାଜୁଅଛି ଅଣ୍ଡ ॥୬୭୮୪॥
ରୋଧିରେ ଝର ଝର ଜାଉଅଛି ବହିଂ
କିସ କିସ ବୋଲିଣ ପଚାରନ୍ତି ଭାବଗ୍ରାହି ॥୬୭୮୫॥
ସିବ ବୋଇଲେ ସୁଦ୍ରିସେନ ମୋ ବଇରି
ଅଣ୍ଡ କାଟିଣ ମୋତେ କଲା ଏତେ ସରି ॥୬୭୮୬॥
ଶ୍ରୀହରି ବୋଇଲେ ଜେବେ କାଟିଲା ତୁମ୍ଭ ଅଣ୍ଡ
ସେ ଅଣ୍ଡ ବିକ୍ଷାତ ହୋଇବ ବ୍ରହ୍ମାଣ୍ଡ ॥୬୭୮୭॥
ଗ୍ରାମେ ଗ୍ରାମେ ସ୍ଥାପି ପୁଜିବେ ଲିଙ୍ଗକୁ
ପୁଜିଲେ ପ୍ରସନ ଜେ ହୋଇବ ତାହାକୁ ॥୬୭୮୮॥
ଏମନ୍ତ ବୋଲିଣ ଜହୁଂ ବୋଇଲେ ଚକ୍ରଧର
ଆନନ୍ଦ ହୋଇଲେ ତହିଂ କୁଳିସ ସଂକର ॥୬୭୮୯॥
ସେହିଦିନୁ ଲିଙ୍ଗ ପୁଜିଲେକ ଜନ
ସୁଣଗୋ ଗିରିଜା ବୋଲି ବୋଲନ୍ତି ତ୍ରିଲୋଚନ ॥୬୭୯୦॥
ଅର୍ଜୁନ ଭାରିଯା ଯେ ଅଟଇ ହାରାବତି
ପାଞ୍ଚମାସ ଗର୍ଭ ଜେ ଛାଡ଼ିଲା ସର୍ବସାଚି ॥୬୭୯୧॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ଦସମାସେ ସଂପୁର୍ଣ୍ଣେ ପୁତ୍ରେକ ପ୍ରସବ ॥୬୭୯୨॥
ସ୍ୱର୍ଗପୁରେ ଆନନ୍ଦ ହୋଇଲେ ମଘବାନ
ପୁତ୍ରନାମ ଦିଲେ ବବ୍ରୁବାହାନ ॥୬୭୯୩॥
ପୁତ୍ରର ହସ୍ତେଂ ଅପ୍ରାଜୟେ ହୋଇବ ଅର୍ଜୁନ
ହାରାବଳି ପୁତ୍ର ଯେ ରହିଲା ସ୍ୱର୍ଗେଣ ॥୬୭୯୪॥
ନାଗାବଳି ନନ୍ଦନ ରହିଲା ପାତାଳେ
ସୁଭଦ୍ରାନନ୍ଦନ ଅଭିମନ୍ୟୁ ଅଟଇ ମଞ୍ଚପୁରେଂ ॥୬୭୯୫॥
ଏମନ୍ତେ ତିନିପୁରେ ତିନିପୁତ୍ରର ନାମ
ସୁଣଗୋ ଓମା ବୋଲିଂ ବୋଲନ୍ତି ତ୍ରିଲୋଚନ ॥୬୭୯୬॥

## ପାଣ୍ଡବମାନଙ୍କର ବିରାଟ ରାଜ୍ୟରେ ଗୁପ୍ତବାସ

ସେ ବନରୁ ପାଣ୍ଡବେ ଗଲେ ପଥ ବହିଂ
ମଣିହରଣ ବନେ ପ୍ରବେସ ହେଲେ ଜାଇଂ ॥୬୭୯୭॥

---

୧ । ଘ ପୋଥି – ବିସାସତେ ମୁଠି

ସେ ବନେ ସକ୍ରାଜିତ ହୋଇଥିଲା ବଧ
ସିଂହକୁ ମାରି ମଣି ନିଲାକ ଜମ୍ବେବ ॥୬୭୯୮॥
ନିଳସୁନ୍ଦର ବଟ ମୁଳେ ବସିଲେ ପାଞ୍ଚଭାଇ
କାହିଁକି ଜିବା ବୋଲି ଯୁଧିଷ୍ଟି ପଚାରଇ ॥୬୭୯୯॥
ସହଦେବ ବୋଇଲେ କହିଛନ୍ତି ଜଗନ୍ନାଥ
ବିରାଟ ରାଜ୍ୟରେ ଜାଇ ହୋଇବା ଗୁପତ ॥୬୮୦୦।
ଯୁଧିଷ୍ଟି ବୋଇଲେ କିଏ କି ରୁପେଂ ରହିବ
ଭିମ ବୋଇଲା ମୁଂ ହୋଇବି ସୁପକାର ଦେବ ॥୬୮୦୧॥
ବୈସ୍ୟାନର ପ୍ରସାଦେ ମୁଂ ରାନ୍ଧିବଇଂ ଅର୍ନ୍ନ
ଅର୍ଜୁନ ମୁଖ ଚାହିଂ ବୋଇଲେ ଧର୍ମନାନ ॥୬୮୦୨॥
ଅର୍ଜୁନ ବୋଇଲା ମୁଂ ହୋଇବିଂ ବୃହନାରି
ଉର୍ବସି ସାପ୍ୟରୁ ମୁଂ ହୋଇବିଂ ପାରି ॥୬୮୦୩॥
ନକୁଳ ବୋଇଲା ମୁଂ ହୋଇବିଂ ବାଜିପାଳ
ରଖିବଇଂ ଅସ୍ୱ ବିରାଟ ସାଳର ॥୬୮୦୪॥
ସହଦେବ ବୋଇଲାଂ ଗୋପାଳ ହେବିଂ ମୁହିଂ
ରଖିବି ଗୋଧନ ତନ୍ତିପାଳଂ ନାମ ବୋହିଂ ॥୬୮୦୫॥
ଦ୍ରୋପଦି ବୋଇଲେଂ ମୁ ହୋଇବି ସଇନ୍ଦ୍ରି
ବେସ କରାଇବି ବିରାଟର ନାରି ॥୬୮୦୬॥
ଯୁଧିଷ୍ଟି ବୋଇଲେ ଜେବେ ଏ ରୁପେଂ ରହିବ
ଏ ଧନୁ ସହସ୍ର କାହିଂରେ ରଖିବ ॥୬୮୦୭॥
ଅଷ୍ଟଧାତୁ ହିରା ଯେ ଏ ଧନୁ ଅଟଇ
ଅନ୍ଧାର ନିସିରେ ଆଲୁଅଂ ହୋଇଥାଇ ॥୬୮୦୮॥
ଦେଖି ଲୋଭ କରିବେ ରାକ୍ଷସ ଗନ୍ଧର୍ବ
ଅର୍ଜୁନ ବୋଇଲା ମୁଂ ରଖିବି ଭିନ୍ନଠାବ ॥୬୮୦୯॥
ଏତେ ବୋଲି ଖଡ଼ିରେ କାଟିଲା ଏକଗାର
ବେନିସତ ଯୋଜନଂ ହୋଇଲେ ତରୁବର ॥୬୮୧୦॥
ତାହାଦେଖି ଆଷ୍ଟାର୍ଯ୍ୟ ହୋଇଲେ ଧର୍ମନାନ
କାହାଠାରୁ ଏ ବିଦ୍ୟା ପାଇଲୁଂରେ ଅର୍ଜୁନ ॥୬୮୧୧॥
ଅର୍ଜୁନ ବୋଇଲା ଦିନେ ମିଳିଲିଂ କପିଳାସ
ଭାଳନ୍ତି ଗିରିଜା ନାହାନ୍ତି ମହେସ ॥୬୮୧୨॥
ମୁହିଂ ପଚାରନ୍ତେ କହନ୍ତି ଭବାନି
କାହିଂଗଲେ ସିବ ଖୋଜିଦିଅ ଆଣି ॥୬୮୧୩॥
ସୁଣିଣ ଧନୁରେ ଜୋଚିଲି ମନଭେଦି
କାହିଂ ଅଛନ୍ତି ସିବ ସର ତୁ ଆଣଖୋଜି ॥୬୮୧୪॥
ତିୟାରି ଗୁଣରୁ ଛାଡ଼ିଦିଲିଂ ସର
ଖୋଜିଲା ସପତ ଦିପ ସପତ ସାଗର ॥୬୮୧୫॥

୧ । ଘ ପୋଥି – ଉଛର୍ଗ

ଭାନୁ ସସିପୁର ବ୍ରହ୍ମସିବ ଅମରାଧି
ଗଲେକ ଧର୍ମସଭା ସପତ ସ୍ୱର୍ଗ ଖୋଜି ॥୬୮୧୬॥
ସିବକୁ ନପାଇ ସର ପାତାଳେ ପସିଲା
ସୁତାଳ ଅତିତାଳ ରାସାନ୍ତାଳ ଗଲା ॥୬୮୧୭॥
ଦେବତାଳ ଅତିତାଳ ଭୁତାଳ ଅନନ୍ତତାଳ ॥୬୮୧୮॥
ମହିତାଳ ହରିତାଳ ଅଲୋକିତ ତାଳ
ଚଉ'ରି ତାଳକୁ ଚଉଦ ପାତାଳ ॥୬୮୧୯॥
ସେ ପୁରର ମହିମା କହିଲେ ନ ସରଇ
ତେର ପାତାଳକୁ ସେ ଅଗମ୍ୟ ଅଟଇ ॥୬୮୨୦॥
ମହିସ୍ଥଳି ବୋଲିଣ ଏକଇ ରାକ୍ଷସି
ସଦାସିବଙ୍କୁ ସେ ବନ୍ଦି କରିଅଛି ॥୬୮୨୧॥
ସେହି ରାକ୍ଷସି ଅଟଇ କାମକଳା
ସୁରତି ରସରେ ଜଗତ ବସକଲା ॥୬୮୨୨॥
ଜେବଣ ପୁରୁଷ ଶୃଙ୍ଗାରେ ନକରଇ ବୋଧ
ତାହାକୁ ରାକ୍ଷାସୁଣି ଭକ୍ଷଇ କରି ବଧ ॥୬୮୨୩॥
ଏହି ରୁପେ ବହୁତ ଜନ ନାସକଲା
ଭ୍ରମନ୍ତେ ସଦାସିବଙ୍କୁ ନୟନେ ଦେଖିଲା ॥୬୮୨୪॥
ଚାହାଣି ଛଟକେ ସଙ୍କର ମନ ମୋହିଂ
ତାହାର ସଙ୍ଗତେ ଶୃଙ୍ଗାର କଲେ ଉମାସାଇଂ ॥୬୮୨୫॥
ମଦନେ ଉନମତ ହୋଇଲେ ବେନିଜନ
ସୁରତି କରନ୍ତେ ଗଲା ବାଉନ ସହସ୍ର ଦିନ ॥୬୮୨୬॥
ସେହିକାଳେ ମନଭେଦି ନାରାଜ ମିଳିଲା
ସିବକୁ ଟେକନ୍ତେ ମହିସ୍ଥଳି ନଛାଡ଼ିଲା ॥୬୮୨୭॥
ମୁଖକୁ ମୁଖ ଦେଇ ଚରଣ ଛନ୍ଦାଛନ୍ଦି
ଭୁଜରେ ଭୁଜ ଭିଡ଼ି ଜୋନିରେ ଅଣ୍ଡ ଲାଗି ॥୬୮୨୮॥
ସେହିରୁପେଂ ଥିଲେ ସର ତୋଳିଲା ସଙ୍କର
ପାରି ହୋଇଗଲା ଚଉଦ ପାତାଳ ॥୬୮୨୯॥
ଜେ ରୁପେଂ ମଣ୍ଡୁକିକି କାକ ଘେନି ଜାଇ
ସେହି ରୁପେ ସିବଙ୍କୁ ନାରାଜ ଚଳଇଂ ॥୬୮୩୦॥
ମଧ୍ୟପୁର ଉଡ଼ି ସୁନ୍ୟରେ ଜିଣିଲା
ତେବେ ସେ ସଦାସିବଙ୍କର ନିଦ୍ରା ଜେଂ ନ ଭାଜିଲା ॥୬୮୩୧॥
ବିଚାରେ ସର ଆଜ୍ଞା ଦେଇଛି ଫାଲଗୁନି
ଜହିଂ ଥିବ ଖୋଜି ଆଣିବୁ ସୁଳପାଣିଂ ॥୬୮୩୨॥
ସଦାସିବ ରାକ୍ଷାସୁଣି ଶୃଙ୍ଗାରେ ଅଚେତନ
ସର ସୁନ୍ୟେ ନେଇ ଉଡ଼ାଇ ଗଗନେ ବେନିଜନ ॥୬୮୩୩॥

୧ । ଘ ପୋଥି – ସର ଘେନି ଯାଇ

ଦୁହେଁ ଛଡ଼ା ଛଡ଼ି ନୋହିଲେକ ଜହୁଁ
ଆକାସକୁ ସର ଘେନିଗଲା ତହୁଁ ॥୬୮୩୪॥
କପିଳାସ ଗିରି ଉପରେ କଚାଡ଼ି ପଡ଼ିଲା
ପଡ଼ନ୍ତେ ରାକ୍ଷାସୁଣି ପ୍ରାଣ ଛାଡ଼ିଗଲା ॥୬୮୩୫॥
ସ୍ୱାମିକି ଦେଖିଣ ପାର୍ବତି ଆନନ୍ଦିତ
କହଇ ବିନଇଂ[1] ସୁଣହେ ଜେଷ୍ଟଭ୍ରାଥ ॥୬୮୩୬॥
ଯହୁଁ କପିଳାସ ମୁଁ ରହିଲିଂ ମାସଚାରି
ନଦେଖି ମୋତେ ତୁମ୍ଭେ ପ୍ରବର୍ତ୍ତିଲ ଦେବହରି ॥୬୮୩୭॥
ସେହିଦିନ ଗୋବିନ୍ଦ ବିଜଏ କପିଳାସ
ଆନନ୍ଦ ହୋଇଲେ ଓମା ପାଇଲେ ମହେସ ॥୬୮୩୮॥
ବିଷ୍ଣୁ ଅଙ୍ଗ ରୁଧିର ଇଶ୍ୱର ବିଭୁତି
ଚକଟିଣ ଗିରିଜା କଲେ ଖଡ଼ିଗୋଟି ॥୬୮୩୯॥
ମୋତେ ଦେଇ ବୋଇଲେ ସମ୍ଭାଳି ରଖିଥିବୁ
ବନବାସ କଲେ ଗାରେକ କାଟିବୁ ॥୬୮୪୦॥
ହୋଇବ ସମିବୃକ୍ଷ[2] ରଖିବୁ ସହସ୍ର ତ
ବିରାଟ ରାଜ୍ୟରେ ହୋଇବ ଗୁପତ ॥୬୮୪୧॥
ସେ ଖଡ଼ିବୃକ୍ଷ ଗାର ଏ ହୋଇଲା
ସୁଣ ହେ ଠାକୁର ବୋଲି ଅର୍ଜୁନ ବୋଇଲା ॥୬୮୪୨॥
ସୋମିବୃକ୍ଷ ଉପରେ ଉଠିଲା ଧନୁର୍ଜଇ
ଧନୁ ସହସ୍ର ଭିମ ଦିଲାକ ବଡ଼ାଇ ॥୬୮୪୩॥
ରଖିଣ ଧନୁର୍ଜଇ ଭୁମିରେ ମିଳିଲା
ଯୁଧିଷ୍ଟି ବୋଇଲେ କେହୁ ଜଗିବ ଭଲା ॥୬୮୪୪॥
ଖଡ଼ିଘେନି ପାଥ ଗାରେକ ସେ କାଟି
ପିତୁଳା ଗୋଟିଏ ତହୁଁ ହୋଇଲା ଉତପତି ॥୬୮୪୫॥
ନାହିଂ ଗୋଡ଼ ହସ୍ତ ମୁଖ ସ୍ରବଣଂ ହି ନାହିଂ
ଅଜିବ ପିତୁଳା ସେ ନିଶ୍ୱାସ ନ ବହଇ ॥୬୮୪୬॥
ସମସ୍ତେଂ ଦେଖୁଁ ଦେଖୁଁ ବୃକ୍ଷରେ ଉଠିଲା
ଗର୍ଜନ କରନ୍ତେ ଚଉଦ ଭୁବନ କମ୍ପିଲା ॥୬୮୪୭॥
ଯୁଧିଷ୍ଟି ବୋଇଲେ ଏ କିସରେ ସର୍ବସାଚି
ଅଜିବ ପିତୁଳା ଏ ଗର୍ଜନ କରୁଅଛି ॥୬୮୪୮॥
ଅର୍ଜୁନ ବୋଇଲା ହେ ଶୁଣ ସହୋଦର
ନିର୍ବାଚ କପଟ[3] ଜୁର କଲା ସ୍ୱର୍ଗପୁର ॥୬୮୪୯॥
ହରିତ ବୋଲି ଏକ ଗନ୍ଧର୍ବ ଅଟଇ
ତାହାର ଭାରିଜାକୁ ଦୈଇତ୍ୟ ହରିନେଇ ॥୬୮୫୦॥

୧ । ଘ ପୋଥି - ବିଜଇ
୨ । ଘ ପୋଥି - ସୁମବୃକ୍ଷ
୩ । ଘ ପୋଥି - ନିର୍ବାଚ କପଚ

ଦାନବକୁ ମାରି ଅପକ୍ଷରିକି ତାକୁ ଦିଲି
ଗନ୍ଧର୍ବ ବୋଇଲା ତୋ ସହସ୍ର ହୋଇବି ଜଗୁଆଳି ॥୬୮୫୧॥
ସେହି ଗନ୍ଧର୍ବ ଏ ଅଜିବେ କରେ ନାଦ
ସୁଣଗୋ ଓମା ବୋଲି ବୋଲନ୍ତି ସଦାନନ୍ଦ ॥୬୮୫୨॥
ସହସ୍ର ରଖି ଜନେଂ କଲେକ ସ୍ନାହାନ
ଯୁଧିଷ୍ଟିକି ବୋଇଲେ ଆଗେ କରହେ ଗମନ[1] ॥୬୮୫୩॥
ଧର୍ମପଣ୍ଡା ରୁପେ ତୁମ୍ଭେ ସଭାରେ ବସିଥିବ
ଆମ୍ଭେ ନମସ୍କାର କରିବୁଁ ତୁମ୍ଭର ପାଦଠାବ ॥୬୮୫୪॥
ସୁଣିଣ ଧର୍ମସୁତ ବ୍ରାହ୍ମଣ ରୁପଧରି
ତମ୍ଭାପାତ୍ର ଖଣନ୍ତା ହସ୍ତରେ କରଚୁଳି ॥୬୮୫୫॥
ତ୍ରିକଛ ବସନ କୁସବେଣ୍ଟି କେସ
ଏମନ୍ତ ବେସ ହୋଇ ଗମିଲେ ଧର୍ମସିସ ॥୬୮୫୬॥
ପ୍ରବେସ ହୋଇଲେ ବିରାଟ ଆସ୍ଥାନ
ସଭାକରି ବସିଅଛି ସେତ ରାଜାର ନନ୍ଦନ ॥୬୮୫୭॥
ଚାଟେକ ମନ୍ତ୍ରି ବାମ ପାରୁସେ ବସିଛଇ
ମଣିମା ମଣିମା ବୋଲି ବେହେରା ଡାକଦେଇ ॥୬୮୫୮॥
ଯୁଧିଷ୍ଟିଙ୍କି ଦେଖି ବିରାଟ ପଚାରିଲା
କେବଣ ଦେସରୁ ଅଇଲ ହେ ପଣ୍ଡା ଭଲା ॥୬୮୫୯॥
କିସ ନାମ ତୁମ୍ଭର କେବଣ ବେଦେ ଜାତ
ବିରାଟ ବଚନେ ବୋଲନ୍ତି ଧର୍ମସୁତ ॥୬୮୬୦॥
ବାରୁଣା ଦେସର ଅଟଇ ଆମ୍ଭଘର
କୋନ୍ତ ପଣ୍ଡା ନାମ ସୋମବଂସରେ ଅବତାର ॥୬୮୬୧॥
ବାରୁଣାବନ୍ତେ ରାଜା ଅଟନ୍ତି ଯୁଧିଷ୍ଟି
ଦୁର୍ଯୋଧନ ସଙ୍ଗତେ ପସାଖେଳି ବସି ॥୬୮୬୨॥
ପସାରେ ହାରି ଭାଇକିଂ ଘେନି ଗଲେ ବନ
ତାହାଙ୍କ ସଭାପଣ୍ଡା ଆମ୍ଭେ ହେ ରାଜନ ॥୬୮୬୩॥
ବିରାଟ ବୋଇଲା ଜେବେ ଯୁଧିଷ୍ଟିଙ୍କ ସଭାପାତ୍ର
ମୋହର ସଭାରେ ଏବେ ବସହେ ଦ୍ୱିଜଗୋତ୍ର ॥୬୮୬୪॥
ଏତେବୋଲି ରାଜା ସମର୍ପିଲେ ପାଟ
ସଭାପଣ୍ଡା ପଣେ ବସିଲେ ଧର୍ମଚାଟ ॥୬୮୬୫॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ସ୍ତିରି ରୁପେଂ ଅଳଙ୍କାର ମଣ୍ଡି ହୋଇଲା ଅର୍ଜୁନ ॥୬୮୬୬॥
ଭିମ ନକୁଳ ସହଦେବ ସଙ୍ଗତର
ପ୍ରବେସ ହୋଇଲେ ଜାଇ ବିରାଟ ରାଜ୍ୟର ॥୬୮୬୭॥
ବିରାଟ ଆଡ଼କୁ ଅଙ୍ଗସାର[2] ଦେଇ
ଯୁଧିଷ୍ଟି ଚରଣେ ପଡ଼ିଲେ ବିରେ ସୋଇ ॥୬୮୬୮॥

୧ । ଘ ପୋଥି - ପୟାଣ
୨ । ଘ ପୋଥି - ଆଡ଼ସାର

ବିରାଟ କହନ୍ତେ ନ ଉଠିଲେ କେହିଂ
ଯୁଧିଷ୍ଟିଙ୍କ ଆଜ୍ଞାରେ ଉଠିଲେ ଚାରିଭାଇ ॥୬୮୬୯॥
ଯୁଧିଷ୍ଟି ଦେଖିଣ ମନେ ସୋକ କଲେ[1]
ଧନ୍ୟରେ ଭଗବାନ ଏତେ ସରି କଲୁଂ ଜେ ବୋଇଲେ ॥୬୮୭୦॥
ଜେଉଂ ଭିମ ହସ୍ତେ ଗଦା ଜେବେ ଥାଇ
ଗଦାରେ ପିଟି ନାସନ୍ତା ଦୁର୍ଯୋଧନ ସତେ ଭାଇ ॥୬୮୭୧॥
ସେ ଜେ ଅର୍ଜୁନ ହୋଇଛି ସ୍ତିରି ଗୁପତ
ତିନିପୁର ମନ୍ଥିବାକୁ ଅଟଇ ସାମରଥ ॥୬୮୭୨॥
ଏ ଜେ ନକୁଳ ଅଶ୍ୱିନି ତନଇ
ଏହାର କୁନ୍ତମୁନେ ନରହନ୍ତି କେହି ॥୬୮୭୩॥
ମନ୍ତ୍ରି ଚୁଡ଼ାମଣି ଅଟନ୍ତି ସହଦେବ
ଆଗତ କଥାମାନ ଏ ସର୍ବ କହିବ ॥୬୮୭୪॥
ମୁହିଂ ଚାଣ୍ଡାଳ ଏହାଙ୍କୁ କିଛି ନ ବୋଇଲିଂ
ଶ୍ରୀକୃଷ୍ଣ ମାୟାରେ ମୁଂ ମୋହିତ ହୋଇଲିଂ ॥୬୮୭୫॥
ଏ ଭିମରୁପ ଦେଖି ଡରିବ ବିରାଟ
ଅର୍ଜୁନ ନ ସହିବ ଖଳ ବଚନ ବହୁତ ॥୬୮୭୬॥
ଏ ନକୁଳକୁ ଦେଖି ଇନ୍ଦ୍ର ସଙ୍କା କରଇ
ଏହାଙ୍କୁ ଗୋପତେ ରଖ ଭାବଗ୍ରାହିଂ ॥୬୮୭୭॥
ଜେତେବେଳେ ଶ୍ରୀକୃଷ୍ଣ ନାଥଙ୍କୁ ଚିନ୍ତାକଲେ
ରଖିଲିଂ ବୋଲି ସୁନ୍ୟ ସବଦ ସୁଣିଲେ ॥୬୮୭୮॥
ସୁଣିଣ ଯୁଧିଷ୍ଟି ହୋଇଲେ ଆନନ୍ଦିତ
ବିରାଟକୁ ଚାହିଂ ବୋଇଲେ ଧର୍ମସୁତ ॥୬୮୭୯॥
ଏମାନେ କେ ଅଟନ୍ତି ପଚାର ରାଜନ
ପଚାରିଲେ ଏହାଙ୍କୁ ରଖିବାକ ପୁଣ ॥୬୮୮୦॥
ବିରାଟ ପଚାରିଲା ଭିମ ମୁଖ ଚାହିଂ
କେବଣ ଦେସେ ଘର କି ନାମ ଅଟଇ ॥୬୮୮୧॥
ତିନିଜଣ ପୁରୁଷ ଗୋଟିଏ ଅଟ ସ୍ତିରି
କି ନିମନ୍ତେ ଅଇଲ କହନି ବିଚାରି ॥୬୮୮୨॥
ତରାଟି ବିକୋଦର ବିରାଟକୁ ଚାହିଂ
ଯୁଧିଷ୍ଟିଙ୍କ ସୁପକାର ବଲ୍ଲଭ ପଣ୍ଡା ମୁହିଂ ॥୬୮୮୩॥
ଯୁଧିଷ୍ଟିଙ୍କ ସନ୍ୟକୁ ଅର୍ନ୍ନ ରାନ୍ଧି ପରସଇ
ସେହୁ ଗଲେ ବନେ ମୁଂ ଅଇଲି ଗୋଡ଼ାଇ ॥୬୮୮୪॥
ତାହାଙ୍କୁ ନପାଇଣ ମିଳିଲିଂ ତୋ ରାଜ୍ୟର
ନକୁଳକୁ ବୋଇଲେ ଏ ଅଟଇ ବାଜିପାଳ ॥୬୮୮୫॥
ଏହାର ହସ୍ତ ଲାଗିଲେ ବୃଷାଳ ହୋନ୍ତି ଘୋଡ଼ା
ପାଣ୍ଡବଙ୍କୁ ନପାଇ ଆସିଛି ଏ ବାପୁଡ଼ା ॥୬୮୮୬॥

୧ । ଘ ପୋଥି – ରୋଦନ ଯେ କଲେ

ସହଦେବକୁ ବୋଇଲା ଏ ଗୋପାଳ ଅଟଇ
ପଣ୍ଡୁପାଳ ସୁତ ଏ ତନ୍ତ୍ରିପାଳ ଏହି ॥୬୮୮୭॥
ଅସାଧ୍ୟ ଗୁରୁ ସାଧ୍ୟ ହୁଅନ୍ତି ଏହୁ ଥିଲେ
ଗୋବଛା ପଲ ଥିଲେ ଏହାକୁ ରଖ ଭଲେ ॥୬୮୮୮॥
ଏହୁ ସ୍ତିରି କଥା ସୁଣହେ ରାଜନ
ନାମ ବୃହନାରି ଅପାର ଅଛି ଗୁଣ ॥୬୮୮୯॥
ବୃଦ୍ଧା ଯୁବତିକି ଜ୍ଞାନ କଥା କହିଂ
ରୋଦନ୍ତା ବାଳକୁ ଖେଳାଇ ନ କାନ୍ଦଇ ॥୬୮୯୦॥
ସୋଳସା ଯୁବତି ସଙ୍ଗେ ଖେଳେ ନାଟ
ଅପୟ କାଳେ ସାରଥି ବୋଇଲେ ବାହେ ରଥ ॥୬୮୯୧॥
ଥୋକାଏକ ଧନୁ ବିଦ୍ୟା ହି ଜାଣଇ
ନୋହେ ସ୍ତିରି ପୁରୁଷ ନପୁଂସେକ ଏହିଂ ॥୬୮୯୨॥
ଜାହାର ପୁର୍ବ ଭାଗ୍ୟ ଦସା ଉଦେ ହୋଇ
ଏହାସମ ଗୋଟାଏ ତାହାକୁ ମିଳଇ ॥୬୮୯୩॥
ଧନ୍ୟ ସେ ଯୁଧିଷ୍ଟି ସମ୍ଭାଳି ଥିଲେ ରଖି
ସେହି ବନ ଜିବାରୁ ହୋଇଲୁଂ ନିରିମାଖି ॥୬୮୯୪॥
ବିକୋଦର ବଚନେ ବୋଇଲା ବିରାଟ
ଯୁଧିଷ୍ଟିଙ୍କର ଠାରୁ ମୁ କରିବିଂ ଅଧିକ ତ ॥୬୮୯୫॥
ରହ ହୋ ବଲ୍ଲଭ ହୋଇଣ ସୁପକାର
ଅସ୍ୱ ଚରଚାରେ ରହୁ ବାଜିପାଳ ॥୬୮୯୬॥
ତନ୍ତ୍ରିପାଳ ଗୋପାଳ ରଖୁ ମୋର ଗାଇ
ପୃଥୁନା ଅସାଧ୍ୟ ଜେମନ୍ତେ ସାଧ୍ୟ ହୋଇ ॥୬୮୯୭॥
ବୃହନାରି ଜେମନ୍ତେ ଅଟଇ ନପୁଂସେକ
ସୋଧ ଦେଇ ନାଟପା ମଞ୍ଚରେ[1] କରୁ ନାଟ ॥୬୮୯୮॥
ଏତେ ବୋଲି ଯୁଧିଷ୍ଟି ହସ୍ତକୁ ଦିଲେ ପାଟ
ଚାରିଭାଇ ସିରରେ ବାନ୍ଧିଲେ ଧର୍ମଚାଟ ॥୬୮୯୯॥
ରୋସାଇ ସାଳେ ଭିମ ବସିଲା ଅର୍ନ୍ନ ରାନ୍ଧି
ଅକଟା ଅବଟା କଞ୍ଚାଦାରୁ ଜାଳି ॥୬୯୦୦॥
ଏକାଏଂ ଅର୍ନ୍ନ ରାନ୍ଧି ସନ୍ୟକୁ ଖୁଆଇଲା
ଲକ୍ଷେ ସୁପକାର ପଳାଇଲେ ଭଲା ॥୬୯୦୧॥
ଅସାଧ୍ୟ ଅସ୍ୱ ଗୋଟିଏ ଥିଲାକ ବିରାଟର
ତାହାକୁ ଜିନଦେଇ ଚଢ଼ିଲା ନକୁଳ କୁମାର ॥୬୯୦୨॥
ଦଣ୍ଡକେ ଫେରାଇଲା ଚଉଦ ଭୁବନ
ଆକାସ ମଣ୍ଡଳ ସୁର୍ଯ ମଣ୍ଡଳ ଭ୍ରମିଣ ॥୬୯୦୩॥
ଆକାସ ଭ୍ରମି ପଡ଼ିଲା ଅସ୍ୱ ପ୍ରାଣଗଲା
ଗମିଲାକ ସ୍ୱର୍ଗ ସାପ୍ୟ ପାର ହେଲା ॥୬୯୦୪॥

୧ । ଘ ପୋଥି – ମନ୍ଦିରେ

ବସିଣ ସହଦେବ ବଂସି ଧ୍ୱନି କଲା
ଗୋବଛା ପଲ ଘେନି ପୃଥୁନା ମିଳିଲା ॥୬୯୦୫॥
ପାଞ୍ଚଲକ୍ଷ ଅଣ୍ଡିର ସାତଲକ୍ଷ ମାଇ
ସହଦେବକୁ ବେଢ଼ିଲେ ହେମାରାବ ଦେଇ ॥୬୯୦୬॥
ସହଦେବ ପଡ଼ିଲା ପୃଥୁନା ପାଦେଂ ଶୋଇ
ପୃଥୁନା ବୋଇଲା ଉଠ ମୁଂ ସାଧ୍ୟ ହୋଇଲଇଂ ॥୬୯୦୭॥
ସୁଣି ସହଦେବ ଦୋହନ ତାକୁ କଲା
ପ୍ରଥମ ଖ୍ୱିର ଦେବଗଣକୁ ସମର୍ପିଲା ॥୬୯୦୮॥
ଦୁତିଏ ନାଗଲୋକ କଲେକ ଖ୍ୱିର ପାନ
ତୃତିଏ ଭକ୍ଷିଲେ ବିରାଟର ସନ୍ୟ ॥୬୯୦୯॥
ଚତୁର୍ଥ କ୍ଷିର ଗୋଟି ଗୋବଛା କଲେ ପାନ
ସାଧୁ ତନ୍ତ୍ରିପାଳ ବୋଲି ସୁଭିଲା ବୟାଣ ॥୬୯୧୦॥
ଏଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ପ୍ରବେଶ ଜିଗ୍ନସେନି ବିରାଟ ନଗରି ॥୬୯୧୧॥
କହନ୍ତି ମୁଦୁସୁଲି ଶ୍ରୀକୃଷ୍ଣା ଆଗର
ମିଳିଣ ଶ୍ରୀକୃଷ୍ଣା ସେ ବୋଲଇ ଉତ୍ତର ॥୬୯୧୨॥
ଦ୍ରୋପତିକି ପଚାରିଲା ତୁ କାହାର ଦୋହିତି
କିସ ନାମ ତୋହର ଗୋ କାହିଂରେ ତୋର ସ୍ଥିତି ॥୬୯୧୩॥
ଦ୍ରୋପଦି ବୋଇଲେ ସଇନ୍ଦ୍ରି ନାମ ମୋର
ଦ୍ରୋପଦସେନ ପିତା ଗନ୍ଧର୍ବେ ମୋର ବର ॥୬୯୧୪॥
ବାରୁଣାବନ୍ତେ ସ୍ଥିତି ଖଟଇଂ ଦ୍ରୋପଦିକି
କରାଇ ଦିଏଂ ବେସ ନଜାଣେ ଆଉ କିଛି ॥୬୯୧୫॥
ପସାରେ ହାରି ସେହୁ ବନସ୍ତକୁ ଗଲେ
ତାହାଙ୍କ ଅଭାବେ ମୁଂ ପ୍ରବେଶ ତୋର ରାଜେ ॥୬୯୧୬॥
ରଖି ପାରିବୁକି ମୋତେ ଗୋ ମହାମାଇ
ଶ୍ରୀକୃଷ୍ଣା ଜାଣିଲା ପାଣ୍ଡବଙ୍କ ଘରେଣି ଅଟେ ଏହି ॥୬୯୧୭॥
କିଞ୍ଚେକ ଭାର ଜହୁ ନସହିଲା ପୃଥି
ଏହାକୁ ପେସିଲେ ପ୍ରଭୁ ଉସ୍ୱାସ କରିବେ ଧରିତ୍ରି ॥୬୯୧୮॥
ଏହାଙ୍କର ଯୋଗୁ ମୋ ଭାଇଙ୍କ ନିଅତ
ଏହିକଥା ଏବେ ହୋଇଲା ସତ୍ୟ ॥୬୯୧୯॥
ଏତେ ବିଚାରି ବୋଇଲା ନିଶ୍ଚନ୍ତେ ରହିଥାଅସି
ଦ୍ରୋପଦି ବୋଇଲେ କଥାଏ କହୁଅଛି ॥୬୯୨୦॥
ପରଠାବକୁ ନପେସିବୁ ଉଚିଷ୍ଟ ନଖୁଆଇବୁଂ
ପାଲଟା ବସ୍ତ୍ର ଜେ ମୋଠାରେ ନଦେବୁ ॥୬୯୨୧॥
ଅରୁଆ ଚାଉଳ ନଉତନ ହାଣ୍ଡିଦେବୁ ମୋତେ
ରାଣି ବୋଇଲା ଦେବି ଅଲେଖ ତିଳେକ କରାଇବୁ ମୋତେ ॥୬୯୨୨॥

ଏତେ କହି ଶ୍ରୀକୃଷ୍ଣା କଲାକ ଗୌରୋବ
ରହିଲେ ଜିଗ୍ନସେନି ବିରାଟ ଅନ୍ତପୁର ଠାବ ॥୬୯୨୩॥
ନାଟପା ମଞ୍ଚରେଂ[୧] ରହିଲେ ଫାଲଗୁନି
ଉତ୍ତରା ବାଳି ସଙ୍ଗେ ଭିଆଇ ନାଟପୁଣି ॥୬୯୨୪॥
ସୁପକାର ପଣେ ରହିଲା ବିକୋଦର
ନକୁଳ ଚରଚି ରହିଲା ଅସ୍ୱସାଳ ॥୬୯୨୫॥
ଗୋବଛା ରକ୍ଷାକଲା ମାଦ୍ରିର ସନ୍ତତି
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି ॥୬୯୨୬॥
ବ୍ୟାଘ୍ରେକ ଘେନି ଦିନେ ମିଳିଲା ସବର
ବ୍ୟାଘ୍ର ବଳମାନ ମେରୁ ସମାନର ॥୬୯୨୭॥
ବ୍ୟାଘ୍ରର ଗର୍ଜନ ଘାତେ ଚମକିଲା ମହିଂ
ସଭା ସେନାପତିମାନେ ଗଲେକ ପଳାଇ ॥୬୯୨୮॥
ଯୁଧିଷ୍ଠି ବୋଇଲେ ସୁଣ ହେ ରାଜନ
ସୁପକାର ବ୍ରାହ୍ମଣକୁ ଆଣହେ ବହନ ॥୬୯୨୯॥
ସେ ଅଇଲେ ବ୍ୟାଘ୍ର ମାରିବ ଜେ ସେହିଂ
ବିରାଟକୁ ବୋଇଲା ଧର୍ମ ଜେ ଗୋସାଇଂ[୨] ॥୬୯୩୦॥
ତାହା ସୁଣି ରାଜନ ଡଗର ପେସିଲା[୩]
ରାଜାଙ୍କର ଆଜ୍ଞା ବୋଲିଂ ସୁପକାରକୁ ବୋଇଲା[୪] ॥୬୯୩୧॥
ତାହାସୁଣି ଭିମ ଆଖି ତରାଟିଲା
କେ କାହାର ଆଜ୍ଞାକାରି ବୋଲିଣ ବୋଇଲା ॥୬୯୩୨॥
ଡଗର ଡରେ ପଳାଇ ରାଜାକୁ କହଇ
ସେ ସୁପକାର ନୟନେ ଜଳିଗଲି ମୁହିଂ ॥୬୯୩୩॥
ତାହା ସୁଣି ଯୁଧିଷ୍ଠି ଆରତ ହୋଇଲେ
ଭୋ କୃଷ୍ଣନାଥ ଏହାକୁ କେମନ୍ତେ ରଖିବୁ ବୋଇଲେ ॥୬୯୩୪॥
ବୋଇଲେ ଡଗରରେ ବେଗେ ଚଳିଯିବୁ
ଠାକୁରଙ୍କର ଆଜ୍ଞାବୋଲି ସୁପକାରକୁ କହିବୁଂ[୫] ॥୬୯୩୫॥
ଏମନ୍ତ ଆଜ୍ଞାସୁଣି ଡଗର ଚଳିଗଲା
ଭିମସେନ ଆଗେଂ ଠାକୁରଙ୍କ ଆଜ୍ଞା ବୋଲି କହିଲା ॥୬୯୩୬॥
ଯୁଧିଷ୍ଠିଙ୍କ ଆଜ୍ଞାରେ ଭିମସେନ ମିଳିଲା
ବିଧାଏ ପ୍ରହାରି ବ୍ୟାଘ୍ରକୁ ନାସିଲା ॥୬୯୩୭॥

---

୧ । ଘ ପୋଥି – ମନ୍ଦିରେ
୨ । ଘ ପୋଥିରେ ଏହି ଦୁଇଧାଡ଼ି ଅଧିକ ଅଛି
ଆଜ୍ଞା ପାଇ ଭିମଠାରେ ପ୍ରବେଶ ହୋଇଲା
ରାଜା ଆଜ୍ଞା ବୋଲି ଭିମସେନକୁ କହିଲା
୩ । ଘ ପୋଥି – କେ କାହାର ଆଜ୍ଞାକାରୀ ବୋଲି ନୟନ ତରାଟି ଚାହିଂଲା
୪ । ଘ ପୋଥି – ଚାହାନ୍ତେ ନୟନେ ଆଲୋଳ ଦିଶିଲା
୫ । ଘ ପୋଥିରେ ତଳ ଦୁଇଧାଡ଼ି ନାହିଁ

ବିରାଟ ପ୍ରସଂସିଲା ଧନ୍ୟରେ ସୁପକାର
ସୁଣଗୋ ଓମା ବୋଲିଂ ବୋଲନ୍ତି ସଂକର ॥୬୯୩୮॥
ଦିନେ ସଭାକରି ବସିଥିଲା ବିରାଟ
ମାଲ ଗୋଟାଏ ଜାଇ ହୋଇଲା ପ୍ରବେଶ ତ ॥୬୯୩୯॥
ବିରାଟକୁ ବୋଇଲା ସମର ଦିଅସି
ଲୋହିଲେ ରାଜ୍ୟ ସନ୍ୟ ପକାଇବି ଧ୍ୱଂସି ॥୬୯୪୦॥
ବିରାଟ ବୋଇଲା ମୁଂ ମାଲବନ୍ଧ ନଜାଣଇଂ
ମାଲ ବୋଇଲା ରାଜ୍ୟ ଛାଡ଼ି ପଳା ତୁହିଂ ॥୬୯୪୧॥
ମାଲଙ୍କ ସିରୋମଣିଂ ପ୍ରତାପ ମୋର ନାମ
ଭ୍ରମଇଂ ପରରାଷ୍ଟ୍ର ରାଜାଙ୍କ ସଙ୍ଗତେ କରେ ରଣ ॥୬୯୪୨॥
ଅନେକ ନୃପତି ପକାଇଲିଂ ମାରି
ଥୋକାଏ ପଳାଇଲେ ନଗ୍ରଜନ ଛାଡ଼ି ॥୬୯୪୩॥
ମୋହର ସାକ୍ଷାତେ କେହିଂ ନୋହିଲେ ରାଜନ
କେବଳ ଏକା ମୁହିଂ କରଇ ଭ୍ରମଣ ॥୬୯୪୪॥
ଏତେ ବୋଲି ମାଲ ନିସ୍ୱାସ ଛାଡ଼ିଲା
ଉଡ଼ିଲେ ସଭାଜନେ ବତାସ ବହିଲା ॥୬୯୪୫॥
ଚାରି ଯୋଜନ ଜାଏ ସୁନ୍ୟରେ ଉଡ଼ିଗଲେ
ନିଶ୍ୱାସ ସ୍ଥମ୍ଭନ୍ତେ ପୁଣି ଭୋମିରେ ମିଳିଲେ ॥୬୯୪୬॥
ଯେବଣ ଠାବରୁ ଜେ ଉଡ଼ି ଜାଇଥିଲେ
ପୁଣି ସେହି ରୁପେ ସେ ଠାବରେ ବସିଲେ ॥୬୯୪୭॥
ଚରଣ ଲଖରେ ସେ କାଟିଲା ଏକ ଗାର
ନଦି ଗୋଟିଏ ହୋଇଲା ଯୋଜନ ଉସାର ॥୬୯୪୮॥
ଦେଖିଣ ବିରାଟ ଆଶ୍ଚାର୍ଯ୍ୟ ହୋଇଲା
କି ବୁଦ୍ଧି କରିବିଂ ବୋଲି ସଭାପଣ୍ଡାକୁ ପଚାରିଲା ॥୬୯୪୯॥
ଥିବିକି ନଥିବିଂ କୁହନି ଗୋସାଇଂ
ଏ ମାଲକୁ ମୋହର ସକ୍ଷ ଆଉ ନାହିଂ[1] ॥୬୯୫୦॥
ଯୁଧିଷ୍ଟି ବୋଇଲେ ତୁ ନଭାଳ ରାଜନ
ଏ ମାଲକୁ ନାସିବ ବଲ୍ଲବ ବ୍ରାହ୍ମଣ ॥୬୯୫୧॥
ଏତେ ବୋଲି ଯୁଧିଷ୍ଟି ଡଗର ପେଶିଲେ
ଠାକୁରେ କହିଲେ ବୋଲିଂ ଭିମ ଆଗେ କହିଲେ ॥୬୯୫୨॥
ସୁଣିଣ ମାରୁତି ପ୍ରବେଶ ସଭାର
ଯୁଧିଷ୍ଟି ବୋଇଲେ ଏ ମାଲକୁ ଯୁଦ୍ଧେ ମାର ॥୬୯୫୩॥
ସୁଣି ବିକୋଦର ହୋଇଲା ମାଲବନ୍ଧ
ମାଲକୁ ମାଡ଼ି ବସିଲା ଜେ ସେ ଭୁମିଭାଗ ମଧ୍ୟ[2] ॥୬୯୫୪॥
ସତେସିଂହ ସୁମରି ବିଧାଏ ମାଇଲା
ମୁର୍ଦ୍ଧନା ଫାଟିଣ ମାଲ ପ୍ରାଣ ସୁନ୍ୟେ ଗଲା ॥୬୯୫୫॥
ମାଲ ପିଣ୍ଡ ପଡ଼ିଲା ସେ ପର୍ବତ ଆକାର
ବିରାଟ ପ୍ରସଂସା କଲା ଧନ୍ୟ ଏ ସୁପକାର ॥୬୯୫୬॥
ମାଲକୁ ମାରି ଭିମ ସ୍ନାହାନ କଲା ଜଳେଂ
ରନ୍ଧନ କଲା ଜାଇ ରୋସାଇ ସାଳରେ ॥୬୯୫୭॥

## ଉଷା ଅନିରୁଦ୍ଧ ବିବାହ

ପାର୍ବତି ପୁଛାକଲେ ସୁଣ ହେ ପ୍ରାଣନାଥ
ମସ୍ୱଦେଶେ ପାଣ୍ଡବେ ହୋଇଲେ ଗୁପତ ॥୬୯୫୮॥
ଦ୍ୱାରକାରେ ପୁଣି କିସ କଲେ ବନମାଳି
ସେ କଥା ମୋର ଆଗେ କହ ହେ ଦେବ ସୁଳି ॥୬୯୫୯॥
ଜାହାର ମହିମା ସେ ଅପାରୁ ଅପାର
ସୁଣିଲେ ପାତେକ ନ ରୁହେ ସରିର ॥୬୯୬୦॥
ଜିହ୍ୱାରେ ସୁଣିଲେ ଜିବ ଗତିପାଇ
ତାହାଙ୍କ ଚରିତ ମୋତେ କହହେ ଗୋସାଇଂ ॥୬୯୬୧॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ଆମ୍ଭର ଗୋବିନ୍ଦର ହୋଇଲା ଏକଦିନେ ରଣ ॥୬୯୬୨॥
ବୋଲନ୍ତି ଗିରିଜା ସୁଣ ହେ ସଦାସିବ
ତୁମ୍ଭେ ମହାଦେବ ସେ ଦେବଙ୍କ ପରେ ଦେବ ॥୬୯୬୩॥
ଏକେ ହେଂ ସୋହଦର ଏକ ବିର୍ଯ୍ୟୁ ଜାତ
ଏକା ଅକ୍ଷରେ ହୋଇଅଛ ସମ୍ଭୁତ ॥୬୯୬୪॥
ସେ ପାଳକ ପତି ତୁମ୍ଭେ ସଂହାରଣ ପୁରୁଷ
ତୁମ୍ଭେଂ ଐସୁର୍ଯ ଦାତା ସେ ଖଣ୍ଡନ୍ତି ଦେହୁଂ ପାପ ଦୋଷ ॥୬୯୬୫॥
ତୁମ୍ଭର ତାହାଙ୍କର ହୋଇଲା କିମ୍ପେ କଳି
ଏକଥା ମୋର ଆଗେ କହ ହେ ଦେବ ସୁଳି ॥୬୯୬୬॥
ବଦୟନ୍ତି ଗଙ୍ଗାଧର ସୁଣଗୋ ଗିରିଜା
ବାଣାସୁର ବୋଲି ଦୈତ୍ୟ ବଳିର ତନୁଜା ॥୬୯୬୭॥
ତପରେ ତୋଷି ଆମ୍ଭଠାରୁ ପାଇ ବର
ଭୁଜବଳେ ସାଧିଲା ସ୍ୱର୍ଗ ମଂଚ ପୁର ॥୬୯୬୮॥
ସହସ୍ରେକ ଭୁଜ ତାର ଅଟଇ ରଣରଙ୍କା
ତାର ଗଡ଼ ଦେଖି ଜମ ଦେବତା କରେ ସଙ୍କା ॥୬୯୬୯॥
ସତେକ ନନ୍ଦେନ ତାର ଅଟନ୍ତି ମହାବଳି
ଓସା ବୋଲିଣ ତାର ଅଟଇ ଏକ ବାଳି ॥୬୯୭୦॥
ଅତ୍ୟନ୍ତ ସୁନ୍ଦର ସେ ଅଟଇ ରାଜଜେମା
ଜାହା ରୁପ ଦେଖି ବର୍ଣ୍ଣି ନ ପାରନ୍ତି ବେଦବ୍ରହ୍ମା ॥୬୯୭୧॥
ତାହାର ରୁପ ଦେଖି ସରି ନୋହିଲେ କେହି ବର
ତେଣୁ ତାକୁ ରଖିଲା ତୋଳାଇ ନବର ॥୬୯୭୨॥

୧ । ଘ ପୋଥି – କିସ ମୁଂ କରିବି କହ ବିପ୍ରର ତନଇଂ
୨ । ଘ ପୋଥି – ମାଲକୁ ଧରିଣ କଚାଡ଼ିଲା ଆଗ

ଏକଦିନେ ଓସା ସୟନ କରିଥିଲା
ସପନେ ପର ପୁରୁସ ରତି କରିଗଲା ॥୬୯୭୩॥
କାନ୍ତ କାନ୍ତ ବୋଲି ଛାଡ଼ିଲା ବୋବାଳି
ଚିତ୍ରରେଖା ବୋଲିଣ ତାହାର ମୁଦୁସୁଲି ॥୬୯୭୪॥
ମୁଦୁସୁଲି ବୋଇଲା ରାଜା ଚିତ୍ରକଲିଂ ମୁହି
କେଉଂ ରାଜା ଆସିଥିଲା କହନି ବୁଝାଇ ॥୬୯୭୫॥
ଓସା ବୋଇଲା ଗୋ ସୁଣସି ସଙ୍ଗାତ
ଏମାନେ ନୋହନ୍ତି ଜେ ମୋହର ନିଜ କାନ୍ତ ॥୬୯୭୬॥
ପଦ୍ମନ ପୁତ୍ର ଅନିରୁଦ୍ଧକୁ ଲେଖିଲା
ଏହି ସେ ମୋର ନିଜ କାନ୍ତ ଓସା ସେ କହିଲା ॥୬୯୭୭॥
ଓସାକୁ ସ୍ୟାନ୍ତି କରି ଦ୍ୱାରିକାଂରେ ହେଲା
ପଦ୍ମନ ପୁତ୍ର ଅନିରୁଦ୍ଧକୁ ଘେନିଗଲା ॥୬୯୭୮॥
ଓସାଠାରେ ନେଇ ପ୍ରବେସ କରାଇଲା
କନ୍ୟାର ସଙ୍ଗତେ ରମଣ ସେହୁ କଲା ॥୬୯୭୯॥
କନ୍ୟାର ସଙ୍ଗେ କୁମର କଲାକ ରମଣ
ଜାଣିଣ ବାଣାସୁର କଲାକ ବନ୍ଧନ ॥୬୯୮୦॥
ନାରଦେ କହିଲେ ଦ୍ୱାରିକାରେ ଜାଇ
ଯାଦବ ସନ୍ୟ ଘେନି ବାହାର ବେନି ଭାଇ ॥୬୯୮୧॥
ବାଣାସୁର ପୁରେ କଲେକ ବାଟ ଜାଇ
ସୁଣିଣ ବାଣାସୁର ଅଇଲାକ ଧାଇଂ[୧] ॥୬୯୮୨॥
ଆମ୍ଭର ଆଗରେଂ ସେ କହିଲା ବୃତାନ୍ତ
କୋପଭରେ ଆମ୍ଭେ ସେ ଜାଚିଲୁଂ ନିଜ ଥାଟ[୨] ॥୬୯୮୩॥
ବୃସଭ ଆରୋହି ପ୍ରବେସ ସାଙ୍ଗ୍ରାମର
ଥାଟ ଘେନିଣ ସେ ଯୁଦ୍ଧ କଲା ବାଣାସୁର ॥୬୯୮୪॥
ବାଣାକୁ ସାହା ହୋଇଲୁଂ ସମର ମଧ୍ୟେଂ
ସଂସାର ଉଛଳି ହୋଇଲା ଦୁଇ ଯୁଦ୍ଧେଂ ॥୬୯୮୫॥
ଅନେକ ଯୁଦ୍ଧରେ ବିବୁଧେ ନାସ ଗଲେଂ
ଆମର ସନ୍ୟବଳ ଅନେକ ହିଂ ମଲେ ॥୬୯୮୬॥
ଜାଗିଲା ରଣଗୋଳ ଦିବସେ ଅନ୍ଧକାର
ନ ପାରିଲୁଂ ଚିହ୍ନି କେ ପର ଅପର ॥୬୯୮୭॥

୧ । ଘ ପୋଥିରେ ଏହାର ତଳେ ତିନି ଧାଡ଼ି ଅଧିକ ଅଛି –
ଆମ୍ଭର ଅଗ୍ରତେ କହିଲାକ ଯାଇ
ଶୁଣିକରି ଆମ୍ଭେ ଅଇଲୁ ଗୋଡ଼ାଇ
ନିଜ ବଳ ଘେନି ଅଇଲୁ ନିଶାର
୨ । ଘ ପୋଥିରେ ଏହି ଦୁଇଧାଡ଼ି ନାହିଁ

ଆମ୍ଭର ନାରାଜେ ଆମ୍ଭର ସନ୍ୟମଲେ
ଥୋକାଏ ଜାଦବ ବଳ ଗୋବିନ୍ଦ ସଂହାରିଲେ ॥୬୯୮୮॥
ଦୈଇତ୍ୟ ନିସୋଧନ କଲେ ବଳରାମ
ଗୋବିନ୍ଦ ପେସିଲେ ଚକ୍ର ସୁଦ୍ରିସେନ ॥୬୯୮୯॥
ସହସ୍ରେକ ଭୁଜ ବହଇ ବାଣାସୁର
ବେନି ଭୁଜ ରଖି ସର୍ବ ଛେଦିଲେ ଚକ୍ରଧର ॥୬୯୯୦॥
ଚଉଦ ଭୁବନରେ ପଡ଼ିଲା ହାଲୁହୁଳିଂ
ମଧ୍ୟସ୍ତ ହୋଇଣ ବ୍ରହ୍ମା ରୁହାଇଲେ କଳି ॥୬୯୯୧॥
ଜିବନ ପାଇ ବାଣା ଭିଆଇଲା ସାମଗ୍ରିଂ
ଅନିରୁଧକୁ ବିଭା କରାଇଲା କୁମାରି ॥୬୯୯୨॥
ପୁତ୍ର ବଧୁ ଘେନି ଦ୍ୱାରିକାରେ ପ୍ରବେଶ ଜଗନ୍ନାଥ
ବୋଲନ୍ତି ଗିରିଜା ସୁଣହେ ବିସ୍ୱନାଥ ॥୬୯୯୩॥

## କିଚକ ବଧ

ବିରାଟ ଭୁବନେ ଯେ ପାଣ୍ଡବେ ରହିଲେ
ବ୍ୟାଘ୍ର ମାଲକୁ ଭିମ ମାଇଲା ଜେ ହେଳେଂ ॥୬୯୯୪॥
ତଦନ୍ତରେ କିସ ହୋଇଲା ସମାଚାର
କହିବ ଶୁଣି କର୍ଣ୍ଣେ ପାତେକ ହେବ ଦୁର ॥୬୯୯୫॥
ସୁଣଗୋ ଓମା ବୋଲି ବୋଲନ୍ତି ଦୃଜଟି
ବୈସାଖ ସୁକଳ ତିଥି ଜେ ଚଉଠି ॥୬୯୯୬॥
ବିରାଟ ମୁଖ ଚାହିଂ ଯୁଧିଷ୍ଟି କହିଲେ
ଚନ୍ଦନଜାତ୍ରା କର ପାଇବୁ ଗତି ଏବେ ॥୬୯୯୭॥
ହେଉ ହେଉ ବୋଲିଣ ବିରାଟ ବୋଇଲା
ଚାଟେକ ମନ୍ତ୍ରି ତହିଂ ସକଳ ଭିଆଇଲା ॥୬୯୯୮॥
ସରୋବର ତଟେ ଜେ ଭିୟାଇ ମଣ୍ଡୋପ
ବିଷ୍ଣୁଂ[୧] ପ୍ରତିମାକୁ ସ୍ଥାପି କରନ୍ତି କୌତୁକ ॥୬୯୯୯॥
ସୁବର୍ଣ୍ଣର ପ୍ରତିମା ନାବରେ ବସାଇ[୨]
ଶୁକ୍ଳ ପକ୍ଷ ରାତ୍ରରେ ଉଛବ ଲାଗଇ ॥୭୦୦୦॥
ନଗ୍ର ନରନାରି ଦେଖିବାକୁ ଜାନ୍ତି
ଦିନେ ବାହାର ହୋଇଲା[୩] ବିରାଟ ଯୁବତି ॥୭୦୦୧॥
ମୁଦୁସୁଲି ତୁଲେ ଦ୍ରୋପଦିକି ଘେନି
ଯାତ୍ରାଠାରେ ପ୍ରବେସ ହୋଇଲେ କାମେନି ॥୭୦୦୨॥
ବିରାଟ ସଳା ଜେ କିଞ୍ଚେକ ବୋଲି ନାମ
ସତେକ ଭାଇ ଗୋଟି ସକଂଞ୍ଚନ ରାଜାର ନନ୍ଦନ ॥୭୦୦୩॥

୧ । ଘ ପୋଥି – କୃଷ୍ଣ
୨ । ଘ ପୋଥି – ନବରେ ଭିଆଇ
୩ । ଘ ପୋଥି – ତାହାଙ୍କ ସଙ୍ଗେ ଯାଏ

ଦ୍ରୋପଦିକି ଦେଖି କିଞ୍ଚକ ମୋହିତ
ବିଚାରେଂ ଏହାକୁ ପନ୍ନିଂ କରିବି ନିଅତ ||୭୦୦୪||
ଦ୍ରୋପଦି ଶ୍ରୀକୃଷ୍ଣା ନବରେ ପ୍ରବେସ
ରଜନି ପାହାନ୍ତେ କିଞ୍ଚକ ଲେଖ ଲେଖିଲା ବିସେସ ||୭୦୦୫||
କରୁଣା ମୁଦୁସୁଲି ଶ୍ରୀକୃଷ୍ଣାଠାରେ ଦେଇ
ସଇନ୍ଧ୍ରି ନଦିଲେ ମରିବ ତୋର ଭାଇ ||୭୦୦୬||
ଉପ୍ରୋଧ କରିଣ କହିଲା ଦ୍ରୋପଦିକିଂ
ଶ୍ରୀକୃଷ୍ଣା ବୋଇଲା ଏ ଲେଖାଦିଅ ନେଇ ମୋ ଭାଇକି ||୭୦୦୭||
ଲେଖ ଖଣ୍ଡିଏ ଲେଖିଲା ବିରାଟର ରାଣିଂ
ତୁମ୍ଭେ ସତେ ଭାଇରେ ମୁଂ ତୁମ୍ଭର ବହେଣିଂ ||୭୦୦୮||
ଏହୁ ପରନାରି ନିରେଖ ଅଟଇ
ବଳକ୍କାରେ ହରିଲେ ପଡ଼ିବୁ ନର୍କେ ଜାଇ ||୭୦୦୯||
ଏହାଉଂ ସମ ନାରି କରିବିଂ ତୋତେ ବିଭା
ଏହାକୁ କିଛି ନକହି ଛାଡ଼ିଦେବୁ ବାବା ||୭୦୧୦||
ଏମନ୍ତ ବୋଲି ଲେଖା ଦ୍ରୋପଦି ହସ୍ତେ ଦିଲା
ବିରସ ହୋଇଣ ଦେବି ଘେନିଣ ରହିଲା ||୭୦୧୧||
ଭୋ ଧର୍ମଦେବତା ବୋଲି ବୋଲଇ ହୃଦୟର
ପ୍ରବେସ ହେଲା ଜାଇ କିଞ୍ଚକ ସଭାର[1] ||୭୦୧୨||
ମଦନ ଆରତେ କିଞ୍ଚକ ଆଗୋଳିଲା ବାଟ
ଛାୟା ମାୟାକୁ ପେସି ଦିଲେକ ଆଦିତ୍ୟ ||୭୦୧୩||
ସେ ବେନି ନାରି କିଞ୍ଚକକୁ ପେଲି ପକାଇଲେ
ପଳାଇ ଦ୍ରୋପଦି ବିରାଟ ସଭାରେ ହୋଇଲେ ||୭୦୧୪||
ଆସ୍ଥାନରେ ବିଜଏ କରିଛି ନୃପବରଂ
ଦ୍ରୋପଦି ବିରାଟକୁ କହେ ସମାଚାର ||୭୦୧୫||
ବିରାଟ ବୋଇଲା ଜାହା କହିଲା ବିରମଣିଂ
ସେ କଥା କର ଅନ୍ୟ ନ ବିଚାର ପୁଣିଂ ||୭୦୧୬||
ସଭାରୁ ସୁଣି କିଞ୍ଚକ କେସ ଧରିନିଲା
ଭୟରେ ଦୃପତି ତାକୁ ସନମତ କଲା ||୭୦୧୭||
ବୋଇଲେ ରାତ୍ରେ ଜିବି ତୋହର ଭୁବନ
ଛାଡ଼ିଦିଅ କରିବିଂ ପାକାଶ୍ରୋଣିତ ସ୍ନାହାନ ||୭୦୧୮||
କିଞ୍ଚକ ଛାଡ଼ିଦିଲା ଦ୍ରୋପଦି ବାହୁଡ଼ିଲେ
କସ୍ୟପସୁତ ମେରୁ ଉହାଡ଼େ ରହିଲେ ||୭୦୧୯||
ରଜନି ବେନି ଘଡ଼ିରେ ଗମିଲେ ଦ୍ରୋପଦି
ପ୍ରବେସ ହେଲେ ଜହିଂ ଅଛନ୍ତି ଯୁଧିଷ୍ଠି ||୭୦୨୦||
ସକଳ ବୃତାନ୍ତ ଧର୍ମ ନନ୍ଦନ ସୁଣିଲେ
ଡାକିଣ ଚାରିଭାଇ ବସିଣ ବିଚାରିଲେ ||୭୦୨୧||

୧ । ଘ ପୋଥି – ଉଠିଣ କିଞ୍ଚକ ପ୍ରବେଶ ସଭାର

ସହଦେବ ବୋଇଲେ ସୁଣ ହେ ଠାକୁର
କିଞ୍ଚକକୁ ନାସ କରିବେ ବିକୋଦର ||୭୦୨୨||
ଏତେ କହିଣ ସେ ଗମିଲେ ଜେଝା ସ୍ଥାନ
ରଜନି ପାହି ଉଦେ କଶ୍ୟପନନ୍ଦନ ||୭୦୨୩||
କିଞ୍ଚକ ତୋଳାଇଲେ ଏକାନ୍ତ ମନ୍ଦିର
ଭାଳଇ କେତେବେଳେ କରିବିଂ ଶୃଙ୍ଗାର ||୭୦୨୪||
ଭିମସେନ ଅର୍ନ୍ନ ରାନ୍ଧିଣ ପରସିଲା
ଭୁଞ୍ଜିଂ ଗଲେ ସନ୍ୟ ସନ୍ଧ୍ୟାକାଳ ହେଲା ||୭୦୨୫||
ପହଡ଼େକ ନିସି ହୋଇଲାକ ଜହୁଂ
ସ୍ତିରି ରୁପେ ଭିମ ଗମିଲାକ ତହୁଂ ||୭୦୨୬||
କିଞ୍ଚକ ନବରେ ପଲଙ୍କେଂ ପହୁଡ଼ିଲା
ସେହି ସମୟରେ କିଞ୍ଚକ ମିଳିଲା ||୭୦୨୭||
ସଖି ସଖି ବୋଲିଣ ପଲଙ୍କରେ ବସି
ଭିମସେନ ଦେହ ହସ୍ତରେ ଆଉଂସି ||୭୦୨୮||
ସତେସିଂହ ଗିରିକି ସୁମରି ଭିମସେନ ବିର
କିଞ୍ଚକକୁ ମାଡ଼ିଂ ବସିଲା ଭୁମିର[1] ||୭୦୨୯||
ହିରଣ୍ୟକୁ ଜେସନେ ନୃସିଂଘ ମାଡ଼ିବସି
ସେହିରୁପେ ମାଡ଼ିବସିଲା ପବନରସିସି ||୭୦୩୦||
ଫାଟିଲାକ ପିଣ୍ଡ କିଞ୍ଚକ ପ୍ରାଣଗଲା ଛାଡ଼ି
ଅସ୍ଥି ମାଏସଂ ଦଳି କଲାକ ପିଣ୍ଡୋଳି ||୭୦୩୧||
ଉରାରେ ଟାଙ୍ଗିଣ ଯେ ରାତ୍ରରେ ଗଲା ଧାଇଂ
ସ୍ନାହାନ କରିଣ ରୋସାଇ ସାଳରେ ମିଳଇ ||୭୦୩୨||
ଆଦିତ୍ୟ ଉଦୟେଂ ଜେ ବିରାଟ ସଭାକଲା
କିଞ୍ଚକକୁ ନଦେଖି ଦୁତ ବରଗିଲା ||୭୦୩୩||
କିଞ୍ଚକ ପୁରେ ପସି ନପାଇ ସନ୍ଦେସ
ଡଗର କହନ୍ତେ ଗମିଲା ସେତ ରାଜାରସିସ[2] ||୭୦୩୪||
କବାଟ ଫିଟାଇ ପସିଲା ଭିତରେ
ଦେଖିଲା ପେଣ୍ଡୋଳିଏ ଅଛି ଉରା ଉପରେ ||୭୦୩୫||
ଦେଖିଣ ସୋକ କଲା ଶ୍ରୀକୃଷ୍ଣାର ନାହା
କହିଲେ ପ୍ରବୋଧି ଯୁଧିଷ୍ଠି କରି ଦୟା ||୭୦୩୬||
କିଞ୍ଚକ ଭାଇକି ବିରାଟ କହଇ
ସଇନ୍ଧ୍ରି ଲାଗି ମଲା ତୁମ୍ଭର ଜେ ଭାଇ ||୭୦୩୭||
ତାହାକୁ ଦଣ୍ଡଦିଅ ରାଜ୍ୟୁ କର ଦୁର
ସୁଣିଣ ଧାଇଂଲେ ସଙ୍କଞ୍ଚନ କୁମର ||୭୦୩୮||

୧ । ଘ ପୋଥି – ମାଣ୍ଡି
୨ । ଘ ପୋଥି – ଡଗର କହନ୍ତେ ଉଠି ଗମିଲା ବିରାଟ

ବିରାଟପୁରେ ପସି ଧଇଲେ ଜିଘ୍ନସେନି
ଓଟାରି ଘେନିକାନ୍ତେ ବୋବାଳି ପାଡ଼ିଲେ ଠାକୁରାଣି ||୭୦୩୯||
ଗନ୍ଧର୍ବେ ରକ୍ଷାକର ହୋଇଲି ନିରେଖ
ସୁଣିଣ ଧାଇଂଲା ପବନର ବଛ[1] ||୭୦୪୦||
ହୋଇଲା ଭୟାଙ୍କାର ଧଇଲା ବିସ୍ୱମୁର୍ତ୍ତି
କିଞ୍ଚେକ ଭାଇଙ୍କି ସେ ପକାଇଲା ମନ୍ଥି ||୭୦୪୧||
କାହାକୁ ଚାପୋଡ଼େ କାହାକୁ ଗୋଇଠାୟେଂ
କାହାକୁ ମୁଥେଂ କାହାକୁ ଗୁରୁଦାଏ[2] ||୭୦୪୨||
ମାରିଣ ଏକ ଗଦା କଲା ଭିମସେନ
ରୁସାଇସାଳରୁ ଆଣିଲା ହୁତାସନ ||୭୦୪୩||
ଅଗ୍ନିକି ସମର୍ପି ସୁଝିଲା ପୁର୍ବ ରଣ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ||୭୦୪୪||
ଜାଣିଣ ବିରାଟ ବହୁତ ସୋକକଲା
ଆଜଠାରୁ ମୋହର ବଡ଼ପଣ ସରିଲା ||୭୦୪୫||
ସତେସିଙ୍ଘର ବଳ କିଞ୍ଚେକ ନାସ ଗଲା
କାହା ବାହୁବଳେ ହୋଇବିଂ ନୃପନାଥ ଭଲା[3] ||୭୦୪୬||
ଆଦିତ୍ୟ ଥାଉଂ ଥାଉଂ ଅନ୍ଧାର ମୋତେ ହେଲା
ବଦୟନ୍ତି ଯୁଧିଷ୍ଟି ନଭାଳ ତୁହି ରାଜା[4] ||୭୦୪୭||
ଆହେ ରାଜା ଦେବତା[5] ଗନ୍ଧର୍ବ କିଞ୍ଚେକକୁ ମାରି
ସେହି ତୋତେ ଦୁସ୍ତରୁ କରିବେ ଯେ ପାରି ||୭୦୪୮||
ବିରାଟ ସ୍ୟାନ୍ତି ହୋଇ ସ୍ନାହାନ ଜଳେଂ କଲା
ସନ୍ୟ ସହିତେ ଭୁଂଜିଲେ କୋନ୍ତ ପଣ୍ଡା ||୭୦୪୯||
ଭୋଜନ ସାରିଣ ହୋଇଲେ ନିଶ୍ଚନ୍ତ
ସୁଣଗୋ ଓମା ବୋଲିଂ ବୋଲନ୍ତି ବିସ୍ୱନାଥ ||୭୦୫୦||

## ଗୋଧନ ହରଣ କରିବାପାଇଁ ଦୁର୍ଯ୍ୟୋଧନର ବିରାଟ ରାଜ୍ୟ ପ୍ରବେଶ ଓ ପରାସ୍ତ

ଏକଦିନେ ଡଗର ଦୁର୍ଯୋଧନଙ୍କୁ କହିଲା
କିଞ୍ଚେକ ନାସଗଲା ବିରାଟର ସଳା ||୭୦୫୧||
ସତେଭାଇକି କେହୁ ଗନ୍ଧର୍ବ ଗଲାମାରି
ସୁଣିଣ ତ୍ରିଗତ ଉଠିଲା ସିରଝାଡ଼ି ||୭୦୫୨||

୧ । ଘ ପୋଥି – ସୁତ
୨ । ଘ ପୋଥି – ବିଧାଏ
୩ । ଘ ପୋଥିରେ ଏହି ଧାଡ଼ିଟି ନାହିଁ
୪ । ଘ ପୋଥି ଏହାର ତଳେ ଅଧିକ ଅଛି –
କିଞ୍ଚେକକୁ ମାଇଲା ଯେବଣ ତନୁଜା
୫ । ଘ ପୋଥି –ଯେବଣ ଗନ୍ଧର୍ବ

ଭୋ ମହାରାଜା ତୁମ୍ଭଠାରେ ପସିଲିଂ ସରଣ
ବିରାଟ ନେଇଅଛି ମୋହର ଗୋଧନ ||୭୦୫୩||
କିଞ୍ଚେକ ବାହୁବଳେଂ ବିରାଟ ରାଜା ହୋଇ
ସନ୍ୟବଳ ଦିଲେ ମୁ କରିବିଂ କଟକାଇ ||୭୦୫୪||
ସପତ କ୍ଷେଉଣିବଳ ଘେନିଣ ତ୍ରିଗତ
ତିନିଦିନେ ପ୍ରବେସ ହୋଇଲା ମସ୍ତଦେସ ||୭୦୫୫||
ବିରାଟ ଅଗ୍ରତେ ଡଗର ଜଣାଇଲା
ସମ୍ଭାଳ ରାଜ୍ୟ ତୋର ତ୍ରିଗତ ଅଇଲା ||୭୦୫୬||
ସୁଣିଣ ଅଧଉର୍ଯ୍ୟ ଶ୍ରୀକୃଷ୍ଣାର ସାଇଂ
ଅଇଲା ଶତୃ ଏବେ କିଞ୍ଚେକ ମୋର ନାହିଂ ||୭୦୫୭||
ଯୁଧିଷ୍ଟି ବୋଇଲେ ତୁ ନ ଭାଳ ନୃପତିଟି
ସନ୍ୟ ସଜକର ଅଣାଅ ସୁପକାର ଗୋଟି ||୭୦୫୮||
ସୁଣି ବିରାଟ ମନ୍ତ୍ରିକି ଆଜ୍ଞା ଦେଇ
ଘୋସଣ ଦିଆଅ ତୁମ୍ଭ ସନ୍ୟ ସଜହୋଇ ||୭୦୫୯||
ନୃପତି ବୋଇଲେ ତୁମ୍ଭେ ଅଣାଅ ସୁପକାର
ମୋହର ବୋଲକୁ ବିପ୍ର କରଇ କୋପ ଗୁରୁତର ||୭୦୬୦||
ଯୁଧିଷ୍ଟି ଆଜ୍ଞାଦିଲେ ଡଗର ଗଲାଧାଇଂ
ସକଳ ଚରିତ ଜେ ଭିମ ଆଗେ କହିଂ ||୭୦୬୧||
ଠାକୁରଙ୍କ ଆଜ୍ଞା ବୋଲି କହିଲା ଡଗର
ଡଗରଠାରୁ ସୁଣି ସଭାରେ ପ୍ରବେସ ସୁପକାର ||୭୦୬୨||
ଯୁଧିଷ୍ଟି ପାଦେ ପଡ଼ି ବିରାଟକୁ ପିଠି
ଉଠ ହୋ ଦ୍ୱିଜ ବୋଲି ବୋଇଲେ ଯୁଧିଷ୍ଟି ||୭୦୬୩||
ବୋଇଲେ ବାବୁ ଏ ରାଜ୍ୟେଂ ଶତୃ ଉପସ୍ଥିତ ହୋଇଲା
ନୃପତି ସଙ୍ଗେ ଚାଲ ବାବୁ ସମର କରିବା ଭଲା ||୭୦୬୪||
ହେଉ ହେଉ ବୋଲିଣ ବୋଇଲେ ପାବେନି
ହୃଦରେ ଉଲ୍ଲାସ ବାହୁକଣ୍ଡୁ ନିବାରିବିଂ ପୁଣି ||୭୦୬୫||
ରହୁବର ସାଜିଣ ବସିଲା ବିରାଟ
ଜାନବାହାନ ଆରୋହି ବାହାର ହେଲେ ଥାଟ ||୭୦୬୬||
ପଥ ବହିଗଲେ ଥାଟ ତ୍ରିଗତ ସନ୍ୟ ଭେଟି
ହଟନାଟ ବଟମୁଳେ ବସିଲେ ଯୁଧିଷ୍ଟି ||୭୦୬୭||
ଭିମ ନକୁଳ ବସିଲେ ସେହିଠାର
ବିରାଟ ତ୍ରିଗତର ହୋଇଲା ସମର ||୭୦୬୮||
ରଥିକି ରଥି ଜୁଝେ ମାଲକୁ ମାହୁନ୍ତ
ଗଜକୁ ଗଜ ଭେଟି ପଏଦାରକୁ ପାଏକ ||୭୦୬୯||
ଲାଗିଲା ରଣଗୋଳ ଲୋହିଲା ବାରଣ
ଦୁଇ ବଳରୁ ମଲେ ଅନେକ ସଇନ୍ୟ ||୭୦୭୦||
ବିରାଟ ତ୍ରିଗତର ହୋଇଲା ବଡ଼ ରଣ
ତ୍ରିଗତ ନାରାଜେ ବିରାଟ ହୋଇଲା ମୋହମାନ ||୭୦୭୧||

ରଥରେ ପକାଇ ତ୍ରିଗତ ଗଲା ଘେନି
ନଦି ପାର ହୋଇ ରହିଲେ ସଇନି ||୭୦୭୨||
ହୋଇଲା ରଜନି ଦିନକର  ଅସ୍ତ
ଯୁଧିଷ୍ଟି ଅଗ୍ରତେ ଜଣାଇଲା ଦୁତ ||୭୦୭୩||
ତୁମ୍ଭଙ୍କୁ ଆଶ୍ରେକରି ବିରାଟ ଜୁଝୁଥିଲା
ଏବେ ବନ୍ଦିକରି ତ୍ରିଗତ ଘେନିଗଲା ||୭୦୭୪||
ଯୁଧିଷ୍ଟି ଆଜ୍ଞାଦିଲେ ଜାଅରେ ବିକୋଦର
ଯାହାର ଅନ୍ନଖାଇ ତାହାର କାର୍ଯ୍ୟକର ||୭୦୭୫||
ଆଜ୍ଞାପାଇ ପାବନି ପବନୁ ବେଗେଂ ଗଲା
ପାରିଭଦ୍ରା ନଦି ତିରେ ସନ୍ୟକୁ ଭେଟିଲା ||୭୦୭୬||
ବେନି ହସ୍ତେ ବେନି ତମାଳତରୁ ଘେନି
ପିଟିଲା କୋପଭରେଂ ତ୍ରିଗତ ସଇନି ||୭୦୭୭||
ସହଜେ ରାତ୍ରକାଳ ସଇନି ସର୍ବେ ଫୁଟି
ରନ୍ଧନ କରିଥିଲେ ବିକୋଦର ଭେଟି ||୭୦୭୮||
ସନ୍ୟ ନାସକରି ତ୍ରିଗତଠାରେ ମିଳି
ବିରାଟ ତ୍ରିଗତର ବାଳ ହସ୍ତେଂ ଧରି ||୭୦୭୯||
ଗମିଲା ଅନ୍ତରିକ୍ଷେଂ ନଦିପାର ହୋଇ
ଯୁଧିଷ୍ଟି ପାଦତଳେଂ ଦୁହିଙ୍କି ପକାଇ ||୭୦୮୦||
ତ୍ରିଗତ ଆମ୍ଭର ଶତ୍ରୁ ଲୋହେ ବିଚାରି ଧର୍ମବଳା
ନୟନ ଠାରିଦିଲେ ତ୍ରିଗତ ପଳାଇଲା ||୭୦୮୧||
ଭଗ୍ନ ସନ୍ୟକୁ ଦେଖିଲା ନିଳବନେ
ରାତ୍ର ଦିବା ପଳାଇ[1] ପ୍ରବେସ ହସ୍ତିନା ଭୁବନେ ||୭୦୮୨||
ଦୁର୍ଯୋଧନ ଅଗ୍ରତେ କହିଲା ସମାଚାର
ବୋଇଲା ଆଣୁଥିଲି ବିରାଟ ନୃପବର ||୭୦୮୩||
ରାତ୍ରରେ ଏକ ବିର ପ୍ରବେସ ହୋଇଲା
ଏକାୟେଂ ସନ୍ୟ ମୋର ମନ୍ଥି ପକାଇଲା[2] ||୭୦୮୪||
ମୋହର ବିରାଟର ବାଳଧରି ନିଲା ସେହିଂ
ଅନ୍ତରିକ୍ଷେ ନିଲା ପାଦ ନ ପଡ଼ିଲା ମହିଂ ||୭୦୮୫||
ହଟ ନାଟ ବଟମୁଳେ ପୁରୁସେଂ ବସିଥିଲା
ତାହାର ପାଦତଳେ ଆମ୍ଭକୁ ପକାଇଲା ||୭୦୮୬||
ବଡ଼ ଧାର୍ମିକ ସେ ଦିଲା ଆଖିଠାରି
ପଳାଇ ଅଇଲିଂ ମୁଂ ଜିବନେ ଭୟକରି ||୭୦୮୭||
ସୁଣି ମାନଗୋବିନ୍ଦ ହୋଇଲା ବୈଗୁଣ୍ୟ
ଆଖିଠାରି ଦେଇଣ ଜେ ହସିଲେ ଭିସ୍ମଂ ଦ୍ରୋଣ ||୭୦୮୮||

୧ । ଘ ପୋଥି – ଦିବସ ଭ୍ରମି
୨ । ଘ ପୋଥିରେ ମୋହର ବିରାଟର ଠାରୁ ଆମ୍ଭକୁ ପକାଇଲା ପର୍ଯ୍ୟନ୍ତ ନାହିଁ

ବ୍ୟାସେ ବୋଲନ୍ତି ବିଦୁରକୁ ଚାହିଂ
ପୋଏ ଅଛନ୍ତି ବିରାଟ ଘରେ ଜାଇ ||୭୦୮୯||
କିଞ୍ଚେକ ସତେଭାଇକିଂ ଭିମ ଥିବ ମାରି
ତ୍ରିଗତକୁ ନିଲା ସେହି ବନ୍ଦିକରି[1] ||୭୦୯୦||
ବଟମୁଳେ ଜେବଣ ପୁରୁଷ ବସିଥିଲା
ସେହି ସେ ଯୁଧିଷ୍ଟି ଧର୍ମ ଦେବତାଙ୍କ ବଳା ||୭୦୯୧||
ଏହିକଥା ଆମ୍ଭ ମନକୁ ଯୋଗାଇ
ସୁଣି ବିଦୁର ବୋଲନ୍ତି ହୋଇ ହୋଇ ||୭୦୯୨||
ଏମନ୍ତେ ବହିଗଲା କେତେହେକ ଦିନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ||୭୦୯୩||
ଦୁର୍ଯୋଧନକୁ ଚାହିଂ ବୋଲଇ ତ୍ରିଗତ
ସନ୍ୟ ସଜକର ଜିବା ମସ୍ୟ ଦେଶ ତ ||୭୦୯୪||
ବିରାଟର ଅଛି ପୃଥୁନା ନାମେ ଗାଇ
ଅଣ୍ଡିର ପାଞ୍ଚ ଲକ୍ଷ ସାତ ଲକ୍ଷ ମାଇ ||୭୦୯୫||
ଦୋହଳ ଚାରି ପଦ୍ମଂ ବରଡ଼ିଆ ତିନିପଦ୍ମ ଜାଣ
ପୃଥୁନା ଏକ କ୍ଷିରେ ଭକ୍ଷନ୍ତି ଦେବଗଣ ||୭୦୯୬||
ଦୁତିଏ ନାଗଲୋକ କ୍ଷିର ଜାନ୍ତି ଖାଇ
ତୃତିୟ କ୍ଷିର ବିରାଟ ସନ୍ୟକୁ ହୋଅଇ ||୭୦୯୭||
ଚତୁର୍ଥ କ୍ଷିର ତାର ବଛା ପାନ କରି
ବଛା ପାଟିରୁ ଖସି ବହଇ ଏକ ନଦି ସରି ||୭୦୯୮||
ସେହି ଗାଇ ଯେବେ ରାଜା ପାରିବୁ ଆଣିଂ
କ୍ଷିର ପାନ କରିବେ ତୋହର ଅକ୍ଷେଉଣିଂ ||୭୦୯୯||
ସୁଣି ଦୁର୍ଯୋଧନ ହୋଇଲା ଆନନ୍ଦ
ଆଣିବିଂ ପୃଥୁନାକୁ ସନ୍ୟ ବେଗେଂ ସାଜ ||୭୦୦୦||
ରାଜାକୁ ଚାହିଣ ସେ ବୋଲନ୍ତି ଭିସ୍ମ ଦ୍ରୋଣ
ବଡ଼ ଦୋସ ଅଛି ବାବୁ ଗୋଧନ ହରଣ ||୭୧୦୧||
ମାନଗୋବିନ୍ଦ ବୋଇଲା ସେ ବିରାଟର ନୋହଇ
ତ୍ରିଗତଠାରୁ ସେ ସିନା ନେଇଛି ଛଡ଼ାଇ ||୭୧୦୨||
ଏଥିକି ତ୍ରିଗତ ଆମ୍ଭ ସଙ୍ଗେ ଜିବ
ହାନି ଅପଚୟେ[2] ତାହାକୁ ଲାଗିବ ||୭୧୦୩||
ତାହାର ଗାଇ ସେ ଆଣିବ ଆମ୍ଭର କିସ ଜିବ
ଏଥିକି ତୁମ୍ଭେମାନେ କିମ୍ପା କରୁଛ ବିରୋଧ ||୭୧୦୪||
ତ୍ରିଗତ ବୋଇଲା ରାଜା ଆଣି ପାରିଲେ ସିନା ଗାଇ
ଖାଇବ କେତେ ଦୁଧ ପୌରୁଷ ଥିବ ରହି ||୭୧୦୫||

୧ । ଘ ପୋଥି – ସେହୁ ବାଳ ଧରି
୨ । ଘ ପୋଥି – ଅପଯଶ

ସୁଣି ମାନଗୋବିନ୍ଦ ଉଠିଲା ତତକ୍ଷଣ
ବସିଲା ଗଜ ପିଠିରେ ବାହାର ହେଲେ ସନ୍ୟ ॥୭୧୦୬॥
ସନିଙ୍କର ବେଳା ଐରୁତା ରାହୁଂ[1]
ସେହିଦିନେ ପୟାଣ କଲା ମହାବାହୁ ॥୭୧୦୭॥
ଗିରି କନ୍ଦରେ ମାଡ଼ି ଗମିଲେ ସଇନି
ସୁଣଗୋ ଓମା ବୋଲି ବୋଲନ୍ତି ସୁଳପାଣିଂ ॥୭୧୦୮॥
ବୈବିସୁତ ଆଗେଂ ଜାହା ଅଗସ୍ତି ଗଲେ କହି
ତାହା ତୋତେ କହିବା ସୁଣ ଗୋ ମନ ଦେଇ ॥୭୧୦୯॥
ତ୍ରିଗତଠାରୁ ଜହୁଂ ବିରାଟ ମୁକୁଳିଲା
ଧନ୍ୟ ସୁପକାର ବୋଲିଣ ପ୍ରସଂସିଲା ॥୭୧୧୦॥
କୋନ୍ତ ପଣ୍ଡା ପ୍ରସାଦେ ପାଇଲିଂ ଜିବନ
ଏମନ୍ତ ବୋଲି ପ୍ରସଂସା କଲାକ ରାଜନ ॥୭୧୧୧॥
ହରଷ ଚିତ ହୋଇ କରିଅଛି ସଭା ଭଲା
ପଶ୍ଚିମ ଦିଗରୁ ଏକ ମୁନ୍ୟେହିଂ ମିଳିଲା ॥୭୧୧୨॥
ବୋଇଲା ସାବଧାନେ ସୁଣିମା ନୃପବର
ସୁବାହୁ ବୋଲି ଦୈତ୍ୟ ବିରବାହୁର କୁମର ॥୭୧୧୩॥
ଅଠାର କ୍ଷେଉଣି ସନ୍ୟ ସଙ୍ଗତରେ ଘେନି
ଆସୁଅଛି କଟକାଇ ତୋ ରାଜ୍ୟକୁ ପୁଣି ॥୭୧୧୪॥
ତୋ ଆଗେ କହିଲି ସମ୍ଭାଳି ରାଜକର
ସୁଣିଣ ବିରାଟ ପଡ଼ିଲା ମହିର ॥୭୧୧୫॥
ସାଷ୍ଟାମ କରି ତାକୁ ଯୁଧିଷ୍ଟି ଧଇଲେ
ଅଧୈର୍ଯ ହୋଇଲେ ରାଜା କାର୍ଯ ନୋହଇ ଭଲେ ॥୭୧୧୬॥
ସନ୍ୟ ସଜକର ସମରକୁ ଜିବା
ସୁପକାର ବାଜିପାଳ ସଙ୍ଗତରେ ନେବା ॥୭୧୧୭॥
ରାଜ୍ୟକୁ ଆସିବାକୁ ତାହାକୁ ନ ଦେବା
ଅଧବାଟରୁ ଉଗାଳି ସମର କରିବା ॥୭୧୧୮॥
ବିରାଟ ବୋଇଲା ବାଜିପାଳ ସୁପକାର
ଏ ବେନି ଆସିବେ ସିନା ତୁମ୍ଭର ବୋଲର ॥୭୧୧୯॥
ଆଉ ସବୁ ସନ୍ୟ ମୋ ଭାଗରେ ହୋଇଲା
ଏତେ ବୋଲି ରାୟେଂ ଘୋସଣ ଦିଆଇଲା ॥୭୧୨୦॥
ରାଜା ସିଘଂଦ୍ୱାରେ ଉଭାଇଲେ ଥାଟ
ଡଗରକୁ ଆଜ୍ଞାଦିଲେ ଧର୍ମଙ୍କର ଚାଟ ॥୭୧୨୧॥
ଠାକୁରଙ୍କର ଆଜ୍ଞା ବୋଲି ସୁପକାରକୁ କହିବୁ
ସେହି ରୁପେଂ ବାଜିପାଳକୁ କହିଣ ଆଣିବୁ ॥୭୧୨୨॥
ସୁଣି ଦୁତ ଗଲା କହିଲା ଭିମ ଆଗେଂ
ଧାଇଲାଂ ବିକୋଦର ପ୍ରବେସ ସଭାଲାଗେଂ ॥୭୧୨୩॥

୧ । ଘ ପୋଥି – ଅଇରୁତା

ନମସ୍କାର କରନ୍ତେ ବୋଇଲେ ଯୁଧିଷ୍ଟି
ସମର କରି ଜିବା ସୁବାହୁ ଆସୁଅଛି ॥୭୧୨୪॥
ବେନି ଭାଇକିଂ ଯୁଧିଷ୍ଟି ସଙ୍ଗତରେ ଘେନି
ବସିଲା ରହୁବରେ ବିରାଟ ନୃପମଣି ॥୭୧୨୫॥
ଥାଟ ଘେନି ପଶ୍ଚିମ ଦିଗକୁ ଗଲା ବାହିଂ
ଗଡ଼ ରକ୍ଷା ନିମନ୍ତେ ଉତ୍ତର କୁମାର ଏକା ରହିଂ ॥୭୧୨୬॥
କହନ୍ତି ସଦାସିବ ସୁଣଗୋ ଗୌରି
ଥାଟ ଘେନି ମାନଗୋବିନ୍ଦ ଗଲା ଚଳି ॥୭୧୨୭॥
ଚାରିଦିନେ ପ୍ରବେସ ଗୋଧନ ପଲ ବେଢ଼ି
ଆଗିଆଣି ହୋଇଛି ତ୍ରିଗତ ଦଣ୍ଡଧାରି ॥୭୧୨୮॥
ମକର ମାସ ଜାଡ଼ ଘୋଟିଛି କୁହୁଡ଼ି
କମ୍ପୁଛି ବନ ଦେଶ ସନ୍ୟମୁଖେ ରଡ଼ି ॥୭୧୨୯॥
ଚାହିଂଲା ସହଦେବ ବୃଷଭର ଉଠି ପିଠି
ଚିହ୍ନିଲା ସନ୍ୟକୁ ରାଜା ଧୃତରାଷ୍ଟି ॥୭୧୩୦॥
ଦେଖିଣ ସହଦେବ ପୃଥୁନା ଆଗେ କହିଂ
ମାନଗୋବିନ୍ଦ ଆସିଛି ତୋତେ ନେବାପାଇଂ ॥୭୧୩୧॥
ପୃଥୁନା ବୋଇଲା କେତେ ଆଣିଅଛି ସନ୍ୟବଳ
ଗୋଟିଏ ନବର୍ତ୍ତିବେ ଚାପିବି ଖଡ଼ଗରଂ[1] ॥୭୧୩୨॥
କହୁଂ କହୁଂ ପ୍ରବେସ ଗାନ୍ଧାରସେନ ନନ୍ଦନ
ଡାକିଲା ଗୋପାଳରେ ଅଡ଼ାଅ ଗୋଧନ ॥୭୧୩୩॥
ଆସିଛି ଦୁର୍ଯୋଧନ ପ୍ରବର୍ତି ମୋତେ ଦିଲା[2]
ଆମ୍ଭର ଗୋଧନ ହୋଇଲା ହସ୍ତିନାକୁ ଯିବାରେ ବୋଇଲା ॥୭୧୩୪॥
ସହଦେବ ବୋଇଲା ଜାଇ ରାଜା ଆଗେ କହ
ସମରେ ଜିଣି ଆମ୍ଭକୁ ଗୋଧନ ତୁମ୍ଭେ ନିଅ ॥୭୧୩୫॥
ଲୋହିଲେ ପଳାଅ ପିଟିବୁଂ ନଉଡ଼ି
ପରର ଗୋଧନକୁ ଆସିଅଛ ଆସକରି ॥୭୧୩୬॥
ଶୁଣିଣ ମନ୍ତ୍ରିବର ଗମିଲାକ ଶିଘ୍ରେ
ସକଳ ବୃତାନ୍ତ କହିଲା ରାଜା ଆଗେ ॥୭୧୩୭॥
ସୁଣିଣ ଦୁର୍ଯୋଧନ ହୋଇଲା କୋପଭର
ଆଜ୍ଞାଦିଲା ସର ବିନ୍ଧ ମରନ୍ତୁ ଗୋପାଳ ॥୭୧୩୮॥
ଉଠିଲେ ଭିସ୍ମଂ ଦ୍ରୋଣ ସଲ୍ୟ କୃପବ୍ରହ୍ମା
ଯଦ୍ୟରଥ ସୋମଦତ୍ତ ଭୁରିସର୍ବା ଅସ୍ୱସ୍ତମା ॥୭୧୩୯॥

୧ । ଘ ପୋଥି – ମୋ ଖୁର
୨ । ଘ ପୋଥିରେ ଉପରେ ତିନିଧାଡ଼ି ଅଧିକ ଅଛି
ଆମ୍ଭର ଚାଲ ଆଜ ହସ୍ତିନାକୁ ଯିବା
ସହଦେବ ବୋଇଲା ନଦେବୁ ତୋତେ ଭଲା
ଆହୋ ଦ୍ରିଯୋଧନ ଦଣ୍ଡେ ମାତ୍ର ରହ

ଅଳମ୍ବୁସ ଅଳାୟଧ ସଙ୍କୁନି କାମପାଳ
କର୍ଣ୍ଣ ବିକର୍ଣ୍ଣ କୃପଆଚାର୍ଯ୍ଯ ଧୃସା ବିର ॥୭୧୪୦॥
ଦୁର୍ଯୋଧନ ଅନେସ୍ୱତ ଭ୍ରାତ ସହିତରେ
ଉଠି ଏକମୁଖ ହୋଇଣ ଜାବଡ଼େ ॥୭୧୪୧॥
ଗୋପାଳ ମାର ମାର ଶୁଭୁଅଛି ଧୁନି
ବାଣରେ ଆଛାଦନ କଲେକ ମେଦିନି ॥୭୧୪୨॥
ଦେଖିଣ ସହଦେବ ଉଠିଲା ବୃଷଭର ପିଠି
ସଙ୍ଗତେ ଘେନିଲା ଗୋପାଳ ପାଞ୍ଚକୋଟି ॥୭୧୪୩॥
ପାଞ୍ଚଲକ୍ଷ ଅଣ୍ଡିର ସାତଲକ୍ଷ ମାଇ
ଏଗାର ପଦ୍ମ ବୃଷଭ ତିନିଲକ୍ଷ ବରଡ଼ିଆ ଗାଇ ॥୭୧୪୪॥
ଏତେକ ଘେନିଣ ଚଳିଲା ପୃଥୁନା
ଶୃଙ୍ଗରେ ରଥି ରଥ ଭାଜିଂ କଲା ଚୁନା ॥୭୧୪୫॥
ଲାଜଂ ପବନରେ ଉଡ଼ାଇ ସନ୍ୟବଳ
ଲଉଡ଼ିରେ ସନ୍ୟବଳ ସହଦେବ ଚୁନାକଲା ରହୁବର ॥୭୧୪୬॥
ଭାଜିଂଲେ ଭିସ୍ମ ଦ୍ରୋଣ ରାଜାଠାରେ ମିଳି
ଦେଖିଣ ଦୁର୍ଯୋଧନ ବହୁତ ହେଲା ଚଳି ॥୭୧୪୭॥
ଗୋପାଳଙ୍କୁ ଦେଖି ଡରି ପଳାଇ ଅଇଲ
ଭିସ୍ମଂ ଦ୍ରୋଣ ବୋଲନ୍ତି ସେ ଅଟନ୍ତି ଗୋରୁପଲ ॥୭୧୪୮॥
ଗୋଟିଏ ଗୋଧନ ଜେମନ୍ତେ ନାସ ଜିବ
ତାହାର ପାପଭାରା କେହୁ ପୁଣି ସହିବ ॥୭୧୪୯॥
ସତ୍ୟ ଯୋଗରେ କପିଳାନନ୍ଦିନିକି ସିବ
ତ୍ରିସୁଳେଂ ପ୍ରହାରିଲେ ନାସ ଗଲା ଜିବ ॥୭୧୫୦॥
ସତ୍ୟ ଯୋଗ ସତର ଲକ୍ଷ ଅଠାସି ସହସ୍ର ବରସ ବହିଗଲା
ତ୍ରେତୟା ଯୋଗ ତେରଲକ୍ଷ ଅଠାସି ସହସ୍ର ସରିଲା ॥୭୧୫୧॥
ଦ୍ୱାପର ଯୋଗ ବାରଲକ୍ଷ ଛଡ଼ ସହସ୍ର ବରସ
ଏତେଦିନ ଗଲାହେ ମୁଣ୍ଡ ବହିଛି ବିସ୍ୱନାଥ ॥୭୧୫୨॥
ଦୁର୍ଯୋଧନ ବୋଇଲା ସେ ଶ୍ରଦ୍ଧାରେ କଲେ ବନ୍ଧ
ସଙ୍ଗ୍ରାମେ ମଲେ ଗୋରୁ ଦୋସ ନ ଲାଗିବ ॥୭୧୫୩॥
ମୁହିଂ ଜାଣିଥିଲି ଅବା ତୁମ୍ଭେ ସିଂଘ ପଲ
ଗୋପାଳଙ୍କୁ ଦେଖିଣ ହୋଇଲ ଛାଗଳ ॥୭୧୫୪॥
ସଙ୍କୁନି ବୋଇଲା ହେ ଆଜକ ଥାଅ ରହି
ସନ୍ୟ ପଥଶ୍ରମି ରନ୍ଧନ କରି ଖାଇ ॥୭୧୫୫॥
କାଲି ପ୍ରଭାତରୁ ସମସ୍ତେ ଉଠିବା
ଗୋଧନ ଅଡ଼ାଇଣ ହସ୍ତିନାକୁ ଘେନି ଜିବା ॥୭୧୫୬॥
ହେଉ ହେଉ ବୋଲିଂ ବୋଇଲା ହସ୍ତିନା ଦଣ୍ଡଧର
ଭିସ୍ମ ଦ୍ରୋଣ ବୋଇଲେ ହେଉ ଏକଥା କର ॥୭୧୫୭॥

ରହିଲେ କୁରୁବଳ ଗୋଧନ ଆବୋରିଣ
ଶୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୭୧୫୮॥
ପୃଥୁନାକୁ ଚାହିଂଣ ବୋଇଲା ମାଦ୍ରିସିସ
ତୁହି ରହିଥାଆ ମୁଂ ଜାଉଛି ମସଦେସ ॥୭୧୫୯॥
ଗଡ଼ରକ୍ଷା ହୋଇଛି ବିରାଟ ନନ୍ଦନ
ପାରିଲେ ରଖୁ ଆସି ଏ ପୁଣ ଗୋଧନ ॥୭୧୬୦॥
ପୃଥୁନାକୁ ତିଆରି ମନ୍ତ୍ରି ମସଦେସ ହୋଇ
ଦୁର୍ଯୋଧନ ଗୋଧନ ନେଉଛି ଶ୍ରୀକୃଷ୍ଣାଙ୍କୁ କହିଂ ॥୭୧୬୧॥
ସୁଣିଣ ମହାମାଇ ମନରେ ବିସାଦ
ପୁତ୍ରକୁ ଡାକି କହିଂ କପୋଳେ କର ଧନ୍ଦ ॥୭୧୬୨॥
କୁମର ବୋଇଲା ମୁଂ ଜିବି ଏହିକ୍ଷଣିଂ
ସାରଥି ଗୋଟିଏ ମୋତେ ଦିଅଗୋ ଜନନି ॥୭୧୬୩॥
ନାହିଂ ରାଜ୍ୟରେ ସାରଥି ଏକ ରଥି
ସୁଣିଣ ଶ୍ରୀକୃଷ୍ଣା ବୋଇଲା ଦ୍ରୋପଦିକି ॥୭୧୬୪॥
ଗୋଧନ ପଲ ମୋର ନେଉଛି ଦୁର୍ଯୋଧନ
ସାରଥି ଗୋଟିୟେ ନାହିଂ ଯୁଦ୍ଧକୁ ଜାଆନ୍ତା ନନ୍ଦନ ॥୭୧୬୫॥
ତୋତେ ଆଶ୍ରେ କରିଛି ଗୋଧନ ମୋର ରଖିବୁ
ତୁହି ନ ରଖିଲେ ଅନାସ୍ତ ହୋଇଲୁଂ ସବୁ ॥୭୧୬୬॥
ପଶ୍ଚିମ କଟକାଇ କରିଛି ଦଣ୍ଡଧାରି
ଦ୍ରୋପଦି ବୋଇଲେ ସାରଥି ହୋଇବ ବୃହନାରି ॥୭୧୬୭॥
ସୁଣିଣ ପୁତ୍ର ଆଗେ କହିଲା ବିରାଟ ପାଟରାଣିଂ
ସେ ବୋଇଲା ନପୁଂସେକ ମୋତେ ନିକି ହୋଏ ହାନି ॥୭୧୬୮॥
କେମନ୍ତେ ବାହିବ ସେ ମଣ୍ଡୁ ରହୁବର
ଶ୍ରୀକୃଷ୍ଣା କହିଲା ଜାଇ ଦ୍ରୋପଦିଙ୍କ ଆଗର ॥୭୧୬୯॥
ପାଞ୍ଚାଳି ଜାଇ କହିଲେ ଅର୍ଜୁନକୁ
ଉତ୍ତର ରଥ ବାବୁ ବାହିବୁ ସଙ୍ଗ୍ରାମକୁଂ ॥୭୧୭୦॥
ତୋହର ବଚନ ତୁ କେବେହେଂ ନ ମେଣ୍ଟିବ ପୁଣିଂ
ନିକି କୋପ କରନ୍ତି ଯୁଧିଷ୍ଠି ନୃପମଣିଂ ॥୭୧୭୧॥
ଏତେ ବୋଲି ପାଥ ମଣ୍ଡିଲାକ ରଥ
ରଥ ଦେଖି ଆଶ୍ଚାର୍ଯ୍ଯ ହୋଇଲା ବିରାଟର ସୁତ ॥୭୧୭୨॥
ଅର୍ଘ୍ୟ ଘେନି ଶ୍ରୀକୃଷ୍ଣା ପାଥକୁ ବନ୍ଦାଇଂ
ପଛେ ଅର୍ଘ୍ୟ ଦିଲା ଆପଣା ତନଇ ॥୭୧୭୩॥
ବାହିଲା ଫାଲଗୁନି ଗମିଲା ରହୁବର
ପ୍ରବେସ ହେଲା ଜାଇ ଗୋଧନ ଗୋଷ୍ଟର ॥୭୧୭୪॥
ସନ୍ୟ ଦେଖିଣ ଉତ୍ତର ବୋଇଲା ରହ ରହ
ସାଗର ଭିତରକୁ କିପାଇଂ ରଥ ନିଅ ॥୭୧୭୫॥

୧ । ଘ ପୋଥି – କେମନ୍ତେ ଯିବି ମୁଂ ଗୋଧନ ରଖିବାକୁ

ଅର୍ଜୁନ ବୋଇଲା ସେ ଅଟଇ କୁରୁସନ୍ୟ
ଏହାକୁ ଜିଣିଲେ ନେବୁ ସେ ଗୋଧନ ॥୭୧୭୬॥
ଉତ୍ତର କୁମାର ବୋଇଲା ହୋଇଲୁଂ ତୁ ବାଇ
ସାଗର ଜଳେ କେହ୍ନେ ଥଳ ଦେବି ମୁହିଂ ॥୭୧୭୭॥
ନେଉପଛେ ଗୋଧନ ଜିବି ମୁଂ ବାହୁଡ଼ି
ଅର୍ଜୁନ ବୋଇଲା ତୋତେ ମୁଂ ନ ଦେବିଂ ଛାଡ଼ି ॥୭୧୭୮॥
ଉତ୍ତର ବୋଇଲା ତୁ ଅଟୁ ହିନଜନ
ଜାଉଅଛି ଛାଡ଼ି ତୋତେ ନ ଚାହିଂବି ବଦନ ॥୭୧୭୯॥
ଏତେ ବୋଲି ବିରାଟ ସୁତ ପଳାଇଲା
ପଛରେ ସର୍ବସାଚି ଗୋଡ଼ାଇଣ ଗଲା ॥୭୧୮୦॥
ଚିହ୍ନିଲେ ଭିସ୍ମ ଦ୍ରୋଣ ଏ ସ୍ତିରି ଅଟେ ପାଥ
ସୁଣଗୋ ଓମା ବୋଲି ବୋଲନ୍ତି ବିଶ୍ୱନାଥ ॥୭୧୮୧॥
ଉତ୍ତର କୁମାରକୁ ଧଇଲା ଫାଲଗୁନି
ରଥରେ ବସାଇ ବାନ୍ଧିଣ ଗଲା ଘେନି ॥୭୧୮୨॥
ସୋମ ବୃକ୍ଷ ମୁଳେ ହୋଇଲା ପରବେଶ
ପାଥକୁ ପଚାରିଲା ବିରାଟର ସୁତ ॥୭୧୮୩॥
ତୁ ଗୋ ମହାମ୍ରାଣି ନୋହୁ ସ୍ତିରି ଜନ୍ମ
କେବଣ ଜନ ତୁ କହନି ତୋର ନାମ ॥୭୧୮୪॥
ବାହିଲୁଂ ରହୁବର ଦେଖିଲି ଆଚମ୍ବିତ
ଅର୍ଜୁନ ବୋଇଲା କହିବିଂ ତୁମ୍ଭେ କର ସତ୍ୟ ॥୭୧୮୫॥
କାହାରିଠାରେ ଏ ଗୋପତ ନ କହିବୁଂ
ଉତ୍ତର ବୋଇଲା ମୁଂ ସତ୍ୟକଲି ବାବୁ ॥୭୧୮୬॥
ବିଜଇ ପ୍ରତିବାଚ ମୋ ନାମ ଅର୍ଜୁନ
ସଭାପଣ୍ଡା ଗୋସାଇଂ ଯୁଧିଷ୍ଠି ରାଜନ ॥୭୧୮୭॥
ନକୁଳ ବାଜିପାଳ ସୁପକାର ଭିମ
ଦ୍ରୋପଦି ସଇନ୍ଧ୍ରି ତନ୍ତ୍ରିପାଳ ପଣ୍ଡୁଙ୍କ ନନ୍ଦନ ॥୭୧୮୮॥
ଏମନ୍ତ ବୋଲି ଜହୁଂ ବୋଇଲା କିରଟି
ଅର୍ଜୁନ ପାଦତଳେ ବିରାଟସୁତ ଲୋଟି ॥୭୧୮୯॥
ନ ଜାଣି ଅପ୍ରାଧ ଦେବ ମୁଂ କଲି ତୁମ୍ଭଠାରେ
ସେବା କରି ନ ପାରିଲୁଂ ତୁମ୍ଭର ପୟରେ ॥୭୧୯୦॥
ଜାହାଙ୍କୁ ଖୋଜୁଥାଉଂ ଦେଖିବାର ଅର୍ଥେ
ସେ ପୁରୁଷ ଗୋଡ଼ାକ ଅଛନ୍ତି ଗୋପତେ ॥୭୧୯୧॥
ଏମନ୍ତ ବୋଲି ସୋକ କରଇ ବିରାଟି
ସ୍ୟାନ୍ତ କରାଇଲା ତାହାକୁ କିରଟିଂ[୧] ॥୭୧୯୨॥
ଉତ୍ତର କୁମାରକୁ ବୋଲଇ ବିଜଇ
ବୃକ୍ଷରେ ଉଠି ଧନୁ ସହସ୍ର ଆଣ ତୁହିଂ ॥୭୧୯୩॥

୧ । ଘ ପୋଥି – ଶାନ୍ତ କରି ତାକୁ ତୁଳିଲେ କିରଟି

ବୃକ୍ଷରେ ଉଠିଲା ବିରାଟର ସୁତ
କ୍ରୋଟରେ ହସ୍ତ ଭରନ୍ତେ ଦଂସିଲା କାଳସର୍ପ ॥୭୧୯୪॥
ଭୁମିରେ ଅଚେତନେ ପଡ଼ିଲା ବିରାଟି
ଗାରଡ଼ ମନ୍ତ୍ର ପଢ଼ି ଫୁଙ୍କିଲା କିରଟି ॥୭୧୯୫॥
। ମନ୍ତ୍ର ।
ରେ ବିଷ ଅଇଲୁଂ କାହା ଆଜ୍ଞାରେ
ଇଶ୍ୱରେ ସୋସି ଗଙ୍ଗା ବହିଲେ ସିରରେ ॥୭୧୯୬॥
ଇଶ୍ୱରେ ପୋଛିଲେ ସୋସିଲେକ ଗଙ୍ଗା
ରେ ରେ ବିସ ଅନ୍ତରିକ୍ଷେଂ ପଳାଇ ଜା ଜା ॥୭୧୯୭॥
। ଗୀତ ।
ଏମନ୍ତ ପଢ଼ନ୍ତେ ପଳାଇଲା ବିସ
ସାଷ୍ଟମ ହୋଇଲା ସେ ବିରାଟର ସିସ ॥୭୧୯୮॥
କ୍ରୋଟରୁ ସବୁଧନୁ ଦିଲାକ ବଢ଼ାଇ
ଚାରି ଧନୁକୁ ଦିଲା ପାଥ କ୍ରୋଟରେ ରଖଇ ॥୭୧୯୯॥
ଆପଣା ଧନୁକୁ ପାଥ ଘେନିଲା ଜେତେବେଳେଂ
ହା ହା ଧନୁ ବୋଲିଂ ଲୋହ ପଡ଼ଇଟି ତଳେଂ ॥୭୨୦୦॥
ଧାତାର ଯଜ୍ଞ କୁଣ୍ଡୁଂ ବେଣୁ ବୃକ୍ଷ ଜାତ
ତାହାକୁ କାଟି ନିର୍ବାଣିଲେ ଧନୁ ସାତ ॥୭୨୦୧॥
ସର୍ବଧନୁଠାରୁ କନିଷ୍ଟ ଗାଣ୍ଡିମନାମ ଧନୁତୋର
ତୋହର ବିହୁନେ ଅସୋଭା ମୋର କର ॥୭୨୦୨॥
ଏତେ ବୋଲିଂ ଚିନ୍ତା କଲେ ଭଗବାନ
ଜାଣିଲେ ଜଗନ୍ନାଥ ପ୍ରବର୍ତିଲେ ଯାନ ॥୭୨୦୩॥
ଗମିଲା ଦାରୁକ ଶ୍ରୀହରି ଆଜ୍ଞାପାଇ
ପ୍ରବେସ ହେଲେ ଜହିଂ ବିଜଏ ଧନୁର୍ଜଇ ॥୭୨୦୪॥
ଦାରୁକକୁ ନିଉଛାଳି ହୋଇଲା ବିରପାଥ
ଗୋବିନ୍ଦ ସୁମରି ବସିଲା ନନ୍ଦିଘୋସ ରଥ ॥୭୨୦୫॥
ପାର୍ବତି ପୁଛାକଲେ ସୁଣହେ ମହେସ
କ୍ରୋଟରେ କିଂପାଂଇ ପସିଥିଲା କାଳସର୍ପ ॥୭୨୦୬॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ଅର୍ଜୁନ ଦହିଲା ଖାଣ୍ଡେବ ନାମେ ବନ ॥୭୨୦୭॥
ପଳାଇ ସାସେକ ଅର୍ଜୁନକୁ ଡରି
କ୍ରୋଟରେଂ ପସିଲା ଅର୍ଜୁନ ବୈରି ॥୭୨୦୮॥
ବିଚାରେ ଧନୁ ନେଇ ଅଇଲେ ଡଂସିବି ପୁଣି
ପେସିଲା କୁମରକୁ ଜାଣିଣ ଫାଲଗୁନି ॥୭୨୦୯॥
ଉତ୍ତର ଜିଇଲା ସର୍ପ ପଳାଇଲା
କର୍ଣ୍ଣଠାରେ କହିଣ ସରଣ ପସିଲା ॥୭୨୧୦॥

ରହିଲା କର୍ଣ ରଥେଂ ଅର୍ଜୁନ କ୍ଷିଦ୍ର ପାଞ୍ଚ
ସୁଣଗୋ ଓମା ବୋଲି ବୋଲନ୍ତି ପଶୁପତି ॥୭୨୧୧॥
ନନ୍ଦିଘୋସ ରଥରେଂ ବସିଲା ବାସେବିଂ
ଦାରୁକ ରଖିଲା କୁମର ରଥ ଜଗି ॥୭୨୧୨॥
ଉତ୍ତରକୁ ବୋଇଲା ପାଥ ବାହା ମୋର ଜାନ
କାହିଂକି ଜିବ ବୋଲି ବୋଇଲା ବିରାଟ ନନ୍ଦନ ॥୭୨୧୩॥
ସଙ୍ଗ୍ରାମକୁ ଛାଡ଼ିଂ ଜହିଂକି ଜିବ ଜିବିଂ
ଅର୍ଜୁନ ବୋଇଲେ ମୁଂ ସଙ୍ଗ୍ରାମ କରିବିଂ ॥୭୨୧୪॥
କିଞ୍ଚିତ ମାତ୍ର ଥାଇ ବାହିବୁ ରଥୁବର
କ୍ଷଣକେ ନାସିବି ମୁଂ କୌରୋବବଳ ॥୭୨୧୫॥
ଏମନ୍ତ ବୋଲି ଜହୁଂ ବୋଇଲେ ଧନୁର୍ଜଇ
ଉତ୍ତର ବୋଇଲା ମୁ ନ ପାରିବିଂ ସହି ॥୭୨୧୬॥
ରଥ ପାଟ ଡୋରାରେ ତାହାକୁ ପାଥ ବାନ୍ଧି
ପ୍ରବେସ ହୋଇଲା କୌରୋବ ସନ୍ୟ ମଝି ॥୭୨୧୭॥
ଭିସ୍ମ ଦ୍ରୋଣ ସହିତେ ଜେତେକ ମାନିତ
ସମସ୍ତଙ୍କୁ ନମସ୍କାର ହୋଇଲା ବିରପାଥ ॥୭୨୧୮॥
ଜେ ଜାହାର ଉଚିତରେ ବାଞ୍ଛିଲେ କଲ୍ୟାଣ
ଦେଖିଣ ଆଶ୍ଚାର୍ଯ ହୋଇଲା ଦୁର୍ଯୋଧନ ॥୭୨୧୯॥
ବୋଇଲା ପାଣ୍ଡବରେ ଅଇଲୁଂ କିମ୍ପାଇଂ
ବରସେ ତେରଦିନ ଗୋପତ ଜାଇ ନାହିଂ ॥୭୨୨୦॥
ଲେଉଟି ବାର ବରସ ରହିବ ଘୋରବନ
ସୁଣିଣ ପ୍ରତିବାଚ ଦିଲା ବାସେବ ନନ୍ଦନ ॥୭୨୨୧॥
ପରକୁ ଧର୍ମକଥାଂ[1] କହୁଛୁ କୁରୁସାଇଂ
ଆସିଅଛୁ ଚୋରିକରି ନେବୁ ପର ଗାଇ ॥୭୨୨୨॥
ଗୋବଛା ଗୋଟିଏ ଜେ ଜନ ହରଇ
ତାହାର ଦେହରେ ଜେତେ ରୋମ ଥାଇ ॥୭୨୨୩॥
ତେତେ ଯୋଗ ଜାଏ ସେ ପଡ଼ଇ ନର୍କର
ପର ଦୁଖ ଲୋଭିତ ହୋଇଲୁଂ ନୃପବର[2] ॥୭୨୨୪॥
ପଞ୍ଚାସ ଲକ୍ଷ ଅଟେ ବିରାଟର ଗୋଧନ
ଏତେକ ହରିଲେ କି ଲଭିବୁ ଯସପୁଣ ॥୭୨୨୫॥
ମୋତେ ଜେ ବୋଇଲୁଂ ଅଇଲୁଂ ତୁ କିସ ପାଇଂ
ବିରାଟ ରାଜ୍ୟରେ ଅଛୁଂ ତାହାର ଅନ୍ନଖାଇ ॥୭୨୨୬॥
ବିରାଟକୁ ଆଜ ହୋଇବିଂ ଉପକାରି
ରଖିବଇଂ ଗୋଧନ ତୋହର ସନ୍ୟମାରି ॥୭୨୨୭॥

୧ । ଘ ପୋଥି – ଉପ୍ରୋଧ କଥା
୨ । ଘ ପୋଥି – ତୁହୋ ମହାରାଜା କରୁ ଅବିଚାର

ଲୋହିଲେ ପଳାଅ ଏଠାରେ ନୋହ ଗର୍ଜି
ସୁଣିଣ ଦୁର୍ଯୋଧନ ଉଠିଲା ଗଳଗାଜି ॥୭୨୨୮॥
ମାରରେ ପାଣ୍ଡେବାକୁ ଉପ୍ରୋଧ ନକର
ବିରାଟ ଉଚ୍ଛିଷ୍ଟ ଯେ କରଇ ଆହାର ॥୭୨୨୯॥
ସମସ୍ତେ ମଲେ ଏକା ଏହି ଅଛି ବ୍ରତି
ଏହୁ ନାସଗଲେ ମୋର ରହିବ ବିଭୁତି ॥୭୨୩୦॥
ରାଜାର ଆଜ୍ଞାରେ ଉଠିଲେ ସନ୍ୟବଳ
ବନ୍ଧ ଭାଜିଂଗଲେ ଜେହ୍ନେ ଉଠଇ ସିନ୍ଧୁଜଳ ॥୭୨୩୧॥
ଭିସ୍ମ ଦ୍ରୋଣ କର୍ଣ୍ଣ ସଲ୍ୟ ଯେ ସକୁନି
ଯଦ୍ୟରଥ ସୋମଦତ୍ତ ଆବର ସୁତଦ୍ରୋଣିଂ ॥୭୨୩୨॥
ଅଳମ୍ବୁସ ଅଳାୟଧ ଦୁସାସନ ମୁଳେ
ସହସ୍ର ଧରିଣ ସର୍ବେ ଉଠିଲେ ଏକାବେଳେଂ ॥୭୨୩୩॥
ବିନ୍ଧିଲେ ନାରାଜ କକଡ଼ା ବୃଷ୍ଟି ଜାଣିଂ
ଦେଖିଣ ଧନୁରେ ଗୁଣ ଦିଲା ଫାଲଗୁନି ॥୭୨୩୪॥
ଏକାବେଳେଂ ଲକ୍ଷେ ନାରାଜ ବିନ୍ଧିଲା
ସମସ୍ତଙ୍କ ସର କିଞ୍ଚିତେ ଛେଦିଲା ॥୭୨୩୫॥
ଜେତେକ ନାରାଜ କୌରୋବେ ବିନ୍ଧିଲେ ଜେ
ସମସ୍ତ ଛେଦିଲା ତା ବାସେବ ତନୁଜେଂ ॥୭୨୩୬॥
ବିନ୍ଧିଲା ପାଥ ଲକ୍ଷେ ମନଭେଦି ବାଣ
ଗମିଲେ ନାରାଜ ଜେ ଭେଦିଲେ ରୋମେରୋମ ॥୭୨୩୭॥
ହୋଇଲେ ମୋହଗତ ଏଗାର କ୍ଷେଉଣିଂ ସନ୍ୟ
ଦୃଯୋଧନ ସହିତେ ହୋଇଲେ ମୋହମାନ ॥୭୨୩୮॥
ପବନେ ଉପୁଡ଼ି ପଡ଼ିଲେ ଜେହ୍ନେ ରମ୍ଭାବନ[1]
ତେସନ ପଡ଼ିଲେ ସେ କୁରୁବଳ ସନ୍ୟ ॥୭୨୩୯॥
ରଥରୁ ଉହ୍ଲାଇ ଅର୍ଜୁନ ଦେଖଇ
ଉତ୍ତର କୁମାରକୁ ଚିହ୍ନାଇଂ କହିଦେଇଂ ॥୭୨୪୦॥
ଦୁର୍ଯୋଧନ ମୁକୁଟ ଉତ୍ତର ସିରରେ ବାନ୍ଧି
ଦୁସାସନ କଣ୍ଠରେ ଦୁଇ ଢୋଲ ନଦି ॥୭୨୪୧॥
କର୍ଣ୍ଣର ମୁକୁଟ ବାଜାକରି ସିରେ ଦିଲା
ସଲ୍ୟର କନେଷ୍ଟ ଅଙ୍ଗୁଳି କାଟି ପକାଇଲା ॥୭୨୪୨॥
ଯଦ୍ୟରଥକୁ ସେ କଲା ସାତବେଣ୍ଟି
ଅଳମ୍ବୁସ ଅଳାୟଧ କର୍ଣ୍ଣ ଖଣ୍ଡେ ଖଣ୍ଡେ କାଟି ॥୭୨୪୩॥
ଏହି ରୁପେ ସମସ୍ତଙ୍କୁ କଲା ନଣ୍ଡଭଣ୍ଡ
ଭିସ୍ମ ଦ୍ରୋଣକୁ ଏକା ଛାଡ଼ିଣ ପାର୍ଥିବ ॥୭୨୪୪॥
ବିଚାରିଲା କିରଟି ଏ ନୋହନ୍ତି ମୋହର ବୈରି
ପରର କାର୍ଯେଂ କିପାଂ ଏହାକୁଂ ଜିବିଂ ମାରି ॥୭୨୪୫॥

୧ । ଘ ପୋଥି – ପବନେ ଉପୁଡ଼ିଲା ସ୍ଥାବର କି ବନ

ଏତେ ବୋଲି ଜିବନ୍ୟାସ ସରକୁ ବିନ୍ଧିଲା
ଉଠିଣ କୌରୋବେ ପଳାଇଲେ ଭଲା ॥୭୨୪୬॥

## ପାଣ୍ଡବମାନଙ୍କର ଗୁପ୍ତ ବନବାସ ସମାପ୍ତ

ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ବିରାଟ କଲା ଜାଇ ସୁବାହୁ ସଙ୍ଗେ ରଣ ॥୭୨୪୭॥
ଅଗୋଚର ରଣ ସୁବାହୁ ଦୈତ୍ୟ କଲା
ଭିମସେନ ହସ୍ତେଂ ସୁବାହୁ ନାଶଂଗଲା ॥୭୨୪୮॥
ରଣଜୟ କରିଣ ବାହୁଡ଼ିଲେ ବିରାଟ
ପ୍ରବେସ ହୋଇଲେ ଆପଣା ଭୁବନ ଆପଣା ରାଷ୍ଟ୍ର ॥୭୨୪୯॥
ବିରାଟ ଅଗ୍ରତେ ଡଗର କହିଲା
କୌରୋବ ବଳକୁ ତୋ କୁମର ଜିଣିଲା ॥୭୨୫୦॥
ରଖିଲା ଗୋଧନ ମହିମା ସାଚା ତାର
ବିରାଟ ବୋଇଲା କେ ବାହିଲା ରହୁବର ॥୭୨୫୧॥
ଦୁତ ବୋଇଲା ସାରଥି ବୃହନାରି
ଯୁଧିଷ୍ଟି ବୋଇଲେ ସେହି ସେ ସନ୍ୟ ମାରି ॥୭୨୫୨॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ଜିବନ ପାଇଣ ପଳାଇଲେ କୌରୋବ ॥୭୨୫୩॥
ଦେଖିଲେ କାହାର ମଣି ମୁକୁଟ ନାହିଂ[୧]
ଅଙ୍ଗୁଷ୍ଟି ବିହୁନେ କାହାର ଭୁଜ ଅଛି ରହିଂ ॥୭୨୫୪॥
କାହାରଗଳାରେ ପଡ଼ିଅଛି ଢୋଲ[୨]
ଏକକୁ ଆରେକ ଚାହାନ୍ତି ଜଳଜଳ ॥୭୨୫୫॥
ସଙ୍କୁନି ଗଳାରେ ପଡ଼ିଅଛି କାହାଳି
ଦୁର୍ଯୋଧନ ବୋଇଲା ପକାଅ ମାମୁ କାଢ଼ି ॥୭୨୫୬॥
କହିଲେ ଗଙ୍ଗାସୁତ ଦ୍ରୋଣଙ୍କ ମୁଖ ଚାହିଂ
ଆସିଥିଲେ ଚୋରାଇ ନେବାକୁ ପର ଗାଇ ॥୭୨୫୭॥
ଦ୍ରୋଣେ ବୋଇଲେ କେତେ କରନ୍ତେ କ୍ଷିରପାନ
କଢ଼ାଇ ଆଣିଥିଲା ତ୍ରିଗତ ରାଜନ ॥୭୨୫୮॥
ଦୁଧଖିଆ ଲୋକେ ହୋଇଲେ ନଣ୍ଡଭଣ୍ଡ
ଏତେ କହି ଦ୍ରୋଣେ ହସିଲେ କରକର ବଡ଼ ॥୭୨୫୯॥
ସୁଣି ଦୁର୍ଯୋଧନ ହୋଇଲା ମଉନ
ସଙ୍କୁନି ବୋଇଲା ନିକି ଆସଇ ଭିମସେନ ॥୭୨୬୦॥
ଅର୍ଜୁନ ନଣ୍ଡଭଣ୍ଡ କରି ଜିଆଇଲା
ବିକୋଦର ଅଇଲେ କେହି ନବର୍ତିବା ଭଲା ॥୭୨୬୧॥

୧ । ଘ ପୋଥି – ମଣି କୁଣ୍ଡଳ ହିଂ ନାହିଂ
୨ । ଘ ପୋଥି – କାହାଳି ଢୋଲ

ସୁଣି ମାନଗୋବିନ୍ଦ ବୋଇଲା ହୋଇ ହୋଇ
ଭିମ ଡରେ କୌରବେ ଗଲେ ସେ ପଳାଇ ॥୭୨୬୨॥
ବିରାଟ ଅଗ୍ରତେ ଜଣାଇଲା ଦୁତ
ସିଙ୍ଘଦ୍ୱାରେ ଆସି ପ୍ରବେସ ତୋର ସୁତ ॥୭୨୬୩॥
ଧନ୍ୟ ମୋ ନନ୍ଦନଂ ବୋଲି ବିରାଟ ପ୍ରସଂସିଲା
ଯୁଧିଷ୍ଟି ବୋଇଲେ ବୃହନାରି ପ୍ରସାଦୁଂ ଜିଣିଲା ॥୭୨୬୪॥
ସୁଣି କୋପିତ ସେତ ରାଜାର ତନଇ
ନପୁଂସକ ବଡ଼ିମା କେତେ କହୁ ତୁହିଂ ॥୭୨୬୫॥
ଏତେ ବୋଲି ପସା ମାଇଲା ବିରାଟ
ବାଜିଲା କପୋଳେଂ ରୋଧିର ଧଇଲେ ଧର୍ମଚାଟ ॥୭୨୬୬॥
ସୁଣଗୋ ଓମା ବୋଲିଂ ବୋଲନ୍ତି ଦୃଜଟି
ବାଳକାଳେ ମଣ୍ଡୁକିକି ମାରିଥିଲେ ପିମ୍ପି ଯୁଧିଷ୍ଟି ॥୭୨୬୭॥
ତେଣୁ ପସାକାଠି ବାଜିଲା ଲଲାଟର
ରାସାଙ୍ଗତ ହୋଅନ୍ତା ପୃଥିରେ ପଡ଼ନ୍ତେ ସେ ରୁଧିର ॥୭୨୬୮॥
ଆଜ୍ଞାଦିଲେ ଯୁଧିଷ୍ଟି ଅର୍ଜୁନ ରହୁ ତେଣେଂ
ଉତ୍ତର କୁମାର ଦ୍ରସନ କରୁ ଏଣେଂ ॥୭୨୬୯॥
ଆଜ୍ଞା ପାଇ ବାହାରେ ରହିଲା କିରଟି
ଭିତରେ ପସି କୁମର ଉଳଗେ ଯୁଧିଷ୍ଟି ॥୭୨୭୦॥
ପଛେ ନମସ୍କାର ପିତାକୁ ତାର ହେଲା
ଏହା ଦେଖି ବହୁ ଚିନ୍ତା ଯୁଧିଷ୍ଟି ମନରେ ବସିଲା ॥୭୨୭୧॥
ଏଥୁ ଅନ୍ୟନ୍ତରେ ଯୁଧିଷ୍ଟି ଭାଳିଲେ
ମୋତେ କିପାଂଇଂ ଉତ୍ତର ନମସ୍କାର ହେଲେ ॥୭୨୭୨॥
ନିକି ଏହାକୁ ସବୁ ଅର୍ଜୁନ କହିଲା
ଏତେକ ବିଚାରି ସଭାରୁ ଉଠିଲେ ଧର୍ମବଳା ॥୭୨୭୩॥
ଅର୍ଜୁନଠାରେ ମିଳି ପଚାରି ଆଦିଅନ୍ତ
ତୋତେ କେ କହିଲା ବାବୁ ବାହିତେ ଏହାରଥ ॥୭୨୭୪॥
ଅର୍ଜୁନ ବୋଇଲେ ମୋତେ ଦ୍ରୋପଦି କହିଲେ
ଏମନ୍ତେ ଭାଳନ୍ତେ ଛାୟାକାନ୍ତ ସେ ଅସ୍ତହେଲେ ॥୭୨୭୫॥
ରଜନି ହୁଅନ୍ତେ ସହଦେବଙ୍କୁ ନିଲେ ଡକାଇ
ଆଉ କେତେଦିନ ବାବୁ ବନବାସ ଅଛଇ ॥୭୨୭୬॥
କହଇ ମାଦ୍ରିସିସ ଧନୁମାସଠାରୁ ଗଲା
ଦିନ ବଢ଼ାକୁ ଏତେ ଦିବସ ସରିଲା ॥୭୨୭୭॥
ଗଲା ଆଜଠାରୁ କାଲି ହୋଇବା ଉଦିତ
ଯୁଧିଷ୍ଟି ବୋଇଲେ ଭିମ ନକୁଳକୁ ଡାକ ॥୭୨୭୮॥
ଅର୍ଜୁନକୁ ବୋଇଲେ ଦ୍ରୋପଦିକି ଡାକିଆଣଂ
ପଞ୍ଚାଳିଠାରେ କହିଲା ଅର୍ଜୁନ ॥୭୨୭୯॥

ଭିମ ନକୁଳ ଅର୍ଜୁନ ସହଦେବ ଜିଘ୍ନସେନି
ଯୁଧିଷ୍ଟିଠାରେ ମିଳିଲେ ଦୁଇପ୍ରହର ରଜନି ॥୭୨୮୦॥
ଭିମସେନ କନ୍ଧେ ବସାଇ ଘେନିଗଲା
ପ୍ରବେସ ନିଳବନେ ରଜନି ପାହିଲା ॥୭୨୮୧॥
ନିଳ ସୁନ୍ଦର ବଟତଳେ ଚିନ୍ତିଲେ ଭଗବାନ
ବିଜୟେ ଜଗବନ୍ଧୁ ଗରୁଡ଼ ବାହାନ ॥୭୨୮୨॥
ବ୍ୟାସ ସହିତେ ଧର୍ମ ପ୍ରୋହିତେ ମିଳିଲେ
ଉଦିତ ହୋଇ ପାଣ୍ଡବେ ଅବିସେକ ହୋଇଲେ ॥୭୨୮୩॥
ରଜନି ପାହାନ୍ତେ ବିରାଟ ଉଠିଲା
ସଭା ପଣ୍ଡାଙ୍କୁ ଆଉ ସଭାରେ ନ ଦେଖିଲା ॥୭୨୮୪॥
ନଦେଖି ବହୁତ ଭାଳଇ ନୃପବର
ସକଳ ଆଦିଅନ୍ତ କହିଲା ଉତ୍ତର ॥୭୨୮୫॥
ସୁଣିଣ ବିରାଟ ପଡ଼ିଲା ମୋହ ଜାଇ
ସଚେତ କଲା ତହିଂ ଶ୍ରୀକୃଷ୍ଣା ମହାଦେଇ ॥୭୨୮୬॥
ଚାରି ଦିଗକୁ ବିରାଟ ଦୁତ ବରଗିଲା
ପାଣ୍ଡେବଙ୍କୁ ଆଣ କରିବିଂ ତାଙ୍କୁ ସେବା ॥୭୨୮୭॥
ଏମନ୍ତେ ପିତା ପୁତ୍ର ବହୁତ ଭାଳିଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୭୨୮୮॥

## ଅଭିମନ୍ୟୁ ଉତ୍ତରା ବିବାହ

ଯୁଧିଷ୍ଟି ମୁଖ ଚାହିଂ ବୋଇଲା ବିକୋଦର
ସମ୍ପଦକାଳେ ଦେଖା କରିବା ନୃପବର ॥୭୨୮୯॥
ହେଉ ହେଉ ବୋଲିଣ ଯୁଧିଷ୍ଟି କହିଲେ
ବିକୋଦର ବୋଇଲା ବସ ମୋହର କନ୍ଧରେ ॥୭୨୯୦॥
ଚାରିଭାଇଙ୍କିଂ ଭିମ କନ୍ଧେମୁଣ୍ଡେ କରି
ମସ୍ଥ ଦେସ ଦାଣ୍ଡରେ ଗମଇ ମହାବଳି ॥୭୨୯୧॥
ଦେଖିଣ ନଗ୍ରଜନେ ପାଇଲେ ବିସାଦ
ନିକି ବିରାଟକୁ ଯେ ଚିନ୍ତନ୍ତି ପରମାଦ ॥୭୨୯୨॥
ଏମନ୍ତ କହୁଂ କହୁଂ ଭିମସେନ ଗଲା
ବିରାଟ ସିଙ୍ଘଦ୍ୱାରେ ହୁଅନ୍ତେ ଦ୍ୱାରି ଚଳିଗଲା ॥୭୨୯୩॥
ଭାରିଜା ପୁତ୍ର ଘେନି ଧାଇଂଲା ବିରାଟ
ପାଣ୍ଡେବଙ୍କୁ ଚିହ୍ନିଣ ପଡ଼ିଲା ପାଦଗତ ॥୭୨୯୪॥
ଉଠ ଉଠ ବୋଲି ଯୁଧିଷ୍ଟି ବୋଇଲେ
ଉଠିଣ ବିରାଟ କରଦିଲା ସିରେ ॥୭୨୯୫॥
ଭୋ ପ୍ରଭୁ ତୁମଠାରେ ଅପ୍ରାଧ ଅର୍ଜିଲିଂ
ମାଇଲି ପସାକାଠି ଜ୍ଞାନ ହରାଇଲିଂ ॥୭୨୯୬॥
ନିରଞ୍ଜନ ଠାକୁର ତୁ ଧବଳ କମଳ
ସତ୍ୟବାଦି ସାଚା ଆଦି ମୂଳଠୁଳଂ[1] ॥୭୨୯୭॥
ରାଜୁସି ଯଜ୍ଞକାଳେ ମହିମା ତୋର ଧନି
ରହିଲିଂ ସୋଳଦିନଂ ଦ୍ରଶନ ନପାଇଲିଂ ॥୭୨୯୮॥
ବିରାଟର ବଚନେ ବୋଇଲେ ଧର୍ମସୁତ
ତୋହଠାରୁ ନୃପତି ହେ ନାହିଂ ଭିଜ୍ଞବନ୍ତ ॥୭୨୯୯॥
ଏମନ୍ତ ପିତା ପୁତ୍ର ବହୁତ ଭାଳିଲେ
ସୁଣଗୋ ଓମା ବୋଲି ସଂକର କହିଲେ ॥୭୩୦୦॥
ବିରାଟ ମୁଖ ଚାହିଂ ବୋଇଲେ ବିକୋଦର
ଆମ୍ଭେଂ ଛଡ଼ପ୍ରାଣିଂ ରହିଲୁଂ ତୋର ଘର ॥୭୩୦୧॥
ତୁମ୍ଭର ଅର୍ନ୍ନ ଖାଇ ପୋଶିଲୁ ଉଦର
ବହୁତ ଗଉରବ କଲୁ ଆମ୍ଭଠାର ॥୭୩୦୨॥
ତେଣୁ ତୁ ହୋଇଲୁ ଆମ୍ଭର ଉପକାରି
କିସ ଦେଇ ତୋତେ ରଣ ସୁଝିବୁ ତୁମ୍ଭରି ॥୭୩୦୩॥
ଉତ୍ତର କୁମାର ବୋଇଲା ବଚନ
ଜିଣିଲ କୌରୋବ ରଖିଲ ଗୋଧନ ॥୭୩୦୪॥
ସୁବାହୁ ତ୍ରିଗତ କିଞ୍ଚେକ ମାଲ ବ୍ୟାଘ୍ର
ଆମ୍ଭର ଶତ୍ରୁ ସେହି ତାହାକୁ କଲ ବଧ ॥୭୩୦୫॥
ତୁମ୍ଭର ଥାଆନ୍ତେ ଆମ୍ଭେ ଅଚିନ୍ତା ହୋଇଥିଲୁଂ
ତୁମ୍ଭେ ଗଲ ଛାଡ଼ି ଆମ୍ଭେ ନିରେଖଂ ହୋଇଲୁଂ ॥୭୩୦୬॥
ଜେବେ ଦୟାଥିବ ପ୍ରଭୁ ଆମ୍ଭଠାର
ଆଉକିଛି ଦିନ ତୁମ୍ଭେ ରୁହ ଏହିଠାର ॥୭୩୦୭॥
ଏ ବେନି ଦେସରେ ତୁମ୍ଭେ ହୁଅ ରାଜା
ଖଟିଥିବୁ ଆମ୍ଭେ ଚରଣ ସର୍ବଦା ॥୭୩୦୮॥
ଅର୍ଜୁନ ବୋଇଲେ ଏଥି ହୋଇଲେ ନୃପତି
ତିନିପୁର ମଧ୍ୟରେ ହୋଇବ ଅପକ୍ଷାତି ॥୭୩୦୯॥
ବୋଲିବେ ପାଣ୍ଡବଙ୍କୁ ବିରାଟ ସମ୍ଭାଳିଲେ
କାଳେ ତାଙ୍କୁ ଘଉଡ଼ି ଦେଇ ତହିଂ ରାଜା ହେଲେ ॥୭୩୧୦॥
ନିଶ୍ଚନ୍ତ ହୋଇ ତୁମ୍ଭେ ସମ୍ଭାଳ ତୁମ୍ଭ ରାଜ୍ୟ
ଶତ୍ରୁ ମିଳିଲେ କହିବ କରିବା ତୁମ୍ଭ କାର୍ଯ ॥୭୩୧୧॥
ଶ୍ରୀକୃଷ୍ଣା ବୋଇଲେ ମୋର ଅଛଇ ଦୁଲଣି
ତୁମ୍ଭର ପୁତ୍ରକୁ ଦେଇ ସମର୍ପି ହୋଇବି ପୁଣିଂ ॥୭୩୧୨॥
ଯୁଧିଷ୍ଟି ବୋଇଲେ ମାଗୋ ଯେବେ ତୋ ଦୟା ହେଲା
ଅଭିମନୁ ବୋଲି ଅର୍ଜୁନର ବଳା[2] ॥୭୩୧୩॥
ଅତ୍ୟନ୍ତ ଉତମ ବୟସ ସେ ଏଗାର
ମାତାଙ୍କ ସଙ୍ଗତେ ଅଛି ମଉଳାର ଘର ॥୭୩୧୪॥

୧ । ଘ ପୋଥି – ପୁରୁଷଙ୍କ ଠୁଳ
୨ । ଘ ପୋଥି – ତନୁଜା

ବିଚାରି ବୁଝିଲେ ପୁତ୍ରକୁ ଅଣାଇବା
ବିରାଟ ବୋଇଲା ଆଣ ବିଭା କରାଇବା ॥୭୩୧୫॥
ଚାଚେକ ମନ୍ତ୍ରିକି ବିରାଟ ଆଜ୍ଞା ଦିଲା
ସାମଗ୍ରି ଭିଆଇଣ ନଗ୍ର ମଣ୍ଡାଇଲା ॥୭୩୧୬॥
ବସିଲେ ଯୁଧିଷ୍ଠି ଚିନ୍ତିଲେ ଜଗନ୍ନାଥ
ଗରୁଡ଼ ପୃଷ୍ଟେ ବସି ଗୋବିନ୍ଦ ପ୍ରବେସ ॥୭୩୧୭॥
ଯୁଧିଷ୍ଠି ବୋଇଲେ ହରି ତବ ପରସାଦେଂ
କେତେ କେତେ ଦୁସ୍ତରୁ ତରିଲୁଂ ଅପ୍ରମାଦେଂ ॥୭୩୧୮॥
ଏବେ ବିରାଟ କରିଅଛି ସନମତ
ଅଭିମନ୍ୟୁକୁ ପ୍ରଦାନ କରିବ ତାହାର ଦୋହିତ ॥୭୩୧୯॥
ବଦୟନ୍ତି କେସବ ଏକଥା ଜୋଗାଇଲା
ମଛ ମଘ ଦେସରେ ବିରାଟ ଅଟେ ରାଜା ॥୭୩୨୦॥
ପଞ୍ଚୁ କଟକରେ ତୁମ୍ଭେଂ ଅଟ ରାଜନ
ଏକଥା ସଙ୍ଗତପଣ ସରି ବେନିଜନ[୧/୨] ॥୭୩୨୧॥
ଏମନ୍ତ କହି ଗରୁଡ଼କୁ ଚାହିଂ ଭାବଗ୍ରାହି
ପୁତ୍ରକୁ ଦ୍ୱାରିକାରୁ ଘେନି ଆସ ଯାଇ ॥୭୩୨୨॥
ଦ୍ୱାରିକାରେ ଜେତେ ନାରି ନଗ୍ରଜନ
ଭଣ୍ଡାର ସଙ୍ଗତେ ଘେନି ଆସିବୁ ବଳରାମ ॥୭୩୨୩॥
କହନ୍ତେ ଦ୍ୱାରିକାକୁ ଗରୁଡ଼ ଗମିଲା
ବିସ୍ୱକର୍ମାକୁ ସୁମରିଲେ ଚକାଡୋଳା ॥୭୩୨୪॥
ଲାଗିଲେ ବିନ୍ଧାଣି ତୋଳିଲେ ନବର
ନିଳସୁନ୍ଦର ବନ ମାଡ଼ି ଜମୁନା ତଟର ॥୭୩୨୫॥
ହୋଇଲାକ ପୁର ଚଳିଲା ବିନ୍ଧାଣିଂ
ପାଣ୍ଡେବକୁ ଘେନିଣ ପ୍ରବେଶ ଚକ୍ରପାଣି ॥୭୩୨୬॥
ରୁଷିକିଂ ଘେନି ପ୍ରବେସ ବ୍ୟାସ ମୁନି
ସୁଣଗୋ ଓମା ବୋଲି ବୋଲନ୍ତି ସୁଳପାଣି ॥୭୩୨୭॥
ଗରୁଡ଼ କହିଲା ଦ୍ୱାରିକାଏ ଜାଇ
ସୁଣିଣ ଆନନ୍ଦ ହୋଇଲେ ହଳସାଇଂ ॥୭୩୨୮॥
ଭଣ୍ଡାର ସହିତ ଜାଦବ ବଳ ସଇନ
ବହେଣି ଭଣଜାଙ୍କୁ ବସାଇ ବିମାନ ॥୭୩୨୯॥
ନିଳବନ ନିକଟେ ପ୍ରବେସ ହୋଇଲେ
ମେଦିନି କମ୍ପୁଅଛି ବାଦ୍ୟର ଚହଳେ ॥୭୩୩୦॥
ବଳରାମଙ୍କୁ ଦେଖି ପାଣ୍ଡବେ ଓଳଗିଲେ
କଲ୍ୟାଣ କରି ହରି ଭିମକୁ କୋଳ କଲେ ॥୭୩୩୧॥

୧ । ଘ ପୋଥି – ଏକଥା ସନ୍ମତ ଯୁଗାଇଲା ମନ
୨ । ଘ ପୋଥିରେ ଏମନ୍ତ କହି ଗରୁଡ଼କୁ ଠାରୁ ରାଜାର ନନ୍ଦନ ପୁଣ ପର୍ଯ୍ୟନ୍ତ ନାହିଁ

ମକର ମାସ କୃଷ୍ଣ ପକ୍ଷ ଆଦିତ୍ୟର ବାର
ବବନାମେ କରଣ ବେସ କରାଇଲେ କନ୍ୟାବର ॥୭୩୩୨॥
ବର ବେସେଂ ଅଭିମନ୍ୟୁ ବିମାନରେ ବସିଂ
ଗମିଲେ ହରି ବଳରାମ ହୋଇଣ ବରଜାତି ॥୭୩୩୩॥
ବର ବେସ ହୋଇ ପ୍ରବେସ ପାଣ୍ଡେବଙ୍କ ନନ୍ଦନ
ଗୌରୋବ କରି ନିଲା ସେତ ରାଜାର ନନ୍ଦନ ପୁଣ ॥୭୩୩୪॥
ଉତ୍ତରା କୁମାରିକି ବିରାଟ ସଜକଲା
ଦୋହିତାକୁ ଘେନିଣ ବେଦିରେ ବସିଲା ॥୭୩୩୫॥
ଅଭିମନ୍ୟୁକୁ ଘେନି ବସିଲେ ପାର୍ଥିବ
ଶ୍ରୀକୃଷ୍ଣ କୋଳେ ଜେହ୍ନେ ଦିଶନ୍ତି କାମଦେବ ॥୭୩୩୬॥
ହୁଳହୁଳି ସଙ୍ଖ ସବଦ ମର୍ଦ୍ଦଳ କାହାଳି
ମଛ ମଘ ଦେଶେ ସବଦେ ଉଛୁଳି ॥୭୩୩୭॥
ସରିଲା ହସ୍ତସୁତ୍ର ବିରାଟ ଦୁଲେଣି ସମର୍ପିଲା
ବହୁତ ଜଉତୁକ ଧନଦ୍ରବ୍ୟ ଦିଲା ॥୭୩୩୮॥
ସରିଲା ବିଭା ବରକନ୍ୟା ନବରେ ମିଳିଲେ
ଅହିକଂ[୧] ସ୍ତିରିମାନେ ଜୁଅ ଖେଳାଇଲେ ॥୭୩୩୯॥
ଭୋଜନ ସାରି ବରକନ୍ୟା ମହୁସଜ୍ୟା କଲେ
ଉତ୍ତରାବାଳି ଅଭିମନ୍ୟୁ ଅନେକ ରସେଂ ରାତି ପୁହାଇଲେ॥୭୩୪୦॥
ସେହି ରୁପେ ଭୋଜନ କରି ସୟନ କଲେ ସଇନି
ସୟନ କରନ୍ତେ ପାହିଲା ରଜନି ॥୭୩୪୧॥
ଉଠିଲେ ସର୍ବଲୋକ ବାଜିଲା ଢୋଲ ଦମା
ସଜହୋଇ ବାହାର ହୋଇଲେ ବରକନ୍ୟା ॥୭୩୪୨॥
ନିଜ କଟକେ ଜାଇ ପ୍ରବେସ ହୋଇଲେ
ବହୁଧନ ବସ୍ତ୍ର ଯୁଧିଷ୍ଠି ବ୍ରାହ୍ମଣଙ୍କୁ ଦିଲେ ॥୭୩୪୩॥
ଭିସ୍ମେକ ନନ୍ଦନି ପାକ ସମ୍ପାଦିଲେ
ସ୍ନାହାନ ସାରିଣ ସର୍ବଜନ ଭୁଜିଂଲେ ॥୭୩୪୪॥
ପାଣ୍ଡେବଙ୍କର ଆନନ୍ଦ କେ ପାରିବ କହିଂ
ଏକେହେଂ ପୁତ୍ରବିଭା ଜଗନ୍ନାଥେ ସାହିଂ ॥୭୩୪୫॥
ଚତୁର୍ଥ ଦିନରେ ଚତୁର୍ଥି କର୍ମସାରି
ଦ୍ୱାରିକାକୁ ବାହାର ହୋଇଲେ ଦେବହରି ॥୭୩୪୬॥
ଯୁଧିଷ୍ଠି ବୋଇଲେ ଏବେ କେବଣ କତି ଜିବା
ବାରୁଣାବନ୍ତ ଜାଅ ବୋଇଲେ ଦେବରାଜା ॥୭୩୪୭॥
ନିଜ କଟକରେ ହୁଅ ନୃପବର
କହିଣ ଦ୍ୱାରିକାକୁ ଗୋବିନ୍ଦ ବାହାର ॥୭୩୪୮॥
ହାନ୍ଦୋଳାମାନଙ୍କରେ ବିଜଏ ପାଟବଂସି
ଜାଦେବ ସଇନି ସହିତେ ହଳପତି ॥୭୩୪୯॥

୧ । ଘ ପୋଥି – ଅହିଞ୍ଚ

ଯୁଧିଷ୍ଟିକିଂ ମେଲାଣି ମାଗିଣ ଗମିଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୭୩୫୦॥
ଅଷ୍ଟମି ଦିନ ସାରି ପାଣ୍ଡବେ ଚଳିଲେ
ବିରାଟ ଦିଲା ଗଜ ରଥରେ ବସିଲେ ॥୭୩୫୧॥
ହାନ୍ଦୋଳାରେ[1] ଦ୍ରୋପଦି ବସିଲେ ବଧୁ ଘେନି
ବାଜଇ ଢୋଲ ଦମା ଗମିଲେ ସଇନି ॥୭୩୫୨॥
ଉଡ଼ାଇ ଚିରାଳ ସାହେର ଫେନ ପ୍ରାଏ
ପାଣ୍ଡେବଙ୍କ ଉଦିତ ଦେଖନ୍ତି ଦେବତାଏ ॥୭୩୫୩॥
ବାରୁଣାବନ୍ତରେ ହୋଇଲେ ପ୍ରବେସ
ସୁଭବେଳା ଖୋଜିଦିଲା ମାଦ୍ରିଦେବିସିସ ॥୭୩୫୪॥
ବ୍ୟାସ ସହିତ ଅନେକ ମୁନିଗଣ ସଙ୍ଗେ
ବାରୁଣାବନ୍ତ ମାଡ଼ି ରହିଲେକ ବେଗେ ॥୭୩୫୫॥
ଧୃତିରାଷ୍ଟ୍ର ଅଗ୍ରତେ ଡଗର କହିଲା
ପାଣ୍ଡବେ ଉଦିତ ହୋଇଲେ ହେ ରାଜା ॥୭୩୫୬॥
ସୁଣିଣ ଆନନ୍ଦିତ ହୋଇଲା ଧୃତିରାଷ୍ଟ୍ର
ବିସାଦ ପାଇଲା ରାଜା କୁରୁନାଥ ॥୭୩୫୭॥
ଜେବଣ ଜନେ ଏହା ସ୍ରବଣେ[2] ସୁଣନ୍ତି
କୋଟି ହତ୍ୟା ପାତେକ ମୋଚନ କରନ୍ତି ॥୭୩୫୮॥
ଛଡାନ୍ତି କଳଙ୍କ ହୋଅନ୍ତି ଉଦିତ
ଜେଉଂଜନ ସୁଣନ୍ତି ଏ ହରିବଂସ ଭାରତ ॥୭୩୫୯॥
ଲଭନ୍ତି ଧନଧାନ୍ୟ ଲଭନ୍ତି ବିଷ୍ଣୁଂପାସ[3]
ସେ ବିଷ୍ଣୁଂ ପାଦେ ସରଣ ସାରୋଳା ଚଣ୍ଡି ଦାସ ॥୭୩୬୦॥

## ମଧୁକୈଟଭ ବଧ

ସଂକର ମୁଖ ଚାହିଂ ଗିରିଜା ପଚାରିଲେ
ରାଜ୍ୟ ଭଣ୍ଡାର ଯୁଧିଷ୍ଟି ପାଇଲେକି ନପାଇଲେ ॥୭୩୬୧॥
କେମନ୍ତେ ରାଜ୍ୟ ତାକୁ ଦିଲା କୌରୋବ
ଏକଥା ମୋର ଆଗେଂ କହ ହେ ସଦାସିବ ॥୭୩୬୨॥
ବୋଲନ୍ତି ସଦାସିବ ସୁଣଗୋ ଗଉରି
କେବଳ ନିଜ ଗୃହେଂ[4] ରହିଲେ ଯୁଧିଷ୍ଟି ଦଣ୍ଡଧାରି ॥୭୩୬୩॥
ରାଜ୍ୟ ଭଣ୍ଡାର ଆଉ ନ ଦିଲା ଦୁର୍ଯୋଧନ
ଦିନେ ବାରୁଣାରେ ପ୍ରବେଶ ଭଗବାନ ॥୭୩୬୪॥
ଶ୍ରୀହରିଙ୍କି ପାଣ୍ଡବେ ସେ ଓଳଗିଲେ
ଗୋବିନ୍ଦ ବୋଇଲେ ନୃପତି ହୋଇଲ ରାଜ୍ୟରେ ॥୭୩୬୫॥

୧ । ଘ ପୋଥି – ଆନ୍ଦୋଳା
୨ । ଘ ପୋଥି – ଶ୍ରଦ୍ଧାରେ
୩ । ଘ ପୋଥି – ସକଳ ପାପ ନାଶି ବଇକୁଣ୍ଠେ ବାସ
୪ । ଖ ପୋଥି – କେବଣ ପୁରେ

ଗୋବିନ୍ଦ ବଚନେ ବୋଇଲେ ଧର୍ମନାନ
ରାଜ୍ୟ ଖଣ୍ଡିଏ ଆମକୁ ନଦିଲା ଦୁର୍ଯୋଧନ ॥୭୩୬୬॥
ଶ୍ରୀହରି ବୋଇଲେ ହୋ ଧର୍ମ ଆସ୍ରେ ଥିଲେ
ଅବସ୍ୟ ସାହା ହୁଅଇ ଧର୍ମ ବିପତିରେ ॥୭୩୬୭॥
ଏମନ୍ତ କହୁ କହୁ ପ୍ରବେଶ ଡଗର
ବିରାଟସୁତା ରଜବନ୍ତି ହୋଇଲା ତୁମ୍ଭର ॥୭୩୬୮॥
ସୁଣି ଆନନ୍ଦ ହୋଇଲେ ଧର୍ମନାନ
ସୁମରନ୍ତେ ପ୍ରବେସ ବ୍ୟାସ ତପୋଧନ ॥୭୩୬୯॥
ଯୁଧିଷ୍ଟି କହନ୍ତେ ଫେଇଲେ ଗ୍ରନ୍ଥ ପୋଥି
ନକ୍ଷତ୍ର ଗ୍ରହ ବୁଝି କାଟିଲେ ରଜକୋଷ୍ଟି ॥୭୩୭୦॥
ଗୁରୁବାର ଦସମି ନକ୍ଷତ୍ର ରୋହିଣି
ସର୍ବସୁଭ ହୋଇଲା ବୋଇଲେ ବ୍ୟାସମୁନି ॥୭୩୭୧॥
ସୁଣିଣ ଯୁଧିଷ୍ଟି ସାମଗ୍ରି ଭିଆଇଲେ
ଡଗର କହିଲା ବିରାଟ ଆଗରେ ॥୭୩୭୨॥
ସୁଣି ସେତସୁତ ସାଜିଲା ରହୁବର
ଉତ୍ତର କୁମାରି କି ବସାଇଲା ହାନ୍ଦୋଳାର ॥୭୩୭୩॥
ପୁତ୍ର ଭାରିଜା ସହିତେ ବିରାଟର
ପ୍ରବେସ ହୋଇଲେ ବାରୁଣା କଟକର ॥୭୩୭୪॥
ଯୁଧିଷ୍ଟି ଦେଖିଣ ଗୌରୋବ କଲେ
ଅଭିମନ୍ୟୁ ସୌଚେ ବସିଲେ ହୋମରେ[1] ॥୭୩୭୫॥
ସାରିଣ ଲଜା ହୋମ ମନ୍ଦିରେ ସୟନ
ଯୁଧିଷ୍ଟି ବ୍ରାହ୍ମଣଙ୍କୁ ବହୁତ ଦେଲେ ଦାନ ॥୭୩୭୬॥
ବଡ଼ଇ ଉଛବ କରନ୍ତି ପାଣ୍ଡବେ
ଜହିଂରେ ବିଜେ କରିଛନ୍ତି ବାସୁଦେବେଂ ॥୭୩୭୭॥
ଗୋବିନ୍ଦର ପାଦେଂ ପଡ଼ିଲା ବିରାଟର ନାରି
ଶ୍ରୀକୃଷ୍ଣ ଆଜ୍ଞାଦିଲେ ଉଠରେ ସୁନ୍ଦେରି ॥୭୩୭୮॥
ଗତ ଆଗତ କଥାହି ତୁହିତ ଜାଣୁ
ଆଗତ ଭବିସ୍ୟ ପୁରାଣ ଥୋକାଏ ବଖାଣୁ ॥୭୩୭୯॥
ଶ୍ରୀକୃଷ୍ଣା ବୋଇଲେ ହେ ସଂସାର ଚାରିଖାନି
ଗର୍ଭର ମଧ୍ୟରେ ବହିଛ ଚକ୍ରପାଣି ॥୭୩୮୦॥
କୋଟି କୋଟି ବ୍ରହ୍ମାଣ୍ଡ ଜାହାର ରୋମଗତ
ତାହାଙ୍କ ଆଗରେ କିସ ମୁ କହିବିଂ ଆଗତ ॥୭୩୮୧॥
ତୁହି ଜେବେ ଜନ୍ମଇ ପାଳିଣ ସଂହାରି
ଭାରା ନିବାରିତେ ମହିରେ ଅବତରି ॥୭୩୮୨॥
ଶ୍ରୀକୃଷ୍ଣା ବଚନେ ବୋଇଲେ ଭାବଗ୍ରାହିଂ
କେବଳ ଭଗତ ଭାବରେ ମୁହି ଥାଇଂ[2] ॥୭୩୮୩॥

୧ । ଘ ପୋଥି – ବେଦୀରେ
୨ । ଖ ପୋଥି – କେବଳ ଭକତି ଭାବ ବଶ ମୁହିଂ ଥାଇ

ଯୁଗକୁ ଯୁଗ ମୁଂ ହୋଅଇଂ ଅବତାର
ପୁର୍ବକଥା ମୋର ନଥାଇ ମନର ।।୭୩୮୪।।
ଶ୍ରୀକୃଷ୍ଣ ବୋଇଲେ ସୁଣ ହେ ଜଗନ୍ନାଥ
ଯେଉଂ ସୁର୍ଯ ଉଦୟେ ହୁଅଇ ଜଗତ ।।୭୩୮୫।।
ଛଡ଼ ନିସ୍ୱାସରେ ନିତା ଏକ ହୁଅଇ
ସାଠିଏ ନିତାରେ ଦଣ୍ଡେକ ବୋଲାଇ ।।୭୩୮୬।।
ବେନି ଦଣ୍ଡ ହୋଇଲେ ବୋଲାଏ ଏକ ଘଡ଼ି
ଚତୁର୍ଥ ଘଡ଼ିରେ ପହରେକ ନିବାଡ଼ି ।।୭୩୮୭।।
ଚତୁର୍ଥ ପ୍ରହରେ ଦିବସ ବୋଲାଇ
ପୁଣି ଏହିମତି ରଜନି ଏକ ହୋଇ ।।୭୩୮୮।।
କୋଡ଼ିଏ ଦିବସରେ ବିଂସ ବୋଲି କହିଂ
ପଞ୍ଚ ବିଂସରେ ସତେକ ବୋଲାଇ ।।୭୩୮୯।।
ଦସ ସତରେ ବୋଲାଇଂ ସହସ୍ରେଂ
ସତ ସହସ୍ରେଂ ବୋଲାଇଂ ଏକଲକ୍ଷେଂ ।।୭୩୯୦।।
ସତର ଲକ୍ଷ ସତାସି ସହସ୍ର ବରସରେଂ[1] ସତ୍ୟଯୋଗ ସେସ
ତ୍ରେତୟା ଯୋଗ ତେର ଲକ୍ଷ ଛଡ଼୍[2] ସହସ୍ର ବରସ ।।୭୩୯୧।।
ଆଠଲକ୍ଷେଂ[3] ତିରିସ ସହସ୍ରେଂ ଦ୍ୱାପର ହୁଏ ସେସ
କଳିଯୁଗ ସରଇ ଚାରିଲକ୍ଷ ବତିସ ସହସ୍ର ବରସ ।।୭୩୯୨।।
ଚାରିଯୋଗ ଗଲେ ଗଣ୍ଡାଏ ହୋଅଇ
ଏକସ୍ତରି ଗଣ୍ଡାରେ ମନୁ ଜେ ବୋଲାଇ ।।୭୩୯୩।।
ତ୍ରୟୋଦସ ମନୁରେ କଳ୍ପେକ ବଖାଣି
ସତର କଳ୍ପଂରେ ହୁଅଇ ଉଠାଣି ।।୭୩୯୪।।
ଚଉଦ ଉଠାଣିରେ ଉହାଣେକ ହୋଇ
ଏକୋଇସ ଉହାଣେ ଇନ୍ଦ୍ରନାସ ଜାଇ ।।୭୩୯୫।।
ସେ କାଳେ ବିଧାତାକୁ ହୁଅଇ ଦିବସ
ତିନି ମନୁରେ ବେଦବର ଜାଇ ନାସ[4] ।।୭୩୯୬।।
ବିଧାତା ନାସ ଗଲେ ବିଷ୍ଣୁକୁ ଦିବସେ
ସପତ କଳ୍ପେଂ ବିଷ୍ଣୁଂ ଗମଇ ରୁଦ୍ର ପାଶେଂ ।।୭୩୯୭।।
ସେ କାଳେଂ ରୁଦ୍ରଙ୍କୁ ଦିବସେଂ ହୋଅଇ
ନଥାନ୍ତି ଚନ୍ଦ୍ର ସୁର୍ଯ ଅନ୍ଧାର ଘୋଟଇ ।।୭୩୯୮।।
ଚଉଦ ମନୁରେ ସଂକର ଜାନ୍ତି ନାସ
ନିରାକାର ପୁରୁଷଙ୍କୁ ହୁଅଇ ଦିବସ ।।୭୩୯୯।।

୧ । ଖ ପୋଥି – ଯେତକ ବହିଗଲେ
୨ । ଖ ପୋଥି – ଚବିଶ
୩ । ଘ ପୋଥି – ବାରଲକ୍ଷେ
୪ । ଘ ପୋଥି – ତିନି ମନୁରେ ବିଧାତା ହୁଏ ନାଶ

ସମସ୍ତ ଦେବତାଙ୍କୁ ଗର୍ଭରେ ସେହୁ ଘେନି
ସତାସି ମନୁରେ ସେ ନାଶ ଜାନ୍ତି ପୁଣି ।।୭୪୦୦।।
ନିରଞ୍ଜନ ଦେବତାଙ୍କୁ ଦିବସେ ହୋଅଇ
ଏକୋଇଶ କଳ୍ପେଂ ସେହୁ ନାଶ ଜାଇଂ ।।୭୪୦୧।।
ନିରଞ୍ଜନ ନାସ ଗଲେ ନିର୍ଗୁଣଙ୍କୁ ହୁଅଇ ଦିବସେଂ
ସପତ[1] ମନୁରେ ସେହୁ ହୋନ୍ତି ସେସେଂ ।।୭୪୦୨।।
ନିର୍ଗୁଣ ନାସଗଲେ ନିରାଲମ୍ବଙ୍କୁ ଦିବସେ ହୋଅଇ
ସତର ମନୁରେ ସେହି ନାସ ଜାଇ ।।୭୪୦୩।।
ନିରାଲମ୍ବ ଶେଷେ ଧର୍ମପୁରୁଷଙ୍କୁ ଦିବସେଂ
ବାଉନ କଳ୍ପେଂ ସେ ପୁରୁଷ ଗମଇ ଠୁଳପାଶେଂ ।।୭୪୦୪।।
ଠୁଳ ପୁରୁସକୁ ଦିବସେଂ ହୁଅଇ
ସମସ୍ତଙ୍କୁ ଗର୍ଭରେ ସଂହରନ୍ତି ସେହିଂ ।।୭୪୦୫।।
କରନ୍ତି ସୟନ ଘୋଟଇ ସବୁ ଜଳ
ଏକା ଆଦିଦେବି ବସିଥାନ୍ତି ପାରୁସର ।।୭୪୦୬।।
ସକ୍ତିରୁପେ ଆଦି କୋଳ କରିଥାଇ
ଲିଙ୍ଗ ରୁପେଂ ଥାନ୍ତି ଠୁଳପୁରୁଷ ଗୋସାଇଂ ।।୭୪୦୭।।
ଏହି ରୁପେ ଜହୁଂ କିଛି କାଳ ଜାଇଂ
କାୟା ମୁଡ଼ି ଦେଇ ଉଠନ୍ତି ତ୍ରିଦସ୍ୟ[2] ଗୋସାଇଂ ।।୭୪୦୮।।
ଖଳ ଖଳ ରେତ ଅଙ୍ଗରୁ ଖସଇ
ଆଦିସକ୍ତିଠାରେ ସେ ରେତ ପଡ଼ଇ ।।୭୪୦୯।।
ସେ ରେତରୁ ତିନି ପୁରୁଷ ହୋନ୍ତି ଜାତ
ସଦାସିବ ବିଷ୍ଣୁ ଆବର ବିଧାତ ।।୭୪୧୦।।
ଭାଳିଲେ ତିନି ଦେବେ କି ବୁଦ୍ଧି କରିବା
ଭାଳନ୍ତେ ପଞ୍ଚାଉନ ସହସ୍ରେ ବହିଗଲା ।।୭୪୧୧।।
ବିଷ୍ଣୁଂ ଜଳରେ କଲେକ ସୟନ
ଲାଭିରୁ ପଦ୍ମପୁଷ୍ପ ହୋଇଲା ଉତପନ ।।୭୪୧୨।।
ଦଣ୍ଡକ ପ୍ରମାଣେଂ ସେ ବୃକ୍ଷ ବଢ଼ିଗଲା
ବୟାଶି ଯୋଜନ ଉଛର୍ଗ ହୋଇଲା ।।୭୪୧୩।।
ପଦ୍ମଂପୁଷ୍ପ ଫୁଟି ଜୋତି ବିରାଜଇ
ବିଧାତା ଭାସିଣ ଲାଗିଲେକ ତହିଂ ।।୭୪୧୪।।
ପଦ୍ମଂ ଲାଡ଼ ଧରିଣ ବୋଡ଼ିଲା ବେଦବର
ପସିଲା ବିଷ୍ଣୁ ଗର୍ଭେଂ ମଣିଲା ସାଗର ।।୭୪୧୫।।
ଗର୍ଭଂରେ ପସିଣ ନ ପାଇ ବିଷ୍ଣୁ ଅନ୍ତ
ସାତକଳ୍ପ ରହିଂ ତହିଂ ବାହାର ବିଧାତ ।।୭୪୧୬।।

୧ । ଖ ପୋଥି – ଶତେକ
୨ । ଖ ପୋଥି – ତ୍ରୈଲୋକ୍ୟ

ପଦ୍ମଂଲାଡ଼କୁ ଧରି ବ୍ରହ୍ମା ସ୍ତୁତି ଆରମ୍ଭିଲା
ଜୟତୁ ଜଗଜୋତି ଜଳରେ କଲୁଂ ନିଦ୍ରା ଭଲା ।।୭୪୧୭।।
ତୁମ୍ଭେତ ସୋଇଲଂ ମୁଂ ଅନ୍ତ ନପାଇଲି ପୁଣିଂ
ଜାଗନ୍ତା ଜୋଗି ହୋଇ ରହିଲେ ସୁଳପାଣିଂ ।।୭୪୧୮।।
ବିଧାତା ସ୍ତୁତିରେ ଉଠିଲେ ହୃଷିକେସି
ଚକ୍ଷୁ ବେନି କର୍ଣ୍ଣ ହସ୍ତରେ ଦିଲେ ଘସି ।।୭୪୧୯।।
ସେ ବେନି ଘସନ୍ତେ ହୋଇଲା ଦୁଇ ମଳିଂ[୧]
ଦୁଇଗୋଟା ପୁରୁଷ ହୋଇଲେ ମହାବଳି ।।୭୪୨୦।।
ମଧୁ କୈଟଭ ସେ ନାମ ତାହାଙ୍କର
ଆଣ୍ଟୁଆଣି କଲେ ସେ ସପତ ସିନ୍ଧୁଜଳ ।।୭୪୨୧।।
ଜୋତିମୟ ପୁରେ ପ୍ରବେସ ହୋଇଲେ
ଆଦିଙ୍କି ଦେଖିଣ ସୃଙ୍ଗାର ମାଗିଲେ ।।୭୪୨୨।।
ଆଦି ବୋଇଲେ ଜେବେ ସ୍ୱାମିକି ରଣେ ଜିଣିଂ
ତେବେ ସିନା ମତେ କରିବ ଘରଣିଂ ।।୭୪୨୩।।
ସୁଣି ମଧୁ ଠାକୁରକୁ ଚାପୁଡ଼େ ପ୍ରହାରି
ଉଠିଲେ ଠାକୁରେ ଦାନବେ ଗଲେ ଫେରି ।।୭୪୨୪।।
ପଳାବନ୍ତେ ମଧୁ ସିବଙ୍କୁ ଗୋଡ଼ାଇଲେ
ମସ୍ୱର ସଙ୍ଗତେ ତାହାକୁ ଗିଳିଦିଲେ ।।୭୪୨୫।।
ଦୈଇତ୍ୟ[୨] ଗର୍ଭରେ ରହିଲେ ସଂକର
ଦୈଇତ୍ୟ ହାବୋଡ଼ିଲା[୩] ପଦ୍ମ ବୃକ୍ଷଠାର ।।୭୪୨୬।।
କୈଟବ ଦେଖିଲା ପୁରୁଷେଂ ବସିଅଛି
ଗଳିଦିଲା ଗର୍ଭରେ ରହିଲେ ବେଦପତି ।।୭୪୨୭।।
ହର ବ୍ରହ୍ମାଙ୍କୁ ବେନି ଦୈତ୍ୟ ଗିଳିଦେଲେ
ପଦ୍ମଂ ବୃକ୍ଷ ଉପାଡ଼ିବେ ବୋଲି ମନକଲେ ।।୭୪୨୮।।
ଧରି ଝିଙ୍କନ୍ତେ ଜାଣିଲେ ପଦ୍ମନାଭ
ସେ ପଦ୍ମ ବୃକ୍ଷକୁ ହରି ସଂହରିଲେ ଗର୍ଭ ।।୭୪୨୯।।
ଦୈଇତ୍ୟ ସଙ୍ଗତେ କଲେ ଘୋରରଣ
ଜୁଝିଲେ ବେନିଭାଇ ଏକାୟେ ଭଗବାନ ।।୭୪୩୦।।
ସମର କରନ୍ତେ ସହସ୍ରେ ବରସ ବହିଗଲା
ଦୈଇତ୍ୟକୁ ଜିଣି ନପାରିଲେ ଚକାଡୋଳା ।।୭୪୩୧।।
କଣ୍ଟିଲା ସ୍ରମଝାଳ ରହିଲେ ଭଗବାନ
ମଧୁ କୈଟବ ଜାଣିଲେ ଗୋବିନ୍ଦର ମନ ।।୭୪୩୨।।
ସମକଛ ଯୁଦ୍ଧରେ ଦୈଇତ୍ୟଂ ହରସ
ବୋଇଲେ ଜାହା ମାଗିବୁ ଦେବଇଂ ଅବସ୍ୟ ।।୭୪୩୩।।

୧ । ଖ ପୋଥି – ବେନି ବଳି
୨ । ଖ ପୋଥି – ଦାନବ
୩ । ଖ ପୋଥି – ବାହୁଡ଼ି ଗଲା

ନାସ୍ତି ନକରିବିଂ ସତ୍ୟ ସତ୍ୟ ମୋର
ଗୋବିନ୍ଦେ ବୋଇଲେ ଦିଅ ମୋତେ ତୋର ସିର ।।୭୪୩୪।।
ଦୈଇତ୍ୟେଂ ବୋଇଲେ ମାରିବୁଂ ଜେବେ ତୁହିଂ
ନଥିବାକ ଜଳ ହୋଇବ ସୁଖା ଭୁଇଂ ।।୭୪୩୫।।
ସୁଣି ବିଷ୍ଣୁନାଥ ବଢ଼ାଇଲେ ଜାନୁ
ଘୋଡ଼ାଇ ରଖିଲେ ଦାନେବର ତନୁ ।।୭୪୩୬।।
ବିସାସତେ ଯୋଜନ ଦାନେବର ଅଙ୍ଗ
ତହିଂରୁ ସତେଗୁଣେଂ[୧] ବଢ଼ିଲା ଶ୍ରୀଜଙ୍ଘ ।।୭୪୩୭।।
ଦେଖିଣ ଦୈଇତ୍ୟ ଆଷ୍ଚାର୍ଯ୍ୟ ହୋଇଲା
ବେନିକର ଯୋଡ଼ିଣ ସିର ପତାଇଲା ।।୭୪୩୮।।
ଜାନୁପରେ ଶ୍ରୀହରି ପକାଇଲେ ଅସୁର
ମୋଡ଼ି ପକାଇଲେ ପ୍ରାଣ ଗଲା ତାର ।।୭୪୩୯।।
ଦାନେବ ଗର୍ଭରୁ ବାହାର ବ୍ରହ୍ମା ସିବ
ଦେଖିଣ ଶ୍ରୀହରି ହୋଇଲେ ଆଷ୍ଚାର୍ଯ ।।୭୪୪୦।।
ଶ୍ରୀହରି ବୋଇଲେ ହେ କେମନ୍ତେ ପୃଥି ହେବ
ଏତେ ବୋଲି ଦଳିଲେ ଦୈତ୍ୟର ପିଣ୍ଡ ବାସୁଦେବ ।।୭୪୪୧।।
ଜଳବିମ୍ବଂ ପ୍ରାଏ ମେଲିଲେ ଜଳର
ହୋଇଲା ସପ୍ତଦିପ ସପତ ସାଗର[୨] ।।୭୪୪୨।।
ଜାନୁରୁ ଶ୍ରୀହରି ରୋମେକ ଉପାଡ଼ିଲେ
ସେ ରୋମ[୩] ସ୍ଥମ୍ଭକରି ତାହାକୁ ପୋତିଲେ ।।୭୪୪୩।।
ନଉଟି ଜାନୁରୁ ଉପାଡ଼ିଲେ ରୋମ
ଅଷ୍ଟଦିଗରେ ତାହା ପୋତିଲେ ଭଗବାନ ।।୭୪୪୪।।
ତେବେ ସପ୍ତଦିପ ନୋହିଲାକ ଥଏ
ବିଧାତା ବୋଇଲେ ସୁମର ଆସନ୍ତୁ ମହାମାଏ ।।୭୪୪୫।।
ଜୟତୁ ଆଦିମାତା ସଂସାର ତାରେଣି
ତୁହି ନ ସମ୍ଭାଳିଲେ ନ ରହିବ ମେଦନି ।।୭୪୪୬।।
ଅତିଅନ୍ତ ମହିମା ନାମ ତୋ ଅରୁପା
ବୈଷ୍ଣବି ରୁପେ ଜପୁ ତୁ ଅଜପା ।।୭୪୪୭।।
ଚାଚେକି ଚାମଡ଼ା ବୈତାଳି ଗଣ
ତୋହର ରୁପ ଏ[୪] ହୋଅନ୍ତି ଜନମ ।।୭୪୪୮।।
ତୁହି ସେ କାଳରାତ୍ରି କାଳକୁ ପାରୁ ମେଣ୍ଟି
ତୋହାର ଦୟାରେ ବଞ୍ଚନ୍ତି ନବ ସୃଷ୍ଟି ।।୭୪୪୯।।

୧ । ଖ ପୋଥି – ବେନି ଗୁଣେ
୨ । ଘ ପୋଥି – ଘୋଟିଲା ସଂସାର
୩ । ଘ ପୋଥି – ମେରୁ
୪ । ଘ ପୋଥି – କୋପରୁ

ଜୟତୁ ଆଦିଦେବି ବ୍ରହ୍ମାଏଣି ନାମ
ବ୍ରହ୍ମ ପୁରୁଷଠାରୁ ନୋହୁଂ ଭିନ୍ନାଭିନ୍ନ ॥୭୪୫୦॥
ନିଳଉତ୍ପଳ ତନୁ ଜବାପୁଷ୍ପ ପାଦ
ସୁଭଇ ରଣଝୁଣ ନୁପୁର ସବଦ ॥୭୪୫୧॥
ନୟନେ କଜ୍ଜ୍ୱଳ ନିଦ୍ରିତ[୧] ଲୋଚନି
ଅଷ୍ଟଭୁଜେଂ ବାହୁଟି କଟିରେ କିଂକିଣି ॥୭୪୫୨॥
ତୁହି ସେ ଗାୟତ୍ରି ଗୋବସ୍ତାର ମୁଳ
ସମସ୍ତ ଦେବ ଏ ତୋହର ସାଖା ଡାଳ ॥୭୪୫୩॥
ଆଦ୍ୟ ଅବତାରେ ଅରୁଣ ବର୍ଣ୍ଣ ଓଷ୍ଟ
ଅତ୍ରାହି ଜନଙ୍କର ଫେଡ଼ତୁ ସଂକଟ ॥୭୪୫୪॥
ସର୍ବସୁଭଦାୟନି ସର୍ବ ସୁଲକ୍ଷଣି
ସୁମରନ୍ତେ ସାହା ହେଉଗୋ ଜନନି ॥୭୪୫୫॥
ଜୟତୁ ଯୋଗେସ୍ୱରି ଭାଙ୍ଗିଲୁ ଯୋଗନିଦ୍ରା
ଚେତି ଚେତାଇଣ ତୋର ଚଇତନ ମୁଦ୍ରା ॥୭୪୫୬॥
ଜୟତୁ ରୁଦ୍ରାଏଣି କ୍ଷିରେଦ୍ରେରେ[୨] ସ୍ଥିତି
ତୋହର ଠାରୁ ଜନମ ଚତୁର୍ଦ୍ଧା ମୁରତି ॥୭୪୫୭॥
ଭଗତ ବସ୍ଛଳି ଆଦ୍ୟକାଳ କରୁଣା
ତୋହର ଅଣଦୟାରେ ସର୍ବଜନ ବଣା ॥୭୪୫୮॥
କାଳକଳ୍ପବାସି ଅପାର ମହିମା
ସଂକଟ ତାରେଣି ବୋଲି ସିରରେ ଉଡ଼େ ବାନା ॥୭୪୫୯॥
ନରହିଣ ପୃଥି ଟଳମଳ ହୁଅଇ
ମେରୁ[୩] ସହିତରେ ଉପୁଡ଼ି ପଡ଼ଇ ॥୭୪୬୦॥
ଭୈରୁବି ମୃତି ଧରିଣ ସମ୍ଭାଳ ମହାମ୍ରାଣିଂ
ଅନେକ ମହିମା ତୋର ଅନକେ ନାମ ଭଣିଂ ॥୭୪୬୧॥
କିସ ବର୍ଣ୍ଣିବି ମୁଂ ମହିମା ତୋ ଅପାର
ମୁହିଂ ତୋର ପୁତ୍ର ଅଟଇ ବେଦବର ॥୭୪୬୨॥
ଦେବମାତା ନାମ ସଂସାରେ ବୋଲାଉ
କ୍ଷଣକେ ଆନୁଆନ ମୁରତି ତୁ ହେଉ[୪] ॥୭୪୬୩॥
ତୋ ଗଣ୍ଡସ୍ଥଳ ଝାଳରୁ ବହଇ ଗଣ୍ଡୁକି
ଅକ୍ଷଏ ସିଳାମାନ ତହିଂରୁ ଉତପତି ॥୭୪୬୪॥

---

୧ । ଖ ପୋଥି – ନୀଳଲୋହିତ
୧ । ଘ ପୋଥି – ନିଳାଦ୍ରୀ
୨ । ଘ ପୋଥି – କ୍ଷୀରୁଦ୍ର
୨ । ଖ ପୋଥି – କ୍ଷିରୋଦ୍ର
୩ । ଘ ପୋଥି – ମୂଳ
୪ । ଖ ପୋଥି – ମହିମା ଦେଖାଉ

ସ୍ଥାବର ଜଙ୍ଗମ କିଟ ପତଙ୍ଗ ଚାରିଖାନି
ତୋହର ଦୃଷ୍ଟିରୁ ଏ ହୁଅନ୍ତି ଉତପନି ॥୭୪୬୫॥
ତୋହର ଚରଣେ କୋଟିଏ କୋଟିଏ ସେବା
ସୁଦ୍ରମୁନି ସାରୋଳା ଦାସକୁ ଅଭୟେ ବରଦେବା ॥୭୪୬୬॥

## ଶ୍ରୀକୃଷ୍ଣାଙ୍କର ଭାରତଯୁଦ୍ଧ ବର୍ଣ୍ଣନା ଓ ମୃତ୍ୟୁ

ଭାରତ ହରିବଂସ ଏ ଅପୁର୍ବ ଆଖ୍ୟାନ
ଏହା ଲେଖିବାକୁ କି ହୋଇବି ଭାର୍ଜନ ॥୭୪୬୭॥
ସାଗର ସଙ୍ଗମ ଏ ଅଟଇ ମହାର୍ଣ୍ଣବ
ମୁହିଂ ପାରି ହୋଇବି ତୁହିଂ ହେଲେ ଲାବ ॥୭୪୬୮॥
ଏମନ୍ତ ବୋଲି ଜହୁଂ ବିଧାତା ସ୍ତୁତି କଲେ
ସୁଣି ମହାମାଇ ଅଷ୍ଟରୁପ ହୋଇଲେ ॥୭୪୬୯॥
ନୈରୁତ କୋଣେ ଦେବି ଇନ୍ଦୁର ବାହାନେ
ବସିଲେକ ମାଡ଼ି ନିଶ୍ଚଳ ଆସନେ ॥୭୪୭୦॥
ଅପୁର୍ବ ସ୍ୟାମଳ ବାହାନେ ଦେବି ନୈରୁତ କୋଣେ ରହି ମାଡ଼ି
ନିଶ୍ଚଳ ହୋଇ ମାଡ଼ି ବସିଲେ ସେହୁ ଗିରି ॥୭୪୭୧॥
ସାର୍ଦ୍ଦୁଳ ବାହାନେ ଐସାନ୍ୟ କୋଣେ ରହିଂ
ଅଗ୍ନିକୋଣେ ନର ବାହାନେ ମହାମାଇ ॥୭୪୭୨॥
ଗୁଞ୍ଜାର ବାହାନେ ଦେବି ପଶ୍ଚିମରେ ରହି
ତୁରଙ୍ଗ ବାହାନେ ଉତ୍ତରେ ମହାମାଇ ॥୭୪୭୩॥
ସିଂହ ବାହାନେ ଦେବି ପୁର୍ବେ ବିଜେକଲେ
ମରାଳ ବାହାନେ ଦେବି ଦକ୍ଷିଣେ ରହିଲେଂ ॥୭୪୭୪॥
ଏମନ୍ତେ ଅଷ୍ଟଦିଗ ରହିଲେ ଦେବି ମାଡ଼ି
ତେବେ ସେ ନିଶ୍ଚଳ ହୋଇଲା ବସୁନ୍ଧରି ॥୭୪୭୫॥
ଏ ଆଦିଦେବି ସ୍ତୁତି ଜେ ଜନ ପଢ଼ଇ
ଲଭଇ ଧନଧାନ୍ୟ ଅଇସୁର୍ଯ୍ୟ ପାଇ ॥୭୪୭୬॥
ତ୍ରିସନ୍ଧ୍ୟା କାଳେ ଜେ ପଢ଼ଇ ମୁଖେଣ
ନ କରେ ରୋଗପିଡ଼ା ଖଣ୍ଡଣ ଏ ଦୁଖମାନ ॥୭୪୭୭॥
ବନ୍ଧନ ତୁଟଇ କାଳ ଘୁଞ୍ଚି ଜାଇ
ଐସୁର୍ଯ୍ୟ ସମ୍ପଦ ଦିଅଇ ମହାମାଇ ॥୭୪୭୮॥
ଶତୃକୁ ଜିଣଇ ଏ କାଟଇ ସଂସାର
ଜେ ଜନ ଏ ସ୍ତୁତି ପଢ଼ଇ ମୁଖର ॥୭୪୭୯॥
ବୋଲଇ ଶ୍ରୀକୃଷ୍ଣ ସୁଣହେ ଭାବଗ୍ରାହିଂ
ଏରୁପେ ସଂସାର ଅଛ ତୁ ଭିଆଇଂ ॥୭୪୮୦॥
ମଛ କଛପ ବରେହା ନରସିଂହ
ବାମନ ପ୍ରସୁରାମ ରଘୁପତି ରଙ୍ଗା ଅବତାର ଗୋବିନ୍ଦ ॥୭୪୮୧॥
ଭାରତ ଭିୟାଇ ପୃଥିବି ଉସ୍ୱାସିବୁ
ନିଜ ଦେହ ତେଜିଣ ଦାରୁ ରୁପ ହେବୁ ॥୭୪୮୨॥

ବଉଦରୁପ ଧରି ବସିବୁ ନିଳକନ୍ଦ
ବହୁତ ପୁଜାଭୋଗ ପାଇବୁ କଳିଯୋଗ ॥୭୪୮୩॥
କଳିଯୋଗ ଜନେ ଦେଖି ନିସ୍ତରିବେ
ପୁଣି ସେହି ଦେହ ତେଜିବୁ ବାସୁଦେବେଂ ॥୭୪୮୪॥
ସୁଧର୍ମା କୋଳେ ଜନ୍ମି କିସୋରି ରାଜା ହେବୁ
ଖଡ଼ଗ ହସ୍ତେଂ ଧରି ଦୁଷ୍ଟ ନିବାରିବୁଂ ॥୭୪୮୫॥
ଦୁଷ୍ଟକୁ ନାସିବୁ ପାଳିବୁ ସନ୍ଥଜନ
କଲ୍କିଂ ରୁପେ ଅବତାର ଏ ରୁପେଂ ଭଗବାନ ॥୭୪୮୬॥
ସେତ ଶ୍ରୋଣିତ ପିତ ସ୍ୟାମ ବର୍ଣ୍ଣଚାରି
ଯୁଗକୁ ଯୋଗ ଜେ ଆନୁଆନ ରୁପ ଧରି ॥୭୪୮୭॥
ଶ୍ରୀକୃଷ୍ଣ ମୁଖଚାହିଁ ବୋଲନ୍ତି ଭଗବାନ
ତୁ ଜେ ବୋଇଲୁଂ କୁରୁ ପାଣ୍ଡବଙ୍କ ରଣ ॥୭୪୮୮॥
ଭାରତ ଯୁଦ୍ଧରେ କେହୁ ନାସ ଜିବେ
କେହୁ ଉବୁରିଣ ସଂସାରେ ରହିବେ ॥୭୪୮୯॥
ଏକଥା ମୋର ଆଗେ କହ ଗୋ ମହାମ୍ରାଣିଂ
ବୋଲନ୍ତି ଶ୍ରୀକୃଷ୍ଣ ଶୁଣହେ ଚକ୍ରପାଣିଂ ॥୭୪୯୦॥
ବଳି ବେଲାଉଳ ଭିମସେନ ସୁତ
ପ୍ରଥମେ ଭାରତ ସ୍ଥମ୍ଭରେ ସେହୁ ହେବ ଭକ୍ଷ ॥୭୪୯୧॥
ତଦନ୍ତେ କିରାତ ସବର ମୁଣ୍ଡକାଟି
କୌରୋବ ଥାଟେ ଭିସ୍ମେଂ ହେବେ ସେନାପତିଟି ॥୭୪୯୨॥
ଅବିସ୍ରାମ ସମର କରିବେ ଗାଙ୍ଗେୟ
ଦିନେକ ଦସ ସହସ୍ର ରଥି ବିନାସିବ ॥୭୪୯୩॥
ତାରାକ୍ଷି ଚଢ଼ାଇ ରାଜା କାମପାଳ
ସୋମଦତ୍ତ ସେତ ମୋହର ଦୁଲାଳ ॥୭୪୯୪॥
ବିକର୍ଣ୍ଣ ବଜ୍ରଲାଭ ବାଲମ୍ଭିକ ଜଗଜେଠି
ଏ ରୁପେଂ ଯୋଦ୍ଧା ଦଶଦିନେ ଲୋଟି ॥୭୪୯୫॥
ଦସ ଦିବସେ ଶ୍ରୀଖଣ୍ଡି ସେନାପତି ହେବେ
ତାହାକୁ ଦେଖିଣ ଭିସ୍ମ ସହସ୍ର ଛାଡ଼ିବେ ॥୭୪୯୬॥
ତଦନ୍ତେ ଦ୍ରୋଣଗୁରୁ ହୋଇବେ ସେନାପତି
ଜାଳାନ୍ଧର ଭୁଅକୁ ତୁ ନେବୁ ସର୍ବସାଚି ॥୭୪୯୭॥
ସକଟ ଭୁଅ ଏଣେ କରିବ ଗୁରୁଦ୍ରୋଣ
ଭୁଅ ଭେଦିବାକୁ ଜିବ ଅର୍ଜୁର୍ନ ନନ୍ଦନ ॥୭୪୯୮॥
ପଞ୍ଚାଣ୍ଡବେ ସହସ୍ର ସନ୍ୟ ସିର ଛେଦି
ପଡ଼ିବ ଅଭିମନୁ ଦସଦ୍ୱାର ଭେଦି ॥୭୪୯୯॥
ପୁତ୍ରର ନିଧନେ ପାଥ ହୋଇବ କୋପଭର
ଆରଦିନ ପଦ୍ମ ଭୁଅ କାଟିବେ ରକ୍ଷିର କୁମର ॥୭୫୦୦॥
ପଦ୍ମଭୁଅ ଭିତରେଂ ସୁଚି ଭୁଅ ରଞ୍ଚି
ତହିଂ ଲୁଚାଇବେ ସୁରଥର ବଛି ॥୭୫୦୧॥
ଅର୍ଜୁନ ସାତ୍ୱିକି ପବନକୁମର
ସମରେ ବିନାସିବେ ସନ୍ୟ ବୟାଶି ସାଗର ॥୭୫୦୨॥
ଭୁରିସର୍ବା ସହିତେ ରଥିଯୋଦ୍ଧା ଅନେକତ
ଆଦିତ୍ୟ ଅସ୍ତ ବେଳେଂ ପଡ଼ିବ ଜଦ୍ୟରଥ ॥୭୫୦୩॥
ସେହି ରାତ୍ରେ ପୁଣି ହୋଇବ ଘୋର ରଣ
ଗୋଳ ଯୁଦ୍ଧେଂ ମରିବେ ଅନେକ ସଇନ ॥୭୫୦୪॥
ସଙ୍ଗ ଉତ୍ତରକୁ ଘେନିଣ ପଡ଼ିବ ବିରାଟ
ବିରବାହୁ ଉଡ଼ଙ୍ଗ ଆବର ଦ୍ରୋପଦିର ତାତ ॥୭୫୦୫॥
ଦୁର୍ଯୋଧନ ସସୁର ପଡ଼ିବ ଭାନୁମତ
ତାର ସଙ୍ଗେ ପଡ଼ିବେ ତିନିସତ ରଥ ମାହୁନ୍ତ ॥୭୫୦୬॥
ଅସ୍ୱସ୍ଥମା ହତ ସୁଣି ଗୁରୁ ଛାଡ଼ିବେ ସହସ୍ର
ଦୃଷ୍ଟଦ୍ରୁମନ କାଟିବେ ତାହାଙ୍କର ମାଥ ॥୭୫୦୭॥
ତଦନ୍ତେ କର୍ଣ୍ଣ ରଥି ସେନାପତି ହେବ
କଳିଙ୍ଗସେନକୁ ଭିମସେନ ଉଡ଼ାଇବ ॥୭୫୦୮॥
ଭିମ ହସ୍ତେ ପଡ଼ିବେ ଦୁର୍ଯୋଧନ ସତେ ଭାଇଂ[1]
କର୍ଣ୍ଣ ସକତିରେ ଘଟଉତ୍କଟ ନାସଜାଇ ॥୭୫୦୯॥
ଅଢ଼ାଇ ଦିବସ କରିବେ କର୍ଣ୍ଣ ରଣ
ଅର୍ଜୁନ ସରେ ପଡ଼ିବ ସଙ୍ଗତେ ଘେନି ସନ୍ୟ ॥୭୫୧୦॥
ତଦନ୍ତେ ସେନାପତି ସାକଲ୍ୟ ନୃପବର
ଯୁଧିଷ୍ଟିଙ୍କ କୋପରେ ହୋଇବ ଅଙ୍ଗାର ॥୭୫୧୧॥
ତଦନ୍ତେ କୃପ ବ୍ରାହ୍ମଣ ସେନାପତି ହୋଇବେଟି
ନିଳଭୁଜ ବାଣେ ପାଥ ତାର ମୁଣ୍ଡକାଟି ॥୭୫୧୨॥
ସେହିଦିନ ଗୋଳଯୁଦ୍ଧ ହୋଇବ ଅପାର
ହାବୋଡ଼େ ନାସଯିବ ଲକ୍ଷ୍ମଣ କୁମାର ॥୭୫୧୩॥
ବ୍ୟାସ ସରୋବରେ ପସିବ ଦୁର୍ଯୋଧନ
ସିଂହନାଦେ ବାହାରିବ ମାରିବ ଭିମସେନ ॥୭୫୧୪॥
ତଦନ୍ତେ ସେନାପତି ଅଶ୍ୱସ୍ତମା ହେବ
ସେ ସନ୍ୟନାସି ଦୃଷ୍ଟଦୃମନକୁ କାଟିବ ॥୭୫୧୫॥
ପଞ୍ଚାଳ କୁମାରଙ୍କ ମୁଣ୍ଡନେବ ହାଣି
ପୁତ୍ରଙ୍କୁ ଦେଖି ସେ ମରିବ କୁରୁମଣି ॥୭୫୧୬॥
ରହିବେ ତେର ଜଣ ସମସ୍ତେ ଜିବେ ନାସ
ତଦନ୍ତେ କାଇଂସିକା କରିବେ ଦ୍ରୋଣସିସ ॥୭୫୧୭॥
ଅବସ୍ୟ ସେ ସର ଗୋଟିଏ ନାସିବ
ତହିଂକି କାହାକୁ ଦେବୁ ହେ ଗୋବିନ୍ଦ ॥୭୫୧୮॥

---

୧ । ଘ ପୋଥି – ଅନେଶ୍ୱତ ଭାଇ

ପଞ୍ଚୁ ପାଣ୍ଡବେ ତ ତୋହର ଅଙ୍ଗ ଅର୍ଦ୍ଧ
ବିଦୁର ନିର୍ଦ୍ଦୋସି ଧୃତରାଷ୍ଟ ଅନ୍ଧ ॥୭୫୧୯॥
କୃପ ବ୍ରାହ୍ମଣ ଅସ୍ୱସ୍ତମା ଚିରଂଜିବିଂ
ତୁହି ତ ଆଦିକର୍ତା ଅଟୁ ହୋ ଗୋବିନ୍ଦି ॥୭୫୨୦॥
କାଇଂସିକା ସରକୁ କେହିତ ଦିସୁନାଇଂ
କହ ହେ ମର ଆଗେଂ ତୁନି ହୋଇଲୁଂ କିମ୍ପାଇଂ ॥୭୫୨୧॥
ବଦନ୍ତି ଭଗବାନ ସୁଣଗୋ ମହାପ୍ରାଣି
ଆଗତ କଥାତ କହିଲୁଂ ବଖାଣି ॥୭୫୨୨॥
କାଇଂସିକା ସରକୁ କେହୁ ହେବ ରହ
ନକର ଗୋପତ ମୋ ଅଗ୍ରତେ କହିଥାଅ ॥୭୫୨୩॥
ଶ୍ରୀକୃଷ୍ଣ ବୋଇଲା ହରି ତୋତେ କି ଅଗୋଚର
ଯେବଣ ପୁତ୍ର ଥିବ ଉତରା ଗର୍ଭର ॥୭୫୨୪॥
ତାହାକୁ କାଇଁସିକା ସର ନାସିବ
ଗୋବିନ୍ଦ ବୋଇଲେ କୋଳ ତ ବୁଡ଼ିଯିବ ॥୭୫୨୫॥
ଶ୍ରୀକୃଷ୍ଣ ବୋଇଲା ନବୁଡ଼ିବ କୋଳ
ବ୍ରତିବ ନନ୍ଦନ ମରିବ ଝିଅ ମୋର ॥୭୫୨୬॥
ଜିବନ୍ୟାସ ମନ୍ତ୍ର ଦେଉଛି ଚକ୍ରଧର
ନ କହିବୁ କାହିଂ ରଖିବୁ ଗୋପତର ॥୭୫୨୭॥
ପଢ଼ିଲେ ମନ୍ତ୍ରକୁ ଜିଇଂବ ନନ୍ଦନ
ଏତେ କହି ଶ୍ରୀକୃଷ୍ଣ ଛାଡ଼ିଲା ଜିବନ ॥୭୫୨୮॥
ପୁଷ୍ପକ ବିମାନେ ବସି ସ୍ୱର୍ଗଗଲା
ଜେଣୁ ସେ ଭାରତ ମୁଖରେ କହିଲା ॥୭୫୨୯॥
ସଂକର ମୁଖ ଚାହିଂ ପଚାରେ ଗୌରି
ଭାରତ ଚରିତ କେମନ୍ତେ ଜାଣିଲା ବିରାଟର ନାରି ॥୭୫୩୦॥
ପୁର୍ବେ କେଉଂ ଜନ୍ମ ହୋଇଥିଲା ସେହିଂ
ସୁଣଗୋ ଓମା ବୋଲି ସଦାସିବ କହିଂ ॥୭୫୩୧॥
ସତ୍ୟଯୁଗରେ ସେ ସତ୍ୟବ୍ରତ ରାଜା
ସତ୍ୟାବତି ବୋଲିଣ ସେ ତାହାରି ଭାରିଜା ॥୭୫୩୨॥
ତ୍ରେତୟାରେ ସମ୍ଭୁ ବୋଲିଣ ନୃପବର
ସଂକତୋଳା ନାମେ ଭାରିଜା ତାହାର ॥୭୫୩୩॥
ଦ୍ୱାପରେଂ ସେହି ବିରାଟ ହୋଇଲା
ସଂକତୋଳା ବିରାଟ ଭାରିଜା ହୋଇଲା ॥୭୫୩୪॥
କଳିଯୋଗେ ଇନ୍ଦ୍ରଦୁମନ ହୋଇଲା ବିରାଟ
ଶ୍ରୀକୃଷ୍ଣ ଗୁଣ୍ଡିଚାରାଣି ହୋଇବ ତାର ପାଟ ॥୭୫୩୫॥
ସୁଣଗୋ ଓମା ବୋଲି ସଦାସିବ କହି
ଏ ରୁପେଂ ଶ୍ରୀକୃଷ୍ଣ ଯୋଗକୁ ଯୋଗ ହୋଇ ॥୭୫୩୬॥
ବୋଲନ୍ତି ଗିରିଜା ସୁଣହେ ସଦାସିବ
ଭାରତ କହି ଶ୍ରୀକୃଷ୍ଣ ଗମିଲାକ ସ୍ୱର୍ଗ ॥୭୫୩୭॥
ଏମନ୍ତ ପ୍ରକାରେ ମହାଭାରତ ରଣ ହୋଇଲା
ସୁଣିଲେ ତୁମ୍ଭ ମୁଖୁଂ ନିସ୍ତରିବି ଭଲା ॥୭୫୩୮॥

## ଶ୍ରୀକୃଷ୍ଣଙ୍କର ଦୂତ ଭାବରେ ହସ୍ତିନାପୁର ଗମନ

ସୁଣଗୋ ପ୍ରିୟା ବୋଲିଂ ସଦାସିବ କହିଂ
ଭାରିଜା ବିନାଶେ ବିରାଟ ସୋକ ବହିଂ ॥୭୫୩୯॥
ମେଲାଣି ମାଗି ଜେ ଗଲା ନିଜପୁର
ଗୋବିନ୍ଦ ମୁଖ ଚାହିଂ ଜେ ବୋଲନ୍ତି ଯୁଧିଷ୍ଟିର ॥୭୫୪୦॥
ଆଜ ହସ୍ତିନାକୁ କରିବ ଗମନ
ଦୁର୍ଯୋଧନକୁ ମାଗିବ ପଞ୍ଚଗ୍ରାମ ॥୭୫୪୧॥
ବ୍ୟାସ ବିଦୁର ଅଇଲେ ବାହୁଡ଼ି
ସେ ପୁଣି କହିଲେ ନ ଦିଲା ଦଣ୍ଡଧାରି ॥୭୫୪୨॥
ଶ୍ରୀହରି ବୋଇଲେ ଜେବେ ଗ୍ରାମ ସେ ନଦେବ
ତେବେ କି କରିବା ବୋଲନ୍ତି ବାସୁଦେବ ॥୭୫୪୩॥
ଯୁଧିଷ୍ଟି ବୋଇଲେ ଜେବେ ନଦେବ ମୋତେ ଗ୍ରାମ
ଅବସ୍ୟ କରିବା ହରି ଆମ୍ଭେଂ ଘୋର ରଣ ॥୭୫୪୪॥
ପୁର୍ବେ ଜେବେ ଅସ୍ତ ହୋଇବେ ଦିନକର[୧]
ପଶ୍ଚିମେ ଜେବେ ଉଦେ ହୋଇବେ ସସିଧର[୨] ॥୭୫୪୫॥
ପର୍ବତ ସିଖରେ ଜେବେ ଫୁଟିବ ନଳଣିଂ
ମଧୁର ହେବ ଜଦି ଲବଣ ଜଳ[୩] ପାଣିଂ ॥୭୫୪୬॥
ସ୍ତିରି ଜେବେ ପୁରୁଷ ଦିବସ ରଜନି
ଜଳ ଜେବେ ସ୍ଥକିତ[୪] ସିତଳ ବହନି ॥୭୫୪୭॥
ଏତେ କଥା ଜେବେ ସଂସାରେ ଜିବ ହୋଇ
ଜେବେ ଗ୍ରାମ ନ ଦେବ ସମର କରିବଇଂ ॥୭୫୪୮॥
ଭିମ ଅର୍ଜୁନ ନକୁଳ ସହଦେବ
ଗୋଟାଏ ଗୋଟାଏ କରି ପଚାରନ୍ତି ବାସୁଦେବ ॥୭୫୪୯॥
ପଞ୍ଚାଳିର ନିରାଧାର ସୁଣିଣ ଭଗବାନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୭୫୫୦॥
ଭ୍ରମନ୍ତେ ଭାବଗ୍ରାହିଂ ରଜନି ପାହିଲା
ପୁର୍ବଦିଗେଂ ଉଦଏ କସ୍ୟପର ବଳା ॥୭୫୫୧॥

---

୧ । ଘ ପୋଥି – ପଶ୍ଚିମେ ଯଦି ଉଦେ ହୋଇବେ ଦିନକର
୨ । ଘ ପୋଥି – ଅମାବାସ୍ୟା ନିଶିରେ ଯେବେ ଉଦୟେ ଶଶିଧର
୩ । ଘ ପୋଥି – ସିନ୍ଧୁ
୪ । ଘ ପୋଥି – ତପତ

ସାତ୍ୱିକିକି ଘେନି ସଙ୍ଗେ ଚକ୍ରଧର
ପ୍ରବେସ ହୋଇଲେ ନିଳକଳପ ବଟଠାର ॥୭୫୫୨॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ଶ୍ରୀହରି ଆଗତ ଜାଣିଲେ କୌରୋବ ॥୭୫୫୩॥
ବିଚିତ୍ର କରିଣ ନବର ମଣ୍ଡିଲେ
ଘରେ ଘରେ ସୁବର୍ଣ୍ଣ କଳସ ବସାଇଲେ ॥୭୫୫୪॥
ଗୋବିନ୍ଦ ଆଜ୍ଞାଦିଲେ ଜାଅରେ ସାତ୍ୱିକି
କୌରୋବଙ୍କ ବିଚାର ଦେଖି ଆସ ନିକି ॥୭୫୫୫॥
ଗୋବିନ୍ଦ ଆଜ୍ଞାରେ ମାଧବି ଚଳିଲା
ଇନ୍ଦ୍ରଭୁବନ ପ୍ରାଏ ହସ୍ତିନା ଦେଖିଲା ॥୭୫୫୬॥
ଦେଖିଲା ପୁର ମଣ୍ଡି ଅଛନ୍ତି କୌରୋବେଂ
ଦେଖିଣ ସାତ୍ୱିକି କହିଲା ହରି ଆଗେଂ ॥୭୫୫୭॥
ଶ୍ରୀହରି ବୋଇଲେ ଜାଅରେ ଦ୍ୱାରିକାକୁ
ଜାଉଅଛୁ ଏବେ ଆମ୍ଭେ ହସ୍ତିନା ଭୁବନକୁ ॥୭୫୫୮॥
ବ୍ୟାସଙ୍କୁ ସଙ୍ଗତେ ଘେନିଣ ଭଗବାନ
ପ୍ରବେସ ହେଲେ ଜାଇ ବିଦୁର ଭୁବନ ॥୭୫୫୯॥
ବିଦୁର ଦେଖିଣ କୃତକୃତ ହୋଇ
ଆସନ ଜୋଗାଇଲା ବସିଲେ ଭାବଗ୍ରାହିଂ ॥୭୫୬୦॥
ସମସ୍ତ ମୁନିମାନେ ଆସନେ ବସିଲେ
ସୌଚବନ୍ତ ହୋଇ କନ୍ଦମୁଳ ଭକ୍ଷିଲେ ॥୭୫୬୧॥
ସ୍ନାହାନ ସାରି ହରି ବସିଲେ ପିଢ଼ାମାଡ଼ି
ଅର୍ଣ୍ଣ ପରସଇ ବିଦୁରର ନାରି ॥୭୫୬୨॥
ଭୋଜନ ସାରି ହରି କଲେ ଆଞ୍ଚୋବନ
ତଦନ୍ତେ ବିଦୁର ସାମଗ୍ରି ଦିଏ ପୁଣ ॥୭୫୬୩॥
ଛେନା ନଟିକାଳ ସାକର ମିଠାଇ
ନଡୁ ଆରସା[୧] ନବାତ ମିସାଇ ॥୭୫୬୪॥
ବିଦୁର ଭୁଜାଂଉଛି ଭୁଜଂନ୍ତି ଭଗବାନ
ତଦନ୍ତରେ ରମ୍ଭାଫଳ ଯୋଗାଇଲା ପୁଣ ॥୭୫୬୫॥
ଅମୃତପାନି କଦଳି ଭୁଜଂନ୍ତି ଭାବଗ୍ରାହି
ଭୋଳେଂ ବିଦୁର ତୁଚ୍ଛା ହସ୍ତ ମୁଖେଂ ଦେଇ ॥୭୫୬୬॥
ଜାଣିଣ ଗୋବିନ୍ଦ ଜାଚିଲେ ତାକୁ ବର
ବିଦୁର ବୋଇଲା ହରି ଜୋଡ଼ିଣ ବେନିକର ॥୭୫୬୭॥
ବହୁତ ମୋତେ ମିଳିବେ ବନ୍ଧୁଜନ
ନପାଇବିଂ ଠାବ ମନ୍ଦିର ସକିଂର୍ଣ୍ଣ ॥୭୫୬୮॥
କରିବିଂ ଦ୍ୱିଜ ସେବା ଭଗତ ହୋଇଥିବିଂ
ଅଦିବସରେ ଜନ୍ମ ମୃତ୍ୟୁ ନପାଇବିଂ ॥୭୫୬୯॥

---

୧ । ଘ ପୋଥି – ନଡ଼ିଆଳି ଶାକର

ଅସ୍ତୁହେଉ ବୋଲିଂ ବୋଇଲେ ଭଗବାନ
କୋଇନ୍ତା ପ୍ରବେଶ ହୋଇ ମୁଖ କଲେ ସ୍ଥନସ୍ଥନ ॥୭୫୭୦॥
ଗୋବିନ୍ଦ ମୁଖ ଚାହିଂ କୋଇନ୍ତା ବୋଇଲେ
ତୋତେ ଆସ୍ରେ କରି ପୁତ୍ରେ ନିରେଖ ହୋଇଲେ ॥୭୫୭୧॥
ବୋଲନ୍ତି ବାସୁଦେବ ସୁଣଗୋ ଜନନି
ବନସ୍ତେ ଚଉଦ ବରସ ତୋ ପୁତ୍ର ବଞ୍ଚିଲେ ପୁଣିଂ ॥୭୫୭୨॥
ଉଦିତ ହୋଇ ଜେବେ ରହିଲେ ବାରୁଣାର
ପଡ଼ା ପାଞ୍ଚ ଖଣ୍ଡି ଏବେ ଦେବକି କୁରୁବିର ॥୭୫୭୩॥
ଆସିଅଛି ମାଗିତେ ଦେବକି ଦୁର୍ଯୋଧନ
ନଦିଲେ ସନ୍ଧିନାହିଂ ଅବସ୍ୟ ହେବ ରଣ ॥୭୫୭୪॥
କୋଇନ୍ତା ବୋଇଲେ ହରି ମୋହର ସପତ
କୁରୁ ପାଣ୍ଡେବଙ୍କର କରାଇବୁ ଅନର୍ଥ ॥୭୫୭୫॥
କଳି କଥା କହିବ ନକରିବ ସୋଧ
ହେଉ ହେଉ ବୋଲି ବୋଇଲେ ଗୋବିନ୍ଦ ॥୭୫୭୬॥
ସେ ଦିନ ଗୋବିନ୍ଦ ବିଦୁର ଘରେ ରହିଂ
ଆରଦିନ ସୌଚ ହୋଇ ହସ୍ତିନାକୁ ଯାଇ ॥୭୫୭୭॥
ବ୍ୟାସ ବିଦୁରକୁ ସଙ୍ଗତେ ଘେନିଲେ
ବାଟରେ ଗମନ୍ତେ ଧୃତିରାଷ୍ଟ୍ରକୁ ଦେଖିଲେ ॥୭୫୭୮॥
ଦେଖି ଅନ୍ଧ ନୃପ ହୋଇଲା କୃତାଞ୍ଜଳି
ସଜଂଏ ବୋଇଲା ରାଜା ଏହି ସେ ବନମାଳି ॥୭୫୭୯॥
କୋଟିଏ ଯୁଗ ଅନ୍ଧ ଦେଖିଲେ ଚକ୍ଷୁଦାନ ପାଇ
ସେହି ଭଗବାନ ତୋ ଆଗେଂ ଅଛି ରହି ॥୭୫୮୦॥
ଧୃତରାଷ୍ଟ୍ରି ବୋଲିଲେ ମୁଂ ଜାଣିଲି ସକଳ
ଏହି ସେ ହରି ମୋର ବୁଡ଼ାଇବ କୋଳ ॥୭୫୮୧॥
କି ସେବା କରିବିଂ ଅପୁର୍ବ କିଛି ନାହିଂ
ଲକ୍ଷ୍ମି ସରସ୍ୱତି ଜାହାର ଦାସି ହୋଇଂ ॥୭୫୮୨॥
ଗୋବିନ୍ଦେ ବୋଇଲେ ତୁ ରାଜା ଭାଗ୍ୟବନ୍ତ
ଜେଣୁ ଜାତ କରିଅଛୁ ପୁତ୍ର ଅନେସ୍ୱତ ॥୭୫୮୩॥
ଏତେ କହି ଗମିଲେ ଭଗତବସ୍ଛଳ
ପ୍ରବେସ ହୋଇଲେ କୌରୋବ ସଭାସ୍ଥଳ ॥୭୫୮୪॥
ସକୁଂନି ବୋଇଲା ନୃପତି ମୁଖଚାହିଂ
ନନ୍ଦଗଉଡ଼ ପୁଅ ଆସିଛି କହ୍ନାଇ ॥୭୫୮୫॥
ଯୁଧିଷ୍ଟିର ଦୁତ ହୋଇ ଆସୁଅଛି ସେଟି
ଏହିକ୍ଷଣି ମାଗିବ ପଡ଼ା ପାଞ୍ଚଗୋଟି ॥୭୫୮୬॥
ସତ୍ୟଯୁଗେଂ ବଳିପୁରେ ବାମନ ରୁପ ହୋଇ
ମାଗିଣ ତିନିପାଦ ତିନିପୁର ନେଇ ॥୭୫୮୭॥

ଏବେ ତୋ ସମ୍ପଦ ହରିବ ଗୋପାଳ
ସୁଚିମୁନେ ମହି ନ ଦେବୁ ମହିପାଳ ॥୭୫୮୮॥
ଏମନ୍ତ କହନ୍ତେ ଦେଢ଼ପ୍ରହର ଦିନ ହୋଇ
ସଭାତଳେ ଉଭା ତ୍ରୈଲୋକ୍ୟ ଗୋସାଇଂ ॥୭୫୮୯॥
ବ୍ୟାସ ବିଦୁର ଭିସ୍ମଂ ଦ୍ରୋଣ ଆଦି
ରାଜାକୁ କହିଲେ ସଭାକୁ ଆସନ୍ତୁ ଗୋବିନ୍ଦି ॥୭୫୯୦॥
ତ୍ରୈଲୋକ୍ୟ ଠାକୁରକୁ ନ କର ଜଞ୍ଜାଳ[୧]
ଆସୁ ବୋଲି ବୋଇଲେ ଧୃତିରାଷ୍ଟ୍ର ବାଳ ॥୭୫୯୧॥
ନୃପତି ଆଜ୍ଞାରେ ଦ୍ୱାରି ଛାଡ଼ି ପଥ
ନୃପତି ଛାମୁରେ ଜେ ମିଳିଲେ ଜଗନ୍ନାଥ ॥୭୫୯୨॥
ଦୁର୍ଯୋଧନ ବୋଇଲା ସୁଣ ହେ କହ୍ନାଇଂ
ଅନେକ ମହିମାଂ ଅଛି ତୋର ତହିଂ ॥୭୫୯୩॥
ବଢ଼ିଲୁଂ ନନ୍ଦଘରେ ହରିଲୁଂ ଗୋପାଳୁଣିଂ
ବହିଛୁ ସ୍ତିରିହତ୍ୟା ନାସିଲୁଂ ପୋହିଣି[୨] ॥୭୫୯୪॥
ଦିନେ ରାଧିକା ମନ୍ଦିରେ ତୁ ମିଳିଲୁଂ
ରାହିକି ରତିକରି ପଲଙ୍କେ ନିଦ୍ରାଗଲୁଂ[୩] ॥୭୫୯୫॥
ନନ୍ଦକୁ କହିବ ବୋଲି ଧାଇଂଲା ଚନ୍ଦ୍ରସେଣା
ମାୟା କଲୁଂ ସେହି ପଥ ହେଲା ବଣା ॥୭୫୯୬॥
କର୍ମ ଅକର୍ମ ତୁ ଅନେକ କରିଅଛୁଂ
ଗୋବିନ୍ଦେ ବୋଇଲେ ରାଜା ସେ କଥା କିପେଂ ବାଛୁ ॥୭୫୯୭॥
ତୋହର ପିତା ଧୃତିରାଷ୍ଟ୍ର ଅଟଇ
ବିସାସତେ କନ୍ୟା ତାହାର ନାମେ ନାସ ଜାଇ ॥୭୫୯୮॥
ମାତା ତୋ ବ୍ରହ୍ମ ଅସୁରି ଅନେକ ବର ମାଇଲା
ଗୋଲେକ ବୃକ୍ଷକୁ ଅଗ୍ରେଂ ବିଭା ହୋଇଲା ॥୭୫୯୯॥
ବନ୍ଧ୍ୟା ସ୍ତିରି ପୁତ୍ର ତୁ ଅନ୍ଧର ନନ୍ଦନ
କର୍କସ ମଧୁ ପିଙ୍ଗଳ ତୁ ରାଜା ଦୁର୍ଯୋଧନ[୪] ॥୭୬୦୦॥
ଏତେକାଳେ ପାଣ୍ଡବେ ହୋଇଲେ ଉଦିତ
ଦେବୁ ପଞ୍ଚୁଗ୍ରାମ ସେ ରହିବେ ପଞ୍ଚୁଭ୍ରାଥ ॥୭୬୦୧॥
ଦୁର୍ଯୋଧନ ବୋଇଲା ସେ କଥା ତୁ ଛାଡ଼
ବେଳ ତ ହୋଇଲାନି ଅଢ଼ାଇ ପହର ॥୭୬୦୨॥
ସ୍ନାହାନ କରି ଚାଲ ଭୁଜିଂବାକ ଅର୍ଣ୍ଣ
ବିଦୁର ଗୃହକୁ ଜାଉଛୁଂ ବୋଲି ବୋଇଲେ ଭଗବାନ ॥୭୬୦୩॥
ଦୁର୍ଯୋଧନ ବୋଇଲା ସେ ସୁଦ୍ରାଣି ଗର୍ଭେଜାତ
ତୁହି ନନ୍ଦ ଗଉଡ଼ପୁଅ ଦୁହେଂ ହୋଇଲ ଏକତ୍ୱ ॥୭୬୦୪॥

୧ । ଘ ପୋଥି – ଘଞ୍ଜାଳ
୨ । ଘ ପୋଥି – ପ୍ରୋହିଣି
୩ । ଘ ପୋଥି – ପହୁଡ଼ିଲୁ
୪ । ଘ ପୋଥି – କର୍ମ ଅକର୍ମ କରୁ ପଲଙ୍ଗା ନାରାୟଣ

ଦ୍ରୋଣଙ୍କର ପୁତ୍ର ଅସ୍ୱସ୍ତମା ଅର୍ଣ୍ଣ ରାନ୍ଧି
ତାହା ଛାଡ଼ି ବିଦୁର ଘରେ ଖାଉ ମାଗି ॥୭୬୦୫॥
ଶ୍ରୀହରି ବୋଇଲେ ଜାହା ଖାଇଲିଂ ଜିର୍ଣ୍ଣଗଲା
ସେ କଥା କିପାଇଂ ପଚାରୁ ଅନ୍ଧବଳା ॥୭୬୦୬॥
ମାନଗୋବିନ୍ଦ ବୋଇଲା ତୋ କୁଳମୁଳ ନାହିଂ
ଏତେ ବୋଲି ସଭାରୁ ଉଠିଲା କୁରୁସାଇଂ ॥୭୬୦୭॥
ନିଜ ମନ୍ଦିରେ ରହିଂ ସ୍ନାହାନ ଭୋଜନ
ବିଦୁରକୁ ଘେନି ଗମିଲେ ଭଗବାନ ॥୭୬୦୮॥
ସ୍ନାହାନ ସାରିଣ ସତକର୍ମ ସାରିଲେ
ରଜନି ହୁଅନ୍ତେ ନିଦ୍ରାରେ ରହିଲେ ॥୭୬୦୯॥
ପାହିଲା ରଜନି ଗୋବିନ୍ଦ ଉଠିଲେ
ସଉଚ ହୋଇଣ ହସ୍ତିନାକୁ ଗଲେ ॥୭୬୧୦॥
କୌରୋବ ସଭାରେ ପ୍ରବେସ ହୋଇଲେ ଜାଇ
ଜଗତି ଉପରେ ବସିଛି କୁରୁସାଇଂ ॥୭୬୧୧॥
ଭିସ୍ମ ଦ୍ରୋଣ କର୍ଣ୍ଣ ସଲ୍ୟ ଅଶ୍ୱସ୍ତମା
ଜଦ୍ୟରଥ ସୋମଦତ୍ତ କୃପ ଆଚାର୍ଯ କୃପବ୍ରହ୍ମା ॥୭୬୧୨॥
ଅଳନ୍ଧୁସ ଅଳାୟଧ ବାଲମ୍ବିକ ଯୋଦ୍ଧା
ଅଠାଣ୍ଡୋଇ ଭାଇ ଧରିଣଛନ୍ତି ଗଦା ॥୭୬୧୩॥
ରାଉତ ମାହୁନ୍ତ କେ ପାରିବ ଗଣି
ଦ୍ୱାଦସ କ୍ଷେଉଣି ସନ୍ୟ ଅଛନ୍ତି ତହିଂ ପୁଣି ॥୭୬୧୪॥
ଶ୍ରୀହରି ଜାଇ ବିଜେ କଲେ ଆସ୍ତାନର ତଳେଂ
ମାନଗୋବିନ୍ଦ ବୋଇଲା ବସ ହୋ ଗୋପାଳେଂ ॥୭୬୧୫॥
ଏକ ଦିନେ ଗୋପାଳେଂ ନନ୍ଦକୁ କହିଲେ
କେବଣ ଚୋର ବାବୁ ପ୍ରବଳ ଗୋପରେ ॥୭୬୧୬॥
ହରିଲା ଜୁବତିକିଂ ନିଲା ଆମ୍ଭ ଜାତିକି
ନନ୍ଦ ବୋଇଲା ଏବେ ରଖ ଚଉକି ॥୭୬୧୭॥
ରଜନି କୋଳେଂ ବାହାର ହୋଇବ ଜେଉଂ ନାରି
ତାହାକୁ ଦଣ୍ଡି ରାଜ୍ୟରୁ ଦେବାକ ଦୁରକରି ॥୭୬୧୮॥
ଏମନ୍ତ ବୋଇଲା ଜହୁଂ ନନ୍ଦ ମହାକୁଢ଼
ଗୋପଦାଣ୍ଡେ ଚଉକି ରହିଲେ ଗୋପାଳ ॥୭୬୧୯॥
ସନ୍ଧ୍ୟାକାଳ ହୁଅନ୍ତେ ଭାଳିଲା ରାଧିକା
କି ବୁଦ୍ଧି କରିବା ଗୋ ନଳିତା ବିସାଖା ॥୭୬୨୦॥
ତୁମେ ଚଳିଜାଅ ଆସିବ ରଜନି
ଦାମ ସୁଦାମ ଜେ ମୋହର ଭାଇବେନି ॥୭୬୨୧॥
ତାହାଙ୍କ ରୁପଧରି ହସ୍ତରେ ଘେନି ଲଉ ଛେନା
ଦ୍ୱାର ମାଡ଼ି ବୁଢ଼ି ବସିଥିବ ଜେ କିନା ॥୭୬୨୨॥

ତୁମ୍ଭଙ୍କୁ ଦେଖିଲେ ବୁଢ଼ି ଛାଡ଼ି ଦେବ ଦ୍ୱାର
ରହିବ ଗୃହେ ତୁମ୍ଭେ ମୁଁ ଜିବି କୁଜଂ ଘୋର ॥୭୬୨୩॥
ରାହିର ବଚନେ ବେନି ସଖି ଗଲେ
ନିଳ ଜରି ବାନ୍ଧିଣ ସାଜୁଁ ପହରିଲେ ॥୭୬୨୪॥
ସିରରେ ପଗଡ଼ି କଟିରେ ପାଟଡୋର
ଘେନିଲେ ଛେନାଲଡୁ ଆରିସା ସାକର ॥୭୬୨୫॥
ଚନ୍ଦ୍ରସେଣା ଦ୍ୱାରେ ପ୍ରବେସ ହେଲେ ଜାଇ
ଦ୍ୱାରେ ବସି ବୁଢ଼ି ପଚାରେ କେ କେ ତୁହି ॥୭୬୨୬॥
ମାୟା ପୁରୁଷେଂ ବୋଇଲେ ଆମ୍ଭେଂ ଚନ୍ଦ୍ରାବଳିଂ ଭାଇ
ବୃଷଭାନୁ ଘରେ ଉଛେବ ଥିଲା ହୋଇ ॥୭୬୨୭॥
ମାତା ଆମ୍ଭର ସର ପାମ୍ପୁଡ଼ି ଛନ୍ତି ଦେଇ
ବହେଣି କି ଦେଇ ଗମିବା ଏହି ରାତିହି ॥୭୬୨୮॥
ସୁଣିଣ ଦ୍ୱାର ଛାଡ଼ି ପଳାଇଲା ବୁଢ଼ି
ଲଳିତା ବିସାଖା ରାଧିକାଠାରେ ମିଳିଂ ॥୭୬୨୯॥
ଲଳିତାଠାରୁ ବେସ ରାଧିକା ପିନ୍ଧିଲେ
ପୁରୁଷ ବେସ ଧରି ବିସାଖା ସଙ୍ଗେ ଗଲେ ॥୭୬୩୦॥
ଗୋପଦାଣ୍ଡେ ଗୋପାଳେ ଅଛନ୍ତି ଚଉକି
କେ କେ ବୋଲି ରାଧିକା ବିସାଖା ଗଲେ ଡାକି ॥୭୬୩୧॥
ଗୋପାଳେଂ ବୋଇଲେ ଦେଖ ରାଜା ଆଜ୍ଞାରେଣ
ଉଜାଗ୍ରେଂ ବସିଅଛୁ ନକରି ସୟନ ॥୭୬୩୨॥
ଏହିରୁପେ ସପତ ଚଉକି ଡେଇଂ ଗଲେ
ଦାମ ସୁଦାମ ବୋଲି ଗୋପାଳ ଜାଣିଲେ ॥୭୬୩୩॥
ବୋଲଇ ଦୁର୍ଯ୍ୟୋଧନ ସୁଣହୋ କହ୍ନାଇ
କାଳନ୍ଦି କୁଂଜବନେ ତୁହି ଥିଲୁଂ ରହି ॥୭୬୩୪॥
ଚନ୍ଦ୍ରାବଳିକି ଦେଖି ତୁ ହେଲୁ ଉନମତ
ରମଣ କଲୁ ହରି ରାଧିକା ସଙ୍ଗତ ॥୭୬୩୫॥
ବହୁତ କ୍ରିଡ଼ାରଙ୍ଗ କଲୁ ଭାବଗ୍ରାହି
ଏବେ ଯୁଧିଷ୍ଟିର ଦୁତ ଅଛୁ ହୋଇ ॥୭୬୩୬॥
ରାଜା ପଣକୁତ ନୋହିଲୁ ଭାର୍ଜନ
ସିଙ୍ଘାସନ ମାଡ଼ି ବସିଲା ଉଗ୍ରସେନ ॥୭୬୩୭॥
ଧନ ସମ୍ପଦ ଗୃହେ ତୋର ନାହିଂ
ତେଣୁ ଦୁତ ପଣ କରିଛୁ କହ୍ନାଇ ॥୭୬୩୮॥
କାହାଣେ ପଣେଂ ଜେଉଂ ଦିନ ଜାହା ମିଳି
ତାହା ନେଇ କୁଟୁମ୍ବ ବଂଚାଉ ନରହରି ॥୭୬୩୯॥
ତୁହିତ ବଡ଼ଗିଲା ନ ପୁରେ ତୋର ପେଟ
ତେଣୁ ବିଦୁର ଘରେ ମାଗି ଖାଉ ଭାତ ॥୭୬୪୦॥
ବୋଲନ୍ତି କେସବ ରାଜା ତାହା କିପାଂ କହୁ
ଜେଉଂକାଳେ ଜାହା ସେ ହେତୁ ନାହିଂ ଆଉ ॥୭୬୪୧॥

ଶ୍ରୀହରି ବୋଇଲେ ମୃଗୟାକୁ ଗଲୁ କୁରୁମଣି
ହରିଲୁ କିରାତ ଭାରିଜା ସବରୁଣି ॥୭୬୪୨॥
ସୁଣିଣ ସବର ହୃଦରେ କୋପବହିଂ
ନାରାଜେ ନାସ କଲା ଅନେସତ ଭାଇ ॥୭୬୪୩॥
ଭାଇଙ୍କୁଂ ଘେନି ତୁ ପଡ଼ିଲୁ କୁରୁମଣି
ଦ୍ରୋଣ ପର୍ବତେ ଥିଲା ଫାଲଗୁନି ॥୭୬୪୪॥
ସବରକୁ ଜିଣି ତୁମ୍ଭଙ୍କୁ ଦିଲା ଜିବଦାନ
ଏବେ କହୁ ବଡ଼ାଇ ତୁହି ସେ ଦୁର୍ଯ୍ୟୋଧନ ॥୭୬୪୫॥
ମତେ ଜାହା କହିଲୁଂ ମୁହିଂ ସେ ଯୁଧିଷ୍ଟିର ଦୁତ
ମାଗଇ ପଞ୍ଚୁଗ୍ରାମ ଦିଅ କୁରୁନାଥ ॥୭୬୪୬॥
ଦୁର୍ଯ୍ୟୋଧନ ବୋଇଲା କି କି ପଡ଼ା ମାଗୁଂ
ବୋଲନ୍ତି ବାସୁଦେବ ସୁଣ ଆରେ ବାବୁ ॥୭୬୪୭॥
ଇନ୍ଦ୍ରପ୍ରସସ୍ତ ଜମପ୍ରସ୍ତ ଜଇନ୍ତିନା ବାରୁଣା
ହସ୍ତିନା ସହିତେ ପଞ୍ଚୁକଟକ ଦବୁ ସିନା ॥୭୬୪୮॥
ପାଣ୍ଡବେ ରାଜା ହେବେ ତୁମ୍ଭେ ହେ ଜିବ ବନ
ଏମନ୍ତ ବୋଲି ଜହୁଂ ବୋଇଲେ ଭଗବାନ ॥୭୬୪୯॥
ସକୁଂନି ହସିଲା ଦେଇ କରତାଳି
ସମ୍ପଦ ଜାକ ନେବ ତୁମ୍ଭର ଏ ବନମାଳି ॥୭୬୫୦॥
ଦୁର୍ଯ୍ୟୋଧନ ବୋଇଲା ଗଉଡ଼କୁ ମାର
ମାର ମାର ବୋଲନ୍ତେ ସଇନି ପିଟିଲେ ଗଦାବର ॥୭୬୫୧॥
ପିଟିଲେ ଜଗନ୍ନାଥେ ସହି ନପାରିଲେ
ମଛ କଛପ ବରେହା ବାମନ ହୋଇଲେ ॥୭୬୫୨॥
ଅନେକ ଅବତାର ହୋଇଲେ ଦଇତାରି
ଦୁର୍ଯ୍ୟୋଧନକୁ ଚାହି ସକୁଂନି ଆଖିଠାରି ॥୭୬୫୩॥
କେତେ କେତେ ରୁପ ହେଉଛି ନନ୍ଦବଳା
ନୃପତି ବୋଇଲା ସେ ମାଡ଼କୁ ଭୟ କଲା ॥୭୬୫୪॥
ଦେବତା ପ୍ରସଂସିଲେ ଧନ୍ୟରେ କୌରୋବେ
ହରିର ଅବତାର ଦେଖିଲେ ନୟନରେ ॥୭୬୫୫॥
ସୁଣଗୋ ଓମା ବୋଲି ବୋଲନ୍ତି ମହେସ
ଗୋବିନ୍ଦ ରୁପ ଦେଖି କୌରୋବେ କଲେ ହାସ୍ୟ ॥୭୬୫୬॥
ନୃସିଂହଂ ରୁପ ଜହୁଂ ଜଗନ୍ନାଥ ହେଲେ
ଡରେ ସଭାରୁ ଉଠି କୌରୋବେ ପଳାଇଲେ ॥୭୬୫୭॥
ବ୍ୟାସେ ବିଦୁର ଭିସ୍ମ ଦ୍ରୋଣ ଚାରିଜଣ
ରହିଲେ ଏମାନେ ସବୁ ପଳାଇଲେ ପୁଣ ॥୭୬୫୮॥
ପଳାନ୍ତେ କୌରୋବ ଗୋବିନ୍ଦ ତୋସ ହୋଇ
ସୁଣଗୋ ଓମା ବୋଲି ସଂକର ଗଲେ କହି ॥୭୬୫୯॥

ଅନ୍ତସ୍ୱରେ ଜାଇ ମିଳିଲା କୁରୁପତି
କରଜୋଡ଼ି ଆଗେଂ ପ୍ରବେସ ଭାନୁମତି ।।୭୬୬୦।।
ବୋଇଲା ନୃପତି ହେ କଲ ଅବେଭାର
ଗ୍ରାମ ମାଗିବାକୁ ଜେ ଅଇଲେ ଚକ୍ରଧର ।।୭୬୬୧।।
ବେନି ପଡ଼ା ଦିଅ ଜାଆନ୍ତୁ ଗୋବିନ୍ଦ
ପାଣ୍ଡବେ ରହନ୍ତୁ ନୋହୁ ପରମାଦ ।।୭୬୬୨।।
ଭାନୁମତି ବଚନେ ବୋଇଲା କୁରୁସାଇଂ
ବିନା ସମରେ ମୁଂ ସୁଚିମୁନେ ନ ଦେବଇଂ ।।୭୬୬୩।।
ଦୁତପଣେ କହ୍ନାଇ ଗଉଡ଼ ଆସିଅଛି
ମାଡ଼ ଡରେ କେତେ ରୁପ ହୋଇଲାରେ ସଖି ।।୭୬୬୪।।
ବୋଲଇ ଭାନୁମତି ସୁଣହେ ନୃପନାଥ
ମାୟାବି ପୁରୁଷେଂ ଅଟନ୍ତି ଜଗନ୍ନାଥ ।।୭୬୬୫।।
ତୁମ୍ଭେଂ ଜେ ବୋଇଲ ମୁଂ ସୁଚିମୁନେଂ ନଦେବି
ପୁର୍ବକଥା ସୁଣ ସଂସର୍ପି କହିବିଂ ।।୭୬୬୬।।
ସମସାନ ଭୁମିକି ସୁଦ୍ର ରାଉଳ ଚସିଲା
ଭୁତ ଗୋଳ କରନ୍ତେ ମହାଜାଲରେ ବାନ୍ଧିଲା ।।୭୬୬୭।।
ଭୁତ ବୋଇଲେ କିପାଂ ବାନ୍ଧୁ କହ ଆମ୍ଭ ଆଗେଂ
ରାଉଳ ବୋଇଲା ତିନିସାଠି ପଉଟି ଖସା ଦେବ ତୁମ୍ଭେ ।।୭୬୬୮।।
ଦେବୁ ବୋଲିଂ ସମସ୍ତେ କଲେ ସନମତ
ସୁଣି କୋପକଲା ତାଙ୍କ ନୃପତି ବାବନାଭୁତ ।।୭୬୬୯।।
ରାଉଳ ପୁତ୍ରକୁ ବାବନାଭୁତ କୋପକରି
ମହାଜାଲ ଘେନିଣଂ[1] ବାମନାଭୁତକୁ ବାନ୍ଧି ଧରି ।।୭୬୭୦।।
ମାରନ୍ତେ ବାମନାଭୁତ ତାକୁ ଡାକ ଦେଲା
ରାଉଳ ବୋଇଲା ତିନିସାଠି ପଉଟି ତିଳଦେବୁ ଛଡ଼ା ଭଲା ।।୭୬୭୧।।
ଦେବି ବୋଲି ବାମନା ବୋଇଲା ହେଉ ହେଉ
ଅଇଣ୍ଠା ଚଣ୍ଡକୁ ଲଗାକରି ମୁକଳିଗଲା ସେହୁ ।।୭୬୭୨।।
ନାସ୍ତି କରିବିଂ ବୋଲି ବାମନାଭୁତ ଜାଇଥିଲା
ଅଛଡ଼ା ତିଳକୁ ଛଡ଼ା ତିଳ ଦେଇଗଲା ।।୭୬୭୩।।
ଆହୁରି କଥାଏ ସୁଣହେ ନୃପତି
ମହାବଳି ସିଂହ ବନସ୍ତେ ଅଛନ୍ତି ।।୭୬୭୪।।
ଦିନେକ ଏକ ଜିବ ମାରିଣ ସେ ଭକ୍ଷଇ
ସଂସା ପାଳି ପଡ଼ିଲା ଗମନ କରି ଜାଇ ।।୭୬୭୫।।
ଗମନ୍ତେ ଏକ କୁପେଂ ବାଟେ ସେ ଦେଖିଲା
ନବତନ ରାଜା ବୋଲି ସିଂହଠାରେ କହିଲା ।।୭୬୭୬।।
ସିଂହ ବୋଇଲା ମୁଂ ଅଟଇ ଏକାଗ୍ର ନୃପତି
କହିଦିଅ କେଉଁଠାରେ ସିଂହରାଜା ଅଛିଟି ।।୭୬୭୭।।

୧ । ଘ ପୋଥି – କରିଣ ରାଉଳ

ଏତେ ବୋଲି ସଂସା ଆଗେଂ ସିଂହ ପଛେ ଜାଇ
ଏହି କୋପରେ ନୁଚିଲା ବୋଲି ସଂସା ଦିଲା କହିଂ ।।୭୬୭୮।।
କୋପ ମଧ୍ୟେ ସିଂହ ଚାହିଂଲା ଜଳକୁ
ଆପଣା ଛାଇ ଦିସିଲା ତାହାକୁ ।।୭୬୭୯।।
ବିଚାରିଲା କୋପରେ ନାସିବି ତାହାକଇ
ହୋଇବିଂ ଏକାଗ୍ର କୁପରେ ପଡ଼େ ଡେଇଂ ।।୭୬୮୦।।
କୁପରେ ପଡ଼ନ୍ତେ ସିଙ୍ଘ ପ୍ରାଣ ଗଲା
କହଇ ଭାନୁମତି ସୁଣହେ କୁରୁରାଜା ଭଲା ।।୭୬୮୧।।
ସଂସା ବୁଧିରେ ସିଂହ ମରି ଅଛଇ
ନିକି ସେହିକଥା ତୁମ୍ଭକୁ ହୁଅଇ ।।୭୬୮୨।।
ତୁମ୍ଭେଂ ଜେ ବୋଇଲ ମୁଂ ନ ଦେବି ସୁଚିମୁନ
ନିକି ପାଣ୍ଡବେ ନିଅନ୍ତି ପଞ୍ଚୁଗ୍ରାମ ।।୭୬୮୩।।
ଦୁର୍ଯୋଧନ ବୋଇଲା ତୁ ଅଟୁ ସଭାବେ ସ୍ତିରି
ମୋହର ମହିମାରେ ନ ଯାଣୁଂ ସୁନ୍ଦରି ।।୭୬୮୪।।
କହୁଂ କହୁଂ ତୃତିୟ ପ୍ରହର ଦିନକର
ଅଭିମାନେ ଲକ୍ଷ୍ମିଂକି ଡାକିଲେ ଚକ୍ରଧର ।।୭୬୮୫।।
ଦ୍ୱାରିକା ଭୁବନେ ପ୍ରବେସ ହୋଇଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ।।୭୬୮୬।।
ଦୁର୍ଯୋଧନ ବୋଇଲା ସଙ୍କୁନି ମୁଖ ଚାହିଂ
କାହିଂଗଲା ନନ୍ଦପୁଅ ଗଉଡ଼ କହ୍ନାଇ ।।୭୬୮୭।।
ସଙ୍କୁନି ବୋଇଲା ସେ ଗଲାନି ପଳାଇ
କାଣି ଭାରିଜାକୁ ସଙ୍ଗତେ ଘେନି ଜାଇ ।।୭୬୮୮।।
ଧୃତିରାଷ୍ଟ ବୋଇଲା ଜେବେ ଲକ୍ଷ୍ମିଂକି ନିଲେ ହରି
ଜାଣିଲିଂ ସମ୍ପଦ ସରିଲା ମୋହରି ।।୭୬୮୯।।
କୁଳକ୍ଷଏ ମନ୍ତ୍ରି ସେ ଅଟଇ ସଙ୍କୁନି
ଜାଣିଲିଂ କୁରୁବଂଶ ବୁଡ଼ାଇବ ପୁଣିଂ ।।୭୬୯୦।।
ସଙ୍କୁନି ବୋଇଲା ତୋର ବେନିଚକ୍ଷୁ ନାହିଂ
ରଜନି ଦିବସ ଏକତ୍ୱ ମଣୁ ତୁହିଂ ।।୭୬୯୧।।
ସୁକଳ ପକ୍ଷ ତିଥିକୁ ମଣୁ ତୁ ଅନ୍ଧାର
ଚନ୍ଦ୍ରର ଜୋତି ତୁ ନ ଦେଖୁ ନୟନର ।।୭୬୯୨।।
ପାଣ୍ଡବେ ଅନ୍ଧାର ତୋ ପୁତ୍ରେ ଚନ୍ଦ୍ରମା
ଚନ୍ଦ୍ରମା ଉଇଂଲେ କି ଅନ୍ଧାର ରହେ କିନା ।।୭୬୯୩।।
ମହିଭେଦି ଭିସ୍ମ ଭୁଅଭେଦି ଦ୍ରୋଣ
ସଲ୍ୟ ଅଷ୍ଟରଥିଂ[1] ଭାରୋଇମଲ କର୍ଣ୍ଣ ।।୭୬୯୪।।
ଅସ୍ୱସ୍ତମା ତ୍ରିଜିବି କୃପ ଆଚାର୍ଯ ମହାରଥି
ଯଦ୍ୟରଥ ହସ୍ତେଂ ପାଣ୍ଡବେ ଜୟେଶକ୍ତି ।।୭୬୯୫।।

୧ । ଘ ପୋଥି – ଆଷ୍ଟ ରଥି

ଅଳମ୍ବୁସ ଅଳାୟଧ ଶତୃଙ୍କର କାଳ
ସୋମଦତ୍ତ ବାଲମ୍ବିକ କ୍ଷତ୍ରିଂ[1] ଅନର୍ଗଳ ||୭୬୯୬||
ଭଗଦତ୍ତ ମହିମା କି ଅବା କହିବା
ଭୁରିସର୍ବା ଅଟଇ କୌରୋବ କୁଳବୃଦ୍ଧା ||୭୬୯୭||
ଦୁସାସନ ଯୁଦ୍ଧକୁ ଡରଇ ମଘବାନ
ତାହା ଆଗେ ପାଣ୍ତବେ ନୋହିବେ ରହମାନ ||୭୬୯୮||
ଅନେସ୍ୱତ ଭାଇ ଏକାଦସ କ୍ଷେଉଣିଂ
ଆବର ସାହି ଅଛି ତ୍ରିଗତ ନୃପମଣିଂ ||୭୬୯୯||
ଜେଷ୍ଟପୁତ୍ର ତୋହର ମାନଗୋବିନ୍ଦ ନାମ
ହସ୍ତରେ ଅଛି ତାହାର ସଙ୍ଖ ପଦ୍ମ ଚିହ୍ନ ||୭୭୦୦||
ପାସାଣରେ ହସ୍ତଦିଲେ ସୁବର୍ଣ୍ଣ ହୋଅଇ
ଚାଲନ୍ତେ ପଦ୍ମପୁଷ୍ପଂ ମହିରେ ଫୁଟଇ ||୭୭୦୧||
ଲକ୍ଷେ ନୃପତି ମଧ୍ୟେ ଅଟଇ ଜେ ସାର
ଆବର ଅଛଇ କୋଟିଏ ଭଣ୍ତାର ||୭୭୦୨||
ସାହି ରାଜାମାନେ ଅଛନ୍ତି ଅଲେଖା
ପାଣ୍ତବେ ପାଞ୍ଚଭାଇ କେହିନାହିଂ ସାଖା ||୭୭୦୩||
ନାହିଂ ସନ୍ୟବଳ ଭଣ୍ତାରେ ନାହିଂ ଧନ
କେବଳ କାହ୍ନୁଆ ଗଉଡ଼ ଅଛି ସାହି ପୁଣ ||୭୭୦୪||
ଜେବଣ ଗୋପାଳ ଜାରାସନ୍ଧର ଭୟେ
ସାହେର ଭିତରେ ଘରକରି ରହେଂ ||୭୭୦୫||
ସୁଦ୍ରାଣିର ସୁତ ବିଦୁର ଅଟଇ
ପାଣ୍ତବଙ୍କୁ ସେ ସାହା ସାମର୍ଥ ନୋହଇ ||୭୭୦୬||
କୈବର୍ତସୁତ ବ୍ୟାସ ପାଣ୍ତେବର ଦୁତ
ଅଧେ ଗ୍ରନ୍ଥ ଛାଡ଼ିଣ ଥୋକାୟେ ପଢ଼େ ପାଠ[2] ||୭୭୦୭||
ଯୁଧିଷ୍ଟି ବୋଲି ଜେହୁଂ ନଜାଣେ ଧନୁର୍ବିଦ୍ୟା
ଭିମ ଧନୁ ନଧରେ ଧରିଥାଇ ଗଦା ||୭୭୦୮||
ବହୁତ ଶତୃ ଦେଖି ଅର୍ଜୁନ ଡରଇ
ସହଦେବ ମନ୍ତ୍ରି ଜାଣି ନ କହଇ ||୭୭୦୯||
ମାଦ୍ରିର ସୁତ ନକୁଳ ଅତି ହିଂ ସୁକୁମାର
ନିତି ଦେହେଂ ନିପଇ ଚନ୍ଦନ ସତେ ପଳ ||୭୭୧୦||
ସମରକୁ ପାଣ୍ତବେ ନୋହିବେ ଭାର୍ଜନ
ସାଗର ସମାନେ ଜେ ଆମ୍ଭର ଅଟେ ସନ୍ୟ ||୭୭୧୧||
ରାଜ୍ୟ ନପାଇ ପାଣ୍ତବେ ବନବାସ ଜିବେ
ପଞ୍ଚୁ କଟେକ ଭୋଗ୍ୟ କରିବା ଜେ ଆମ୍ଭେଂ ||୭୭୧୨||

୧ । ଘ ପୋଥି – ରଣେ
୨ । ଘ ପୋଥି – ଛାଡ଼େ ପାଠ

କହଇ ଧୃତିରାଷ୍ଟ୍ର ସୁଣରେ ସଙ୍କୁନି
ତ୍ରେତୟା ଯୋଗକଥା ସୁଣ କହିବିଂ ମୁଂ ପୁଣିଂ ||୭୭୧୩||
କୁମ୍ଭେକ ଦୈତ୍ୟଥିଲା ନାସିଲେ ନାରାୟେଣ
ତାହାର ଜନ୍ମିଥିଲେ ତୃତିୟ ନନ୍ଦନ ||୭୭୧୪||
ମାଳି ମାଲ୍ୟବନ୍ତ ସୁମାଳି ନାମ ତିନି
ମାଳି ମାଲ୍ୟବନ୍ତକୁ ନାସିଲେ ଚକ୍ରପାଣିଂ ||୭୭୧୫||
ପାତାଳ ଭୁବନେ ସୁମାଳି ଥିଲା ରହିଂ
କାଳେ ଭ୍ରମନ୍ତେ ବିସର୍ବା ରୁଷିକି ଭେଟଇ ||୭୭୧୬||
ଋଷିଙ୍କି ଘେନିଜାନ୍ତେ ବିକଳ ତପସାଇଂ
ଦୈତ୍ୟ ବୋଇଲାରେ ରହିଛୁ ପିତା ମହିଂ ||୭୭୧୭||
ମୋ ପିତା ଭୁବନ ଅଟଇ ଲଙ୍କାପୁର
ତୁହିଂରେ ଅଛୁ ଧନ ଦିୟ ଲକ୍ଷେଭାର ||୭୭୧୮||
ମୁନି ବୋଇଲେ ମୋର ଭଣ୍ତାରେ ଧନ ନାହିଂ
ଦାନେବ ବୋଇଲା ମୋହୋର ହୁଅତୁ ଜୁଆଇଂ ||୭୭୧୯||
ତିନିଗୋଟା ଦୋହିତାକୁ କରିବି ପ୍ରଦାନ
ଜଉତୁକ ଦେବି ମୁଂ ଏ ଲଙ୍କା ଭୁବନ ||୭୭୨୦||
ତିନି କନ୍ୟାକୁ ବିଭା ହୋଇ ରହିଲେ ମୁନିବର
କାଳେଂ କନ୍ୟାଗର୍ଭୁ ଉପୁଜିଲେ କୁମର ||୭୭୨୧||
ନଉକେସି ଗର୍ଭରୁ ରାବଣ କୁମ୍ଭକର୍ଣ୍ଣ
ସୁପଲେଖି ବୋଲିଣ ଦୋହିତାଏ ଜନ୍ମ ||୭୭୨୨||
ଉନ୍ମିଳାଠାରୁଂ[1] ବିଭିସେଣ ମନୁମଥ[2]
ଉଗ୍ରତାରା ବୋଲିଣ ଏକଇ ଦୋହିତ ||୭୭୨୩||
ମାଳତୀଠାରୁ ଖର ଦୁଷଣ ଜାତହେଲେ
ମଳୟ ବୋଲିଣ ଏକ ଦୋହିତାଏ ଜନ୍ମିଲେ ||୭୭୨୪||
ରାବଣ କୁମ୍ଭକର୍ଣ୍ଣ ବିଭିଷେଣ ଆଦି
ବନସ୍ତେ ତପସାଧିଲେ ସେବିଲେ ବେଦବାଦି ||୭୭୨୫||
ବହୁତ କଠୋରେ ବିଧାତା ଦିଲେ ବର
ଛପନଗଣ୍ତା ଜୁଗକୁ ଆୟୁଷ ପାଇଲା ଦସସିର ||୭୭୨୬||
କୁମ୍ଭକର୍ଣ୍ଣ ନିଦ୍ରା ବିଭିଷେଣ ଭକ୍ତି
ଏ ରୁପେ ବର ତାଙ୍କୁ ଦିଲେ ବେଦପତି ||୭୭୨୭||
ବୈଶ୍ରବଣକୁ ଘଉଡ଼ି ବସିଲେ ଲଙ୍କାମାଡ଼ି
ପୁଷ୍ପବିମାନେ ବସି ରାବଣ ସାଧିଲା ତିନିପୁରି ||୭୭୨୮||
ଦେବଲୋକ ନାଗଲୋକ ମାନବଙ୍କ ରାଜା
ସମସ୍ତଙ୍କୁ ରାବଣ ବନ୍ଦିକଲା ଜା ଜା[3] ||୭୭୨୯||

୧ । ଘ ପୋଥି – ନିର୍ମଳାଠାରୁ
୨ । ଘ ପୋଥି – ମନୁରଥ
୩ । ଘ ପୋଥି – ସଭାରେ ବନ୍ଦୀ କଲା

ରାବଣର ଗର୍ବ ଦେବେ ସହି ନପାରିଲେ
ବାସୁଦେବ ଅଗ୍ରତେ ଗୁହାରି ଦେବେ କଲେ ॥୭୭୩୦॥
ସୁଣି ବାସୁଦେବ ଦେବଙ୍କୁ ଦୟାବହିଂ
ଦସରଥ ବିର୍ଯେ ଜନମ ହେଲେ ମହିଂ ॥୭୭୩୧॥
ରାମ ଲକ୍ଷ୍ମଣ ଭରତ ଶତୃଘନ
ଜନେକ ଝିଅଙ୍କୁ ବିଭା ହୋଇଲେ ଶ୍ରୀରାମ ॥୭୭୩୨॥
ଖଳକଥା ସୁଣି ବାହାର ରଘୁମଣିଂ
ଭାଇ ଭାରିଜାଙ୍କୁ ସଙ୍ଗତରେ ଘେନି ॥୭୭୩୩॥
ସୁଣଗୋ ଓମା ବୋଲିଂ ବୋଲନ୍ତି ସୁଳସାଇଂ
ସିତ୍ୟାଙ୍କୁ ରାବଣ ନିଲାକ ଚୋରାଇ ॥୭୭୩୪॥
ବାରତା ପାଇ ରାମ ବାନ୍ଧିଲେ ସେତୁବନ୍ଧ
ରାବଣ ସଙ୍ଗତେ ରାମ ଲଗାଇଲେ ବାଦ ॥୭୭୩୫॥
ଅଠାରଗଣ୍ଡା ପୁତ୍ର ତେରସତ ନାତି
ଏତେକ ମରାଇ ଏକା ରହିଲା ଲଙ୍କପତି ॥୭୭୩୬॥
ଜେଣୁ ନିକଟ ରାବଣ ମୃତ୍ୟୁ ହେଲା
ମାତଳି ହସ୍ତେ ଦେବରଥ ଇନ୍ଦ୍ର ପ୍ରବର୍ତ୍ତିଲା ॥୭୭୩୭॥
ଦେବରଥେଂ ବସି କୌସୁଲା କୁମର
ପେସିଲେ ବ୍ରହ୍ମସର ମଲା ଦସସିର ॥୭୭୩୮॥
ବିଭିଷେଣଙ୍କୁ ରାମ ଦିଲେ ଲଙ୍କାରାଷ୍ଟ୍ର
ସୁଣ ହୋ ସଙ୍କୁନି ବୋଲି ବୋଇଲା ଧୃତିରାଷ୍ଟ୍ର ॥୭୭୩୯॥
ପଞ୍ଚବିଂସରେ ସତେକ ହୁଅଇ
ଦସସତରେ ସହସ୍ରେ ବୋଲାଇ ॥୭୭୪୦॥
ସତେ ସହସ୍ରେଂ ହୁଅଇ ଏକଲକ୍ଷ ॥୭୭୪୧॥
ସତେଲକ୍ଷରେ ହୁଅଇ ଅହିବ୍ରତ
ଦସ ଅହିବ୍ରତେ ବୋଲାଇ ମଭୁତ ॥୭୭୪୨॥
କୋଡ଼ିଏ ମଭୁତେ ବୃନ୍ଦେକ ବୋଲାଇ
ଲେଖିଲେ ସାତବୃନ୍ଦେ ଖର୍ବେକ ହୋଅଇ ॥୭୭୪୩॥
ସତେ ଖର୍ବେଂ ଉହାଣେକ ଜେ କହିଂ
ସତେକ ଉହାଣେ କାଠିଏକ ବୋଲାଇ ॥୭୭୪୪॥
ଚୌରାସି କାଠିରେ ଅଙ୍କୁସେ ହୋଅଇ ॥୭୭୪୫॥
ସତେଂ ଅଙ୍କୁସରେ ରାବଣ ସଇନି
ଅଙ୍କୁସେ ରଖି ସବୁ ନାସିଲେ ରଘୁମଣିଂ ॥୭୭୪୬॥
ଯେବଣ ରଘୁନାଥ ନାସିଲେ ଦସାନନ
ସେହି ରଘୁନାଥ ଏବେ ଦେବକି ନନ୍ଦନ ॥୭୭୪୭॥
ଭାରା ଉସ୍ୱାସିତେ ଜନ୍ମିଛନ୍ତି ମହିର
ପାଳିବ ସନ୍ଥଜନ ଛେଦିବ ଦୁଷ୍ଟଭାର ॥୭୭୪୮॥

୧ । ଘ ପୋଥି – ସତର

ତୁ ଜେ ବୋଇଲୁଂ ପାଣ୍ଡବେ ସିନା ଏକା
ବହୁତ ସନ୍ୟ ଆମ୍ଭଙ୍କୁ ହୋଇଛନ୍ତି ସାଖା ॥୭୭୪୯॥
ଜେଣୁ ପାଣ୍ଡେବଙ୍କୁ ଜଗନ୍ନାଥେ ସାହିଂ
ସମସ୍ତେ ନାସଯିବେ ପାଣ୍ଡବେ ଥିବେ ରହିଂ ॥୭୭୫୦॥
ତୁହୋ ସଙ୍କୁନି କହୁଛୁ କୁଟ ବୁଧି
ଏକଇ ସହୋଦରେ କରାଇ ବିବାଦି ॥୭୭୫୧॥
ସୁଝିବୁ ପିତୃରୁଣ କୁଳ ମୋ କରି ନାସ
କେବଳ ଲଭିବି ମୁଂ ଅପୁତ୍ରିକ ଦୋସ ॥୭୭୫୨॥
ସଙ୍କୁନି ବୋଇଲା ତୁ ପରପଞ୍ଚ ମନ୍ଦ
ଅନ୍ଧ ହୋଇ ପୁତ୍ରକୁ ପାଞ୍ଚୁ ପରମାଦ ॥୭୭୫୩॥
କେବଳ ପିତା ପୁତ୍ରକୁ ପାଞ୍ଚନ୍ତି କଲ୍ୟାଣ
ତୁହି ବୋଲୁଂ ପୁତ୍ରଙ୍କର ଦେଖିବି ମରଣଂ ॥୭୭୫୪॥
ଏମନ୍ତ ପିତା ମୁଖ କୁମର ନ ଚାହିଂ
ସୁଣ ହୋ ଧୃତିରାଷ୍ଟ୍ର ସଙ୍କୁନି କହଇ ॥୭୭୫୫॥
ସୁରସେନ ବୋଲିଣ ଏକଇ ରାଜନ
ତାହାର ଜନ୍ମିଥିଲେ ସତେକ ନନ୍ଦନ ॥୭୭୫୬॥
ନିତି ଗଙ୍ଗାଜଳେ ସ୍ନାହାନ କରଇ
ସାଠିଏ ଯୋଣ ପଥରୁ ଜଳ ନେନ୍ତି ବହିଂ ॥୭୭୫୭॥
ଦିନେ ପୁତ୍ରଙ୍କୁ ଆଜ୍ଞାଦିଲା ନୃପରାଣ
ନବରଠାକୁ ତୁମ୍ଭେ ଗଙ୍ଗାକୁ ଖୋଳି ଆଣ ॥୭୭୫୮॥
ଏହିଠାରେ ରହି କରିବି ସ୍ନାହାନ
ସୁଣିଣ ଗଙ୍ଗାକୁ ଖୋଳି ଆଣିଲେ ନନ୍ଦନ ॥୭୭୫୯॥
ଖୋଳି ନପାରି ପିତାଙ୍କୁ କହିଲେ
ପିତା ବୋଇଲେ କିପାଂଇ ବାହୁଡ଼ିଲ ତୁମ୍ଭେ ॥୭୭୬୦॥
ଗଙ୍ଗାକୁ ନ ଆଣିଲେ ନଥାଅ ତୁମ୍ଭେ ଘର
ପିତା ବଚନେ ପୁତ୍ର ଭାଳିଲେ ମନର ॥୭୭୬୧॥
ରାତ୍ରରେ ପିତାକୁ ପକାଇଲେ ହାଣିଂ
ଜେଷ୍ଟ ବିରସେନ ହୋଇଲା ନୃପମଣିଂ ॥୭୭୬୨॥
ଜେଣୁ ପୁତ୍ରଙ୍କୁ ପାଞ୍ଚିଲା ପରମାଦ
ତେଣୁ ସେହି ଦୋସୁ ହୋଇଲା ଶିରଛେଦ ॥୭୭୬୩॥
ସେହି ରୁପେ ଧୃତିରାଷ୍ଟ୍ର କହୁ ତୁହିଂ
ଆପଣେ ନିନ୍ଦା ପରର କହୁ ବଢ଼ାଇ ॥୭୭୬୪॥
ସୁଣଗୋ ଓମା ବୋଲି ବୋଲନ୍ତି ଧୃଜଟି
ସଙ୍କୁନି କହିଲେ ଧୃତରାଷ୍ଟ୍ର ଗଲା ଉଠି ॥୭୭୬୫॥

## ସମର ଭୂମି ପ୍ରସ୍ତୁତି

ସହଦେବଙ୍କୁ ଚାହିଂ ବୋଇଲେ ଧର୍ମସୁତ
ଗୋବିନ୍ଦଙ୍କୁ ପଡ଼ା ଦିଲା କି ନଦିଲା କୁରୁନାଥ ॥୭୭୬୬॥

ସହଦେବ ବୋଇଲେ ହରି ମିଳିଲେ ସଭାର
ବସବୋଲି ନ ବୋଇଲା ରାଜା କୁରୁବିର ।।୭୭୬୭।।
ବ୍ୟାସ ବିଦୁର ରାଜାଙ୍କୁ କହିଲେ ବୁଝାଇ
ତେଣୁ ଆସନ ଦିଲା ବସିଲେ ଭାବଗ୍ରାହି ।।୭୭୬୮।।
ଗଉଡ଼ ବାଉଡ଼ ବୋଲି ଅନେକ ଗାଳି ଦେଇ
ବିନା ସମରେ ସୁଚିମୁନେ ମୁଁ ନ ଦେବଇ ।।୭୭୬୯।।
ଜେଣୁ କୁବଚନ ବୋଇଲା ଦୁର୍ଯୋଧନ
ଦସ ଅବତାର ହୋଇଲେ ଭଗବାନ ।।୭୭୭୦।।
ତେତେବେଳେ କୌରୋବେ ଚେତି ନ ଚିହ୍ନିଲେ
ଲକ୍ଷ୍ମିକିଂ ଘେନି ହରି ଦ୍ୱାରିକାକୁ ଗଲେ ।।୭୭୭୧।।
ଯୁଧିଷ୍ଟି ବୋଇଲେ ଆମ୍ଭର ବୁଡ଼ିଲାଟି ଭେଳା
ଲଜ୍ୟା ପାଇ ଜେବେ ଗଲେକ ଚକାଡୋଳା ।।୭୭୭୨।।
ଜାଅରେ ଅର୍ଜୁନ ହରିକିଂ ଘେନିଆସ
ସୁଣଗୋ ଓମା ବୋଲି ବୋଲନ୍ତି ମହେସ ।।୭୭୭୩।।
ଲକ୍ଷ୍ମିଙ୍କୁ ଘେନି ଜହୁଂ ଗଲେକ ଭଗବାନ
ଦ୍ୱାରିକାରେ ପ୍ରବେଶ ହୋଇଲେ ଦୁର୍ଯୋଧନ ।।୭୭୭୪।।
ବଳରାମ ଅଗ୍ରତେ କହିଲା ସମାଚାର
ସୟନ କରିଛନ୍ତି ପ୍ରଭୁ ଦାମୋଦର ।।୭୭୭୫।।
ବସିଛି ଦୁର୍ଯୋଧନ ଗୋବିନ୍ଦ ପଛ କତି
ସେହି ସମୟରେ ପ୍ରବେସ ସର୍ବସାଚି ।।୭୭୭୬।।
ବସିଲା ବାସେବ ଅଗ୍ରଭର ହୋଇ
ଜାଣିଣ ନିଦ୍ରା ତେଜି ଉଠିଲେ ଭାବଗ୍ରାହି ।।୭୭୭୭।।
ଅନାଇ ବୋଇଲେ କି ହୋ ଆସିଛୁ ଅର୍ଜୁନ
ଅର୍ଜୁନ ଗୋବିନ୍ଦଙ୍କୁ କଲାକ ପରିଣାମ ।।୭୭୭୮।।
କେତେ କାର୍ଯେ ଆଗତ ପଚାରନ୍ତି ଭଗବାନ
ଅର୍ଜୁନ ବୋଇଲେ ଭାରଥ ଯୁଦ୍ଧକୁ ଯିବ ହେ କଲି ନିମନ୍ତ୍ରଣା।।୭୭୭୯।।
ଦୁର୍ଯୋଧନ ବୋଇଲା ମୁଁ ଆଗେ ନିମନ୍ତ୍ରିଲିଂ
ଗୋବିନ୍ଦ ବୋଇଲେ ମୁଁ ଆଗେଂ ଅର୍ଜୁନକୁ ଦେଖିଲିଂ ।।୭୭୮୦।।
ପାଣ୍ଡେବଙ୍କ ଥାଟେ ମୁଁ ସେନାପତି ହୋଇବିଂ
ବଳରାମ ଅଗ୍ରତେ କହିଲେ ମାନଗୋବିନ୍ଦି ।।୭୭୮୧।।
ଗୋବିନ୍ଦକୁଂ ଚାହିଁଣ ବୋଇଲେ ବଳରାମ
ଭାରତ ଯୁଦ୍ଧକୁ ତୁ ନ ଜାଅ ଭଗବାନ ।।୭୭୮୨।।
ଶ୍ରୀହରି ବୋଇଲେ ଆମ୍ଭେ ଜନ୍ମିଲୁ ବସୁନ୍ଧରି
ବହିଛୁ ହତ୍ୟାପାପ ଦୁଷ୍ଟ ଜନ ମାରି ।।୭୭୮୩।।
ନ କରିବି ରଣ ନନ୍ଦିଘୋସେ ସାରଥି ହୋଇବି
ଭାରଥ ଦେଖିଣ ପାତେକ ଛଡ଼ାଇବିଂ ।।୭୭୮୪।।
ବୋଲନ୍ତି ନିଳାମ୍ବର ତୁ ସାରଥି ହୋଇବୁ
ମୋହର ସପତ ତତେ ସହସ୍ର ନ ଧରିବୁ ।।୭୭୮୫।।
ଆହୁରି କଥାଏ କହଇ ଭାବଗ୍ରାହି
ଲକ୍ଷ୍ମିକି ଦିଅ ଘେନି ଜାଉ କୁରୁସାଇଂ ।।୭୭୮୬।।
ନିଳାମ୍ବର ବାଣି ପ୍ରଭୁ ନ ପାରିଲେ ଭାଜିଂ
ଲକ୍ଷ୍ମିକି ସମର୍ପିଲେ ଗମିଲେ କୁରୁରାଜି ।।୭୭୮୭।।
ଗୋବିନ୍ଦଙ୍କୁ ଘେନିଣ ଗମିଲା କିରଟି
ବାରୁଣାବନ୍ତେ ମିଳି ଭେଟିଲେ ଯୁଧିଷ୍ଟି ।।୭୭୮୮।।
ଆସନ ଜୋଗାଇଲେ ବସିଲେ ଦେବହରି
ଯୁଧିଷ୍ଟି ବୋଇଲେ କିସ କହିଲା ଦଣ୍ଡଧାରି ।।୭୭୮୯।।
ଶ୍ରୀହରି ବୋଇଲେ ନାସ୍ତିକଲା ଦୁର୍ଯୋଧନ
ବିନା ସମରେ ନ ଦେବଇଂ ସୁଈମୁନ ।।୭୭୯୦।।
ବଦୟନ୍ତି ଯୁଧିଷ୍ଟି ତୁ ଜେବେ ସାହା ହେବୁ
କୌରୋବଙ୍କୁ ଜିଣି ନୃପତି ହେବି ବାବୁ ।।୭୭୯୧।।
ତୁମ୍ଭ ବିନୁଂ ମୋହର ଅନ୍ୟ ଗତି ନାହିଂ
ଅବଶ୍ୟ ଭାରତ ହୋଇବ ଗୋସାଇଂ ।।୭୭୯୨।।
ଏମନ୍ତ ବିଚାରନ୍ତେ ସକୁଂନି ମିଳିଲା
ଗୋବିନ୍ଦ ପଦ୍ମପାଦେ ନିଉଛାଳି ହୋଇଲା ।।୭୭୯୩।।
ଗୋବିନ୍ଦ ବୋଇଲେ ସକୁଂନିକି ଚାହିଂ
ସୁଝିବୁ ପିତୃରଣ ସମର ଭିଆଇ ।।୭୭୯୪।।
ସକୁନି ବୋଇଲା ହରି ତୁ ଜେବେ କହିବୁ
କୁରୁ ପାଣ୍ଡେବ ଏକତ୍ୱ କରିବିଂ ବାବୁ ।।୭୭୯୫।।
ଜେବେ ତୋ ଇଚ୍ଛା ଅଛି ଭାରଥ ଦେଖିବାକୁ
ବିବାଦ କରାଇବି କୁରୁ ପାଣ୍ଡେବଙ୍କୁ ।।୭୭୯୬।।
ବଦୟନ୍ତି ଭଗବାନ ସୁଣହେ ସକୁନି
ଦୁଷ୍ଟ ନିବାରିତେ ମୁଁ ମହିରେ ଅଛି ଜନ୍ମି ।।୭୭୯୭।।
ଦୁଷ୍ଟଙ୍କର ପ୍ରବଳ ଏବେ ହୋଇଲା ମହାଭାରା
ଭାରତ ଭିଆଇ ଉସ୍ୱାସ କରିବା ବସୁନ୍ଧରା ।।୭୭୯୮।।
ବହନ କହ ଜାଇ ତୁ ଦୁର୍ଯୋଧନ ଆଗ
ଆସୁ ଭାରତ ଭୁମି କରିବା ବେନି ଭାଗ ।।୭୭୯୯।।
ଗମିଲା ସକୁଂନି କହିଲା ରାଜାଠାର
ସୁଣିଣ ସନ୍ୟକୁ ଘେନି ବାହାର କୁରୁବିର ।।୭୮୦୦।।
ଯୁଧିଷ୍ଟି ଅଗ୍ରତେ କହିଲା ଡଗର
ଭୁମି ବାଣ୍ଟିବାକୁ ଅଇଲା କୁରୁବିର ।।୭୮୦୧।।
ସୁଣିଣ ପଞ୍ଚୁପାଣ୍ଡବେ ସଜ ହୋଇଲେ
ବୈନେତ୍ର ବାହାନେ ଗୋବିନ୍ଦ ଗମିଲେ ।।୭୮୦୨।।
ସୁଭବେଳ ଜାଣି ପାଣ୍ଡବେ ଗମିଲେ
ଭାରତ ଭୁମିରେ ପ୍ରବେସ ହୋଇଲେ ।।୭୮୦୩।।

ବେନି ରାଜା ସଇନି ପ୍ରବେସ ଏକଠାର
ବୋଲଇ ଦୁର୍ଯୋଧନ ସୁଣହେ ଚକ୍ରଧର ।।୭୮୦୪।।
ଜେବଣ ଠାବରେ ସମର କରିବା
ମାମୁଙ୍କୁ ଘେନି ତୁମ୍ଭେ ମାଡ଼ିଆସ ପଦା ।।୭୮୦୫।।
ଏହିଠାରେ ହେବ ବୋଲି ଗୋବିନ୍ଦ ବୋଲନ୍ତି
ଦ୍ୱାଦସ ଯୋଜନ ମାଡ଼ି ପଦା ଦିର୍ଘ ପ୍ରତି ।।୭୮୦୬।।
ଅନ୍ତର ହୋଇଣ ରହିଲା ବିଦୁର
କଳିକାଳ ବେନି କାଠି ଘେନିଲେ ନୃପବର ।।୭୮୦୭।।
ଛଡ଼ ଅଙ୍ଗୁଳ ଯୁଧିଷ୍ଟି ଦଶ ଅଙ୍ଗୁଳ କୁରୁନାଥ
ବେନି ଆଡ଼େ ପକାଅ ବୋଲି ଦିଲେ ବିଦୁରର ହସ୍ତ ।।୭୮୦୮।।
ବେନି କାଠି ବେନି ଦିଗେ ପକାଇ ବିଦୁର[୧]
ପୁର୍ବେ ମାନଗୋବିନ୍ଦ ପଶ୍ଚିମେ ଯୁଧିଷ୍ଟିର ।।୭୮୦୯।।
ଦେଖିଣ କୌରୋବେ ହୋଇଲେ ଆନନ୍ଦ
ରହ ରହ ବୋଲିଣ ବୋଇଲେ ଗୋବିନ୍ଦ ।।୭୮୧୦।।
କନିଷ୍ଟ କାଠି ଖଣ୍ଡି ଦିଲେ ଭିମସେନ
ମାପନ୍ତେ ଗୋବିନ୍ଦ ଅଙ୍ଗୁଳି ଦସମ ।।୭୮୧୧।।
ଶ୍ରେଷ୍ଟ କାଠି ଖଣ୍ଡି ଦୁସାସନ ଦିଲା
ମାପିବା ବେଳକୁ ଛଡ଼ ଅଙ୍ଗୁଳି ହେଲା ।।୭୮୧୨।।
ମାୟାବି ପୁରୁସ ଦେଖଇ ହଟକୁଟ
ସେହିକ୍ଷଣି ବେନି କାଠି ଉଲଟ ପାଲଟ ।।୭୮୧୩।।
ପୁର୍ବ ଭାଗ ପାଇଣ ହରସ ପାଣ୍ଡବେ
ବଡ଼ଇ ବିସାଦ ପାଇଲେ କୌରୋବେ ।।୭୮୧୪।।
ବୋଲନ୍ତି କେସବ ସୁଣ ହେ ବେନି ରାଜା
ବେନି ଭାଗ ମଧ୍ୟେରେ ସ୍ତମ୍ଭେକ ପୋତିବା ।।୭୮୧୫।।
ସମର ବେଳେ ସେହି ଦିସୁଥିବ ଫୁଟି
ଜେ ଜାହା ଭାଗ ଆବୋରି ଜୁଝିବେ ସନ୍ୟ ବାଣ୍ଟିଂ ।।୭୮୧୬।।
ସମସ୍ତେ ବୋଇଲେ ଏକଥା ହେଉ
ସହଦେବଙ୍କୁ ଚାହିଂ ବୋଇଲେ ମହାବାହୁ ।।୭୮୧୭।।
ବିଚାରି ସହଦେବ ସଙ୍କୁଂନି ବୋଲନ୍ତି
କୁଣ୍ଡଳା ଗିରିରେ ଅଡ଼ାଳ[୨] ବଟ ଅଛି ।।୭୮୧୮।।
ପୁର୍ବହୁଂ ସେ ବଟକୁ ରୁପିଛି ଦଇବ
ଭାରତ ମଧ୍ୟ ସ୍ତମ୍ଭକୁ ସେହୁ ହେବ ।।୭୮୧୯।।
ଗୋବିନ୍ଦ ଆଜ୍ଞାରେ ଭିମ ଦୁସାସନ ଗଲେ
କୁଣ୍ଡଳା ଗିରିରେ ମିଳି ବୃକ୍ଷକୁ ଉପାଡ଼ିଲେ ।।୭୮୨୦।।

୧ । ଘ ପୋଥିରେ କଳି କାଳ ଠାରୁ ପକାଇ ବିଦୁର ପର୍ଯ୍ୟନ୍ତ ନାହିଁ
୨ । ଘ ପୋଥି – ଅଡ଼ାଳ

ଘେନି ଆସି ପୋତିଲେ ଭାରତ ଭୁମିର
ଉଛର୍ଗ ହୋଇଲା ସେ ପଞ୍ଚଦସ ତାଳ ।।୭୮୨୧।।
ହୋଇଲା ଟଳମଳ ସେ ସ୍ଥିର[୧] ନୋହିଲା
ଗୋବିନ୍ଦ ବୋଇଲେ ହୋ କାହାକୁ ବଳିଦେବା ଭଲା ।।୭୮୨୨।।
ସହଦେବ ବୋଇଲା ଅଛି ଲାଗେଣିର ବାଳ
ସେହିଥିଲେ ସବୁ ନାସିବ ସନ୍ୟ ବଳ ।।୭୮୨୩।।
ଅଷ୍ଟାଦସ ଦିନ ଭାରତ ନୋହିବ
ହନୁମନ୍ତ ଗରୁଡ଼କୁ ଆଜ୍ଞାଦିଲେ ବାସୁଦେବ ।।୭୮୨୪।।
ବଳି ବେଲାଉଳ ଭାରତ ସ୍ତମ୍ଭଠାରେଂ ମିଳି
ହନୁମନ୍ତ ଗରୁଡ଼ ତାକୁ ସ୍ତମ୍ଭରେ ଦେଲେ ବଳି ।।୭୮୨୫।।
ଯୁଧିଷ୍ଟି ମୁଖ ଚାହିଂ ବୋଇଲା ଦୁର୍ଯୋଧନ
ରାଜା ନିମନ୍ତ୍ରଣ କରିବାକୁ ପେସ ଚାରଗଣ ।।୭୮୨୬।।
ଯୁଧିଷ୍ଟି ବୋଇଲେ ମୋର ଜାଇତେ ଲୋକ ନାହିଂ[୨]
ତୁମ୍ଭେ ଜାହାକୁ ପେସିବ ଦୁଇଜଣକର ସେହି ।।୭୮୨୭।।
କୁରୁ ପାଣ୍ଡେବଙ୍କଂ ରଣ ବୋଲି ବୋଲିବ ରାଜାକୁ
ଜେ ଜାହାର ସାହା ମିଳିବେ ତାହାକୁ ।।୭୮୨୮।।
ଏମନ୍ତେ ପାଣ୍ଡବେ ବାରୁଣାରେ ହେଲେ
ଦ୍ୱାରିକାରେ ଜଗନ୍ନାଥଂ ପ୍ରବେସ ହୋଇଲେ ।।୭୮୨୯।।
ହସ୍ତିନାରେ ପ୍ରବେସ ହୋଇଲେ କୁରୁବଳ
ଚାରିଦିଗକୁ ରାଜା ପେସିଲେ ଡଗର ।।୭୮୩୦।।
ସଲ୍ୟ ସଙ୍କୁନି ଦୃଦକ୍ଷ[୩] ଦୁସାସନ
କୁରୁ ପାଣ୍ଡେବଙ୍କର ହୋଇବ ସାଂଗ୍ରାମ ।।୭୮୩୧।।
ସନ୍ୟ ଘେନି ରଣକୁ ବିଜେକର
ସୁଣି ନୃପତି ଗମିଲେ ଘେନିଣ ସନ୍ୟବଳ ।।୭୮୩୨।।
ଅନଳ ଦେଖିଣ ଜେସନେ ପତଙ୍ଗ
ସେ ରୁପେ ନୃପତି ଯୁଦ୍ଧକୁ ଉଦବେଗ ।।୭୮୩୩।।
ହସ୍ତିନା ଭୁବନକୁ କରନ୍ତି ଗମନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ।।୭୮୩୪।।

## ଭାରଦା ଉପାଖ୍ୟାନ

ପୁର୍ବଦିଗୁ ମଧୁମଙ୍ଗଳ ବାରୁଣାରୁ ହୋଇ
କନାଉଜ ଦେସରୁ କନାଉଜ ମିଳଇ ।।୭୮୩୫।।
ପଶ୍ଚିମରୁ ବିରବାହୁ ଦୁର୍ଯୋଧନକୁ ଭେଟି
ତଦନ୍ତେ ମିଳିଲା ରାଜା ଜଗଜେଠି ।।୭୮୩୬।।

୧ । ଘ ପୋଥି – ସଧୀର
୨ । ଘ ପୋଥି – ଦୂତ ନାହିଂ
୩ । ଘ ପୋଥି – ଧୃଷ୍ଟ ଦୃମନ

କାଶ୍ମିର[୧] ଦେସରୁ ରାଜା କାମେସ୍ୱର
ନଳବଳି ବୋଲିଣ ବିରାଦ ଦେସର ॥୭୮୩୭॥
କନାଉଜ ଦେଶରେ ରାଜା କିରଣବାଳ
ଚନ୍ଦ୍ରନଉମି ରାଜା ବିଛିଦ୍ର ଦେସର ॥୭୮୩୮॥
କର୍ଣ୍ଣନଉମି କନାଉଜ ଦେସର ରାଜନ
ଏ ପାଞ୍ଚରାଜା ସାହା ହୋଇଲେ ଧର୍ମନାନ ॥୭୮୩୯॥
ତେଲଙ୍ଗ ଦେସରୁ ମଧୁସେନ[୨] ଅଇଲା
କଞ୍ଚନ ଦେସରୁ କଳିଙ୍ଗସେନ ରାଜା ମିଳିଲା ॥୭୮୪୦॥
କାଞ୍ଚନ ଦେସରୁ ମିଳିଲା ବିରସେନ
କନ୍ନାଟ ଦେସରୁ କର୍ନ୍ନକେସରି ରାଜନ ॥୭୮୪୧॥
କନ୍ନକୁଟ ଦେସରୁ ରାଜା କେତୁମାଳି
ଗାନ୍ଧାର ଦେସରୁ ଅଇଲା ସଙ୍କୁନି ଦଣ୍ଡଧାରି ॥୭୮୪୨॥
ଏହି ପାଞ୍ଚରାଜା ପ୍ରବେସ ଗୁଜଂଗଳ
ଯୁଧିଷ୍ଟିକିଂ ଠାରେ ପ୍ରବେସ ବିରାକୁଳ ॥୭୮୪୩॥
ବିରବର ଦେସରୁ ଅଇଲା ବିର ଚୁଡ଼ାମଣିଂ
ଲବଣ ଦେସରୁ ସୁରଣକେସି ପୁଣି ॥୭୮୪୪॥
ମାଲ୍ୟବ ଦେସରୁ ମିଳିଲା ଇନ୍ଦ୍ରଲାଭ
ତୁରଙ୍ଗ ଦେଶରୁ ଅଇଲା ଚୁଡ଼ଙ୍ଗ ॥୭୮୪୫॥
ଏହୁ ଚାରିରାଜା ହସ୍ତିନାରେ ହୋଇ
ସୁଣଗୋ ଓମା ବୋଲି ସଙ୍କର ଥାନ୍ତି କହି ॥୭୮୪୬॥
କନାଉଜ ଦେସରୁ ରାଜା ବିରକର୍ନ୍ନ
ଭୋପାଳ ଦେଶରୁ ହନୁମତ ରାଜନ ॥୭୮୪୭॥
ବାରାସ୍ୱତି ନଗ୍ରରୁ ରାଜା ମାହେସ୍ୱର[୩]
ଜୁଳାବାହୁ ନଗ୍ରୁଂ ଅଜଟ ବାହୁବିର ॥୭୮୪୮॥
ରଣପୁର ରଣପାଛ ଦଣ୍ଡଧାରି
ନାରାୟଣପୁର ରାଜା କମଳ କିସୋରି ॥୭୮୪୯॥
ଏ ଛଡ଼ ରାଜା ହୋଇଲେ ଯୁଧିଷ୍ଟିଙ୍କଠାର
କାଉଂରି ଦେସରୁ ଅଇଲା ରାଜା କାମପାଳ ॥୭୮୫୦॥
ନନ୍ଦପୁର ରାଜା ଅଟଇ ସ୍ୟାମଧର
ହଟ ଦେସରୁ କଞ୍ଚଣ ନୃପବର ॥୭୮୫୧॥
ସୁବର୍ନ୍ନଦେଶ ପୁର ରାଜା ଜୋଗେସ୍ୱର ଅଟଇ
ରକ୍ତପୁର ରାଜା ରକ୍ତସେଣ ବୋଲାଇ ॥୭୮୫୨॥
ତିହୋତ୍ରି ଦେସର ରାଜା ବିକର୍ନ୍ନକେଶରି
ବଳରାମସେନ ବିର ଦେସ ଦଣ୍ଡଧାରି ॥୭୮୫୩॥

୧ । ଘ ପୋଥି – କାଉଁରୀ
୨ । ଘ ପୋଥି – ମଧୁମଙ୍ଗଳ
୩ । ଘ ପୋଥି – ମାନେଶ୍ୱର

ଏହୁ ସପ୍ତରାଜା ପ୍ରବେସ ହସ୍ତିନାର
ସିବପୁର ରାଜା ଅଟଇ ଅମ୍ବୁଭାର ॥୭୮୫୪॥
ପଞ୍ଚାଳ ଦେସ ରାଜା ଦ୍ରୋପଦ ନୃପତି ଆଦି ପାଟ
ମଗଧ[୧] ଦେସ ରାଜା ଗମଇ ବିରାଟ ॥୭୮୫୫॥
ବେଦପୁର ଦେସରୁ ପଦ୍ମଂସେନ ରାଜା
ଯୁଧିଷ୍ଟିଙ୍କି ଭେଟିଲେ ଏହିତିନିରାଜା ॥୭୮୫୬॥
ସନ୍ୟ ଘେନି ସିନ୍ଧୁ ଦେଶରୁ ଅଇଲା ଜଦ୍ୟରଥ
ହସ୍ତିନାରେ ମିଳି ଭେଟିଲା କୁରୁନାଥ ॥୭୮୫୭॥
ଏ ରୁପେଂ ଚାରିଉଣା ଲକ୍ଷେ ନୃପମଣି
ପ୍ରବେସ ହୋଇଲେ ଭାରତ ରଣଭୁମି ॥୭୮୫୮॥
ପଞ୍ଚୁକଟକେ ମାଡ଼ି ରହିଲେ ସଇନି
ଦେଖିଣ ଆନନ୍ଦ ହୋଇଲେ କୁରୁମଣି ॥୭୮୫୯॥
ସହଦେବ ମୁଖ ଚାହିଂ ଯୁଧିଷ୍ଟି ପଚାରିଲେ
କେତେ ରାଜା ଅବା କୌରୋବେ ପାଇଲେ ॥୭୮୬୦॥
ବଦନ୍ତି ମନ୍ତ୍ରି ସୁଣହେ ଗୋସାଇଂ
ସତାଣ୍ଠୋଇ ସହସ୍ର ରାଜା ପାଇଲା କୁରୁସାଇଂ ॥୭୮୬୧॥
ଏକଉଣା ତିନି ସହସ୍ର ନୃପବର
ଏତେକ ସନ୍ୟ ବାବୁ ହୋଇଲା ଆମ୍ଭର ॥୭୮୬୨॥
ସୁଣିଣ ଧର୍ମସୁତ ହୋଇଲେ ବିସାଦ
ବଡ଼ଥାଟ[୨] ଗୋଟାଏ ପାଇଲା କୌରୋବ ॥୭୮୬୩॥
ଆବର ସନ୍ୟ ଅଛନ୍ତି ଏଗାର କ୍ଷେଉଣି
ନିକି ଦୁର୍ଯୋଧନକୁ ନ ପାରିବା ଜିଣି ॥୭୮୬୪॥
କେହୁ ସେ ଜିଣିବ କେହୁ ସେ ହାରିବ
ସେ କଥା ମୋର ଆଗେ କେହୁ ସେ କହିବ ॥୭୮୬୫॥
ସହଦେବ ବୋଇଲା ଅଛନ୍ତି ଏକଜଣ
କହିଲେ ଆସିବ ଜାଆନ୍ତୁ ଭିମସେନ ॥୭୮୬୬॥
ଘର ଉଜାଣିକାନ୍ତିରେ ଭାରଦା ବୋଲି ନାମ
ମହାଭାରତ କହିବାକୁ ସେହି ସେ ଭାର୍ଜନ ॥୭୮୬୭॥
ଯୁଧିଷ୍ଟି ଆଜ୍ଞାଦିଲେ ଗମିଲା ବିକୋଦର
ପ୍ରବେସ ହୋଇଲା ଭାରଦା ଭୁବନର ॥୭୮୬୮॥
ଭାରିଜା ଜେ ଅଛି ତାର ଜେସନେ ଅପକ୍ଷରି
ତାହାକୁ ଭାରଦା ଅଛି ସେବାକରି ॥୭୮୬୯॥
ଦିବସ ଜାଇଣ ରଜନି ହୋଇଲା
ସୁବେସ ହୋଇ ବାଳି ପଲଙ୍କେ ପହୁଡ଼ିଲା ॥୭୮୭୦॥

୧ । ଘ ପୋଥି – ମଘ
୨ । ଘ ପୋଥି – ବଡ଼ ଆଣ୍ଟ ଥାଟ

ପରପୁରୁଷମାନେ ମିଳିଲେ ତାର କତି
ଧନଦେଇ ଯୁବତି ସଙ୍ଗେ କଲେ ରତି ॥୭୮୭୧॥
ଚଳିଲେ ନାଗର ଦେଖିଲେ ଭାରଦା
ଫଳମୁଳ[୧] ଜୋଗାଇ ପନ୍ନିକି କଲେ ସେବା ॥୭୮୭୨॥
ଦେଖଇ ବିକୋଦର ଲତା ଅଭ୍ୟନ୍ତରେ
ଏଡ଼େ ପାପି କେହ୍ନେ ନେବି ମନରେ ବିଚାରେ ॥୭୮୭୩॥
ଆଦିତ୍ୟ ଉଦେ ହୁଅନ୍ତେ ଭାରଦା ବାହାର
ଭିମସେନ ଧଇଲା ଭାରଦାର ବାଳ ॥୭୮୭୪॥
ଅନ୍ତରିକ୍ଷେଂ ଘେନିଗଲା ବୟାସି ଯୋଜନ
ପ୍ରବେସ ହୋଇଲେ ଜାଇ ବାରୁଣୀ ଭୁବନ ॥୭୮୭୫॥
ଖଣ୍ଡେ ଦୁରୁ ରଖି ଯୁଧିଷ୍ଟିଙ୍କି କହି
ଯୁଧିଷ୍ଟି ବୋଇଲେ ଆଣ ଭାରତ ଜାଉ କହି ॥୭୮୭୬॥
ମାରୁତି ବୋଇଲା ତାର ପାତକ ଅଲେଖା
ବଞ୍ଚଇ ପରଧନେ ଭାରିଜା ରତିବିକା ॥୭୮୭୭॥
ଯୁଧିଷ୍ଟି ବୋଇଲେ ଏଡ଼େ ପାପି କହିବ ଭାରତ
ସୁଣି କର ଜୋଡ଼ି କହେ ମାଦ୍ରିଦେବିର ସୁତ ॥୭୮୭୮॥
ଭାରତ ସ୍ଥମ୍ଭରେ ବାନ୍ଧିଆସ ଜାଇ
କାଲି ପ୍ରଭାତୁଂ ଏ ଭାରତ ଜିବ କହି ॥୭୮୭୯॥
ଯୁଧିଷ୍ଟି ଆଜ୍ଞାରେ ଘେନିଗଲା ଭିମ
ଭାରଦାକୁ ଭାରତ ସ୍ଥମ୍ଭରେ କଲାକ ବନ୍ଧନ ॥୭୮୮୦॥
ଗଲା ବିକୋଦର ଘୋଟିଲା ରଜନି
ଗ୍ରାମରେ ବନଜିବେ ଭ୍ରମିଲେକ ପୁଣି ॥୭୮୮୧॥
ଭାରଦାଠାରେ ମିଳି ସମସ୍ତେ ବାହୁଡ଼ିଲେ
ସୃଗାଳ ସୃଗାଳୁଣି ଭାରଦାଠାରେ ମିଳିଲେ ॥୭୮୮୨॥
ସୃଗାଳୁଣି ବୋଇଲା ଏହାକୁ ଜିବା ଖାଇଂ
ସିଙ୍ଘମୁଖା ବୋଇଲା ଏ ପାତେକି ଅଟଇ ॥୭୮୮୩॥
ଅଳପ ଦିନେ ସଖି ଭାରତ ଯୁଦ୍ଧ ହେବ
ବହୁତ ସନ୍ୟ ମରିବେ ଖାଇ ପୁରୋଇବା ଗର୍ଭ ॥୭୮୮୪॥
ସୃଗାଳୁଣି ବୋଇଲା ଜେବେ ହୋଇବ ଭାରତ
କେହୁ ସେ ଜିଣିବ କେହୁ ହେବ ହତ ॥୭୮୮୫॥
ସୃଗାଳ ବୋଇଲା ଭିସ୍ମେଂ କୌରୋବେ ସେନାପତି
ପାଣ୍ଡେବଙ୍କ ସେନାପତି ହୋଇବେ ସର୍ବସାଚି ॥୭୮୮୬॥
ଭିସ୍ମ ଦ୍ରୋଣ କର୍ନ୍ନ ସଲ୍ୟ ସକୁନି ଅସ୍ୱସ୍ତମା
ଜଦ୍ୟରଥ ଭୁରିସର୍ବା କୌରୋବ ସହିତେ କୃପବ୍ରହ୍ମା ॥୭୮୮୭॥
ଧୃଷ୍ଟଦୁମ୍ନ ଶ୍ରୀଖଣ୍ଡି ବିରାଟ ଦ୍ରୋପଦ ନୃପବର
ଅଭିମନୁ ସହିତେ ପଞ୍ଚ ଅନେକ ରାଜକୁମାର ॥୭୮୮୮॥

୧ । ଘ ପୋଥି – ଜଳ ଫଳ

ସମସ୍ତେ ନାସ ଜିବେ ରହିବେ ତେରଜଣ
ପାଣ୍ଡବେ ଜିଣିବେ ହାରିବେ କୁରୁରାଣ ॥୭୮୮୯॥
ଏମନ୍ତ କହିଣ ସେ ବାହୁଡ଼ିଲେ ବେନିପ୍ରାଣି
ଆଦିତ୍ୟ ଉଦେ ହୋଇଲେ ପାହିଲା ରଜଣିଂ ॥୭୮୯୦॥
ପାଣ୍ଡବେ ପ୍ରବେସ ଭାରଦା ଠାବର
ପଚାରନ୍ତେ ଭାରତ କହିଲା ମୁଖର ॥୭୮୯୧॥
ସମରେ ନାଶ ଜିବେ ରାଜା କୁରୁପତି
ପଞ୍ଚ କଟକରେ ପାଣ୍ଡବେ ହୋଇବେ ନୃପତି ॥୭୮୯୨॥
ଭାରତ କହି ଭାରଦା ଛାଡ଼ିଲା ଜିବନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୭୮୯୩॥
ପୁର୍ବେ ସୃଗାଳ ସେ ଜାଜନ ଜଜନ
କୁରଙ୍ଗ ପୋଡ଼ି ଖାଇଲେ ବ୍ରହ୍ମାଙ୍କ ନନ୍ଦନ ॥୭୮୯୪॥
ନାରଦ ସାପ୍ୟରେ ରାକ୍ଷସ ଆତାପି ବାତାପି
ବହୁତ ମାନେବଙ୍କୁ ମାରିଣ ସେହୁ ଭକ୍ଷି ॥୭୮୯୫॥
ଦିନେ ଆତାପିଠାରେ ପ୍ରବେସ ଅଗସ୍ତି
ଆତାପିକି ମାରିଣ ଖୁଆଇଲା ବାତାପି ॥୭୮୯୬॥
ମୃଗ ମାଂସ ବୋଲିଣ ମୁନି କଲେକ ଭୋଜନ
ଅଗସ୍ତି ଗର୍ଭରେ ଆତାପି ହୋଇଗଲା ଜିର୍ନ୍ନ ॥୭୮୯୭॥
ବାତାପି ଅଙ୍ଗରେ ଜହୁଂ ପଡ଼ିଲା କୁସଜଳ
ଦୈତ୍ୟ ତନୁ ଛାଡ଼ି ହୋଇଲା ସୃଗାଳ ॥୭୮୯୮॥
ତେଣୁ ସେ ସୃଗାଳ ଭାରତ ଗଲା କହି
ଭାରଦା ସୁଣିଣ ଗଲା ଗତି ପାଇ ॥୭୮୯୯॥
ସୁଣିଣ ଯୁଧିଷ୍ଟି ହୋଇଲେ ଆନନ୍ଦ
କହିଲେ ଧୃତିରାଷ୍ଟ୍ର କୌରୋବ ସଭାମଧ୍ୟ ॥୭୯୦୦॥
ସକୁନି ବୋଇଲା ଏହାର ତୁଣ୍ଡରେ ବିଣ୍ଠା ମାର[୧]
ସୃଗାଳ କଥା ଆସି ବୋଇଲା ସଭାର ॥୭୯୦୧॥
ସୃଗାଳ କେମନ୍ତେ ଭାରତ କହିଲା
ସେ କଥା ଆସି କହୁଅଛି ସଭାରେ ଜେ ଭଲା ॥୭୯୦୨॥
ସୁଭ ବେଳେ ଅସୁଭ କଥାଏ କହଇ
ଧୃତିରାଷ୍ଟ୍ର ଉଠିଲା ସଭାରୁ ଲଜ୍ୟାପାଇ ॥୭୯୦୩॥

## କର୍ଣ୍ଣଙ୍କଠାରୁ ଇନ୍ଦ୍ରଙ୍କର ବଜ୍ରଛଉଡ଼ି, ଅମୃତ କୁଣ୍ଡଳ ତଥା କୁନ୍ତୀଙ୍କର ନୀଳବାଣ ଭୁଜବାଣ ଭିକ୍ଷା

ସହଦେବ ବୋଇଲା ସୁଣହେ ନୃପବର
କର୍ନ୍ନ ତହିଂ ଅଛି ବଜ୍ରଛଉଡ଼ି ଅମୃତ କୁଣ୍ଡଳ ॥୭୯୦୪॥

୧ । ଘ ପୋଥିରେ ଏହାର ତଳେ ଗୋଟେ ଧାଡ଼ି ଅଧିକ ଅଛି –
ଏଡ଼େ ଅବିବେକ ଅଟୁ ହେ ନୃପବର

ନ ଭେଦିବ ସଶ୍ର ମରିବ କର୍ଣ୍ଣ ନାହିଂ
କର୍ଣ୍ଣ ଥିଲେ ଆଉ ନମରେ କୁରୁସାଇଂ ॥୭୯୦୫॥
କିସ କରିବା ବୋଲି ବୋଇଲେ ଧର୍ମନାନ
ସହଦେବ ବୋଇଲା ସୁମର ଆସନ୍ତୁ ମଘବାନ ॥୭୯୦୬॥
ସୁଣିଣ ଯୁଧିଷ୍ଟି ଇନ୍ଦ୍ରଙ୍କୁ ସୁମରିଲେ
ସେହିକ୍ଷଣି ସୁରପତି ପ୍ରବେସ ବାରୁଣାରେ ॥୭୯୦୭॥
ପଞ୍ଚୁପାଣ୍ଡବେ ହୋଇଲେ ନିଉଛାଳି
କିସ  କିସ ବୋଲି ବୋଇଲେ ବଜ୍ରଧାରି ॥୭୯୦୮॥
ଯୁଧିଷ୍ଟି ବୋଇଲେ ହୋଇବ ଭାରତ ସମର
କର୍ଣ୍ଣ ସେନାପତି ହୋଇଲା କୌରୋବ ଥାଟର ॥୭୯୦୯॥
ଅମୃତ କୁଣ୍ଡଳ ବଜ୍ରଛଉଡ଼ି ତାର ତହିଂ
ସେହିଥିଲେ କର୍ଣ୍ଣର ମୃତୁ ହେବନାହିଂ ॥୭୯୧୦॥
କର୍ଣ୍ଣଠାରୁ ତୁମ୍ଭେ ଦାନ ମାଗିନିଅ
ତେବେ ସେ ସମରେଂ ହୋଇବୁଂ ଆମ୍ଭେ ରହ ॥୭୯୧୧॥
ଯୁଧିଷ୍ଟି ବଚନେ ଗମିଲେ ମଘବାନ
କର୍ଣ୍ଣଠାରେ ମିଳିଂ କରାଇଲେ ସତ୍ୟବଚନ ॥୭୯୧୨॥
ବଜ୍ରଛଉଡ଼ି ଅଭେଦ କବଚ ମାଗିଲା ପୁରନ୍ଦର
ସତ୍ୟ କରି ଦିଲା ସୁର୍ଯ୍ୟର କୁମର ॥୭୯୧୩॥
ଭାରିଜା ପୁତ୍ର ବେନି କରତ ଧଇଲେ
କର୍ଣ୍ଣର ଦେହରୁ ବଜ୍ରଛଉଡ଼ି କାଢ଼ିଲେ ॥୭୯୧୪॥
ତାଲୁରୁ କାଢ଼ିଲେ ଅଭେଦ କବଚ
ଅମୃତକୁଣ୍ଡଳ ସହିତେ ନିଲା ବଜ୍ରଧରଂ[୧] ॥୭୯୧୫॥
କର୍ଣ୍ଣର ଦାନ ହୋଇଲା ମହାଭାରା
ପୁଷ୍ପ ବିମାନ ଆଉ ଭୁମିରୁ ନ ଉଠିଲା ॥୭୯୧୬॥
ଇନ୍ଦ୍ର ବୋଇଲା ନନ୍ଦନ ଗୋଟିଏ ଦାନ ମାଗ
ଥୋକାଏକ ପାପ ମୋ ଅଙ୍ଗରୁ କ୍ଷଏ ହେବ ॥୭୯୧୭॥
କର୍ଣ୍ଣ ବୋଇଲା ପିତା ଜାଚିଲୁଂ ମୋତେ ତୁହିଂ
ଐରାବତ ଗଜ ଉଚ୍ଚୈଶ୍ରବା ଅସ୍ୱ ଦେବୁ ତୁହିଂ ॥୭୯୧୮॥
ଲୋହିଲେ ବଜ୍ର ମୋତେ ଦିଅହେ ପିଅର
ନଦେଲେ ନ ଛାଡ଼ିବି ଶୁଣ ହେ ନୃପବର ॥୭୯୧୯॥
ତିନି ପଦାର୍ଥରୁ ପଦାର୍ଥେ ଦିଅ ଦାନ
ଏତିନି ପଦାର୍ଥଛାଡ଼ି ଆଉ ପଦାର୍ଥେ ଦେବି ବୋଇଲା ମଘବାନ ॥୭୯୨୦॥
ସକତି ଗୋଟାଏ ବାବୁ ଦେଉଅଛି ମୁହିଂ
ଜାହାକୁ ପେସିବୁ ନାସିବୁ ତାକୁ ସେହିଂ ॥୭୯୨୧॥
ହର ବ୍ରହ୍ମା ଦିଗପାଳ ଜେବେ ହେବେ
ଏ ସକତି ପେସିଲେ ପ୍ରାଣ ହରାଇବେଂ ॥୭୯୨୨॥

୧ । ଘ ପୋଥି – ପୁରୋହିତ

ଏକବାର ପେସିବୁ ଦୁତିୟ ବାର ନୋହିଂ
ଏତେ ବୋଲି କର୍ଣ୍ଣକୁ ସକତି ଇନ୍ଦ୍ର ଦେଇ ॥୭୯୨୩॥
ଦାନ ଦିଅନ୍ତେ ଭୁମିରୁ ଉଠିଲା ପୁଷ୍ପ ଜାନ
ସୁଧର୍ମା ସଭାରେ ପ୍ରବେଶ ମଘବାନ ॥୭୯୨୪॥
ସାଧୁ କର୍ଣ୍ଣ ବୋଲି ସୁଭିଲା ସବଦ ସ୍ୱର୍ଗେଣ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୭୯୨୫॥
ଦିନେ ବାରୁଣାରେ ପ୍ରବେସ ଭାବଗ୍ରାହି
କର୍ଣ୍ଣର ଚରିତ୍ର ଯୁଧିଷ୍ଟି ଗଲେ କହିଂ ॥୭୯୨୬॥
ବଜ୍ରଛଉଡ଼ି ଅମୃତକୁଣ୍ଡଳ ନିଲେ ମଘବାନ
ଗୋବିନ୍ଦେ ବୋଇଲେ ଆହୁରି ଅଛି ନିଳବାଣ ଭୁଜବାଣ ॥୭୯୨୭॥
ସେହୁ ବେନିବାଣ ଜେବେ ଏକାବେଳେ ବିନ୍ଧି
ଜେତେକ ସନ୍ୟ ତୁମ୍ଭର ସମସ୍ତ ଜିବ ଛେଦି ॥୭୯୨୮॥
ସେହି ସମରେ କର୍ଣ୍ଣ ଦିଗପାଳଙ୍କୁଂ ଜିବ ଜିଣିଂ
ସୁଣିଣ ଆଶ୍ଚାର୍ଯ ହୋଇଲେ ନୃପମଣିଂ ॥୭୯୨୯॥
ସୁଣିଣ ଯୁଧିଷ୍ଟି ବଡ଼ ଆରତ ହୋଇଲେ
ତୋତେ ଆସ୍ରେ ଦେବ କରିଛୁଂ ପାଣ୍ଡବେ ଭଲେ ॥୭୯୩୦॥
ମେରୁ ଆସ୍ରେ ପୃଥି ହର ଆସ୍ରେଂ ଚନ୍ଦ୍ରମା
ନାରାୟଣ ଆସ୍ରେ ଲକ୍ଷ୍ମି ହର ଆସ୍ରେଂ ଓମା ॥୭୯୩୧॥
ଅର୍ଣ୍ଣଂ ଆସ୍ରେ ପିଣ୍ଡ ଫଳ ଆସ୍ରେ କୃଷି
ପୁରୁଷ ଆସ୍ରେଂ ସ୍ତିରି ଗ୍ରହ ଆସ୍ରେଂ ରାସି ॥୭୯୩୨॥
ପୃଥି ଆସ୍ରେଂ ବୃକ୍ଷ ସାଧବ ଆସ୍ରେଂ ଧନ
ପାଣ୍ଡବେ ବିଷ୍ଣୁ ଆସ୍ରେଂ ବୋଲନ୍ତି ସର୍ବଜନ ॥୭୯୩୩॥
ତୋତେ ଆସ୍ରେ କରିଛି ଜିଣିବି କୌରୋବ
ପଞ୍ଚୁକଟକରେ ହୋଇବିଂ ନୃପଦେବ ॥୭୯୩୪॥
କର୍ଣ୍ଣକୁ ଜିଣିବି କହ ତୁ ମୋତେ ବୁଧି
ଗୋବିନ୍ଦେ ବୋଇଲେ କୁନ୍ତି ଆଣନ୍ତୁଂ ତାକୁ ମାଗି ॥୭୯୩୫॥
ସୁଣିଣ ପାଣ୍ଡବେ ପ୍ରବର୍ତିଲେ କୋନ୍ତି
କୋଇନ୍ତା କର୍ଣ୍ଣଠାରେ ପ୍ରବେଶ ହେଲେ ରାତି ॥୭୯୩୬॥
କୋଇନ୍ତାକୁ କର୍ଣ୍ଣ ଦେଖି ହୋଇଲା ନିଉଛାଳି
କେତେ କାର୍ଜେ ଆଗତ ହୋଇଲ ଗୋ ଭୁଜର ଦୁଲାଳି ॥୭୯୩୭॥
କୋଇନ୍ତା ବୋଇଲେ ବାବୁ ଭାରଥ ରଣହେବ
ତୋତେ ନେଇତେ ଅଇଲିଂ ଆମ୍ଭ ଘରକୁ ଜିବ ॥୭୯୩୮॥
ପଞ୍ଚୁକଟକରେ ତୁ ହୋଇବୁ ରାଜନ
ଯୁଧିଷ୍ଟିଙ୍କି ସାହା ହୋଇ ନାସ ଦୁର୍ଯୋଧନ ॥୭୯୩୯॥
ଅର୍ନ୍ନ ନପାଇ ସାସ୍ତି କେତେ ମୁଂ ପାଇଲିରେ ବନସ୍ତ
ତୁହି ଥାଉଂ ଥାଉଂ ମୋହର ଏତେ ଦୁଖ ॥୭୯୪୦॥

କର୍ଣ୍ଣ ବୋଇଲା ଦୁଖଂ ପାଇଲୁ ଜେବେ ପୁଣି
ମାଗ ଜେତେ ଇଛା ତେତେ ଧନ ଦେବି ଆଣିଂ ॥୭୯୪୧॥
ବୋଇଲେ ମୋର ଘରେ ରହଗୋ ମାତା ତୁହିଂ
ଦେବତା ସମାନ୍ୟେଂ ତୋତେ ପୁଜା କରିବଇଂ ॥୭୯୪୨॥
ତୁ ଜେ ବୋଇଲୁଂ ମୋତେ ଆସ ମୋର ଘର
ଜନମ କରି ମୋତେ ମେଲିଲୁଂ ଜଳର ॥୭୯୪୩॥
ଭାସିଗଲିଂ ରାଧେବ ମୋତେ ନିଲେ ପାଇ
ପ୍ରାଣୁଂ ଅଧିକ କରି ପାଳିଲା ମୋତେ ସେହିଂ ॥୭୯୪୪॥
ଦୁର୍ଯୋଧନକୁ ଏବେ ପଡ଼ିଛି ବିପତି
ତାହାକୁ ଛାଡ଼ିଲେ ମୁହିଂ ହେବି ନର୍କଗତି ॥୭୯୪୫॥
ଜେବେ ଯୁଧିଷ୍ଟିକି ସମରେ ନାସିବିଂ
ତେବେ ତୋ ଘରେ ଜାଇ ନୃପତି ହୋଇବିଂ ॥୭୯୪୬॥
କୋଇନ୍ତା ବୋଇଲେ ଜେବେ ନ ଜିବୁ ମୋର ଘର
ପଦାର୍ଥେ ମାଗିବିଂ ସତ୍ୟକର ମୋ ଆଗର ॥୭୯୪୭॥
ଦେବଇଂ ସତ୍ୟ ବୋଲି ବୋଇଲାକ କର୍ଣ୍ଣ
କୋଇନ୍ତା ବୋଇଲେ ଦେବୁ ନିଳବାଣ ଭୁଜବାଣ ॥୭୯୪୮॥
ଜଙ୍ଘରୁ କାଢ଼ି କର୍ଣ୍ଣ ଦିଲା ବେନି ବାଣ
କୋଇନ୍ତା ବୋଇଲେ ଗୁରୁ ଦକ୍ଷିଣା ଦେବୁରେ ନନ୍ଦନ ॥୭୯୪୯॥
କର୍ଣ୍ଣ ବୋଇଲା କିସ ମାଗୁଛ ମାଗ ମାତ
କୋନ୍ତି ବୋଇଲେ ମୋର ନ ମାରିବୁ ଚାରି ସୁତ ॥୭୯୫୦॥
ଅର୍ଜୁନକୁ ମାର ଅବା ତୋତେ ମାରୁ ସେହି
ସୁଣି ଭାରୋଇମଲ ବୋଇଲା ହୋଇ ହୋଇ ॥୭୯୫୧॥
କଲ୍ୟାଣ ବାଞ୍ଛିଣ କୋନ୍ତି ଗଲେ ନିଜ ଘର
ଅର୍ଜୁନ ଗୋଚରେ ସମର୍ପିଲେ ସର ॥୭୯୫୨॥
ପାର୍ବତି ପୁଛା କଲେ ସୁଣ ହେ ତ୍ରିଲୋଚନ
କର୍ଣ୍ଣ କାହୁଂ ପାଇଲା ସେ ବାଣ[1] ॥୭୯୫୩॥
ସୁଣଗୋ ଓମା ବୋଲି ବୋଲନ୍ତି ପଶୁପତି
କଜ୍ଞାସୁର ବୋଲି ସେ ମହତାସୁର ନାତି ॥୭୯୫୪॥
ଜଇନ୍ତାସୁର ନନ୍ଦନ ଜପାସୁର ମଉଳା
ଜପାସୁର ଭଣଜା ସାକଲ୍ୟର ସଳା ॥୭୯୫୫॥
ସେ କଜ୍ଞାସୁର ମହାପ୍ରବଳ ହୋଇଲା
ଦେବତାଙ୍କୁ ଜିଣିମ ବୋଲି ସ୍ୱର୍ଗପୁର ଗଲା ॥୭୯୫୬॥
ବୃହସ୍ପତି ମୁଖ ଚାହିଂ ପୁଛିଲା ମଘବାନ
କାହାର ହସ୍ତରେ ଦାନେବ ହୋଇବ ନିଧନ ॥୭୯୫୭॥
ଗୁରୁ ବୋଇଲେ ସେ ଦେବତା ହସ୍ତେ ନ ମରିବ
ଭାରୋଇମଲ କର୍ଣ୍ଣ ହସ୍ତରେ ନାସ ଜିବ ॥୭୯୫୮॥

୧ । ଘ ପୋଥି – ସେହୁ ବେନି ବାଣ

ସୁଣିଣ ସୁରପତି କର୍ଣ୍ଣକୁ ଘେନି ଗଲା
କଜ୍ଞାସୁର ସଙ୍ଗତେ ସମର କର୍ଣ୍ଣ କଲା ॥୭୯୫୯॥
ଦୈତ୍ୟକୁ କର୍ଣ୍ଣ ନ ପାରିଲା ଜିଣି
ମୋହଗତି ହୋଇ କର୍ଣ୍ଣ ପଡ଼ିଲା ଧରଣି ॥୭୯୬୦॥
ଧନୁ ସହସ୍ର ଛଡ଼ାଇ ଘେନିଗଲା ଘର
ହୋଇଲାକ ନିସି ଘୋଟିଲା ଅନ୍ଧାର ॥୭୯୬୧॥
କର୍ଣ୍ଣହତ ଦେଖି ଧାଇଂଲା ପୁରନ୍ଦର
କହିଲା ଆଦିଅନ୍ତ ସଙ୍କର ଆଗର ॥୭୯୬୨॥
ଗୋବିନ୍ଦଙ୍କୁ ସଙ୍ଗେ ଘେନି ଗମିଲେ ମହେସ
କର୍ଣ୍ଣ ପଡ଼ିବାଠାରେ ହୋଇଲେ ପ୍ରବେସ ॥୭୯୬୩॥
ରଜନି ପାଇଲା ଉଦେ ହୋଇଲେ ଦିନକର
କିରଣ ପଡ଼ିଲା କର୍ଣ୍ଣ ଅମୃତ କୁଣ୍ଡଳର ॥୭୯୬୪॥
ଅମୃତ ଝରିଂ ଜହୁଂ ତୁଣ୍ଡରେ ପଡ଼ିଲା
ଆଦିତ୍ୟ ନନ୍ଦନ ଜିବନ ପାଇଲା ॥୭୯୬୫॥
ଦୈଇତ୍ୟକୁ ମାର ବୋଲି ବୋଇଲେ ହରିହର
କର୍ଣ୍ଣ ବୋଇଲା ମୋ ନାହିଂ ଧନୁସର ॥୭୯୬୬॥
ଅଙ୍ଗୁଷ୍ଟି କାଟି କର୍ଣ୍ଣକୁ ଦିଲେ ବେନିଜନ
ବେନି ସରେ ଦୈତ୍ୟକୁ କରତୁ ନିଧନ ॥୭୯୬୭॥
ବେନି ଅଙ୍ଗୁଷ୍ଟି ହୋଇଲା ନିଳବାଣ ଭୁଜବାଣ
ବାଣଙ୍କ ତେଜରେ ପୁରିଲା ଗଗନ ॥୭୯୬୮॥
ସେ ସର ଘେନି କର୍ଣ୍ଣ ଦୈତ୍ୟକୁ ନାସିଲା
ଜାନୁକୁ ଚିରିଣ ବେନି ବାଣକୁ ରଖିଲା ॥୭୯୬୯॥
ଅଣ ନଉଟଣ ସେ ହରିହର ଅଙ୍ଗୁଷ୍ଟି
ସୁଣଗୋ ଓମା ବୋଲି ବୋଲନ୍ତି ଦୃଜଟି[1] ॥୭୯୭୦॥

## ଶ୍ରୀକୃଷ୍ଣଙ୍କ ଆଜ୍ଞାରେ ହନୁମନ୍ତକୁ ଆଣିବା ପାଇଁ ଭୀମଙ୍କର ଇସ୍କିନ୍ଦା ଗମନ

ଭିମକୁ ଚାହିଂଣ ଆଜ୍ଞାଦିଲେ ଭାବଗ୍ରାହି
ଇସ୍କିନ୍ଦା[2] ବନରୁ ହନୁକୁ ଘେନି ଆସ ଜାଇ ॥୭୯୭୧॥
ଜେତେବେଳେ ନିସତ ହୋଇବ ଅର୍ଜୁନ
ତେତେବେଳେ ରଥ ରଖିବ ହନୁମାନ ॥୭୯୭୨॥
ଭଗବାନ ଆଜ୍ଞାରେ ବିକୋଦର ଗଲା
ଇସ୍କିନ୍ଦା ବନରେ ହୁନୁକୁ ଦେଖିଲା ॥୭୯୭୩॥
ଗୋବିନ୍ଦ ଆଜ୍ଞା ବୋଲି ଭିମ ହନୁକୁ କହଇ
ଭାରତ ଯୁଦ୍ଧକୁ ଯିବ ହେ ଚଳାଇ ॥୭୯୭୪॥

୧ । ଘ ପୋଥି – ତ୍ରିଜଟି
୨ । ଘ ପୋଥି – ଅସ୍କନ୍ଦ

ହନୁ ବୋଇଲା ସେ ତ୍ରେତୟା ରଘୁସାଇଂ
ପୁର୍ବକଥା ପାସୋରିଲା ଶ୍ରୀକୃଷ୍ଣ ରୁପ ହୋଇ ।।୭୯୭୫।।
ଭାରତ ଯୁଦ୍ଧ କଥା ଆଗହୁଂ ଜାଣିଅଛି
ଲକ୍ଷେ ରାଜା ଘେନି ସମରେ ମିଳିଅଛି ।।୭୯୭୬।।
ଲକ୍ଷେ ରାଜାଙ୍କର ଜେତେ ସନ୍ୟବଳ
ତେତେ ରାବଣର ଅଟଇ ବାଜାକାର[1] ।।୭୯୭୭।।
ସନ୍ୟ ସେନାପତି ଅଟଇ ଅକଳଣା
ଜାହା ଦେଖି ଦେବତାୟେ ହୋଇଜାନ୍ତି ବଣା ।।୭୯୭୮।।
ସେହି ସମର ମୋତେ ନ ଅଣ୍ଟିଲା ଭାଇ
ଭାରତ ଯୁଦ୍ଧକୁ ଦସିନାଡ଼େ ନିଅ ତୁହିଂ ।।୭୯୭୯।।
ନନ୍ଦିଘୋଷ ରଥରେ ବାନ୍ଧିବୁ ନେଇ ଭିମା
ଶତ୍ରୁ ଦେଖି ଡରିବେ ଏ କପିକେତନ ବାନା ।।୭୯୮୦।।
ମୁହିଂ ଦେଖୁଂ ଦେଖୁଂ ଗଲାନି ବୟାସି ଭାରତ
ସମରକେ ଦସିନାଡ଼େ ଦିଅଇଂ ଜଗତ ।।୭୯୮୧।।
ଦେଖ କର୍ପଟିରୁ ଅଧେକ ସରିନାହିଂ
ଆହୁରି ଭାରତକୁ ଅଧେକ ରଖିଛଇଂ ।।୭୯୮୨।।
ଘେନ ବିକୋଦର ବୋଲି ଜାଚଇ ମାରୁତି
ପାଲଟା ବସ୍ତ୍ର କେହ୍ନେ ନେବି ବୋଲି ବିଚାରେ ସୁତ କୁନ୍ତି[2] ।।୭୯୮୩।।
ଏତେ ବୋଲି ଧରନ୍ତେ ସମ୍ଭାଳି ନ ପାରିଲା
ହନୁମତ ବୋଇଲା ମନେ ଗର୍ବ କଲୁଂ ଭିମା ।।୭୯୮୪।।
ସୁମର ରାମନାମ ଉସ୍ୱାସ ହେବ ସେହି
ନାମ ବଜ୍ରକଛଟି[3] ଦେଇଛି ସୁଳସାଇଂ ।।୭୯୮୫।।
ଘେନି ଜାଅ ଏହାକୁ କାର୍ଯସିଦ୍ଧ ହେଉ
ବିକୋଦର ବୋଇଲା ମହାଭାରା ହୋଇଲାକ ସେହୁ ।।୭୯୮୬।।
ଧର ଧର ବୋଲିଂ ବିକୋଦରକୁ ହନୁମତ ଟେକିଦିଲା
ଦସି ଘେନି ଭିମ ବାରୁଣାରେ ହୋଇଲା ।।୭୯୮୭।।
ହନୁମତ କିସ ବୋଲି ବୋଇଲା କହିଲେ ଚକ୍ରଧର
ନଆସି ଦସି ଦିଲା ବୋଇଲା ବିକୋଦର ।।୭୯୮୮।।
ସୁଣିଣ ମଉନ ହୋଇଲେ ଭାବଗ୍ରାହିଂ
ସୁଣଗୋ ଓମା ବୋଲି ସଦାସିବ କହିଂ ।।୭୯୮୯।।
ବସୁଧା ଆନନ୍ଦ ହେଉଣ ଅଛଇ
ଏତେ କାଳେ ଭାରା ଉସ୍ୱାସ ମୋତେ ହୋଇ ।।୭୯୯୦।।
ଚଉଦ କୋଟି ଭୈରବି ନବକୋଟି କାତ୍ୟାନି
ସତର କୋଟି ଚାମଡ଼ା ଦଶକୋଟି ଡାକେଣି ।।୭୯୯୧।।

୧ । ଘ ପୋଥି – ବାଦ୍ୟକାର
୨ । ଘ ପୋଥି – ମନେ ଗର୍ବ ବହିଲା ପବନ ସନ୍ତତି
୩ । ଘ ପୋଥି – ବଜ୍ର କର୍ପଟି

ଭାରତ ଆଗମ ଦେଖି ହୋଅନ୍ତି ଆନନ୍ଦ
ସେଦିନ ଦୁର୍ଗାୟଣି ବସିଲେ ଗଜକନ୍ଧ ।।୭୯୯୨।।
କେତେବେଳେ ଦେବି ମଗର ବାହନେ
ଦୃଷ୍ଟି ଦେଇ ଗମନ୍ତି ଉତର ଇସାନ୍ୟେ ।।୭୯୯୩।।
ନର ବାହାନେ କେତେବେଳେ ମହାମାଇ
ଭୈରୋବି ମୂତି ହୋଇ ପୃଥିକି ଆକ୍ରୋସଇ ।।୭୯୯୪।।
କେତେବେଳେ ବିଜୟେ ସିଙ୍ଘର ଉପରେଂ
ବିଚାରନ୍ତି କେତେବେଳେ ହୋଇବ ସମରେଂ ।।୭୯୯୫।।
ଏମନ୍ତେ ଦୁର୍ଗାୟଣି ଅନେକ ରୁପହୋଇ
ଶ୍ରୀଚଣ୍ଡି ଚରଣକୁ ଆସ୍ରେ ମୋ ଅଛଇ ।।୭୯୯୬।।
ଅଭୟ ବରଦାଏନି ଗୋ ଶ୍ରୀଚଣ୍ଡି ସାରୋଳା
ସୁଦ୍ରମୁନି ସାରୋଳାଦାସ ସରଣ ପସିଲା ।।୭୯୯୭।।

## ଦୁର୍ଯୋଧନର ଭୀଷ୍ମଙ୍କୁ ସେନାପତି ପଦେ ବରଣ ଓ ତ୍ରିଗତ ସବର ଚରିତ

ପାର୍ବତି ପୁଛାକଲେ ସୁଣହେ ସଙ୍କର
କେମନ୍ତ ପ୍ରକାରେ ହୋଇବ ଭାରତ ସମର ।।୭୯୯୮।।
ସୁଣିବି ତୁମ୍ଭ ମୁଖୁ ପାତେକ ଖଣ୍ଡିବଇଂ
ବୋଲନ୍ତି ସଦାସିବ ସୁଣଗୋ ପ୍ରାଣସହିଂ ।।୭୯୯୯।।
ଶ୍ରୀହରି ଚରିତ ଏ ଅପୁର୍ବ ଆଖ୍ୟାନ
ତାହା ତୋତେ ଯେବେ କହିବା ସଂସର୍ପିଣ ।।୮୦୦୦।।
ଭାରତ ହରିବଂସ ଦ୍ୱାରିକା ନିଳା ଚରିତ
ସୁଣିଲେ ସର୍ବପାପ ଅଙ୍ଗରୁ ହୋଏ ହତ ।।୮୦୦୧।।
ଏଥୁ ଅନ୍ୟନ୍ତରେ ସୁଣ ଗୋ ଗିରିଜା
ଅର୍ଘ୍ୟ ଗୋଟିଏ ମାନଗୋବିନ୍ଦ ଘେନିଲା ।।୮୦୦୨।।
ଖଡ୍ଗ ଗୋଟିଏ ଜୟେମାଳା ଗୋଟିଏ
ପ୍ରବେସ ସଭାରେ ପ୍ରବେସ କୁରୁରାଏ ।।୮୦୦୩।।
ଡାକିଲା ରାଜା ମହାରାଜା ତୁମ୍ଭେ ଅଛ
ରଥି ସେନାପତି ବସିଛ ସମକଛ ।।୮୦୦୪।।
ହରି ଅର୍ଜୁନ କେ ମାରିବ ଯୁଦ୍ଧର
ଖଡ୍ଗ ଟେକି ଦେବିଂ ମୋହର ହସ୍ତର ।।୮୦୦୫।।
ରଣ ଜଙ୍ଘ ଦାନ ଘେନିବଇଂ ମୁହିଂ
ଜେହୁ ଭାର୍ଜନ ହେବ ଟେକିଣ ଦେଉ ସେହିଂ ।।୮୦୦୬।।
ଏମନ୍ତ ବୋଲି ଦୁର୍ଯୋଧନ ଡାକ ଦେଲା
କୃପବ୍ରହ୍ମା ବୋଲି ସେ ମାଳବ ଦେସ ରାଜା କହିଲା ।।୮୦୦୭।।
ସେ କହିଲା ଏଡ଼େ କଥା ବୋଇଲୁଂ ଦୁର୍ଯୋଧନ
ଭାରୋଇମଲ ରଥି ସେ ପାଣ୍ଡେବ ଅର୍ଜୁନ ।।୮୦୦୮।।

ଜେ ସେ ଭାରୋଇମଲ ପୃଥି ଭାରାସେ ଖଣ୍ଡଇ
ଜେ ସେ ଭାରା ଖଣ୍ଡେ ସେହି ସେ ଭାବଗ୍ରାହି ||୮୦୦୯||
ଜେ ସେ ଭାବଗ୍ରାହି ସେ ଭଗତକୁ ଭେଳା
ଭଗତଙ୍କୁ ଭେଳା ସେ ସେତ ପଦ୍ମଡୋଳା ||୮୦୧୦||
ଜାହାର ସେତ ପଦ୍ମଂ ସେହି ସେ ଶ୍ରୀରାମ
ଜେ ସେ ଶ୍ରୀରାମ ସେ ବଧିଲେ ରାବଣ ||୮୦୧୧||
ଜେ ସେ ରାବଣ ବଇରି ସେହି ସେ ଅନନ୍ତ
ଜେ ସେ ଅନନ୍ତ ସେହି ସେ ଜଗନ୍ନାଥ ||୮୦୧୨||
ଜେ ସେ ଜଗନ୍ନାଥ ସେ ବସୁଦେବ ନନ୍ଦନ ଅଟଇ
ସେହି ସେ ପାଣ୍ଡେବଙ୍କର ମାଉସି ପୁଅ ଭାଇ ||୮୦୧୩||
ଜେ ସେ ଜନନି ବହେଣି ନନ୍ଦନ
ସେହି କୃଷ୍ଣ ଅବତାରେ ହୋଇଅଛି ଜନ୍ମ ||୮୦୧୪||
ଜେ ସେ ଶ୍ରୀରାମକୃଷ୍ଣ ସେହି ସେ ଫାଲଗୁନି
ଦୋହେଂ ସେ ଏକ ଆତ୍ମା ଅଟନ୍ତି ସେ ପୁଣି[୧] ||୮୦୧୫||
ସେ ଏକ ଆତ୍ମା ରଥି ସାରଥି ହୋଇବେ
ଦଧି ହୋଇବେ ସଇନି ଭାଣ୍ଡ ହୋଇବେ ପାଣ୍ଡବେ ||୮୦୧୬||
ଜହୁ ସେ ଦଧି ହୋଇବେ ସଇନି ସେନାପତି
ଅର୍ଜୁନ ଖୁଆ ହୋଇବେ ବାସୁଦେବ ମନ୍ଥି ||୮୦୧୭||
ଦଧି ନାସ ଜାନ୍ତେ ଉଠିବ ଲବଣିଂ
ସେହି ମତେ ତେରଜଣ ରହିବ ସେ ପୁଣିଂ ||୮୦୧୮||
ହରି ଅର୍ଜୁନ ନାସିବାକୁ ଜଣେ ଏଥି ନାହିଂ
ଏକଥା କିପାଇଂ କହୁଛ କୁରୁସାଇଂ ||୮୦୧୯||
କୃପବ୍ରହ୍ମା ବଚନେ ବୋଇଲା ଦୁର୍ଯୋଧନ
ଜେବେ ସେ ମାରି ନ ପାରିବ ହରି ଅର୍ଜୁନ ||୮୦୨୦||
ଆଉ କିପେଂ ତୁମ୍ଭେମାନେ ବସିଛ ସଭାର
କେଶରି ବୋଲି ଜାଣିଥିଲିଂ ହୋଇଲ ଛାଗଳ ||୮୦୨୧||
ସିଙ୍ଘ ହୋଇଣ ତ ହୋଇଲ ଛାଗଳ
ଧୋଣ୍ଡ ବିର୍ଜେ ଜନ୍ମି ଜେ ବୋଲାଅ ମଣିନାଗ ଆବର ||୮୦୨୨||
ମଜାଂରି ପ୍ରାଏ ମଣିଂ କରିଥିଲିଂ ଆସା
ଏବେ ଦେଖିଲିଂ ତୁମ୍ଭେ ହୋଇଲ ବଣମୁଷା ||୮୦୨୩||
ସମସ୍ତ ସଇନି ଜାଅ ହେ ଚଳାଇ
ଆମ୍ଭେ ଅନେସ୍ୱତ ସେ ପାଣ୍ଡେବ ପାଞ୍ଚଭାଇ ||୮୦୨୪||

---

୧ । ଘ ପୋଥିରେ ଭିନ୍ନ ଭାବରେ ନିମ୍ନ ଚାରିଧାଡ଼ି ଲେଖାଯାଇଛି –
ସେ ତ ଏକ ଆତ୍ମା ରଥି ମହାରଥି
ଦଧି ହୋଇବେ ସବୁ ସନ୍ୟ ସେନାପତି
ଶୁଣ ଗୋ ପାର୍ବତି କହନ୍ତି ପଶୁପତି
ଅର୍ଜୁନ ଖୁଆ ହୋଇ ପକାଇବ ମନ୍ଥି

ଧର୍ମକୁ[୧] ଆଦରିଣ ସମର କରିବା
କେହୁ ସେ ହାରିବ କେହୁ ସେ ଜିଣିବା ||୮୦୨୫||
ଏମନ୍ତ ବୋଲି ଜହୁଂ ବୋଇଲା ଦୁର୍ଯୋଧନ
ପ୍ରତିଜ୍ଞା କରି ଉଠିଲେ ଗଙ୍ଗାର ନନ୍ଦନ ||୮୦୨୬||
ଆଣ ଖଡ଼ଗ ରଣ ଦାନ ଦେବି ଟେକି
ସୁଣି ଖଡ଼ଗ ତଳେଂ ରଖିଲେ ଧୃତିରାଷ୍ଟି ||୮୦୨୭||
ଭିସ୍ମ ଦେବ ଖଡ଼ଗ ଧଇଲେ ହସ୍ତର
ବୋଇଲେ ସାଖିହୋଇ ଥାଅ ହେ ଦିଗପାଳ ||୮୦୨୮||
ଦଶଦିନ ଜାଏ ସେନାପତି ହୋଇବିଂ
ଦିନେକ ଦସ ସହସ୍ର ଯୋଦ୍ଧା ମୁଂ ମାରିବିଂ ||୮୦୨୯||
ଏତେ ବୋଲି ଖଡ଼ଗ ନୃପତି ହସ୍ତେ ଦିଲେ
ଦେଖି ଆନନ୍ଦିତ ଧୃତିରାଷ୍ଟ୍ର ବାଳେଂ ||୮୦୩୦||
ଭିସ୍ମଙ୍କର ସିରେଂ ମୁକୁଟ ବାନ୍ଧିଲା
ନାନା ଅଳଙ୍କାର ଦେହରେ ଖଜିଂଲା ||୮୦୩୧||
ଦେଖିଣ ଅସ୍ୱସ୍ଥମା କଲା ଉପହାସ୍ୟ ତ
ଅନ୍ୟାଏ ଆଚରିଲୁ ରାଜା କୁରୁନାଥ ||୮୦୩୨||
ଯୁଗତେ ଏ ଅପୁତ୍ରିକ ଗଙ୍ଗାର ତନଇ
ପ୍ରଥମେ ସେନାପତି ତାକୁ କଲୁ ତୁହିଂ ||୮୦୩୩||
ଜାଣିଲିଂ ସମ୍ପତି ହରାଇଲୁଂ ସକଳ
ଭୁରିସର୍ବା ବୋଇଲା କେମନ୍ତ ବିଚାର ||୮୦୩୪||
ଦେବତା ହରି ଜିଣି ପାରଇ ଜଗତ
ତାହାକୁ ଜିଣିମାକୁ କେ ହୋଇବ ସାମରଥ ||୮୦୩୫||
ଯୁଧିଷ୍ଟି ଅଗ୍ରତେ କହିଲେ ମୁନ୍ୟେହି
ହୋଇଲେ ସେନାପତି ଗଙ୍ଗାର ତନଇ ||୮୦୩୬||
ଦସ ଦିବସ ଜାଏ କରିବେ ସମର
ସୁଣି ଚିନ୍ତା ପାଇଲେ ପଣ୍ଡୁର କୁମର ||୮୦୩୭||
ଜଗନ୍ନାଥ ମୁଖ ଚାହିଂ ଯୁଧିଷ୍ଟି କହିଲେ
ପ୍ରଥମେ ସେନାପତି ଗଙ୍ଗାସୁତ ହେଲେ ||୮୦୩୮||
ତାହାକୁ ଜିଣି ଆମ୍ଭେ ନପାରିବା ପୁଣି
ଗୋବିନ୍ଦେ ବୋଇଲେ ଚିନ୍ତା ନକର ନୃପମଣି ||୮୦୩୯||
ଏତେ ବୋଲି ଗୋବିନ୍ଦ ସାଜିଲେ ନନ୍ଦିଘୋଷ
ପାଟ ଡୋରମାନଙ୍କରେ ଜୋଚିଲେ ଚାରି ଅସ୍ୱ ||୮୦୪୦||
ହିରା ନିଳା ମୋତି ମାଣିକ୍ୟ ବୈଦୁଜ
ସୁବର୍ଣ୍ଣ ପରାଗ ପ୍ରବାଳ କୁରୁବିନ୍ଦ ||୮୦୪୧||
ରଥ ଚୁଳିରେ ସୁବର୍ଣ୍ଣ କଳସ ବସାଇଲେ
ତହିଂପରେ ନେଇ ଚିରାଳ ବାନ୍ଧିଲେ ||୮୦୪୨||

---

୧ । ଘ ପୋଥି – କର୍ମକୁ

ଜେବଣ ରଥ ଦେଖି ଡରିବେ ତିନିପୁର ଜନ
କ୍ଷତ୍ରି ତ୍ରାସ ପାଇବେ ଛାଡ଼ିବେ ସେହି ରଣ ||୮୦୪୩||
ଆପଣେ ଜଗନ୍ନାଥ ବିମାନ ମଣ୍ଡିଲେ
ବ୍ରାହ୍ମଣମାନେ ବେଦ ଅଧ୍ୟାନ ତହିଂ କଲେ ||୮୦୪୪||
ଗ୍ରହପୁତ୍ରମାନେ ଚଣ୍ଡି ସିଉକାର[୧]
ଅଗ୍ରେଂ ଦଧିଭାଣ୍ଡ ଦ୍ୱାରେ ରମ୍ଭା ତରୁବର ||୮୦୪୫||
ସଙ୍ଖ ଧ୍ୱନି ହୁଳହୁଳି ସବଦ ଘନଘନ
ଢୋଲ ଦମା ଟମକ ବାଜଇ ବିତପନ ||୮୦୪୬||
ଅପୁର୍ବ ଅବତାର ହୋଇଣ ଫାଲଗୁନି
ବସିଲେ ରଥରେ ଗାଣ୍ଡିମ ଧନୁ ଘେନି ||୮୦୪୭||
ସୋଭଦ୍ରା ଦ୍ରୋପଦି ରଥ ବନ୍ଦାଇଲେ
ହନୁମତକୁ ଜଗନ୍ନାଥଂ ଚିନ୍ତାକଲେ ||୮୦୪୮||
ଚଉଦ କୋଟି ଦଧିମୁଖା ସଙ୍ଗତରେ ଘେନି
ବିସ୍ୱମୃତି ଧରିଣ ଅଇଲା ପାବେନି ||୮୦୪୯||
ହନୁମତ କଥା ଜାଣିଲେ ଭଗବାନ
ନନ୍ଦିଘୋସ ରଥକୁ କଲେ ବଜ୍ରସମ ||୮୦୫୦||
ଚାରିମେଘ ଚାରି ପିଢ଼ି ଚାରି ଯୋଗ ଚାରି ଚକ
ଚନ୍ଦ୍ର ସୁର୍ଯ୍ୟ ବେନି ହୋଇଲେ ରଥ ଅଖ ||୮୦୫୧||
ଅଷ୍ଟକୁଳା ଲାଗ ହୋଇଲେ ରଥଦଉଡ଼ି
ଠାବେ ଠାବେ ଦିଗପାଳ ବସିଲେ ଆବୋରି ||୮୦୫୨||
ଦେବଗଣରେ ନିର୍ମାଣ ହୋଇଲା ବିମାନ
ସେହି ସମୟରେ ଆସି ପ୍ରବେସ ହନୁମାନ ||୮୦୫୩||
ସ୍ୱର୍ଗ ମଞ୍ଚ ଆକାସ ଆସଇ ବିର ଘୋଟି
ଗୋବିନ୍ଦେ ବୋଇଲେ ରଥ ପାତାଳେଂ ଜିବ ଫୁଟି ||୮୦୫୪||
ଭିମକୁ ବୋଇଲେ ଏବେ ସମ୍ଭାଳ ରହୁବର
ସୁଣି ରଥକୁ ଟେକି ଧଇଲା ବିକୋଦର ||୮୦୫୫||
ବିସ୍ୱମୃତି ଧରି ମାରୁତି ବସଇ
ଭିମ ବାମ ଅଙ୍ଗେ ରଥ ନିଶ୍ଚଳେ ଅଛଇ ||୮୦୫୬||
ଡାକିଲା ହନୁମତ ଧନ୍ୟରେ ପାଣ୍ଡବେ
ତୁମ୍ଭକୁ ଏଡ଼େ ସାହା ହୋଇଛି ବାସୁଦେବେ ||୮୦୫୭||
ଅନ୍ୟ ଜନ ପାରନ୍ତାକି ମୋହର ଭାରା ସହି
ରଥ ସଙ୍ଗତେ ରାସାଙ୍ଗତ ହୁଅନ୍ତା ସେହି ||୮୦୫୮||
ଏମନ୍ତ ବୋଲି ପ୍ରସଂସିଲା ହନୁମାନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ||୮୦୫୯||
ସମରକୁ ସନ୍ୟ ହୋଇଲେ ଆଗଭର
ବସିଲେ ରଥିମାନେ ବାହାନ ବିମାନର ||୮୦୬୦||

୧ । ଘ ପୋଥି – ଗ୍ରହ ପୁତ୍ରମାନେ ଚଣ୍ଡି ଯେ ଉଂକାର

ଭିମସେନର ସାରଥି ହୋଇଲା ଅଜଏ
ନକୁଳ ସାରଥି ଭାଗ୍ୟବର[୧] ହୋଏ ||୮୦୬୧||
ସହଦେବ ସାରଥି ଅନଙ୍ଗ[୨] ତେଜବର
ଯୁଧିଷ୍ଟିଙ୍କ ସାରଥି ସୁକ୍ର[୩] ବିପ୍ରବର ||୮୦୬୨||
ଦ୍ରୋପଦର ସାରଥି ମକରଧ୍ୱଜ ବର
ଦୃଷ୍ଟଦୁମ୍ନ ସାରଥି ଅଜଟ ମହାବିର ||୮୦୬୩||
ବିରାଟର ସାରଥି ଜମ୍ୱୋମାଳି[୪] ହେଲା
ସେତ କୁମାର ସାରଥି ସାତ୍ୱିକି ହୋଇଲା ||୮୦୬୪||
ସଙ୍ଖର ସାରଥି ହୋଇଲା ଚୈତନ
ଅଭିମନୁ ରଥ ବାହିଲା କେତନ ||୮୦୬୫||
ବିରାଟର ନନ୍ଦନ ଅଟଇ ଉତ୍ତରା
ତାହାର ସାରଥି ହୋଇଲା ସସ୍ରକଳା ||୮୦୬୬||
ହବିପାଳ ନନ୍ଦନ ନନ୍ଦପାଳ ବସ୍ତ[୫]
ସେହି ସାରଥି ଦୃଦକ୍ଷର ରଥ ||୮୦୬୭||
ହିଡ଼ିମ୍ବିକିର ନନ୍ଦନ ଘଟଉକ୍ଚ ବୋଲି
ତାହାର ସାରଥି ହୋଇଲା କର୍ଣ୍ଣବଳି ||୮୦୬୮||
ଭିସ୍ମଙ୍କର ସାରଥି ହୋଇଲା ମନୁମତ
କର୍ଣ୍ଣର ସାରଥି ହୋଇଲା ଶାସେକ କାଳସର୍ପ ||୮୦୬୯||
ଦ୍ରୋଣଙ୍କର ସାରଥି ବିଶ୍ୱାବସୁ ଗନ୍ଧର୍ବ ବିର
କୃପ ଆଚାର୍ଯ୍ୟ ରଥ ବାହିଲା ଭାଗ୍ୟବର ||୮୦୭୦||
ଏକଜଟି ବାହିଲା ଅସ୍ୱସ୍ତମା ରଥ
ସଲ୍ୟଙ୍କର ସାରଥି ମସ୍ଇନ୍ଦ୍ର ସୁତ[୬] ||୮୦୭୧||
ବାଲମ୍ବିକ ସାରଥି ବୃନ୍ଦାଅର୍କ ହୋଇ
ସୋମଦତ ସାରଥି ମଲକେତୁ ସେହିଂ ||୮୦୭୨||
ଦୁର୍ଯୋଧନ ସାରଥି ହୋଇଲା ଜମ୍ୱୋଅର୍କାର
ଅଦୃସି ବାହିଲା ଦୁସାସନ ରହୁବର ||୮୦୭୩||
କୃପବ୍ରହ୍ମା ସାରଥି ମଳଭା[୭] ହୋଇଲା
ଭୁରିସର୍ବା ରଥ ବୈଲୋଚନ ବାହିଲା ||୮୦୭୪||

୧ । ଘ ପୋଥି – ଭାଗ୍ୟଗୁରୁ
୨ । ଘ ପୋଥି – ଅଲଙ୍ଗ
୩ । ଘ ପୋଥି – ସୁକ
୪ । ଘ ପୋଥି – ଜମ୍ୱୋବାଳୀ
୫ । ଘ ପୋଥି – ଅଭିପାର ନନ୍ଦନ ନଳଦଳନ ବଛ
୬ । ଘ ପୋଥିରେ ଏହାର ତଳଧାଡ଼ିଟି ଅଧିକ ଅଛି –
ଏହି ରୂପେ ସାରଥି ହୋଇଲେ ଅନେକ
୭ । ଘ ପୋଥି – ମଳୟ

ଅର୍ଜୁନ ଅଟଇ ରଥିଙ୍କ ସିରୋମଣିଂ
ତାହାଙ୍କର ସାରଥି ଦେବ ଚକ୍ରପାଣିଂ ॥୮୦୭୫॥
ଗମିଲେ ସନ୍ୟସେନା ଭାରତ ଭୁମି କତି
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି ॥୮୦୭୬॥
ତ୍ରିଗତ ସବର ମିଳିଲା ମାନଗୋବିନ୍ଦର କତି
ବୋଇଲା ରାଜା ମୋତେ କରହେ ସେନାପତି ॥୮୦୭୭॥
ଦୁର୍ଯୋଧନ ବୋଇଲା ଛାର ସବରା ଜାତି ତୁହିଂ
କେମନ୍ତେ ସେନାପତି କରିବଇଂ ମୁହିଂ ॥୮୦୭୮॥
ଛାର ବୋଲି ବୋଲନ୍ତେ ତ୍ରିଗତ ବାହୁଡ଼ିଲା
ସେନାପତି କର ବୋଲି ହରିକିଂ କହିଲା ॥୮୦୭୯॥
ଗୋବିନ୍ଦେ ବୋଇଲେ ତୋର ବହୁତ ନାହିଂ ବାଣ
ତିନିଗୋଟା କାଣ୍ଡରେ କରିବୁ କେହ୍ନେ ରଣଂ ॥୮୦୮୦॥
ସବର ବୋଇଲା ଏ ସରେ ଅଛି ବହୁତ ଗୁଣ
କାଣ୍ଡକେ ନାଗଲୋକ କାଣ୍ଡକେ ଦେବଗଣ ॥୮୦୮୧॥
କୌରୋବ ପାଣ୍ଡବଙ୍କର ଅଟଇ କେତେବଳ
ସମସ୍ତ ନାସିବିଂ ପେସିବିଂ ଏକସର ॥୮୦୮୨॥
ଏତେବୋଲି ସବର ନାରାଜ ଦେଖାଇଲା
ତିନିପୁର ଲୋକେ ନାରାଜମୁନରେ ଦିସିଲା[1] ॥୮୦୮୩॥
ଏକସରେ ସିନ୍ଦୁର ବେନିସରେ ପୁଷ୍ପମାଳା
ତ୍ରିୟସରେ ଛେଦିବି ବୋଲଇ ସବରା ॥୮୦୮୪॥
ଏତେବୋଲି ନାରାଜ ବେନି ପେସିଲା ସବର
ବେନିସରେ ପୁଷ୍ପମାଳ ସିନ୍ଦୁର କପୋଳର ॥୮୦୮୫॥
ଶ୍ରୀକୃଷ୍ଣ କନେଷ୍ଟ ଅଙ୍ଗୁଳି ଅଗ୍ରରେଂ ଲାଗିଲା
ଏକସରେ ତିନିପୁର ନାସିବ ଜାଣିଲେ ଚକାଡୋଳା ॥୮୦୮୬॥
ଗୋବିନ୍ଦେ ବୋଇଲେ ସୁଣରେ ସବର
କଥାୟେକ ମାଗିବା ଦେବୁକି ସତ୍ୟକର ॥୮୦୮୭॥
ସବର ବୋଇଲା ସତ୍ୟ ହୋଇଲା ମୋହର
ଗୋବିନ୍ଦେ ବୋଇଲେ ଦେବୁ ମୋତେ ସିର ॥୮୦୮୮॥
ସବର ବୋଇଲା ଜେବେ ସିରଦେବିଂ
ଅଠର ଦିବସ ମୁଂ ଭାରତ ଦେଖିବିଂ[2] ॥୮୦୮୯॥
ଗୋବିନ୍ଦେ ବୋଇଲେ ଏକଥା ହୋଇଲା
ସବର ନିମନ୍ତେ ଏକ ବେଣୁବୃକ୍ଷ ବିକାସିଲା ॥୮୦୯୦॥
ଦେଖିଣ ନାରାୟଣ ଚକ୍ରକୁ ଆଜ୍ଞାଦିଲେ
ସବର ସିରକାଟି ଲଗାଅ ବେଣୁ ବୃକ୍ଷରେଂ ॥୮୦୯୧॥
ଏହୁ ଥିଲେ ଭାରତ ସମର ନୋହିବ
ସୁଣି ଚକ୍ର କାଟିଲା ସବରର ମୁଣ୍ଡ ॥୮୦୯୨॥
ସବର ମୁଣ୍ଡରୁ ସବଦ ସୁଭିଲା
ଭାରତ ଦେଖୁଥିବି ରଖହେ ଚକାଡୋଳା ॥୮୦୯୩॥
ସୁଣି ଜଗନ୍ନାଥ ରଖିଲେ ତାର ସିର
ସୁଣଗୋ ଓମା ବୋଲି ବୋଲନ୍ତି ଦିଗାମ୍ବର ॥୮୦୯୪॥

## ଭୀଷ୍ମଙ୍କ ପ୍ରଥମ ଦିନ ଯୁଦ୍ଧ

ବେନି ବଳ ସବୁ ରହିଲେ ଉଭାରି
ଅର୍ଜୁନ ମୁଖ ଚାହିଂ ବୋଇଲେ ଦେବହରି ॥୮୦୯୫॥
ନାରାଜ ବିନ୍ଧ ପାଥ ଭିସ୍ମଂ ନାସ ଜାଉ
ଦସଦିନ ସମର ଆଜଠାରୁ ରହୁ ॥୮୦୯୬॥
ଅର୍ଜୁନ ବୋଇଲା ସେ ଅଟନ୍ତି ପିତାମହ
ବିଦ୍ୟାଗୁରୁ ଦ୍ରୋଣ ଭରଦ୍ୱାଜ ପୁଅ ॥୮୦୯୭॥
ସଲ୍ୟମାତୁଳ କର୍ଣ୍ଣ ଭାଇ ଜେଷ୍ଟ
କୁଳବୃଦ୍ଧ ଭୁରିସର୍ବା ଭିଣୋଇ ଜଦ୍ୟରଥ ॥୮୦୯୮॥
ଅସ୍ୱସ୍ତମା ଆଦି ସଙ୍କୁନି ଜେତେ ରଥି
ସମସ୍ତେ ବାନ୍ଧେବ ସହଦ୍ରୋ ଅଟନ୍ତି ॥୮୦୯୯॥
କେମନ୍ତେ ତାହାଙ୍କୁ ବିନ୍ଧିବଇଂ ସର
ବିନ୍ଧିବାକୁ ସକ୍ଷ୍ୟ ନ ବଳଇ ମୋହର ॥୮୧୦୦॥
ଶ୍ରୀହରି ବୋଇଲେ ଜେବେ ସହୋଦର ବନ୍ଧୁ
ସେହି ପ୍ରମାଦ ପାଞ୍ଚିଲେ ପଛେ ନିକି କାନ୍ଦୁ ॥୮୧୦୧॥
ଯୁଧିଷ୍ଠି ବୋଇଲେ ହରି ଜାଉଅଛି ମୁହିଂ
ଗ୍ରାମ ଖଣ୍ଡିଏ ମାଗିବିଂ ଦେଉ କୁରୁସାଇଂ ॥୮୧୦୨॥
କିପାଇଂ ସନ୍ୟ ଲୋଚାକ ଜିବେ ନାସ
ବନ୍ଧୁଗଣମାନ ମିଳିଛନ୍ତି ପାସ ॥୮୧୦୩॥
ଆହୋ ଦିଗପାଳେଂ ହୋଇଥାଅ ସାହିଂ
ଅଦ୍ୟାପି ଧର୍ମକୁ ଲଙ୍ଘୁନାହିଂ ମୁହିଂ ॥୮୧୦୪॥
ଏମନ୍ତ ବୋଲିଣ ଗମିଲେ ଯୁଧିଷ୍ଠି
ପ୍ରଥମେ ସାଏନ୍ତନୁ ନନ୍ଦନକୁ ଭେଟି ॥୮୧୦୫॥
ନମସ୍କାର କରନ୍ତେ ଭିସ୍ମେଂ କଲେ ଆସିର୍ବାଦ
ପଞ୍ଚୁକଟକରେ ହୁଅ ନୃପଦେବ ॥୮୧୦୬॥
ବୋଲନ୍ତି ଯୁଧିଷ୍ଠି ତୁମ୍ଭ ଆଜ୍ଞା ହେଲେ ସିନା
ଦସଦିନ ସମର କରିବିଂ ବୋଲନ୍ତି ସାଏନ୍ତନା ॥୮୧୦୭॥
ସତେ ସହସ୍ରେ ଯୋଦ୍ଧା ଦସ ଦିବସେ ମାରିବିଂ
ଶ୍ରୀଖଣ୍ଡିକି ଦେଖି ମୁହିଂ ସହସ୍ର ଛାଡ଼ିବିଂ ॥୮୧୦୮॥
ସେଠାରୁ ଯୁଧିଷ୍ଠି ପ୍ରବେସ ଦ୍ରୋଣଠାର
ନମସ୍କାର କରନ୍ତେ ଆସିର୍ବାଦ କଲେ ଭରଦ୍ୱାଜ କୁମର ॥୮୧୦୯॥

୧ । ଘ ପୋଥିରେ ଏକ ସରେ ସିନ୍ଦୁର ଠାରୁ ଜାଣିଲେ ଚକାଡୋଳା ପର୍ଯ୍ୟନ୍ତ ନାହିଁ
୨ । ଘ ପୋଥିରେ ଗୋବିନ୍ଦେ ବୋଇଲେ ଠାରୁ ବେଣୁବୃକ୍ଷରେ ପର୍ଯ୍ୟନ୍ତ ନାହିଁ

ଦ୍ରୋଣେ ବୋଇଲେ ମୋ ହସ୍ତେଂ ସହସ୍ରଥିଲେ
କେହି ମୋତେ ଜିନେ ନ ପାରିବେ ଭଲେ ॥୮୧୧୦॥
ଶୃଙ୍ଗାର ଭୋଜନେ ନଥାଇ ହସ୍ତେ ସଶ୍ର
ତେଜିବିଂ ସହଶ୍ର ସୁଣିଲେ ଅସ୍ୱସ୍ତମା ହତ ॥୮୧୧୧॥
ତହୁଂ ଧର୍ମସୁତ ଗମନ କରିଗଲେ
ଦୁର୍ଯୋଧନକୁ ଭେଟି ଗ୍ରାମଖଣ୍ଡିଏ ମାଗିଲେ ॥୮୧୧୨॥
ଦୁର୍ଯୋଧନ ବୋଇଲା ଯେବେ ହୋଇଲୁଂ ନିସତ
ଭାଇଙ୍କି ଘେନିଜାଇ ପସଜା ବନସ୍ତ ॥୮୧୧୩॥
ବିନା ସମରେ ସୁଚିମୁନେଂ ମୁଂ ନ ଦେବଇଂ
ଯୁଧିଷ୍ଟି ବୋଇଲେ ଅନ୍ୟାୟେ କରୁ କୁରୁସାଇଂ ॥୮୧୧୪॥
ଜେତେ ସନ୍ୟ ନାସଜିବେ ଭାରତ ସମର
ତାହାଙ୍କ ହତ୍ୟାଦୋସ ବହିବୁ କନ୍ଧର ॥୮୧୧୫॥
ଆହୋ ଦିଗପାଳେଂ ହୋଇଥାଅ ସାହିଂ
ମୋହର ଦୋସାଦୋସ ଆଉ କିଛି ନାହିଂ ॥୮୧୧୬॥
ଏମନ୍ତ ବୋଲି ଜହୁଂ ବୋଇଲେ ଧର୍ମସୁତ
ଯୁଧିଷ୍ଟିଙ୍କି ମାର ବୋଲି ବୋଇଲେ କୁରୁନାଥ ॥୮୧୧୭॥
ମାର ବୋଲି ବୋଲନ୍ତେ ମାଇଲେ ସଇନି
ମାଇଲେ ଯୁଧିଷ୍ଟିଙ୍କି ଛେଲ ଚକ୍ର ଘେନି ॥୮୧୧୮॥
ଦୁର୍ଯୋଧନ ଭ୍ରାଥ ଦୃଦକ୍ଷ ଧାଇଂଲା
ସତେ ଯୋଦ୍ଧା ଘେନି ଯୁଧିଷ୍ଟିଙ୍କି ସାହାହେଲା ॥୮୧୧୯॥
ଧାଅଂ ବୋଲି ଦୁସାସନକୁ ବୋଇଲା ଧୃତିରାଷ୍ଟି
ଦୃଦକ୍ଷକୁ ଚୋରାଇ ତେଣେ ନେଉଛି ଯୁଧିଷ୍ଟି ॥୮୧୨୦॥
ଧାଇଂଲା ଦୁସାସନ ଭ୍ରାଥମାନ ଘେନି
ଆବର ସନ୍ୟ ପଞ୍ଚାସ କ୍ଷେଉଣିଂ ॥୮୧୨୧॥
ସତେପୁର କରିଣ ବେଢ଼ିଲେ ଯୁଧିଷ୍ଟିଙ୍କି
ଦୃଦକ୍ଷ ନାରାଜ ବିନ୍ଧୁଅଛି ହାକି ॥୮୧୨୨॥
ଦୁସାସନ ବୋଇଲାରେ ପାପିଷ୍ଟ ଚାଣ୍ଡାଳ
ମରିବୁ ବୋଲି ପସିଲୁ ପାଣ୍ଡବଙ୍କଠାର ॥୮୧୨୩॥
ଆସ ଆସ ଦୃଦକ୍ଷରେ ମୋହର ସପତ
ପେଟକୁ ଛାଡ଼ି ପିଠିକି କୋଳକରୁ ଭ୍ରାଥ ॥୮୧୨୪॥
ଦୃଦକ୍ଷ ବୋଇଲାରେ ଅନ୍ୟାଏ କଲ ତୁମ୍ଭେଂ
ତୁମ୍ଭେଂ ରାଜ୍ୟେଂ ଥାଅ ବନସ୍ତେ ବୋଲନ୍ତି ପାଣ୍ଡବେ ॥୮୧୨୫॥
ଗ୍ରାମ ଖଣ୍ଡିଏ ନଦେଇ କରୁଅଛ ରଣ
ପାଣ୍ଡେବଙ୍କୁ ସାହା ହୋଇଛି ଭଗବାନ ॥୮୧୨୬॥
କୌରୋବଙ୍କୁ ନାସିଣ ରଖିବେ ପାଣ୍ଡେବ
ତେଣୁ ମୁଂ ମିଳିଲି ଯୁଧେଷ୍ଟିଙ୍କ ଠାବ ॥୮୧୨୭॥
ଦୁସାସନ ବୋଇଲାରେ ମାରିବିଂ ତୋତେ ଆଜ
ପାଣ୍ଡବଙ୍କ ଲାଗିରେ ମରିବୁ ନିଲଜ ॥୮୧୨୮॥
ଏମନ୍ତ କହି ଦୁସାସନ ନାରାଜ ବିନ୍ଧିଲା
ନନ୍ଦିଘୋସ ରଥେଂ କପି କେତନ ଦେଖିଲା ॥୮୧୨୯॥
ବୋଇଲା ହନୁମନ୍ତ ସୁଣରେ ଅର୍ଜୁନ
ଯୁଧିଷ୍ଟି ଜାଇଥିଲେ ମାଗିବାକୁ ଗ୍ରାମ ॥୮୧୩୦॥
ଗ୍ରାମ ନ ଦେଇ ଏବେ ମାରନ୍ତି କୁରୁଜାଠି
ଦୃଦକ୍ଷ ନଥିଲେ ନାସ ଜାଆନ୍ତାନି ଯୁଧିଷ୍ଟି ॥୮୧୩୧॥
ଗୋବିନ୍ଦେ ଆଜ୍ଞାଦିଲେ ଧାଅଂରେ ବିକୋଦର
ଆଗହୁଂ ଯୁଧିଷ୍ଟି ଜାଉଛନ୍ତି ମାର ॥୮୧୩୨॥
ସୁଣି ବିକୋଦର କୋପଭର ହୋଇ
ସାରଥିକି ବୋଇଲାରେ ବିମାନ ଦିଅ ବାହିଂ[୧] ॥୮୧୩୩॥
ଅର୍ଜୁନ ବୋଇଲା ରଥ ବାହା ଭଗବାନ
ନିକି ନିଧନ ହୁଅନ୍ତି ଯୁଧିଷ୍ଟି ରାଜନ ॥୮୧୩୪॥
ଗୋବିନ୍ଦେ ବୋଇଲେ ଜେବେ ବାହିବିଂ ରହୁବର
ଜାହାର ସଙ୍ଗରେ ବାବୁ କରିବୁ ସମର ॥୮୧୩୫॥
ସମସ୍ତେଂ ତୋହାର ବନ୍ଧୁ ସୋଦର[୨] ଅଟନ୍ତି
କାହାକୁ ନାରାଜ ତୁ ବିନ୍ଧିବୁ ସର୍ବସାଚି ॥୮୧୩୬॥
ଅର୍ଜୁନ ବୋଇଲା ଶତୃ ହୋଇଲେ ମୋହର
ଜେବେ ଯୁଧିଷ୍ଟିଙ୍କି ସେ କଲେକ ସମର[୩] ॥୮୧୩୭॥
ବାହା ବାହା ହରି ତୁମ୍ଭେ ନକର ବିଳମ୍ବ
ସୁଣି ଚାରି ଅସ୍ୱକୁ ଟିପିଲେ ଗୋବିନ୍ଦ ॥୮୧୩୮॥
ଭିସ୍ମଙ୍କଠାରେ ମିଳିଲା ନନ୍ଦିଘୋସ ରଥ
ଭିସ୍ମଙ୍କୁ ନମସ୍କାର କଲା ବିରପାଥ ॥୮୧୩୯॥
ତ୍ରିଜିବି ହୁଅ ବୋଲି ବୋଇଲେ ଗଙ୍ଗାସୁତ
ଦ୍ୱନ୍ଦରେ ପସିଲେରେ ତୁମ୍ଭେ ନଜାଇ ବନସ୍ତ ॥୮୧୪୦॥
ରାଜ୍ୟପାଇଂ ଜେବେ ଇଚ୍ଛାକଲ ତୁମ୍ଭେଂ
ନକର ହେଳା ରଣକର ଆମ୍ଭ ସଙ୍ଗେ ॥୮୧୪୧॥
ଅର୍ଜୁନ ବୋଇଲା ଅଗ୍ରେଂ ବିନ୍ଧ ତୁମ୍ଭେ ସର
ଅଗ୍ରେଂ ସେନାପତି କରିଛି କୁରୁବିର ॥୮୧୪୨॥
ନିସତେ ହୋଇଲେ ଜାଅ ଆଡ଼େ ହୋଇ
କୌରୋବ ଥାଟ ମୁଂ ମାରିବି ଗୋଡ଼ାଇ ॥୮୧୪୩॥
ଅର୍ଜୁନ ବଚନେ କୋପିତ ଗଙ୍ଗାତନୁ
ତିନିଗୋଟି ନାରାଜ କଲେକ ଆଦ୍ୟାନୁ ॥୮୧୪୪॥

୧ । ଘ ପୋଥିରେ ତଳେ ଗୋଟିଏ ଧାଡ଼ି ଅଧିକ ଅଛି –
ଏମନ୍ତ ପ୍ରକାରେ ଯେ କହନ୍ତି ଭାବଗ୍ରାହୀ
୨ । ଘ ପୋଥି – ସୋହଦ୍ର
୩ । ଘ- ଯେଣୁ ଯୁଝେଷ୍ଟି ମୋର ପଡ଼ିଲେ ଘେରର

ଅର୍ଜୁନ ମସ୍ତକେ ଆସିର୍ବାଦ କଲା
ଦେଖି ସର୍ବସାଚି ବାଣେକ ବିନ୍ଧିଲା ॥୮ ୧୪୫॥
ଭିସ୍ମଙ୍କ ପାଦତଳେ ନାରାଜ ଲୋଟଇ
ପୁଣି ସାତବାଣ ବିନ୍ଧିଲା ଧନୁର୍ଜଇ ॥୮ ୧୪୬॥
ପ୍ରତି ସର କରି ଛେଦିଲେ ସାୟେନ୍ତନିଂ[1]
ପୁଣି ନବବାଣ ବିନ୍ଧିଲେ ଫାଲଗୁନି ॥୮ ୧୪୭॥
କେହୁ ସର ବିନ୍ଧଇ କେହୁଣ ଛେଦଇ
ଏମନ୍ତେ ସମର ଭିସ୍ମ ଧନୁର୍ଜଇ ॥୮ ୧୪୮॥
ଭିମସେନ ସନ୍ୟ ପିଟିଣ ଗଦାକଲା
କୃପ ଆଚାର୍ଯ୍ୟ ସଙ୍ଗତେ ନକୁଳ ଜୁଝିଲା ॥୮ ୧୪୯॥
ସହଦେବ ସୋମଦତ ସନ୍ୟ ପିଟାପିଟି
ବିରାଟ ଦ୍ରୋଣଗୁରୁ ହୋଇଲେ ଭେଟାଭେଟି ॥୮ ୧୫୦॥
ଦୃଷ୍ଟଦ୍ରୁମନ ସଙ୍ଗତେ ଭୁରିସର୍ବା ଜୁଝିଲା
କୃପବ୍ରହ୍ମା ସଙ୍ଗତେ ଶ୍ରୀଖଣ୍ଡି ଯୁଦ୍ଧ କଲା ॥୮ ୧୫୧॥
ସେତର ସଙ୍ଗତେ ସମର ଯଦ୍ୟରଥ
ସଲ୍ୟକୁ ଭେଟିଲା ହିଡ଼ିମ୍ବିକର ସୁତ ॥୮ ୧୫୨॥
ଅସ୍ୱସ୍ତମା ସଙ୍ଗତେ ଜୁଝିଲା ଉତ୍ତର
ଏମନ୍ତେ ରଥିମାନେ କଲେକ ସମର ॥୮ ୧୫୩॥
ଏମନ୍ତେ ଗୋଳଯୁଦ୍ଧ ହୋଇଲାକ ତହିଂ
ଏକକୁ ଆରେକ ଦେଖିଲେ ନ ଛାଡ଼ଇ ॥୮ ୧୫୪॥
ଭିସ୍ମଙ୍କର ସଙ୍ଗତେ ଜୁଝଇ ଅର୍ଜୁନ
ଆଖି ପିଞ୍ଛା ପ୍ରମାଣେ ଭିସ୍ମ ବିନ୍ଧୁଛନ୍ତି ବାଣ ॥୮ ୧୫୫॥
ତାରାକ୍ଷି ବୋଲିଣ ଉଡୁଥିଲା ଏକ ପକ୍ଷି
ନାରାଜ ବାଜିଣ ତାହାର ପେଟଗଲା ଫାଟି ॥୮ ୧୫୬॥
ଗର୍ଭରୁ ତାହାର ବେନି ବାଳେକ ପଡ଼ିଲେ[2]
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୮ ୧୫୭॥
ସେ ତାରାକ୍ଷି ସମ୍ଭୁରାଜାର ଘରଣି ଅଟଇ
ଆପଣା ସ୍ୱାମି ସାପ୍ୟେଂ ପକ୍ଷିଥିଲା ହୋଇ ॥୮ ୧୫୮॥

ଭାରତରଣେ ମରି ମୁକତି ପାଇଲା
ସେ ଡିମ୍ବକୁ ଘଣ୍ଟ ଢାଙ୍କି ରଖିଲେ ଚକାଡୋଳା ॥୮ ୧୫୯॥
ମକର ତ୍ରୟୋଦସି ଚନ୍ଦ୍ରନାମେ ବାର
ନାଗନାମେ କରଣ ବିପ୍ରାତ ନାମେ ଯୋଗର ॥୮ ୧୬୦॥
ନକ୍ଷତ୍ର ନାମେ ଅସ୍ୱନି ଗଣ୍ଡନାମେ ମୁଳା
ପ୍ରଥମ ଯୁଦ୍ଧରେ ଭିସ୍ମଂ ତେଜ ଅନର୍ଗଳା ॥୮ ୧୬୧॥
ଅଢ଼ାଇ ପ୍ରହର ହୋଇଲେ ଦିନକର
ଅର୍ଜୁନ କପୋଳୁଂ କଣ୍ଟିଲା ଶ୍ରମଝାଳ ॥୮ ୧୬୨॥
ଝାଳ ପୋଛିବାବେଳେ ଭିସ୍ମ ବିନ୍ଧିଲେକ ବାଣ
ଦସ ସହସ୍ର ଯୋଦ୍ଧା ହୋଇଲେ ନିଧନ ॥୮ ୧୬୩॥
ସମର ରହୁ ବୋଲି ଡାକିଲେ ଗଙ୍ଗାସୁତ
ସଙ୍ଖଧ୍ୱନି ଦେଇ ଚଳାଇଲେ ଥାଟ ॥୮ ୧୬୪॥
ଅର୍ଜୁନ ବୋଇଲେ ଥାଟ କିପାଇଂ ଫେରାଇଲା
ଗୋବିନ୍ଦେ ବୋଇଲେ ଦସ ସହସ୍ର ରଥି ପଡ଼ିଲା ॥୮ ୧୬୫॥
ଦେଖିଣ ସର୍ବସାଚି ବିରସ ବଦନ
ଆପଣା ଥାଟ ଘେନି ପ୍ରବେସ ବାରୁଣା ଭୁବନ ॥୮ ୧୬୬॥
ସମସ୍ତେ ସନ୍ୟଘେନି ନଦିଜଳେ କଲେକ ସ୍ନାହାନ
ଭୋଜନ ସାରି ହୋଇଲେ ହୃଷ୍ଟମନ ॥୮ ୧୬୭॥
ଦ୍ୱାରିକାକୁ ଗମନ କଲେ ବାସୁଦେବ
ସାଧୁ ଭିସ୍ମ ବୋଲିଣ ବୋଲନ୍ତି କୌରୋବ ॥୮ ୧୬୮॥
ନଗ୍ର ମଣ୍ଡାଇଣ ସମସ୍ତେ ଆନନ୍ଦ
ରଜନି ହୁଅନ୍ତେ ସମସ୍ତେ ଗଲେ ନିଦ ॥୮ ୧୬୯॥
ଏଥୁ ଅନ୍ୟନ୍ତରେ ପାହିଲା ରଜନି
ନିଦ୍ରା ଉପେକ୍ଷିଣ  ରହିଲେ ସଇନି ॥୮ ୧୭୦॥
ସଉଚବନ୍ତ ହୋଇ ଆରୋହିଂ ବିମାନ
ସଜହୋଇ ରଥେ ବସିଲେ ଗଙ୍ଗାର ନନ୍ଦନ ॥୮ ୧୭୧॥
ଭିସ୍ମଙ୍କୁ ଦୁର୍ଯୋଧନ ପ୍ରଶଂସା କରଇ
ତୁମ୍ଭର ଭୁଜକୁ ମୋର ଆସ ଅନେକ ଅଛଇ ॥୮ ୧୭୨॥
ଭିସ୍ମେ ବୋଇଲେ ମୁଂ କରିବି ଅପାଣ୍ଡେବ
ଏ ପଞ୍ଚୁକଟକେ ତୋତେ ଭୋଗ୍ୟ ହୋଇବ ॥୮ ୧୭୩।
ଏମନ୍ତ କହୁଂ କହୁଂ ସନ୍ୟ ହେଲେ ରୁଣ୍ଡ
ନିସାଣର ଘାଏ କମ୍ପଇ ବ୍ରହ୍ମାଣ୍ଡ ॥୮ ୧୭୪॥
ଢୋଲ ଦମା ଦାଉଣ୍ଡିଂ ମଦିଳ ବାଜଇ
ନେତ ପତାକା ଚିରାଳ ଉଡ଼ଇ ॥୮ ୧୭୫॥
ଏମନ୍ତେ ଥାଟ ଗୋଟି ହୋଇଲେ ବାହାର
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ॥୮ ୧୭୬॥

---

୧ । ଘ ପୋଥି – ୟେସନେକ ସର ଛେଦିଲେକ ମନୁ
୨ । ଘ ପୋଥିରେ ସୁଣ ଗୋ ଠାରୁ ପକ୍ଷିଥିଲା ହୋଇ ବଦଳରେ
ନିମ୍ନ ତିନିଧାଡ଼ି ରହିଛି
ସେ ପକ୍ଷି ସମ୍ଭୁରାଜା ଘରେଣୀ ପୂର୍ବକାଳେ
ଶ୍ରୀକୃଷ୍ଣ ମୁଖ ଚାହିଂ ଭାରଥେ ଉଡ଼ଇ
ସେ ପକ୍ଷୀ ସେଠାରେ ମୁକତି ଗଲା ହୋଇ

## ଦ୍ୱିତୀୟ ଓ ତୃତୀୟ ଦିନ ଯୁଦ୍ଧ ଏବଂ ସୋମଦତ୍ତର ମୃତ୍ୟୁ

ବାରୁଣାରେ ଶ୍ରୀହରି ସାଜିଲେ ନନ୍ଦିଘୋସ ରଥ
ବିର ଅବତାର ହୋଇଲା ବାସେବର ସୁତ ।।୮୧୭୭।।
ଅର୍ଜୁନକୁ ବେସ କରାଇ ବନମାଳି
ତାଡ଼ ତୋଡ଼ର ବାହୁଟି ଖଜିଂଲେ ବିରବଳି ।।୮୧୭୮।।
ତ୍ରିସାଖା ମକୁଟ ସିରରେ ଖଜଂଇ
କୃଷ୍ଣ ଅବତାର ହୋଇଛି ଧନୁର୍ଜଇ ।।୮୧୭୯।।
ବାମହସ୍ତେ ଗାଣ୍ଡିମ ଡାହାଣେ ପସୁପତ୍ର
କଟିରେ ଅକ୍ଷୟ ତ୍ରୋଣ ଭିଡ଼ିଣ ବିରପାଥ ।।୮୧୮୦।।
ଜାହାର ସାରଥି ଜଗନ୍ନାଥଂ ହୋଇ
ତାହାର ମହିମାକୁ କିସ ବର୍ଣ୍ଣିବଇଂ ।।୮୧୮୧।।
ଜେ ଜାହା ବାହାନ ଉପରେ ବିଜଏ କଲେ ରଥି
ପ୍ରବେସ ହୋଇଲେ ଭାରତ ଭୁମି କତି ।।୮୧୮୨।।
ଲାଗିଲେ ରଣଗୋଳ ଭେଟିଲେ ସନ୍ୟ ସେନା
ବିକୋଦର ସଙ୍ଗତେ ସମର ଅଶ୍ୱସ୍ତମା ।।୮୧୮୩।।
ଭୁରିସର୍ବା ବିରାଟ ଦ୍ରୋଣଗୁରୁ ସଲ୍ୟ ଦ୍ରୋପଦ
ସହଦେବ ସକୁନି କୃପଆଚାର୍ଯ୍ୟ କୁରୁବିନ୍ଦ ।।୮୧୮୪।।
ଘଟଉକ୍ରଟ ସଙ୍ଗତେ ଜୁଝିଲା ଅଳମ୍ବୁସ
ସେତ ସୋମଦତ ଶ୍ରୀଖଣ୍ଡି ଯଦ୍ୟରଥ ।।୮୧୮୫।।
ଦ୍ରୋଣକୁ ଦେଖି ଦୃଷ୍ଟଦୃମନ ଓଗାଳି
ବିକର୍ଣ୍ଣ ଗଣପତି ଲାଗିଲେକ କଳି ।।୮୧୮୬।।
ରଣପାଛ ସଙ୍ଗତେ ଜୁଝିଲା ଅଳାୟଧ
ଦୃଦକ୍ଷର ସଙ୍ଗତେ କୃପବ୍ରହ୍ମା କଲା ଯୁଦ୍ଧ ।।୮୧୮୭।।
ଅଶ୍ୱସ୍ତମାକୁ ଭିମ ମାଡ଼ିଣ ବସିଲା
ମୁଥେଂ ପ୍ରହାରନ୍ତେ ଅଚେତନ ହେଲା ।।୮୧୮୮।।
ବିରାଟର ରଥ ଭୁରିସର୍ବା ଗୁଣ୍ଡା କଲା
ଦୃଦକ୍ଷର ରଣ ଦେଖି ଶଇଲ୍ୟ ପଳାଇଲା ।।୮୧୮୯।।
ତିନି କ୍ଷେଉଣିଂ ବଳ ମାଇଲା ବିକୋଦର
ନକୁଳ ସହଦେବ ବହୁତ କଲେ ଗୋଳ ।।୮୧୯୦।।
କର୍ଣ୍ଣ ଦ୍ରୋଣ ନାସିଲେ ଅନେକ ସଇନି
ବହୁତ ଯୁଦ୍ଧା ପାଡ଼ିଲେ ଭିସ୍ମଂ ଫାଲଗୁନି ।।୮୧୯୧।।
କାଉଂରି ଦେଶର କାମପାଳ ରାଜା
ଅର୍ଜୁନ ନାରାଜେ ସେ ବେନିଖଣ୍ଡ ହୋଇଲା ।।୮୧୯୨।।
ଭୁମିରେ ପଡ଼ିମୁଣ୍ଡ ନାଚଇ କୁତୁହୋଳେଂ
ସମର ଛାଡ଼ିଣ ତାକୁ ସମସ୍ତେ ଅନାଇଲେ ।।୮୧୯୩।।
ଅଳପ କରି ପାଥ ତହିଂକି ତଲ୍ୟେ କରି
ଦସ ସହସ୍ର ଯୋଦ୍ଧା ନାରାଜେ ଭିସ୍ମଂ ମାରି ।।୮୧୯୪।।
ରଣଜଏ କରି ଭିସ୍ମ ବାହୁଡ଼ିଲେ
ବାରୁଣାବନ୍ତକୁ ପାଣ୍ଡବେ ଗମିଲେ ।।୮୧୯୫।।
ସ୍ନାହାନ ସାରିଣ କଲେକ ଭୋଜନ
ଦ୍ୱାରିକାକୁ ଗମିଲେ ଦେବକି ନନ୍ଦନ ।।୮୧୯୬।।
ସ୍ନାହାନ ସାରି ଭିସ୍ମ ଦେବାର୍ଚନ ସାରି
ଦାନ ଦେବାପାଇଁ ଦ୍ୱିଜଗଣ ବରି ।।୮୧୯୭।।
ଉଚିତରେ ବ୍ରାହ୍ମଣକୁ ଦିଲେ ଅର୍ନ୍ନଦାନ
ରଜନି ହୋଅନ୍ତେ କଲେକ ସୟନ ।।୮୧୯୮।।
ପାହିଲା ରଜନି ଉଠିଲେ ସର୍ବଜନ
ବାରୁଣାରେ ପ୍ରବେସ ହୋଇଲେ ଭଗବାନ ।।୮୧୯୯।।
ଆଖଡ଼ାସାଳରୁ ରଥ ଆଣି ସାଜି
ସନ୍ୟ ସାଜ ବୋଲିଣ ଘୋସଣ ଗଲା ବାଜି ।।୮୨୦୦।।
ଦଧିବାମନ ସୁମରି ପାଥ ରଥରେ ବସି
ଚଳିଲେ ସନ୍ୟ ପଶ୍ଚିମ ଦିଗଗ୍ରାସି ।।୮୨୦୧।।
ଡଗର ମୁଖୁ ସୁଣି ସାଜିଲେ କୌରୋବେ
ପ୍ରବେସ ହୋଇଲେ ଆସି ରଣଭୁମି ଠାବେଂ ।।୮୨୦୨।।
ଲାଗିଲା ରଣଗୋଳ ରଥିକି ରାଉତ
ପାଏକ ପଏଦାର ହୋଇଲେକ ଭେଟ ।।୮୨୦୩।।
କେ କାହାକୁ ମାରଇ କେ କାହାକୁ ଧରେ
କେ କାହାର ରଥନେଇ ପିଟଇ ଗଜପରେଂ ।।୮୨୦୪।।
କେ କାହାକୁ ଧରିଣ ଫିଙ୍ଗିଦେଇ
ବୋଲଇ ମୋତେ ନ ମାର ପଳାଉଛି ଭାଇ ।।୮୨୦୫।।
କେ କାହାକୁ ନାରାଜେ କରଇ ବେନିଖଣ୍ଡ
କାହାର ପ୍ରାଣ ଜାଇ ଭାଜିଂଣ ଭୁଜଦଣ୍ଡ ।।୮୨୦୬।।
ଗାଙ୍ଗେବ ଅର୍ଜୁନର ଅବିଶ୍ରାମ ରଣ
ବାଣେକ ଛାଡ଼ିଦେଇ ବିନ୍ଧନ୍ତି ଆରବାଣ ।।୮୨୦୭।।
ଚାରି ଅଶ୍ୱକୁ ସତୋରି ସର କଲେକ ଆଦ୍ୟାନ
ଅର୍ଜୁନକୁ ବିନ୍ଧିଲେ ଅନେସ୍ୱତ ବାଣ ।।୮୨୦୮।।
ସାରଥିକି ସାଠିଏ କପିକେତନକୁ ଏଗାର
ଧ୍ୱଜକୁ କୋଡ଼ିଏ ଚାରିଚକକୁ ସତର ।।୮୨୦୯।।
ପତକାକୁ ସତର କଳସକୁ ଚାରି
ସ୍ତମ୍ଭକିଳାମାନଙ୍କୁ କାଣ୍ଡେ କାଣ୍ଡେ ମାରି ।।୮୨୧୦।।
ଗମିଲା ନାରାଜ ହୋଇଲା ଆଲୁଅଂମୟେ
ଗୋବିନ୍ଦ ଡାକିଲେ ସମ୍ଭାଳ ଧନୁର୍ଜୟେ ।।୮୨୧୧।।
ଦେଖିଣ ସର୍ବସାଚି ଲକ୍ଷେବାଣ ବିନ୍ଧି
ଭିସ୍ମଙ୍କର ସର ପକାଇଲା ଛେଦି ।।୮୨୧୨।।
ଛେଦି ସର୍ବସାଚି ବିନ୍ଧିଲା ସତେ ସରକାଣ୍ଡ
ସୋମଦତ କଟିଠାରୁ କଲା ବେନିଖଣ୍ଡ ।।୮୨୧୩।।

ନାରାଜ ଗଳିଗଲା ତଳେଂ ନପଡ଼ିଲା
ଧନୁସର ଧରିଣ ଚାହୁଂଅଛି ଡୋଳା ॥୮ ୨୧୪॥
ଦେଖିଣ ଅର୍ଜୁନ ପ୍ରସଂସା କରଇ
ଧନ୍ୟରେ ସୋମଦତ ମରିଣ ଅଛୁ ରହିଂ ॥୮ ୨୧୫॥
ଧନ୍ୟରେ ସୋମଦତ ଜିବନ ତୁମ୍ଭ ଧନି
ଜିବନ ନାହିଂ ସରିରେ ଧନୁ ସହସ୍ର ଅଛୁ ଘେନି ॥୮ ୨୧୬॥
ଜହୁଂ ଧନ୍ୟ ଧନ୍ୟ କଲେ ସର୍ବବଳ
ମୋହାକୋପ କଲା ସେ ପଣ୍ଡୁର ଦୁଲାଳ ॥୮ ୨୧୭॥
ମନ୍ତ୍ର ସୁମରି ହାବଡ଼ା ସର ବେଗେଂ ଧରି
ବୋଇଲା ସୋମଦତକୁ ଉଡ଼ାଅ ଶିଘ୍ର କରି ॥୮ ୨୧୮॥
ସୁଣିଣ ଚଳିଗଲା ସେ ମହାବଳି ସର
ବାଜିଣ ଗଡ଼ି ପଡ଼ିଲା ସୋମଦତ ସିର ॥୮ ୨୧୯॥
ସିର ପଡ଼ିଲା ଗଣ୍ଡିଂ ରହିଲା ଗଜପର ॥୮ ୨୨୦॥
ଜହୁଂ ଗଣ୍ଡି ଗଜପରେ ରହିଲା
ପୁଣି ଧନ୍ୟଧନ୍ୟ ସୁନ୍ୟରେ ସୁଭିଲା ॥୮ ୨୨୧॥
ସୁଣି କୋପକଲା ପଣ୍ଡୁର କୁମର
ପବନାସରକୁ ଧଇଲା ହସ୍ତର ॥୮ ୨୨୨॥
ବୋଇଲା ଅଣଞ୍ଚାସ ପବନ ବହିବୁ
ସମୋଦ୍ର ମଧ୍ୟରେ ନେଇ ସୋମଦତକୁ ପକାଇବୁ ॥୮ ୨୨୩॥
ସୁଣି ସର ଅଣଞ୍ଚାସ ବତାସ ବହିଲା
ସୁନ୍ୟରେ ସୋମଦତ ପିଣ୍ଡ ଉଡ଼ାଇଲା ॥୮ ୨୨୪॥
ଜହୁଂ ପିଣ୍ଡ ଉଡ଼ିଲା ଗଜ ନ ପଡ଼ିଲା[୧]
ଗଜ ନ ପଡ଼ନ୍ତେ[୨] ଧନ୍ୟ ଧନ୍ୟ ସୁଭିଲା ॥୮ ୨୨୫॥
ସୁଣିଣ କୋପ କଲାକ ବିବସ୍ଥି
ବହ୍ନି ସର ପାର୍ଥ ତୃଣୁ ବେଗେ ବାଛି ॥୮ ୨୨୬॥
ବୋଇଲା ଜାଳାବଳି ତୁହି ଚଳିଜିବୁ
କୁମ୍ଭେକ ଗଜ ଶରିର ଦହିବୁ[୩] ॥୮ ୨୨୭॥
ଜହୁଂ ସେ ଅର୍ଜୁନ ସରକୁ ତିଆରିଲା
ସାତତାଳ ଅନଳ ସେ ସରରେ ଜଳିଲା ॥୮ ୨୨୮॥
ଚଳିଲା ବହ୍ନିସେ ହୋଇଣ ଖରତର[୪]
କୁରୁବଳ ସଇନି ସେ ଦେଖି ହୋଇଲେ କାତର ॥୮ ୨୨୯॥
ନିମିସକେ ସର ଅନ୍ତରିକ୍ଷେଂଣ ଗଲା
ଆଖି ପିଛାଂ ମାରନ୍ତେ କୁମ୍ଭେକ ସରିର ଦହିଲା ॥୮ ୨୩୦॥

---

୧ । ଘ ପୋଥି – ଢଳି ପଡ଼ିଲା
୨ । ଘ ପୋଥି – ଗଜ ପଡ଼ନ୍ତେ
୩ । ଘ ପୋଥି – ଦହିଜ କରିବୁ
୪ । ଘ ପୋଥିରେ ଚଳିଲା ବହ୍ନି ସେ ଠାରୁ ବିଛିନ୍ନ ଲାଗିଲା ପର୍ଯ୍ୟନ୍ତ ନାହିଁ

ଜହୁଂ ସେ ତେଡ଼େବଡ଼ କରିବର ଜଳିଗଲା
କୁରୁବଳ ସଇନିକି ସେ ବିଛିନ୍ନ ଲାଗିଲା ॥୮ ୨୩୧॥
ଏଥୁ ଅନ୍ୟନ୍ତରେ ସେ ଜାଳାବଳି ସର
ପ୍ରଖର ହୋଇଣ ସେ ଉଡ଼ିଲା ଅନ୍ତରାଳ ॥୮ ୨୩୨॥
ମନେ ମନେ ସେ ସର ବିଚାର କରଇ
କୁମ୍ଭେକ ନାସ ବୋଲିଣ ଅର୍ଜୁନ ବୋଲିଛଇ ॥୮ ୨୩୩॥
ଆବର ସନ୍ୟରେ କାର୍ଯ୍ୟ ନାହିଂ ମୋର
ଏତେ ବୋଲି ଡ୍ରୋଣେ ସମ୍ଭାଇଲା ସର ॥୮ ୨୩୪॥
ଏଥୁ ଅନ୍ୟନ୍ତରେ ଭିସ୍ମ ମହାରଥି
ମହାକୋପ କଲେ ସେ ଗଙ୍ଗାର ସନ୍ତତି ॥୮ ୨୩୫॥
ବାସେବି ଅପସର ଦେଖି ଛିଦ୍ର ପାଞ୍ଚିଲେ
ଦସ ସହସ୍ର ଯୋଦ୍ଧା ଦସ ବାଣେଂ ଲୋଟାଇଲେ ॥୮ ୨୩୬॥
ଡାକିଲେ ଗଙ୍ଗାସୁତ ସମର ରହୁ ରହୁ
ଅର୍ଜୁନ ବୋଇଲା କିମ୍ପା ରହିବ ମହାବାହୁ ॥୮ ୨୩୭॥
ଗୋବିନ୍ଦେ ବୋଇଲେ ଭିସ୍ମ ଦସ ସହସ୍ର ରଥି ମାରି
ରଣେ ଜୟେ କରି ଗମିଲେ ନିଜ ପୁରି ॥୮ ୨୩୮॥
ସୁଣିଣ ବାସେବିଂ ଚାହିଂଲା ପଛକୁ
କଦଳି ବନ ପ୍ରାୟେ ଜୋଦ୍ଧା ଲୋଟନ୍ତି ଦେଖିଲା ତାହାଙ୍କୁ ॥୮ ୨୩୯॥
ଧନୁ ସହସ୍ର ପକାଇ ଅର୍ଜୁନ କାନ୍ଦିଲା
ବୋଇଲା ସସ୍ତ୍ର ଆଉ ନ ଧରିବି ଚକାଡୋଳା ॥୮ ୨୪୦॥
ବୋଇଲା ହରି ଆଉ ସମର ନ କରିବିଂ
ରାଜରେ କାର୍ଯ ନାହି ବନସ୍ତକୁ ଜିବି ॥୮ ୨୪୧॥
ଦେଖ ହରି ସମରେ ପଡ଼ିଲେ ଜେତେଲୋକ
ମୁହିଂ ଥାଉ ସେମାନେ ହୋଇଲେ ନିରେଖ ॥୮ ୨୪୨॥
ବାଣକୁ ବାଣ ମୁଂ ଜେ କରଇ ପରିତାଳ
ଝାଳ ପୋଛିବାକୁ ମୋତେ ନାହିଂ ଅପସର ॥୮ ୨୪୩॥
ଏଡ଼େ ଅବିସ୍ରାମେ କରୁଅଛି ରଣ
ତିରିସ ସହସ୍ର ଯୋଦ୍ଧା ପଡ଼ିଲେ ତିନିଦିନ ॥୮ ୨୪୪॥
ଏହି ରୁପେଂ ଜେବେ ନାସିବେ ଗଙ୍ଗାସୁତ
କାହାକୁ ଘେନି ମୁଂ କରିବି ଭାରତ ॥୮ ୨୪୫॥
ଗୋବିନ୍ଦେ ପ୍ରତିବାଚ ହାରିବା ଜିଣିବା ଅଛଇ
ମଲା ଜିଇଲାକୁ କେହି ନୋହନ୍ତି ସାହିଂ ॥୮ ୨୪୬॥
ଜେ ଜାହାର ପଥ ସେ ବୋହିଣ ଗଲେ
ତୁହି ସୋକ କଲେ କି ସେହି ଆସିବେ ଭଲେ ॥୮ ୨୪୭॥
ଏତେ ବୋଲି ପାଥକୁ ଲଗାଇଲେ ମାୟା
ସ୍ୟାନ୍ତି କରି ପାଥ ବାହିଲେ ଚଉବାହା ॥୮ ୨୪୮॥

ପ୍ରବେସ ହୋଇଲେ ବାରୁଣୀ ଭୁବନ
ସ୍ନାହାନ କରି ପିତୃଙ୍କୁ ଦିଲେ ଜଳଦାନ ॥୮୨୪୯॥
ଦ୍ୱାରିକା ଭୁବନକୁ ଗମିଲେ ବାସୁଦେବ
ହସ୍ତିନାରେ ପ୍ରବେସ ହୋଇଲେ କୌରୋବ ॥୮୨୫୦॥
ବ୍ୟାସକୁ ଚାହିଂଣ ପୋଛିଲେ ଗଙ୍ଗାସୁତ
ଅନେକ ସଇନି ସମରେ ହୋଇଲେ ହତ ॥୮୨୫୧॥
କେବଣ ଦାନଦିଲେ ପାତେକ ହେବ ନାସ
ଭିସ୍ମଙ୍କର ବଚନେ ବୋଲନ୍ତି ବେଦବ୍ୟାସ ॥୮୨୫୨॥
ଅର୍ନ୍ନ ଦାନ ଦିଲେ ପାତେକ ହୋଏ ଦୁର
ସତ୍ୟ ଯୁଗେଂ ଥିଲା ସୁକ୍ର ନୃପବର ॥୮୨୫୩॥
ସର୍ବଦାନ ଦେଇଣ ନଥିଲା ଅର୍ନ୍ନ ଦେଇ
ମୃତୁ ହୋଇଣ ଅମର ମଣ୍ଡଳେ ମିଳଇ ॥୮୨୫୪॥
ଅର୍ନ୍ନର ବିହୁନେ ହୋଇଲା ଆରତ
ଏକଦିନେ ପ୍ରବେସ ହୋଇଲେ ଚଉମାଥ ॥୮୨୫୫॥
ଅର୍ନ୍ନ ମାଗନ୍ତେ ବୋଇଲେ ବେଦବର
ସମସାନେ ଭକ୍ଷ ଜାଇ ତୋ ଡାହା ଅଙ୍ଗାର ॥୮୨୫୬॥
ସମୟକ ଅନ୍ତେ ଭେଟିବୁ ଅଗସ୍ତିକିଂ
ତାହାଙ୍କୁ ଅନ୍ନଦାନ ଦିଲେ ତୁହିଂ ହେବୁ ସୁଖି ॥୮୨୫୭॥
ସୁଣିଣ ସୁକ୍ରରାଜା ମଞ୍ଚପୁର ଗଲା
ଆପଣାର ଡାହା ପାଉଂସ[୧] ଭକ୍ଷିଲା ॥୮୨୫୮॥
ସତ୍ୟ ଯୋଗ ଜାଇ ତ୍ରେତୟା ଯୋଗ ହେଲା
ସେହି ପଥେଂ ଅଗସ୍ତିଙ୍କି ସୁକ୍ରରାଜା ଭେଟିଲା ॥୮୨୫୯॥
ଅଗସ୍ତିଙ୍କ ହସ୍ତରେ ଦିଲା ଅର୍ନ୍ନ ଦାନ
ଗୋଟି ଗୋଟି ଭୁମିରୁ ସାଉଂଟିଲା ଧାନ ॥୮୨୬୦॥
ଅଗସ୍ତିଙ୍କି ଦେଇଣ ଅର୍ନ୍ନ ସେ ପାଇଲା
ତୁହି ଏବେ ଅର୍ନ୍ନ ଦାନ ଦିଅ ଭଲା ॥୮୨୬୧॥
ସୁଣି ଭିସ୍ମଦେବ ଅର୍ନ୍ନଦାନ ଦିଲେ
ଆପଣେ ଭୁଜିଂଣ ସୟନେ ସୁତିଲେ ॥୮୨୬୨॥

## ଦଶମ ଦିନ ଯୁଦ୍ଧ ଓ ଭୀଷ୍ମଙ୍କର ଶରଶଯ୍ୟା

ଏଥୁଂ ଅନ୍ୟନ୍ତରେ ରଜନି ଗଲାଂ ପାହି
ସୁଣଗୋ ଓମା ବୋଲି ସଦାସିବଂ କହିଂ ॥୮୨୬୩॥
ପୁର୍ବ ଦିଗେଂ ଉଦୟେ ହୋଇଲେ ଦିନକର
କୌରୋବ ଥାଟ ହୋଇଲେ ବାହାର ॥୮୨୬୪॥

୧ । ଘ ପୋଥି – ଅଙ୍ଗାର

ଡଗର ମୁଖୁଂ ସୁଣି ପାଣ୍ଡବେ ସଜ ହେଲେ
ଜେ ଜାହା ବାହାନ ଆବୋରି ଚଢ଼ିଲେଂ ॥୮୨୬୫॥
ନନ୍ଦିଘୋସ ରଥ ବାହିଲେ ଚକାଡୋଳା
ସମରେ ପ୍ରବେସ ପାଣ୍ଡବେ ଅନର୍ଗଳା ॥୮୨୬୬॥
ଲାଗିଲାକ ରଣ ଧରିଣ ସର ଚାପ
ଏକ ରଥି ପଡ଼ନ୍ତେ ଆରେକ କରେ ଧାପ ॥୮୨୬୭॥
ଭିସ୍ମଂ ଅର୍ଜୁନ ଲାଗିଲେ ବିନ୍ଧାବିନ୍ଧି
କୋନ୍ତ ଘେନି ନକୁଳ ସଇନ୍ୟ ଗଲା ଛେଦି ॥୮୨୬୮॥
ଧାଇଂଣ ବିକୋଦର ହସ୍ତରେ ଘେନି ଗଦା
ଯୋଜନ ପରିଯନ୍ତେ ସଇନ୍ୟ କଲା ପଦା ॥୮୨୬୯॥
ବିରାଟ ଦ୍ରୋପଦ ଶ୍ରୀଖଣ୍ଡିକି ଘେନି
ସଇନ୍ୟ ଲୋଟିଣ[୨] ଢାଙ୍କିଲେ ମେଦିନି ॥୮୨୭୦॥
ସେତ କୁମାର ଅନେକ ଲୋଟାଇଲା
ଦେଖିଣ ଦ୍ରୋଣଗୁରୁ ସେତକୁ ଓଗାଳିଲା ॥୮୨୭୧॥
ଲକ୍ଷ ଲକ୍ଷ ବାଣ ବିନ୍ଧିଲେ ଦ୍ରୋଣ ଟାଣିଂ
କିଞ୍ଚିତେ ନାରାଜ ବିରାଟସୁତ ହାଣିଂ ॥୮୨୭୨॥
ଦ୍ରୋଣେ ପୁଣ ବିନ୍ଧିଲେ ନାରାଜ ଅହିବ୍ରତ
ଏଗାର ବାଣରେ ଛେଦିଲାକ ସେତ ॥୮୨୭୩॥
କୋପେଣ ଦ୍ରୋଣଗୁରୁ ବିନ୍ଧିଲେ ଅଗ୍ନିଂସର
ବାରୁଣୀ ସର କଲା ଶ୍ରୀକୃଷ୍ଣାକୁମର ॥୮୨୭୪॥
ପୁର୍ବ ମୁଖଂ ହୋଇଣ ଅଗ୍ନିଂ ଆସୁଥିଲା
ପଶ୍ଚିମକୁ ପୁଣି ପବନ ବୋହିଲା ॥୮୨୭୫॥
ଆପଣାର ଅଗ୍ନି ଆପଣା ଥାଟରେଣ ପଡ଼ି
ପଞ୍ଚୋସ୍ତରି ସନ୍ୟ ମଲେକ ଜେ ପୋଡ଼ି ॥୮୨୭୬॥
ଦ୍ରୋଣଗୁରୁ ଘୁଞ୍ଚିଲେ ନ ପାରିଲେ ସହିଂ
ପଛେ ସେତକୁମାର ଯାଉଛି ଗୋଡ଼ାଇ ॥୮୨୭୭॥
ବନ୍ଧ ଭାଜିଂଗଲେ ଜେହ୍ନେ ଧାମଇଂ ନଦିଜଳ
ସେହି ରୁପେଂ ପଳାଇଗଲେଂ କୁରୁବଳ ॥୮୨୭୮॥
ମାନଗୋବିନ୍ଦକୁ ଆସ୍ରେକଲେ ଜାଇ
ରହ ବୋଲି ବୋଲନ୍ତେ ନ ରହିଲେ କେହି ॥୮୨୭୯॥
ରଣ ଜୟେ କରିଣ ବାହୁଡ଼ିଲେ ସେତ
ଦ୍ରୋଣଙ୍କୁ ଧିକାରିଣ ବୋଲନ୍ତି କୁରୁନାଥ ॥୮୨୮୦॥
ସିଂହ ହେଲା ସେତ ସୃଗାଳ ହେଲେ ଗୁରୁ
ତୁମ୍ଭେଂ ହେଲ ପର୍ବତ ବିରାଟସୁତ ହେଲେ ମେରୁ ॥୮୨୮୧॥
ପଳାଇ ଅଇଲ ଅଇଲା ଗୋଡ଼ାଇ
ମୁସା ପ୍ରାଏ ତୁମ୍ଭେ କହୁଥିଲ ବଢ଼ାଇ ॥୮୨୮୨॥

୧ । ଘ ପୋଥି – ଶୁଣ ଗୋ ଉମା ବୋଲି ଶଙ୍କର କହିଲେ
୨ । ଘ ପୋଥି – ଲୋଟାଇଣ

ସହି ନପାରି ଦ୍ରୋଣ ଲେଉଟି କଲେ ରଣ
ଅଧାଚନ୍ଦ୍ର ବାଣେ ସେତକୁ କଲେ ସେ ନିଧନ ॥୮୨୮୩॥
ଭିସ୍ମଙ୍କର ତୁଲେ ଜୁଝଇ ଫାଲଗୁନି
ସରକୁ ସରେ ପାର୍ଥ ପକାଉଛି ହାଣି ॥୮୨୮୪॥
ସତେଧାରା ସକ୍ତି ଭିସ୍ମେଂ ବିନ୍ଧିଲେ ନିଠିଆଇ
ଗୋବିନ୍ଦେ ଡାକଦେଲେ ସମ୍ଭାଳ ଧନୁର୍ଜଇ ॥୮୨୮୫॥
ଲକ୍ଷେ ଲକ୍ଷେ ବାଣ ଅର୍ଜୁନ ବିନ୍ଧିଲା
ସକତି ତେଜେଂ ସବୁ ସର ଜଳିଗଲା ॥୮୨୮୬॥
ଜହୁଂ ସେ ଅର୍ଜୁନ ନ ପାରିଲା ନିବାରି
ସୁଦ୍ରିସେନକୁ ଆଜ୍ଞା ଦିଲେ ଦଇତାରି ॥୮୨୮୭॥
ଆଜ୍ଞା ପାଇ ଚକ୍ର ସକ୍ତିକି ହାଣିଲା
ସକ୍ତି ହାଣି ତିନି ମଭୁତ ସଇନି କାଟିଲା ॥୮୨୮୮॥
ସନ୍ୟ ନାସି ଚକ୍ର ଅନ୍ତରିକ୍ଷେ ଗଲା
ମାନଗୋବିନ୍ଦ ଅଗ୍ରତେ କହିଲେ ଗଙ୍ଗାବଳା ॥୮୨୮୯॥
କାହାର ସଙ୍ଗେ ବାବୁ କରିବୁଂ ଆମ୍ଭେ ରଣ
ସୁଦ୍ରିସେନ ଚକ୍ରକୁ ପେସିଲେ ଭଗବାନ ॥୮୨୯୦॥
ସୁଣିଣ ମାନଗୋବିନ୍ଦ ଧାଇଂଲେ ଦ୍ୱାରିକା
ବଳରାମ ଅଗ୍ରତେ କହିଲେ ସର୍ବକଥା ॥୮୨୯୧॥
ସୁଣିଣ କୋପିତ ରେବତିର ବର
ଦୁର୍ଯୋଧନ ସଙ୍ଗତେ ପ୍ରବେସ ସମର ॥୮୨୯୨॥
ହସ୍ତେଂ ହଳ ମୁସଳ ସିରେ ସପ୍ତଫେଣି
କାଳଚକ୍ର ଡୋଳା ଫେରାଇ ହଳପାଣିଂ ॥୮୨୯୩॥
ଭାରତ ଭୁମିରେ ରାମର ପ୍ରଚଣ୍ଡ ମୁରତିଂ[୧]
ଡାକିଲେ ଆରେ ଆରେ ଅଜ୍ଞାନି ଶ୍ରୀପତି ॥୮୨୯୪॥
ନିୟମ କରିଥିଲୁଂ ନ ଧରିବିଂ ସହସ୍ର
ଏବେ କୌରୋବ ନାସୁଛୁ ହସ୍ତେ ଧରି ଚକ୍ର ॥୮୨୯୫॥
ଆରେ ପାଣ୍ଡେବ ସହିତ ଜେତେକ ସଇନି
ତୁହି ଦେଖୁଂ ଦେଖୁଂ ପକାଇବି ହାଣିଂ ॥୮୨୯୬॥
ନୋହିବ ଭାରତ ମାରିବିଂ ଏକାବେଳେଂ
ଏମନ୍ତ ବୋଲି ରାମ ଗୋବିନ୍ଦଙ୍କୁ ଚଳି କହିଲେ ॥୮୨୯୭॥
ବଳରାମକୁ ଚାହିଂ କୃଷ୍ଣ ହୋଇଲେ ଦଇନି
ସୁଣିଣ ଜଗନ୍ନାଥ ଅର୍ଜୁନକୁ ଘେନି ॥୮୨୯୮॥
ବୋଲନ୍ତି ସ୍ୱାମି କିପାଇଂ କରୁଅଛ ରାଗ
କେ କାହାକୁ ମାଇଲା ବୋଲି ପଚାରିଣ ବୁଝ ॥୮୨୯୯॥
ଚକ୍ର ଧଇଲା ବୋଲି ତୁମ୍ଭକୁ ବୋଇଲା କେହୁ
ନିଳାମ୍ବର ବୋଇଲେ କହିଲା କୁରୁରାହୁଂ ॥୮୩୦୦॥
ଦୁର୍ଯୋଧନ ବୋଇଲା କହିଲେ ମହିଭେଦି
ବଳରାମ ବୋଇଲେ ମୋତେ କହନି ସତ୍ୟବାଦି ॥୮୩୦୧॥
ନ କହିବୁ ମିଥ୍ୟା ବୋଲି କହନ୍ତି ହଳପତି
କାଖେ ହସ୍ତ ଦେଇ ଉଭା ହୋଇଅଛନ୍ତି ଶ୍ରୀପତି ॥୮୩୦୨॥
ବୋଲନ୍ତି ସାଏନ୍ତନୁ ସୁଣହେ ନିଳାମ୍ବର
ମୁହିଂ ଚକ୍ରକୁ ଦେଖିନାହିଂ ଶ୍ରୀହରି ହସ୍ତର ॥୮୩୦୩॥
ଜେବଣ ନାରାଜକୁ ବିନ୍ଧିଲି ମୁଂ ଟାଣିଂ
ନାଗ ନର ଦେବତା ହୋଇଲେ ଆସନ୍ତା ତାକୁ ଜିଣିଂ ॥୮୩୦୪॥
କେଉଣିସି ସହସ୍ରେ ସେ ନଉଟି ନ ଆସଇ
ଚକ୍ର ବିନୁ ତାହାର ଅପମୃତୁ ନାହିଂ ॥୮୩୦୫॥
ତେଣୁଂ ବିଚାରିଲି ହରି ଧଇଲେ ଅବା ଚକ୍ର
କେବଳ ହସ୍ତେ ଦେଖିନାହିଂ ବେନି ନେତ୍ର ॥୮୩୦୬॥
ସୁଣି କୋପିତ ହୋଇଲେ ନିଳାମ୍ବର
ବାମହସ୍ତେ ଧଇଲେ ବୈସମ୍ପାୟନ ବାଳ ॥୮୩୦୭॥
ବୋଇଲେ ଏହିକ୍ଷଣି ପକାଇବି ହାଣି
ମୋହର ଅଗ୍ରତେ ମିଛ କହିଲୁଂ ଜେ ପୁଣି ॥୮୩୦୮॥
ଏତେ ବୋଲି ବାଳ ଝିଙ୍କନ୍ତି ଦେବହଳି
ଧାଇଂ ବଳରାମକୁ ଧଇଲେ ବନମାଳି ॥୮୩୦୯॥
ଅକାରଣେ କିପାଇଂ ଭିସ୍ମକୁ କରୁକୋପ
ଅପାର କାଳର ସେ ପୁରାନ୍ତନ ଲୋକ ॥୮୩୧୦॥
ସେ ଜେ ନଜାଣି ହୋଇଲା ମିଥ୍ୟାଭାସି
ତାହା କଥା ତାହାକୁ ଦଣ୍ଡ କେହ୍ନେ ତୁମ୍ଭେ ନାସି ॥୮୩୧୧॥
ସ୍ୱାମି ସମର କନ୍ଦଳ ସର୍ମ ପଥସ୍ରମି
ଗାଢ଼େଭୁଜିଂ କ୍ଷୁଧାର୍ଥି କାମେ ଆରତ ଯେଉଂ ପ୍ରାଣି ॥୮୩୧୨॥
ଏ ଛଡ଼ ଜଣଙ୍କର ନଥାଇ ହୃଦେ ଜ୍ଞାନ
ସତ ମିଛ ଏହାଙ୍କର ନୋହଇ ବାରଣ ॥୮୩୧୩॥
ଭାରତ ଯୁଦ୍ଧ ଏ ଅପୁର୍ବ ଅଗୋଚର
ନୋହଇ ଚିହ୍ନି ସେ ପର ଅପର ॥୮୩୧୪॥
ଏତେ ବୋଲି ହସ୍ତ ଛଡ଼ାଇ ଚକ୍ରଧର
ଭିସ୍ମଙ୍କୁ ଛାଡ଼ିଦେଇ ଗମିଲେ ହଳଧର[୧] ॥୮୩୧୫॥
ବିଚାରିଲେ ଆଉ ଦ୍ୱାରିକାକୁ ନ ଜିବଇଂ
ସତ ମିଛ ନ ବୁଝି ଧାମଇଂ କୁରୁସାଇଂ ॥୮୩୧୬॥
ଏତେ ବୋଲି ପ୍ରୟାଗ ତିର୍ଥକୁ ଗମିଲେ ହଳି
ଜେବଣ ତିର୍ଥେ ମୁନିମାନେ ଛନ୍ତି ମିଳି ॥୮୩୧୭॥
ଅଢ଼ାଇ ପ୍ରହର ଆସି ହୋଇଲା ଆଦିତ୍ୟ
ପାଣ୍ଡେବକୁ ଘେନି ବାରୁଣାରେ ପ୍ରବେସ ଜଗନ୍ନାଥ ॥୮୩୧୮॥

---

୧ । ଘ ପୋଥି – ରୂପ ଜୋତି

୧ । ଘ ପୋଥି – ନୀଳାମ୍ବର

ସାରିଲେ ସ୍ନାହାନ ଭୋଜନ ସଇନି
ଦ୍ୱାରିକାକୁ ଗମନ କଲେକ ଚକ୍ରପାଣି ॥୮୩୧୯॥
କୌରୋବେ ପ୍ରବେସ ହୋଇଲେ ହସ୍ତିନା
ଭୋଜନ ସାରିଣ ନିଦ୍ରାଗଲେ ସର୍ବସେନା ॥୮୩୨୦॥
ରଜନି ପାହିଣ ଦିନକର ଉଦେଂ
ସମରକୁ ବାହାର ହୋଇଲେ କୌରୋବେ ॥୮୩୨୧॥
ଏହି ରୁପେ ନବଦିନ ରଣ ହୋଇ
ଭିସ୍ମକୁ ଜିଣି ନପାରିଲା ଧନୁର୍ଜଇ ॥୮୩୨୨॥
କି ବୁଦ୍ଧି କରିବା ବୋଲି ଭାଳିଲେ ପାଣ୍ଡବେ
ଶ୍ରୀଖଣ୍ଡିକି ସେନାପତି କର ବୋଇଲେ ବାସୁଦେବେ ॥୮୩୨୩॥
ଭିସ୍ମଙ୍କର ମୃତ୍ୟୁ ଅଛି ଶ୍ରୀଖଣ୍ଡି ହସ୍ତର
ଆଗହୁଂ ଶ୍ରୀକୃଷ୍ଣ କହିଛି ମୋହଠାର ॥୮୩୨୪॥
ଅର୍ଜୁନ ବୋଇଲା ସେ ନପୁଂସେକ ଜାତି
ତାହାକୁ କେମନ୍ତେ କରିବା ସେନାପତି ॥୮୩୨୫॥
ସଂସାରେ ଅପଜସ ହୋଇବ ଆମ୍ଭଙ୍କୁ
ବୋଲିବେ ପାଣ୍ଡବେ ନିସତ ହୋଇଲେ ରଣକୁ ॥୮୩୨୬॥
ସେନାପତି ଗୋଟାଏ କଲେ ନପୁଂସେକ
ଏମନ୍ତ ବୋଲି ବୋଲିବେ ସର୍ବଲୋକ[୧] ॥୮୩୨୭॥
ଶ୍ରୀଖଣ୍ଡି ବୋଲି ସେ ଜେବଣ ପୁରୁଷ
ସେନାପତି ଲୋହିଲେ ନାସ ନୋହିବେ ଭିସ୍ମଂ ॥୮୩୨୮॥
ଶ୍ରୀକୃଷ୍ଣ ବୋଇଲେ ଜେବେ ଶ୍ରୀଖଣ୍ଡି ନୋହେ ସେନା
ସମସ୍ତଙ୍କୁ ସମରେ ଜିଣିବ ସାଏନ୍ତନା ॥୮୩୨୯॥
ଏତେ ବୋଲି ଗୋବିନ୍ଦ ସାଜିଲେ ନନ୍ଦିଘୋଷ
ଅର୍ଜୁନ ବସିଲା ରଥେଂ ସୁମରି ଜଗନ୍ନାଥ ॥୮୩୩୦॥
ବାହାର ହୋଇଲେ ଥାଟ ଜାନବାହାନ ଆରୋହି
ସୁଣଗୋ ଓମା ବୋଲି ସଙ୍କର ଜାନ୍ତି କହି ॥୮୩୩୧॥
ରଥେଂ ଆରୋହିଲା ସାଏନ୍ତନୁ ସୁତ
କି ଅବା ସ୍ୱର୍ଗରୁ ଆସିଚି ସସିକାନ୍ତ[୨] ॥୮୩୩୨॥
ବେନିସତ ରଥ ଆଗପଛ ହୋଇ
ପାଦାନ୍ତି ପଏଦାର କଳନା ନଜାଇ ॥୮୩୩୩॥
ଉଡ଼ଇ ବିର ନେତ ବାଜଇ ବିରକାଳି
ନିସାଣର ଘାଏ କମ୍ପଇ ମହିୟାଳି ॥୮୩୩୪॥
ଏମନ୍ତେ କୁରୁଥାଟ ହୋଇଲେ ବାହାର
ସମର ଭୁମିରେ ହୋଇଲେ ବେନି ବଳ ॥୮୩୩୫॥

---

୧ । ଘ ପୋଥି – ଯେମନ୍ତ ବୋଲି ଯେ ବୋଲନ୍ତି ହୃଷିକେଶ
୨ । ଘ ପୋଥି – ସଚିକାନ୍ତ

ଅସ୍ୱସ୍ତମା ସଙ୍ଗତେ ଜୁଝିଲା ବିକୋଦର
ଗଦାଏ ପିଟିଲା ଭିମ ଦ୍ରୋଣସୁତ ଉପର ॥୮୩୩୬॥
ବାଜି ଅସ୍ୱସ୍ତମା ଦଣ୍ଡେ ମୋହ ଜାଇ
ଚେତନା ପାଇ ବିର ଜୁଝିଲା ପରିଘାଇ ॥୮୩୩୭॥
ସହସ୍ରେ ବାଣ ବିନ୍ଧିଲା ଅସ୍ୱସ୍ତମା ଚୁନାହେଲା ଭିମ ରଥ
ପାଦଗତି ହୋଇଲା ସେ ପବନର ସୁତ ॥୮୩୩୮॥
ସଦାସିବ ମୁଖ ଚାହିଂ ଗଉରି ବୋଲଇ
କେ କାହା ସଙ୍ଗେ ଜୁଝିଲା କହନି ବୁଝାଇ ॥୮୩୩୯॥
ସୁଣଗୋ ଓମା ବୋଲି ସଦାସିବ କହି
ସେଦିନ ଘୋର ଯୁଦ୍ଧ ହୋଇଣ ଅଛଇ ॥୮୩୪୦॥
ଦ୍ରୋଣ କର୍ଣ୍ଣ ସଙ୍କୁନି ସଲ୍ୟ ଅସ୍ୱସ୍ତମା
ଅଳମ୍ଭୁସ ଅଳାୟଧ ବିକର୍ଣ୍ଣ କୃପବ୍ରହ୍ମା ॥୮୩୪୧॥
ଦୁସାସନ ମୁଳେ ଅନେସତ ଭାଇ
ହରିରଥ ଦାସରଥି ଦୁସୁଳାର ସାଇଂ ॥୮୩୪୨॥
ଯେମନ୍ତେ ରଥିମାନେ ହୋଇଲେ ବାହାର
ସୁଣଗୋ ପାର୍ବତୀ ବୋଲି ବୋଲନ୍ତି ସଙ୍କର ॥୮୩୪୩॥
ଏମନ୍ତେ ରଥିମାନେ ଆରୋହିଲେ ଜାନ
ବାସ୍ତୋରି ଖର୍ବ ରଥ ବାର ଖର୍ବ ତୁରଙ୍ଗମ ॥୮୩୪୪॥
ସତାସିଲକ୍ଷ ମତ୍ତହସ୍ତି ପାଦାନ୍ତି ଦସଲକ୍ଷ[୧]
ବାରକୋଟି[୨] ପଏଦାର ସତର ସାଗର[୩] ରାଉତ[୪] ॥୮୩୪୫॥
ଉଲଖ ଉଦଣ୍ଡ ଢୋଲ ଦମା କାହାଳି
ଏ ରୁପେ ପଞ୍ଚାଉନ ଲକ୍ଷ ସୁଣଗୋ ଗଉରି ॥୮୩୪୬॥
ପାଦଭରେ ଦଲଦଲି ଜେ ମେଦନି
ଭିସ୍ମଙ୍କ ତେଜ ଦେଖି ଆନନ୍ଦ କୁରୁମଣିଂ ॥୮୩୪୭॥
ଆଜ ଅପାଣ୍ଡେବ କରିବେ ଗଙ୍ଗାନାନ
ପଞ୍ଚୁକଟକ ମୋତେ ଭୋଗ୍ୟ ହୋଇବ ପୁଣ ॥୮୩୪୮॥
ଜହୁଂ ଭିସ୍ମ ଅର୍ଜୁନ ହୋଇଲେ ଭେଟାଭେଟି
କୋଟି କୋଟି ନାରାଜ ବିନ୍ଧୁଛନ୍ତି ହାକି ॥୮୩୪୯॥
ସାତଲକ୍ଷ ସର ବିନ୍ଧିଲେ ଭିସ୍ମେ ଟାଣି
ପ୍ରତିସର କରିଣ ଛେଦିଲା ଫାଲଗୁନି ॥୮୩୫୦॥

---

୧ । ଘ ପୋଥିରେ ଏହି ଧାଡ଼ି ନାହିଁ
୨ । ଘ ପୋଥି – ତେର କୋଟି
୩ । ଘ ପୋଥି –କୋଟି
୪ । ଘ ପୋଥିରେ ଏହି ଧାଡ଼ି ଅଧିକ ଅଛି –
ଯେମନ୍ତ ପ୍ରକାରେ ହୋଇଲେ ଉପଗତ

ପର୍ବତାସରେକ ବିନ୍ଧିଲେ ମହିଭେଦି
ପ୍ରତିସର କରିଣ ବାସେବି ତାହା ଛେଦି ॥୮୩୫୧॥
କୋପେଂ ଅହିସର ବିନ୍ଧିଲେ ବୈସମ୍ପାୟନ
କୋଟି କୋଟି ସର୍ପ ଧାଇଂଲେ କରିଣ ଗର୍ଜନ ॥୮୩୫୨॥
ଗୁରୁଡ଼ାସରକୁ ବିନ୍ଧିଲା ଧନୁର୍ଜଇ
ବିନନ୍ତା କୁମରକୁ ଦେଖି ପଳାଇଲେ ଅହିଂ ॥୮୩୫୩॥
କୁହୁକା ନାରାଜ ବିନ୍ଧିଲେ ସାଏନ୍ତନୁ
ଘୋଟିଲା ନାରାଜ ଅଦୃସ୍ୟ ହେଲେ ଭାନୁ ॥୮୩୫୪॥
ମୁଖକୁ ମୁଖ ଆଉ ନଦିଶଇ ତହିଂ
କୌରୋବେ ରହିଲେ ପାଣ୍ଡବେ ପଳାଇ ॥୮୩୫୫॥
ଦେଖିଣ ସର୍ବସାଚି ଆଦିତ୍ୟ ସର କଲା
ବିକାସେ ରବିତେଜ ଅନ୍ଧାର ପଳାଇଲା ॥୮୩୫୬॥
ତିକ୍ଷଭାଲ ସର ବିନ୍ଧିଲେ ଗଙ୍ଗାର ତନଇ
ନନ୍ଦିଘୋଷ ରଥ ଗଲା ପଛୁଆଇ ॥୮୩୫୭॥
ଗୋବିନ୍ଦ ଡାକିଲେ ସମ୍ଭାଳ ହନୁମତ
ତୁଳା ପ୍ରାଏ ମଣୁଛି ଭିସ୍ମ ନନ୍ଦିଘୋଷ ରଥ ॥୮୩୫୮॥
ସୁଣି ହନୁମତ ବସିଲା ପାଲଟି
ଚାରି ଅସ୍ୱକୁ ଜେ ଗୋବିନ୍ଦ ଦିଲେ ଟିପି ॥୮୩୫୯॥
ଭିସ୍ମଙ୍କର ସନ୍ନିଧେ ରଥ ନେଇ କଲା
ପୁଣି ମହିଭେଦି ଅର୍ଜୁନକୁ ବୋଇଲା ॥୮୩୬୦॥
ଆରେ ଆଜରେ ରହମାନ ନୋହିବୁ ଧନୁର୍ଜଇ
ସଂଗ୍ରାମ ଛାଡ଼ିଣ ଜାଅରେ ପଳାଇ ॥୮୩୬୧॥
ଅର୍ଜୁନ ବୋଇଲା ତାତ ତୁମ୍ଭର ଦୟାଥିଲେ
ତୁମ୍ଭ ପିଣ୍ଡ ଲୋଟାଇବି ଏ ଭାରତ ଭୂମିରେ ॥୮୩୬୨॥
ଭିସ୍ମେଂ ବୋଇଲେ କେ ହାରିବ ଜିଣିବ
ମୋହୋର ନାରାଜ ଏବେ ସମ୍ଭାଳ ପାର୍ଥିବ ॥୮୩୬୩॥
ଏତେ ବୋଲି ପାର୍ଥକୁ ବିନ୍ଧିଲେ ଲକ୍ଷେ ବାଣ
ଅହିବ୍ରତେ ବିନ୍ଧିଲେ ରଥଧ୍ୱଜ କପିକେତନ ॥୮୩୬୪॥
ଗୋବିନ୍ଦ ଉପରକୁ ବିନ୍ଧିଲେ ଅହିବ୍ରତେ
ଚାରି ଅସ୍ୱକୁ ବିନ୍ଧିଲେ ଚାରି ଲକ୍ଷେଂ ॥୮୩୬୫॥
କଳସକୁ କୋଡ଼ିଏ ପତାକାକୁ ବାର
ଚକକୁ ସାଠିଏ ଅଖକୁ ସତର ॥୮୩୬୬॥
ଖମ୍ଭକୁ ସାତଲକ୍ଷ କିଳାକୁ ସତାସି
ଅଷ୍ଟକୁଳା ନାଗକୁ ବିନ୍ଧିଲେ ଅଷ୍ଟଗୋଟିଂ ॥୮୩୬୭॥

୧ । ଘ ପୋଥିରେ ନିମ୍ନ ଦୁଇଧାଡ଼ି ଅଧିକ ଅଛି-
ଆବର ଚାରି ଭାଇଙ୍କି ବିନ୍ଧିଲେ ଚାରିକୋଟି
ଯେମନ୍ତ ସମର କରନ୍ତି ସେହୁ ହାକି

ରଥି ଯୋଦ୍ଧାମାନଙ୍କୁ ବିନ୍ଧିଲେ ଆଠଲକ୍ଷତ
ବାଦ୍ୟକାରକୁ ସତାସି ରାଉତକୁ ସତ ସତ ॥୮୩୬୮॥
ଏହି ରୁପେ ନାରାଜ ବିନ୍ଧିଲେ ଭିସ୍ମେ ହାକି
ଶ୍ରୀହରି ଡାକିଲେ ଯେବେ ସମ୍ଭାଳ ସର୍ବସାଚି ॥୮୩୬୯॥
ଅର୍ଜୁନ ତଳେକଲା ଘୋଟିଲା ସେ ସର
ପଡ଼ିଲେ ନନ୍ଦିଘୋସ ହୋଇବ ଅଙ୍ଗାର ॥୮୩୭୦॥
ଏମନ୍ତ ସମୟେ ବିର ଧନୁର୍ଜଇ
ସଦାସିବ ସରକୁ ତିଆରି କହଇ ॥୮୩୭୧॥
ଦେଖ ଭିସ୍ମେ ମୋତେ କଲେକ କଟାଳ
ଗୋଟିକେ ଲକ୍ଷେ ବାଣ ବିନ୍ଧିଲା ସାୟେନ୍ତନୁ ବାଳ ॥୮୩୭୨॥
ନିମିସକେ ପୃଥି ଦହିଜ କରିବ
ଏହିକ୍ଷଣି ଭିସ୍ମେ କରିବେ ଅପାଣ୍ଡେବ ॥୮୩୭୩॥
ଭିସ୍ମଙ୍କ ସର କାଟି ହସ୍ତୁଂ ଡ୍ରୋଣ କାଟିବୁ ତୁହିଂ
ଏତେ ବୋଲି ସର ବିନ୍ଧିଲା ଧନୁର୍ଜଇ ॥୮୩୭୪॥
ଭିସ୍ମଙ୍କର ସର ଗଲା ଭସ୍ମ ହୋଇ
ଡ୍ରୋଣ କାଟି ସର ବାହୁଡ଼ି ଆସଇ ॥୮୩୭୫॥
ଭିସ୍ମେଂ ଡାକ ଦିଲେ ଧନ୍ୟରେ ସର୍ବସାଚି
ଏକାବେଳେଂ ଏତେ ନାରାଜ ମୋର ଗଲୁଂ ନାସି ॥୮୩୭୬॥
ଏବେ ଜେବେ ମୋର ନାରାଜ ସମ୍ଭାଳିବୁ
ତେବେ ପଞ୍ଚୁକଟେକ ଆଜ ରାଜତୁ ପାଇବୁ ॥୮୩୭୭॥
କୋପେଂ ବୈଷ୍ଣବୀ ସର ସୁଳ ଶକତି ବିନ୍ଧିଲେ
ବାଣର ତେଜେ ସକଳ ପଳାଇଲେ ॥୮୩୭୮॥
ତେଜରେ ଯୋଦ୍ଧାମାନେ ଜାଉଛନ୍ତି ଜଳିଂ
ଦେଖିଣ ଆଶ୍ଚାର୍ଯ ଯେ ହୋଇଲେ ବନମାଳି ॥୮୩୭୯॥
ଚରଣେ ନନ୍ଦିଘୋଷେ ଚରଣେ ଭିସ୍ମ ରଥେ ଦେଇ
କୋପେଂ ଶ୍ରୀହରି ବାମକରେ ବାଳ ଧଇଲେ ନିଠିଆଇ ॥୮୩୮୦॥
ଡାହାଣେ ସୁଦ୍ରିସେନ ଡାକନ୍ତି ଭାବଗ୍ରାହିଂ
ମାନବେ ଦେବସର ବିନ୍ଧୁଲୁ କିସପାଇଂ ॥୮୩୮୧॥
ଶ୍ରୀହରିକି ଦେଖି ଭିସ୍ମେ ସମର୍ପିଲେ ମାଥ
ମୋହୋର ସିରକାଟ ଶ୍ରୀହରି ତୋହର ଚକ୍ରେତ ॥୮୩୮୨॥
ତୁମ୍ଭର ମୁଖ ଦେଖି ମୋହର ଜିବନ ଯାଉ
ପାପଭାରା ଛେଦୁଂ ଚକ୍ର କଳଙ୍କ ନଥାଉ ॥୮୩୮୩॥
ଗୋବିନ୍ଦେ ବୋଇଲେ ତୋତେ ନାହିଂ ମୋ ନିଧନ
ବଳରାମ ଅଗ୍ରତେ କରିଅଛି ନିୟମ ॥୮୩୮୪॥
ଜହିଂକି ଇଚ୍ଛା ତୋର ତହିଂକି ତୋତେ ନେବିଂ
ତୋ ସରି ଭକ୍ତ ଆଉ ନାହିଂ ଏ ମଞ୍ଚଭୁମି ॥୮୩୮୫॥

ଏମନ୍ତେ ଭିସ୍ମଙ୍କୁ ପ୍ରବୋଧି ଭାବଗ୍ରାହିଂ[୧]
ବସିଲେ ନନ୍ଦିଘୋଷେ ନ ଜାଣନ୍ତି କେହିଂ ॥୮୩୮୬॥
ଭିସ୍ମଙ୍କ ହସ୍ତରୁ ଜେବଣ ସସ୍ତ୍ରଗଲା
କଦଳି ବନ ଜାଣି ସନ୍ୟ ଲୋଟାଇଲା ॥୮୩୮୭॥
ପାଣ୍ଡବଙ୍କ ସନ୍ୟ ହୋଇଲେ ନିଚେଷ୍ଟ
ଦେଖିଣ ଆଷ୍ଟାର୍ଯ୍ୟ ହୋଇଲେ ବିରପାଥ ॥୮୩୮୮॥
ଗୋବିନ୍ଦ ମୁଖ ଚାହିଂ ବୋଲଇ ବଚନ
ନ କରିବା ଦ୍ୱନ୍ଦ ଜିବାକ ଘୋରବନଂ ॥୮୩୮୯॥
ତାଡ଼ ତୋଡ଼ର ବିରବଳି ସିରରେ ମୁକୁଟ
ପାଉଛନ୍ତି ସୋଭା ହୋଇଣ ନିଚେଷ୍ଟ ॥୮୩୯୦॥
ଏହାଙ୍କ ମରଣ ମୋତେ ଦେଖିତେ ହେଲା ଦୁଖ
ତୁମ୍ଭେଂ ଆମ୍ଭେଂ ଥାଉଂ ହରି ଏ ହୋଇଲେ ନିରେଖ ॥୮୩୯୧॥
ଗୋବିନ୍ଦ ବୋଇଲେ ଯେବେ ନିସତ ହୋଇବ
ସଂସାରେ ଅପଜସ ନର୍କରେଂ ପଡ଼ିବ ॥୮୩୯୨॥
ତୋହର ବାଣରେ ସେ ନମରେ ଗଙ୍ଗାନାନ
ଶ୍ରୀଖଣ୍ଡି ସେନା ହେଲେ ଛାଡ଼ିବ ଜିବନ ॥୮୩୯୩॥
ସେହି ସମୟରେ ପ୍ରବେସ ଧର୍ମନାନ
ଗୋବିନ୍ଦେ ବୋଇଲେ ଶ୍ରୀଖଣ୍ଡିକି ଆଣ ॥୮୩୯୪॥
ଅର୍ଜୁନ ପ୍ରତିବାଚ ଶ୍ରୀଖଣ୍ଡି ନପୁଂସେକ
ସେହୁ ସେନା ହୋଇଲେ ହୋଇବ ଉପହାସ୍ୟ ॥୮୩୯୫॥
ବଦୟନ୍ତି କେସବ ତହିଂକି[୨] ଡରିଲେ
ସଂଗ୍ରାମ ଛାଡ଼ିଣ ପସ ଘୋର ବନେ ଭଲେ ॥୮୩୯୬॥
ଭିସ୍ମେ ନାସ ନଗଲେଂ ରାଜା ତୁମ୍ଭର ନାହିଂ
ଶ୍ରୀଖଣ୍ଡି ନଇଲେ ଭିସ୍ମର ମୃତୁ କାହିଂ ॥୮୩୯୭॥
ଗୋବିନ୍ଦଂ ବଚନେ ଆନନ୍ଦ ଯୁଧିଷ୍ଟି
ମକୁଟ ବାନ୍ଧି ଶ୍ରୀଖଣ୍ଡିକି କଲେ ସେନାପତି[୩] ॥୮୩୯୮॥
ଯୁଧିଷ୍ଟି ବୋଇଲେ ତାତ ତୋହର ପ୍ରସାଦେ
ନିସତ ହୋଇଲେ ଅବା ଜିଣିପାରୁ ଆମ୍ଭେ ॥୮୩୯୯॥

୧ । ଘ ପୋଥିରେ ମାନବେ ଦେବ ସର ଠାରୁ ପ୍ରବୋଧି ଭାବଗ୍ରାହିଂ ପର୍ଯ୍ୟନ୍ତ ନାହିଁ
୨ । ଘ ପୋଥି – ଶ୍ରୀଖଣ୍ଡିକି
୩ । ଘ ପୋଥିରେ ନିମ୍ନରେ ଚାରିଧାଡ଼ି ଅଧିକ ଅଛି –
ସେନାପତି ହୋଇ ରଥେ ବସିଲା ପଞ୍ଚାଳ
ଦେଖିଣ ଭୀଷ୍ମଙ୍କୁ ଆକ୍ରୋସିଲା କାଳ
ନିସତେ ହେଲେ ପାଣ୍ଡବେ ବୋଲି ଭୀଷ୍ମେ ଡାକନ୍ତି
ନଂପୁସେକ ଗୋଟା ଯେ କଲ ସେନାପତି

କହନ୍ତି ସଦାସିବ ସୁଣଗୋ ଗଉରି
ତୋଳାକର୍ଣ୍ଣ ବିଦ୍ୟାରେ ଶ୍ରୀଖଣ୍ଡି ମହାବଳି ॥୮୪୦୦॥
ପାଞ୍ଚଗୋଟି ବାଣ ବାଛିଣ ବିନ୍ଧିଲା
ଭିସ୍ମଙ୍କର ରୋମେ ରୋମେ ନାରାଜ ଭେଦିଗଲା ॥୮୪୦୧॥
ପାଚଲା ଫୁଟି ଜେହ୍ନେ ପଡ଼ଇ ମିଳାଇ
ସେହିରୁପେ ଭିସ୍ମଂ ତରଳ ଗଲେ ହୋଇ ॥୮୪୦୨॥
ଧନୁସର ପକାଇ ହୋଇଲେ ମୋହମାନ
ଭିସ୍ମେଂ ପଡ଼ିଲେ ବୋଲି ସୁଭିଲା ବୟାଣ ॥୮୪୦୩॥
ହାହାକାର କଲେ ସମସ୍ତ କୌରୋବ
ଧାମଇ ଦୁର୍ଯୋଧନ କପୋଳେ କରି ଧିନ୍ଦ ॥୮୪୦୪॥
ଭିସ୍ମଙ୍କ ଠାରେ ମିଳି ରୋଦନ ସେ କରଇ
ନକହି ଭେଳା ମୋର ଦିଲୁଂ ଜେ ବୋଡ଼ାଇ ॥୮୪୦୫॥
କାହାକୁ ଘେନି ମୁଂ ଜେ କରିବିଂ ସମର
କେହୁ ସେନାପତି ହୋଇବ ଥାଟର ॥୮୪୦୬॥
ଏମନ୍ତ ବୋଲି ସୋକ କରଇ ଦୁର୍ଯୋଧନ
ଭିସ୍ମେ ପ୍ରତିବାଚ ଜାହା ଦଇବ ଲେଖନ ॥୮୪୦୭॥
ଜେଉ କଥା ଥାଇ ସେ ଅବସ୍ୟ ହୋଅଇ
ଆସନ କର ଏବେ ସୟନ କରିବଇଂ ॥୮୪୦୮॥
ଦ୍ରୋଣେ ବୋଇଲେ ତୁ ନିସତ ହୋଇଲୁଂ
ପାଣ୍ଡବଙ୍କୁ ମୃତୁଭେଦ ସମସ୍ତ କହିଲୁଂ ॥୮୪୦୯॥
ଆସ୍ରେ କରିଣ ନିରେଖ ହୋଇଲେ କୌରୋବେ
ମୁହିଂ ସେନାପତି ହୋଇଣ କରିବିଂ ଅପାଣ୍ଡବେ ॥୮୪୧୦॥
ଦ୍ରୋଣଙ୍କର ବଚନେ ଗଙ୍ଗାସୁତ ହେଲେ ତୁନି
ସର ସେଜ୍ୟା କରିଣ ଦିଲାକ ଫାଲଗୁନି ॥୮୪୧୧॥
ରହିଲେ ଗଙ୍ଗାସୁତ ଗମିଲେ କୌରୋବେ
ବିରସେଂ ପ୍ରବେସ ହୋଇଲେ ତେବେଂ[୧] ॥୮୪୧୨॥
ଭିସ୍ମଂ ପାଦେ ପଡ଼ିଲେ ପାଣ୍ଡେବ ପାଞ୍ଚଭାଇ
ଆମ୍ଭଲାଗି ଏତେ ସରି ହୋଇଲ ଗୋସାଇଂ ॥୮୪୧୩॥
ଭିସ୍ମେ ବୋଇଲେ ତୁମ୍ଭକୁ ପ୍ରାପତ ପଞ୍ଚଗ୍ରାମ
ସମର ସରିବା ଜାଏ ମୁ ରଖିବିଂ ଜିବନ ॥୮୪୧୪॥
ପ୍ରତିଜ୍ଞା କରିଛି ଦ୍ରୋଣ ତୁମ୍ଭକୁ ଜିଣିବ
ସୟନେ ଥାଇ ନୟନେ ଦେଖିବିଂ ସମ୍ଭବ ॥୮୪୧୫॥
ସୁଣି ଦୁତିକୃଷ୍ଣ ବିନ୍ଧିଲା ମନଭେଦି
ଯୋଜନେ ଉଛର୍ଗେ ହୋଇଲା ଉଚ୍ଚ ବେଦି ॥୮୪୧୬॥
ତହିଂ ପରେ ପତନି ଦିଲାକ ବିଛାଇ
କମଳ ଗୁଣ୍ଡି ସିଞ୍ଚି ଆସଇ ଧନୁର୍ଜଇ ॥୮୪୧୭॥

୧ । ଘ ପୋଥି – ବିରସେ ହସ୍ତିନାରେ ପ୍ରବେଶ ହୋଇଲେ

ଭିଷ୍ମଙ୍କୁ କୋଳକରି ତହିଁ ସୁଆଇଲା
ଗମିଲେ ପାଣ୍ଡବେ ସୋଇଲେ ଗଙ୍ଗାବଳା ॥୮୪୧୮॥
ପାଣ୍ଡବେ ମଣ୍ଡିଲେ ବାରୁଣା ନବର
ରଣଜୟେ ପତକା ଉଡ଼ଇ ଫର ଫର[1] ॥୮୪୧୯॥
ଦ୍ୱାରିକାରେଂ ପ୍ରବେସ ହୋଇଲେ ଚକାଡୋଳା
ଧୃତିରାଷ୍ଟ ଅଗ୍ରତେ ସଞ୍ଜୟେ କହିଲା ॥୮୪୨୦॥
ଆଜର ସମରେ ପଡ଼ିଲା ଗଙ୍ଗାସୁତ
ସାତ ସାଗର ପାରିଦଣ୍ଡ ନବସାଗର ରଥ ॥୮୪୨୧॥
ବୟାସି କୋଟି ଗଜ ବାସ୍ତରି କୋଟି ସନ୍ୟ
ସତର[2] ସହସ୍ର ନାସ ଗଲେ ରାଜନ ॥୮୪୨୨॥
ମଛ ଦେସରୁ ତ୍ରିଗତ ନାସଗଲା
ବିକୋଦର ହସ୍ତରେ ଜଗଜେଠି ମଲା ॥୮୪୨୩॥
ନକୁଳ ହସ୍ତରେ ମଲା ବିରବାହୁ
ଦଧିମଣ୍ଡଳଙ୍କୁ[3] ନାସିଲା କୁରୁରାହୁ ॥୮୪୨୪॥
ଦୁସାସନ ଗଦାଏ ପଡ଼ିଲା ଗଣପତି
ଭୁରିସର୍ବା ସମରେ ପଡ଼ିଲା ଭିମ ଚକ୍ରବ୍ରତି ॥୮୪୨୫॥
କେତୁ ନୃପତିକି ନାସିଲା ଭିମସେନ
ଅର୍ଜୁନ ନାରାଜେ ମଲା ମାନଅର୍ଜୁନ ॥୮୪୨୬॥
ଶ୍ରୀଖଣ୍ଡି ନାରାଜେ ପଡ଼ିଲା କେତୁମାଳି
ଭିମ ଗଦାଘାତେ ଚଉଦ ସହସ୍ର ରାଜା ଧୁଳି ॥୮୪୨୭॥
ତିନି ସାଗର ରଥ ଘେନି ପଡ଼ିଲା ଜଗଜେଠି
ଦଣ୍ଡପାଳ ସିର ଦ୍ରୋପଦ ରାଜା କାଟି ॥୮୪୨୮॥
ଉଜାଣିକାନ୍ତି ନଗ୍ରେ ରାଜା ସମ୍ପୁରାଣ
ପଡ଼ିଲେ ସମରେ ଘେନି ସତରକୋଟି ସନ୍ୟ ॥୮୪୨୯॥
କାଉଂରି ଦେଶର ରାଜା ଅଟେ କାମେସ୍ୱର
ପଡ଼ିଲା ରଣେ ସନ୍ୟ ବାଉନ ସାଗର ॥୮୪୩୦॥
ବିଚିତ୍ର ଦେସର ରାଜା ଚନ୍ଦ୍ରନଉମି
ଦ୍ରୋଣଙ୍କର ହସ୍ତେ ମଲା ଅହିବ୍ରତେ ସନ୍ୟ ଘେନି ॥୮୪୩୧॥
କର୍ଣ୍ଣନଉମି ବିଚିତ୍ର ଉତ୍ପଳ ଦେଶର
ସପ୍ତଖର୍ବ ପଡ଼ିଲା ଦ୍ରୋଣଙ୍କର ସମର ॥୮୪୩୨॥
ଡେଙ୍ଗଂରି[4] ଦେସର ନୃପତି ଧୃମାସ
ଦୁସାସନ ସମରେଂ ଗଲା ସେହୁ ନାସଂ ॥୮୪୩୩॥

୧ । ଘ ପୋଥି - ଘରେ ଘର
୨ । ଘ ପୋଥି - ସତୁରି
୩ । ଘ ପୋଥି - ଦଧିମଙ୍ଗଳଙ୍କୁ
୪ । ଘ ପୋଥି - ଡେଉଂଗିରି

ଅଇରି ଦେସର ରାଜା ଅଙ୍ଗାରପଲଙ୍ଗ
ବିରାଟ ରାଜାର ହସ୍ତେ ହୋଇଲାକ ଭଙ୍ଗ ॥୮୪୩୪॥
କୌସିକ ଦେଶରେ ନୃପତି କର୍ଣ୍ଣକେସବ
ଦୃଦକ୍ଷ ସମରେ ସେ ହୋଇଲା ଦହିଜ ॥୮୪୩୫॥
କାଉଂରି ଦେଶର ରାଜା ଅଟଇ କାମପାଳ
ବେନି ମଭୁତ ସନ୍ୟ ଘେନି ପଡ଼ିଲେ ସମର ॥୮୪୩୬॥
ଚଣ୍ଡିପୁରର ନୃପତି ସୋମଦତ ପଡ଼ି
ସତେ ଖର୍ବ ସନ୍ୟ ମୁଳେ ଅର୍ଜୁନ ନିବାରି ॥୮୪୩୭॥
ସେତ ବୋଲିଣ ସେ ବିରାଟର ନନ୍ଦନ
ବେନି କ୍ଷେଉଣି ସନ୍ୟମୁଳେ ନାସିଲେ ଗୁରୁଦ୍ରୋଣ ॥୮୪୩୮॥
ଗୁଞ୍ଜଗଳ ଦେଶର ରାଜା କମଳାକର
ନବ ପାରାଧ୍ୟ ସନ୍ୟ ଘେନି ହୋଇଲା ଅଙ୍ଗାର ॥୮୪୩୯॥
ଶ୍ରୀଖଣ୍ଡିକି ଦେଖି ଭିସ୍ମଂ ହୋଇଲେ ମୋହମାନ
ଏତେ ସନ୍ୟ ଯୋଦ୍ଧା ପଡ଼ିଲେ ଦସଦିନ ॥୮୪୪୦॥
ସୋଳ ସାଗର ବୟାସି କୋଟି ଚଉଦ ଖର୍ବ
ବୟାସି ମଭୁତ ବାସ୍ତୋରି କାଠି କୋଡ଼ିଏ କ୍ଷେଉଣି ॥୮୪୪୧॥
ନବ ପାରାଧ୍ୟ ବୟାସି ଲକ୍ଷ
ସତାସି ସହସ୍ର ନଅସ ପଞ୍ଚାସି ଗୋଟାରଥ ॥୮୪୪୨॥
ଗଜ ଅସ୍ୱ ରଥ ପାଏକ ପଏଦାର
ଏତେକ ସନ୍ୟ ଦସଦିନେ ହୋଇଲେ ଅଙ୍ଗାର ॥୮୪୪୩॥
ସଜଂୟେ କହିଲେ ଧୃତିରାଷ୍ଟ୍ର ଆଗ
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ ॥୮୪୪୪॥

## ଦ୍ରୋଣଙ୍କର ଚକ୍ରବ୍ୟୁହ ରଚନା ଓ ଅଭିମନ୍ୟୁ ବଧ

ସୁଣିଣ ବିସାଦ ଅମ୍ବିକା ନନ୍ଦନ
ସ୍ନାହାନ ସାରି ସର୍ବେ କଲେକ ଭୋଜନ ॥୮୪୪୫॥
ମୟେସୁର ବୋଲିଣ ତାଡ଼କାସୁର ସୁତ
ବୟାସି କାଠି ସନ୍ୟ ଘେନିଣ ସଙ୍ଗତ ॥୮୪୪୬॥
ଆସୁଛି ବାରୁଣାକୁ କରିବ ଅପାଣ୍ଡେବ
ଜମୁନା ତଟେ ତାକୁ ଦେଖିଲେ କୌରୋବ ॥୮୪୪୭॥
ସକଳ ଚରିତ ଦାନେବ ଆଗେଂ କହିଂ
ସୁଣିଣ ଦାନେବ ବୋଇଲା ହୋଇ ହୋଇ ॥୮୪୪୮॥
ଜମୁନାର ପ୍ରାନ୍ତେ ଉତ୍ପଳା ନାମେ ନଦି
ତହିଁ ଗଡ଼ କରି ଦୈତ୍ୟ ରହିଲାକ ଘେରି ॥୮୪୪୯॥
ଗୋବିନ୍ଦଙ୍କୁ ଚାହିଁ ବୋଲଇ ସହଦେବ
ଅଭିମନ୍ୟୁର ହୋଇଲା ବରସ ଚଉଦ ॥୮୪୫୦॥
ଆଜ ଜାଇ ଜେବେ ହୋଇବ କାଲିଦିନ
ଅର୍ଜୁନ ସଙ୍ଗତେ ତୁମ୍ଭଙ୍କୁ ନାସିବ ଭଗବାନ ॥୮୪୫୧॥

ଶ୍ରୀହରି ବୋଇଲେ ସେ ଆମ୍ଭଙ୍କୁ କିସ ମାରିବ
ତାହାର ମରଣ କାଲି ଶୁଣିବୁ ସହଦେବ ॥୮୪୫୨॥
ଏମନ୍ତ ବୋଲିଣ ସେ ନିଦ୍ରାରେଂ ଗଲେ ସୋଇ
ପାହିଲା ରଜନି ତାମ୍ରଚୂଡ଼ ରଡ଼ିଦେଇ ॥୮୪୫୩॥
ଉଠିଲେ କୌରୋବ ସନ୍ୟ ସେନା ଜେତେ
ବୋଲଇ ଦୁର୍ଯୋଧନ ଦ୍ରୋଣଙ୍କର ଅଗ୍ରତେ ॥୮୪୫୪॥
ତୁମ୍ଭର ଭୁଜକୁ ମୋର ଆସ ଯେ ଅଛଇ
ଉଦ୍ଧର କୁରୁକୁଳ ରଣଦାନ ଦେଇ ॥୮୪୫୫॥
ଦ୍ରୋଣେ ବୋଇଲେ ମୋତେ ସେନାପତି କର
ନରଖିବି ପାଣ୍ଡେବ ନାମ ଏ ମହିର ॥୮୪୫୬॥
ସୁଣିଣ ମକୁଟ ଘେନି ବିଚିତ୍ରବିର୍ଯ୍ୟର ନାତି
ଦ୍ରୋଣ ସିରେ ବାନ୍ଧି ବୋଇଲା ହୋଅ ସେନାପତି ॥୮୪୫୭॥
ତାଡ଼ ତୋଡ଼ର ବାହୁଟି ଅଳଙ୍କାରମାନ
ଅଙ୍ଗରେ ମଣ୍ଡିଲେ ଭରଦ୍ୱାଜଙ୍କର ନନ୍ଦନ ॥୮୪୫୮॥
କର୍ଣ୍ଣାଂଚଳେ କୁଣ୍ଡଳ କଣ୍ଠରେ ରୁଦ୍ରାକ୍ଷ
ରକ୍ତଚନ୍ଦନ ଚିତା କପୋଳେ ସୋଭିତ ॥୮୪୫୯॥
ନଉ ସହସ୍ର ବଳ ଧନୁ ଧରି କରି
କଟିରେ କଟିମେଖଳା ବାମେ ଜମଦାଢ଼ି ॥୮୪୬୦॥
ବିସାସତେ ବର୍ଣ୍ଣ ଶର ସୋଳବର୍ଣ୍ଣେ[1] ଶକ୍ତି
ସାତବର୍ଣ୍ଣ ଫାସ ବାରବର୍ଣ୍ଣ କାନ୍ତି ॥୮୪୬୧॥
ଚକ୍ର[2] ଭାଲ ଗୁରୁଜ ଗଦା ମୁଦ୍‌ଗର
ଏଥିରୁ ଘେନିଲେ ବାସ୍ତୋରି ସାଗର ॥୮୪୬୨॥
ତ୍ରୋଣରେ ପୁରୋଇ ଅଣ୍ଟିରେ ଭିଡ଼ିଲେ
ନବ ନିମିସ କୋନ୍ତ ପଇତା ଛନ୍ଦକଲେ ॥୮୪୬୩॥
ହର ହର ନେତ କଛେଣି ପଛେ ଉଡ଼ି
ହୃଦକୁ ପଡ଼ିଅଛି ରସାଣ ଜୋତି ଦାଢ଼ି ॥୮୪୬୪॥
ସତେସିରା ମକୁଟ ସୋଭିତ ସିରର
ମକୁଟ ଚଉକତି ମୁକୁତା ଟୋପର ॥୮୪୬୫॥
ରବି ଜୋତି ଲାଗିଣ ଦାଉ ଦାଉ ଦିସି
ଲକ୍ଷତ୍ରମାନେ ଜେହ୍ନେ ବିରାଜଇ ସସି ॥୮୪୬୬॥
ତାମ୍ରପାତ୍ର ପ୍ରାଏ ଦିଶଇ ବେନି ଚକ୍ଷୁ
କନେକ ପ୍ରାଏ ଦେହ ଭାଲରେ ସିତାଂସୁ ॥୮୪୬୭॥
କି ଅବା ପ୍ରସୁରାମ ହୋଇଛି ଅବତାର
ନିକ୍ଷେତ୍ର କରିବେ ଭାରତ ସମର ॥୮୪୬୮॥

୧ । ଘ ପୋଥି – ଲୌହବର୍ଣ୍ଣେ
୨ । ଘ ପୋଥି – ରକ୍ତବର୍ଣ୍ଣେ

ରଥ ଆଣ ବୋଲି ଦିଲାକ ବୟାଣ
ସୁଣି ବିଶ୍ୱାବସୁ ସାଜିଲା ବିମାନ ॥୮୪୬୯॥
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର
ପାଣ୍ଡେବଂ ଅଗ୍ରତେ କହିଲା ଡଗର ॥୮୪୭୦॥
ସ୍ୱାମି ମୟେ ଦୈତ୍ୟ କରିଛି କଟକାଇ
କହୁଛି ଅପାଣ୍ଡେବ କରିବାକ ମହି ॥୮୪୭୧॥
ବୟାସି କାଠିତାର ଅଙ୍ଗବଳା ସନ୍ୟ
ଜାଳାନ୍ଧର ଭୁଏ କରିଛି ନିର୍ମାଣ ॥୮୪୭୨॥
ସୁଣିଣ ବିସାଦ ପାଇଲେ ଧର୍ମନାନ
କସଣ ଉପରେ ହରି ପଡ଼ିଲା କସଣ ॥୮୪୭୩॥
ବୋଲନ୍ତି ଜଗନ୍ନାଥ ନ ଭାଳ ରାଜନ
ଜାଳାନ୍ଧର ଭୁଅକୁ ଜିବି ପାଥକୁ ଘେନିଣ ॥୮୪୭୪॥
ଦାନବକୁ ଆଗେ ନିବାରି ଆସିବା
ପଛାତେ ଭାରତ ସମର କରିବା ॥୮୪୭୫॥
ଏତେ ବୋଲି ନନ୍ଦିଘୋଷ ସାଜିଲେ ଦଇତାରି
ବସିଲା ଅର୍ଜୁନ ଦଧିବାମନ ସୁମରି ॥୮୪୭୬॥
ଗମିଲା ନନ୍ଦିଘୋଷ ବାହିଲେ ଭଗବାନ
ପ୍ରବେସ ହେଲେ ଜାଇ କବନ୍ଧର ସନ୍ୟ ॥୮୪୭୭॥
ଦାନେବର ସଙ୍ଗେ ସମର କଲାପାଥ
ସୁଣଗୋ ଓମା ବୋଲି ବୋଲନ୍ତି ବିଶ୍ୱନାଥ ॥୮୪୭୮॥
ତେଣେ ଦ୍ରୋଣଗୁରୁ ବସିଲେ ରଥର
ଦ୍ରୋଣରୂପ ଦେଖି ଆନନ୍ଦ କୁରୁବର ॥୮୪୭୯॥
ସତୋରି ଲକ୍ଷ[1] ରଥ ବାସ୍ତୋରି ଖର୍ବ ହସ୍ତି[2]
ତେର ମଭୁତ ତୁରଙ୍ଗମ ଚଉଦ ବୃନ୍ଦ ପାଦାନ୍ତି ॥୮୪୮୦॥
ଏତେ ସନ୍ୟ ଘେନି ଦ୍ରୋଣଗୁରୁ ଆଗିଆଣି
ପାଦଭରେ ଦଲ ଦଳିତ କମ୍ପଇ ମେଦନି ॥୮୪୮୧॥
ଭାରତ ଭୁମିରେ ପ୍ରବେସ ହୋଇଲେ
ଚକ୍ର ଆକାରେ ଦ୍ରୋଣ ଭୁଏକ କାଟିଲେ ॥୮୪୮୨॥
ପୁରକୁ ପୁର ସ୍ଥାପି ଭିଆଇଲେ ଦ୍ୱାର
ଆପଣେ ଦ୍ରୋଣ ରହିଲେ ପ୍ରଥମ ଦ୍ୱାରର ॥୮୪୮୩॥
ଦୁତିୟେ ଜଦ୍ୟରଥ ତୃତିୟେ ଭୁରିସର୍ବା
ସତାସି ଲକ୍ଷ ସନ୍ୟ ଘେନିଣ ରହିଲା ॥୮୪୮୪॥
ଚତୁର୍ଥ ଦ୍ୱାରେ କର୍ଣ୍ଣ ପଞ୍ଚମେ ଦ୍ରୋଣସୁତ
ପାଞ୍ଚଲକ୍ଷ ଯୋଦ୍ଧା ଘେନିଣ ସଙ୍ଗତ ॥୮୪୮୫॥

୧ । ଘ ପୋଥି – ସତର ଖର୍ବ ରଥ
୨ । ଘ ପୋଥି – ରଥି

ସଷ୍ଠମେ କୃପାଚାର୍ଯ୍ୟ ସପ୍ତମେ ରାଏ ସଲ୍ୟ
ଅହିବ୍ରତ ସନ୍ୟ ଘେନିଣ ସଙ୍ଗତର ||୮୪୮୬||
ଅଷ୍ଟମେ ଅଳମ୍ବୁସ ନବମେ ଦୃସାସନ
ଦଶମେ ରହିଲା ଦୁର୍ଯ୍ୟୋଧନର ନନ୍ଦନ ||୮୪୮୭||
ଆପଣେ ଦୁର୍ଯ୍ୟୋଧନ ଭ୍ରାଥମାନ ଘେନି
ରହିଲେ ଭିତରେ ସନ୍ୟ ପଞ୍ଚାସ କ୍ଷେଉଣିଂ ||୮୪୮୮||
ଏମନ୍ତେ ଦ୍ରୋଣଗୁରୁ ଚକ୍ରଭୁଅ କାଟି
ରେ ରେ କାର କରିଣ ପାଣ୍ଡବଙ୍କୁ ଡାକି ||୮୪୮୯||
ବାରୁଣା ସଭାରେ ପଡ଼ିଲା ଚମକ
ଗୁରୁ କିମ୍ପା ଡାକନ୍ତି ବୋଲି ପୁଛନ୍ତି ଧର୍ମସୁତ ||୮୪୯୦||
ଯୁଧିଷ୍ଟିଙ୍କ ଅଗ୍ରତେ ମୁନ୍ୟେହି କହିଲେ
ସେନାପତି ହୋଇ ଦ୍ରୋଣେ ଭୁଏକ କାଟିଲେ ||୮୪୯୧||
ଏକାଦଶ ପୁର ଦଶଗୋଟା ଦ୍ୱାର
ଦ୍ୱାରକୁ ଦ୍ୱାର ରଥି ରହିଲେ ଘେନିବଳ ||୮୪୯୨||
ସୁଣିଣ ଯୁଧିଷ୍ଟି ବହୁତ ଚିନ୍ତା କଲେ
ଭୁଅ ଭେଦି ପାରିବ କି ଭାଇଙ୍କି ପଚାରିଲେ ||୮୪୯୩||
ସୁଣିଣ ଚାରିଭ୍ରାଥ ବୋଇଲେ ବଚନ
କରିବୁଂ ମେଲା ଯୁଦ୍ଧ ମାରିବୁଂ ଆମ୍ଭେ ସନ୍ୟ ||୮୪୯୪||
ଭୁଅଭେଦ ସନ୍ଧି ନଜାଣୁ ଜେ ଆମ୍ଭେ
ସୁଣିଣ ଜୋଦ୍ଧାମାନଙ୍କୁ ପଚାରିଲେ ରାଜଦେବେ ||୮୪୯୫||
ସମସ୍ତେ ବୋଇଲେ ଆମ୍ଭେ କରିବା ମେଲା ରଣ
ଭୁଅ ଭେଦା ବିନ୍ଧା ଆମେ ନଜାଣୁ ହେ ପୁଣ[୧] ||୮୪୯୬||
ଏମନ୍ତ ବୋଲନ୍ତେ ଡାକିଲେ ଗୁରୁଦ୍ରୋଣ
ଆରେ ଆରେ ପାଣ୍ଡବେ ମୋ ସଙ୍ଗେ କର ରଣ[୨] ||୮୪୯୭||
ନିସତ ହୋଇଲେ ରାଜ୍ୟ ଜାଅ ଛାଡ଼ି
ସୁଣିଣ ଆକୁଳ ଜେ ଯୁଧିଷ୍ଟି ଦଣ୍ଡଧାରି ||୮୪୯୮||
ଏହି ସମୟରେ ପ୍ରବେସ ପାଥସୁଥ
ବୋଇଲା କିପାଂଇ ହେ ବିରସ ନୃପନାଥ ||୮୪୯୯||
ଯୁଧିଷ୍ଟି ବୋଇଲା ହୋ ତୋ ପିତାଗଲା ପରରାଷ୍ଟ୍ର
ଏଣେ ଚକ୍ରଭୁଅ କଲା ରୁଷି ସୁତ ||୮୫୦୦||
ଭୁଅ ଭେଦିବାକୁ ନାହିଂ ମୋର ରଥି
ଅଭିମନ୍ୟୁ ବୋଇଲା ମୋତେ କର ହେ ସେନାପତି ||୮୫୦୧||
ଯୁଧିଷ୍ଟି ବୋଇଲେ କୁମର ହୋଇଲୁଂ ଏଡ଼େ ବାଇ
ଚଉଦ ବରସର ଅଟୁ ତୁ ବାଳପୋଇ ||୮୫୦୨||

୧ । ଘ ପୋଥିରେ ଉପର ତିନି ଧାଡ଼ି ନାହିଁ
୨ । ଘ ପୋଥି - ଏହି ସମରେ ତୁମ୍ଭର ନେବୁ ପ୍ରାଣ

ତୁ କେମନ୍ତେ ଜାଣିବୁ ଚକ୍ରଭୁଅ ଭେଦି
ଦ୍ୱାର ଆବୋରିଣ ଅଛନ୍ତି ମହାଯୋଧି ||୮୫୦୩||
ସାଗର ସମାନେ ଅଟଇ କୁରୁବଳ
ତହିଂରେ କେମନ୍ତେ ତୁହି ଦେବୁ ଥଳ[୧] ||୮୫୦୪||
ଭୁଅ ଭେଦିବା ଚରିତ ତୁ ସିଖିଲୁ କାହାଠାରୁ
ପ୍ରଥମ ଦ୍ୱାରେ ଅଛନ୍ତି ଦ୍ରୋଣଗୁରୁ ||୮୫୦୫||
ଜେହୁ ଧନୁ ଧରନ୍ତେ ଇନ୍ଦ୍ର କରେ ସକାଂ
ତାହାର ସଙ୍ଗତେ ତୁ ଜୁଝିବୁରେ ଏକା[୨] ||୮୫୦୬||
ଜଦ୍ୟରଥ ଭୁରିସର୍ବା କର୍ଣ୍ଣ ଅସ୍ୱସ୍ତମା
ସଲ୍ୟ କୃପାଚାର୍ଯ୍ୟ ଅଳମ୍ବୁସ କୃପବ୍ରହ୍ମା ||୮୫୦୭||
ଏମାନେ ଜେମନ୍ତେ ଧରନ୍ତି ଧନୁସର
ଆକାସ କପଂଇ କପଂଇ ମହିଧର ||୮୫୦୮||
ମେରୁ ଟଳମଳ ଉଛୁଳଇ ସିନ୍ଧୁ
ତୁହି କେମନ୍ତେ ତାହାଙ୍କ ଅଗ୍ରତେ ଜୁଝିବୁ ||୮୫୦୯||
କୁମର ବୋଇଲା ମୁଂ ଥିଲି ମାତାଗର୍ଭେ
ଭୁଅ ଭେଦ କଥା କହିଲେ ଜନନିର ଆଗେଂ ||୮୫୧୦||
ତାହାଙ୍କ ଠାରୁ ମୁଂ ସୁଣିଣ ଅଛଇଂ
ଭେଦିବି ଦସଦ୍ୱାର ଆସିବା ନ ଜାଣଇଂ ||୮୫୧୧||
ଜେଣୁ ମାତା ଆଗେ କହିଲେ ମୋର ପିତା
ମାତାଙ୍କ ନୟନରେ ଘାରିଲାକ ନିଦ୍ରା ||୮୫୧୨||
ତେଣୁ ମାତା ଗର୍ଭେ ସୟନ ମୁ କଲିଂ
ଦସଦ୍ୱାର ଭେଦିବା ଫେରିବା ନ ଜାଣିଲିଂ ||୮୫୧୩||
ଯୁଧିଷ୍ଟି ବୋଇଲେ ଲୁଚି ହୋଇ ଜାଇ
ଚନ୍ଦ୍ରମା ବଦନକୁ ନିକି ମୁଂ ନ ପାଇଂ ||୮୫୧୪||
କି ଅବା ଚକ୍ରକୋଟ କରିଛି ଭାବଗ୍ରାହିଂ
ଏତେ ବୋଲି ବିରସେ ଉଠିଲେ ଗୋସାଇଂ ||୮୫୧୫||
ସେତ ଦ୍ରୋଣିଂ ମକୁଟ ନନ୍ଦନ ସିରେ ବାନ୍ଧି
ନାନା ଅଳଙ୍କାର ଯୁଧିଷ୍ଟି ଦିଲେ ଖଞ୍ଜି ||୮୫୧୬||
ଆଲିଙ୍ଗନ[୩] କରିଣ ଦେହ ଆଉସଂନ୍ତି
ଶତୃ ଜଏ କରିଣ ଆସରେ ତଡ଼ତି ||୮୫୧୭||
ଅଭିମନ୍ୟୁ ଆଜ୍ଞାରେ ଗମିଲା କେତନ
ଅତିଜତ୍ନେ ସାଜିଲା ଧବଳି ବିମାନ ||୮୫୧୮||
ଧନୁଧରି ରଥରେ ବସିଲା ପାଥସୁତ
କି ଅବା କାମଦେବ କି ଅବା ସଚିକାନ୍ତ ||୮୫୧୯||

୧ । ଘ ପୋଥି - ସ୍ଥଳ
୨ । ଘ ପୋଥି - ସେହିଠାକୁ କିମ୍ପେ ତୁରେ ଯିବୁ ଏକା
୩ । ଘ ପୋଥି - କଲ୍ୟାଣ

ଅର୍ଘ ଦେଇ କାମିନିମାନେ ଦିଅନ୍ତି ହୁଳହୁଳି
ସୁଭ ବେଳେ ସାରଥି ରଥଦେଲା ଚାଳି ॥୮୫୨୦॥
ଧବଳି ରହୁବର ଗମିଲା ଗଗନ
ସଂଗ୍ରାମେ ମିଳନ୍ତେ ଦେଖିଲେ ଗୁରୁଦ୍ରୋଣ ॥୮୫୨୧॥
ବିଚାରନ୍ତି ଏହି ତ ନନ୍ଦିଘୋଷ ନୋହଇ
କେବଣ ଗନ୍ଧର୍ବ ସାଙ୍ଗ୍ରାମକୁ ଆସଇ ॥୮୫୨୨॥
ଏମନ୍ତ କହୁଂ କହୁଂ ପ୍ରବେସ ଧବଳି
ସୁନ୍ୟ ଭୁବନ ଜେହ୍ନେ ଖସଇ ବିଜୁଳି ॥୮୫୨୩॥
ଦ୍ରୋଣେ ପ୍ରତିବାଚ କାହିଂକି ଅଇଲୁରେ ବାଳେକ ତ
କେଣିକି ଗଲେରେ ଅର୍ଜୁନ ଜଗନ୍ନାଥ ॥୮୫୨୪॥
ଦେଖିଲୁ ଚକ୍ର ଭୁଅ ଜାଅ ଏବେ ତୁହିଂ
ହରି ଅର୍ଜୁନକୁ ଦିଅ ଜା ପଠିଆଇ ॥୮୫୨୫॥
ଅଭିମନୁ ବୋଇଲା ସେ ଦସଦିନ କଲେ ରଣ
ମାରି ନ ପାରିଲେ କୌରୋବ ସନ୍ୟ ॥୮୫୨୬॥
ତେଣୁ ଆଜ ମୁହିଂ ହୋଇଲିଂ ସେନାପତି
କୌରୋବ ବଳ ସବୁ ପକାଇବିଂ ମନ୍ଥି ॥୮୫୨୭॥
ସନ୍ୟସେନା ସହିତେ ନାସିବିଂ କୌରୋବ
କାଲି ଯୁଧିଷ୍ଟି ମାଡ଼ି ବସିବେ ପଞ୍ଚୁରାଜ୍ୟ ॥୮୫୨୮॥
ବିନ୍ଧ ବିନ୍ଧ ନାରାଜ ହେଳା କରନାହିଂ
ଲୋହିଲେ ଦ୍ୱାର ଛାଡ଼ ଭିତରେ ପସିବଇଂ ॥୮୫୨୯॥
ଦ୍ରୋଣେ ବୋଇଲେ ତୋର ଏଡ଼େକ ଭରସା
ମାଞ୍ଜାରି ଅଗ୍ରତେ ବଡ଼ାଇ କହୁଅଛି ମୁସା ॥୮୫୩୦॥
ଇନ୍ଦୁର ହୋଇ କାଳସର୍ପକୁ ଡରାଉ
ମୁହିଂ ଦ୍ରୋଣଗୁରୁ ପାଣ୍ଡେବଙ୍କ ରାହୁ ॥୮୫୩୧॥
ବାଳେକ ବୋଲି ଜେ ତୋତେ ଦୟା କରିଅଛି
ଲୋହିଲେ ତୋର ସିର ପକାଇବି ପୋଛିଂ[1] ॥୮୫୩୨॥
ଦ୍ରୋଣଙ୍କ ବଚନେ ଅଭିମନୁ କୋପକଲା
ଧନୁରେ ଗୁଣଦେଇ ନାରାଜ ବିନ୍ଧିଲା ॥୮୫୩୩॥
ଦ୍ରୋଣଙ୍କ ପାଦତଳେ ନାରାଜ ପଡ଼ଇ
ଦ୍ରୋଣେ ସର ବିନ୍ଧିଲେ କଲ୍ୟାଣ କରଇ ॥୮୫୩୪॥
ପୁଣି ଅଭିମନୁ ଲକ୍ଷେଂ ସରକଲା
ପ୍ରତିସର କରି ଦ୍ରୋଣ ତା ଛେଦିଲା ॥୮୫୩୫॥
ତିନି ଅହିବ୍ରତ ବିନ୍ଧିଲା ଅଭିମନୁ
ଲକ୍ଷେ ବାଣେଂ ଛେଦିଲେ ଭାରଦ୍ୱାଜ ତନୁ ॥୮୫୩୬॥
କୋପେଂ ଦ୍ରୋଣଗୁରୁ କୁହୁକା ସର କଲା
ସୁର୍ଯାବ୍ରତ ନାରାଜେ ନନ୍ଦନ ଛେଦିଲା ॥୮୫୩୭॥

୧ । ଘ ପୋଥି – କାଟି

ବିଚାରେ ଅଭିମନୁ ଜେବେ ଏ ରୁପେଂ ହେବ ରଣ
କେତେବେଳେ ଭେଦିବି ମୁଂ ଦ୍ୱାର ଜେ ଦସମ ॥୮୫୩୮॥
ଏତେ ବିଚାରିଣ ମୋହନା ସରକଲା
ରଥରେ ମୋହହେଲେ ଭରଦ୍ୱାଜ ବଳା ॥୮୫୩୯॥
ପ୍ରଥମ ଦ୍ୱାର ଜିଣି ଗମିଲା ଧବଳି
ଦୁତିୟ ଦ୍ୱାର ହେଲା ସଙ୍ଖଧୁନି କରି ॥୮୫୪୦॥
ଦୁରରୁ ଡାକିଲା ହୋ ପିଉସା ଅଛ ରହିଂ
ସାତ ପାଞ୍ଚକାଣ୍ଡ ପାରିଲେ ବିନ୍ଧତୁହିଂ[1] ॥୮୫୪୧॥
ନୋହିଲେ ଦ୍ୱାର ଛାଡ଼ ଭିତରେ ପସ ଅବା
ଦୁସୁଳା ରାଣି ତୁମ୍ଭର ନୋହୁ ଜେ ବିଧବା ॥୮୫୪୨॥
ଏମନ୍ତ ବୋଲି ଅଭିମନୁ ବିନ୍ଧିଲାକ ସର
ମସିଗୁଣ୍ଡା ହୋଇଲା ସାରଥି ରହୁବର ॥୮୫୪୩॥
ପାଦଗତି ହୋଇଲା ସୁରଥ ନନ୍ଦନ
ତଦଅନ୍ତେ ଅଭିମନୁ ବିନ୍ଧିଲା ମୋହବାଣ ॥୮୫୪୪॥
ଭେଦିଲା ରୋମେ ରୋମେ ପଡ଼ିଲା ଯଦ୍ୟରଥ
ତଦନ୍ତେ ଉଗାଳିଲେ ବେନି ସତରଥ ॥୮୫୪୫॥
ତାହାଙ୍କୁ ଲକ୍ଷେବାଣ ମାରି ସୁଆଇଲା
ସଙ୍ଖଧୁନି କରିଣ କୁମାର ଗମିଲା ॥୮୫୪୬॥
ତୃତିୟ ଦ୍ୱାରେ ଭୁରିସର୍ବା ରହିଅଛି
ତାହାକୁ ନାରାଜ ବିନ୍ଧିଲା ପାଥବଛି ॥୮୫୪୭॥
ଲକ୍ଷ ଲକ୍ଷ ବାଣ ଅଭିମନୁ ଛାଡ଼ି
ପଳାଇଲା ଭୁରିସର୍ବା ତିନିଦ୍ୱାର ଫେଡ଼ି[2] ॥୮୫୪୮॥
ଜୟ ସଙ୍ଖଧୁନି ଅଭିମନୁ ଦେଇ
ଚତୁର୍ଥ ଦ୍ୱାରେ କର୍ଣ୍ଣ ରଥିକି ଭେଟଇ ॥୮୫୪୯॥
ଏଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ବାରୁଣାବନ୍ତେ ଥିଲେ ପାଣ୍ଡେବ ଭାଇ ଚାରି ॥୮୫୫୦॥
ଯୁଧିଷ୍ଟି ବହୁତ ହୋଇଲେ ବୈକୁଲ୍ୟ
ସମରକୁ ଗମିଲା ଏକା ଅର୍ଜୁନର ବାଳ ॥୮୫୫୧॥
ଚାଲ ଜିବା କୁମରକୁ ହୋଇବାକ ସାହିଂ
ଏତେ ବୋଲି ଧାଇଂଲେ ପାଣ୍ଡେବ ଚାରିଭାଇ ॥୮୫୫୨॥
ପ୍ରଥମ ଦ୍ୱାରେ ଦ୍ରୋଣଗୁରୁକୁ ଦେଖିଲେଂ
ଭିମ ରଣକଲା ଦ୍ରୋଣଙ୍କର ତୁଲେ ॥୮୫୫୩॥
ଗଦାଏ ପିଟିଲା ଭିମ ଦ୍ରୋଣଙ୍କର ରଥ
ମସିଗୁଣ୍ଡା ହୋଇଲା ରଥ ଦ୍ରୋଣ ଚାଲିଲେ ପାଦଗତ ॥୮୫୫୪॥

୧ । ଘ ପୋଥି – ସାତ ପାଞ୍ଚ କାଣ୍ଡ ମାରି ଦିଅ ବାହୁଡ଼ାଇ
୨ । ଘ ପୋଥି – ଦ୍ୱାରରେ ନ ରହି

ଦ୍ରୋଣ ସର ବିନ୍ଧିଲା ସହଦେବ ଛେଦି
ଧାଇଁଲା ବିକୋଦର ବେନିଗଦା ନଦି ॥୮୫୫୫॥
ଦ୍ରୋଣଙ୍କ ଉପରେ ପ୍ରହାରିଲା ନେଇ
ପଡ଼ିଲେ ଅସାଷ୍ଟମେ ଭାରଦ୍ୱାଜ ତନଇ ॥୮୫୫୬॥
ବାଉନ ମଭୁତ ସନ୍ୟ ଥିଲେ ଦ୍ୱାର
ସମସ୍ତ ନାସକଲା ପବନ କୁମର ॥୮୫୫୭॥
କାଳସର୍ପ ପ୍ରାଏ ଗର୍ଜନ କରଇ
ଦୁତିଯ଼ ଦ୍ୱାର ଜାନ୍ତେ ଡାକିଲା ମାଦ୍ରିର ତନଇ ॥୮୫୫୮॥
ଯୁଧିଷ୍ଟି ବୋଇଲେ କିପାଇଁ ଦେଉ ଡାକ
ଯାଉ ଭିମ ଭିତରେ ପସିଛି ବାଳେକ ॥୮୫୫୯॥
ପୁର୍ବର ଚରିତ୍ର ସହଦେବ ଗଲା କହିଂ
ରୁଦ୍ରଠାରୁ ସକତି ଅଛି ସେହୁ ପାଇ ॥୮୫୬୦॥
ଏହି କ୍ଷଣି ମିଳିଲେ ମାରିବ ଆମ୍ଭଙ୍କୁ
ସୁଣିଣ ଯୁଧିଷ୍ଟି ଡାକିଲେ ଭିମକୁ ॥୮୫୬୧॥
ବାହୁଡ଼ି ଚାରିଭାଇ ବାରୁଣାରେ ହୋଇ
ସୁଣଗୋ ଓମା ବୋଲି ସଦାସିବ କହି ॥୮୫୬୨॥
କର୍ଣ୍ଣର ସଙ୍ଗେ ଅଭିମନୁ କରେ ରଣ
ଆଖି ପିଞ୍ଚା ପ୍ରମାଣେ ବିନ୍ଧୁଅଛି ବାଣ ॥୮୫୬୩॥
ପ୍ରତିସର କରିଣ ବିନ୍ଧଇ ରବିସୁତ
ଦୁହେଂ ମହାକ୍ଷତ୍ରି ଜୁଝନ୍ତି ସମକଛ ॥୮୫୬୪॥
କର୍ଣ୍ଣ ଡାକଦିଅଇ ବାହୁଡ଼ିଣ ଜାଅ ସୁତ
କୁଳ ନ ବୁଡ଼ାଇ ସୋମ ବଂଶ ରଖ ତୁ ବିଦିତ ॥୮୫୬୫॥
ଅଭିମନୁ ବୋଇଲା ରଖିବିଂ ସୋମକୁଳ
କୌରୋବ ବଂସ ମରିବେଟି ସକଳ ॥୮୫୬୬॥
କଇନ୍ତାଙ୍କର ଜେଷ୍ଟପୁତ୍ର ତୁମ୍ଭେ ମୋହର ଅଟ ଜେଠା
ନୋହଇ ଭିନ୍ନ ବୁଝିଲେ ମୁଂ ତୁମ୍ଭର ସାଖା ବେଟା ॥୮୫୬୭॥
ତେଣୁ ତୁମ୍ଭଙ୍କୁ ମୁଂ ନ କରେ ନିଧନ
ଦ୍ୱାର ଛାଡ଼ି ଅନ୍ୟଠାରେ ରଖ ଜା ଜୀବନ ॥୮୫୬୮॥
ଏହି ରୁପେଂ କହିଲି ଦ୍ରୋଣେ ଦ୍ୱାର ନ ଛାଡ଼ିଲେ
ବେନିକୁଳ ରଖି ଗୁରୁ ମଡ଼ାଙ୍କ ସଙ୍ଗ ହେଲେ ॥୮୫୬୯॥
ଯାଅ ବା ଥାଅ ମୋହର ଦୋଷ ନାହିଂ
ଏତେ ବୋଲି ଲକ୍ଷେ ନାରାଜ ଛାଡ଼ିଦେଇ ॥୮୫୭୦॥
କର୍ଣ୍ଣର ରଥ ସାରଥି ଗଲେ ଭାଜିଂ
ପାଦେ ଚାଲି ଭାରୋଇମଲ ସର ବିନ୍ଧି ॥୮୫୭୧॥
ପ୍ରତିସର କରିଣ ଛେଦିଲା ପାଥନାନ
ମୋହନା ସର ପେସିଲା ମୋହ କର୍ଣ୍ଣ ॥୮୫୭୨॥
ସଙ୍ଖଧ୍ୱନି ଦେଇ ଚଳାଇଲା ରଥ
ପଞ୍ଚମ ଦ୍ୱାରେ ଭେଟିଲା ଦ୍ରୋଣଙ୍କର ସୁତ ॥୮୫୭୩॥
ନ ପଚାରି ତାହାଙ୍କୁ ସରବୃଷ୍ଟି କଲା
ପ୍ରତିସର କରିଣ ଛେଦିଲା ଦ୍ରୋଣବଳା ॥୮୫୭୪॥
ହାବଡ଼ା ସର ବିନ୍ଧିଲା ସୋଭଦ୍ରା ନନ୍ଦନ
ସମ୍ଭାଳି ନୋହି ଅସ୍ୱସ୍ତମା ଉଡ଼ିଲା ଗଗନ ॥୮୫୭୫॥
ମେଲା ହୋଇଲା ଦ୍ୱାର ଆବୋରିଲେ ଯୋଧି
ସମସ୍ତଙ୍କୁ ଅଭିମନୁ କାଣ୍ଡେ କାଣ୍ଡେ ବିନ୍ଧି ॥୮୫୭୬॥
ଗମଇଂ ମହାମଲ ସଙ୍ଖଧ୍ୱନି ଦେଇ
ସଷ୍ଟମ ଦ୍ୱାରେ କୃପ ଆଚାର୍ଯ୍ୟଂ ଅଛଇ ॥୮୫୭୭॥
ବସ୍ୱରୁଷିଙ୍କ ସୁତ ଦ୍ରୋଣଙ୍କର ସଳା
ମହାକ୍ଷତ୍ରି ପ୍ରତାପି ସେ ତେଜ ଅନର୍ଗଳା ॥୮୫୭୮॥
ଲକ୍ଷ ଲକ୍ଷ ନାରାଜ ଟାଣିଣ ବିନ୍ଧିଲେ
ପ୍ରତିସର କରିଣ ଅଭିମନୁ ଛେଦିଲେ ॥୮୫୭୯॥
କୋପେଂ ଅଭିମନୁ ବିନ୍ଧିଲା ମନଭେଦି
କୃପ ଆଚାର୍ଯ୍ୟ ପଡ଼ିଲେ ମୁଖମାଡ଼ି ॥୮୫୮୦॥
ସଙ୍ଖଧ୍ୱନି ଦିଲା ସୋଭଦ୍ରା କୁମର
ବାହିଲା କେତନ ଗମିଲା ରହୁବର ॥୮୫୮୧॥
ସପ୍ତମ ଦ୍ୱାରେ ମିଳି ସଲ୍ୟକୁ ହାବୋଡ଼ିଲା
ଆଣ୍ଟଧନୁ ଧରି ବସିଅଛି ବୁଢ଼ା ଭଲା ॥୮୫୮୨॥
ଟାଣିଣ ନାରାଜ ବିନ୍ଧିଲା ମହାମଲ
ପଡ଼ିଲା ଉତ୍ତାନେ ଭାରୋଇମଲ ସଲ୍ୟ ॥୮୫୮୩॥
ସଙ୍ଖଧ୍ୱନି ଦେଇଣ କୁମର ଗମଇଂ
ଅଷ୍ଟମ ଦ୍ୱାରେ ଅଳମ୍ବୁସ ଓଗାଳଇ ॥୮୫୮୪॥
ପାର୍ବତି ପୁଛାକଲେ ସୁଣ ହେ ସଦାସିବ
ଜାଳାନ୍ଧର ଭୁଅକୁ ଗଲେ ଅର୍ଜୁନ ବାସୁଦେବ ॥୮୫୮୫॥
କେମନ୍ତ ପ୍ରକାରେ ଜିଣିଲେ ଦୈତ୍ୟକୁ
ଏକଥା ପ୍ରାଣନାଥ ସୁଣିବି ତୁମ୍ଭ ମୁଖୁଂ ॥୮୫୮୬॥
ସୁଣଗୋ ସଖି ବୋଲି ବୋଲନ୍ତି ଗଙ୍ଗାଧର
ଅଭିମନୁ ସଙ୍ଗ ସୁଣିଲେ କର୍ଣ୍ଣର ଚକ୍ରଧର ॥୮୫୮୭॥
ଜାଣିଲେ ଅଭିମନୁ ନାସ ଜାଇନାହିଂ
ଏଥୁଂ ଅର୍ଜୁନ ଗଲେ ନମରିବ ସେହିଂ ॥୮୫୮୮॥
ସେହି ନାସ ନଗଲେ ଆମ୍ଭେ ନ ବର୍ତ୍ତିବା ଭଲା
ଏମନ୍ତ ବୋଲିଂ ହରି ଚକ୍ରକୁଟ କଲା ॥୮୫୮୯॥
ଜେତେକ ରାକ୍ଷସ ମରନ୍ତି ସମର
ଜିବ ପାଇ ଜୁଝନ୍ତି ଅର୍ଜୁନ ସଙ୍ଗତର ॥୮୫୯୦॥
ମାଇଲେ ନ ମରନ୍ତି ଦୈଇତ୍ୟ ଅନର୍ଗଳା[1]
ଜେସନେ ସତ୍ୟଯୋଗେଂ ରକ୍ତବିଜ ଖେଳା ॥୮୫୯୧॥

---

୧ । ଘ ପୋଥି – ମହାତେଜ

କେତେବେଳେ ଅନ୍ଧାର କେତେବେଳେ ଆଲୋଳ
କେତେବେଳେ ନନ୍ଦିଘୋସ ପ୍ରବେସ ମେଘମାଳ ॥୮୫୯୨॥
ଏହି ରୁପେ ସମର କରଇ ଫାଲଗୁନି
ଗୁପତ ହୋଇଲେ ଦାନେବ ସଇନି ॥୮୫୯୩॥
ଅର୍ଜୁନ ବୋଇଲା ହରି ଥାଅ ଏହିଠାର
ମୁହିଂ ଦେଖଇ କେଣେ ଗଲେକ ଅସୁର[୧] ॥୮୫୯୪॥
ଏମନ୍ତ ବୋଲି ପାଥ ଖୋଜଇ ଦୈଇତ୍ୟଙ୍କୁ
ରାକ୍ଷସ ବାହାରିଣ ଘେରିଲେ ପାଥକୁ ॥୮୫୯୫॥
ଧର ଧର ମାର ମାର ସବଦ ଶୁଭଇ
କଟାର ଘେନି ପାଥ ଦୈତ୍ୟକୁ ଛେଦଇ ॥୮୫୯୬॥
ଘେରିଣ ପାଥକୁ ଦୈଇତ୍ୟେ ଘେନିଗଲେ
ଜିନ୍ନ କୁପ ଭିତରେ ନେଇଣ ପକାଇଲେ ॥୮୫୯୭॥
ଅର୍ଜୁନକୁ ନପାଇ ଆକୁଳ ହୃସିକେସ
ହନୁକୁ ବୋଇଲେ ରଖିଥାଅ ନନ୍ଦିଘୋସ ॥୮୫୯୮॥
ମୁହିଂ ଯାଉଅଛି ପାଥକୁ ଖୋଜିବଇଂ
ଅର୍ଜୁନ କାହିଂଗଲୁ ଡାକନ୍ତି ଭାବଗ୍ରାହି ॥୮୫୯୯॥
ରାକ୍ଷସ ସନ୍ୟରେ ଖୋଜନ୍ତି ତ୍ରୈଲୋକ୍ୟ ଗୋସାଇଂ
ଜିନ୍ନ କୁପଠାରେ ପ୍ରବେସ ହେଲେ ଜାଇ ॥୮୬୦୦॥
ଅର୍ଜୁନ ଅର୍ଜୁନ ବୋଲି ଡାକନ୍ତି ଦେବହରି
ସତୋରି ତାଳ ଗଭିରେ ଅର୍ଜୁନ ଅଛି ପଡ଼ି ॥୮୬୦୧॥
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର
ଅର୍ଜୁନ ପଡିବା କଥା ଜାଣିଲେ ବଜ୍ରଧର ॥୮୬୦୨॥
କାଳି ବେନ୍ତାଳିକି ଦିଲେ ପ୍ରବର୍ତ୍ତି
ଜିନ୍ନ କୁପ ଭିତରେ ବେନ୍ତାଳି ଗଲାପସି ॥୮୬୦୩॥
କାଳି ଯୁଦ୍ଧକଲା ଦୈତ୍ୟଙ୍କ ସଙ୍ଗତର
ବେନ୍ତାଳି ଅର୍ଜୁନକୁ ଦିଲାକ ହରିଠାର ॥୮୬୦୪॥
ସଚେତ ଅର୍ଜୁନକୁ କଲେ ଜଗନ୍ନାଥେଂ
ହରି ଅର୍ଜୁନ ଗମନ୍ତେଂ ଦେଖିଲେ ଦୈଇତ୍ୟେଂ ॥୮୬୦୫॥
ନାରାଜ ବିନ୍ଧନ୍ତେ ଉଡ଼ିଲେ ଗଗନ
ପ୍ରବେସ ହୋଇଲେ ନନ୍ଦିଘୋସ ଜାନ ॥୮୬୦୬॥
କାଳି ବେନ୍ତାଳି ରାକ୍ଷାସ ବଳମାରି
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି ॥୮୬୦୭॥
ଅଷ୍ଟମ ଦ୍ୱାରେ ଅଭିମନୁ ଜୁଝୁଥିଲା
ଅଳମ୍ବୁସକୁ ଜିଣି ନବମଦ୍ୱାରେ ହେଲା ॥୮୬୦୮॥
କୃପବ୍ରହ୍ମା ଦୁସାସନ ଅଛନ୍ତି ତହିଂ ରହିଂ
ପବନାସରେ ଅଭିମନୁ ଦିଲାକ ଓଡ଼ାଇ ॥୮୬୦୯॥

୧ । ଘ ପୋଥି – ନିଶାଚର

ଦସମ ଦ୍ୱାରେ ପ୍ରବେସ ହୋଇଲା ମହାବଳି
ରେ ରେ ପାଣ୍ଡବା ବୋଲି ଲକ୍ଷ୍ମଣକୁମାର ଓଗାଳି ॥୮୬୧୦॥
ଅଛଇ ଦୁର୍ଯୋଧନ ଏକାଦସ ପୁର
ସତାନବେ ଭ୍ରାଥ ଅଛନ୍ତି ସଙ୍ଗତର ॥୮୬୧୧॥
ବାସ୍ତରି ସାଗର ଅଛଇ ସଇନି
ଅଭିମନୁକୁ ଦେଖିଲା ରାଜା କୁରୁମଣିଂ ॥୮୬୧୨॥
ଡାକିଲା ବାଳେକରେ ଅଇଲୁଂ କିପାଇଂ
ଏ କୁରୁ ସାଗରେ ତୋର କିସରେ ବଡ଼ାଇ ॥୮୬୧୩॥
ସୋମବଂଶ କୁଳଦିପ ତୁ ଅଟୁ ସିନା
ତୋହର ନିଧନେ ସୁଖ କାହିଂକି ସିନା ॥୮୬୧୪॥
ଜାଅରେ କୁମର ନଥାଅ ସମର
ପିତାକୁ ପଠିଆଇ ଦିଅରେ ତୋହର ॥୮୬୧୫॥
ଦୁର୍ଯୋଧନ ବଚନେ ବୋଇଲା ଅଭିମନୁ
ବାଇ କି ହୋଇଲୁଂ ଗାନ୍ଧାରିର ତନୁ ॥୮୬୧୬॥
ପ୍ରଥମ ଦ୍ୱାରଠାରୁ ଅଇଲି ଦସମ ଦ୍ୱାର
ଜେତେକ ସନ୍ୟ ସେନା ଅଛଇ ତୋହର ॥୮୬୧୭॥
ସମସ୍ତଙ୍କୁ ନାରାଜେ ଦିଲି ମୁଂ ସୁଆଇ
ଯୋଜନ ଓସାରେ ରକ୍ତନଦିଂ ବହିଂ ॥୮୬୧୮॥
ସମ୍ପ୍ରତେ ନ କଲେ ନୟନେ ଦେଖ ଜାଇ
ଏହିକ୍ଷଣି ତୁମ୍ଭଙ୍କୁ ଦେବି ମୁଂ ଉଡ଼ାଇ ॥୮୬୧୯॥
ପ୍ରତଜ୍ଞା ବହିଅଛି ଯୁଧିଷ୍ଟିଙ୍କଠାର
ତୁମ୍ଭଙ୍କୁ ନାସି ତାଙ୍କୁ ସମର୍ପିବି ରାଜ୍ୟଭାର ॥୮୬୨୦॥
ଏମନ୍ତ ସୁଣି କୋପେଂ ବୋଲଇ ନୃପମଣିଂ
ଦ୍ୱାରେ ଥିଲେ ଯଦ୍ୟରଥ ଦ୍ରୋଣ କର୍ଣ୍ଣ ଅଶ୍ୱସ୍ତମା ପୁଣିଂ ॥୮୬୨୧॥
ସମସ୍ତଙ୍କୁ ନାସି ଅଇଲା ବାଳେକ
ଅଭିମନୁ ସ୍ୟାମଳ ମୋ ସନ୍ୟ ହେଲେ ବକ ॥୮୬୨୨॥
ଅର୍ଜୁନସୁତ ଅଗ୍ନିଂ ମୋ ସନ୍ୟହେଲେ ତୃଣ
ମୋ ସନ୍ୟ ପାରିୟା ଏ ହୋଇଲା ସଞ୍ଚାଣ ॥୮୬୨୩॥
ଧାଅଂରେ ଧୁସାସନ ଅଳମ୍ବୁସ ଅଳାୟଧ
ସଙ୍କୁନି ବିକର୍ଣ୍ଣ ଦୃପାଳ ଦୃବିନ୍ଦ ॥୮୬୨୪॥
ମାର ଅଭିମନୁକୁ ନ କର କେହି ହେଳା
ଦେଖୁଂ ଦେଖୁଂ ମୋହର ବୁଡ଼ାଉଅଛି ଭେଳା ॥୮୬୨୫॥
ନୃପତି ବଚନେ ସନ୍ୟ ପୁଣି ଉଠିଲେ
ଅଭିମନୁ ଉପରକୁ ନାରାଜ ବୃଷ୍ଟିକଲେ ॥୮୬୨୬॥
ଦ୍ରୋଣ ଯଦ୍ୟରଥ କର୍ଣ୍ଣ ସଲ୍ୟ ଅସ୍ୱସ୍ତମା
ଭୁରିସର୍ବା କୃପାଚାର୍ଯ୍ୟ କୃପବ୍ରହ୍ମା ॥୮୬୨୭॥

ସମସ୍ତେ ମୋହ ତେଜି ଧାଇଂଲେ ଥାଟଘେନି
ବେଢ଼ି ଅଭିମନୁକୁ ବିନ୍ଧନ୍ତି ସର ଟାଣିଂ ॥୮୬୨୮॥
ହୋଇଲା ଗୋଳଯୁଦ୍ଧ ଲୋହିଲା ବାରଣ
କୁରୁସାଗର ଏକା ଅର୍ଜୁନ ନନ୍ଦନ ॥୮୬୨୯॥
ଅଭିମନୁ ମହିମା କହିଲେ ନସରଇ
ଏକାକେ ଲକ୍ଷ ଲକ୍ଷ ନାରାଜ ବିନ୍ଧଇ ॥୮୬୩୦॥
ଜେତେ ସର ବିନ୍ଧନ୍ତି କୌରୋବ ସନ୍ୟ
ଏକା ଅଭିମନୁ ବିନ୍ଧଇ ତେତେ ବାଣ ॥୮୬୩୧॥
କୁରୁ ସନ୍ୟ ସିନ୍ଧୁକୁ ଅଭିମନୁ କଣ୍ଡେଆର
କୁରୁନାଥ ତୃଣ ଅଭିମନୁ ଅନଳ ॥୮୬୩୨॥
ପର୍ବତ ସମାନେ ଅଛନ୍ତି କୁରୁସନ୍ୟ
ତହିଂକି ଅଭିମନୁ ହୋଇଲା ବଜ୍ରବାଣ ॥୮୬୩୩॥
ମହିଷା ବଧ କାଳେ ଜେସନେ ଭୈରୋବିଂ
ସେହିରୁପେ ଅଭିମନୁ ନାରାଜ ବିନ୍ଧେ ଗର୍ଜି ॥୮୬୩୪॥
ଏଥୁ ଅନ୍ୟନ୍ତରେ ସୁଣଗୋ ଗିରିଜା
କବନ୍ଧ ଦୈତ୍ୟ ବୋଲି ଉଦେ କନନ୍ଧର ତନୁଜା ॥୮୬୩୫॥
ତାହାର ଭୟେ ଦେବେ ନପାରିଲେ ରହିଂ[1]
କଲା ଉପଦର୍ପ ସ୍ୱର୍ଗପୁରେ ଜାଇ ॥୮୬୩୬॥
ପଚାରନ୍ତେ ଗୁରୁ କହିଲେ ଇନ୍ଦ୍ରଙ୍କୁ
ଅଇଲେ ଅଭିମନୁ ମାରିବ ଅସୁରଙ୍କୁ ॥୮୬୩୭॥
ଶୁଣି ସୁରପତି ବିହନ୍ତା ପୁରୁଷକୁ ରାଇ
ମଞ୍ଚରୁ ଆଦିକି ଘେନି ଆସ ଯାଇ ॥୮୬୩୮॥
ମଘବାନ ଆଜ୍ଞାରେ ବିହନ୍ତା ଗମିଲେ
ଅଭିମନୁ ହସ୍ତେ ବସି ଧନୁ ନିରୋଧିଲେ ॥୮୬୩୯॥
ବିନ୍ଧନ୍ତେ ଅଭିମନୁ ନ ଚଳିଲା ବାଣ
ଚଉକତି ଘେରିଲେ କୌରୋବ ସନ୍ୟ ॥୮୬୪୦॥
ଦେଖି ଅଭିମନୁକୁ ନସ୍ଫୁରଇ କିଛି
ରଥ ଉପରୁ ଡେଇଂ ପଡ଼ିଲା ବାଳବଛି ॥୮୬୪୧॥
ସାରଥି ଛାଡ଼ିଲା ରଥ ହିଂ ଛାଡ଼ିଲା
ନବନିସି[2] ଖଣ୍ଡା ଜେ ହସ୍ତରେ ଧଇଲା ॥୮୬୪୨॥
ବୋଲାଇ ଅଭିମନୁ କରଇ ପ୍ରହାର
ଅନେକ ରଥି ପାଦାନ୍ତିଙ୍କର କାଟି ପକାଇଲା ସିର ॥୮୬୪୩॥
ଦେଖିଣ ଦୁର୍ଯୋଧନ କୋପିତ ହୋଅଇ
ଦେଖୁଂ ଦେଖୁଂ ସନ୍ୟ ମୋର ସକଳ ନାସଇ ॥୮୬୪୪॥

୧ । ଘ ପୋଥି – ଗଲେକ ପଳାଇ
୨ । ଘ ପୋଥି – ନବ ନିମିସ

ଏତେ ବୋଲି ଆଜ୍ଞାଦିଲା କୁରୁସାଇଂ
ନିରାପକ୍ଷ ସରିର ଯେ ବହିଲାକ ସେହି ॥୮୬୪୫॥
ଅଳମ୍ବୁସ ଅଳାୟଧ କଲେକ ପ୍ରହାର
ଦୁସାସନ ଗଦା ପିଟିଲା ଉପର ॥୮୬୪୬॥
ଅଭିମନୁ ପିଣ୍ଡ ମସିଗୁଣ୍ଡା ହୋଇଲା
ପ୍ରାଣକୁ ଘେନିଣ ବିହନ୍ତା ଗମିଲା ॥୮୬୪୭॥
ପୁଷ୍ପଂ ବିମାନେ ବସି ଗଲାକ ଯେ ଆଦି
ଅମରେ ଗୌରୋବ କଲେକ ବିବୁଧାଦି ॥୮୬୪୮॥
ବୋଇଲେ ସୁରପତି ରାକ୍ଷସ ଅମର ଧ୍ୱଂସିଲା
ସମ୍ଭାଳ ସ୍ୱର୍ଗପୁର ଦୈତ୍ୟକୁ ମାର ଭଲା ॥୮୬୪୯॥
ଆଦି ବୋଇଲା ସାରଥି ମୋର ନାହିଂ
କେତନ ଅଇଲେ ମୋର ମୁଂ ଦାନବ ସଂହାରଇ ॥୮୬୫୦॥
ଇନ୍ଦ୍ର ବୋଇଲେ ବାବୁ ମାତଳି ବାହୁ ରଥ
ସୁଣିଣ ଆନନ୍ଦ ଦୁର୍ଗାୟଣି ସୁତ ॥୮୬୫୧॥
ବସିଣ ରହୁବରେ ଦୈତ୍ୟ ସଙ୍ଗେରଣ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୮୬୫୨॥
ଜହୁଂ ଅଭିମନୁ ପଡ଼ିଲା ସମରେ
ରଣ ଜଏ କରିଣ କୌରୋବ ବାହୁଡ଼ିଲେ ॥୮୬୫୩॥
ଧବଳ ରହୁବର ଘେନିଣ କେତନ
ପ୍ରବେସ ହୋଇଲେ ବାରୁଣା ଭୁବନ ॥୮୬୫୪॥
ତୁଛା ରଥ ଦେଖି ପଚାରନ୍ତି ଧର୍ମନାନ
ତୁହି ତ ଅଇଲୁଂ କେଣେ ଗଲାରେ ଅଭିମନ ॥୮୬୫୫॥
କେତନ ବୋଇଲା ସେ ଦସଦ୍ୱାର ଭେଦି
ଅନେକ ଥାଟ ନାସି ଆପଣେ ପରାଭବି ॥୮୬୫୬॥
ସୁଣିଣ ମୃଛାଗତେ ପଡ଼ିଲେ ଯୁଧିଷ୍ଟି
କାହିଂ ଲୁଚାଇଲୁଂରେ ପ୍ରସନ ବଦନ ଗୋଟି ॥୮୬୫୭॥
ମୁହିଂ କହୁଥିଲିଂ ବାରି ଗଲୁଂରେ ବଳିୟାଇ
ବାହୁଡ଼ି ନ ଆସିଲୁଂ ଦିଲୁଂରେ ପ୍ରାଣ ତୁହିଂ ॥୮୬୫୮॥
ସୋମବଂସ କୁଳଦିପ ହୋଇଣରେ ଥିଲୁଂ
ମୋତି ଝଟକ[1] ଦେଇ ଅନ୍ଧାର କରିଗଲୁଂ ॥୮୬୫୯॥
ଏମନ୍ତେ ଯୁଧିଷ୍ଟି କରନ୍ତି ରୋଦନ
ନକୁଳ ସହଦେବ ଭିମ ବିରାଟ ନନ୍ଦନ ॥୮୬୬୦॥
ସନ୍ୟ ସେନା ସହିତେ ରୋଦନ ଫୁକାରିଲେ
ଅନ୍ତସ୍ୱରେ ଉତରା ସୋଭଦ୍ରା ସୋକକଲେ ॥୮୬୬୧॥
ପୁତ୍ର ପୁତ୍ର ବୋଲି ସୁଭଦ୍ରା କାନ୍ଦଇଂ
ଅପୁତ୍ରିକ କଷ୍ଟମୋତେ ଦିଲୁଂରେ ତନଇ ॥୮୬୬୨।

୧ । ଘ ପୋଥି – ଜୋତିର ଟିକା

ପୋର୍ଣ୍ଣମି ସସି ପ୍ରାଏ ମୋ କୁଳରେ ବଢ଼ିଲୁଂ
ସସି ରୁପ ଲୋଚାଇ ଅନ୍ଧାର କରିଗଲୁଂ ॥୮୬୬୩॥
ଉତରାବାଳି ରୋଦନ କିସ କହିବଇଂ
ଝଡ଼ଇ ବୃକ୍ଷେ ପତ୍ର ପାସାଣ ତରଳଇ ॥୮୬୬୪॥
ହୃଦରେ ବେନିଭୁଜ ତାଡ଼ି କାନ୍ଦେଂ ବାଳିଂ
ହାହା ପ୍ରାଣନାଥ କେଣିକି ଗଲୁଂ ଛାଡ଼ି ॥୮୬୬୫॥
କେତେକ ହାସ୍ୟ ପରିହାସ୍ୟ କହୁ ତୁହିଂ
ଭୁମିରେ ନ ସୁଆଇ ହୃଦରେ ସୁଆଇ ॥୮୬୬୬॥
ଏ ଜୁବାକାଳେ ନାଥକଲୁଂ ତୁ ବିଧବା
ତୋହର ବିହୁନେ ନାଥ ହୋଇଲିଂ ଅସୋଭା ॥୮୬୬୭॥
ଗଜଦନ୍ତ ପଲଙ୍କ ହଂସୁଲି ସୟନ
ଏହାଛାଡ଼ି ପିଣ୍ଡ ଲୋଟିଲା ସମସାନ ॥୮୬୬୮॥
ଅଳପ ଦିନକୁ ବହୁତ ଗୁଣ କଲୁଂ
ବାଉନି କାନ୍ଦିବାକୁ ସଖାଳି ଦେଇଗଲୁଂ ॥୮୬୬୯॥
ଏମନ୍ତେ ରୋଦନ କରଇ ରାଜାବାଳି
ସୁଣଗୋ ଓମା ବୋଲି ବୋଲନ୍ତି ଦେବସୁଲି ॥୮୬୭୦॥
ଅର୍ଜୁନ ଦଇତ୍ୟ ସଙ୍ଗତେ କରଇ ସମର
ଉଡ଼ନ୍ତି ପଲ ପଲ ଗଗନେ ଗୁଧ୍ରପଲ ॥୮୬୭୧॥
ଅର୍ଜୁନ ମୁଖଚାହିଂ ବୋଲନ୍ତି ଭଗବାନ
ମାର ଦାନେବ ବଳ ଗମିବା ଭୁବନ ॥୮୬୭୨॥
ଅଭିମନ୍ୟୁ ସଙ୍ଖଧ୍ୱନି ଜହୁଂ ନ ସୁଭିଲା
ବିଚାରିଲେ ଏବେ ଅର୍ଜୁନ ପୁତ୍ର ମଲା ॥୮୬୭୩॥
ଚକ୍ରକୁ ଆଜ୍ଞାଦିଲେ ଦତ୍ୟ ସନ୍ୟ ଛେଦିପକା
କେତେ ଏ ସନ୍ୟକୁ ମାରିବ ପାଥ ଏକା ॥୮୬୭୪॥
ଆଜ୍ଞା ପ୍ରମାଣେ ଚକ୍ର ପକାଇଲା ହାଣିଂ
ନିପାତ ହୋଇଲେ ଦାନେବ ସଇନି ॥୮୬୭୫॥
ଅର୍ଜୁନ ବୋଇଲା ହରି ଗାଣ୍ଡିମଧନୁ ଭାରି
ଆତ୍ମା ବୈକୁଲ୍ୟ ହେଉଅଛି ମୋହରି ॥୮୬୭୬॥
କି ଅବା ବାରୁଣାରେ ଆପଦ ପଡ଼ିଅଛି
ଉଡ଼ନ୍ତି ପଲପଲ ଗଗନେ ଗୁଧ୍ର ପକ୍ଷି ॥୮୬୭୭॥
ଗୋବିନ୍ଦ ପ୍ରତିବାଚ କେତେ କଲୁଂ ରଣ
ତେଣୁ କରି ସ୍ୱରିର ତୋର ହେଲା ଖିନ୍ନ ॥୮୬୭୮॥
ତେଣୁ ଆତ୍ମା ବିକଳ ଗାଣ୍ଡିମ ହେଲା ଭାରି
ମୃତୁ ପିଣ୍ଡ ଭକ୍ଷିତେ ଗୁଧ୍ର ପଲ ଉଡ଼ି ॥୮୬୭୯॥
ଅର୍ଜୁନ ବୋଇଲା ହରି ବାହା ରହୁବର
କେତେବେଳେ ଦେଖିବିଂ ନନ୍ଦନ ସହୋଦର ॥୮୬୮୦॥

ସୁଣିଣ ଜଗବନ୍ଧୁ ନନ୍ଦିଘୋଷ ବାହିଂ
ଭାରତ ଭୁମିରେ ପ୍ରବେସ ହେଲେ ଜାଇ ॥୮୬୮୧॥
ପଡ଼ିଛନ୍ତି ମଡ଼ା ବହଇ ରକ୍ତନଦି
ତିଳ ପଡ଼ିବାକୁ ନାହିଂ ପୃଥିସନ୍ଧି ॥୮୬୮୨॥
ଅର୍ଜୁନ ବୋଇଲା ଏତ ଅପୁର୍ବ ଭଗବାନ
ଜେତେ ସନ୍ୟ ମରିଥିଲେ ରଣେ ଦସଦିନ ॥୮୬୮୩॥
ଆଜ ତ ତେତେ ସନ୍ୟ ପାଦାନ୍ତି ପଡ଼ିଛନ୍ତି
ଚଉସଠି ମଭୁତ ବାରକ୍ଷେଉଣି ସତର ସାଗର ଅଠାସି କୋଟି ॥୮୬୮୪॥
ଚୌରାସି ଲକ୍ଷ ଆଠ ସହସ୍ର ଚଉଦ ଜଣ ପଡ଼ିଲେ ଆଜି ରଣ
ଏହା କେ ମାଇଲା କହହେ ଭଗବାନ ॥୮୬୮୫॥
ନିର୍ଦ୍ଦୟା ପୁରୁଷ ଭିମସେନ ଅଟନ୍ତି
ଅନ୍ୟରେ ନୋହେ ଏହୁଂ ନାସିଲେ ମାରୁତି ॥୮୬୮୬॥
ଅତି ନିଷ୍ଟୁର ଅଟନ୍ତି ସେ ରଣରଙ୍କା
କୌରୋବ ସନ୍ୟମାରି ଗମିଲେନି ଏକା ॥୮୬୮୭॥
କି ଅବା ବିପରିତ କଥାଏ ଅଛଇ
ସୁନ୍ୟ ଦିସୁଅଛି ମତେ ଦସଦିଗ ମହିଂ ॥୮୬୮୮॥
ଅର୍ଜୁନ ଇଦଂବାକ୍ୟେ ବୋଲନ୍ତି ଭଗବାନ
କେ ଆନ କରିବ ବାବୁ ଦଇବ ଲେଖନ ॥୮୬୮୯॥
ବାହିଲେ ରହୁବର ବାରୁଣାରେ ହୋଇ
ସିନ୍ଧୁଘୋସ ପ୍ରାଏ ରୋଦନ ସୁଭୁଛଇ ॥୮୬୯୦॥
ଅର୍ଜୁନ ବୋଇଲା କିପାଇଂ କରୁଛ ରୋଦନ
ସମସ୍ତେ ଅଛ ମୋର ନାହିଂ ତ ନନ୍ଦନ ॥୮୬୯୧॥
ଭାରତ ସମରକୁ କେହୁ ଜାଇଥିଲା
ଯୁଧିଷ୍ଟି ବୋଇଲେ ରେ ଅଭିମନ୍ୟୁ ଗଲା ॥୮୬୯୨॥
ତାହାର ପଛକତି ଗଲୁଂ ଭାଇ ଚାରି
ଜଦ୍ୟରଥକୁ ଦେଖି ଅଇଲୁଂ ବାହୁଡ଼ି ॥୮୬୯୩॥
ଏକାକେ ନନ୍ଦନ ଭେଦିଲେ ଦସଦ୍ୱାର
ଗୋଳଯୁଦ୍ଧ କରି ତାକୁ ନାସିଲେ ଚାଣ୍ଡାଳ ॥୮୬୯୪॥
ଆଉ ଅଭିମନ୍ୟୁକୁ ଖୋଜିଲେ ନପାଇ
ସୁଣିଣ ମୃଛାଗତ ହୋଇଲା ଧନୁର୍ଜଇ ॥୮୬୯୫॥
ଘଡ଼ିଏ ପର୍ଯ୍ୟନ୍ତ ହୋଇଲା ମୋହମାନ
ସଚେତ କରି କୋଳେକ କଲେ ଭଗବାନ ॥୮୬୯୬॥
ଛାଡ଼ ଛାଡ଼ ଗୋବିନ୍ଦ ମୁଂ ପ୍ରାଣ ହାରିବଇଂ
ଚଉଦ ବରସର କୁମର ମରିଅଛଇଂ[୧] ॥୮୬୯୭॥
ଦେଖଇ ଚାରିଭ୍ରାଥେଂ ସମରକୁ ଡରି
ଗୃହରେଂ ରହିଲେ ଏକା ନନ୍ଦନ ଗଲା ଚଳି ॥୮୬୯୮॥

୧ । ଘ ପୋଥି – ଅଟଇ ମୋର ପୋଇ

ଖାଇବା ଖେଳିବା ଜାହାର ବୟସ
ଯୁଦ୍ଧକୁ ପେସି ତାକୁ କରାଇଲେ ନାସ ॥୮୬୯୯॥
ଆହୋ ହରି ମୋତେ ହିଂସା ଆଚରିଲେ
ଏମାନଙ୍କ ସିର ନାରାଜେ କାଟିବିଂ ମୁହିଂ ଭଲେ ॥୮୭୦୦॥
ମୁହିଂ ନାସ ଜିବି ଜାଳିଣ ହୁତାସନ
ଏକାଙ୍ଗ ଚକ୍ରବ୍ରତି ହେଉ ଦୁର୍ଯୋଧନ ॥୮୭୦୧॥
ଅର୍ଜୁନ କୋପ ଦେଖି ବୋଲନ୍ତି ଭଗବାନ ତହିଂ
ବୈରାଗ ହୋଇଲେ ବାବୁ କାର୍ଯ୍ୟରେ ନ ପାଇ ॥୮୭୦୨॥
ଜେବେ ତୋ ପୁତ୍ରକୁ ନାସିଲେ କୌରୋବେ
ପୁତ୍ରର ବୈରିକି ମାର ଜାଇ ଏବେ ॥୮୭୦୩॥
ତୁହି ନାସଗଲେ ତାଙ୍କର କିସ ହେବ
ରାଜ୍ୟକୁ ଇଛାଥିଲେ ମାରରେ କୌରୋବ ॥୮୭୦୪॥
ଦେଖ ଏ ଲକ୍ଷେକ ନୃପତି ଆସିଛନ୍ତି
ଭ୍ରାତ ପୁତ୍ର ବନ୍ଧୁ ଘେନିଣ ମରୁଛନ୍ତି ॥୮୭୦୫॥
ନିର୍ଦ୍ଦୋସି ଜନରେ ତୁମ୍ଭର ପାଇଂ ମଲେ
ସେ କିମ୍ପା ମଲା ଜନକୁ ନ କାନ୍ଦିଲେ ॥୮୭୦୬॥
ଜନ୍ମ ହୋଇଲେ ତ ଅବସ୍ୟ ମରଇ
ଜହିଂରୁ ଆସିଥାଇ ତହିଂକି ସେ ଜାଇ ॥୮୭୦୭॥
ମଲାବୋଲି ସୋକ କରନ୍ତି ମିଛପ୍ରାଣି
ଦଇବ ରଞ୍ଜନା ସୁଣରେ ଫାଲଗୁନି ॥୮୭୦୮॥
ତୁହି କାହାର ପୁତ୍ର ତୋହର କେହୁ ସୁତ
କେହି କାହାର ନୋହଇ ପଥୁକି ସଙ୍ଗତ ॥୮୭୦୯॥
ବୃକ୍ଷରେ ରାତ୍ରକାଳେ ବସନ୍ତି ସର୍ବପକ୍ଷି
ଜେ ଜାହାରେ ଗମନ୍ତି ପାହିଗଲେ ରାତି ॥୮୭୧୦॥
ପଥବୃକ୍ଷ ପ୍ରାଏ ଯେ ପାପ ମନ୍ଦିର
ପୁତ୍ର ମରିବାକୁ ଏବେ ସୋଚନା ନକର ॥୮୭୧୧॥
ଗୋବିନ୍ଦ ବଚନେ ବୋଧ ପାଇଲା ଧନୁର୍ଜଇ
ସୋଭଦ୍ରା ଉତରାକୁ ପ୍ରବୋଧି ଭାବଗ୍ରାହିଂ ॥୮୭୧୨॥
ମାୟାଧର ପୁରୁଷ ସମସ୍ତଙ୍କୁ କରି ସ୍ୟାନ୍ତି
ଗୋବିନ୍ଦ ମୁଖ ଚାହିଂ ବୋଲଇ ସର୍ବସାଚି ॥୮୭୧୩॥
କାହିଂ ଗଲା ଅଭିମନ୍ୟୁକୁ ଦେଖିବି ନୟନ
ସାଜ ନନ୍ଦିଘୋଷ ଜିବା ହୋ ବହନ ॥୮୭୧୪॥
ସାଜିଲେ ରହୁବର ଗମିଲେ ବେନିଜନ
ପ୍ରବେସ ହେଲେ ଜାଇ ଅମର ଭୁବନ ॥୮୭୧୫॥
କବନ୍ଧ ସଙ୍ଗତେ ଅଭିମନ୍ୟୁ କରେ ରଣ
ଆସରେ କୁମର ବୋଲି ଡାକଇ ଅର୍ଜୁନ ॥୮୭୧୬॥

ଘୋର ସମରେ ଅଭିମନ୍ୟୁ ନ ସୁଣଇଂ
ମୃଛି ନପାରି ପାଥ କୋଳ କଲା ଜାଇ ॥୮୭୧୭॥
ଛାଡ଼ ଛାଡ଼ ବୋଲି ଅଭିମନ୍ୟୁ ଛିଟିକିଲା
ଧରିବିଂ ବୋଲି ଅର୍ଜୁନ ଧରି ନ ପାରିଲା ॥୮୭୧୮॥
ବଦୟନ୍ତି ଭଗବାନ ଆସରେ ଧନୁର୍ଜଇ
ତୁହି ପୁତ୍ର ବୋଲୁଛୁ ସେହିତ ଚିହ୍ନୁନାହିଂ ॥୮୭୧୯॥
ଅର୍ଜୁନ ବୋଇଲା ହରି ଏ ତୋହର ମାୟା
ବିସ୍ମୟେ ହୋଇ ରଥେଂ ବସିଲା ସୋଭଦ୍ରାର ନାହା ॥୮୭୨୦॥
ପ୍ରବେସ ହୋଇଲେ ବାରୁଣା ଭୁବନ
ଗୋବିନ୍ଦେ ବୋଇଲେ ପାଥ କର ଜା ସ୍ନାହାନ ॥୮୭୨୧॥
ଜେ କିଛି ଉଚିତେ କରରେ ଆହାର
କାଲିର ଯୁଦ୍ଧେ ନାସ ସୁରଥ କୁମର ॥୮୭୨୨॥
ଅର୍ଜୁନ ବୋଇଲେ ହରି ସ୍ନାହାନ ନ କରିବିଂ ॥୮୭୨୩॥
କାଲି ଜଦି ଜଦ୍ୟରଥକୁ ନ ମାରଇଂ
ତୋହର ପଦ୍ମପାଦେଂ କେବଳ ହାରଇଂ ॥୮୭୨୪॥
ଗୋହତ୍ୟା ସ୍ତ୍ରୀହତ୍ୟା ବ୍ରହ୍ମହତ୍ୟା ସୁରାପାନ
ବିଶ୍ୱାସଘାତକ ପିତୃଦ୍ରୋହି ଗୋମାଂସ ଭୋଜନ ॥୮୭୨୫॥
ଅଶ୍ୱସ୍ତ ଛେଦନ ଜେ ତୁଳସୀ ବୃକ୍ଷ ଉପାଡ଼ି
ଭାଜନ୍ତି ଦେବାଳୟ ହରନ୍ତି ପରନାରି ॥୮୭୨୬॥
ସଂକ୍ରାନ୍ତି ଏକାଦସି ଅମାବାସ୍ୟା ଜେ ଦିନ
ଏଥିରେ ଜେ ସ୍ତିରିକି କରନ୍ତି ରମଣ ॥୮୭୨୭॥
ପଶ୍ଚିମେ ସିରେଂ ଥୋଇ ଦକ୍ଷିଣ ମୁଖେ ଭୁଜିଂ
ସମରେ ପିଠି ଦେଇଣ ଜେ ଉପ୍ରୋଧିଂ[1] ॥୮୭୨୮॥
ଏକା ସୁର୍ଯେଂ ଜେଉ ଜନ ଦୁଇବେଳେ ଅର୍ଣ୍ଣ ଭୁଜଂଇ
ସଭାରେ ମିଛ କହି ପରକୁ ଗୋଡ଼ାଇ ॥୮୭୨୯॥
ଧନ ନେଇଣ ଜେ ବିକଇ ଦୁଲାଣି
ସୁଝି ନପାରି ଜେହୁ ହୋଇ ପରରଣିଂ ॥୮୭୩୦॥
ଏମାନଙ୍କର ଜେତେ ପାତେକ ହୋଅଇ
କାଲି ଯଦ୍ୟରଥକୁ ନ ମାଇଲେ ସେ ପାପକୁ ମୁହିଂ ବହିଂ ॥୮୭୩୧॥
ଅର୍ଜୁନ ବଚନେ ବୋଲନ୍ତି ଭଗବାନ
ଏଡ଼େ ଦୃଭାର କିପାଇଂ କଲୁରେ ନିୟମ ॥୮୭୩୨॥
ମାରି ନ ପାରିବୁ ସୁରଥ ନନ୍ଦନ
ନ ମାରିଲେ ଅଗ୍ନିରେ ପସିବି ବୋଇଲା ଅର୍ଜୁନ ॥୮୭୩୩॥
ସ୍ୟାନ୍ତି କରି ହରି ଦ୍ୱାରିକାକୁ ଗଲେ
ଅଭିମନ୍ୟୁ ମୃତୁ କଥା ସେଠାରେ କହିଲେ ॥୮୭୩୪॥
ସୁଣିଣ ଦ୍ୱାରିକା ଲୋକେ କଲେ ହାହାକାର
ସୁଣଗୋ ଓମା ବୋଲି ବୋଲନ୍ତି ସଂକର ॥୮୭୩୫॥

[1] । ଘ ପୋଥି - ଗମଇ ଯେଉଂ ଯୋଧି

## ଦ୍ରୋଣଙ୍କ ପଦ୍ମବିହ୍ଵ ରଚନ

ସେଦିନ ପାଣ୍ଡବେ ଆହାର ନକଲେ
ରଜନି ମଧ୍ୟରେ ସମସ୍ତେଂ ନିଦ୍ରାଗଲେ ॥୮୭୩୬॥
ରଜନି ପାହାନ୍ତେ ସର୍ବେ ନିଦ୍ରାରୁ ଉଠିଲେଂ
ଡଗର କହିଲା ମାନଗୋବିନ୍ଦ ଆଗରେ ॥୮୭୩୭॥
ଅଭିମନ୍ୟୁ ମରନ୍ତେ ପାଣ୍ଡବ ସୋକ କଲେ
ଯଦ୍ୟରଥ ମାଇଲା ବୋଲି ପାଥକୁ କହିଲେ ॥୮୭୩୮॥
ସୁଣିଣ ସର୍ବସାଚି କଲାକ ନିୟମ
ଯଦ୍ୟରଥକୁ ନ ମାଇଲେ ପସିବି ହୁତାସନ ॥୮୭୩୯॥
ଦୁର୍ଯୋଧନ ବୋଇଲା ଜେବେ ନିୟମ କଲା ପାଥ
ଅନ୍ୟଗ୍ରାମେ ଲୁଚିରହୁ ଯଦ୍ୟରଥ ॥୮୭୪୦॥
ଆଜକ ରହିଣ ଆସିବ କାଲିଦିନ
ଯଦ୍ୟରଥକୁ ନଦେଖି ମରିବ ଅର୍ଜୁନ ॥୮୭୪୧॥
ସମସ୍ତେ ହେଉ ହେଉ ବୋଇଲେ ତାହା ସୁଣିଂ
ସୁଣିଣ ଦ୍ରୋଣଗୁରୁ ଉଠିଲେ ସିରଝୁଣିଂ ॥୮୭୪୨॥
କୋଟିଏ ପାଣ୍ଡେବ ବେନି କୋଟି ହରି ଅର୍ଜୁନ
ତେବେ ମାରି ନପାରିବେ ସୁରଥ ନନ୍ଦନ ॥୮୭୪୩॥
ଏମନ୍ତ କହି ଦ୍ରୋଣେ ସ୍ନାହାନ ସାରିଲେ
ନିତ୍ୟ କର୍ମ ସାରିଣ ମକୁଟ ବାନ୍ଧିଲେ ॥୮୭୪୪॥
ତାଡ଼ ତୋଡ଼ର ବାହୁଟି ଅଙ୍ଗରେ ଖଞିଂଲେ
ଧନୁସର ଘେନିଣ ରଥରେ ବସିଲେ ॥୮୭୪୫॥
ଗଜ ତୁରଙ୍ଗମ ବାହନ ରହୁବର
ରଥି ରାଉତେ ବସି ହୋଇଲେ ବାହାର ॥୮୭୪୬॥
ଭାରତ ଭୁମିରେ ପ୍ରବେସ ହୋଇଲେ
ପଦ୍ମ ଭୁଅ କାଟି କେସର ଭିୟାଇଲେ ॥୮୭୪୭॥
କେସର ଭୁଅ ମଧେ ସୁଚି ଭୁଅ ରଞ୍ଚି
ସୁଚି ପସା ଭିତରେ ଯଦ୍ୟରଥ ଲୁଚି ॥୮୭୪୮॥
ପସା ବେନି ପାଖେଂ ମାରିଦିଲେ ବାଟ
ଏମନ୍ତ ରହିଲେ ସେ ସୁରଥର ଚାଟ ॥୮୭୪୯॥
ପ୍ରଥମ ଦ୍ଵାରେ ରହିଲେ ଦୃସାସନ
ଦୁତିୟ ଦ୍ଵାରେ ରହିଲେ ଆପଣେ ଗୁରୁ ଦ୍ରୋଣ ॥୮୭୫୦॥
ତୃତିଏ ରହିଲେ କର୍ଣ୍ଣ ମହାରଥି
ଚତୁର୍ଥି ଦ୍ଵାରେ ସାକଲ୍ୟ ସନ୍ତତି ॥୮୭୫୧॥
ପଞ୍ଚମେ ଅଶ୍ଵସ୍ତମା ସଷ୍ଟମେ କୃପ ରହି
ସପ୍ତମେ ଭୁରିସର୍ବା କୃପବ୍ରହ୍ମା ଅଷ୍ଟମେ ଦ୍ଵାରି ହୋଇ ॥୮୭୫୨॥
ନବମେ ଅଳାୟଧ ଅଳମ୍ବୁସ ରହି
ଦସମେ ଲକ୍ଷ୍ମଣ କୁମାର ଜଗଇ ॥୮୭୫୩॥
ତଦନ୍ତେ ଦୁର୍ଯୋଧନ ଭ୍ରାଥମାନ ଘେନି
ବହୁତ ସନ୍ୟ ସେନା ଆବର ସଇନିଂ ॥୮୭୫୪॥
ଏମନ୍ତ ପ୍ରକାରେ ସେ ରଖିଲେ ଯଦ୍ୟରଥ
ଯୁଧିଷ୍ଟିଙ୍କ ଅଗ୍ରତେ ଜଣାଇଲେ ଦୁତ ॥୮୭୫୫॥
ଅର୍ଜୁନ ନିୟମ ସୁଣି ବିସାଦ କୌରୋବେ
ପ୍ରତିଜ୍ଞା କରି ଦ୍ରୋଣେ ପଦ୍ମଭୁଅ କାଟିଲେ ॥୮୭୫୬॥
କେଶର ଭୁଅ କରି ସୁଚିଭୁଅ ରଞ୍ଚି
ତହିଂରେ ରଖିଲେ ସୁରଥର ବଛି ॥୮୭୫୭॥
କୁରୁସାଗର ଥାଟ ରହିଲେ ଆବୋରି
ବହୁତ ସନ୍ୟ ସେନା ରହିଲେ ଦୁଆରି ॥୮୭୫୮॥
ସୁଣିଣ ବିସାଦ ପାଇଲେ ଧର୍ମନାନ
ଯଦ୍ୟରଥକୁ ନିକି ମାରି ନପାରେ ଅର୍ଜୁନ ॥୮୭୫୯॥
ନ ମଲେ ଯଦ୍ୟରଥ ଅର୍ଜୁନ ନ ବର୍ତିବ
ଏକଥାକୁ ବୁଦ୍ଧି କହ ହେ ବାସୁଦେବ ॥୮୭୬୦॥
ଗୋବିନ୍ଦ ପ୍ରତିବାଚ ନଭାଳ ରାଜନ
ଜେମନ୍ତେ ହୋଇବେ କୋଟିଏ ଗୁରୁଦ୍ରୋଣ ॥୮୭୬୧॥
ଦୁର୍ଯୋଧନ ସହିତେ ଜେତେକ ସନ୍ୟ
ରଖି ନପାରିବେ ସୁରଥ ନନ୍ଦନ ॥୮୭୬୨॥
ଅର୍ଜୁନ ବୋଇଲେ ହରି ସାଜ ମୋ ବିମାନ
ମୁହିଂ ଏକା ଜିବି ନ ଜାନ୍ତୁ କେହି ସନ୍ୟ ॥୮୭୬୩॥
ସୁଣିଲେ ଜଗବନ୍ଧୁ ସାଜିଲେ ନନ୍ଦିଘୋଷ
ଧ୍ଵଜେଂ କପିକେତନ ମଣ୍ଡିଲେଂ[୨] ଚାରି ଅଶ୍ଵ ॥୮୭୬୪॥
ସୁଭବେଳ ଜାଣି ବସିଲେ ଧନୁର୍ଜଇ
ଦଧିବାମନ ରୁପ ମୁଖରେ ସୁମରଇ ॥୮୭୬୫॥
ଅପୁର୍ବ ଅବତାର ବାସେବନନ୍ଦନ
ଜାହାକୁ ସାହା ହୋଇ ଅଛନ୍ତି ଭଗବାନ ॥୮୭୬୬॥
ଆପଣେ ଜଗନ୍ନାଥ ଅଳଙ୍କାର ମଣ୍ଡି
ଦିସଇ ସର୍ବସାଚି ସ୍ଵର୍ଗରେ ଜମ୍ଭୁଭେଦି ॥୮୭୬୭॥
କାଳ ଅନଳ ଜୋତି ତେଜ ଅନର୍ଗଳା
ଦ୍ଵାପରେ ଭାରୋଇମଲ ସେ ବୋହିଛି ବିଷ୍ଣୁକଳା ॥୮୭୬୮॥
ପଞ୍ଚଦସ କଳା ଅଟଇ ଦସନାମ
ବତିସ ଲକ୍ଷଣ ହୋଇଛି ପରିପୁର୍ଣ୍ଣ ॥୮୭୬୯॥
ଜେଣୁ ପରିପୁର୍ଣ୍ଣ ସେ ସର୍ବଗୁଣେଂ ହୋଇ
ତେଣୁ ସାହା ତାକୁ ହୋଇଲେ ଭାବଗ୍ରାହି ॥୮୭୭୦॥

---

୧ । ଘ ପୋଥି – ସଙ୍କୁନି
୨ । ଖ ପୋଥି – ଯୋଚିଲେ

ଜେ ସେ ଭଗବାନ ସେହି ସେ ଧନୁର୍ଜଇ
ଜେ ସେ ଧନୁର୍ଜଇ ଦୁତିୟ କୃଷ୍ଣ ସେହିଂ ॥୮୭୭୧॥
ଜେଣୁ ଦୁତିକୃଷ୍ଣ ନାମ ସେ ପାଇଲା
ତେଣୁ ନନ୍ଦିଘୋଷ ରଥରେ ବସିଲା ॥୮୭୭୨॥
ନନ୍ଦିଘୋଷ ରଥେଂ ସାରଥି ଭଗବାନ[୧]
ତେଣୁ କୌରୋବକୁ ନିପାତିବେ ଅର୍ଜୁନ[୨] ॥୮୭୭୩॥
ଜେଣୁ ସେ କୁରୁବଳ ନାସଜିବେ
ତେଣୁ ପଞ୍ଚୁକଟକ ଯୁଧିଷ୍ଟି ପାଇବେ ॥୮୭୭୪॥
ଜେଣୁ ସେ ଯୁଧିଷ୍ଟି ହୋଇବେ ନୃପମଣିଂ
ତେଣୁ ଜଗତେ ସୁଭିବ ପାଣ୍ଡେବ ଧନ୍ୟ ଧନି ॥୮୭୭୫॥
ତେଣୁ କରି ଅର୍ଜୁନ ମହିମା ଅପାର
ଜାହାର ସଙ୍ଗେ ସାହା ବ୍ରହ୍ମାଣ୍ଡ ଠାକୁର ॥୮୭୭୬॥
ସେ ହରି ଅର୍ଜୁନ ପାଦକୁ କରି ଆସ
ଧ୍ୟାୟେ କରିଅଛି ସୁଦ୍ରମୁନି ସାରୋଳା ଚଣ୍ଡି ଦାସ ॥୮୭୭୭॥

## ଜୟଦ୍ରଥ ବଧ

ଶୁଣ ହେ ବିଶ୍ୱନାଥ ବୋଲି ବୋଲନ୍ତି ଗିରିଜା
ଅର୍ଜୁନ ହସ୍ତେ ଯଦ୍ୟରଥ ମଲା କି ନମଲା ॥୮୭୭୮॥
ପ୍ରଥମେ ଗୁରୁଦ୍ରୋଣ ଭୁଏକ କାଟିଲେ
ମଲା ଅଭିମନୁ ପାଣ୍ଡେବ ଦୁଖ ପାଇଲେ ॥୮୭୭୯॥
ଦୁତିଏ ପଦ୍ମ ଭୁଅ ସୁଚି ଭୁଅ ରଞ୍ଚିଂ
ତଥିର ମଧ୍ୟରେ ଯଦ୍ୟରଥ ଲୁଚି ॥୮୭୮୦॥
ଲକ୍ଷ ଲକ୍ଷ ରଥି ଅଛନ୍ତି ଦୁଆରି
କେସନେ ଦସଦ୍ୱାର ଭେଦିଲା ବାସେବି ॥୮୭୮୧॥
ଜେମନ୍ତେ ଯଦ୍ୟରଥ ନ ମରେ ଏ ଦିନ
ତେବେ ଅଗ୍ନି ଜାଳି ମରିବ ଅର୍ଜୁନ ॥୮୭୮୨॥
କସଣ ଉପରେ ପାଣ୍ଡବଙ୍କୁ ଦୁଖ ହୋଇ
ତହିଂ କିସ ଉପାଏ କଲେ ଭାବଗ୍ରାହିଂ ॥୮୭୮୩॥
ଏକଥା ମୋର ଆଗେଂ କହହେ ବିଶ୍ୱନାଥ
ସୁଣଗୋ ଓମା ବୋଲି ବୋଲନ୍ତି ମହେସ ॥୮୭୮୪॥
ଭାରତ ହରିବଂସ ଏ ସୁଣିଲେ ପାପନାସିଂ[୩]
ବୈବସ୍ୱତ ଆଗେଂ ଜାହା କହିଲେ ଅଗସ୍ତି ॥୮୭୮୫॥
ଦ୍ୱାରିକା ନିଳା ଏହୁ ଗୋବିନ୍ଦ ଭିଆଇ
ଦେଖଇ ହଟକୁଟ କନ୍ଦଳ ଲଗାଇ ॥୮୭୮୬॥

୧ । ଖ ପୋଥି – ଜଗନ୍ନାଥ
୨ । ଖ ପୋଥି – ନିପାତିବ ପାଥ
୩ । ଖ ପୋଥି – ପାପଧ୍ୱଂସି

ଇଚ୍ଛାୟେଂ ଭଗବାନ ବରଣ ହୋଇଛଇ
ଏକର ହସ୍ତେଂ ଆରେକକୁ ମରାଇ ॥୮୭୮୭॥
କୁରୁ ପାଣ୍ଡେବଙ୍କୁ ଲଗାଇଲେ ମାୟା
ସୋଦରେ ଅନ୍ୟୋଅନ୍ୟ ନ ବହିଲେ ଦୟା ॥୮୭୮୮॥
ସେ ମାୟାଧର ମାୟା ପାଞ୍ଚିଅଛି ଲାଗି[୧]
ତହିଂ ସର୍ବଜନ ହୋଇଛନ୍ତି ବାଗି[୨] ॥୮୭୮୯॥
ଏ ହରିବଂସ ଜେ ଶ୍ରଦ୍ଧାରେ ସୁଣିବ
ତାହାକୁ ବିଷ୍ଣୁ ମାୟା ଫାସ ନ ଲାଗିବ ॥୮୭୯୦॥
ସେ ମାୟାଧର ହରି ଶ୍ରୀପଦ୍ମ ଚରଣେଂ
ସୁଦ୍ରମୁନି ସାରୋଳା ଦାସ ପସିଲା ସରଣେଂ ॥୮୭୯୧॥
ଏଥୁ ଅନ୍ୟନ୍ତରେ ସୁଣଗୋ ଭବାନି
ସମରକୁ ଗମିଲେ କୃଷ୍ଣ ଫାଲଗୁନି ॥୮୭୯୨॥
ପ୍ରଥମ ଭୁଅ ଦ୍ୱାରେ ହୋଇଲେ ପ୍ରବେସ
ସେ ଦ୍ୱାରେଂ ରହିଅଛି ଗାନ୍ଧାରିର ସିସ ॥୮୭୯୩॥
ରେ ରେ ପାଣ୍ଡବା ବୋଲି ଉଗାଳିଲା ଦ୍ୱାର
କୋପେଂ ପାର୍ଥ ବିନ୍ଧିଲା ହାବଡ଼ା ତିନି ସର ॥୮୭୯୪॥
ପାଞ୍ଚ କୋଟି ଯୁଦ୍ଧା ଘେନି ଉଡ଼ିଲା ଧୁସାସନ
ଦୁତିଏ ଭେଟିଲା ପାଥ ଜାଇ ଗୁରୁଦ୍ରୋଣ ॥୮୭୯୫॥
ଗୁରୁଙ୍କୁ ଦେଖି ପାଥ କଲା ନମସ୍କାର
କଲ୍ୟାଣ କଲେ ଭରଦ୍ୱାଜଙ୍କ କୁମର ॥୮୭୯୬॥
ଦ୍ରୋଣେ ବୋଇଲେ ପାଥ କାଲିଂ କାହୁଂ ଗଲୁଂ
କୁମରକୁ  ମରାଇ ଜିବନ ରଖିଲୁଂ ॥୮୭୯୭॥
କାଲି ଜିଇଥିଲୁ ଆଜ ବ୍ରତିବୁରେ ନାହିଂ
ଭିସ୍ମପ୍ରାଏ ମୋତେ ନ ମଣରେ ତୁହିଂ ॥୮୭୯୮॥
ଅର୍ଜୁନ ବୋଇଲା ଗୁରୁ ତବ ପରସାଦେଂ
ଭିସ୍ମଙ୍କୁ ଜିଣିଲି ଦସଦିନର ଯୁଦ୍ଧେ ॥୮୭୯୯॥
କାଲି ଜାଳାନ୍ଧର ଭୁଅକୁ ଗଲୁ ଆମ୍ଭେଂ
ଅଇଲା ଅଭିମନୁ ଦୟା ନ କଲ ହେ ତୁମ୍ଭେଂ ॥୮୮୦୦॥
ଗୋଳ ଯୁଦ୍ଧକରି ମୋ ପୁତକୁ କଲ ହତ
ଆଜ ତୁମ୍ଭଙ୍କୁ କରିବିଂ ମୋ ପୁତ୍ର ସଙ୍ଗତ ॥୮୮୦୧॥
କହୁଛି ତୁମ୍ଭଙ୍କୁ ମୁଂ ଛାଡ଼ି ଜାଅ ଦ୍ୱାର
ନ ଗଲେ ଦୋଷ ନାହିଂ କାଟିବି ତୁମ୍ଭ ସିର ॥୮୮୦୨॥
ଅର୍ଜୁନ ବଚନେ କୋପିତ ଦ୍ରୋଣ ହେଲେ
ପାଞ୍ଚ ଲକ୍ଷ ବାଣ ଏକାବେଳେକେ ବିନ୍ଧିଲେ ॥୮୮୦୩॥

୧ । ଖ ପୋଥି – ସେ ମାୟାଧର ମାୟା ଫାଶ ଅଛି ଫାନ୍ଦି
୨ । ଘ ପୋଥି – ବାଦି
୨ । ଖ ପୋଥି – ବାନ୍ଧି

ଅର୍ଜ୍ଜୁନ ଧନୁ ଧରି ନାରାଜ ବିନ୍ଧିଲା
ପାଞ୍ଚଲକ୍ଷ ବାଣ ପାଥ ପାଞ୍ଚ ବାଣେ ଉଡ଼ାଇଲା ॥୮୦୪॥
ପୁଣି ଦସ କୋଟି ବିନ୍ଧିଲେ ଦ୍ରୋଣେ ଟାଣିଂ
ଉଲୁକାପାତ ପୃଥ୍ୱି ଅର୍ଜ୍ଜୁନ ତାହା ହାଣିଂ ॥୮୦୫॥
ସାତ ଅହିବ୍ରତ ବାଣ ଦ୍ରୋଣେ ବିନ୍ଧି
ସତାସି ବାଣେ ତାହା ଛେଦିଲା ବାସେବିଂ ॥୮୦୬॥
ଗୋବିନ୍ଦ ବୋଇଲେ ହେଳା ନକରରେ ବାବୁ
କେତେବେଳେଂ ଦସ ଦ୍ୱାର ତୁ ଭେଦିବୁ ॥୮୦୭॥
ପୁଣି ପାଥ ବିନ୍ଧିଲା ସାତ କୋଟି ବାଣ
ସାତ ଲକ୍ଷ ସହିତେ ପଡ଼ିଲେ ଗୁରୁଦ୍ରୋଣ ॥୮୦୮॥
ସଙ୍ଖ ସବଦ ଦେଇ ଗମିଲା ଫାଲଗୁନି
ତୃତିୟ ଦ୍ୱାରେ ମିଳନ୍ତେ କର୍ଣ୍ଣକୁ ଭେଟେ ପୁଣିଂ ॥୮୦୯॥
ପାଥକୁ ଦେଖି କର୍ଣ୍ଣ ବିନ୍ଧିଲା ତିକ୍ଷ ବାଣ
ପ୍ରତିସର କରି ତାହା ଛେଦିଲା ଅର୍ଜ୍ଜୁନ ॥୮୧୦॥
ଜେତେକ ସର କର୍ଣ୍ଣ ବିନ୍ଧିଲାକ ପୁଣିଂ
ପ୍ରତିସର କରି ତାହା ଛେଦିଲା ଫାଲଗୁନି ॥୮୧୧॥
ଅହିବ୍ରତେ ନାରାଜ କର୍ଣ୍ଣ ଦିଲା ଛାଡ଼ି
ଆଷାଢ଼ ମାସରେ ଜେହ୍ନେ ମେଘ ଘଡ଼ଘଡ଼ି[1] ॥୮୧୨॥
ଶ୍ରୀହରି ବୋଇଲେ ସମ୍ଭାଳ ଅର୍ଜ୍ଜୁନ
ଭାରୋଇମଲ କର୍ଣ୍ଣ ଏ ନୋହଇ ସମାନ ॥୮୧୩॥
କୋପେଂ ପ୍ରଜ୍ୱଳିତ ବାସେବ ତନଇ
କର୍ଣ୍ଣ ବାଣ ଛେଦି ମନଭେଦିକି ବିନ୍ଧଇ ॥୮୧୪॥
ଭେଦିଲା ରୋମେ ରୋମେ ଭାରୋଇମଲ ପଡ଼ି
ପାଞ୍ଚଲକ୍ଷ ଯୋଦ୍ଧାକୁ କାଣ୍ଡେ କାଣ୍ଡେ ମାରି ॥୮୧୫॥
ବହଇ ରକ୍ତନଦି ଜେସନେ ଯମୁନା
ପଡ଼ିଲେ କୁଡ଼ କୁଡ଼ ହୋଇଣ ସନ୍ୟ ସେନା ॥୮୧୬॥
ପୁତ୍ରର ବିହୁନେ ଅର୍ଜ୍ଜୁନ ହୋଇ କ୍ରୋଧ
କୋଟି କୋଟି ସନ୍ୟ ନାରାଜେ କରେ ବଧ ॥୮୧୭॥
ତିନି ଦ୍ୱାର ଭେଦି ପାଥ ତିନି ସଙ୍ଖ କଲା
ଚତୁର୍ଥ ଦ୍ୱାର ମିଳନ୍ତେ ସଲ୍ୟ ଉଗାଳିଲା[2] ॥୮୧୮॥
ପାଞ୍ଚ ସାଗର ସନ୍ୟ ଘେନି ଉଗାଳିଲେ ସଲ୍ୟ
ଅର୍ଜ୍ଜୁନ ବିନ୍ଧିଲା ବାଉନ ଲକ୍ଷ ସର ॥୮୧୯॥
ଜଳିଲା ହୁତାସନ ସମସ୍ତେ ମଲେ ପଡ଼ି
ପଡ଼ିଲା ସଲ୍ୟ ବୁଡ଼ା ଯୋଜନକେ ଉଡ଼ି ॥୮୨୦॥
ଚତୁର୍ଥ ଦ୍ୱାର ଜିଣି ପାଥ ମିଳିଲା ପଞ୍ଚମ
ଦସକୋଟି ଯୋଦ୍ଧା ମୁଳେ ଦ୍ରୋଣରନନ୍ଦନ ॥୮୨୧॥

୧ । ଘ ପୋଥି – ଦ୍ରୋଣ ମେଘ ରଡ଼ି
୨ । ଘ ପୋଥି – ହାବୁଡ଼ିଲା

ସିନ୍ଧୁ ଲହରି କି ଜେହ୍ନେ ବୋଇତ ସମ୍ଭାଳଇ
ସେ ରୁପେ ନନ୍ଦିଘୋଷକୁ ଅଶ୍ୱସ୍ତମା ହୋଇ ॥୮୨୨॥
ଅର୍ଜ୍ଜୁନ ଡାକଦିଲା ଦ୍ୱାର ଛାଡ଼ ଭାଇ
ଭିତରେ ପଶି ଯଦ୍ୟରଥକୁ ମୁଂ ମାରଇ ॥୮୨୩॥
ଏତେ ବୋଲି ପାଥ ବିନ୍ଧିଲା ଲକ୍ଷେ ବାଣ
ପ୍ରତିସରେ ବିନ୍ଧିଲା ଦ୍ରୋଣଙ୍କ ନନ୍ଦନ ॥୮୨୪॥
ଛେଦି ଅସ୍ୱସ୍ତମା ସୁଳେକ ପ୍ରହାରିଲେ
ବଜ୍ର ସକତିରେ ଅର୍ଜ୍ଜୁନ ନିବାରିଲେ ॥୮୨୫॥
ବାର ମଭୁତ ବାଣ ବିନ୍ଧିଲେ ଅଶ୍ୱସ୍ତମା
ସ୍ୱର୍ଗ ମର୍ତ୍ତ ପାତାଳେ ଲାଗିଲେ ଦ୍ରୋଛନା ॥୮୨୬॥
ଶ୍ରୀହରି ଡାକଦିଲେ ସମ୍ଭାଳ ଧନୁର୍ଜ୍ଜଇ
କୋବେରା ବାଣେ ପାଥ ସମସ୍ତ ଛେଦଇ ॥୮୨୭॥
ପୁଣି ଅଶ୍ୱସ୍ତମା ବିନ୍ଧିଲା ଲକ୍ଷେ ବାଣ
ଚାରି ଅଶ୍ୱକୁ ବିନ୍ଧିଲା ଚାରିବାଣ ଜାଣ[1] ॥୮୨୮॥
କପିକେତନକୁ ବିନ୍ଧିଲା ଷାଠିଏ
କଳସ ଉପରକୁ ବିନ୍ଧଇ କୋଡ଼ିଏ ॥୮୨୯॥
ସାରଥିକି ସତର ଅଷ୍ଟକୋଳାକୁ ଏକୋଇଶ
ସ୍ତମ୍ଭକୁ ମଭୁତ ସ୍ତମ୍ଭକିଳାକୁ ପଞ୍ଚାସ ॥୮୩୦॥
ଚାରିଚକକୁ ଚାରିସତ ଅଖକୁ ସହସ୍ରେଂ
ଧନୁକୁ ପନ୍ଦର ତ୍ରୋଣେକୁ ଏକଲକ୍ଷେଂ ॥୮୩୧॥
ନେତକୁ କୋଡ଼ିଏ ପତକାକୁ ବାର
ଏମନ୍ତ ଅଶ୍ୱସ୍ତମା ହାକିଣ ବିନ୍ଧେ ସର ॥୮୩୨॥
ସମ୍ଭାଳ ପାଥ ବୋଲି ଡାକନ୍ତି ବନମାଳି
ଏଗାନ୍ତି ରଥ ନିକି ହୋଅଇ ମସି ଧୁଳି ॥୮୩୩॥
ସୁଣିଣ ସର୍ବସାଚି ବିନ୍ଧିଲେ ପାଞ୍ଚକୋଟି
ଅଶ୍ୱସ୍ତମା ସର ସବୁ ପକାଇଲେ କାଟି ॥୮୩୪॥
ବାବଲା ସର ପାଥ ବିନ୍ଧିଲାକ ଟାଣିଂ
ବାଜି ଅସକତ ହୋଇଲା ସୁତ ଦ୍ରୋଣିଂ ॥୮୩୫॥
ଲତା ଭୁଅ ଭେଦି ପାଥ ଭେଦିଲା ଭୁଅ ପୁଷ୍ପ
କେସର ଭୁଏ ପାଥ ହୋଇଲା ପ୍ରବେସ ॥୮୩୬॥
ସଷ୍ଟମ ଭୁଅକୁ କେସର ଭୁଅ ବୋଲି
କୃପ ଆଚାର୍ଯେ ତହିଂ ହୋଇଛି ଜଗୁଆଳି ॥୮୩୭॥
ବିଚକ୍ଷଣ ବ୍ରାହ୍ମଣ ସେ ଦ୍ରୋଣଙ୍କର ସଳା
ବସ୍ତରଷି[2] ପୁତ୍ର ଅଶ୍ୱସ୍ତମାଙ୍କ ମଉଳା ॥୮୩୮॥

୧ । ଘ ପୋଥି – ବିନ୍ଧିଲା ଡାକି ହାକି କପି ଯେ କେତନ
୨ । ଘ ପୋଥି – ମଚ୍ଛ ରଷି

ତେଣୁ ବଡ଼ ଆଣ୍ଟ ସେ ରଥି ଅଟଇ
ଦ୍ୱାର ଛାଡ଼ ବୋଲି ଡାକଇ ଧନୁର୍ଜଇ ॥୮୮୩୯॥
କୃପ ଆଚାର୍ଯ୍ୟେ ବୋଇଲେ ପାଥ ହୋଇଲୁକି ବାଇ
କାଲି ପୁତ୍ର ମଲା ମରିବୁ ଆଜ ତୁହିଂ ॥୮୮୪୦॥
ଏତେ ବୋଲି କୃପେଂ ବିନ୍ଧିଲେ କୃପାଣ
ସକତି ମାରି ପାଥ କଲାକ ଛେଦନ ॥୮୮୪୧॥
ପୁତ୍ର ନିଧନେ ଅର୍ଜୁନ କୋପ ବହି
ଜଳବୃଷ୍ଟି ଜାଣିଣ ନାରାଜ ବରସଇ ॥୮୮୪୨॥
ପବନ ଲାଗି ଜେହ୍ନେ ଝଡ଼ଇ ଚୁତଫଳ
ସେହିରୁପେଂ ପାଥ ବାଣେଂ ଲୋଟଇ ସନ୍ୟବଳ ॥୮୮୪୩॥
ପବନା ସର ଜେ ବିନ୍ଧିଲା ଧନୁର୍ଜଇ
କୃପ ଆଚାର୍ଯ୍ୟକୁ ଦ୍ୱାରୁ ଦିଲାକ ଉଡ଼ାଇ ॥୮୮୪୪॥
ସଙ୍ଖଧ୍ୱନି ଦେଇ ହରି ରଥ ଦିଲେ ବାହିଂ
ସପ୍ତମ ଦ୍ୱାରେ ଭୁରିସର୍ବା ଉଗାଳଇ ॥୮୮୪୫॥
ଆଣ୍ଟେ କୁଳବୃଦ୍ଧା ଅଛନ୍ତି ସନ୍ୟଘେନି
ଆଡ଼େ ହୁଅ ବୋଲି ଡାକିଲେ ଫାଲଗୁନି ॥୮୮୪୬॥
ଭୁରିସର୍ବା ବୋଇଲେ ରେ କାହାକୁ ଡାକୁ ପାଥ
ତୁହି କୁପଜଳ ମୁହିଂ ଅଟଇ ସିନ୍ଧୁସାତ ॥୮୮୪୭॥
ତୁହି ଗିରିବର ମୁହିଂ ସିନା ମେରୁ
ତୁହି ଦୁବ ବୃକ୍ଷ ମୁହିଂ କଳ୍ପତରୁ ॥୮୮୪୮॥
ମୁହିଂ ସେ ଗୁଜଂର ତୁହି ସେ ପିମ୍ପୁଡ଼ି
ନିଶ୍ୱାସ ପବନେ ରଥି ସାରଥି ଜିବେ ଉଡ଼ି ॥୮୮୪୯॥
ଅର୍ଜୁନ ବୋଇଲା ତୁ ତ ସମସ୍ତ କହିଲୁଂ
ଆପଣା ମରିବା କଥା ତଥ୍ୟ ନ ପାଇଲୁଂ ॥୮୮୫୦॥
ତୁହି ସିନ୍ଧୁଜଳ ମୁହିଂ ଅଗସ୍ତି ମହାମୁନି
ତୁହି ମେରୁ ହୋଇଲେ ମୁହିଂ ସେ ପବନ ପୁଣି ॥୮୮୫୧॥
ତୁହି ସିନା ହସ୍ତି ମୁହିଂ ଅଟେ ସିଙ୍ଘ
ଏହିକ୍ଷଣିଂ ତୋହର ଛେଦିବଇଂ କନ୍ଧ ॥୮୮୫୨॥
ସୁଣିଣ ଭୁରିସର୍ବା କୋପେ ଅନ୍ତରାଳ
ବିନ୍ଧିଲାକ ହାକି କ୍ରୋତିକା ଅନଳ ॥୮୮୫୩॥
ଜଳିଲା ହୁତାସନ ସତେ ସାଖା ହୋଇ
ତ୍ରାସେ ଦେବତାଏ ଆକାସରୁ ପଳାଇ ॥୮୮୫୪॥
ଲତାବୃକ୍ଷ ଗିରିକନ୍ଦ ଜଳିଗଲେ
ତାତିଲା ସିନ୍ଧୁଜଳ ଜଳଜିବେ ଭାସିଲେ ॥୮୮୫୫॥
ଧାଇଂଛି ଅନଳ ଧ୍ୱସିଂବ ନନ୍ଦିଘୋଷ
ଡାକନ୍ତି ଭଗବାନ ସମ୍ଭାଳ ବିରପାଥ ॥୮୮୫୬॥

ସୁଣି ସର୍ବସାଚି ବାରୁଣା ସର କଲା
ଉଲଟ ହୋଇ ଅଗ୍ନିଂ ପ୍ରଖର ଜଳିଲା ॥୮୮୫୭॥
ଦହିଜ ହୋଇଲେ କୌରୋବ ସନ୍ୟ
ଟହ ଟହ ହୋଇ ହସିଲେ ଭଗବାନ ॥୮୮୫୮॥
ଧନ୍ୟ ସେ ଭୁରିସର୍ବା ବିନ୍ଧିଥିଲା ସର
ଆପଣାର ସନ୍ୟ ହୋଇଲେ ଅଙ୍ଗାର ॥୮୮୫୯॥
ଅଗ୍ନିଂ ନିବାରିତେ ବିଚାରଇ ଭୁରି
ଏଣେ ଅର୍ଜୁନ ବିନ୍ଧିଲା ସର ଚାରି ॥୮୮୬୦॥
ଚାରି ଅସ୍ୱ ସହିତେ ଛେଦିଲା ଭୁରି ରଥ
ପଡ଼ିଣ ଭୁରିସର୍ବା ହୋଇଲେ ମୋହଗତ ॥୮୮୬୧॥
ସଙ୍ଖଧ୍ୱନି ଦେଇ ହରି ବାହିଲେ ବିମାନ
ଅର୍ଜୁନ ଛେଦଇ କୌରୋବ ସନ୍ୟ ॥୮୮୬୨॥
ଭୁରିସର୍ବା ଅନଳେ ଥୋକାଏ ଗଲେ ପୋଡ଼ି
ଅଷ୍ଟମ ଦ୍ୱାରେ ହରି ଅର୍ଜୁନ ହାବୋଡ଼ି ॥୮୮୬୩॥
ସେ ଦ୍ୱାରେ କୃପବ୍ରହ୍ମା ମାଳେବ ନୃପବର
ବସିଅଛି କୃପବ୍ରହ୍ମା ହସ୍ତିର ଉପର ॥୮୮୬୪॥
ଜେବଣ ହସ୍ତି ଘଣ୍ଟ ପ୍ରଥମ ଯୁଦ୍ଧେ ଛିଡ଼ି
ଦ୍ୱାଦସ ଯୋଜନ ଘଣ୍ଟ ରହିଅଛି ମାଡ଼ି ॥୮୮୬୫॥
ସେ କୃପବ୍ରହ୍ମା ସଙ୍ଗେ ଅର୍ଜୁନ କରେ ରଣ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୮୮୬୬॥
ଯୁଧିଷ୍ଟି ଚିନ୍ତା କଲେ ବାରୁଣାରେ ଥାଇ
ନିକି ଅର୍ଜୁନକୁ ମୋର ବିପତି ପଡ଼ଇ ॥୮୮୬୭॥
ଆଜ୍ଞା ଦିଲେ ସାତ୍ୱିକି ଗମିଲା ବସି ରଥେଂ
ପ୍ରଥମେ ଭେଟିଲା ଜାଇ ଗାନ୍ଧାରିର ସୁତେ ॥୮୮୬୮॥
ରେ ରେ କାର କରିଣ ଓଗାଳେ ଦୁସାସନ
ଗଦାଏ ପ୍ରହାରିଲା ନନ୍ଦର ନନ୍ଦନ ॥୮୮୬୯॥
ରଥ ଭାଜିଂଗଲା ପାଦଗତି ଦୁସାସନ
ସାତ୍ୱିକି ବିଘାତେ ହୋଇଲା ମୋହମାନ ॥୮୮୭୦॥
ପ୍ରବେସ ସାତ୍ୱିକି ଦୁତିଅ ଦ୍ୱାରର
ଦ୍ରୋଣେ ଡାକଦେଲେ ରହରେ ଗୋପାଳ ॥୮୮୭୧॥
ସାତ୍ୱିକି ବୋଇଲା ଏବେ ଦ୍ୱାର ଛାଡ଼ ଦ୍ରୋଣ
ମୋହର ଅଗ୍ରତେ ନୋହିବୁ ରହମାନ ॥୮୮୭୨॥
ଏତେ ବୋଲି ମାଧବି ବିନ୍ଧିଲା ଅଗ୍ନିସର
ଦ୍ରୋଣ ରଥେଂ ପଡ଼ିଲା ରଥ ହୋଇଲା ଅଙ୍ଗାର ॥୮୮୭୩॥
ପାଦଗତେ ଦ୍ରୋଣ ସାତ୍ୱିକି ବାଳଧରି
ଫିଙ୍ଗିଦେଲା ସାତ୍ୱିକିକି ଯୋଜନେକେ ପଡ଼ି ॥୮୮୭୪॥

ତୃତିଏ ଭେଟିଲା ଭାରୋଇମଲ କର୍ଣ୍ଣ
ତାହାକୁ ଆଡ଼େକରି ଗମିଲା ନନ୍ଦନ ॥୮୭୫॥
ଏ ରୁପେ ସାତ୍ୱିକି ଦ୍ୱାରକୁ ଦ୍ୱାର ଜିଣି
ସପ୍ତମ ଦ୍ୱାରେଂ ଉଗାଳିଲା ଭୁରିସର୍ବା ପୁଣି ॥୮୭୬॥
କୋପେଣଂ ସାତ୍ୱିକି ବିନ୍ଧିଲା ସର ଚାରି
ରଥ ଭାଜିଂଗଲା ପାଦଗତି ହେଲା ଭୁରି ॥୮୭୭॥
ଡେଇଂଣ ବସିଲା  ସାତ୍ୱିକି ରହୁବର
ଧଇଲା କୋପେଂ ଯସୋଦାସୁତ ବାଳଂ ॥୮୭୮॥
ହାଣିବ ବୋଲି  ଗଳା ଧରିଛି ଭୁରିସର୍ବା
ଅର୍ଜୁନ ରଖ ବୋଲି ଡାକେକଂ[1] ଡାକିଲା ॥୮୭୯॥
ଅଷ୍ଟମ ଦ୍ୱାରେ ରହିଥିଲା ଫାଲଗୁନି
ବିନ୍ଧିଲାକ ନାରାଜ ସାତ୍ୱିକି ଡାକସୁଣି ॥୮୮୦॥
ଭୁରିସର୍ବା ବେନିଭୁଜ ଅର୍ଜୁନ ବାଣେଂ ଛିଡ଼ି
ତାହାର ଖଡ଼ଗେ ମାଧବି ତାହାକୁ ପ୍ରହାରି ॥୮୮୧॥
ବେନିଖଣ୍ଡ ହୋଇଣ ପଡ଼ିଲା କୁଳବୃନ୍ଧା
ଅନେକ ସନ୍ୟ ନାସି ସାତ୍ୱିକି ଗମିଲା ॥୮୮୨॥
ଅର୍ଜୁନଠାରେ ମିଳି କହିଲା ଆଦିଅନ୍ତ
ସୁଣିଣ ହରସ ବାସେବର ସୁତ ॥୮୮୩॥
ଗୋବିନ୍ଦ ପ୍ରସଂସିଲେ ସାତ୍ୱିକି ଧନ୍ୟ ଧନ୍ୟ
ତେଡ଼େବଡ଼ ରଥିକି କଲୁରେ ନିଧନ ॥୮୮୪॥
କୃପବ୍ରହ୍ମାଙ୍କୁ ଜେ ଜିଣିଲା ବିରପାଥ
ଦେବଦତ୍ତ ସଙ୍ଖ ଜେ ସ୍ମରିଲେ ବାସେବର ସୁତ ॥୮୮୫॥
ପଞ୍ଚଜନ ସଙ୍ଖ ସବଦ କଲେକ ଅଚ୍ୟୁତ
ସୁଣଗୋ ପ୍ରିୟା ବୋଲି ବୋଲନ୍ତି ବିସ୍ୱନାଥ ॥୮୮୬॥
ସଙ୍ଖ ସବଦ ଜହୁ ଯୁଧିଷ୍ଟି ସୁଣିଲେ
ଅପାଦ ପଡ଼ିଲା ବୋଲି ଭିମକୁ ପେସିଲେ ॥୮୮୭॥
ଗମିଲା ମାରୁତି କାଳେବର ଗଦା ଘେନି
ଦ୍ୱାରକୁ ଦ୍ୱାର ଜିଣି ପିଟିଲା ସଇନି ॥୮୮୮॥
ନିର୍ଦ୍ଦୟା ପୁରୁଷ ସେ ଅଟଇ ରଣଚକ୍ରା
ଜାହାକୁ ଦୁରୁ ଦେଖି ଶତୃ କରେ ସଙ୍କା ॥୮୮୯॥
ଧାଇଂଲା ବିକୋଦର ସନ୍ୟ ଜେ ମନ୍ଥିଣ
ଅର୍ଜୁନଠାରେ ପ୍ରବେସ ହୋଇଲା ପଞ୍ଚାଣ ॥୮୯୦॥
ନବମ ଦ୍ୱାରେ ହରି ଅର୍ଜୁନଙ୍କୁ ଭେଟି
ଆଦିଅନ୍ତ କଥା ପୁଛିଲା କିରଟି ॥୮୯୧॥
ଭିମ ବୋଇଲା ମୋତେ ପେସିଲେ ରାଜନ
ମନ୍ଥିବାକୁ କୁରୁସାଗର ହୋଇଣ ତିନିଜଣ ॥୮୯୨॥

୧ । ଘ ପୋଥି – ସାତ୍ୱିକି

ଗୋବିନ୍ଦ ଆଜ୍ଞାଦିଲେ ସନ୍ୟ ଜାଅ ଛେଦି
କେତେବେଳେ ପାରିବ ହୋ ଦସ ଦ୍ୱାର ଭେଦି ॥୮୯୩॥
ଭଗବାନ ବଚନେ ବିକୋଦର ଗର୍ଜି
ଗଦାରେ ପିଟି ସନ୍ୟ ଲୋଟାଇ ରଣ ମଝି ॥୮୯୪॥
ସାତ୍ୱିକି ମହିମା କି କହିବିଂ ମୁଖର
ସମୁଦ୍ର ମନ୍ଥନ କାଳେ ଜେସନେ ମନ୍ଦର ॥୮୯୫॥
ପୁତ୍ରର ନିଧନେ କୋପିତ ଧନୁର୍ଧର
ଚକ୍ଷୁପିଞ୍ଚା ପ୍ରମାଣେ ବିନ୍ଧଇ ଲକ୍ଷେସର ॥୮୯୬॥
ବହିଲା ରକ୍ତନଦି ଟେକିଲା ଉଜାଣିଂ
କୁଢ଼ କୁଢ଼ ହୋଇ ପଡ଼ିଲେ ସଇନି ॥୮୯୭॥
ଧନ୍ୟ ସେ କୌରୋବେ ଧନ୍ୟ ତାଙ୍କର ବଳ
ଜେତେକ ନାସ ଜାନ୍ତି ତେତେକ ହୋନ୍ତି ଠୁଳ ॥୮୯୮॥
ଚଉଦ ଘଡ଼ି ଜେ ଆଦିତ୍ୟ ହୋଇଲା
ସୁଚି ଭୁଅ ଅର୍ଜୁନ ଭେଦି ନ ପାରିଲା ॥୮୯୯॥
ଗୋବିନ୍ଦ ଆଜ୍ଞା ଦିଲେ ଜାଅରେ ସୁଦର୍ଶନ
ଥାଅ ଅନ୍ତରିକ୍ଷେଂ ଉହାଡ଼ି ନିରଜଂନ ॥୯୦୦॥
ଜେତେବେଳେ ଅର୍ଜୁନ ଜାଳିବ ହୁତାସନ
ଦେଖିତେ ବାହାରିବ ସୁରଥ ନନ୍ଦନ ॥୯୦୧॥
ତେତେବେଳେ ଆଡ଼େ ହେବୁ ମାର୍ତ୍ତଣ୍ଡ ଦିସିବ
ମରିବ ଯଦ୍ୟରଥ ଜିଣିବ ପାର୍ଥିବ ॥୯୦୨॥
ଆଜ୍ଞା ପାଇ ଚକ୍ର ସୁର୍ଯ୍ୟକୁ ଉହାଡ଼ଇ
ଚକ୍ରକୁଟ ମାୟା ନଜାଣନ୍ତି କେହି ॥୯୦୩॥
ସମର କରନ୍ତେ ପାଥ ଅସ୍ତ ହେଲା ଦିନ
ରହ ରହ ବୋଲିଣ ସେ ଡାକିଲା ଦୁର୍ଯୋଧନ ॥୯୦୪॥
ଅସ୍ତ ପ୍ରମାଣେ ସିନା କରୁଥିଲୁଂ ନିୟମ
ଏବେ ତ ସନ୍ଧ୍ୟା ହେଲା ପସ ତୁ ହୁତାସନ ॥୯୦୫॥
କ୍ଷତ୍ରି ହୋଇଣ ନିସତ ହୁଅ ବାବୁ
ନିସତ ହୋଇଲେ ନର୍କ କୁଣ୍ଡରେ ପଡ଼ିବୁ ॥୯୦୬॥
ସୁଣିଣ ଧନୁସର ପକାଇଲା ପାଥ
ଭିମକୁ ବୋଇଲା ଅଗ୍ନିଂ ଜାଳିବିଂ ବହିଆଣ କାଠ ॥୯୦୭॥
ବିକୋଦର ବୋଇଲା ସେ ନିୟମ ନୋହିଲା
ରାତ୍ର ପାହିବା ଜାଏ ସମର କରିବା ॥୯୦୮॥
ଉଦୟେ ପ୍ରମାଣେ ଜେବେ ନ ମରିବ ଯଦ୍ୟରଥ
ତେବେ ଅଗ୍ନି ଜାଳି ମରିବୁରେ ପାଥ ॥୯୦୯॥
ଅର୍ଜୁନ ବୋଇଲା ଏକଥା ନୋହଇ
ଡାକିଲା ଦୁର୍ଯୋଧନ ଆରେ ଭିମା ହୋଇଲୁ ବାଇ ॥୯୧୦॥

କାଷ୍ଟ ଆଣିବାକୁ ଜେବେ ନିସତ ହୋଇଲୁ
ଜାଅରେ ଦୁସାସନ ବହି ଆଣ ସବୁ ॥୮୯୧୧॥
ଅର୍ଜୁନ ପରା ମୋର ମରୁଅଛି ଭାଇ
ଥୋକାଏ କୁଣ୍ଡ ଖୋଳ ଥୋକାଏ କାଷ୍ଟ ଆଣ ଜାଇ ॥୮୯୧୨॥
ଦୁର୍ଯୋଧନ ଆଜ୍ଞାରେ ଧାଇଂଲେ ତାର ଭ୍ରାଥ
କାଷ୍ଟ ଗଦା କରିଂ ଅଗ୍ନିଂ ଲଗାଇ ତୁରିତ ॥୮୯୧୩॥
ଧାଇଂଲେ ନକୁଳ ସହଦେବ ଯୁଧିଷ୍ଟି
ଗୋବିନ୍ଦ ମୁଖ ଚାହିଂ ପଡ଼ିଲେ ମହିଲୋଟି ॥୮୯୧୪॥
ଛେଦନ ତରୁ ପ୍ରାଏ ଯୁଧିଷ୍ଟି ପଡ଼ିଲେ
ଅର୍ଜୁନ ନ ମରୁଣୁଂ ଯୁଧିଷ୍ଟି ଆଗେ ପୁଣ ମଲେ ॥୮୯୧୫॥
ଶ୍ରୀହରି କୋଳକରି ପୁଣଂ ଧଇଲେ ଯୁଧିଷ୍ଟିକିଂ
ବସନରେ ବିଞ୍ଚି ମୁଖରେ ଜଳସିଞ୍ଚି ॥୮୯୧୬॥
ସଚେତ ହୋଇ ଯୁଧିଷ୍ଟି କରନ୍ତି ରୋଦନ
ଅର୍ଜୁନ ମଲେ ମୁହିଂ ହାରିବିଂ ଜିବନ ॥୮୯୧୭॥
ହରି ତୁହି ଜେ କହୁଥାଉ ମୋର ଅଙ୍ଗ ଫାଲଗୁନି
ମୁହିଂ ଅଗ୍ରେ ମଲେ ସେ ମରିବ ପଛେପୁଣି ॥୮୯୧୮॥
ଏବେ ତ ସମସ୍ତକୁ ଜାଉଛି ପାଥ ଛାଡ଼ି
ଯୁଧିଷ୍ଟି ବଚନେ ବୋଇଲେ ଦେବହରି ॥୮୯୧୯॥
ଆମ୍ଭର ବଚନ ଏବେ ହୋଇଲା ଅନ୍ୟସ୍ତା
ଜାହା ସେ କପୋଳେଂ ଲେଖିଛି ବିଧାତା ॥୮୯୨୦॥
ପରର ପାଇଂ ଏବେ ମରୁଅଛି ପର
ଏହା କପୋଳରେ କେହ୍ନେ ଲେଖିଲା ବେଦବର ॥୮୯୨୧॥
କଥା ଏକ ମୋର ସଙ୍କୁନ୍ୟ ଅଛଇ
ଅର୍ଜୁନର ମୃତୁ ଲକ୍ଷଣ ଦିସୁନାହି ॥୮୯୨୨॥
ପୋର୍ଣ୍ଣମି ସସି ପ୍ରାଏ ଦିସୁଛି ବଦନ
ଶତୃକୁ ନାସି ନିକି ବ୍ରତଇ ଅର୍ଜୁନ ॥୮୯୨୩॥
ଏଥୁ ଅନ୍ୟନ୍ତରେ ସୁଣଗୋ ଗଉରି
କାଷ୍ଟ ରୁଣ୍ଡ କରି କୌରୋବେ ଅଗ୍ନି ଜାଳି ॥୮୯୨୪॥
ବହୁତ ଆନନ୍ଦିତ ହୋଇଲା ଦୁର୍ଯୋଧନ
ନଦିରେ ସ୍ନାହାନ କରି ଅଇଲା ଅର୍ଜୁନ ॥୮୯୨୫॥
ଡାକଇ ଦୁସାସନ ଜାଅରେ ଭିମସେନ
ଅଗ୍ନିକି ଇଚ୍ଛାଥିଲେ କରଜା ସ୍ନାହାନ ॥୮୯୨୬॥
ଏକଇ ଗର୍ଭରୁ ଜନ୍ମିଛ ଭାଇ ବେନି
ଛଡାଛଡ଼ି ନୋହିବ ଖାଇବ ତୁମ୍ଭେ ଅଗ୍ନି ॥୮୯୨୭॥
ନକୁଳ ସହଦେବ ଆମ୍ଭର ସେ ଭକତ
ରହିବେ ସେ ନ ଜିବେ ତୁମ୍ଭର ସଙ୍ଗତ ॥୮୯୨୮॥
ଦୁସାସନ ବାଣି ପାଣ୍ଡବଙ୍କୁ କରତ ପ୍ରାଏ ହୋଇ
କାନ୍ଦନ୍ତି ପାଥ ନୟନୁ ଲୁହ ବହି ॥୮୯୨୯॥
ଅଗ୍ନିକୁଣ୍ଡ ସନିଧ୍ୟେଂ ଅର୍ଜୁନ ଜାଇମିଳି
ସୁଣଗୋ ଓମା ବୋଲି ବୋଲନ୍ତି ଦେବସୁଳି ॥୮୯୩୦॥
ସୁଚି ପସା ଭିତରେ ପସିଥିଲା ଯଦ୍ୟରଥ
ସଙ୍କୁନି ବୋଇଲା ଦେଖ ଜା ମରୁଛି ବିରପାଥ ॥୮୯୩୧॥
ସୁଣିଣ ଯଦ୍ୟରଥ ଭୁଅରୁ ବାହାରିଲା
ଅଗ୍ନିକୁଣ୍ଡଠାରେଂ ପ୍ରବେସ ହୋଇଲା ॥୮୯୩୨॥
ଦେଖିଲେ ଗୋବିନ୍ଦ ଆଡ଼େ ହୋଇଲେ ସୁଦର୍ସନ
ସମସ୍ତେ ଦେଖିଲେ ବେନି ଘଡ଼ିଅଛି ଦିନ ॥୮୯୩୩॥
ଡାକନ୍ତି ଭଗବାନ ଆସରେ ଫାଲଗୁନି
ମିଳିଲା ଯଦ୍ୟରଥ ପକାଅ ଏବେ ହାଣି ॥୮୯୩୪॥
ସୁଣି ବିରବେସ ହୋଇଲା ବିରପାଥ
ଧନୁସର ଧରନ୍ତେ ପଳାଇଲା ଯଦ୍ୟରଥ ॥୮୯୩୫॥
ହରି ଅର୍ଜୁନ ଭିମ ସହଦେବ ପାଥ
ଗୋଡ଼ାଇ ଡାକନ୍ତି ରହରହ ଯଦ୍ୟରଥ ॥୮୯୩୬॥
କେସ ମୁକଳିତ ତିରଣ ଦନ୍ତେ[୧] ଘେନି
ଡାକଇ ଯଦ୍ୟରଥ ରଖ ହେ ଫାଲଗୁନି ॥୮୯୩୭॥
ରହନ୍ତେ ସର୍ବସାଚି ଠାରିଲେ ଭଗବାନ
ଏହାର ଯୋଗୁଂ ତୋହର ମରିଛି ନନ୍ଦନ ॥୮୯୩୮॥
ନିୟମ କରିଥିଲୁ ମାରିବିଂ ଯଦ୍ୟରଥ
ସେ ମଲେ ପାସୋରିବୁ ଅଭିମନୁ ହତ ॥୮୯୩୯॥
ଏମନ୍ତ ବୋଲି ଜହୁଂ ବୋଇଲେ ଚକ୍ରଧର
କୋପେ ପାଥ କାଟିଲା ଯଦ୍ୟରଥ ସିର ॥୮୯୪୦॥
ଛିଡ଼ି ପଡ଼ି ଲଉଟି କାନ୍ଧରେ ଲାଗେ ସିର
ଗୋବିନ୍ଦ ପଚାରନ୍ତେ କହିଲେ ମନ୍ତ୍ରିବର ॥୮୯୪୧॥
ଉତରା ଅଙ୍କେ ସୁରଥ କରେ ତପ
ତାହା ହସ୍ତେ ମୁଣ୍ଡ ପଡ଼ିଲେ ହେବ ଭସ୍ମ ॥୮୯୪୨॥
ସୁଣିଣ ଅର୍ଜୁନ ବାରୁଣା ସର କଲା
ଯଦ୍ୟରଥ ମୁଣ୍ଡକାଟି ଗଗନେ ଉଡ଼ାଇଲା ॥୮୯୪୩॥
ସୁରଥ ହସ୍ତେ ପଡ଼ି ମୁଣ୍ଡଗଲା ଜଳି
ଗିରିଜା ପଚାରିଲେ ସୁଣ ହେ ଦେବସୁଳି ॥୮୯୪୪॥
କିପାଇଂ ପିତା ତାର ତପ କରୁଥିଲା
ବୋଲନ୍ତି ଦିଗବାସ ସୁଣଗୋ ଗିରିଜା ॥୮୯୪୫॥
ଦିନେ ଯଦ୍ୟରଥ ମୃଗୟା ଜାଇଥିଲା
ବନେ ବିଦ୍ୟାକର ମନ୍ତ୍ରିକି କଟାଳିଲା ॥୮୯୪୬॥

୧ । ଘ ପୋଥି – ମୁଖେ

ମତେ ମନ୍ତ୍ରି କାଲି କରହେ ରାଜନ
ପିତାଙ୍କୁ କହିବୁ ସେ ଜାଉ ଘୋରବନ ॥୮୯୪୭॥
ସନ୍ମତ କରି ମନ୍ତ୍ରି ସୁରଥ ଆଗେ କହି
ବନକୁ ଗଲା ରାଜା ପୁତ୍ରକୁ ରାଜ୍ୟଦେଇ ॥୮୯୪୮॥
ଉତରା ଅଙ୍କ ତିରେ ତପ କରୁଥିଲା
ଯଦ୍ୟରଥ ମୁଣ୍ଡ ପଡ଼ି ଭସ୍ମ ହୋଇଗଲା ॥୮୯୪୯॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାନନ୍ଦ
ରଣ ଜୟେ କରି ପାଣ୍ଡବେ ପ୍ରବେସ ନିଜ ରାଜ ॥୮୯୫୦॥

## ଦ୍ରୋଣଗୁରୁଙ୍କର ଅସ୍ତ୍ରତ୍ୟାଗ ଓ ନିଧନ

ଭାଳିଲେ କୌରୋବେ ମାନଗୋବିନ୍ଦ ସୋକକଲା
ଦୁସୁଲା ବହେଣି ଆମ୍ଭର ବିଧବା ହୋଇଲା ॥୮୯୫୧॥
କୃପ ଆଚାର୍ଯେ ବୋଇଲେ ଏହା କଲେ ଦ୍ରୋଣ
ଯଦ୍ୟରଥ ରହିଥାନ୍ତା ଜାଇଣ ଅନ୍ୟଗ୍ରାମ ॥୮୯୫୨॥
ତାହାକୁ ଦ୍ରୋଣ ରଖି ହତ୍ୟା କରାଇଲା
ଦୁସୁଲା ବିଧବା କଷ୍ଟ ଏ କନ୍ଧେ ବହିଲା ॥୮୯୫୩॥
ଧିକ ଦ୍ରୋଣଗୁରୁ ହୋଇଛି ସେନାପତି
କେତେ ନଷ୍ଟ ଭଣ୍ଡ କଲାକ ମାଦ୍ରିକି[1] ॥୮୯୫୪॥
କୃପ ଆଚାର୍ଯ୍ୟ ଜହୁଂ କହିଲାକ ଟାଣ
ହାଣିବେ ବୋଲି ଖଣ୍ଡା ଧଇଲେକ ଦ୍ରୋଣ ॥୮୯୫୫॥
ଅସ୍ୱସ୍ତମା ବୋଇଲା ଶତୃକୁ ନପାରିଣ ଜିଣି
ଆପଣେ ଆପଣେ ଏବେ ହୋଇଲ ହଣାହଣି ॥୮୯୫୬॥
ଅସ୍ୱସ୍ତମା ବଚନେ ସ୍ୟାନ୍ତି କଲେ କୋପ
ବୋଇଲେ ପାଣ୍ଡବଙ୍କୁ କରିବି ଜେ ନାସ ॥୮୯୫୭॥
ଲାଗୁ ଜଗହୁଳା ସମରକୁ ଜିବିଂ
ଅପାଣ୍ଡବ କରିଣ ମୁଂ ଆହାର କରିବିଂ ॥୮୯୫୮॥
ଏତେ କହି ଦ୍ରୋଣେ ରଥରେ ବସିଲେ
ସାଜିଣ ସନ୍ୟ ସେନା ସମରକୁ ଗଲେ ॥୮୯୫୯॥
ଭାରତ ସ୍ତମ୍ଭେ ଉଠି ଡାକଦିଲେ ଦ୍ରୋଣ
ଆସରେ ପାଣ୍ଡବେ କର ଆସି ରଣ ॥୮୯୬୦॥
ନୋହିଲେ ରାଜ୍ୟ ଛାଡ଼ି ପସ ଘୋରବନ
ଦ୍ରୋଣ ଡାକ ସୁଣି ଯୁଧିଷ୍ଟି ବୈମୁନ୍ୟ ॥୮୯୬୧॥
ନିକି ରାତ୍ରରେ ପରମାଦ ପାଞ୍ଚନ୍ତି ଗୁରୁଦ୍ରୋଣ
ଅର୍ଜୁନ ବୋଇଲା ରଥ ବାହା ଭଗବାନ ॥୮୯୬୨॥
ସ୍ନାହାନ ନ କରି କରିବା ଜାଇ ରଣ ॥୮୯୬୩॥

୧ । ଘ ପୋଥି – ସାଦ୍ରିକି

ସଜଳ ସଗୁଣ୍ଡିରେ[1] ଜଗହୁଳା ଜାଳି
ଚଳିଲେ ସନ୍ୟ ସେନା ରଥ ଗଜ ଚଢ଼ି[2] ॥୮୯୬୪॥
ବିରାଟ ସଙ୍ଗତେ ଜୁଝିଲେ କୃପବ୍ରହ୍ମା
ବିକୋଦରକୁ ଉଗାଳିଲେ ଅସ୍ୱସ୍ତମା ॥୮୯୬୫॥
ଦୃଷ୍ଟଦୁମ୍ନ ସଙ୍ଗତେ ଜୁଝିଲାକ ସଲ୍ୟ
ଶ୍ରୀଖଣ୍ଡି କର୍ଣ୍ଣ ରଥି ଲଗାଇଲେ ଗୋଳ ॥୮୯୬୬॥
ପାଦାନ୍ତି କି ପାଦାନ୍ତି ରାଉତକୁ ରାଉତ
ରଥିଙ୍କ ସଙ୍ଗେ ରଥି ମାହୁନ୍ତଙ୍କୁ ମାହୁନ୍ତ ॥୮୯୬୭॥
ଏ ରୁପେ ଘୋର ରଣ ହୋଇଲା ରାତ୍ରକାଳ
ଚିହ୍ନିଣ ନୋହିଲା କେ ପର ଅପର ॥୮୯୬୮॥
ଠେଲାଠେଲି ପେଲାପେଲି ହାବୋଡ଼ା ହାବୋଡ଼ି
ମୁଣ୍ଡକୁ ମୁଣ୍ଡ ମାରି ହୋଅନ୍ତି କୋଡ଼ାକୋଡ଼ି[3] ॥୮୯୬୯॥
କେ କାହାକୁ ଧରି କରଇ ବେନି ଫାଳ
କେ କାହାକୁ ଫିଙ୍ଗି ଦେଇଣ ଅନ୍ତରାଳ[4] ॥୮୯୭୦॥
ସଙ୍ଖର ସଙ୍ଗତେ ଦୁସାସନ ଜୁଝୁଥିଲା
ଗଦାଏ ପ୍ରହାରନ୍ତେ ବିରାଟସୁତ ମଲା ॥୮୯୭୧॥
ସଙ୍ଖ ପଡ଼ନ୍ତେ ଉତ୍ତର କୁମାର ମିଳିଲା
ବେନି କୋଟି ସନ୍ୟମାରି ଆପଣେ ପ୍ରାଣଦିଲା ॥୮୯୭୨॥
କୃପ ଆଚାର୍ଯେ ବିନ୍ଧିଲେ ନଳବଳି
ତିନିକୋଟି ସନ୍ୟ ଘେନି ହୋଇଲାକ ଧୂଳି ॥୮୯୭୩॥
କୃପବ୍ରହ୍ମା ନାରାଜେ ମଛତିରଣ ବାଳ
କର୍ଣ୍ଣନଉମିର ପୁରୋଇ ସଲ୍ୟ କାଳ ॥୮୯୭୪॥
ଦୃଦକ୍ଷ ସମରେ ଭାନୁମତ ମଲା
ଜଗଜେଠି ସନ୍ୟ ଘେନି ଭିମ ସମରେ ପଡ଼ିଲା ॥୮୯୭୫॥
ନକୁଳ ସଙ୍ଗତେ ଜୁଝୁଥିଲା ଦଣ୍ଡପାଳ
ପାଞ୍ଚ ସାଗର ସନ୍ୟ ମୁଳେ ପୁରିଲା ତାର କାଳ ॥୮୯୭୬॥
ମଘଦେସ[5] ରାଜା ସହଦେବ ବୋଲି
ଦଶ ଖର୍ବ ସନ୍ୟ ଘେନି ଭିମ ଗଦାଘାତେ ଧୂଳି ॥୮୯୭୭।
ପାରିଦେସ ରାଜା ଅଟଇ ବିରାକୁଳ
ତାହାକୁ ନାସକଲା ଲକ୍ଷ୍ମଣ କୁମାର ॥୮୯୭୮॥

୧ । ଘ ପୋଥି – ସୟଳ ସଗୁଣ୍ଡିରେ
୨ । ଘ ପୋଥିରେ ନିମ୍ନରେ ଦୁଇଧାଡ଼ି ଅଧିକ ଅଛି –
ମିଳିଲେ ବେନି ଥାଟ କଲେ ଘୋର ରଣ
ଅର୍ଜୁନ ସଙ୍ଗତେ ସମର କରେ ଦୃଣ
୩ । ଘ ପୋଥି – କେ କାହାକୁ ପେଲି ଦେଇ ବସୁଅଛି ମାଡ଼ି
୪ । ଘ ପୋଥି – କେ କାହାକୁ ଫିଙ୍ଗିଦିଏ ଆକାଶ ମଣ୍ଡଳ
୫ । ଘ ପୋଥି – ମଗଧଦେସ

ବିରାକୁଳ ଦେସ ରାଜା ଅଟଇ ବିରସେନ
ବାର କୋଟି ସନ୍ୟମୁଳେ ନାସିଲା ଅର୍ଜୁନ ॥୮୯୭୯॥
ଏଗାର କ୍ଷେଉଣି ସନ୍ୟ ଘେନିଣ ବିରାଟ
ଦ୍ରୋଣଙ୍କର ନାରାଜେ ପଡ଼ିଲା ମଛରାଷ୍ଟ୍ର ॥୮୯୮୦॥
ସତର କ୍ଷେଉଣି ସନ୍ୟ ଘେନି ଅଜ ସବର
ଅର୍ଜୁନ ବାଣେ ସେ ହୋଇଲା ଖଳବଳ ॥୮୯୮୧॥
ଏହି ରୁପେ ବେନି ବଳ ଜାନ୍ତି ମରି
ରାକ୍ଷସି ପିଚାସି ରୋଧିର ପାନକରି ॥୮୯୮୨॥
ପଡ଼ିଲେକ ମଡ଼ା ବହିଲା ରକ୍ତ ନଦି
କୋଳାହୋଳ ହୋଇଣ ନାଚନ୍ତି ଭୈରୋବି ॥୮୯୮୩॥
ପର ଅପର ଆଉ ବାରଣ ନହୋଇ
ଲାଗନ୍ତି ହଣାହଣି ଜନ୍ତାଜନ୍ତି ହୋଇ ॥୮୯୮୪॥
ଉଭୟ ବଳଥାଟ କରୁଛନ୍ତି ରଣ
ପଞ୍ଚଦଶ ଘଡ଼ି ଜେ ରଜନି ହେଲାପୁଣ ॥୮୯୮୫॥
ପଞ୍ଚଲକ୍ଷ ସର ବିନ୍ଧିଲେକ ଦ୍ରୋଣ
ପଡ଼ିଲା ଦ୍ରୋପଦ ପାଞ୍ଚଲକ୍ଷ ଘେନି ସନ୍ୟ ॥୮୯୮୬॥
ଅଶ୍ୱସ୍ତମାକୁ ଧରି ଭିମ ଫିଙ୍ଗି ଦିଲା
ପନ୍ଦର ଯୋଜନରେ ପଡ଼ିଲା ଦ୍ରୋଣ ବଳା ॥୮୯୮୭॥
ନକୁଳ କୋନ୍ତେ କୃପବ୍ରହ୍ମା ନାସଗଲା
ନୃପତି ମରନ୍ତେ ଅସ୍ୱଶ୍ୱମା ହସ୍ତିମଲା ॥୮୯୮୮॥
ତିନିକୋଟି ହସ୍ତି ଥୋରରେ ଗଲା ଫୁଟି[୧]
ସତେ ନାରାଜ ତାକୁ ବିନ୍ଧିଲା କିରଟି ॥୮୯୮୯॥
ପଡ଼ିଲା ଗୁଞ୍ଜର ଜେ ସୁଭିଲା ବୟାଣ
ଅଶ୍ୱସ୍ତମା ହତ ସୁଣି ତାଟଙ୍ଗା ହେଲେ ଦ୍ରୋଣ ॥୮୯୯୦॥
ରଜନି ପାହି ଦିନ ହୋଇଲା ଘଡ଼ି ଚାରି
ଅଶ୍ୱସ୍ତମା ହତ ବୋଲି ହାଟରେ ପଡ଼େ ହୁରି ॥୮୯୯୧॥
ପାଦଗତି ହୋଇ ଦ୍ରୋଣ ଗୁରୁ ପଚାରନ୍ତି
ଜେତେକ ସନ୍ୟ ସେନା ସମରେ ଅଛନ୍ତି ॥୮୯୯୨॥
ହରି ଅର୍ଜୁନକୁ ଜାଇ ପଚାରିଲେ
ଅଶ୍ୱସ୍ତମା ମଲା ବୋଲି ଗୋବିନ୍ଦ କହିଲେ ॥୮୯୯୩॥
ଦ୍ରୋଣେ ବିଚାରିଲେ ଏ କପଟି ଶ୍ରୀବସ୍ତ
କାର୍ଯ୍ୟ ପାଇବା ନିମନ୍ତେ କହୁଥାଇ ମିଛ ॥୮୯୯୪॥
ଦ୍ରୋଣେ ବିଚାରନ୍ତେ ଜାଣିଲେ ଭାବଗ୍ରାହିଂ
ଅଶ୍ୱସ୍ତମା ହତ ବୋଲି ଦ୍ରୋଣ ପଚାରି ଆସଇ ॥୮୯୯୫॥
ମଲା ବୋଲି ତୁମ୍ଭେ କହିବ ହୋ ମିଛ
ସୁଣି ଧର୍ମସୁତ କର୍ଣ୍ଣରେ ଦିଲେ ହସ୍ତ ॥୮୯୯୬॥

ମିଥ୍ୟା କହିଲେଂ ହରି ପଡ଼ିବି ନର୍କର
ଗୋବିନ୍ଦେ ବୋଇଲେ ଏବେ ବନବାସ କର ॥୮୯୯୭॥
ତୁମ୍ଭେ ମିଥ୍ୟା ନ କହିଲେ ନ ମରିବେ ଗୁରୁ
ଗୁରୁ ନାସ ନଗଲେ ନମରେ ରାଜା କୁରୁ ॥୮୯୯୮॥
ଦୁର୍ଯୋଧନ ନ ମଲେ ରାଜ୍ୟ ତୁମ୍ଭର ନାହିଂ
ସେହି ସମୟରେ ଦ୍ରୋଣ ଯୁଧିଷ୍ଟିଙ୍କି ପଚାରଇ ॥୮୯୯୯॥
ଗୋବିନ୍ଦ ଆଜ୍ଞାଦିଲେ ସାରଦାକୁ ଚାହିଂ
ଯୁଧିଷ୍ଟି କଣ୍ଠରେ ବେଗେ ବସଜାଇ ॥୯୦୦୦॥
ଯୁଧିଷ୍ଟି ବୋଇଲେ ନରକି ଗୁଞ୍ଜର ଦେଖିନାହିଂ
ଅସ୍ୱସ୍ତମା ହତ ବୋଲି ବୟାଣ ସୁଭଇ ॥୯୦୦୧॥
ସୁଣି ଦ୍ରୋଣଗୁରୁ ପକାଇଲେ ଧନୁସର
ଦୃଷ୍ଟଦୁମ୍ନନକୁ ଠାରି ଦିଲେ ଚକ୍ରଧର ॥୯୦୦୨॥
ପିତୃ ବଇରି ଏ ଅଟଇ ତୁମ୍ଭର
ଜାଣି ଦୃଷ୍ଟଦୁମ୍ନନ କାଟିଲେ ଦ୍ରୋଣଙ୍କର ସିର ॥୯୦୦୩॥
ପଡ଼ିଲେ ଦ୍ରୋଣଗୁରୁ ସୁଭିଲା ହାହାକାର
ପାଣ୍ଡବେ ଆନନ୍ଦ କୌରୋବେ ବିକଳ ॥୯୦୦୪॥
ରଣ ଜଏ କରି ପାଣ୍ଡବେ ବାହୁଡ଼ିଲେ
ବାରୁଣାବନ୍ତରେ ପ୍ରବେସ ହୋଇଲେ ॥୯୦୦୫॥
ଆଖଡ଼ା ସାଳରେ ହରି ନନ୍ଦିଘୋଷ ଥୋଇ
ସ୍ନାହାନ ସାରି ହରି ସାରିଲେ ମଣୋହିଂ ॥୯୦୦୬॥
ପାର୍ବତି ପୁଛିଲେ ଦ୍ରୋଣ ଅଟନ୍ତି ଋଷିସୁତ
କେହୁ ଅବା ତାହାକୁ ଦେଇଥିଲା ସାପ୍ୟ ॥୯୦୦୭॥
ବିନା ସମରେ କନ୍ଧରୁ ମୁଣ୍ଡ ଛିଡ଼ି
ବୋଲନ୍ତି ବିଶ୍ୱନାଥ ସୁଣଗୋ ଗଉରି ॥୯୦୦୮॥
ଭରଦ୍ୱାଜ ଋଷିଙ୍କର ଦୁତିୟ ଭାରିଜା
ପ୍ରଥମ ବିବାହିର ଦ୍ରୋଣେ ଅଟନ୍ତି ତନୁଜା ॥୯୦୦୯॥
ଦୁତିୟ ବିବାହି ଅଟନ୍ତି ଷୋଳସା ଯୁବତି
ତପକୁ ଗଲେ ମୁନି ଦ୍ରୋଣ କଲା ରତି ॥୯୦୧୦॥
କାଳେ ସେ ଋଷି ବାମା ଗର୍ଭବାସ ହେଲେ
ତପରୁ ଆସି ସେ ଭରଦ୍ୱାଜ ଦେଖିଲେ ॥୯୦୧୧॥
ଯୋଗରେ ଜାଣିଲେ ହରିଲାକ ଦ୍ରୋଣ
ମାତାକୁ ହରିଲୁରେ ପାପିଷ୍ଟ ଅଜ୍ଞାନ ॥୯୦୧୨॥
ମୋହର ସାପ୍ୟ ଘେନି ସମୟେ ଥାଅ ବ୍ରତି
ଭାରତ ସମରେ ତୁ ହୋଇବୁ ସେନାପତି ॥୯୦୧୩॥
ବିନା ସମରେ କାଟିବେ ତୋର ସିର
ଏମନ୍ତ ସାପ୍ୟ ତହିଂ ଦିଲେ ମୁନିବର ॥୯୦୧୪॥

୧ । ଘ ପୋଥି – ତିନି କୋଟି ସନ୍ୟ ହସ୍ତି ଥୋରେ ଗଲା ପିଟି

ପୁତ୍ରକୁ ସାପ୍ୟ ଦେଇ ଭାରିଜାକୁ କୋପିହେଲେ
ହୋଇଲେ ବନବାସି ଗୃହରୁ ଦୁର କଲେ ॥୯୦୧୫॥

## ସେନାପତି ରୂପେ ଭଗଦତ୍ତଙ୍କୁ ବରଣ ଓ କୁଣ୍ଡଳୀ ବିହ୍ୱ ରଚନ

ଦ୍ରୋଣ ପଡ଼ନ୍ତେ ବିସାଦ ପାଇଲା ମାନଗୋବିନ୍ଦ
ହା ହା ଦ୍ରୋଣ ଗୁରୁ ବୋଲି କପୋଳେ କରଦ୍ୱନ୍ଦ ॥୯୦୧୬॥
କର୍ଣ୍ଣ ବୋଇଲା ତୁ ନଭାଳ ରାଜନ
କରିବି ଅପାଣ୍ଡବେ ମୁହିଂ କଲେ ରଣ ॥୯୦୧୭॥
କଥା ଗୋଟିଏ ମୁଂ କହୁଅଛି ତୋତେ
କାଲି ସେନାପତି ମୁଂ ନୋହିବି ଜୁଗତେ ॥୯୦୧୮॥
ତ୍ରୟୋଦସି ତିଥିରେ ଭିସ୍ମେ ହୋଇଲେ ସେନାପତି
ସର ସୟନ କଲେ ଅଷ୍ଟମି ନାମେ ତିଥି ॥୯୦୧୯॥
ନବମି ଦିନେ ସେନାପତି ହେଲେ ଦ୍ରୋଣ
ସମର କରନ୍ତେ ସେ ହୋଇଲା ପାଞ୍ଚଦିନ ॥୯୦୨୦॥
ତ୍ରୟୋଦସି ଚର୍ତୁଦସି ମୋହର ସମର
ତିଥି ବଡ଼ାଦିନେ ରଥି ହୋଇବେ ରାଏ ସଲ୍ୟ ॥୯୦୨୧॥
ଅମାବାସ୍ୟ ଦିନେ ତୁମ୍ଭେ ଗଦା ଯୁଦ୍ଧ କରିବ
ସେହିଦିନ ଭାରତ ସମ୍ପୁର୍ଣ୍ଣ ହୋଇବ ॥୯୦୨୨॥
ଏବେ ତ ତିନିଦିନ ରହିଲେ ଦ୍ରୋଣଗୁରୁ
ଆଉ ବେନି ଦିନକୁ କେ ଅଛି ହନ୍ତକାରୁ ॥୯୦୨୩॥
ଦୁର୍ଯୋଧନ ବୋଇଲା ସତ କହିଲ ମିତ୍ର ତୁମ୍ଭେ
ଆମ୍ଭେ ଅନେସତ ଭାଇ ସେ ପଞ୍ଚୁ ପାଣ୍ଡବେ ॥୯୦୨୪॥
ଏକ ଉଣା ସତାଣ୍ଡୋଇ ସହସ୍ର ରାଜା ମୋର ହେଲା
ତିନି ଉଣା ତିନି ସହସ୍ର ତାକୁ ମିଳିଲା ॥୯୦୨୫॥
ମୋହର ହୋଇଥିଲେ ଅଷ୍ଟମ ସେନାପତି
ତାହାଙ୍କର ସେନା ଏକା ଜେ ଅଟଇ ସର୍ବସାଚି ॥୯୦୨୬॥
ଅଷ୍ଟାଦସ ଦିବସକୁ ଏକା ହୋଇଲା ଅର୍ଜୁନ
ଅଷ୍ଟସେନାକୁ ମୋର ଉବୁରେ ବେନି ଦିନ ॥୯୦୨୭॥
କାଲି ଦିନ ସେନାପତି ମୋର କେହୁ ହେବ
ମକୁଟ ବାନ୍ଧିବି ଆସି ମିଳୁ ମୋର ଆଗ ॥୯୦୨୮॥
ଜାଣିବି ସେହି ମୋର ରଖିବ କୁରୁକୁଳ
ମୁହିଂ ତୃଷାର୍ଥି ସେହି ଅଟେ ଗଙ୍ଗାଜଳ ॥୯୦୨୯॥
ଏମନ୍ତ ବୋଲି ଜହୁଂ ଭାଳିଲା କୁରୁମଣି
ଭଗଦତ୍ତ ବିର ଉଠିଲା ସିରଝୁଣିଂ ॥୯୦୩୦॥
ବୋଇଲା ରାଜା ମୋତେ କରହେ ସେନାପତି
ପାଣ୍ଡବ ଆଦି ସନ୍ୟ ପକାଇବି ମନ୍ଥି ॥୯୦୩୧॥
ଅଷ୍ଟାଦସ ଦିନକୁ ଅଷ୍ଟାଦସ ସହସ୍ର ବରଷ ଜେବେ ହେବ
ତେବେ ଯୁଦ୍ଧ କରି ତୋତେ ନ ଜିଣିବେ ପାଣ୍ଡେବ ॥୯୦୩୨॥
ସୁଣିଣ କୁରୁମଣି ଆନନ୍ଦ ହୋଇଲା
ଭଗଦତ୍ତ ସିରରେ ମକୁଟ ବାନ୍ଧିଲା ॥୯୦୩୩॥
ରଜନି ହୋଇଲାନି ଦୁତିୟ ପ୍ରହର
ଭୋଜନ ସାରି ସର୍ବେ ରହିଲେ ନିଦ୍ରାର ॥୯୦୩୪॥
ସୟନ କରନ୍ତେ ପାହିଲା ରଜନି
ଦେବତାଙ୍କ ଆଳେ ସୁଭିଲା ସଙ୍ଖଧ୍ୱନି ॥୯୦୩୫॥
ଘନ ଘନ ତାମ୍ରଚୁଡ଼ ଦିଲେ ରଡ଼ି
ପୁର୍ବଦିଗେ ଉଦୟେ ଗଗନବେହାରି ॥୯୦୩୬॥
ଉଠିଲେ ସନ୍ୟ ସେନା ରାଉତ ମାହୁନ୍ତ
ସନ୍ୟ ସାଜ ବୋଲିଣ ସୁଭିଲା ଟମକ ॥୯୦୩୭॥
କୁରୁ ସାଗର ସନ୍ୟ ହୋଇଲେ ବାହାର
ପ୍ରବେସ ହୋଇଲେ ସେ ଭାରତ ଭୁମିର ॥୯୦୩୮॥
ଆଗିଆଣି ହୋଇଅଛି ଭଗଦତ୍ତ ସେନାପତି
ବାହଇ ସେ ରଥ କାଳନାମେ ସାରଥି ॥୯୦୩୯॥
କାଳଚକ୍ର ଜୋତି ତେଜ ଅନର୍ଗଳା
ମିଳିଲା ରଣ ଭୁମି ସମର ମହାର୍ଗଳା[୧] ॥୯୦୪୦॥
ମଣ୍ଡଳ[୨] ଭୁଏକ କାଟିଲାକ ସେହି
ଜେସନେ ଭାନୁର ମଣ୍ଡଳ ଅଟଇ ॥୯୦୪୧॥
ଆପଣେ ଦିର୍ଯୋଧନ ଘେନିଣ ଭ୍ରାଥମାନ
ସକୁନି ସଲ୍ୟ ଆବର କୁମର ଲକ୍ଷ୍ମଣ ॥୯୦୪୨॥
ମଣ୍ଡଳ ଚଉକତି କାଟିଲା ବାଉନ ମଣ୍ଡଳ
ସେ ମଣ୍ଡଳକୁ ସରି ନୋହିବେ କେହୁ ବିର ॥୯୦୪୩॥
ବାଉନ[୩] ମଣ୍ଡଳ ଦ୍ୱାର ଭିତରକୁ ହୋଇ
ବାହାରକୁ ଏକ ଦ୍ୱାର ଦିସୁଥାଇ ॥୯୦୪୪॥
ସେ ଦ୍ୱାରେ ରହିଲେ ତିନି ମଭୁତ ସଇନି
ବାରକୋଟି ସନ୍ୟ ରଖିଲେ କିଳଣିଂ ॥୯୦୪୫॥
ତଦନ୍ତରେ ଜଳ ଭୁଏକ ରଞ୍ଜିଲା
ନହରି ଟେକି ଜଳ ନଦିଏ ବହିଲା ॥୯୦୪୬॥
ତହିଂର ଚଉକତି ଭୁଏକ କାଟଇ
କୁଣ୍ଡଳି ଭୁଅ ବୋଲି ତାହାକୁ ଜେ କହି ॥୯୦୪୭॥
ବିନା କାଷ୍ଟ ଘୃତରେ ଜଳଇ ଅନଳ
ଅଗ୍ନିଂ ସିଖା ଲାଗଇ ତାରାଗଣ[୪] ମଣ୍ଡଳ ॥୯୦୪୮॥

---

୧ । ଘ ପୋଥି – ମହାଖଳା
୨ । ଘ ପୋଥି – ମଣ୍ଡଳି
୩ । ଘ ପୋଥି – ସେ
୪ । ଘ ପୋଥି – ଗଗନ

ଏ ରୂପେ ଭଗଦତ୍ତ ରଞ୍ଜିଲା ମଣ୍ଡଳ କୁଣ୍ଡଳି
ସୁଣଗୋ ଓମା ବୋଲି ବୋଲନ୍ତି ଦେବସୁଳି ॥୯୦୪୯॥
ଯୁଧିଷ୍ଟିଙ୍କ ଅଗ୍ରତେ ଡଗର କହିଲା
ଦ୍ରୋଣ ନାସ ଜାନ୍ତେ ଭଗଦତ୍ତ ମକୁଟ ବାନ୍ଧିଲା ॥୯୦୫୦॥
ସମର ଭୁମିରେ ମିଳି କାଟିଲା ମଣ୍ଡଳ
ତଦନ୍ତେ କୁଣ୍ଡଳି କାଟି ଭୁଅ ଜଳ ॥୯୦୫୧॥
ସୁଣିଣ ଯୁଧିଷ୍ଟି ବିକଳ ମନ କଲେ
ଭଗବାନ ମୁଖ ଚାହିଁଣ ପଚାରିଲେ ॥୯୦୫୨॥
କି ବୁଦ୍ଧିଂ କରିବି ବୁଦ୍ଧି ନ ଦିସଇ
ଚକ୍ରଭୁଅରେ ଅଭିମନୁକୁ ହରାଇ ॥୯୦୫୩॥
ତଦନ୍ତେ ସୁଚି ଭୁଏ ପସିଲା ଯଦ୍ୟରଥ
ତାକୁ ମାରି ନ ପାରି ମରୁଥିଲା ପାଥ ॥୯୦୫୪॥
ସେ କାଳେଂ ଅର୍ଜୁନକୁ ରଖିଲୁ ଚକାଡୋଳା
ଏବେ ତ ଭଗଦତ୍ତ ମଣ୍ଡଳ ଭୁଅ କଲା ॥୯୦୫୫॥
ନ ଜାଣି କି ଅବା ପଡ଼ିବ ଅପାଦ
ଏଥକୁ ମୋର ସାହା ଅଟୁ ପଦ୍ମନାଭ ॥୯୦୫୬॥
ବୋଲନ୍ତି ଭଗବାନ ନ ଭାଳ ତହିଂକି
ଭାଳନ୍ତେ କାର୍ଯ ଆଉ ନ ପାଇବ କିଛି ॥୯୦୫୭॥
କ୍ଷତ୍ରି ହୋଇ ଜେବେ ହୋଅଇ ଜଙ୍ଗମ
ଗୁରୁ ହୋଇ ଜେବେ ନକରେ କଲ୍ୟାଣ ॥୯୦୫୮॥
ସ୍ତିରି ହୋଇ ଜେବେ ଲଜ୍ୟା ନଥିଲା
ନୃପତି ହୋଇ ଜେବେ ପରରାଷ୍ଟ୍ର ନ ସାଧିଲା ॥୯୦୫୯॥
ବୃକ୍ଷ ହୋଇ ଜେବେ ନ ଧରଇ ଫଳ
ନଦି ହୋଇ ଜେବେ ନ ବହଇ ଜଳ ॥୯୦୬୦॥
ବଇଦ ହୋଇଣ ନ ଚିହ୍ନଇ ରୋଗ
ଯୁବାକାଳେ ଜେବେ ଯେହୁ ନ କରଇ ଭୋଗ ॥୯୦୬୧॥
ଦେବତା ହୋଇ ଜେବେ ନୋହଇ ପ୍ରସନ
ଗିରି ହୋଇ ଜେବେ ନ ସମ୍ଭାଳେ ବନ ॥୯୦୬୨॥
କୁପ ହୋଇ ଜଦି ନ ଝରଇ ଜଳ
ସାଗର ହୋଇ ଜଦି ଚାଲନ୍ତେ ହୋଏ ଥଳ ॥୯୦୬୩॥
ବେସ୍ୟା ହୋଇ ଜେବେ ହୋଇବାକ କଷ୍ଟି
କୃଷି ହୋଇ ଜେବେ ଫଳିଲାକ ନଷ୍ଟି ॥୯୦୬୪॥
ଦାନି ହୋଇ ଜେବେ ହୋଇଲା ଦାରିଦ୍ର
ପଣ୍ଡିତ ହୋଇ ଜେବେ ହୃଦେ ବହେ ରାଗ ॥୯୦୬୫॥
ବିଅର୍ଥ ହୁଅନ୍ତି ଜେ ଏତେ ଏତେଜନ
ନପୁଂସେକ ସଙ୍ଗେ ଏହାଙ୍କୁ କରିବ ଲେଖନ ॥୯୦୬୬॥
କ୍ଷତ୍ରି ହୋଇ ଜେ କିପାଇଂ ନିସତ ହେଉଅଛ
ଏମନ୍ତ ବୋଲି ପ୍ରବୋଧି ବୋଇଲେ ଶ୍ରୀବତ୍ସ ॥୯୦୬୭॥
ବଦୟନ୍ତି ଧର୍ମସୁତ ସୁଣହେ ଗୋବିନ୍ଦ
ଭଗଦତ୍ତ କଲା ଅତି ପରପଞ୍ଚ ମନ୍ଦ ॥୯୦୬୮॥
ନୟନେ ଦେଖିନାହୁ କର୍ଣ୍ଣେ ସୁଣି ନାହୁ
ମଣ୍ଡଳି ଭୁଅ ଭଗଦତ୍ତ ଜାଣିଲାକ କାହୁଂ ॥୯୦୬୯॥
ମଣ୍ଡଳି ଉତାରେ କରିଛି କୁଣ୍ଡଳି
ବିନା ଘୃତ ସମିଧେ ହୁତାସନ ଜଳି ॥୯୦୭୦॥
ଏଥିକି ତୁହି ଜାଣୁ ମୋତେ ଜେ ଅଗୋଚର
କୁରୁ ସାଗର ମଧ୍ୟରୁ ଉଦ୍ଧରିଣ ଧରଂ[1] ॥୯୦୭୧॥
ସୁଣିଣ ଆନନ୍ଦିତ ହୋଇଲେ ଭାବଗ୍ରାହି
ସୁଣଗୋ ଓମା ବୋଲି ସଦାସିବ କହି ॥୯୦୭୨॥
ଭୁଅରେ ଥାଇ ଭଗଦତ୍ତ ଡାକ ଦିଲା
ଆସରେ ପାଣ୍ଡବେ ସମର କର ଭଲା ॥୯୦୭୩॥
ନିସତ ହୋଇଲେ ଗ୍ରାମ ଜାଅ ଛାଡ଼ି
ବସିବ କୁରୁନାଥ ବାରୁଣାବନ୍ତ ମାଡ଼ି ॥୯୦୭୪॥
ସୁଣିଣ ସର୍ବସାଚି ଗୋବିନ୍ଦଙ୍କୁ କହି
ସାଜ ନନ୍ଦିଘୋସ ମୁହିଂ ଜିବଇଂ ଚଳାଇ ॥୯୦୭୫॥
ସୁଣିଣ ଜଗବନ୍ଧୁ ନନ୍ଦିଘୋସ ସାଜି
କଳସ ବସାଇଣ ଜୋଚିଲେ ଚାରି ବାଜି ॥୯୦୭୬॥
ଗୋବିନ୍ଦ ସୁମରି ଅର୍ଜୁନ ରଥରେ ବସିଲାକ ପୁଣ
ଆବର ସନ୍ୟସେନା ଆରୋହିଲେ ଯାନ ॥୯୦୭୭॥
ବାଜଇ ବିଜିଘୋସ ଟମକ ଦାଉଣ୍ଡି
ସନ୍ୟଙ୍କ ପାଦଭରେ କମ୍ପଇ ପୃଥିବିଂ[2] ॥୯୦୭୮॥
ଭାରତ ଭୁମିରେ ପ୍ରବେସ ହେଲେ ଜାଇ
କୁଣ୍ଡଳି ଭୁଅ ସିଖା ଆକାସେ ଲାଗଇଂ ॥୯୦୭୯॥
ସନ୍ୟ ସେନାମାନେ ଖଣ୍ଡେ ଦୁରେଂ ରହିଲେ
ତେଜରେ ଭୁଅଠାକୁ ଜାଇ ନ ପାରିଲେ ॥୯୦୮୦॥
ଗୋବିନ୍ଦେ ବୋଇଲେ ପାଥ ବିନ୍ଧ ଜଳସର
ଜଳଧାରା ପଡ଼ିଲେ ନିବିବ ଅନଳ ॥୯୦୮୧॥
ସୁଣିଣ ସର୍ବସାଚି ବିନ୍ଧିଲା ଜଳଧାରା
ଜଳପଡ଼ନ୍ତେ ଅଗ୍ନି ଦିଗୁଣ ଜଳିଲା ॥୯୦୮୨॥
ଜେତେକ ସରବିଦ୍ୟା ପାଥଠାରେ ଥିଲା
ବିନ୍ଧି ବିନ୍ଧି ପାଥ ନିସତ ହୋଇଲା ॥୯୦୮୩॥
କୁଣ୍ଡଳି ଭୁଅ ପାଥ ଆଉ ନ ପାରିଲେ ଭେଦି
ବୋଲଇ ବିକୋଦର ମୋର ଅଛି ବୁଧି ॥୯୦୮୪॥

---
୧ । ଘ ପୋଥିରେ ସୁଣିଣ ଆନନ୍ଦିତ ଠାରୁ ଚଳାଇ ପର୍ଯ୍ୟନ୍ତ ନାହିଁ
୨ । ଘ ପୋଥି – ମେଦିନି

ସମସ୍ତେ ଜାଇ ଜଳ ବହିଣ ଆଣିବା
ପକାଇ ନଦିଜଳ ଅଗ୍ନି ନିବାଇବା ॥୯୦୮୫॥
ଏମନ୍ତ କହି ଭିମ ସମସ୍ତ ସନ୍ୟ ଘେନି
କାଳିମୁଖି ନଦିରୁ ଢାଳିଲା ବହି ପାଣିଂ ॥୯୦୮୬॥
ଭେଦି ନପାରିଲେ ଭୁଅ କୁଣ୍ଡଳି
ସ୍ଥକିତ ହୋଇଲେ ସର୍ବେ ପାଣିଂ ଢାଳି ଢାଳି ॥୯୦୮୭॥
ଡାକିଲା ମାନଗୋବିନ୍ଦ ସୁଣରେ ଅର୍ଜୁନ
ଅଷ୍ଟାଦସ ଦିବସ ହୋଇବ ସିନା ରଣ ॥୯୦୮୮॥
ଏଥିର ମଧ୍ୟେଂ କେହୁ ପାରିବାକ ଜିଣିଂ
ଏ ପଞ୍ଚୁ କଟକେ ହୋଇବ କାରେଣିଂ ॥୯୦୮୯॥
ଜେହୁ ହାରିବ ସେ ଗ୍ରାମରୁ ଛାଡ଼ି ଜିବ
ଜିବଥିବା ଜାଏ ସେ ଗ୍ରାମ ନମାଡ଼ିବ ॥୯୦୯୦॥
ଏମନ୍ତ ବୋଲି ଜହୁଂ ବୋଇଲା କୁରୁମଣିଂ
ଗୋବିନ୍ଦ ମୁଖଚାହିଂ ବୋଲନ୍ତି ଫାଲଗୁନି ॥୯୦୯୧॥
କସଣ ଉପରେ ରାଜା କସଣ ଦେଉଛଇ
ଭୁଅ ଭେଦି ଆମ୍ଭେଂ ନ ପାରିବା ଜାଇ ॥୯୦୯୨॥
ହୁତାସନ ଅନଳ କୋପ ଅନଳ
କୃତିକା ଅନଳ ବଡ଼ବା ଅନଳ ବ୍ରହ୍ମ ଅନଳ ॥୯୦୯୩॥
ଜଠର ଅନଳ କାଳ ଅନଳ ଦଗ୍ଧ ଅନଳ
ରସ୍ମିଂ ଅନଳ ଖାର ଅନଳ ସହିତେ ଦସ ଅନଳ ॥୯୦୯୪॥
ତାହାଙ୍କ ଠାରୁ ଏତ ହୋଇଲା ତେଜବଡ଼ ॥୯୦୯୫॥
ଗୋବିନ୍ଦେ ବୋଇଲେ ହେ ଇନ୍ଦ୍ରକୁ ସୁମର
ସେହି ବରସିଲେ ସିନା ନିବିବ ଅନଳ ॥୯୦୯୬॥
ଅର୍ଜୁନ ବୋଇଲା ଏତ ମାନବଙ୍କ ରଣ
ଏଥିକି କେମନ୍ତେ ହେ ଆସିବେ ମଘବାନ ॥୯୦୯୭॥
ନିମନ୍ତ୍ରଣ କରିଥିଲେ ଆସିଥାନ୍ତେଂ ସେହି
ଦେବଗଣ ଘେନି ସେ ଜୁଝନ୍ତେ ପରିଘାଇ ॥୯୦୯୮॥
ନିର୍ବାଚ କପଚ ମାରି ମୁଂ ପାଇଥିଲିଂ ବର
ଚିନ୍ତିଲେ ଅବସ୍ୟ ଆସିବେ ବଜ୍ରଧର ॥୯୦୯୯॥
ବାସୁକି ସହିତେ ଆସିବେ ନାଗବଳ
ଏକ ଦିବସକେ ସରିବ ଭାରତ ସମର ॥୯୧୦୦॥
ଏତେ ବୋଲି ସେ ବୋଇଲା ପାର୍ଥିବ
ଯେ କଥାରେ କିଛି ପଉରୋଷ ନ ପାଇବ ॥୯୧୦୧॥
ହାରଇଂ ଅବା ମୁହିଂ ପ୍ରାଣ ମୋର ଜାଉ
ନିସତ କଥା ମୋତେ ନ କହ ମହାବାହୁ ॥୯୧୦୨॥
ଗୋବିନ୍ଦ ପ୍ରତିବାଚ ଜେବେ ତୁ ସତ୍ୟ ପାଳିବୁ
ଭୁଅ ଭେଦି ନ ପାରିଲେ କୌରୋବ ନ ଜିଣିବୁଂ ॥୯୧୦୩॥
ଦେଖ କୌରୋବେ ଜେବେ ଅନ୍ୟାଏ ଆଚରିଲେ
ମାନବ ଯୁଦ୍ଧରେ ଦେବ ଭୁଅ କଲେ ॥୯୧୦୪॥
କୁଣ୍ଡଳି ଭୁଅ ବୋଲି ଜାହାକୁ ସେ କହିଂ
ସେହି ସେ ବିସମ ଅଗ୍ନିଂ ନିବାର ଅନ୍ୟେ ନାହିଂ ॥୯୧୦୫॥
ଅମୃତ ଜଳ ଜେବେ ଇନ୍ଦ୍ର ବରସିବ
ତେବେ ସିନା କୁଣ୍ଡଳି ଭୁଅ ଭେଦି ହେବ ॥୯୧୦୬॥
ଦୁତିୟ ପ୍ରହର ଆସି ହୋଇଲା ଆଦିତ୍ୟ
ଘନ ଘନ ଡାକ ଦେଉଛି ଭଗଦତ୍ତ[୧] ॥୯୧୦୭॥
ଅର୍ଜୁନକୁ ଗୋବିନ୍ଦ ସେ ଏମନ୍ତ କହିଲେ ॥୯୧୦୮॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ମୁଣ୍ଡଳ ଭୁଅରେ ସେ ରହିଲେ କୌରୋବ ॥୯୧୦୯॥
ତଦଅନ୍ତରେ ଜଳ ଭୁଏକ ଅଛଇ
କୁଣ୍ଡଳି ଭୁଅ ତେଜ ତହିଂକି ନ ଲାଗଇ ॥୯୧୧୦॥
ଆନନ୍ଦ ହୋଇଣ କୌରୋବେ ଅଛନ୍ତି
ତେଜଭରେ ପାଣ୍ଡବେ ପସି ନ ପାରନ୍ତି ॥୯୧୧୧॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିୟେମ୍ବକ
ଅର୍ଜୁନ ବୋଇଲେ ହରି ଇନ୍ଦ୍ରକୁ ତୁହିଂ ଡାକ ॥୯୧୧୨॥
ଶ୍ରୀହରି ବଚନେ ପାର୍ଥ ବିନ୍ଧିଲା ମନଭେଦି
ଚଳିଲା ନାରାଜ ଅମର ପୁରେ ମିଳି ॥୯୧୧୩॥
ଅପକ୍ଷରି କିନ୍ନରି ଭିଆଇ ନୃତ୍ୟରଙ୍ଗ
ଗନ୍ଧର୍ବେ ଧରିଛନ୍ତି ତାଳ କଂସାଳ ମୃଦଙ୍ଗ ॥୯୧୧୪॥
ଇନ୍ଦ୍ର ବୃହସ୍ପତି ବସିଛନ୍ତି ଆସ୍ଥାନ
ପଡ଼ିଲା ମନଭେଦି ବଜ୍ର ସମାନ ॥୯୧୧୫॥
ଚମକିଲା ଆସ୍ଥାନ ଚମକିଲା ସଭା
କମ୍ପିଲା ଆକାସ[୨] ତ୍ରାସ ପାଇଲେ ସୁରଦେବା ॥୯୧୧୬॥
ଘଡ଼ିଏ ପର୍ଯ୍ୟନ୍ତେ ପଡ଼ିଲା ଚହଳ
କିସ କିସ ବୋଲି ବୋଲଇ ଆଖଣ୍ଡଳ ॥୯୧୧୭॥
ସମ୍ଭାଳି ସରକୁ ଚିହ୍ନିଲା ମଘବାନ
ବୋଇଲା ଏ ସରକୁ ପେସିଲା ଅର୍ଜୁନ ॥୯୧୧୮॥
ସରକୁ ପଚାରିଲା କିପାଇଂ ଅଇଲୁଂ
ବିଳମ୍ବ ନ କର କହ କିନା ବାବୁ ॥୯୧୧୯॥

---

୧ । ଘ ପୋଥିରେ ନିମ୍ନରେ ଚାରି ଧାଡ଼ି ଅଧିକ ଅଛି –
ଅର୍ଜୁନକୁ ଗୋବିନ୍ଦ ଯେମନ୍ତ ଗଲେ କହି
ବୋଲନ୍ତି ଶାକାମ୍ବେରୀ ଶୁଣ ହୋ ଶୁଳସାଇଂ
ଅଗ୍ନି ତେଜେ ପାଣ୍ଡବେ ରହି ନପାରିଲେ
ମଧ୍ୟରେ କୌରୋବେ କେମନ୍ତେ ରହିଲେ
୨ । ଘ ପୋଥି – ଆସନ

କହଇ ମନଭେଦି ଶୁଣ ହେ ବଜ୍ରଧର
କୁରୁ ପାଣ୍ଡବଙ୍କର ହେଉଛି ସମର ॥୯୧୨୦॥
କୁଣ୍ଡଳି ଭୂଏକ କାଟିଲା ଭଗଦତ୍ତ
ଅଗ୍ନିଂତେଜ ଭେଦି ନପାରିଲା ପାଥ ॥୯୧୨୧॥
ଅର୍ଜୁନ ନାରାଜେ ସେ ସିତଳ ନୋହିଲା
ତେଣୁ ତୁମ୍ଭଠାକୁ ବିଜଇ ପେସିଲା ॥୯୧୨୨॥
ଅମୃତଜଳ ତୁମ୍ଭେ ତହିଂରେ ବରସିବ
ସେ ଭୁଅଭେଦି ପାଥ କୌରୋବ ନାସିବ ॥୯୧୨୩॥
ସୁଣି ଆନନ୍ଦିତ ହୋଇଲା ବଜ୍ରପାଣିଂ
ଉପକାରି ପୁତ୍ର ମୋର ଅଟଇ ଫାଲଗୁନି ॥୯୧୨୪॥
ଅମୃତାକ୍ଷ ନାମେ ମେଘକୁ ଆଜ୍ଞା ଦିଲା
ଅମୃତ ଜଳ ତୁମ୍ଭେ ତହିଂ ବରସ ବୋଇଲା ॥୯୧୨୫॥
ଭାରତ ଭୁମିରେ କୁଣ୍ଡଳି ଭୁଅର
ବରସିବୁ ସୁଧାଜଳ ସେ ହୋଇବ ସିତଳ ॥୯୧୨୬॥
ଇନ୍ଦ୍ରର ଆଜ୍ଞା ପାଇ ଅମୃତାକ୍ଷ ମେଘ
ଅମୃତ ବରସିଲା କୁଣ୍ଡଳି ଭୁଅର ମଧ୍ୟ ॥୯୧୨୭॥
ପଡ଼ନ୍ତେ ସୁଧାବାରି ଅଗ୍ନି ହେଲା ପାଣି
ଦେଖି ନନ୍ଦିଘୋଷ ବାହିଲେ ଚକ୍ରପାଣି ॥୯୧୨୮॥
ନକୁଳ ସହଦେବ ବିକୋଦର ଧାଇଂ
ସନ୍ୟ ସେନା ସବୁ ପସିଲେ ଝସାଇ ॥୯୧୨୯॥
କୁଣ୍ଡଳି ଭୁଅ ଭେଦି ପ୍ରବେସ ଜଳଠାରଂ[୧]
ପସି ନପାରି ସନ୍ୟ ରହିଲେ ସେହି ସ୍ଥାନର ॥୯୧୩୦॥
ଅର୍ଜୁନ ବୋଇଲା ହରି କି ରୁପରେ ଜିବା
ଗୋବିନ୍ଦ ବୋଇଲେ ରଥ ଆକାସରେ ବାହିବା ॥୯୧୩୧॥
ରଥଗଜ ପାଦାନ୍ତି ଥାନ୍ତୁ ଏହିଠାର
ଡେଇଂ ଜିବିଂ ବୋଲିଣ ବୋଇଲା ବିକୋଦର ॥୯୧୩୨॥
ବେନି ଗଦା ଘେନି ଜଳରେ ଭିମ ପିଟଇ
ସତୋରି ତାଳ ଗଭିରେ ପଡ଼ିଲାକ ଜାଇ ॥୯୧୩୩॥
ବୁଡ଼ିଣ ବିକୋଦର ଚାରି ଯୋଜନେ ବାହାରିଲା
ହସ୍ତରେ ଘେନିଅଛି ବାଉନ ଭାର ଗଦା ॥୯୧୩୪॥
ଭିମକୁ ଦେଖିଣ ଧାଇଂଲେ କୌରୋବେ
ଆରେ ଆରେ ପାଣ୍ଡବା ମରିବୁ ଭୁଅ ମଧ୍ୟେ ଏବେ ॥୯୧୩୫॥
ଅର୍ଜୁନ ବୋଇଲା ହରି ବାହା ରଥୁବର
ଏକା ଭିମ ଠାକୁରେ କେତେ କରିବେ ସମର ॥୯୧୩୬॥
ଗୋବିନ୍ଦ ବୋଇଲେ ଏ ବିସମ ଲହରି
ଏଥିରେ କେମନ୍ତେ ଅଶ୍ୱ ଜିବେ ପହଂରି ॥୯୧୩୭॥

୧ । ଘ ପୋଥିରେ ପସି ନପାରି ଠାରୁ ଥାନ୍ତୁ ଏହିଠାର ପର୍ଯ୍ୟନ୍ତ ନାହିଁ

ସପତ ସିନ୍ଧୁକୁ ସିନା ବୋଲିରେ ସାହେର
ତହିଂକି ଦ୍ୱିଗୁଣ ହୋଇଲା ଏ କୁରୁ ସାଗର ॥୯୧୩୮॥
ଅର୍ଜୁନ ବୋଇଲେ ହରି ସଙ୍ଖାସୁର ଥିଲା
ଧାତାର ବେଦ ପୋଥି ଚୋରାଇଣ ନିଲା ॥୯୧୩୯॥
ମିନରୁପ ଧରିଣ ନାସିଲୁ ସଙ୍ଖାସୁର
ଚାରିବେଦ ନେଇଣ ସମର୍ପିଲୁ ବେଦବର ॥୯୧୪୦॥
ବେଦକୁ ରଖିନାଥ ଉଦ୍ଧରିଲୁ ଧରଣି
ତୁ ସାହା ହୋଇଲେ ଜଳ ହୋଇବ ଆଣ୍ଠୁଆଣି ॥୯୧୪୧॥
ଅର୍ଜୁନ ଇଦଂ ବାକ୍ୟେ ବୋଲନ୍ତି ଜଗନ୍ନାଥ
ମୋହର ସଞ୍ଚିଲା ଏ ଅଟଇ ସିନ୍ଧୁସାତ ॥୯୧୪୨॥
ମୋହର ଜଳ ସେ ମୁହିଂ ଥଳ ଦିଏଂ
ଏ ମାୟା ଜଳକୁ ଲାଗଇ ମୋତେ ଭୟେ ॥୯୧୪୩॥
ସ୍ୱେତ ସଙ୍ଖ ଗୋକ୍ଷିର କାମପାଳ ଚାରି
ପ୍ରଳୟ କାଳେ ସୃଷ୍ଟି ଘୋଟଇ ଲହରି ॥୯୧୪୪॥
ତହିଂ ପହରନ୍ତି ହୋଇଣ ହଂସ ପକ୍ଷି
ଏବେ ଯେ ଜଳକୁ ପାଉଅଛି ସଖିଂ ॥୯୧୪୫॥
ଦେଖ ଯେ ହନୁମତ ବସିଛି ଧ୍ୱଜର
ତ୍ରେତୟା ଯୋଗେଂ ଏହୁ ବାନ୍ଧିଲା ସାହେର ॥୯୧୪୬॥
ଏବେ ଏଥିକି ହନୁ ଭରସା ନ କରଇ
ଅର୍ଜୁନ ବୋଇଲା ଅଗ୍ନିଂ ସରେ ସୁଖାଇବି ମୁହିଂ ॥୯୧୪୭॥
ଏତେକ କହି ପାଥ ଅଗ୍ନିଂସର ବିନ୍ଧି
ଅଗ୍ନିଂସରେ ଜଳ ଭୁଅ ନ ପାରିଲା ଭେଦି ॥୯୧୪୮॥
ଗୋବିନ୍ଦେ ବୋଇଲେ ହେଳା ନ କର ଅର୍ଜୁନ
ସୁଗନ୍ଧିକା ହରଣେ ବାଦ କଲା ହନୁମାନ ॥୯୧୪୯॥
ସରେ ସରେ ସାଗର ବାନ୍ଧିଂ ଜେ ଥିଲୁ ତୁହି
ସରରେ ବାନ୍ଧ ଭୁଅ ଜିବା ପାର ହୋଇ ॥୯୧୫୦॥
ସୁଣିଣ ସର୍ବସାଚି ମନଭେଦି ସର କଲା
ଜଳଭୁଅ ମଧ୍ୟେରେ ସରପିଢ଼ା ହେଲା ॥୯୧୫୧॥
ଦେଖିଣ ଭଗଦତ୍ତ ଅଗ୍ନିଂ ସରବିନ୍ଧି
ଅର୍ଜୁନ ସରସବୁ ପକାଇଲା ଛେଦି ॥୯୧୫୨॥
ଦେଖିଣ ଅର୍ଜୁନକୁ ନସ୍କୁରଇ କିଛି
ସାଧୁ ଭଗଦତ୍ତ ବୋଲି ପ୍ରସଂସେ କୁରୁପତି ॥୯୧୫୩॥
ଜାଣିଲିଂ ପାଣ୍ଡବେ ତୋତେ ନପାରିବେ ଜିଣିଂ
ପଞ୍ଚ କଟକରେ ମୁଂ ହୋଇବି କାରେଣି ॥୯୧୫୪॥
ପ୍ରଥମେ ସେନାପତି କରିଥାନ୍ତି ଜଦି
ଏତେ ସନ୍ୟ କେମନ୍ତେ ପଡ଼ନ୍ତେ ରଣମଝି ॥୯୧୫୫॥

ସଙ୍କୁନି ବୋଇଲେ ହୋ ଜେହୁ ଗଲେ ଜାଉ
ଏତେକ ରହିଥିଲେ ପ୍ରତଜ୍ଞା ତୋର ଥାଉ ॥୯୧୫୬॥
ଏକା ଜଦି ଭଗଦତ୍ତ ତୋର ରହିଥିବ
ତେବେ ତୋତେ ଜିଣିଂ ନ ପାରିବେ ପାଣ୍ଡେବ ॥୯୧୫୭॥
ନ ଜାଣି ଦଇବ କି ଅଛି ଭିଆଇ
ରାତ୍ରକାଳେ ନିକି ଗୋଳଯୁଦ୍ଧ ହୋଇ ॥୯୧୫୮॥
ଭିମ ଭୁଅ ଭେଦି କରୁଛି ସମର
ଅର୍ଜୁନକୁ ପାରି କରିବେ ଚକ୍ରଧର ॥୯୧୫୯॥
ଭିମ ଅର୍ଜୁନ ଜେବେ ଜୁଝିବେ ପରିଘାଇ
ଆମ୍ଭର ସର୍ବଥାଟ ଜିଣିବେ ବେନିଭାଇ ॥୯୧୬୦॥
ସୁଣିଣ ନୃପତି ହୋଇଲେକ ତୁନି
ରାଜାର ବିସାଦେ ବିଚାରେ ସଙ୍କୁନି ॥୯୧୬୧॥
ତ୍ରୟୋଦସି ଦିନରୁ ସମର ହେଉଛଇ
ମୋହର କାର୍ଯ ତ ମୁହିଂ ପାଇନାହିଂ ॥୯୧୬୨॥
ଜେତେବେଳେ ମରିବ ଧୃତିରାଷ୍ଟ ତନଇ
ସେହିକାଳେ ପିତୃରଣଂ ସୁଝିବଇ ମୁହିଂ ॥୯୧୬୩॥
ପିତୃ ବଇରି ମୋର ଅଟଇ ଦୁର୍ଯୋଧନ
ଏହାକୁ ନାସିବାକୁ ଖାଉଅଛି ଏହାର ଅନ୍ନ ॥୯୧୬୪॥
ଏହାର ଅନ୍ନ ଖାଇ ଏହାକୁ ମରାଇବି
ଭାରତ ରଣେ ପଡ଼ିଂ ମୁ ମୁକତି ଲଭିବି ॥୯୧୬୫॥
ଏମନ୍ତ ବିଚାରିଣ ଡାକଇ ସକୁଂନି
ଧନ୍ୟ ଭଗଦତ୍ତ ଧନ୍ୟରେ କୁରୁମଣି ॥୯୧୬୬॥
ଏଡ଼େ ଏଡ଼େ ରଥିକି ସମ୍ଭାଳି ଅଛଇ
ଜାହାକୁ ହରି ଅର୍ଜୁନ ରହମାନ ନୋହଇ ॥୯୧୬୭॥
ପାଣ୍ଡବ ବଳସବୁ ରହିଲେ ତେଣେ କୁଳ
ଏକା ଯୁଦ୍ଧକୁ ଆସିଅଛି ବିକୋଦର ॥୯୧୬୮॥
ସମସ୍ତେ ବେଢ଼ି ମାରିବା ଭିମ ନାସଯାଉ
ଅର୍ଜୁନକୁ ଘେନି ଗଉଡ଼ ପଳାଉ ॥୯୧୬୯॥
ଭିମର ନିଧନେ ଯୁଧିଷ୍ଠି ନାସଜିବ
ଆମ୍ଭର ସେବକ ଜେ ନକୁଳ ସହଦେବ ॥୯୧୭୦॥
ସକୁଂନି ବଚନେ ଆନନ୍ଦ ଧୃତରାଷ୍ଟ୍ରି
ଭିମକୁ ବେଢ଼ି ମାର ବୋଲି ଡାକିଲା ଭାଇଂକି ॥୯୧୭୧॥
ଏଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ଆଦିତ୍ୟ ଅସ୍ତହୋଇଲା ଘୋଟିଲା ତିମିରି ॥୯୧୭୨॥
ଭିମସେନ ପ୍ରବେସ ହୋଇଲା ଭୁଅ ଦ୍ୱାର
ଗଦା ବୋଲାଇଣ ସନ୍ୟକଲା ଚୁର ॥୯୧୭୩॥
ରଥଗଜ ମାହୁନ୍ତ ଜେ ମୁଖେଂ ପଡ଼ଇ
ଧାଇଂଣ ମାରୁତି ପାଦେ ମରଦଇ ॥୯୧୭୪॥
ଲାଗିଲା ରଣଗୋଳ ସୁଭିଲା ସଙ୍ଖଧ୍ୱନି
ଜଳଭୁଅରେ ଥାଇ ସୁଣିଲା ଫାଲଗୁନି ॥୯୧୭୫॥
ଗୋବିନ୍ଦ ମୁଖଂ ଚାହି ହୋଇଲା ବିକଳ
ଜାଣିଲି ଦୟା ଆମ୍ଭକୁ ନାହିଂ ଆଦିମୁଳ ॥୯୧୭୬॥
ମିଛରେ ଆମ୍ଭେ ହରି ଦ୍ୱନ୍ଦ ଭିଆଇଲୁ
ବନ୍ଧୁ ସୋଦର ମରାଇ କାର୍ଯ ନପାଇଲୁ ॥୯୧୭୭॥
ଆମ୍ଭେ ଜେ କହୁଥାଉ ହରି ଆମ୍ଭର ବନ୍ଧୁ
ତାହାଙ୍କ ଦୟାରୁ ତରିବୁଂ ଅପ୍ରମାଦୁ ॥୯୧୭୮॥
ଏବେତୁ ନିର୍ଦ୍ଦୟା ବହିଲୁଂ ଚକ୍ରପାଣିଂ
ଗଛରେ ଉଠାଇ ତ କାଟିଲୁଂ ନିସାଣିଂ ॥୯୧୭୯॥
ହରି ତୁ ଜେ କହୁଥାଉ ଆମ୍ଭ ଅଙ୍ଗ ଫାଲଗୁନି
ସେହି ନାସ ଗଲେ ମରିବି ମୁହିଂ ପୁଣି ॥୯୧୮୦॥
ହରି ମଣ୍ଡଳ ଭୁଅ ଯେକା ଜୁଝନ୍ତି ଭିମସେନ
କପଟ ଯୁଦ୍ଧରେ ନିକି ହରାନ୍ତି ଜିବନ ॥୯୧୮୧॥
ସେହି ଜିବ ଛାଡ଼ିଲେ ମୁହି ମରିବଇଂ
ପ୍ରାଣ ହରାଇବେ ଯୁଧିଷ୍ଠି ଗୋସାଇଂ ॥୯୧୮୨॥
ଜାଣିଲି ହରି ଏବେ ନାସୁଛୁ ପାଣ୍ଡେବକୁ
ବୋଲନ୍ତି ଜଗବନ୍ଧୁ କିଛି ନ ଭାଳ ମନକୁ ॥୯୧୮୩॥
ଜେବେ ତୁ ଅର୍ଦ୍ଧଅଙ୍ଗ ଅଟୁ ମୋର ବାବୁ
ମୋ ଜିବ ଜିବାକାଳେ ଛାଡ଼ି ତୁ ନଜିବୁ ॥୯୧୮୪॥
ଜିବ ଜିବାବେଳେ ହୋଇଥିବୁ ସାହିଂ
ମୋ ଅଙ୍ଗ ସମାର୍ଜିବୁ ନିୟମ କର ତୁହିଂ[1] ॥୯୧୮୫॥
ରଣ ମରଣ ସଙ୍କଟ ସମ୍ପଦରେ ସାହିଂ
ଏଥିରେ ଜେହୁ ଥାଇ ତାହାକୁ ବନ୍ଧୁବୋଲି କହିଂ ॥୯୧୮୬॥
ଶ୍ରୀହରି ବଚନ ସୁଣିଣ ଫାଲଗୁନି
ପାଦଛୁଇଂ ନିୟମ କଲାକ ସେ ପୁଣିଂ ॥୯୧୮୭॥
ହରି ଜେତେବେଳେ ଜାହା କହିବୁ ତୁହିଂ[2]
ବହିବିଂ ସିରାଗ୍ରତେ ନ କରିବିଂ ନାହିଂ ॥୯୧୮୮॥
ହରି ଭଗଦତ୍ତ ରଞ୍ଚିଲା ଜେବଣ ଭୁଅମାନ
ମୁହିଂ ଭେଦିବାକୁ ନୋହିଲି ଭାର୍ଜନ ॥୯୧୮୯॥
ହରି ଭଗଦତ୍ତ ଡାକ ମୋତେ ହେଉଛି କରତ
କୌରୋବେ କେତେ କରୁଛନ୍ତି ହାସ୍ୟ ତ ॥୯୧୯୦॥

---

୧ । ଘ ପୋଥିରେ ରଣ ମରଣ ଠାରୁ କଲାକ
ସେ ପୁଣିଂ ପର୍ଯ୍ୟନ୍ତ ନାହିଁ–
୨ । ଘ ପୋଥି – ଅର୍ଜୁନ ପ୍ରତିବାଚ ଶୁଣ ହୋ ଭାବଗ୍ରାହି

ହରି କ୍ଷତ୍ରି ହୋଇ ଏହାକି ସହିପାରି
ସମର କରୁ କରୁ ଜାଆନ୍ତି ପଛେ ମରି ॥୯୧୯୧॥
ସମର କରନ୍ତେ ଜେ ହରାଜିଣା ହେଉଥାଇ
ପକ୍ଷି ବନ୍ଦି ପ୍ରାଏ ଅଛଇ ମୁହିଂ ରହି ॥୯୧୯୨॥
ହରି ଭୁଅ ଭେଦି ନ ପାରିଲି ନ କଲି ସମର
ଭୁମିଗତ ହୋଇ ରହିଲା ରହୁବର ॥୯୧୯୩॥
ହରି ତିନିପୁରେ ଅପକ୍ଷାତିଂ[1] ହେଉଅଛି ମୋତେ
ମୋତେ ଅପଚୟେ ହାନି ନୋହିଲାକି ତୋତେ ॥୯୧୯୪॥
ହରି ଜଳ ଭୁଅ ଜେମନ୍ତେ ହୋଇବଇଂ ପାରି
ବେନି ଘଡ଼ି ଭିତରେଂ ମଣ୍ଡଳ ଭୁଅ ଭେଦକରି ॥୯୧୯୫॥
ହରି ତିନି ପୁର ମଧ୍ୟରେ ସୁଭଇ ସଙ୍ଖଧ୍ୱନି
ଶ୍ରୀହରି ଦୟାରେ ପାଣ୍ଡବେ କୌରୋବଙ୍କୁଂ ଜିଣି[2] ॥୯୧୯୬॥
ହରି ସୁମର ନରେ ବିପଦ କ୍ଷୟେ ଜାଇ
ରଣ ମରଣ ସଙ୍କଟ ସମ୍ପଦରେ ସାହି ॥୯୧୯୭॥
ହରି ସୁମର ନରେ ବିପଦ କ୍ଷୟେ ଜାଉ
ହରି ସୁମର ନରେ ସମ୍ପଦ ଗତି ହେଉ ॥୯୧୯୮॥
ହରି ସୁମର ନରେ ଅପୁତ୍ରିକ ପୁତ୍ରପାଇ
ହରି ସୁମର ନରେ ସିନ୍ଧୁରେ ନ ବୁଡ଼ଇ ॥୯୧୯୯॥
ହରି ସୁମର ନରେ ନ ପଡ଼ିବ ରୋଗ
ହରି ସୁମର ନରେ ପାଇବ ଐଶ୍ୱର୍ଯ ଭୋଗ ॥୯୨୦୦॥
ହରି ସୁମର ନରେ ପାପ ହେବ ମୋଚନ
ହରି ସୁମର ନରେ ଗମିବ ବିଷ୍ଣୁଂସ୍ଥାନ ॥୯୨୦୧॥
ହରି ସୁମର ନରେ ଫିଟିବ କାଳଫାସ
ଶ୍ରୀହରି ଆସ୍ରେ କରିଛି ସାରୋଳା ଚଣ୍ଡି ଦାସ ॥୯୨୦୨॥

## ରଣରେ ଭଗଦତ୍ତର ମୃତ୍ୟୁ

ସଂକର ମୁଖ ଚାହିଂ ପଚାରେ ଗୌରା
ଜଳ ଭୁଅ ଅର୍ଜୁନ ପାରି ହୋଇଲାକି ନୋହିଲା ॥୯୨୦୩॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି
ଜେତେବେଳେ ଅର୍ଜୁନ ବୋଇଲା ହରି ହରି ॥୯୨୦୪॥
ଚାରି ଅସ୍ୱକୁ ଟିପିଲେ ପିତବାସ
ଆକାସ ମାର୍ଗରେ ଲାଗିଲା ନନ୍ଦିଘୋଷ ॥୯୨୦୫॥
ଦେଖି ଭଗଦତ୍ତ ମାୟାସର କଲା
ଜଳ ଲହରି ଆକାସେ ଲାଗିଲା ॥୯୨୦୬॥
ହନୁମତକୁ ଚାହିଂ ବୋଇଲେ ଭଗବାନ
ପାତାଳକୁ ଏବେ ଚାପ ତୁ ବିମାନ ॥୯୨୦୭॥
ସୁଣି ହନୁମତ ବିଶ୍ୱମୂର୍ତି ହେଲା
ଆକାସରୁ ଚାପି ରଥ ପାତାଳରେ କଲା ॥୯୨୦୮॥
ପାତାଳରୁ ହନୁ ଟେକିଲାକ ରଥ
ଜଳଭୁଅ ଜିଣି କୁରୁ ଥାଟରେ ପ୍ରବେସତ ॥୯୨୦୯॥
ଦେଖିଣ କୌରୋବେ ଚାହାନ୍ତି ଜଳଜଳ
ଅର୍ଜୁନ ଡାକିଲା କୌରୋବେ ସମର ଏବେ କର ॥୯୨୧୦॥
ଅର୍ଜୁନକୁ ଦେଖି ଭଗଦତ୍ତ ଉଗାଳିଲା
କୋଟି କୋଟି ନାରାଜ ଟାଣିଣ ବିନ୍ଧିଲା ॥୯୨୧୧॥
ପ୍ରତିସର କରିଣ ଛେଦିଲା ଫାଲଗୁନି
ଦିବସ ଜାଇ ଦେଢ଼ ପ୍ରହର ରଜନି ॥୯୨୧୨॥
ଲାଗିଲା ରଣ ଗୋଳ ଘୋର ଅନ୍ଧକାର
ବାରିଣ ନୋହିଲା କେହୁ ପର ଅପର ॥୯୨୧୩॥
ଭଗଦତ୍ତ ମହିମା କହିଲେ ନ ସରଇ
କୋଟିଏ ଛାଡ଼ିଦେଇ କୋଟିଏ ବିନ୍ଧଇ ॥୯୨୧୪॥
ଦିବ୍ୟ ଅବତାର ହୋଇଛି ଫାଲଗୁନି
ଭଗଦତ୍ତ ନାରାଜ ପକାଇ ସବୁ ହାଣି ॥୯୨୧୫॥
କର୍ଣ୍ଣ କୃପାଚାର୍ଯ୍ୟ ସଂକୁନି ଦୁସାସନ
ଆବର ବୟାସି ସାଗର ଅଟେ ସନ୍ୟ ॥୯୨୧୬॥
ଏହାଙ୍କର ତୁଲେ ଏକା ଭିମସେନ ରହିଂ
ରେ ରେ କାର କରିଣ ସଇନି ପିଟଇ ॥୯୨୧୭॥
ରଥ ଉପରେ କଚାଡ଼ଇ ଗଜ
କାହାକୁ ବିଧାମାରି କରଇ ପହିଜ ॥୯୨୧୮॥
ଭଗଦତ୍ତ ନାରାଜ ବିନ୍ଧିଲା ତିନିକୋଟି
ତିନିବାଣେ ତାହା କାଟିଲା କିରିଟି ॥୯୨୧୯॥
ପୁଣି ଭଗଦତ୍ତ ବିନ୍ଧିଲା ଲକ୍ଷେ ବାଣ
ମଞ୍ଚ ଆକାସେ ସହିତ କମ୍ପମାନ ॥୯୨୨୦॥
କୋଟିଏ ବାଣେ ତାହା ଛେଦିଲା ଧନୁର୍ଜଇ
ଜାଳାବଳିଂ[1] ବାଣ ଭଗଦତ୍ତ ବିନ୍ଧଇ ॥୯୨୨୧॥
ହାବୋଡ଼ା ସରେକ ବିନ୍ଧିଲା ଫାଲଗୁନି
ଭଗଦତ୍ତ ଧନୁ ସେ ପକାଇଲା ହାଣିଂ ॥୯୨୨୨॥

---

୧ । ଘ ପୋଥି – ଅପଯଶ

୨ । ଘ ପୋଥିରେ ନିମ୍ନରେ ଚାରି ଧାଡ଼ି ଅଧିକ ଅଛି–

ହରି ତୋହର ଆଜ୍ଞାକରି ଅଟଇ ଯେ ମୁହିଂ
ଜାହା ଆଜ୍ଞା ଦେବୁ ହରି ଶିରେ ଥିବି ରହି
ହରି ଯେକଥା ଯେବେ ତୋହର ନକରିବି
ଶ୍ରୀପଦ୍ମପାଦରେ ମୁହିଂ ଯେ ହାରିବି

୧ । ଘ ପୋଥି – କାଳବଳି

ନବତନ ଧନୁ ସେ ଧରିଣ ବିନ୍ଧିଲା
ସରେ ସର ବିନ୍ଧି ନନ୍ଦିଘୋସ ଘୋଡ଼ାଇଲା ॥୯୨୨୩॥
କୋପଭରେ ହୋଇଣ ବିନ୍ଧିଲାକ ପାଥ
ଭାଜିଂଲା ରହୁବର ବିରଥି ଭଗଦତ୍ତ ॥୯୨୨୪॥
ପାଦଗତି ହୋଇଣ କଲାକ ସମର
ରଜନି ପାହି ଉଦେ ହୋଇଲେ ଦିନକର ॥୯୨୨୫॥
ବାବଲା ସରେକ ଅର୍ଜୁନ ବିନ୍ଧିଲା
ରଥଚକ ତଳେ ଭଗଦତ୍ତ ଗଳିଗଲା ॥୯୨୨୬॥
ପେଲିଦିଲା ରଥ ପଡ଼ିଲା ଲଉଟି
ଗୋବିନ୍ଦ ଡାକଦିଲେ ରଥ ସମ୍ଭାଳ କିରଟିଂ ॥୯୨୨୭॥
ରଥକୁ ସମ୍ଭାଳି ତାର ରଖିଲା ବିର ହନୁ
ପବନା ନାରାଜ ବିନ୍ଧିଲା କୋଇନ୍ତାର ତନୁ ॥୯୨୨୮॥
ଉଡ଼ି ଭଗଦତ୍ତ ଲାଗିଲା ଗଗନ
ଭୁମିରେ ପଡ଼ି ଧଇଲା ନନ୍ଦିଘୋସ ଜାନ ॥୯୨୨୯॥
ତେଡ଼େ ବଡ଼ ରଥ ଧଇଲା ମୁଣ୍ଡିଯାଇ
ବିଚାରେ ସିନ୍ଧୁଜଳେ ଦେବଇଂ ପକାଇ ॥୯୨୩୦॥
ନନ୍ଦିଘୋସ ରଥକୁ ସିର ଯାଏ ଘେନି
ଦେଖିଣ ଧାଇଂଲେ କୌରୋବ ସଇନି ॥୯୨୩୧॥
ଡାକଇ ଦୁର୍ଯୋଧନ ରଥ ହେଲା ବନ୍ଦି
ନାରାଜ ବିନ୍ଧିଣ ପକାଅ ଏବେ ଭାଜିଂ ॥୯୨୩୨॥
ସୁଣିଣ ଧାଇଂଲେ ରଥି ମହାରଥି
ବିନ୍ଧିଲେ ନାରାଜ ନନ୍ଦିଘୋସ ଚଉକତି ॥୯୨୩୩॥
ଡାକିଲେ ଭଗବାନ ସମ୍ଭାଳ ଅର୍ଜୁନ
ଭଗଦତ୍ତ ସିରେ ତ ରହିଲା ବିମାନ ॥୯୨୩୪॥
ନୋହିଲା ଅଳିଚଳି ବେଢ଼ିଲେ କୌରୋବ
ଏହିକ୍ଷଣି ରଥ ନିକି ହୋଅଇ ଦହିଜ ॥୯୨୩୫॥
ଅର୍ଜୁନ ପ୍ରତିବାଚ ଥିଲେ ଏତେ ଏତେ ଯୋଧୀ
ଏ ମୋର ରଥକୁ କେହି ନକଲେ ବନ୍ଦି ॥୯୨୩୬॥
ତୋର ଦୟାଥିଲେ ଜିଣିବି ଏହାକୁ
ଏତେ ବୋଲି ନାରାଜ ବିନ୍ଧିଲା ସନ୍ୟଙ୍କୁ ॥୯୨୩୭॥
କୋଟି କୋଟି ସନ୍ୟ ପକାଇଲା ହାଣିଂ
ଅଧାଚନ୍ଦ୍ର ବାଣ ବିନ୍ଧିଲା ଫାଲଗୁନି ॥୯୨୩୮॥
ଭଗଦତ୍ତ ବେନି ଭୁଜ ପକାଇଲା ହାଣିଂ
ହନୁମନ୍ତକୁ ଠାରି ଦିଲେ ଚକ୍ରପାଣିଂ ॥୯୨୩୯॥
ବିଶ୍ୱମୃତି ହୋଇ ରଥ ଚାପିଲେ ହନୁମାନ
ଭଗଦତ୍ତ ଉପରେ ବସିଲା ବିମାନ ॥୯୨୪୦॥

୧ । ଘ ପୋଥି - ମାରୁତି

ପୃଥିରେ ପସିଗଲା ଭଗଦତ୍ତ ବିର
ପ୍ରାଣଛାଡ଼ି ଗୁଣ୍ଡା ହୋଇଲା ଶରିର ॥୯୨୪୧॥
ଉଠିଲା ନନ୍ଦିଘୋସ ମେଘରେ ଜେହ୍ନେ ସସି
ରଣ ଜୟେକଲା ସେ ବାସେବର ବଛି ॥୯୨୪୨॥
ବାଉନ ମଣ୍ଡଳକୁ ଭେଦିଲା ବିକୋଦର
ବହିଲା ରକ୍ତନଦି ଯୋଜନେ ଓସାର ॥୯୨୪୩॥
ଭଗଦତ୍ତ ପଡ଼ନ୍ତେ ଦେଖିଲା ଦୁର୍ଯୋଧନ
ହା ହା ଭଗଦତ୍ତ ବୋଲି ଭାଳଇ ମନେମନ ॥୯୨୪୪॥
ବିକୋଦରକୁ ଡାକି ଦିଲେ ମହାବାହୁ
ହୋଇଲା ରଣଜଏ ସମର ରହୁ ରହୁ ॥୯୨୪୫॥
ଏତେ ବୋଲି ହରି ଦିଲେ ସଙ୍ଖଧ୍ୱନି
ବାହୁଡ଼ିଲେ ବାରୁଣୀକୁ ଭିମ ଫାଲଗୁନି ॥୯୨୪୬॥
ଆଖଡ଼ା ସାଳେ ହରି ଥୋଇଲେ ନନ୍ଦିଘୋସ
ଦ୍ୱାରିକାକୁ ଗମନ କଲେ ପିତବାସ ॥୯୨୪୭॥
ବୋଲନ୍ତି ସାକାମ୍ୱେରି ସୁଣ ହେ ସଙ୍କର
ଭଗଦତ୍ତ ବୋଲିଣ ସେ କାହାର କୁମର ॥୯୨୪୮॥
ଏଡ଼େକ ସମର କଲା ପରିଘାଇ
ସୁଣଗୋ ଓମା ବୋଲି ସଦାସିବ କହିଂ ॥୯୨୪୯॥
ରାମକାଳି ବୋଲି ସେ ଭରଦ୍ୱାଜ ପତ୍ନି
ଦ୍ରୋଣଙ୍କ ବିର୍ଜେ ଗର୍ଭବାସ ତରୁଣିଂ ॥୯୨୫୦॥
ଦୋଚାରି ବୋଲି ମୁନି ଗୃହରୁ ଦୁର କଲେ
ନିରେଖ ହୋଇ ରାମକାଳି ବନସ୍ତେଂ ବୋଲିଲେ ॥୯୨୫୧॥
ନର୍ମଦା ନାମେ ଜେ ନଦି ମନୋହର ବନ
ସେ ତିର୍ଥେ ଅଛନ୍ତି ଅନେକ ମୁନିଜନ ॥୯୨୫୨॥
ସେ ବନରେ ଜାଇ ପ୍ରବେସ ରାମକାଳି
ଦୟାବହି ତାକୁ ରଖିଲେ ତପସାଳି ॥୯୨୫୩॥
କାଳେଂ ସେ ସୁନ୍ଦରି କୁମର ପ୍ରସବିଲା
ଦିନକୁ ଦିନ ତହିଂ କୁମର ବଢ଼ିଲା ॥୯୨୫୪॥
ସମୟେ ଜାନ୍ତେ ନାସ ଗଲା ତା ଜନନୀ
ପୁତ୍ରକୁ ପାଳିଲେ ଇଛାମନୁ ମୁନି ପୁଣିଂ ॥୯୨୫୫॥
ଭାଗ୍ୟେ ମିଳିଲା ଭଗଦତ୍ତ ନାମ ଦିଲେ
ଅନେକ ଧନୁବିଦ୍ୟା ଭଗଦତ୍ତକୁ ସିଖାଇଲେ ॥୯୨୫୬॥
ଜହୁଂ ଭଗଦତ୍ତ ମୁନିଙ୍କି ସେବାକଲା
ଭୁଅ ବିଦ୍ୟା ସହିତେ ଇଛାମନୁ ଦିଲା ॥୯୨୫୭॥
ସାଧିଲା କ୍ଷତ୍ରିବୃତି ମୁନିକୁ ସେବାକରି
ମଳୟ ଦେସରେ ସେ ହୋଇଲା ଦଣ୍ଡଧାରି ॥୯୨୫୮॥

ନିମନ୍ତ୍ରଣ କରନ୍ତେ ଭାରତ ରଣକୁ ଗଲା
ନନ୍ଦିଘୋସ ତଳେ ପ୍ରାଣ ହରାଇଲା ।।୯୨୫୯।।

## ଭୀମ ଓ ଦୁଃଶାସନ ଯୁଦ୍ଧ

ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ହସ୍ତିନାରେ ପ୍ରବେସ ହୋଇଲେ କୌରୋବ ।।୯୨୬୦।।
ସଞ୍ଜୟେ କହିଲା ଧୃତିରାଷ୍ଟ୍ରକୁ ଅନାଇଂ
ଅନେକ ସନ୍ୟ ତୋର ଭୁଅରେ ନାସ ଜାଇ ।।୯୨୬୧।।
ପ୍ରଥମେ ଦ୍ରୋଣଗୁରୁ ଚକ୍ର ଭୁଅ କଲା
ଅଭିମନୁ ନାରାଜେ ମଲେ ସତେ ରାଜା ଭଲା ।।୯୨୬୨।।
ବାର ଖର୍ବ ରଥ ଦସ[୧] ଖର୍ବ ରଥି
ନ କ୍ଷେଉଣିଂ ରାଉତ ମାହୁନ୍ତ ନବକୋଟି ।।୯୨୬୩।।
ଦୁତିଏ ସୁଚି ଭୁଅ ଦ୍ରୋଣେ ଆଚରିଲେ
ଅର୍ଜୁନ ସରେ ଅନେକ ସନ୍ୟ ମଲେ ।।୯୨୬୪।।
ଚକ୍ର ଭୁୟେଂ ଅଭିମନୁ ନାସ ଗଲା
ସାତ୍ୱିକି ହସ୍ତରେ ମଲେ ଭୁରିସର୍ବା ଭଲା ।।୯୨୬୫।।
ଯଦ୍ୟରଥ ମଲା ଦୁସୁଳାର ବର
ତଦନ୍ତେ ଗୋଳଯୁଦ୍ଧ ହୋଇଲା ରାତ୍ରର ।।୯୨୬୬।।
ଦୁସାସନ ହସ୍ତେଂ ମଲାକ ରଣପାକ୍ଷ[୨]
ଅଜ ସବରକୁ ନାସିଲା ଦୃଦକ୍ଷ ।।୯୨୬୭।।
ସମ୍ଭୁରାଣ ରାଜାକୁ ନାସିଲା ବିକୋଦର
ଇନ୍ଦ୍ରଲାଭ ନାସଗଲା ଶ୍ରୀଖଣ୍ଡି ହସ୍ତର ।।୯୨୬୮।।
ନିଳସେନକୁ ନାସକଲା ଦ୍ରୋପଦ ନନ୍ଦନ
ନଳବଳି ନୃପତିକି ନାସିଲା ଭିମସେନ ।।୯୨୬୯।।
ମହେନ୍ଦ୍ରସେନକୁ ନାସିଲା ଅଶ୍ୱସ୍ତମା
ଅର୍ଜୁନ ନାରାଜେ ମଲେ କୃପବ୍ରହ୍ମା[୩] ।।୯୨୭୦।।
ବୃକ୍ଷତମଳକୁ ନାସିଲେ ସହଦେବ ମନ୍ତ୍ରିବର
ପଡ଼ିଲା ସିବରାଜା ନାସିଲେ ରାଏ ସଲ୍ୟ ।।୯୨୭୧।।
ଦ୍ରୋଣଙ୍କର ସରେ ଜେ ପଡ଼ିଲା ବିରାଟ
ସଙ୍ଖ ସେତ ସହିତେ ଉତ୍ତର ତିନି ଚାଟ ।।୯୨୭୨।।
ଦ୍ରୋପଦକୁ ନାସିଲେ ଭରଦ୍ୱାଜ ଚାଟ
ଦୁଷ୍ଟଦୃମନ କାଟିଲା ଦ୍ରୋଣଙ୍କର ସିର ମକୁଟ[୪] ।।୯୨୭୩।।

୧ । ଘ ପୋଥି – ଚଉଦ
୨ । ଘ ପୋଥି – ରଣପାଛ
୩ । ଘ ପୋଥିରେ ବୃକ୍ଷଉମଳ ଠାରୁ ଉତ୍ତର ତିନି ଚାଟ ପର୍ଯ୍ୟନ୍ତ ନାହିଁ
୪ । ଘ ପୋଥି – ମାଥ

ଏତେକ ନାସଗଲେ ତୃତିଅ ଦିନର
ଚତୁର୍ଥଦିନ ସମର ସୁଣହେ ନୃପବର ।।୯୨୭୪।।
ତଦଅନ୍ତେ ଭଗଦତ୍ତ ମଣ୍ଡଳ ଭୁଅ କଲା
ବହୁତ ସନ୍ୟ ଭିମ ରାତ୍ରରେ ମାଇଲା ।।୯୨୭୫।।
ବାରକୋଟି ସନ୍ୟେଂ ସାତପଦ୍ମେଂ ରଥ
ଏତେକ ଘେନିଣ ପଡ଼ିଲା ଭଗଦତ୍ତ ।।୯୨୭୬।।
ସୁଣ ହୋ ରାଜା ବୋଲି ଗାଲବସୁତ କହିଂ
ସୁଣିଣ ବିସାଦ ଅମ୍ବିକାତନଇ ।।୯୨୭୭।।
ଦିନକର ଅସ୍ତ ହୋଇଲା ରାତ୍ରକାଳ
ସମସ୍ତ ଜନମାନ ରହିଲେ ନିଦ୍ରାର ।।୯୨୭୮।।
ଏଠାରେ ମଲେ ଗଜ ସହସ୍ରେ ବାର ଖର୍ବରଥ
ଚଉଦ ଖର୍ବ ରଥି ବାରକୋଟି ମାହୁନ୍ତ ।।୯୨୭୯।।
ବାରକୋଟି ସେନା ସାତପଦ୍ମେଂ ରଥ ନାସଗଲେ
ନଉଲକ୍ଷ ପନ୍ଦରସହସ୍ର ରାଉତ ଜେ ଭଲେ ।।୯୨୮୦।।
ଏତେକ ଅଭିମନୁ ମାରି ସ୍ୱର୍ଗପୁର ଗଲା
ଭଗଦତ୍ତ ଯୁଦ୍ଧରେ ଭିମ ଅର୍ଜୁନ ସନ୍ୟ ସହିତେ ମାଇଲା ।।୯୨୮୧।।
ସେନା ବାର ଅହିବ୍ରତ
ଏଗାର ପଦ୍ମ ରଥି ରାଉତ ମଲେତ ।।୯୨୮୨।।
ମୁଳଠିକ ଦିଲେ ସେ ସଂଜୟେ ମନ୍ତ୍ରିବର
ଏକଥା ସୁଣି ବିସ୍ମୟେ ଧୃତିରାଷ୍ଟ୍ର ନୃପବର ।।୯୨୮୩।।
କଥାକହୁଂ ରଜନି ପାହାନ୍ତି ହୋଇଲା
ଦେବଆଳରେ ସଙ୍ଖଧ୍ୱନି କୁକ୍କୁଟ ସବଦ ସୁଭିଲା ।।୯୨୮୪।।
ଉଠିଲେ ସନ୍ୟସେନା ସୌଚବନ୍ତ ହୋଇଲେ
କର୍ଣ୍ଣମୁଖ ଚାହିଂ ଦୁର୍ଯୋଧନ ବୋଇଲେ ।।୯୨୮୫।।
ଭୋ ମୈତ୍ର ଯେବେ ହୁଅ ସେନାପତି
ତୋହର ଭୁଜକୁ ମୋହର ଆସ ଅଛିଟି ।।୯୨୮୬।।
ଏତେ ବୋଲି ରାଜା ମକୁଟ ବାନ୍ଧିଲା
ଅପୁର୍ବ ଅଳଙ୍କାର ଅଙ୍ଗରେ ଖଞ୍ଜିଂଲା ।।୯୨୮୭।।
ସୁରପତି ସମାନେ ଦିସଇ ସୁର୍ଯବଳା
କାଳଚକ୍ର ପ୍ରାଏ ବୋଲାଇ ବେନିତୋଳା ।।୯୨୮୮।।
କହଇ କର୍ଣ୍ଣରଥି ସୁଣ ହେ ନୃପମଣି
ପାଣ୍ଡବନାମ ଏବେ ନ ଥୋଇବିଂ ଧରଣିଂ ।।୯୨୮୯।।
ସଲ୍ୟମାମୁ ଜେବେ ହୋଇବେ ସାରଥି
ତେବେ ପାଣ୍ଡେବ ସନ୍ୟ ପକାଇବି ମନ୍ଥି ।।୯୨୯୦।।
ହେଉ ହେଉ ବୋଇଲା ଗାନ୍ଧାରିର ସୁତ
ସଲ୍ୟ ବୋଇଲେ ମୁଂ ବାହିବିଂ ତୋର ରଥ ।।୯୨୯୧।।

ଏତେ ବୋଲି ସଲ୍ୟ ବାହିଲେ ରହୁବର
କାଳସର୍ପ ଚିହ୍ନ ବିରାଜେ ରଥର ॥୯୨୯୨॥
ସାତ ପାରାର୍ଦ୍ଧ ଗୁଞ୍ଜର ନବ ପାରାର୍ଦ୍ଧ ରଥ
ଚଉଦ ପାରାର୍ଦ୍ଧ ଅସ୍ୱ ବାର କୋଟି ମାହୁନ୍ତ ॥୯୨୯୩॥
ଏତେକ ସନ୍ୟ ଘେନି କର୍ଣ୍ଣ ହୋଇଲା ବାହାର
ସଲ୍ୟ ସାରଥି ବାହିଲା ରହୁବର ॥୯୨୯୪॥
ସନ୍ୟ ଗମନ୍ତେ ଗମିଲେ ମୁନ୍ୟେହି
ଯୁଧିଷ୍ଟିଙ୍କ ଅଗ୍ରତେ ଆଦିଅନ୍ତ କହି ॥୯୨୯୫॥
ବଦୟନ୍ତି ଯୁଧିଷ୍ଟି ସୁଣ ହେ ଭଗବାନ
କର୍ଣ୍ଣକୁ ସେନାପତି କଲା ଦୁର୍ଯୋଧନ ॥୯୨୯୬॥
ଭିସ୍ମଂ ଦ୍ରୋଣ ସବୁଦିନେ ଆମ୍ଭଙ୍କୁ ଥାନ୍ତି ସାହିଂ
ଆମ୍ଭର ଜେଷ୍ଟ କର୍ଣ୍ଣ ଆମ୍ଭଙ୍କୁ ହିଂସା ବହିଂ ॥୯୨୯୭॥
ବଦୟନ୍ତି ବାସୁଦେବ ସୁଣହେ ରାଜନ
ବେନିଦିନ ମଧ୍ୟରେ ନାସ ଜିବ କର୍ଣ୍ଣ ॥୯୨୯୮॥
ଏତେ ବୋଲି ରଥ ମଣ୍ଡିଲେ ଦେବହରି
ଅର୍ଜୁନ ବସିଲା ଗାଣ୍ଡିମ ଧନୁଧରି ॥୯୨୯୯॥
ସବୁ ସନ୍ୟ ସେନା ଆରୋହି ବାହାନ
ପ୍ରବେସ ହୋଇଲେ ଭାରତ ଭୁମି ସ୍ଥାନ ॥୯୩୦୦॥
ମିଳିଲେ ବେନିଥାଟ ଲାଗିଲେ ହଣାହଣିଂ
ସୁଣଗୋ ଓମା ବୋଲି ବୋଲନ୍ତି ସୁଳପାଣିଂ ॥୯୩୦୧॥
କର୍ଣ୍ଣ ଅର୍ଜୁନ ହୋଇଲେ ଭେଟାଭେଟି
କର୍ଣ୍ଣ ବିନ୍ଧିଲା ନାରାଜ ତିନିକୋଟି ॥୯୩୦୨॥
ପ୍ରତିସର କରିଣ ଛେଦିଲା ବାସେବି
ଲଉଟି କର୍ଣ୍ଣ ବିନ୍ଧିଲା ସଶ୍ର ଚାରି ॥୯୩୦୩॥
ଏକା ବାଣେ ଛେଦିଲା କୃଷ୍ଣସଖା ପାଥ
କୋପେ କର୍ଣ୍ଣ ବିନ୍ଧିଲା ନାରାଜ ଅହିବ୍ରତ ॥୯୩୦୪॥
କର୍ଣ୍ଣ ବୋଇଲା ମାମୁ ବାହା ରହୁବର
ଯୁଧିଷ୍ଟିଙ୍କ ସଙ୍ଗତେ କରିବି ସମର ॥୯୩୦୫॥
ଯୁଧିଷ୍ଟିଙ୍କି ନାସିଲେ ଯୁଧିଷ୍ଟି ନାମ ପାଇ
ସୁଣିଣ ସଲ୍ୟ ରହୁବର ବାହିଂ ॥୯୩୦୬॥
ପାଣ୍ଡବଙ୍କ ଥାଟ କର୍ଣ୍ଣ ଜାଏ ଛେଦି
ସେହି ସମୟରେ ଯୁଧିଷ୍ଟିଙ୍କି ହାବୋଡ଼ି ॥୯୩୦୭॥
ଦେଖିଣ ଭାରୋଇମଲ ବିନ୍ଧିଲା ସକତିଟି
ସକତି ବାଜି ହସ୍ତି କୁମ୍ଭଗଲା ଫାଟି ॥୯୩୦୮॥
ଧାଇଂ ଜାଇ କର୍ଣ୍ଣ ଧଇଲା ସେ ଯୁଧିଷ୍ଟିର ବାଳ
ଝିଙ୍କିଣ ବୋଇଲା ତୋ ଇଷ୍ଟ ଦେବତା ସୁମର ॥୯୩୦୯॥
ଯୁଧିଷ୍ଟି ସୁମରିଲେ କୋଇନ୍ତା ଜନନି
ଛାଡ଼ିଲାକ ବାଳ କୋଇନ୍ତା ନାମ ସୁଣି ॥୯୩୧୦॥
ଅଭିମାନେ ଯୁଧିଷ୍ଟି ଗମିଲେ ବାରୁଣା
ଭ୍ରମନ୍ତେ ନକୁଳ ହାବୋଡ଼ି କର୍ଣ୍ଣସେନା ॥୯୩୧୧॥
କର୍ଣ୍ଣ ବିନ୍ଧିଲା ବାଣ ଭାଜିଲା ରହୁବର
କର୍ଣ୍ଣ ଧଇଲା ଜାଇ ନକୁଳର ବାଳ ॥୯୩୧୨॥
କର୍ଣ୍ଣ ବୋଇଲା ହାଣିବିଂ ସୁମର ତୋ ଇଷ୍ଟ ଦେବତା
ନକୁଳ ବୋଇଲେ ମୋତେ ରଖିବେ କୋଇନ୍ତା ମାତା ॥୯୩୧୩॥
ମାତା ନାମ ସୁଣି କର୍ଣ୍ଣ ବାଳ ଛାଡ଼ିଦିଲା
ସଲ୍ୟ ବୋଇଲା କର୍ଣ୍ଣରେ ପହିଜ କଲୁଂ ଭଲା ॥୯୩୧୪॥
ଯୁଧିଷ୍ଟି ନକୁଳକୁ ଧରି ଛାଡ଼ିଦିଲୁଂ
ପାଣ୍ଡବଙ୍କୁ ନାସି କେହ୍ନେ କୌରୋବଙ୍କୁ ରଖିବୁ ବୋଇଲୁଂ ॥୯୩୧୫॥
କର୍ଣ୍ଣ ବୋଇଲା ମାମୁ ଏମନ୍ତ ନୋହଇ
ଗୁରୁ ଦକ୍ଷିଣା ମୋତେ ଜନନି ମାଗିଛଇ ॥୯୩୧୬॥
ହେଳା ନକର ମାମୁ ବାହା ମୋ ବିମାନ
ଆଜ ଅର୍ଜୁନକୁ କରିବିଂ ମୁହିଂ ନିଧନ ॥୯୩୧୭॥
ଏଥୁ ଅନ୍ୟନ୍ତରେ ପାଣ୍ଡେବ ସୁନ୍ଦର
କଳିଙ୍ଗସେନ ସଙ୍ଗେ କରଇ ସମର ॥୯୩୧୮॥
ନବଲକ୍ଷ ଗୁଞ୍ଜର ନବଲକ୍ଷ ହସ୍ତିଂ
ନବଲକ୍ଷ ରଥ ନବଲକ୍ଷ ପାଦାନ୍ତି ॥୯୩୧୯॥
ଏତେକ ସନ୍ୟ ଘେନି କଳିଙ୍ଗସେନ ଯୁଦ୍ଧ କଲା
ବେନି ବାଉନଭାର ଗଦା ଭିମ ବୋଲାଇଲା ॥୯୩୨୦॥
ବହିଲା ଅଣଞ୍ଚାସ ପବନ ସନ୍ୟଗଲେ ଉଡ଼ି
କଳିଙ୍ଗସେନକୁ ଭିମ ଗଦାୟେଂ ପ୍ରହାରି ॥୯୩୨୧॥
କଳିଙ୍ଗସେନ ରାଜା ହୋଇଲାକ ନାସ
କୋପେଂ ସନ୍ୟଂ ପିଟଇ ପବନର ସିସ ॥୯୩୨୨॥
କୋପେ ବିକୋଦର ସଇନିଂ ପିଟଇ
ଦେଖିଣ ଓଗାଳିଲେ ଦୁର୍ଯୋଧନ ଭାଇ ॥୯୩୨୩॥
ଡାକିଲେ ରେ ରେ ପାଣ୍ଡବା ପୁରିଲା ତୋରକାଳ
ଏହିକ୍ଷଣି ତୋତେ ପେସିବୁ ଜମ ଆଳ ॥୯୩୨୪॥
ଭିମ ବୋଇଲାରେ କେ କାହାକୁ ମାରିବ
ଏହିକ୍ଷଣି ପରିଘାଇ ତୁମ୍ଭେମାନେ ଜୁଝ ସର୍ବେଂ[1] ॥୯୩୨୫॥
ସୁଣିଣ ଗାନ୍ଧାରିନନ୍ଦନ କୋପକଲେ
ଭିମସେନ ଉପରେ ନାରାଜ ବରସିଲେ ॥୯୩୨୬॥
ଭିମ ଅଙ୍ଗେ ବାଜିଣ ନ ଭେଦିଲା ସର
ବେନି ବାଉନ ଗଦା ପିଟିଲା ବିକୋଦର ॥୯୩୨୭॥

୧ । ଘ ପୋଥି – ବୁଝ ସର୍ବେ

ଗଦା ବାଜିଣ ମଲେ ଧୃତିରାଷ୍ଟ୍ର ବାଳ
ସେଦିନ ଭିମସେନ ଅପୂର୍ବ ଅବତାର ॥୯୩୨୮॥
ମାରିଣ ପଦାକଲା ଦୁର୍ଯୋଧନ ସହୋଦର
ବିଶ୍ୱମୂତି ହୋଇଛି ପବନ କୁମର ॥୯୩୨୯॥
ଦୃବିନ୍ଦ ଦୃଚାନ୍ଧ[1] ଦୃକର୍ଣ୍ଣ ଦୁରାମୟ
ଦୃସିରା ଦୃମିରା ଦୃଭାଳ ଦୃବାଳ
ଏମନ୍ତେ ଦୁର୍ଯୋଧନର ସତାନବେ ସହୋଦର ॥୯୩୩୦॥
ସମସ୍ତଙ୍କୁ ମାରି ଭିମସେନ ସୁଆଇଲା
ମଲରେ କୌରୋବା ବୋଲିଣ ବାହୁଡ଼ିଲା ॥୯୩୩୧॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି
କର୍ଣ୍ଣର ସଙ୍ଗେ ଜୁଝଇ ମହାବଳି ॥୯୩୩୨॥
କୋପେ ଅର୍ଜୁନ ବିନ୍ଧିଲା ସତେବାଣ
କର୍ଣ୍ଣରଥ ଘୁଞ୍ଚିଲା ସତେଭୋଡ଼ା ପୁଣ ॥୯୩୩୩॥
କର୍ଣ୍ଣ ବୋଇଲା ମାମୁ ବିମାନ ସମ୍ଭାଳ
ସଲ୍ୟରଥ କଲାନେଇ ଅର୍ଜୁନ ଆଗର ॥୯୩୩୪॥
କୋପେଂ କର୍ଣ୍ଣରଥି କଲାକ ପହିଜ
ଡାକିଲା ଅର୍ଜୁନଙ୍କୁ ତୋ ରଥ ହେବ ଦହିଜ ॥୯୩୩୫॥
ଏତେ ବୋଲି କର୍ଣ୍ଣ ଲକ୍ଷେଂ ସର କଲା
ନନ୍ଦିଘୋସ ରଥ ସତେଭୋଡ଼ା ଘୁଞ୍ଚଗଲା ॥୯୩୩୬॥
ଜେତେବେଳେ ଘୁଞ୍ଚଗଲା ନନ୍ଦିଘୋସ ଜାନ
ସାଧୁ କର୍ଣ୍ଣ ବୋଲିଣ ଡାକିଲେ ଦେବଗଣ ॥୯୩୩୭॥
ସାଧୁ କର୍ଣ୍ଣ ବୋଲି ବୋଇଲେ ଗୋବିନ୍ଦ
ସୁଣିଣ ଫାଲଗୁନି ପାଇଲେ ବିସାଦ ॥୯୩୩୮॥
ଗୋବିନ୍ଦ ମୁଖଚାହିଂ ପାଥ ପଚାରିଲା
ଅଧର୍ମ କଥା ତ କହିଲ ଚକାଡୋଳା ॥୯୩୩୯॥
କର୍ଣ୍ଣ ରଥ ମୁଂ ସତେବାର ଘୁଞ୍ଚାଇଲି
କେହି ନ ବୋଇଲେ ମୋତେ ସାଧୁ ଫାଲଗୁନି ॥୯୩୪୦॥
ଏକାବେଳେ କର୍ଣ୍ଣ ମୋର ରଥ ଘୁଞ୍ଚାଇଲା
ସାଧୁ କର୍ଣ୍ଣ ବୋଲିଣ ବୋଇଲୁ ଚକାଡୋଳା ॥୯୩୪୧॥
ହରି ବୋଇଲେ ପାଥ ହୋଇଲୁ କି ବାଇ
ମନ୍ଦର ହୁଂ ଭାରି ଏ ରଥ ଅଟଇ ॥୯୩୪୨॥
ଅଷ୍ଟକୁଳାନାଗ ଆବର ଦେବଗଣ
ଚାରିଯୋଗ ସହିତେ ଅଛନ୍ତି ବିମାନ ॥୯୩୪୩॥
ଅସେସ ବ୍ରହ୍ମାଣ୍ଡ ମୁଂ ବହିଛି ଗର୍ଭର
ସାରଥି ହୋଇଅଛି ମୁଂ ନନ୍ଦିଘୋସ ରଥର ॥୯୩୪୪॥

୧ । ଘ ପୋଥି – ଦୃଚାନ୍ଦ

ବସିଛି ହନୁମତ ହୋଇଣ ମହାଭାର
କର୍ଣ୍ଣ ରଥ ବାବୁ ସିମୁଳି ତୁଳା ପରିଂ ॥୯୩୪୫॥
ଏଡ଼େ ଗୋଟା ରଥକୁ କର୍ଣ୍ଣ ଦିଲା ପେଲିଂ
ତେଣୁ କରି ସାଧୁ ବୋଲି ମୁହିଂ ଜେ ଡାକିଲିଂ ॥୯୩୪୬॥
ଏଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ତୃତିୟ ପ୍ରହର ଜହୁଂ ହୋଇଲେ ଅସ୍ୱମାଳି ॥୯୩୪୭॥
ଧୃତିରାଷ୍ଟ୍ର ପୁତ୍ରକୁ ନାସି ଭିମସେନ
ବାହୁଡ଼ି ମିଳିଲା ଜହିଂ ଅଛନ୍ତି ଭଗବାନ ॥୯୩୪୮॥
ଦେବଦତ ସଙ୍ଖ ଫୁଙ୍କିଲେ ଅର୍ଜୁନ
ପଞ୍ଚୁଜନ[1] ସଙ୍ଖ ଶୁଭଇ ଘନ ଘନ ॥୯୩୪୯॥
ଡାକିଲେ ଭଗବାନ ସମର ରହୁ ପୁଣ
ସମର ଛାଡ଼ିଣ ରହିଲେ ସର୍ବ ସନ୍ୟ ॥୯୩୫୦॥
ରହିଲା ସମର ଗମିଲେ ସଇନି
ବାରୁଣାରେ ପ୍ରବେସ କୃଷ୍ଣ ଫାଲଗୁନି ॥୯୩୫୧॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି
ଅର୍ଘ୍ୟଘେନି ଚାଲୁଛନ୍ତି ଦ୍ରୁପଦ ଦୁଲାଳି ॥୯୩୫୨॥
ଭିମକୁ ବୋଇଲେ ଆଜ ମଲାକି ଦୁସାସନ
ତାହାର ରୋଧିରେ ମୁ କରିବିଂ ସ୍ନାହାନ ॥୯୩୫୩॥
ଭିମ ବୋଇଲା ଗୋ ଛୟାଲବେ ଭ୍ରାଥକୁ ମାଇଲିଂ
କାହିଂଗଲା ଧୁସାସନ ଭେଟ ନ ପାଇଲିଂ ॥୯୩୫୪॥
ସୁଣିଣ ପଞ୍ଚାଳି ଅର୍ଘ୍ୟ କଟାଡ଼ିଲେ
ସୃଗାଳକୁ ନାସି ସିହଂକୁ ଛାଡ଼ି ଅଇଲୁ ଭଲେ ॥୯୩୫୫॥
ଧିକ ବିକୋଦର ଧିକ ତୋର ଗଦା
ଧିକ ମୋହର ଜିବନ ପ୍ରତିଜ୍ଞା କଲି ଅବା ॥୯୩୫୬॥
ବନ୍ଧ୍ୟା ସ୍ତିରି ସଙ୍ଗତେ ଗଣନା ହୋଇଲିଂ
ଧିକ ମୋହର ଜୀବନ[2] ପ୍ରତଜ୍ଞା କିପାଂ କଲିଂ ॥୯୩୫୭॥
ଦ୍ରୋପଦି ବଚନେ ଭିମସେନ କୋପବହିଂ
ବୋଇଲା ଭିମସେନ କୋପ ନକର ମହାମାଇ ॥୯୩୫୮॥
କାଲିର ଯୁଦ୍ଧେ ମୁଂ ନାସିବି ଦୁସାସନ
ମୁକଳିତ କେସ ମୁଂ କରିବିଂ ବନ୍ଧନ ॥୯୩୫୯॥
କାଲି ଯଦି ଦୁସାସନକୁ ନ ମାରଇଂ
ତୋର ପାକାଶ୍ରୋଣିରେ ସ୍ନାହାନ କରଇଂ ॥୯୩୬୦॥
ସଂସାର ମଧ୍ୟରେ ଅଛଇ ଯେତେ ପାପମାନ
ଦୁସାସନକୁ ନ ମାଇଲେ ସେ ପାପରେ ନିପୁଣ ॥୯୩୬୧॥

୧ । ଘ ପୋଥି – ପଞ୍ଚଜନ୍ୟ
୨ । ଘ ପୋଥି – ମୁହିଂ ଚଣ୍ଡାଳୁଣି

କାଲି ନ ମାଇଲେ ଗାନ୍ଧାରି ତନଇ
ତେବେ ପ୍ରାଣ ନାସିବିଂ ମୁହିଂ ଅଗ୍ନିଂ ଖାଇ ॥୯୩୬୨॥
ଏମନ୍ତେ ବିକୋଦର ନିୟମ ଜହୁଂ କଲା
ବହୁତ ବିସାଦ ପାଇଲେଂ ଧର୍ମବଳା ॥୯୩୬୩॥
ଗରୁଡ଼ ପୃଷ୍ଠରେ ବିଜଏ ଭାବଗ୍ରାହିଂ
ଦ୍ୱାରିକା ଭୁବନେ ବିଜୟେ କଲେ ଜାଇଂ ॥୯୩୬୪॥
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର
ଥାଟ ଘେନି କର୍ଣ୍ଣ ବିଜୟେ ହସ୍ତିନାର ॥୯୩୬୫॥
ଭ୍ରାଥଙ୍କ ମରଣେ ଦୁର୍ଯୋଧନ ସୋକକରି
ଆହା ସ୍ୱାମି ବୋଲି କାନ୍ଦିଲେ ସର୍ବନାରି ॥୯୩୬୬॥
ଗାନ୍ଧାରି ଧୃତିରାଷ୍ଟ୍ର ବୈକୁଳ ହେଲେ
ପୁତ୍ର ଛୟାଣ୍ଡବେ ସେ ଏକାବେଳେ ମଲେ ॥୯୩୬୭॥
ସଙ୍କୁନି ଖଳ ମନ୍ତ୍ରି ହୋଇଲା ଆମ୍ଭ କାଳ
ପିତୃରଣ ସୁଝିଣ ବୁଡ଼ାଇଲା ଆମ୍ଭ କୁଳ ॥୯୩୬୮॥
ବହୁତ ଉଚ୍ଛନ୍ନ ହୋଇଲା ଭୁବନ
ଦେଢ଼ ପ୍ରହର ରଜନିରେ କଲେକ ସୟନ ॥୯୩୬୯॥
ନିଦ୍ରାବତି ଘାରନ୍ତେ ପାହିଲା ରଜନି
ତାମ୍ରଚୁଡ଼ ଧ୍ୱନି ସୁଭିଲା ସଙ୍ଖଧ୍ୱନିଂ[1] ॥୯୩୭୦॥
ପୁର୍ବ ଦିଗେଂ ଉଦୟ କଶ୍ୟପର ବାଳ[2]
ଉଠିଲେ ସନ୍ୟ ସେନା ଜେ କୌରୋବ ବଳ ॥୯୩୭୧॥
ଦୁର୍ଯୋଧନ ଅଗ୍ରତେ କହିଲେ ମୁନ୍ୟେହି
ଦୁସାସନକୁ ମାରିତେ ପ୍ରତିଜ୍ଞା ଭିମବହିଂ ॥୯୩୭୨॥
ସୁଣି ମାନଗୋବିନ୍ଦ ପାଇଲା ବିସାଦ
ଆଜ ଦୁସାସନ ଭାଇ ଥିବୁ ପଛଭାଗ ॥୯୩୭୩॥
ମାରିବ ଭିମ ତୁହି ଜିଇଥିଲେ ବାବା
ପଞ୍ଚୁକଟକରେ ତୋ ପ୍ରସାଦେଂ ହେବି ରାଜା ॥୯୩୭୪॥
ସିର ଝୁଣି ଉଠିଲା ଦୁସାସନ ଜେନା
କାଲିଂ ଭାଇଙ୍କି ମୋର ମାରିଅଛି ଭିମା ॥୯୩୭୫॥
ଆଜ ଜାଇ ତାହାର ସଙ୍ଗତେ ଜୁଝିବିଂ
ତାହାକୁ ମାରି ଭାଇଙ୍କର କଷ୍ଟ ନିବାରିବି ॥୯୩୭୬॥
କର୍ଣ୍ଣ ପ୍ରତିବାଚ ମଇତ୍ର ନଭାଳଂ ହେ ତୁମ୍ଭେ
ପଞ୍ଚୁ ପାଣ୍ଡେବଙ୍କୁ ଆଜ ନାସିବୁଂ ରଣମଧ୍ୟେ ॥୯୩୭୭॥
ସୁଣି ପ୍ରତିବାଚ ପଲଙ୍ଗା ନାରାୟଣ
ଯଦ୍ୟରଥ ନିମନ୍ତେ ପୁର୍ବେ କହୁଥିଲେ ଗୁରୁଦ୍ରୋଣ ॥୯୩୭୮॥

୧ । ଘ ପୋଥି – ତାମ୍ରଚୋଡ଼ ରାବିଲା ଘନ ଘନ ବାଣି
୨ । ଘ ପୋଥିରେ ଏହି ଚାରି ଧାଡ଼ି ନାହିଁ

ରଖିଲେ ଭୁଅ କରି ଯଦ୍ୟରଥ ମଲା
ଦୁସୁଳା ବହେଣି ମୋର ବିଧବା ହୋଇଲା ॥୯୩୭୯॥
କର୍ଣ୍ଣ ବୋଇଲା ଦ୍ରୋଣ ନିସତ ହୋଇଲା
ସାଂଗ୍ରାମ କାଳେ ସହସ୍ର ଛାଡ଼ି ପ୍ରାଣ ଦିଲା ॥୯୩୮୦॥
ଏକା ସଲ୍ୟମାମୁ ଜେବେ ମୋହର ସାରଥି
ତେବେ ପାଣ୍ଡବଙ୍କୁ ନ ରଖିବି ଏ ପୃଥି ॥୯୩୮୧॥
ଜାଅ ଜାଅ ମାମୁ ସାଜ ମୋ ବିମାନ
ସନ୍ୟ ସାଜ ବୋଲିଣ ସୁଭିଲା ବୟାଣ ॥୯୩୮୨॥
ସନ୍ୟ ସାଜ ହେଲେ ବିସାସତେ କାଠି
ବିରବେସ ହୋଇଲା କର୍ଣ୍ଣ ସେନାପତି ॥୯୩୮୩॥
ସଲ୍ୟ ରହୁବର ମଣ୍ଡିଣ ଜୋଗାଇଲା
ଧନୁସର ଘେନିଣ କର୍ଣ୍ଣ ବିଜେ କଲା ॥୯୩୮୪॥
ନେତ ପତଙ୍ଗ ଉଡ଼ଇ ଫରହର
ଧନ୍ୟରେ କାଳସର୍ପ କରଇ ଫୁ ଫୁ କାର ॥୯୩୮୫॥
ଯୁଦ୍ଧକୁ କୌରୋବେ କରନ୍ତି ପଳାଣିଂ[1]
କର୍ଣ୍ଣ ସେନାପତି ହୋଇଛି ଆଗିଆଣି ॥୯୩୮୬॥
ଏଥୁ ଅନନ୍ତରେ ଦେବ ଚକ୍ରଧର
ଜୋଚିଲେ ଚାରି ଅସ୍ୱ ସାଜିଲେ ରହୁବର ॥୯୩୮୭॥
ଦିବ୍ୟ ଅବତାର ହୋଇଲେ ଫାଲଗୁନି
ରଥରେ ବସିଲା ଗାଣ୍ଡିମ ଧନୁ ଘେନି ॥୯୩୮୮॥
ବିମାନ ଉପରେ ବସିଲା ବିକୋଦର
ଧର୍ମର ନନ୍ଦନ ଆରୋହିଲେ କରିବର ॥୯୩୮୯॥
ଏହିରୁପେ ରଥି ରାଉତ ବାହାନେ
ଆୟଧମାନ ଘେନି ଯୁଦ୍ଧକୁ ପୟାଣେ ॥୯୩୯୦॥
ମିଳିଲେ ରଣଭୁମି ଲାଗିଲା ସମର
ଅସ୍ୱକୁ ଦେଖି ଉଗାଳେଂ କରିବର ॥୯୩୯୧॥
ରାଉତକୁ ରାଉତ ଉଗାଳଇ
ରଥିକି ଦେଖି ରଥି ସେହୁ ଝାମ୍ପ ଦେଇ ॥୯୩୯୨॥
ନକୁଳ କୃପ ଆଚାର୍ଯ ହୋଇଲେ ଭେଟାଭେଟି
ସହଦେବ ସଙ୍କୁନି ଯୁଝିଲେ ପାଲଟି ॥୯୩୯୩॥
ଦୃଷ୍ଟଦୁମ୍ନ ସଙ୍ଗତେ ରତୁମାଳି
ଶ୍ରୀଖଣ୍ଡି ଜଏସେନ ଲାଗିଲେକ କଳି ॥୯୩୯୪॥
ବିକର୍ଣ୍ଣ ସଙ୍ଗତେ କିସୋରି[2] ରାଜନ
ପଦ୍ମ କିସୋରି ସଙ୍ଗତେ କୁମାର ଲକ୍ଷ୍ମଣ ॥୯୩୯୫॥

୧ । ଘ ପୋଥି – ପୟାଣି
୨ । ଘ ପୋଥି – କେସରି

ଏମନ୍ତେ ରଥି ରାଉତେ[1] ଜୁଝିଲେ
କର୍ଣ୍ଣ ଅର୍ଜ୍ଜୁନ ସମର ଘୋର କଲେ ||୯୩୯୬||
କୋପେ କର୍ଣ୍ଣରଥି ବିନ୍ଧିଲେ ଲକ୍ଷେଂସର
ପ୍ରତିସରେ ଛେଦିଲା ବାସେବ କୁମର ||୯୩୯୭||
କୁହୁକା ନାରାଜ କର୍ଣ୍ଣ ଦିଲା ବିନ୍ଧି
ଦିବସେ ଅନ୍ଧକାର ଘୋଟିଲା ତିମିରି ||୯୩୯୮||
ଅର୍ଜୁନ ବିନ୍ଧିଲା ସୁର୍ଯାବ୍ରତେ ସର
ଉଦୟେ ଅଶ୍ୱମାଳି ତୁଟିଲା ଅନ୍ଧାର ||୯୩୯୯||
କୋପେଣ କର୍ଣ୍ଣ ଜେ ବିନ୍ଧିଲା ଅଗ୍ନିଂ ନାମେ ସର
ସାଂଗ୍ରାମ ଭୁମି ଜାକ ହୋଇଲା ଆଲୋଳ ||୯୪୦୦||
ଆକାସ ଗଙ୍ଗା[2]କଇ ସିଖା ଲାଗୁଛଇ
ସୁନ୍ୟେ ଦେବତାଏ ନ ପାଇଲେ ସହିଂ ||୯୪୦୧||
ଦେଖିଣ ଫାଲଗୁନି ଜଳସର[3] କଲା
ଜଳ ବରସନ୍ତେ ଅଗ୍ନି ଲିଭିଗଲା ||୯୪୦୨||
ଭିମ ଦୁସାସନ ହୋଇଲେ ଭେଟାଭେଟି
ରହ ରହ ବୋଲିଣ ଡାକିଲା ମାରୁତି ||୯୪୦୩||
ମୋର ବାଳେକ ଭାଇକିରେ ମୋର ନାସକଲୁ
ଆଜ ନାସ ଜିବୁ ମୋ ଅଗ୍ରତେ ପଡ଼ିଲୁଂ ||୯୪୦୪||
ଭିମ ବୋଇଲାରେ ସତ କହିଲୁଂରେ ଭାଇ
କାଲି ତୋ ଭ୍ରାତ ମଲେ ତୁ ପଳାଇଲୁ କାହିଂ ||୯୪୦୫||
କାଲି ଦିନ ତୋହର ପରମାୟୁସ ଥିଲା
କାଲି ତେଣୁ ତୁହି ନମରି ଜିଇଲୁରେ ଭଲା ||୯୪୦୬||
ଆଜ ପରମାୟ ପୁଛିଲାକ ଜମ
ତୋହର ରୁଧିରେ ଦ୍ରୋପଦି କରିବେ ସ୍ନାହାନ[4] ||୯୪୦୭||
ଜିଗ୍ନସେନିଠାରେ ନିୟମ ଅଛି କରି
ତା କେସ ବନ୍ଧାଇବି ତୋ ଭୁଜ ଉପାଡ଼ି ||୯୪୦୮||
ସୁଣି ଦୁସାସନ ବିନ୍ଧିଲା ତିକ୍ଷମୁନା
ବିକୋଦର ରଥ ହୋଇଲାକ ଚୁନା ||୯୪୦୯||
ପାଦଗତି ହୋଇ ଭିମ ପିଟିଲା ଗଦାବର
ମସିଗୁଣ୍ଡା ହୋଇଲା ଦୁସାସନ ରହୁବର ||୯୪୧୦||
ପାଦଗତି ହୋଇଲା ଗାନ୍ଧାରି ତନଇ
ଲାଗିଲେ ଗଦା ପିଟାପିଟି ବେନି ଭାଇ ||୯୪୧୧||

୧ । ଘ ପୋଥି – ମାହୁନ୍ତ
୨ । ଘ ପୋଥି – ମାର୍ଗ
୩ । ଘ ପୋଥି – ମେଘାସର
୪ । ଘ ପୋଥିରେ ଏହାପରେ ଅଧିକ ଅଛି –
ତାହାର ଅଗ୍ରତେ ମୁଂ କରିଛି ନିୟମ

ବୋଲାଇ ଗଦାବର ପିଟିଲା ଦୁସାସନ
ଭିମ ଅଙ୍ଗେ ପଡ଼ି ହୋଇଲାକ ନାସନ ||୯୪୧୨||
ଜହୁଂ ଦୁସାସନ ଗଦା ଭାଞ୍ଜିଗଲା
ଭିମସେନ ବୋଇଲା ପଳାଉଛୁ ଭଲା[1] ||୯୪୧୩||
ବେନି ବାଉନ ଭାର ଗଦା ବୋଲାଇଲା ଭିମ
ଉଲୁକା ପାତ ହେଲା ଚଉଦ ଭୁବନ ||୯୪୧୪||
କମ୍ପିଲା ଆକାସ କମ୍ପିଲା ବସୁମତି
କୁରାଳ ଚକ୍ର ପ୍ରାଏ ବୋଲିଲାକ ପୃଥି ||୯୪୧୫||
ନନ୍ଦିଘୋଷ ରଥ ହୋଇଲା ଅନ୍ତରାଳ
ଡାକିଲେ ଭାବଗ୍ରାହି କେତନ ସମ୍ଭାଳ ||୯୪୧୬||
ହନୁମତ ବୋଇଲା ରଥ ସମ୍ଭାଳି ରଖିବିଂ
ଭିମ ଦୁସାସନ ସମର ମୁଂ ଦେଖିବିଂ ||୯୪୧୭||
ଶ୍ରୀହରି ବୋଇଲେ ସମର ରହୁଂ ରହୁଂ
ଭିମ ଦୁସାସନ ସମର ଆଜ ହେଉ ||୯୪୧୮||
ସୁଣି ସମର ତେଜିଲେ ସେନାସନ୍ୟ
ଦେଖଣାହାରି ହୋଇ ରହିଲେ ବେନିଜନ ||୯୪୧୯||
ଜହୁଂ ଦୁସାସନ ଗଦା ଭାଜିଂଗଲା
ଭୟରେ ପଳାଇଲା ଧୃତିରାଷ୍ଟ୍ର ବଳା ||୯୪୨୦||
ଭିମ ଡାକ ଦିଲା ଦୁସା କିପାଂଇରେ ପଳାଉ
ତୁହି ପଳାଇଲେ ନ ଛାଡ଼େ ମୁହିଂ ଆଉ ||୯୪୨୧||
ଦୁସାସନ ବୋଇଲା ତୋ ହସ୍ତେ ଅଛି ଗଦା
ମୋ ଗଦା ଭାଜିଂଗଲା ହୋଇଛି ହସ୍ତସୁଧା ||୯୪୨୨||
ଭିମସେନ ବୋଇଲେ ତୋ ହସ୍ତେ ଗଦାନାହିଂ
ଏବେ ବେନି ଗଦା ଦେଉଛି ପକାଇ ||୯୪୨୩||
ଏ ବୋଲି ଗଦା ଫିଙ୍ଗିଦିଲାକ ଭିମ
ତୁଛା ହସ୍ତ ହୋଇଣ ରହିଲା ଦୁତି ଜମ ||୯୪୨୪||
ପୁଣି ବିରେ ଲାଗିଲେ ଧରାଧରି ମରାମରି
ଭୁମିରେ ପଡ଼ିଣ ହୋଇଲେ ଗଡ଼ାଗଡ଼ି ||୯୪୨୫||
କେ କାହାକୁ ଭୁମିରେ ମାଡ଼ିଣ ବସଇ
କେ କାହାକୁ ପୁଣି ପକାଇ ଲେଉଟାଇ ||୯୪୨୬||
ଭୁଜକୁ ଭୁଜ ଛନ୍ଦି ମୁଣ୍ଡକୁ ମୁଣ୍ଡ ମାରି
ଗର୍ଜନ କରନ୍ତି ଜେହ୍ନେ ମେଘ ଘଡ଼ଘଡ଼ି ||୯୪୨୭||
ଦେଉଳ ଅଟାଳି ଜଗତି ତରୁବର
ଭାଜିଂ ଚୁନା ହୋଇଲା ପଦା ଜେ ନବର ||୯୪୨୮||
ସଂଗ୍ରାମ ଭୁମିରେ ଜେତେ ଥିଲେ ମଡ଼ାପଡ଼ି
ଦୁହିଂଙ୍କ ନିଶ୍ୱାସେ ପବନେ ଗଲେ ଉଡ଼ି ||୯୪୨୯||

୧ । ଘ ପୋଥି – ରହ ମୁଂ ପିଟେ ଗଦା

ଖାଲ ଟିକର ଖଣା ତହିଂ ଜେତେ ଥିଲା
ଦୁହିଙ୍କ ଦେହ ବାଜି ସମତୁଲ ହେଲା ॥୯୪୩୦॥
ସତ୍ୟ ଯୋଗେ ଯେସନେ କେତୁ ମଙ୍ଗଳ
ତ୍ରେତୟାରେ ଯେହ୍ନେ ବାଳି ସୁଗ୍ରିବର ॥୯୪୩୧॥
ଦ୍ୱାପରେ ସେହି ସେ ଭିମ ଦୁସାସନ
ଯୋଗକୁ ଯୋଗ ତାଙ୍କର ଏହି ରୁପେ ରଣ ॥୯୪୩୨॥
ମହିରେ ବେନି ବିରେ ଲାଗନ୍ତି ଗଡ଼ାଗଡ଼ି
ବିକୋଦରକୁ ଦୁସାସନ ବସେ ମାଡ଼ି ॥୯୪୩୩॥
କଟିରେ ମାଡ଼ି ବସି ହୃଦରେ ମାରେ ବିଧା
ଡାକଇ ନିଶ୍ଚେ ତୁ ମଲୁରେ ପାଣ୍ଡବା ॥୯୪୩୪॥
ରେ ରେ ପାଣ୍ଡବା ଇଷ୍ଟ ଦେବତା ସୁମର
ରେ ରେ ପାଣ୍ଡବା ସୁମର ମାତା ପିଅର[1] ॥୯୪୩୫॥
ରେ ରେ ପାଣ୍ଡବା ପ୍ରତିଜ୍ଞା ବହିଲୁ
ରେ ରେ ପାଣ୍ଡବା ନିରେଖ ହୋଇଲୁ ॥୯୪୩୬॥
ରେ ରେ ପାଣ୍ଡବା ସୁତିଲୁ ରଣ ମଝି
ରେ ରେ ପାଣ୍ଡବା ଜମ ପୁଛିଲା ପାଞ୍ଜି ॥୯୪୩୭॥
ରେ ରେ ପାଣ୍ଡବା ଡାକ ତୋ ଦ୍ରୋପଦି
ରେ ରେ ପାଣ୍ଡବା ଶୋଇଲୁରେ କ୍ଷିତି ॥୯୪୩୮॥
ଏମନ୍ତେ ଦୁସାସନ ପ୍ରତିଜ୍ଞା ବହଇ
ପାଣ୍ଡବେ ବିକଳ ଆନନ୍ଦ କୁରୁସାଇଂ ॥୯୪୩୯॥
ବିଚାରେ ଦୁର୍ଯୋଧନ ଭିମସେନ ଜିବ ମରି
ଦୁସାସନ ପ୍ରସାଦେ ପଞ୍ଚୁକଟକେ ମୁଁ ଅଧିକାରି ॥୯୪୪୦॥
ଏଥୁ ଅନ୍ୟନ୍ତରେ ଯେ ଯୁଧିଷ୍ଟି ଗୋସାଇଂ
ହା ହା ବିକୋଦର ବୋଲି ରୋଦନ କରଇ[2] ॥୯୪୪୧॥
ଅର୍ଜୁନ ନକୁଳ ସନ୍ୟ ସହିତେ
ସମସ୍ତେ ବିସାଦ ହୋଇଲେ ଅଶୃ ନେତ୍ରେ ॥୯୪୪୨॥
ବୋଲନ୍ତି ଯୁଧିଷ୍ଟି ଗୋବିନ୍ଦ ମୁଖ ଚାହିଂ
ଭିମର ନିଧନେ ମରିବୁ ଚାରିଭାଇ ॥୯୪୪୩॥
ହସିଲା ସହଦେବ ଯୁଧିଷ୍ଟି ବୈରାଗେଂ
ଦେଖ ଗୋବିନ୍ଦ ହାସ୍ୟ କରୁଛି ସହଦେବେଂ ॥୯୪୪୪॥
ଭିମ ପରା ଭାଇ ମରୁଛି ମୋହର
ହସୁଛି ସହଦେବ ହୋଇବ ନୃପବର ॥୯୪୪୫॥
ସହଦେବ ପ୍ରତିବାଚ ସୁଣ ହେ ଚକ୍ରପାଣିଂ
ସମରେ ଭୋଳ ହୋଇ ଅଛନ୍ତି ପାବେନି ॥୯୪୪୬॥

୧ । ଘ ପୋଥି – ରେ ରେ ପାଣ୍ଡବା ଆୟସ ସରିଲା ତୋହର
୨ । ଘ ପୋଥି – ଫୁକାରଇ

ସତସିଙ୍ଘ ବୋଲି ହରି ଦିଅ ତୁ ଚେତାଇ
ସତେସିଙ୍ଘ ସୁମରି ଭିମ ପକାଇବେ ଲେଉଟାଇ[1] ॥୯୪୪୭॥
ସତେସିଙ୍ଘ ଗିରିର ସାପ୍ୟ ହୋଇଅଛି
ପ୍ରଥମ ସମରେ ସେ ହାରିବେ ମାରୁତି ॥୯୪୪୮॥
ଦୁତିଏ ସୁମରିବେ ସତେସିଙ୍ଘ ନାମ
ସତେ ଉତର ସିଙ୍ଘର ହୋଇବ ପରାକ୍ରମ ॥୯୪୪୯॥
ଦିଗପାଳ ହୋଇଲେ ତାକୁ ଜିଣିବେ ବିକୋଦର
ସୁଣ ହେ ହରି ବୋଲି ବୋଇଲା ମନ୍ତ୍ରିବର ॥୯୪୫୦॥
ସୁଣିଣ ଭାବଗ୍ରାହି କଲେକ ସଙ୍ଖ ଧ୍ୱନି
ସତେସିଙ୍ଘ ନାମ ଭିମ ସୁମରେ ପଡ଼ି ପୁଣି ॥୯୪୫୧॥
ସତେସିଙ୍ଘ ନାମ ଭିମ ସୁମରିଲା
ଦୁସାସନକୁ ଭିମ ଲେଉଟାଇ ମାଡ଼ିଣ ବସିଲା ॥୯୪୫୨॥
ହୃଦରେ ବିଧାମାରି ଡାକଇ ବିକୋଦର
ରେ ରେ କୌରୋବା ଇଷ୍ଟ ଦେବତା ସୁମର ॥୯୪୫୩॥
ରେ ରେ କୌରୋବା ପୁରିଲା ତୋର କାଳ
ରେ ରେ କୌରୋବା ଜିବୁରେ ଜମ ଆଳ ॥୯୪୫୪॥
ଆରେ ଗାନ୍ଧାରି ଜନ୍ମକଲା ଅନେଶ୍ୱିତ ପୁତ୍ର
ସବୁରି ମୃତ୍ୟୁ ରହିଲା ମୋହରି ଜେ ହସ୍ତ ॥୯୪୫୫॥
ରେ ରେ ଦୁର୍ଯୋଧନ କର୍ଣ୍ଣ ସଲ୍ୟ ସକୁନି
ମରୁଛି ଦୁସାସନ ପାରିଲେ ରଖ ପୁଣି ॥୯୪୫୬॥
ଅରେ ଆରେ ପାଣ୍ଡବେ ଦୃଷ୍ଟଦୁମନ
ପାରିଲେ ରକ୍ଷାକର ଗାନ୍ଧାରି ନନ୍ଦନ ॥୯୪୫୭॥
ଚନ୍ଦ୍ରସୁର୍ଯ୍ୟ ବରୁଣ କୁବେର ଆଖଣ୍ଡଳ
ପାରିଲେ ରକ୍ଷାକର ଧୃତରାଷ୍ଟ୍ର ବାଳ ॥୯୪୫୮॥
ଆହୋ କପିକେତନ କୃଷ୍ଣ ଫାଲଗୁନି
ପାରିଲେ ରକ୍ଷାକର ଦୁସାସନ ପୁଣି ॥୯୪୫୯॥
ତାହା ସୁଣି କୋପିତ ହୋଇଲା ଫାଲଗୁନି
ସର ପେସି ଭିମକୁ ପକାଇବି ହାଣି ॥୯୪୬୦॥
ଗୋବିନ୍ଦ ବୋଇଲେ ବାଇ ହୋଇଲୁରେ ତୁହି
ମୋହର ନୃସିଂହ ମୁରତି ଭିମ ହୋଇଛଇ ॥୯୪୬୧॥
ଏଥିକି ରହମାନ କେ ପୁଣି ହୋଇବ
ହର ବ୍ରହ୍ମା ବିଷ୍ଣୁ ହୋଇଲେ ହାରିଜିବ ॥୯୪୬୨॥
ଏଥକୁ ବିଚାର ନକର ପୁଣ ତୁହିଂ
ଏମନ୍ତ ବୋଲିଣ ଜେ ସଙ୍କର ଗଲେ କହି ॥୯୪୬୩॥

୧ । ଘ ପୋଥି – ସତେସିଙ୍ଘ ସୁମରି ଭିମ ଠାକୁରେ ଧୁସାସନକୁ ପକାଇବେ ଲେଉଟାଇ

ସଙ୍କର ମୁଖ ଚାହିଁ ପଚାରେ ଗଉରି
କିପାଇଂ ସାପ୍ୟ ଦିଲେ ସତେସିଙ୍ଘ ଗିରି ॥୯୪୬୪॥
ସୁଣଗୋ ଓମା ବୋଲନ୍ତି ସୁଳପାଣିଂ
ଅପୁତ୍ରିକ ହୋଇ ନାସଗଲେ ଅଗ୍ନିଂକାର ମୁନି ॥୯୪୬୫॥
ଜମକୁ କହି ଚିତ୍ର ଗୋପତ ପତ୍ର ପଢ଼ି
ଅପୁତ୍ରିକ ହୋଇଣ ଆସିଛି ତପଚାରି ॥୯୪୬୬॥
ଜମ ବୋଇଲା ମୁନି ହୋ କିପାଂ ବିଭା ନୋହିଲୁ
ମୁନି ବୋଇଲା ସନ୍ତାନ ନୋହିଲା ବିଭା ହୋଇଲୁଂ ॥୯୪୬୭॥
ଜମ ବୋଇଲା ଜେବେ ନୋହିଲା ପ୍ରଥମ
ଦୁତିଏ ହୁଅନ୍ତା ସେ ହୁଅନ୍ତା ନନ୍ଦନ ॥୯୪୬୮॥
ମୁନି ବୋଇଲେ ଦୁଇତିନି ହୋଇଲୁ ବିଭା ପୁଣ
କାହାରି ଗର୍ଭରେ ଜେ ନୋହିଲା ସନ୍ତାନ ॥୯୪୬୯॥
ଧନ ଦେଇ ପର ନାରିକୁ ହରନ୍ତୁ
ତହିଂରେ ପୁତ୍ର ଜନ୍ମ କରିଣ ଆସନ୍ତୁ ॥୯୪୭୦॥
ମୁନି ବୋଇଲେ ତାହି କଲି ନୋହିଲା ନନ୍ଦନ
ଏଥିରେ ନୋହିଲା ମୁନି କହିଲେକ ବହନ[୧] ॥୯୪୭୧॥
ତହିଂରେ ନୋହିଲା ବୋଲି ମୁନି ତ କହିଲୁ
ଅବିବେକ ପଣେ ଦିନ ତ ବଞ୍ଚିଲୁଂ ॥୯୪୭୨॥
ତୋହାର ଯୁବତିର ସୁଦ୍ଧସ୍ନାନ କାଳେ
ପର ପୁରୁସକୁ ପେସନ୍ତୁ ତେତେବେଳେ ॥୯୪୭୩॥
ତୋହାର ପତ୍ନି ସଙ୍ଗେ କରନ୍ତେ ରମଣ
ତାହାଙ୍କ ବିର୍ଜେ ତୋହର ହୁଅନ୍ତା ନନ୍ଦନ ॥୯୪୭୪॥
ମୁନି ବୋଇଲେ ଏହି ରୁପେଂ ମୁହିଂ କଲି
ନ ରହିଲା ରେତ ନୋହିଲା ସୁତ ପୁଣିଂ ॥୯୪୭୫॥
ଜମ ବୋଇଲା ପର ବାଳେକ ଗୋଟିଏ
ତାହାକୁ ପାଳିଥାନ୍ତୁ ସେ ହୋଅନ୍ତା ତନୟେ ॥୯୪୭୬॥
ମୁନି ବୋଇଲେ ପର ବାଳେକଂ ପୋସିଥିଲି
ସେହି ନାସଗଲା ବିଭା କରି ନ ପାରିଲି ॥୯୪୭୭॥
ଜନ୍ତୁପତି ବୋଇଲା ଜଦି ନୋହିଲା କୁମର
ତେବେ ଏ ମୁନିକି ପକାଅ ନର୍କର ॥୯୪୭୮॥
ମୁନିଙ୍କି ଘେନି ଜାନ୍ତେ ଧର୍ମପୁରୁଷ ଡାକଦିଲେ
ପୁତ୍ରଜାତ କରି ମୁନି ଜନ୍ମାଉ ମହିରେ ॥୯୪୭୯॥
ଜମ ଛାଡ଼ିଦିଲା ମୁନି ମୃଗେକ ହୋଇଲା
ମୃଗୁଣି ସଙ୍ଗତେ ସୁରତି ରସକଲା ॥୯୪୮୦॥
ସହି ନ ପାରିଣ କୁରଙ୍ଗ ଡାକଦିଲା
ପଣ୍ଡୁ ନୃପତିକି ସବଦ ସୁଭିଲା ॥୯୪୮୧॥

୧ । ଘ ପୋଥି – କି ବୁଦ୍ଧି କରିବି ଯେବେ ମୋହର କରମ

ସବଦକୁ ଭେଦି ପଣ୍ଡୁ ବିନ୍ଧିଲାକ ସର
ନାରାଜ ପଡ଼ି ମୁନି ମୃଗଣି ଉପର ॥୯୪୮୨॥
ବେନି ଜନେ ଦେହେ ନାରାଜ ଗଲା ଗଳି
କୋପେ ପଣ୍ଡୁକୁ ସାପ୍ୟ ଦିଲା ତପସାଳି ॥୯୪୮୩॥
ଭାରିଜାର ସଙ୍ଗେ ତୁ ଅଙ୍ଗସଙ୍ଗ ହୋଇବୁ
ପଡ଼ିବ ନାରାଜ ତୋ ପ୍ରାଣ ବିସର୍ଜିବୁ ॥୯୪୮୪॥
ସେ କଥା ଜାଣି ପଣ୍ଡୁ ନଗଲା କୁନ୍ତି ପାସ
କୋଇନ୍ତା ମାଳ ଘେନି ସୁମରନ୍ତେ ଆଦିତ୍ୟ ପରବେସ ॥୯୪୮୫॥
ଆଦିତ୍ୟ ବିର୍ଜେ ଯୁଧିଷ୍ଟି ଜନ୍ମ ନେଲେ
ତଦନ୍ତେ କୋଇନ୍ତା ପବନକୁ ସୁମରିଲେ ॥୯୪୮୬॥
ପବନ ବିର୍ଜେ ସେ ହୋଇଲା ନନ୍ଦନ
ତାହାର ନନ୍ଦନ ହୋଇଲା ଭିମସେନ ॥୯୪୮୭॥
ପବନ ଚଳିଗଲା ପ୍ରବେସ ସାର୍ଦ୍ଦୁଳ
ଭୟେ କୁନ୍ତି ପଳାଇଲେ ପୁତ୍ର ପଡ଼ିଛି ଭୁମିର[୧] ॥୯୪୮୮॥
କୁମର ସୋକ କରନ୍ତେ ପାଦ ହଲାଇଣ
ସତେସିଙ୍ଘ ଗିରିରୁ ସିଙ୍ଘେକ ଭାଜିଲାକ ପୁଣ ॥୯୪୮୯॥
ପ୍ରଥମ ରଣେ ହାର ବୋଲି ଗିରି ଭିମକୁ ସାପ୍ୟଦିଲା
ସୁଣିଣ କୋଇନ୍ତା ଗିରିକି କୋପକଲା[୨] ॥୯୪୯୦॥
ପୁତ୍ରକୁ ସାପ୍ୟ ଦିଲୁ ତୋତେ ସାପ୍ୟ ଦେବି ଏବେ
ଏତେ ବୋଲି କୋନ୍ତି କ୍ରୋଧ ହେଲେ ତେବେ ॥୯୪୯୧॥
ଗିରି ବୋଇଲା କୋପ ନ କର ମହାମାଇ
ପ୍ରଥମେ ହାରିବ ସେ ତୋହାର ତନଇ ॥୯୪୯୨॥
ଦୁତିଏ ସୁମରିବ ସତେସିଂଘ ଗିରିନାମ
ଦିଗପାଳ ହୋଇଲେ ଜିଣିମ ତାକୁ ଭିମ ॥୯୪୯୩॥
ଏମନ୍ତ କଥାଗୋଟି ପୁର୍ବରୁ ଅଛଇ
ସୁଣ ଗୋ ଓମା ବୋଲି ସଦାସିବ କହି ॥୯୪୯୪॥

## ଦୁଃଶାସନର ରକ୍ତରେ ଦ୍ରୌପଦୀର ବେଣୀବନ୍ଧନ

ଏଥୁ ଅନ୍ୟନ୍ତରେ ସହଦେବକୁ ଭିମ ଡାକି
ବିଳମ୍ବ ନକରି ଘେନି ଆସ ଦ୍ରୋପଦିକି ॥୯୪୯୫॥
ଭିମ ଆଜ୍ଞା ପାଇଣ ସହଦେବ ଗଲା
ଦ୍ରୋପଦି ଘେନି ଭିମ ଛାମୁରେ ମିଳିଲା ॥୯୪୯୬॥
ଡାକଇ ବିକୋଦର ଦେଖ ଗୋ ଜିଜ୍ଞସେନି
ଏହି କି ଦୁସାସନ ଚିହ୍ନି ଥାଅ ପୁଣି ॥୯୪୯୭॥
ଦ୍ରୋପଦି ବୋଇଲେ ଏହି ଦୁସାସନ ଚାଣ୍ଡାଳ
ଲୁଚିଥିଲି ମୋହର ଜାଇ ଧଇଲା ବାଳ ॥୯୪୯୮॥
ପାକାଶ୍ରିତି ହୋଇଛି ମିଛ ଜେ କହିଲି ଜାଣି
ତେବେ ନ ଛାଡ଼ିଲା ମୋତେ ଝିଙ୍କି ନିଲା ପୁଣି ॥୯୪୯୯॥

୧ । ଘ ପୋଥି – ପୁତ୍ରକୁ ଛାଡ଼ିଣ
୨ । ଘ ପୋଥି – ଶାପ୍ୟଦିଲା

ଏକ ଦଣ୍ଡ ପ୍ରମାଣେ ହସ୍ତିନାରେ କଲା
ସେହିଦିନୁ କେସ ମୋର ହୋଇଛି ମୁକୁଳା ॥୯୫୦୦॥
ସୁଣିଣ ସିର ଝୁଣି ଉଠିଲା ବିକୋଦର
ମଲୁରେ କୌରୋବା ଇଷ୍ଟଦେବତା ସୁମର ॥୯୫୦୧॥
ଦସ ଦିଗପାଳକୁ ସାକ୍ଷ କରେ ଭିମ
ତୁମ୍ଭେ ଦେଖିଥାଅ ନାସ ଯାଉଛି ଦୁସାସନ ॥୯୫୦୨॥
ଏତେ ବୋଲି ଭିମ କଟିରେଂ ପାଦଦିଲା
କଣ୍ଠରେ ପାଦଦେଇ ଭୁଜକୁ ଓପାଡ଼ିଲା ॥୯୫୦୩॥
ଦ୍ରୋପଦିର ସିରେଂ ଢାଳିଲାକ ନେଇ
କେସ ଜରଜର ଦେହକୁ ବହିଜାଇ ॥୯୫୦୪॥
ସେ ଭୁଜ ଫିଙ୍ଗି ଦିଲା ଧଇଲା ସେଣାପକ୍ଷି
ପୁଣ ଆର ଭୁଜ ଧଇଲା ମାରୁତି ॥୯୫୦୫॥
ସେ ଭୁଜ ଜିଘ୍ନସେନି ସିରରେ ନିଉଣ୍ଡଇଂ
ଗଙ୍ଗା ଜମୁନା ସରସ୍ୱତି ଗଲେ ବହିଂ ॥୯୫୦୬॥
କେସ ତିନ୍ତି ଦେବିଙ୍କର ପଡ଼ଇ ତୁଣ୍ଡର
ଜିହ୍ୱାରେ ଲେହି ନିଅନ୍ତି ଦେହର ରୋଧିର ଧାର ॥୯୫୦୭॥
ଗାଢ଼ ଭୋଜନ ପାଇ ଜେହ୍ନେ ସନ୍ତୋଷ ବ୍ରାହ୍ମଣ
ସେହି ରୁପେ ଦେବିଂ ସନ୍ତୋଷଂ କଲେ ମନ ॥୯୫୦୮॥
ଜମୁନାରେ ସ୍ନାନସାରି ପିନ୍ଧିଲେ ଝିନ ପତନି
ଗୃହରେ ମିଳିଲେ ଦେବି ଅପୁର୍ବ ରୁପଘେନି ॥୯୫୦୯॥
ସେହି ସେ କେତୁକା ସେହି ସେ ଏକବଳା
ସେହି ସେ ଜିଘ୍ନସେନି ସେହି ସେ ସାରୋଳା ॥୯୫୧୦॥
ସେହି ସେ ଗ୍ରାମଦେବତି ମଙ୍ଗଳା ନାମ ପାଇ
ସେହି ସେ ଆଦ୍ୟଦେବି କାଳରାତ୍ରି ସେହିଂ ॥୯୫୧୧॥
ରୋଧିର ପାନେ ତାହାର ବହୁତ ସରଧା
ସଦାସିବ କହନ୍ତି ସୁଣଗୋ ଗିରିଜା ॥୯୫୧୨॥
ସେଣାପକ୍ଷି ଭୁଜଘେନି ବହୁତ ଦୁରଗଲା
ଲୋକାଲୋକି ପର୍ବତ ପରେ ବସିଣ ଖାଇଲା ॥୯୫୧୩॥
ସେହି ଗିରିପରେ ପଡ଼ିଲା ସରଳ
ସରଳେଂ ଗଳିଗଲେ ସପତକୋଟି[2] ମହ୍ଲର ॥୯୫୧୪॥
ବୋଲନ୍ତି ସାକାମ୍ୱେରି ସୁଣହେ ସଦାସିବ
ଧୁସାସନ ମଲାରେ କିସ କଲେ କୌରୋବ ॥୯୫୧୫॥
ଭୋଳାନାଥ ବୋଲନ୍ତି ସୁଣଗୋ ଦେବି ଓମା ଭଲା
ଦୁସସାନକୁ ମାରି ଭିମ ରଣ ଜୟେ କଲା[3] ॥୯୫୧୬॥

୧ । ଘ ପୋଥି – ହୃଷ୍ଟ
୨ । ଘ ପୋଥି – ସତର କୋଟି
୩ । ଘ ପୋଥି – ସେ ଦିନର ମଧ୍ୟେ ରଣେ ଜୟେ ହେଲା

ସଙ୍ଖଧ୍ୱନି ଦିଲେ ପ୍ରଭୁ ଭାବଗ୍ରାହିଂ[1]
ରଣଜୟେ ପତକା ରଥରେ ଉଡ଼ାଇ ॥୯୫୧୭॥
ପ୍ରବେସ ବାରୁଣାରେ ସମସ୍ତେ ଆନନ୍ଦ
ମଣ୍ଡିଲେ ଘରେ ଘର ହୋଇଲା ଉଛବ ॥୯୫୧୮॥
ଅର୍ଘ୍ୟସ୍ଥାଳି ଘେନିଣ ଜେ ବାହାର ଜିଘ୍ନସେନି
ଭଗବାନ ବୋଇଲେ ସୁଣ ତୁ ବିରମଣିଂ ॥୯୫୧୯॥
ଜେତେବେଳେ ଦେବି ଜାଚିବେ ତୋତେ ବର
ବୋଲିବୁ ତୋର ଖପରେଂ ଲୋହିବିଂ ପ୍ରହାର ॥୯୫୨୦॥
ଏମନ୍ତ ସମୟେ ପ୍ରବେସ ଜିଘ୍ନସେନିଂ
ଭିମସେନଂ ସିରେ ଢାଳି ବୋଇଲେ ପଦାର୍ଥେ ମାଗ ପୁଣିଂ[2] ॥୯୫୨୧॥
ବୋଇଲା ବିକୋଦର ତୁ ଆମ୍ଭର ଭାରିଜା
ତେଣୁ କିସ ପଦାର୍ଥେ ତୋତେ ଗୋ ମାଗିବା ॥୯୫୨୨॥
ଜେବେ ମୁଂ ମାଗିବିଂ ତୁ ସତମନେ ଦେବୁଂ
ତୋହାର ଖପରେ ମୋତେ ନ ଖାଇବୁ ॥୯୫୨୩॥
ଦ୍ରୋପଦି ବୋଇଲେ ତୋହର ବୁଧି ନୋହିଂ
ତୋତେ ଭଗବାନ ଦିଲେ ସିଖାଇ ॥୯୫୨୪॥
ଜେତେକ ସନ୍ୟ ବାବୁ ପଡ଼ିବେ ଭାରତ
ତାହାଙ୍କ ରୋଧିରେ ନ ପୁରିବ ପେଟ ॥୯୫୨୫॥
ଅର୍ଜୁନ ନକୁଳ ସହିତ ସହଦେବ
ଏସବୁ ହୋଇବେ ଖପରରେ ଅର୍ଘ ॥୯୫୨୬॥
ଏକା ଅଧଖପରେ ତୁହିସିନା ହେବୁଂ
କେମନ୍ତେ ଛାଡ଼ିବିଂ ତୋତେ ନିକଳିଣ ଜିବୁ ॥୯୫୨୭॥
ଭଲା ଜଗନ୍ନାଥ କରିଅଛି କପଟ
ଗୋଟି ଗୋଟି କରି କହୁଅଛି ସନ୍ଧି ବାଟ ॥୯୫୨୮॥
ନିସତେ ଯୁଧିଷ୍ଟି ବର ମାଗିଛଇ
ତୁହି କହୁଅଛୁ ପୁଣ ମାଗିବ ଧନୁର୍ଜଇ ॥୯୫୨୯॥
ଆଉ କାହାକୁ ମୁଂ କରିବିଂ ଭୋଜନ
ଖାଇବା ନିମନ୍ତେ ମୁ ତୁମ୍ଭକୁଂ ଦେଉଛି ରମଣ ॥୯୫୩୦॥
ଭଗବାନ ଆଗରେ କହ କି ନା ଜାଇ
ପରକୁ କିସ ରଖିବ ଆପଣେ ରହୁ ନାହିଂ ॥୯୫୩୧॥
ଏତେ ବୋଲି ଦେବିଂ ହୋଇଲେ କୋପମନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୯୫୩୨॥

## କର୍ଣ୍ଣର ମୃତ୍ୟୁ

ଏଥୁ ଅନ୍ୟନ୍ତରେ ଦେବ ଭାବଗ୍ରାହିଂ
ଆଖଡ଼ା ସାଳରେ ନେଇ ନନ୍ଦିଘୋସ ଥୋଇ ॥୯୫୩୩॥

୧ । ଘ ପୋଥି – ଚକାତୋଳା
୨ । ଘ ପୋଥି – ଭିମ ଶିରେ ଢାଳନ୍ତେ ବୋଇଲେ ପଦାର୍ଥେ ତୋତେ ଗୋ ମାଗୁଣି

ରହିଲେ ସନ୍ୟ ସେନା ଗମିଲେ ଭଗବାନ
ପ୍ରବେସ ହୋଇଲେ ସେ ଦ୍ୱାରିକା ଭୁବନ ||୯୫୩୪||
ବୋଲନ୍ତି ସାକାମ୍ୱେରି ସୁଣହେ ସଦାସିବ
ହସ୍ତିନାରେ କିସ କଲେକ କୌରୋବ ||୯୫୩୫||
ଗିରିଜାଙ୍କ ବାକ୍ୟେ ବୋଲନ୍ତି ତ୍ରିଲୋଚନ
ଦୁସାସନ ମଲାକୁ ସୋକ କଲା ଦୁର୍ଯୋଧନ ||୯୫୩୬||
ଗାନ୍ଧାରି ଧୃତିରାଷ୍ଟ୍ର ବହୁତ ସୋକକଲେ
ସଞ୍ଜୟ ମନ୍ତ୍ରି ତାଙ୍କୁ ସ୍ୟାନ୍ତି କରାଇଲେ ||୯୫୩୭||
ଅନ୍ତପୁରେଂ ଜାଇ ପ୍ରବେସ ଦୁର୍ଯୋଧନ
ଭାନୁମତି ରାଣି କଲାକ ଦ୍ରସନ ||୯୫୩୮||
ପାଦ ଧୋଇ ଦେଇ ଆସନେ ବସାଇଲା
ବୋଇଲା ନାଥ ଏବେ ସମର ନକର ଭଲା ||୯୫୩୯||
ପାଣ୍ତେବଙ୍କୁ ଏବେ ଦିଅ ଅଧେ ରାଜ୍ୟ
ସମସ୍ତେ ସ୍ଥିର ହୁଅ ନକର ଆଉ ଯୁଦ୍ଧ ||୯୫୪୦||
ଜାହାକୁ ସାହା ହୋଇଅଛନ୍ତି ଗୋବିନ୍ଦ
ତାହାଙ୍କ ସଙ୍ଗେ କିସ ତୁମ୍ଭର ଅଛି ବାଦ ||୯୫୪୧||
ଦେଖ ଭିସ୍ମଂ ମୋହମାନ ଦ୍ରୋଣ ସିରଛେଦ
ଏଣିକି ସମର କଲେ କେବେ ନାହିଂ ଲାଭ ||୯୫୪୨||
ମଲା ଯଦ୍ୟରଥ ଦୁସୁଲାର ବର
ପଡ଼ିଲା ଭାନୁମତ ମୋହର ପିଅର ||୯୫୪୩||
ପଡ଼ିଲେ ତୁମ୍ଭର ସତାଣ୍ତୋଇ ଭ୍ରାଥ[୧]
ପଡ଼ିଲା ଭୁରିସର୍ବା କୁରୁକୁଳ ବୃଦ୍ଧ ||୯୫୪୪||
ଭିମ ଫିଙ୍ଗିଦେଲା ଅସ୍ୱସ୍ତମା କାହିଂ ଗଲା
କୃପାଚାର୍ଯେଂ ସେ ଅପସରି ରହିଲା[୨] ||୯୫୪୫||
ଦୃଦକ୍ଷ ଛାଡ଼ିଗଲା ଦେଖିଣ ଅପଚଏ
କୃପବ୍ରହ୍ମା ସହିତେ ମଲେ କେତେ ରାୟେ ||୯୫୪୬||
ଜେତେକ ମଲେ ଗଲେଂ ଏତେକ ରହିଥାଉ
ନୋହୁ ଦ୍ୱନ୍ଦ ମନ୍ଦ ସୁଲଭ କରହେ ମହାବାହୁ ||୯୫୪୭||
ଦୁର୍ଯୋଧନ ବୋଇଲା ସଖି ହେଲୁ ବାଇ
ସ୍ତିରି ଲୋକ ତୋହର ଅଳପ ବୁଦ୍ଧି ହୋଇ[୩] ||୯୫୪୮||
ଅଷ୍ଟାଦସ ଦିବସ ହୋଇବ ସମର
ଜେହୁ ସେ ବ୍ରତିବ ସେ ହୋଇବ ନୃପବର ||୯୫୪୯||

୧ । ଘ ପୋଥିରେ ନିମ୍ନରେ ଅଧିକ ଅଛି –
ଅନେକ ସନ୍ୟ ସେନା ଯୁଦ୍ଧରେ ନାସ ଜାଇ
୨ । ଘ ପୋଥିରେ ଏହି ଧାଡ଼ିଟି ନାହିଁ
୩ । ଘ ପୋଥିରେ ଅଷ୍ଟାଦଶ ଦିବସ ଠାରୁ ନିଅତ ଅଛଇ ପର୍ଯ୍ୟନ୍ତ ନାହିଁ

ଜେହୁ ସେ ହାରିବ ତାହାର ଭାଗ ନାହି
ଏମନ୍ତ ବୋଲିଣ ନିୟତ ଅଛଇ ||୯୫୫୦||
ସମର କରିବା ଜାଏ ମୁଂ ସୁଚିମୁନେ ନ ଦେବଇ
ଭାରୋଇମଲ କର୍ଣ୍ଣ ମଇତ୍ର ଅଛଇ ||୯୫୫୧||
ସଲ୍ୟ ଧନୁର୍ଦ୍ଧର ଅଟଇ ରଣରଙ୍କା
ସଙ୍କୁନି ମାମୁ ମୋର ଅଟଇ ଜେ ସାଖା ||୯୫୫୨||
ଧନୁର୍ଦ୍ଧର କୃପଆଚାର୍ଯେଂ ସାମରଥ
ଦ୍ରୋଣଙ୍କର ସଳା ବସ୍ୱରଷିଙ୍କର ସୁତ ||୯୫୫୩||
ଦ୍ରୋଣଙ୍କର ସମାନେ ରଥି ଲକ୍ଷ୍ମଣ କୁମାର
ଆବର ସନ୍ୟ ଅଛନ୍ତି ବାଉନ ସାଗର ||୯୫୫୪||
ଏତେ ସନ୍ୟ ସେନା ଜେମନ୍ତେ ନାସଜିବେ
ମୁହିଂ ସମର କରିବି ପାଣ୍ତେବଙ୍କ ସଙ୍ଗେ ||୯୫୫୫||
ମୁହିଂ ଜେତେବେଳେ ହୋଇବି ନିଧନ
ତେତେବେଳେ ସିନା ପାଣ୍ଡବେ ନେବେ ଗ୍ରାମ ||୯୫୫୬||
ଏମନ୍ତ କହୁଂ କହୁଂ ରଜନି ଅର୍ଦ୍ଧହୋଇ
ପଲକେଂ ପହୁଡ଼ିଲା ଭାନୁବତିର ସାଇଂ ||୯୫୫୭||
ଖଟଣିହାରିମାନେ ସେବା ଲଗାଇଲେ
ସୟନ କରନ୍ତେ ଚଡ଼ାଇ ରାବଦେଲେ ||୯୫୫୮||
ଉଠିଲେ ସନ୍ୟସେନା କୌରୋବ ବଳ
ସୌଚବନ୍ତ ହୋଇ ହୋଇଲେ ଏକଠୁଳ ||୯୫୫୯||
ବିରବେସ ହୋଇଲା ରାଧେବର ବଳା
କାଳ ଅନଳ ଜୋତି ତେଜ ଅନର୍ଗଳା ||୯୫୬୦||
ଦୁର୍ଯୋଧନ ବୋଇଲା ମୈତ୍ର ତୁମ୍ଭଙ୍କୁ ମୋ ଆସ ଅଛଇ
ଜେମନ୍ତେ ମରନ୍ତି ସେ ଜେ ପାଣ୍ତେବ ପାଞ୍ଚଭାଇ ||୯୫୬୧||
ତାହାକୁଂ ନାସି ମୋତେ ରାଜ୍ୟ ଦେଇପାରୁ
ତେବେ ଜଗତେ ସୁଭିବ କର୍ଣ୍ଣ ହନ୍ତକାରୁ ||୯୫୬୨||
କର୍ଣ୍ଣ ବୋଇଲା ମୈତ୍ର ଦେଖ ଆଜ ରଣ
ପଞ୍ଚ ପାଣ୍ତେବକୁଂ ମାରି ନାସିବି ସବୁ ସନ୍ୟ ||୯୫୬୩||
ସଲ୍ୟ ବୋଇଲେ ପ୍ରଥମେ ସେନାପତି ହୋଇଲୁ
ଧୃତିରାଷ୍ଟ୍ର ଛୟାଣ୍ତୋଇ ପୁତ୍ରକୁ ମରାଇଲୁ ||୯୫୬୪||
ଦୁତିଏ ଧୁସାସନ ଧୃତିରାଷ୍ଟ୍ରର ପୁତ୍ର ନାସଜାଇ
ଆଜ ନିକି ସବୁ ସମ୍ପଦ ସରଇ ||୯୫୬୫||
କର୍ଣ୍ଣ ବୋଇଲା ଏହା କହିଲ କିସ ପାଇଂ
ସଂଗ୍ରାମେ ପସିଲେ ହରା ଜିଣା ହୋଇ ||୯୫୬୬||
ଏତେ ବୋଲି କର୍ଣ୍ଣ ଧଇଲା ଧନୁସର
ଦଧିବାମନ ସୁମରି ବସିଲା ରଥର ||୯୫୬୭||

ରଥ ତୁରଙ୍ଗମ ରାଉତ କରିବର
ଢୋଲ ଦମା ଟମକ ବାଜଇ ମର୍ଦ୍ଦଳ ॥୯୫୬୮॥
ଉଦଣ୍ଡ ଉଲାଖ ଚିରାଳ ଉଡ଼ଇ
ଉପରେ ରବିତେଜ[1] ଭୁମିରେ ସୁନ୍ୟ ଛାଇ ॥୯୫୬୯॥
ସୁର୍ଯର ଜୋତି ଜାଣି ଦିସଇ କର୍ଣ୍ଣ ଜାନ
ଦିସଇ ଦାଉ ଦାଉ କାଳସର୍ପ ଚିହ୍ନ ॥୯୫୭୦॥
ମାତଳିକି କି ଘେନି ଜେହ୍ନେ ରଥରେ ସୁରପତି
ସେହି ରୁପେ ସଲ୍ୟ ସଙ୍ଗତେ କର୍ଣ୍ଣରଥି ॥୯୫୭୧॥
ଏମନ୍ତେ ଗମିଲେ କୌରୋବ ବଳ
ଯୁଧିଷ୍ଟିଙ୍କ ଅଗ୍ରତେ କହିଲେ ଡଗର ॥୯୫୭୨॥
ସୁଣିଣ ପାଣ୍ଡବେ ସାଜିଲେ ସଇନି
ନନ୍ଦିଘୋଷ ରଥ ସାଜିଲେ ଚକ୍ରପାଣିଂ ॥୯୫୭୩॥
ଏଥୁ ଅନ୍ୟନ୍ତରେ ଭୁଜର ନନ୍ଦନି
ପ୍ରବେସ ହେଲେ ଜହିଂ କୃଷ୍ଣ ଫାଲଗୁନି ॥୯୫୭୪॥
ଆଗେ ଗୋବିନ୍ଦ ମୋ କଥା ଜାଣୁ ତୁହି
ଦୁର୍ଯୋଧନ ଲାଗି କେତେ ଦୁଖ ଅଛି ପାଇ ॥୯୫୭୫॥
ଦୁସାସନ ମଲା କେସ ବାନ୍ଧିଲା ଜିସ୍ନୁସେନି
ଦୁର୍ଯୋଧନ ମରନ୍ତେ ମୁହିଂ ଦୁଖ ପାସୋରିବିଂ ପୁଣି ॥୯୫୭୬॥
ଗୋବିନ୍ଦ ପ୍ରତିବାଚ ଅଳପ ଦିନ ତୁ ପଠାର
ପଞ୍ଝୁ କଟକେ ତୋ ପୁତ୍ର ହୋଇବେ ନୃପବର ॥୯୫୭୭॥
ଏତେ କହି ରଥ ମଣ୍ଡିଲେ ଭାବଗ୍ରାହିଂ
ଦଧିବାମନ ସୁମରି ବସିଲେ ଧନୁର୍ଜଇ ॥୯୫୭୮॥
ସକଳ ସନ୍ୟ ସେନା ଆରୋହି ବିମାନ
ପଶ୍ଚିମ ମୁଖ ହୋଇ ଗମିଲେକ ସନ୍ୟ ॥୯୫୭୯॥
ସମର ଭୁମିରେ ପ୍ରବେସ ହୋଇଲେ
ରଥି ସଙ୍ଗେ ରଥିମାନେ ରଣ କଲେ ॥୯୫୮୦॥
କର୍ଣ୍ଣ ଅର୍ଜୁନ ହୋଇଲା ଘୋର ରଣ
କର୍ଣ୍ଣ ବିନ୍ଧିଲା ବିସାସତେ ବାଣ[2] ॥୯୫୮୧॥
ପ୍ରତି ସରେ ତାହା ଛେଦିଲା ଧର୍ନୁଜଇ
ହାବଡ଼ା ସରେକ ବିନ୍ଧିଲା କର୍ଣ୍ଣ ରହି ॥୯୫୮୨॥
ବୈଷ୍ଣବା ସରେ ତାହା ଛେଦିଲା ସର୍ବସାଚି
ପୁଣିହି ଧନୁକୁ ଧରିଣ ବାସବି ଆମଞ୍ଜି[3] ॥୯୫୮୩॥
ସହସ୍ରେକ ନାରାଜ ବିନ୍ଧିଲା ଫାଲଗୁନି
ଇନ୍ଦ୍ର ଦିଲା ସକତି ହସ୍ତରେ କର୍ଣ୍ଣ ଘେନି ॥୯୫୮୪॥

୧ । ଘ ପୋଥି – ବିରନେତ
୨ । ଘ ପୋଥିରେ ନିମ୍ନରେ ଅଧିକ ଅଛି –
ବାଣ ଉପରେ ବାଣ ପଡ଼ିଲାକ ତହିଂ
୩ । ଘ ପୋଥିରେ ଏହି ଧାଡ଼ିଟି ନାହିଁ

ଜେତେବେଳେ କର୍ଣ୍ଣ ସକତି ଧଇଲା
ତେଜେ ଦସଦିସ ଉଲୁକାପାତ ହେଲା ॥୯୫୮୫॥
ବିନ୍ଧନ୍ତେ ଜଗନ୍ନାଥ ଡାକିଲେ ଅର୍ଜୁନକୁ
ପ୍ରତିସର କରିଣ ଛେଦ ଜେ ଏହାକୁ ॥୯୫୮୬॥
ଜେତେ ପ୍ରତିସର ଅର୍ଜୁନ ବିନ୍ଧିଲା
ସକତି ତେଜେଂ ପଡ଼ି ସବୁ ଜଳିଗଲା ॥୯୫୮୭॥
ଅପାଲଟ ସକତି ନୋହିଲା ପାଲଟ
ହନୁକୁ ବୋଇଲେ ହରି ରଥ ଏବେ ଚାପ ॥୯୫୮୮॥
ସୁଣିଣ ବିସ୍ୱମୁର୍ତ୍ତି ହୋଇଲା ମାରୁତି
ଚାପିଲା ନନ୍ଦିଘୋସ ପାତାଳେ ଗଲା ପସି ॥୯୫୮୯॥
ଘଟଉତ୍କଟ ନନ୍ଦିଘୋସ ପଛେ ଥିଲା
କର୍ଣ୍ଣର ସକତି ତାହାକୁ କାଟିଲା ॥୯୫୯୦॥
ବେନି ଖଣ୍ଡ ହୋଇଲା ହିଡ଼ିମ୍ବିର ବାଳ
ପାତାଳୁ ନନ୍ଦିଘୋସ ହୋଇଲା ବାହାର ॥୯୫୯୧॥
ପୁର୍ବ ଦିଗେ ଐସାନ୍ୟେ ନନ୍ଦିଘୋସ ଦିସି
କର୍ଣ୍ଣ ବୋଇଲା ମୁଂ ତ ପେସିଲି ସକତି ॥୯୫୯୨॥
ଇନ୍ଦ୍ର କହିଥିଲେ ନ ମାଇଲେ ନ ବାହୁଡ଼ିବ
ହରିହର ହୋଇଲେ ଗୋଟିଏ ଏହୁ ମାରିବ ॥୯୫୯୩॥
ଅଛଇ ନନ୍ଦିଘୋସେ କୃଷ୍ଣ ଫାଲଗୁନି
ଏତେ ବୋଲି ଟେକି ଚାହିଂଲା ବିରମଣି ॥୯୫୯୪॥
ଦେଖିଲା ଭିମସୁତ ହୋଇଛି ବେନିଖଣ୍ଡ
ଭାରୋଇମଲ ବଡ଼ ହୋଇଲା ବିସାଦ ॥୯୫୯୫॥
ଏଥୁଂ ଅନ୍ୟନ୍ତରେ ମିଳିଲା ନନ୍ଦିଘୋସ
ଅର୍ଜୁନ ବିନ୍ଧିଲା ନାରାଜ ପାଞ୍ଚଲକ୍ଷ ॥୯୫୯୬॥
ପ୍ରତିସର କରି ଭାରୋଇମଲ ଛେଦି
ତଦନ୍ତେ ଲକ୍ଷେଂ ସର ବିନ୍ଧିଲା ଭୁଅ ଭେଦି ॥୯୫୯୭॥
କର୍ଣ୍ଣର ଚାରି ଅସ୍ୱଙ୍କୁ କାଟିଲା
ନବତନ ଅସ୍ୱ ସଲ୍ୟ ସେ ଜୋଚିଲା ॥୯୫୯୮॥
ସାସେକ କାଳସର୍ପ କର୍ଣ୍ଣକୁ କହଇ
ମୋତେ ପେସ ହରି ଅର୍ଜୁନକୁ ନାସିବଇଂ ॥୯୫୯୯॥
ଗିଳିଦେବିଂ କପିକେତନ ନନ୍ଦିଘୋସ
ସୁଣିଣ ଆନନ୍ଦିତ ଆଦିତ୍ୟର ସିସ୍ୟ ॥୯୬୦୦॥
ସାସେକକୁ ଗୁଣେ ବସାଇ ଦିଲା ଛାଡ଼ି
ଧାଇଲାଂ କାଳସର୍ପ ଅସ୍ୱ ସହିତେ ରଥକୁ ଦେବିଂ ଗିଳି ॥୯୬୦୧॥
ମଞ୍ଚରେ ଚରଣ ଆକାସେ ଦେଇ ପାଟି
ଏକା ସର୍ପ ଗୋଟାକେ ଭାରତଭୁମି ଘୋଟି ॥୯୬୦୨॥

ଜେତେକ ନାରାଜ ଅର୍ଜୁନ ବିନ୍ଧିଲା
ସାସେକ ଗର୍ଭେଂ ପଡ଼ି ସର ଦହିଜ ହୋଇଲା ॥୯୬୦୩॥
ଜାଣିଲେ ବାସୁଦେବ ଏ ଗିଳିବ ନନ୍ଦିଘୋସ
ହରି ଅର୍ଜୁନ ସହିତେ ଗିଳିବ ଚାରି ଅସ୍ୱ ॥୯୬୦୪॥
ଠାରିଲେ ମାରୁତିକି ରଥ ପାତାଳକୁ ଚାପ
ସୁଣି ରଥ ଚାପିଲା ପବନର ସିସ୍ୟ ॥୯୬୦୫॥
ସେହି ସମୟରେ ପ୍ରବେସ ହେଲା ଅହିଂ
ପାତାଳପୁରକୁ ନନ୍ଦିଘୋଷ ଜାଇ ॥୯୬୦୬॥
ପାତାଳେଂ ରଥ ପତାକା ଦିସୁଥିଲା
ପତାକା ଗିଳି ସର୍ପ ବାହୁଡ଼ି ଅଇଲା ॥୯୬୦୭॥
କର୍ଣ୍ଣକୁ ବୋଇଲା ମୁଂ ଗିଳିଲି ନନ୍ଦିଘୋସ
ହରି ଅର୍ଜୁନ କପିକେତନ ଚାରିଅଶ୍ୱ ॥୯୬୦୮॥
କର୍ଣ୍ଣ ପ୍ରସଂସଇ ସାଧୁ ତୋ ଜିବନ
ଜାଣିଲିଂ ପଞ୍ଚୁକଟେକ ପାଇଲା ଦୁର୍ଯୋଧନ ॥୯୬୦୯॥
ଏମନ୍ତ ବିଚାରନ୍ତେ ଚାହିଂଲେ ପୂର୍ବଦିଗେଂ
ଦିସିଲା ନନ୍ଦିଘୋସ ଜେସନେ ସୂର୍ଯ୍ୟ ଉଦେଂ ବେଗେଂ ॥୯୬୧୦॥
ଆଶ୍ଚାର୍ଯ୍ୟ ହୋଇ କର୍ଣ୍ଣ ସର୍ପକୁ ପଚାରିଲା
ନନ୍ଦିଘୋଷ ଗିଳିଲୁ କହିଲୁ ଜେ ଭଲା ॥୯୬୧୧॥
ଦେଖ ନନ୍ଦିଘୋସ ଖେପିଣ ଆସଇ
ସର୍ପ ବୋଇଲା ମୁଂ ଗର୍ଭରୁ କାଢ଼ଇ ॥୯୬୧୨॥
ଏତେ ବୋଲି ଗର୍ଭରୁ ଉଦ୍‌ଗାରିଲା ସର୍ପା
ରଥ ନାହିଂ ଗର୍ଭରୁ ପଡ଼ିଲା ପତାକା ॥୯୬୧୩॥
ସର୍ପ ବୋଇଲା ମୋତେ ଆଉ ବେଳେଂ ପେସ
ପାତାଳେ ପସିଲେ ଗିଳି ଆସିବିଂ ନନ୍ଦିଘୋସ ॥୯୬୧୪॥
କର୍ଣ୍ଣ ବୋଇଲା ତୁ ଛାର ହିନ ସର୍ପଜାତି
ହୋଇଲି ନଂପୁସେକ ତୋତେ ପେସି ମୁହିଂଟି ॥୯୬୧୫॥
ଖାଇଲେ ମରି ତୋତେ ଦେଖିଲେ ଜେ ଡରି
ଜେ ଛୁଅଂଇ ପରମାୟୁ ସରଇ ତାହାରି ॥୯୬୧୬॥
ମଳ ମୁତ୍ର ମାଡ଼ିଲେ ପିତୃ ଲୋକେ ନ ପାବନ୍ତି ପାଣିଂ
ଜାତ୍ରା ଅଜାତ୍ରାରେ ତୋତେ ନ ଗଣିଂ ॥୯୬୧୭॥
ଧିକ ତୋର ଜିବନ ମୋ ରଥରେ ନ ଥାଅ
ନ ଚାହିବିଂ ତୋର ମୁଖ ଆନଠାକୁ ଜାଅ ॥୯୬୧୮॥
ଏମନ୍ତ ବୋଲିଣ ଜହୁଂ ବୋଇଲା ଦାନେଶ୍ୱର
ସର୍ପେ ସୁନ୍ୟେ ଉଡ଼ିଲା ତେଜିଣ ରହୁବର ॥୯୬୧୯॥
ବୋଇଲା ଯାଉଛି ସାପ୍ୟ ତୋତେ ହେଉ
ବେନି ଘଡ଼ି ରଥ ତୋର ଭୂମିଗତ ହେଉ ॥୯୬୨୦॥

କର୍ଣ୍ଣ ବୋଇଲା ତୋତେ ରଖିଥିଲି ମୁହିଂ
ଏବେ ସାପ୍ୟ ଦେଇ ଜାଉଛୁ ପଳାଇ ॥୯୬୨୧॥
ସର୍ପ ବୋଇଲା ରଥ ବସିବ ବେନି ଘଡ଼ି
ତଦନ୍ତେ ଉଠିବ ରଥ ତୋତେ ନୋହିବେ କେହି ସରି ॥୯୬୨୨॥
ଏତେ କହି ସର୍ପ ଉଡ଼ିଲା ଗଗନ
ଅର୍ଜୁନ ସଙ୍ଗେ ସମର କରଇ ରାଧେବ ନନ୍ଦନଂ ॥୯୬୨୩॥
ଦୁତିୟ ପ୍ରହର ହୋଇଲା ଆଦିତ୍ୟ
କର୍ଣ୍ଣର ବିମାନ ହୋଇଲା ଭୂମିଗତ ॥୯୬୨୪॥
ଡାକିଲେ କର୍ଣ୍ଣ ରହରେ ଧନୁର୍ଜଇ
ଉଠିଲେ ମୋର ରଥ ସମର କର ତୁହି ॥୯୬୨୫॥
ସୁଣି ଧନୁସର ରଖିଲା ଅର୍ଜୁନ
ରହିଲୁ କିମ୍ପାଇ ବୋଇଲେ ଭଗବାନ ॥୯୬୨୬॥
ଅର୍ଜୁନ ବୋଇଲେ କର୍ଣ୍ଣ ରଥ ଭୂମିରେ ବସିଛଇ
କେମନ୍ତେ ତାହାକୁ ମୁଂ ନାରାଜ ବିନ୍ଧିବଇଂ ॥୯୬୨୭॥
ପ୍ରଭୁ ରଥ ଭୂମିଗତ ଦନ୍ତରେ ତିରଣ
କେସ ମୁକଳିତ ଜେ ପସଇ ସରଣ ॥୯୬୨୮॥
ଜାଣୁ ଜାଣୁ ଏହାଙ୍କୁ ପୁଣ ଜେ ନାସଇ
ରୌରୋବ ନର୍କ କୁଣ୍ଡରେ ପଡ଼େ ସେହୁ ଜାଇ ॥୯୬୨୯॥
ଗୋବିନ୍ଦେ ବୋଇଲେ ଏକଥା ଅଛୁ ଜାଣିଂ
ସମରକୁ ସରଧା କିମ୍ପା କଲୁରେ ଫାଲଗୁନି ॥୯୬୩୦॥
ତୁହି ସତ ପାଳିଲୁ ସେ ନ ପାଳିଲା କର୍ଣ୍ଣ
ଚଉଦ ବରସର ତୋର ମରାଇଲା ନନ୍ଦନ ॥୯୬୩୧॥
ଘଟଉକ୍ଚଟକୁ ସେ ଆଜ କଲା ନାସ
କେମନ୍ତେ ସତ ପାଳିବୁ ତୋ ମୁଖରେ ନାହିଂ ଲାଜ ॥୯୬୩୨॥
ଏମନ୍ତ ପାଥକୁ ହରି କହିଲେ ଛଳାଇ
ସୁଣିଣ ଧନୁସର ଧଇଲା ଧନୁର୍ଜଇ ॥୯୬୩୩॥
ଡାକିଲା କର୍ଣ୍ଣ ଭାଇ ବିନ୍ଧ ଏବେସର
କର୍ଣ୍ଣ ବୋଇଲା ଦଣ୍ଡେ ରହରେ ଧନୁର୍ଦ୍ଧର ॥୯୬୩୪॥
ଆଉ ବେନି ଦଣ୍ଡେ ଉଠିବ ମୋର ଜାନ
ନ ରହିବିଂ କ୍ଷଣେ ବୋଲିଂ ବିନ୍ଧିଲା ଅର୍ଜୁନ ॥୯୬୩୫॥
କର୍ଣ୍ଣର ରଥ ଗୋଟି ହୋଇଗଲା ଚୂନା
ପାଦଗତି ହୋଇ ସର ବିନ୍ଧଇ କର୍ଣ୍ଣ ସେନା ॥୯୬୩୬॥
କର୍ଣ୍ଣର ନାରାଜ ଭୂମିବିନ୍ଧା ହୋଇ
କୋପେଂ ଅର୍ଦ୍ଧଚନ୍ଦ୍ର ବିନ୍ଧିଲା ଧନୁର୍ଜଇ ॥୯୬୩୭॥
କର୍ଣ୍ଣର ଛଇଛାଡ଼େ ସର ଗଲା ଗଳି
ତେଡ଼େ ରଥ ଗୋଟା ବେନି ଖଣ୍ଡେ ଢଳି ॥୯୬୩୮॥

୧ । ଘ ପୋଥି - ବୀର କର୍ଣ୍ଣ

ଦେବଦତ୍ତ ସଙ୍ଖ ଫୁଙ୍କିଲେ ଭଗବାନ
ସୁଣିଣ ବିସାଦ ପାଇଲା ଦୁର୍ଯୋଧନ ॥୯୬୩୯॥
ଗୁଣ ସୁମରି ସୋକ କଲା ନୃପନାଥ
ହା ହା ମୈଇତ୍ର ବୋଲି କପୋଳେଂ ମାରେ ହସ୍ତ ॥୯୬୪୦॥

## ସଲ୍ୟ ଓ ଶକୁନିର ମୃତ୍ୟୁ

ସୁଣିଣ ସଲ୍ୟରାଏ ଉଠିଲେ ପରିଘାଇ
ବୋଇଲେ ସେନାପତି କର ମୋତେ ତୁହିଂ ॥୯୬୪୧॥
ସୁଣିଣ ଦୁର୍ଯୋଧନ ମକୁଟ ଘେନିଣ
ସଲ୍ୟ ସିରେ ବାନ୍ଧିଣ ପ୍ରସଂସା କରେ ପୁଣ ॥୯୬୪୨॥
ସଲ୍ୟ ବୋଇଲେ ଆଜ ଦେଖ ମୋର ରଣ
ମାରିବି ପାଣ୍ଡେବଙ୍କୁ ଜେତେ ଅଛି ସନ୍ୟ ॥୯୬୪୩॥
ସୁଣିଣ ଆନନ୍ଦିତ ହୋଇଲା କୁରୁମଣିଂ
ବଦୟନ୍ତି ସୁଳହସ୍ତ ସୁଣଗୋ ମିତଣି ॥୯୬୪୪॥
ଅଢ଼ାଇ ପ୍ରହରେ ନାସ ହେଲା ଭାରୋଇମଲ
ଏକାଦଶ ଘଡ଼ିରେ ମକୁଟ ବାନ୍ଧିଲେ ରାଏ ସଲ୍ୟ ॥୯୬୪୫॥
ଗୋରେଖ ସୁତ ମଛଇନ୍ଦ୍ର ନାମ
ସାରଥି ହୋଇଲା ସଲ୍ୟର ବିମାନଂ[1] ॥୯୬୪୬॥
ମଣ୍ଡିଲା ରହୁବର ସଲ୍ୟ ସେ ଜେ ବସିଲା
ପବନହୁଂ ଖରେ ବିମାନ ବାହିଲା ॥୯୬୪୭॥
ଆପଣେ ସଲ୍ୟ ରଥି ଧରିଣ ଧନୁସର
ତେଜ ବିକାସଇ ଦୁତିୟ ନାସ୍କର ॥୯୬୪୮॥
କାଳଅନଳ ଜୋତି ଲମ୍ବିଛି ହୃଦେ ଛୋଡ଼
ବିସ ଭକ୍ଷିବା କାଳେଂ ଜେହ୍ନେ ଦିସନ୍ତି ସଂକର ॥୯୬୪୯॥
ଦନ୍ତ ରଟ ମଟ ମୁଖ କରେ ତମ
ପାଣ୍ଡେବ ସନ୍ୟକୁ ଆକ୍ରୋସିଲା ଜେସନେ ଦୁତିଜମ ॥୯୬୫୦॥
ସିରରେ ବନ୍ଧା ହୋଇଛି ଜେସନ ଠେକପାଗ
ତଥିପରେ ମକୁଟ ମୁକୁତା ପରାଗ ॥୯୬୫୧॥
ବେନି କର୍ଣ୍ଣେ ବିରାଜେ ଚନ୍ଦ୍ରଜୋତି ବିରବଳି
ବାଜଇ ଝମଝମ ଘଣ୍ଟ ଘାଉରି ସିକୁଳି ॥୯୬୫୨॥
ନଉସସ୍ର ବଳ ଧନୁ ସୋହେ କର
ନାରାଜଙ୍କ ତେଜ ବିରାଜେ ତ୍ରୋଣସର[2] ॥୯୬୫୩॥
ଉଡ଼ଇ ପତକା ଦିସଇ ଦାଉ ଦାଉ
ସମରେ ବିଜୟେ କଲା କି ରଣରାହୁ[3] ॥୯୬୫୪॥

୧ । ଘ ପୋଥି – ତାହାକୁ ସାରଥି ସଲ୍ୟ କଲେ ପୁଣ
୨ । ଘ ପୋଥି – ନାରାଜମାନ ସବୁ ଥୋଇଛି ତୁଣର
୩ । ଘ ପୋଥି – କ୍ଷେତ୍ରି ରଣ ରାହୁ

ବିନ୍ଧଇ କୋଟି କୋଟି ନାରାଜ ସନ୍ୟକୁ
ଜେ ମୁଖେ ପଡ଼ଇ ପେସଇ ସମନ ଭୁବନକୁ ॥୯୬୫୫॥
ଲକ୍ଷେ ବାଉନ ମଭୁତ କେତେବେଳେଂ
କୋଟି କୋଟି ସହସ୍ର ବାଣ ବିନ୍ଧଇ କୋପଭରେଂ ॥୯୬୫୬॥
କେତେବେଳେଂ ଅର୍ଜୁନ ସଙ୍ଗତେ ଜୁଝଇ
ତହୁଂ ତରକିଣ ସହଦେବଠାକୁ ଜାଇ ॥୯୬୫୭॥
ସାତ ସତ ବାଣ ତାହାକୁ ଛାଡ଼ିଦେଇ
ତହୁଂ ତରକିଣ ନକୁଳଠାରେ ହୋଇ ॥୯୬୫୮॥
ସତସଠି ବାଣ ତାହାକୁ ବିନ୍ଧଇ
ତହୁଂ ଜାଇ ହାବୋଡ଼ିଲା ଦ୍ରୋପଦ ତନଇ ॥୯୬୫୯॥
ତାହାକୁ ସତେ ସର ବିନ୍ଧିଲା କୋପ ବହିଂ
ସେହୁ ବିନ୍ଧୁ ବିନ୍ଧୁ ତହୁଂ ଆଡ଼େ ହୋଇ ॥୯୬୬୦॥
ମଛଇନ୍ଦ୍ର ସାରଥି ବାହଇ ରହୁବର
ଗମଇ ବିମାନ ପବନହୁଂ ଖର ॥୯୬୬୧॥
ଦେଖିଣ ଦୃଦକ୍ଷ ଉଗାଳିଲା ଜାଇ
ସାତଲକ୍ଷ ସର ତାହାକୁ ଛାଡ଼ିଦେଇ ॥୯୬୬୨॥
ଧୃତିରାଷ୍ଟ୍ର ପୁତ୍ର ହୋଇଲା ବିରଥି
ଏକାୟେଂ ସଲ୍ୟ ପାଣ୍ଡେବ ସନ୍ୟ ମନ୍ଥି ॥୯୬୬୩॥
ଭ୍ରମନ୍ତେ ସଲ୍ୟ ଦେଖିଲା ଧର୍ମନାନ
ସାତକୋଟି ସର କଲାକ ସନ୍ଧାନଂ[1] ॥୯୬୬୪॥
ପଡ଼ିଲା ନାରାଜ ହସ୍ତି ପ୍ରାଣଗଲା
ପାଦଗତି ହୋଇଲେ ଆଦିତ୍ୟଙ୍କର ବଳା ॥୯୬୬୫॥
ଧାଇଣ ସଲ୍ୟ ଧଇଲା ଯୁଧିଷ୍ଟିଙ୍କି
ହସ୍ତେଂ ଛୋଡ଼ ଧରିଣ ଅଳପ ଅଳପ ଝିଙ୍କି ॥୯୬୬୬॥
ଯୁଧିଷ୍ଟିଙ୍କି ବୋଇଲା ତୋତେ ପକାଇବିଂ ମାରି
ପଞ୍ଝକଟକେ ରାଜା ହେଉ କୁରୁଧାରି ॥୯୬୬୭॥
ତୋତେ ମାରିବିଂ ନୋହିଲେ ମୁହିଂ ଜିବି ନାସ
ପାର କରିବିଂ ମୁଂ ଅନୁଷ୍ଟୁ ରଷି ସାପ୍ୟ ॥୯୬୬୮॥
ଏମନ୍ତ ବୋଲି ସଲ୍ୟ କୋପରେ ଛୋଡ଼ ଝିଙ୍କି
ଜଳିଲା ଜଳିଲା ବୋଲି ଡାକିଲେ ଯୁଧିଷ୍ଟି ॥୯୬୬୯॥
ଜଳିଲା ଜଳିଲା ବୋଲି ଜହୁଂ ବୋଇଲେ ଧର୍ମବଳା
ସେହିକ୍ଷଣି ସଲ୍ୟ ଭସ୍ମକୁଡ଼ ହୋଇଲା ॥୯୬୭୦॥
ସଲ୍ୟ ପଡ଼ିଲା ବୋଲି ସୁଭିଲା ବୟାଣ
ସେନାପତି ହୋଇଲା କୃପଆଚାର୍ଯ ବ୍ରାହ୍ମଣ ॥୯୬୭୧॥
ଭାଗ୍ୟପୁରୁଷ[2] ସାରଥି ଦିଏ ବାହିଂ
କାଳ ଅନଳ ଜୋତି କୃପଆଚାର୍ଯ ଦିସୁଛଇ ॥୯୬୭୨॥

୧ । ଘ ପୋଥି – ଆଦ୍ୟାନ
୨ । ଘ ପୋଥି – ଭାଗ୍ୟଗୁରୁ

ସଙ୍ଖ ସ୍ଫଟିକ ରୁଦ୍ରାକ୍ଷର ଫଳ
ତୁଳସି ପଦ୍ମ ଫଳ ସହିତେ ପଞ୍ଚୁମାଳ ।।୯୬୭୩।।

କଣ୍ଠରେ ପଡ଼ିମାଳ ହୃଦରେ ଲମ୍ବିଅଛଇ
ଉଭରି ପଇତା କଣ୍ଠରେ ସୋଭାପାଇ ।।୯୬୭୪।।

କଟିରେ ଜମଦାଢ଼ ହସ୍ତରେ ଧନୁସର
କି ଅବା କପିଳ ପ୍ରସୁରାମ ଅବତାର ।।୯୬୭୫।।

ଏମନ୍ତ ରୁପେଂ କୃପଆଚାର୍ଯ ରଣ କଲେଂ
ଅନେକ ସନ୍ୟ କୃପଆଚାର୍ଯେ ସଂହାରିଲେଂ ।।୯୬୭୬।।

ଅର୍ଜୁନ ବୋଇଲେ ରଥ ବାହା ଚକ୍ରଧର
କୃପ ଆଚାର୍ଯ ସଙ୍ଗେ କରିବି ସମର ।।୯୬୭୭।।

ସୁଣିଣ ଜଗନ୍ନାଥେ ଚାରି ଅସ୍ୱ ଟିପି
କି ହୋ ଆଚାର୍ଯେ ବୋଲି ଡାକିଲେ ସର୍ବସାଚି ।।୯୬୭୮।।

ସୁଣିଣ କୋପଭର ଆଚାର୍ଯ ବ୍ରାହ୍ମଣ
ଅର୍ଜୁନକୁ ବିନ୍ଧିଲେ ସତସଠି ବାଣ ।।୯୬୭୯।।

ପର୍ବତାସର କରି ଛେଦିଲା ଧନୁର୍ଜଇ
ପୁଣି ସତେ ବାଣ ଆଚାର୍ଯ ବିନ୍ଧିଲଇ ।।୯୬୮୦।।

ସାତବାଣେ ଛେଦିଲେ ବାସେବର ସୁତ
ପୁଣି କୃପେଂ ବିନ୍ଧିଲେ ନାରାଜ ନଉସତ ।।୯୬୮୧।।

ନବଖଣ୍ଡ ମହି ଉଲୁକାପାତ ହେଲା
ଦେଉଳ ଜଗତି ମଣ୍ଡପ ଜଳିଗଲା ।।୯୬୮୨।।

ତାତିଲା ସପତ ସାଗର ସେ ପାଣିଂ
ଜଳଜିବେ ମରିଣଂ ଭାସିଲେ ସେ ପୁଣିଂ ।।୯୬୮୩।।

ଦିଗପାଳମାନେ ଦିଗଛାଡ଼ି ଗଲେ
ଧନ୍ୟ କୃପ ଆଚାର୍ଯେ ବୋଲିଣ ବୋଇଲେ ।।୯୬୮୪।।

ଜେତେବେଳେ କୃପ ଆଚାର୍ଯଙ୍କୁ ସୁଭିଲାକ ସ୍ୱର୍ଗେ ଧୁନିଂ[୧]
ତେତେବେଳେ କୋପିତ ହୋଇଲେ ଫାଲଗୁନି ।।୯୬୮୫।।

ନିଳବାଣ ଭୁଜବାଣ ବେନିକି ପେସିଲା
ବେନିବାଣ କୃପ ଆଚାର୍ଯ୍ୟଙ୍କଠାରେ ମିଳିଲା ।।୯୬୮୬।।

ଦେଖିଲେ ବ୍ରାହ୍ମଣ ବିତକ୍ଷଣ ଅଟଇ
ବ୍ରାହ୍ମଣକୁ ବୋଇଲେ ଆମ୍ଭର ଦୋଷନାହିଂ ।।୯୬୮୭।।

ଅଣନଉଟଣ ଆମ୍ଭେଂ ଜେ ବେନିସର
ପ୍ରାଣେ ନାସକରୁ ହୋଇଲେ ଦିଗପାଳ ।।୯୬୮୮।।

କୋପଭରେ ଆମ୍ଭଙ୍କୁ ପେସିଲା ଧନୁର୍ଜଇ
କାଟିବୁ ତୋର ମୁଣ୍ଡ ଆମ୍ଭର ଦୋସ ନାହିଂ ।।୯୬୮୯।।

ଏତେ ବୋଲି ସର କାଟିଲେ ଦ୍ୱିଜ ସିର
ବେନିଖଣ୍ଡ ହୋଇଲେ ବଛ ରୁଷିଙ୍କ କୁମର ।।୯୬୯୦।।

୧ । ଘ ପୋଥି – ବୋଇଲେ ଧନି ଧନି

ଦୟାକରି ବାଣେଂ କନ୍ଧେ ବସାଇଲେ ମୁଣ୍ଡ
ଜିବନ୍ୟାସ ପଢ଼ନ୍ତେ ବ୍ରାହ୍ମଣ ପାଇଲା ଜିବ ପିଣ୍ଡ ।।୯୬୯୧।।

ବାଣେ ବୋଇଲେ ପଳାଅ ନଦେଖୁ ଅର୍ଜୁନ
ବାଣଙ୍କ ମାୟାରେ କୁହୁଡ଼ି ଘୋଟିଲାକ ପୁଣ ।।୯୬୯୨।।

ଜହୁଂ ସେ ଅନ୍ଧାର ଘୋଟିଲାକ ପୁଣ
ସୁଣିଣ ମହାଭୟେ ପଳାଇଲେ ଆଚାର୍ଯ ବ୍ରାହ୍ମଣ ।।୯୬୯୩।।

ଏଥୁଂ ଅନ୍ୟନ୍ତରେ ସୁଣଗୋ ଗଉରା
ସହଦେବ ସଙ୍ଗତେ ସଙ୍କୁନି ଜୁଝୁଥିଲା ।।୯୬୯୪।।

ବହୁତ ସମର କରନ୍ତି ବେନିଜନ
ସଙ୍କୁନିକି ବୋଇଲା ମାଦ୍ରିର ନନ୍ଦନ ।।୯୬୯୫।।

କଲୁଂ ପିତୃକାର୍ଯ ହସ୍ତିନାରେ ଥାଇ
ମରାଇଲୁ ଦୁର୍ଯୋଧନ ସତାଣ୍ଡବେ ଭାଇ ।।୯୬୯୬।।

ଦୃଦକ୍ଷ ଆମ୍ଭଠାରେ ପସିଲା ସରଣ
ମରିବାକୁ ଏକା ଅଛଇ ଦୁର୍ଯୋଧନ ।।୯୬୯୭।।

ଜାଅ ଏବେ ମାମୁ ସମର ଆଡ଼େ ହୋଇ
କିପାଇଂ ପରଲାଗି ନାସଜିବୁ ତୁହିଂ ।।୯୬୯୮।।

ସଙ୍କୁନି ପ୍ରତିବାଚ ସୁଣରେ ସହଦେବ
ତୋହର ବାହାକୁ ଆସ ଅଛଇ ମୋହର ସେ ପୁର୍ବ ।।୯୬୯୯।।

ମୋହର ଯୋଗୁଂ ସିନା ହୋଇଲା ଭାରତ
ଜେତେକ ସନ୍ୟ ସେନା ହୋଇଲେକ ହତ ।।୯୭୦୦।।

ଜେବେ ନ ମରିଣ ରଖିବିଂ ଜିବନ
ତାହାଙ୍କ ପାପରେ ମୁଂ ହୋଇବିଂ ନିପୁଣଂ[୧] ।।୯୭୦୧।।

ତେଣୁ ମୁଂ ରଣଯଜ୍ଞେ ନାସିବି ଶ୍ୱରିର
ଗତ ଜନ୍ମକୁ ସେ ନଥିବ ପାପଭାର ।।୯୭୦୨।।

ଯେତେ ବୋଲି ସଙ୍କୁନି ବିନ୍ଧିଲା ଲକ୍ଷେ ସର
ପ୍ରତି ସରେ ଛେଦିଲା ମାଦ୍ରିର କୁମର ।।୯୭୦୩।।

ନଉଟି ନବବାଣ ବିନ୍ଧିଲା ସଙ୍କୁନି
ଦଲଦଲିତ ହୋଇଲା କମ୍ପିଲା ମେଦିନି ।।୯୭୦୪।।

ସହସ୍ରେଂ ନାରାଜେ ଛେଦିଲା ପଣ୍ଡୁନାନ
ମସିଗୁଣ୍ଡା ହୋଇଲା ସଙ୍କୁନି ବିମାନ ।।୯୭୦୫।।

ବିନ୍ଧିଲା ନାରାଜ ନବକୋଟି ଆଦ୍ରାବଳି
ସଙ୍କୁନି ଛଇଛାଡ଼େ ସରଗଲା ଗଳି ।।୯୭୦୬।।

ଯହୁଂ ନାସଗଲା କୁରୁବଳ ମନ୍ତ୍ରି
ସହଦେବ କୌରୋବ ଥାଟଗଲା ମନ୍ଥିଂ ।।୯୭୦୭।।

୧ । ଘ ପୋଥି – ଲେପନ

## ଲକ୍ଷ୍ମଣ କୁମାରର ମୃତ୍ୟୁ ଓ ଦୁର୍ଯ୍ୟୋଧନର ରକ୍ତନଦୀ ସନ୍ତରଣ

ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ବାରତା ପାଇଣ ଭାଳିଲା ଦୁର୍ଯୋଧନ ||୯୭୦୮||
ଦେଖିଲା ଥାଟରେ କେହି ସେନାପତି ନାହିଂ
ଲକ୍ଷ୍ମଣ କୁମାରକୁ ବୋଇଲା ଜାଅରେ ପଳାଇ ||୯୭୦୯||
ଆମ୍ଭର ଥାଟ ପାଣ୍ଡବେ ଆଣନ୍ତି ଘଉଡ଼ି
ପଳାଇ ତୁହି ବଞ୍ଚ ନ ଜାଉ କୁଳବୁଡ଼ି ||୯୭୧୦||
ଅନ୍ୟ ନଗ୍ରେ ପସ ରହୁ ସୋମବଂସ କୁଳ
ପିତାର ବଚନେ ପଳାଇ ଲକ୍ଷ୍ମଣ କୁମାର ||୯୭୧୧||
ଏଥୁ ଅନ୍ୟନ୍ତରେ ଭିମ ନକୁଳ ଯୁଧିଷ୍ଟି
ଅର୍ଜୁନ ସହଦେବ ଦୃଷ୍ଟଦ୍ୟୁମନ ସାତ୍ତ୍ୱିକି ||୯୭୧୨||
ଦୃଦକ୍ଷ ଶ୍ରୀଖଣ୍ଡି ଦୃମନ ନଳବଳି
ସିବ ସମ୍ଭୁସେଣ ହୋଇଣ ଏକମେଳି ||୯୭୧୩||
ଆରେ ଆରେ କୌରୋବେ ବୋଲିଣ ଡାକଦେଇ
ସନ୍ୟ ପିଟି ଆସନ୍ତେ ଦେଖିଲା[୧] କୁରୁସାଇଂ ||୯୭୧୪||
ପଳାଇଲା ନୃପତି ପାଣ୍ଡେବଙ୍କୁ ଡରି
ଅସ୍ୱସ୍ତମା ହସ୍ତିଘଣ୍ଟ ପ୍ରଥମ ସମରୁ ଥିଲା ପଡ଼ି ||୯୭୧୫||
ତହିଂର ଭିତରେ ଲୁଚିଲା ଦୁର୍ଯୋଧନ
ଘଣ୍ଟମାଡ଼ି ରହିଛି ଦ୍ୱାଦସ ଯୋଜନ ||୯୭୧୬||
ଏମନ୍ତେ ପାଣ୍ଡବେ ପିଟିଜାନ୍ତି ସନ୍ୟ
ହାବୋଡ଼େ ପଡ଼ିଲା କୁମାର ଲକ୍ଷ୍ମଣ ||୯୭୧୭||
ସହସ୍ର ବାଜିଣ ମୃଧୁନା ଫାଟିଗଲା
ସେହିଠାରୁ କରୁକୁଳ ଜେ ବୁଡ଼ିଲା ||୯୭୧୮||
ଏଥୁଂ ଅନ୍ୟନ୍ତରେ ସେ ହୋଇଲା ସନ୍ଧ୍ୟାକାଳ
ପାଣ୍ଡବେ ଗୋଡ଼ାଇଲେ କୌରୋବ ବଳ ||୯୭୧୯||
ବେନି ବାଉନଭାର ଗଦାଘେନି ଭିମ
ସନ୍ୟ ପିଟିଗଲା ଜେସନେ ଦୁତିଜମ ||୯୭୨୦||
ଏକ ମାଛି ପଡ଼ିଲେ ହୁଅଇ ବେନିଫାଳ
ଜଣେକ ନ ଛାଡ଼ଇ ପିଟଇ ବିକୋଦର ||୯୭୨୧||
ଦ୍ୱାଦସ ଯୋଜନ ଅଟଇ ରଣ ଭୁମି
ତହିଂରେ ଖୋଜିଣ ପାଣ୍ଡବେ ମାରନ୍ତି ସଇନି ||୯୭୨୨||
ରହ ବୋଲିବାକୁ ଜଣେଂ କେହି ନାହିଂ
ପାଣ୍ଡେବଙ୍କୁ ନିକ୍ଷେତ୍ର ହୋଇଲା ରଣଭୁଇଂ ||୯୭୨୩||

୧ । ଘ ପୋଥି – ପଳାୟେ

ଜହୁଂ ବେନିଘଡ଼ି ରଜନି ହୋଇଲା
କୁରୁବଳ ସନ୍ୟରେ ଜିବନ୍ତା ଗୋଟିଏ ନ ରହିଲା ||୯୭୨୪||
ପଞ୍ଚୁଜନ ସଙ୍ଖ ବାଇଲେ ଭଗବାନ[୧]
ବୋଇଲେ ଆଜ ସେସ ହୋଇଲେ କୁରୁସନ୍ୟ ||୯୭୨୫||
ବାସୁଦେବ ବଚନେ ସମସ୍ତେ ବାହୁଡ଼ିଲେ
ମଡ଼ାଙ୍କ ଉପରେ ମଡ଼ା ପଡ଼ିଛନ୍ତି ଭଲେ ||୯୭୨୬||
ପ୍ରଖରେ ଅତି[୨] ରକ୍ତନଦି ବହି
ସୁଣଗୋ ଓମା ବୋଲି ସଦାସିବ କହିଂ ||୯୭୨୭||
ସତ୍ୟ ଯୋଗେ ଜେସନେ ମନ୍ଥିଲେ ସିନ୍ଧୁଜଳ
ଭାସିଲା ଜଳରେ ନାନା ଉପହାର[୩] ||୯୭୨୮||
ସେହି ରୁପେ କୁରୁସାଗର ମନ୍ଥିଲେ ବାସୁଦେବ
ବହିଲା ରକ୍ତନଦି ଭାସନ୍ତି ମୃତୁ ପିଣ୍ଡ ||୯୭୨୯||
ରାଜାଙ୍କ ମକୁଟ ଅଳଙ୍କାର ମାନ
ରୋଧିରେ ଭାସୁଥିଲା ସାଉଂଟିଲା ଭିମ ||୯୭୩୦||
ବହୁତ ପାଣିଦ୍ରବ୍ୟ ରଥରେ ପୁରୋଇ
ବାରୁଣାବନ୍ତରେ ପ୍ରବେସ ହେଲେ ଜାଇ ||୯୭୩୧||
ବାଜଇ ବିଜିଘୋସ ଟମକ ମହୁରି
ବଡ଼ଇ ଉଛବ ସେ ବାରୁଣା ନଗରି ||୯୭୩୨||
କୋଇନ୍ତା ସୁଣିଲେ ଥାଇ ଅନ୍ତେସ୍ୱର
ଅର୍ଘ୍ୟ ଗୋଟିଏ ଘେନି ହୋଇଲେ ବାହାର ||୯୭୩୩||
ଗୋବିନ୍ଦଙ୍କୁ ପଚାରିଲେ ଭୋଜର ନନ୍ଦନି
ହରି କେ ମାଇଲା ଦୁର୍ଯୋଧନକୁ ତା ସିରେ ଅର୍ଘ୍ୟଦେବିଂ ପୁଣି ||୯୭୩୪||
ଅର୍ଜୁନ ମୁଖ ଚାହିଂଲେ ଭାବଗ୍ରାହି
ଅର୍ଜୁନ ବୋଇଲା ବାଉନ ସହସ୍ର ସନ୍ୟ ନାସିଲଇଂ ||୯୭୩୫||
ନୟନେ ଦେଖିନାହିଂ ପଡ଼ିଲା ଦୁର୍ଯୋଧନ
ପୁଣି କୋନ୍ତି ପଚାରିଲେ ଧର୍ମଙ୍କ ନନ୍ଦନ ||୯୭୩୬||
ଯୁଧିଷ୍ଟି ବୋଇଲେ ସନ୍ୟ ପଡ଼ିଲେ ବାରଲକ୍ଷ
ଏତେ ପଡ଼ିଲେ ନ ଦେଖିଲିଂ ଧୃତରାଷ୍ଟ୍ର ସୁତ ||୯୭୩୭||
ସୁଣିଣ କୋଇନ୍ତା ବିକୋଦରକୁ ପଚାରି
ଆଜ ଦୁର୍ଯୋଧନକୁ ବାବୁ ଅଛୁକିରେ ମାରି ||୯୭୩୮||
ଭିମ ବୋଇଲା ନବଲକ୍ଷ ସାଗର ସଇନ୍ୟ
ବେନି ଲକ୍ଷ ଗଜ ବେନି ଲକ୍ଷ ତୁରଙ୍ଗମ ||୯୭୩୯||
ଆଜର ମଧ୍ୟେ ମୁହିଂ ଏତେକ ବିନାସିଲିଂ
ଦୁର୍ଯୋଧନ ପଡ଼ିବା କଥା ତଥ୍ୟ ନ ଜାଣିଲିଂ ||୯୭୪୦||

୧ । ଘ ପୋଥି – ଦେବଦତ୍ତ ସଂଖ ଫୁଙ୍କିଲେ ଭଗବାନ
୨ । ଘ ପୋଥି – ପରଖର ହୋଇଣ
୩ । ଘ ପୋଥି – ଭାସିଲା ତହିଂରେ ନାନା ଅଳଂକାର

ନକୁଳଙ୍କୁ ଚାହିଁ କୋଇନ୍ତା ପଚାରିଲେ
ତୁହି ନାସିଲୁକି ବାବୁ ଧୃତିରାଷ୍ଟ୍ର ବାଳେଂ ॥୯୭୪୧॥
ନକୁଳ ବୋଇଲା ମୁଂ ନାସିଲି ଅନେକ ସଇନ୍ୟ
ନୟନେ ଦେଖିନାହିଁ ପଡ଼ିବା ଦୁର୍ଯୋଧନ ॥୯୭୪୨॥
ସହଦେବଙ୍କୁ ଚାହିଁ ପଚାରିଲେ କୋନ୍ତି
କୁରୁନାଥକୁ ଦେଖିନାହିଂ ବୋଇଲାକ ମନ୍ତ୍ରି ॥୯୭୪୩॥
ପୁଣି କୋଇନ୍ତା ଦୃଷ୍ଟଦୃମନଙ୍କୁ ଚାହିଂ
ଦୃମନ ବୋଇଲା ବହୁତ ସନ୍ୟ ମାରିଛଇଂ ॥୯୭୪୪॥
ରାଉତ ବାରକୋଟି ତେରକୋଟି ଗୁଜଂର
ପଡ଼ିବା ନ ଦେଖିଲିଂ ରାଜା କୁରୁବିର ॥୯୭୪୫॥
ସାତ୍ୱିକି ଶ୍ରୀଖଣ୍ଡି ବୋଇଲେ ଏହିରୁପେଂ
ସୁଣିଣ କୋଇନ୍ତା କମ୍ପିଲେ ଅଶୃମୁଖେଂ ॥୯୭୪୬॥
ଅର୍ଘ୍ୟ ଫିଙ୍ଗିଦେଇ ପୁତ୍ରଙ୍କୁଂ ଧିକାରିଲେ
ଧିକରେ ଭିମସେନ ଜନ୍ମିଲୁଂ ମୋର କୁଳେଂ ॥୯୭୪୭॥
ଧିକ ଧନୁର୍ଧର ଧିକ ତୁମ୍ଭର ନାମ
ମିଛରେ ଆରମ୍ଭ କଲ ତୁମ୍ଭେଂ ରଣ ॥୯୭୪୮॥
ସନ୍ୟରେ ମାଇଲ ନବସାଗର ପଞ୍ଚାସକୋଟି
ଚଉରାସି ଲକ୍ଷ ବାଉନ ସହସ୍ରଟି ॥୯୭୪୯॥
ଏତେକ କିପାଇଂରେ ବିଅର୍ଥେ ମାଇଲ
ହତ୍ୟାରେ ଦୋସି ତୁମ୍ଭେଂ କାରେଣି ହୋଇଲ ॥୯୭୫୦॥
ସୃଗାଳ ଲୋଚାୟେ ସମରେ ନାସିଲ
ସିଂହକୁ ଦେଖିରେ ପଳାଇ ଅଇଲ ॥୯୭୫୧॥
ଧିକରେ ଭିମ ତୋର କାଳେଂବର ଗଦା
କେତେ ଦୁଖ ତୋତେ ଦୁର୍ଯୋଧନ ଦେଇଅଛି ଅବା ॥୯୭୫୨॥
ଭୁଜାଂଇ ବସାଇଲା ବିସଲଡୁ ଦେଇ
ଜଉଘର କରିରେ ପୋଡ଼ି ମାରୁଥିଲା ତହିଂ ॥୯୭୫୩॥
ତହୁଂ ଉବୁରିଣ ପସିଲ ବନସ୍ତର
କେତେ ଅର୍ନ୍ନ କଷ୍ଟ ପାଇଲ ତହିଂର ॥୯୭୫୪॥
ଏମନ୍ତେ କୋଇନ୍ତା ପୁତ୍ରକୁ ଧିକାରି
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି ॥୯୭୫୫॥
ଘଣ୍ଟ ତଳେ ଦୁର୍ଯୋଧନ ଲୁଚିଥିଲା ପୁଣିଂ
ପାଣ୍ଡବେ ବାହୁଡ଼ନ୍ତେ ବାହାର କୁରୁମଣିଂ ॥୯୭୫୬॥
ଗମନ୍ତେ ଦୁର୍ଯୋଧନ ରୋଧିର ନଦି ଭେଟି
ମଡ଼ା ଭାସି ଯାଉଅଛନ୍ତି କୋଟି କୋଟି ॥୯୭୫୭॥
ଚାରି ଯୋଜନ ପ୍ରତି ଦିର୍ଘ ଯୋଜନ ସତର[୧]
ଏମନ୍ତ ପ୍ରକାରେଂ ପୁରି ବହଇ ରୋଧିର ॥୯୭୫୮॥

୧ । ଘ ପୋଥି – ଚାରି ଯୋଜନ ପ୍ରତି ସାତ ଯୋଜନ ଦୀର୍ଘର

ରଥି ରଥ ଗଜ ଜଳଜିବ ପ୍ରାଏ
ଭାସି ଯାଉଛନ୍ତି ଦେଖିଲା କୁରୁରାୟେ ॥୯୭୫୯॥
ଭାଳଇ ଦୁର୍ଯୋଧନ କେମନ୍ତେ ହେବିଂ ପାରି
ଏତେ ବୋଲି ମୃତୁ ପିଣ୍ଡକୁ ଧଇଲା ଦଣ୍ଡଧାରି ॥୯୭୬୦॥
ବେନି ସତଭାର ଗଦା ରଖିଲା ମଡ଼ାପର
ବୁଡ଼ି ପଡ଼ିଲା ରାଜା ଚଉଦତାଳ ଗଭିର ॥୯୭୬୧॥
ପୁଣି ଆସି ରାଜା କୋଳରେଂ ଲାଗଇଂ
ଆସୁଛି ଭୁରିସର୍ବା ଦେଖିଲା କୁରୁସାଇଂ ॥୯୭୬୨॥
ତହିଂପରେ ବସନ୍ତେଂ ବୋଡ଼ିଗଲା ରୋଧିରେଂ
ରହିଲା କୁରୁନାଥ ନୋହିଲାକ ପାରେଂ ॥୯୭୬୩॥
ଦ୍ରୋଣ କର୍ଣ୍ଣ ସକୁନି ସଲ୍ୟ ଜଦ୍ୟରଥ
ରଥି ମହାରଥି ରାଉତ ମାହୁନ୍ତ ॥୯୭୬୪॥
କେହି ଦୁର୍ଯୋଧନକୁ ନେଇ ନ ପାରିଲେ
ଭାଳନ୍ତେ ମୃତୁପିଣ୍ଡେ ଆସଇ ରୋଧିରେ ॥୯୭୬୫॥
ବେନିଗଦା ରଖିଣ ପଡ଼ିଲା ପେଟିୟାଇ
ନାବ ପ୍ରାଏ ବାହିଣ ତେଣେଂ କୋଳେଂ ହୋଇ ॥୯୭୬୬॥
ବଦନ ଦେଖିଣ ଚିହ୍ନିଲା ଲକ୍ଷ୍ମଣ କୁମାର
ଗୁଣ ବାଉନି କାନ୍ଦିଲା ବହୁତ ନୃପବର ॥୯୭୬୭॥
ଆହାରେ ପୁତ୍ର ତୋତେ ପଳାଅ ବୋଇଲିଂ
ରହିଣ ପ୍ରାଣଦିଲୁ କୁଳ ବୁଡ଼ାଇଲିଂ ॥୯୭୬୮॥
ଆରେ ପୁତ୍ରବୋଲି ଦୟା ତୋତେ ନ କଲେ ପାଣ୍ଡବେଂ
ଏତେ ବୋଲି ଭୁମିରେ କାଟିଲା ଏକଗାରେ ॥୯୭୬୯॥
ସାତତାଳ ଗଭିର ଲକ୍ଷ୍ମଣକୁମାରକୁ ପୋତି
ଗମନ୍ତେ ଭିସ୍ମଂକୁ ଭେଟିଲା କୁରୁପତି ॥୯୭୭୦॥
ରୋଦନ କରିସବୁ କହିଲା ଆଦିଅନ୍ତ
ଭିସ୍ମ ବୋଇଲେଂ ବ୍ୟାସ ସରୋବରେ ପସ ॥୯୭୭୧॥

## ଭୀମ ଦୁର୍ଯ୍ୟୋଧନ ଗଦାଯୁଦ୍ଧ ଓ ଦୁର୍ଯୋଧନର ଜାନୁଭଗ୍ନ

ତହୁଂ ନିଜପୁରେ ପ୍ରବେସ କୁରୁମଣିଂ
ଆସଇ ଭାନୁମତି ହସ୍ତରେ ଅର୍ଘ୍ୟଘେନି ॥୯୭୭୨॥
ଦେଖିଲା ନୃପତି ରୋଧିରେ ଜରଜର
ସଙ୍ଗତରେ ନାହାନ୍ତି ଲକ୍ଷ୍ମଣକୁମାର ॥୯୭୭୩॥
ରାଣି ପଚାରନ୍ତେ କହିଲା ରାଜନ
ସବୁ ସନ୍ୟ ସେନା ହୋଇଲେ ନିଧନ ॥୯୭୭୪॥
ଲକ୍ଷ୍ମଣ କୁମାର ଆଜ ରଣେଂ ପଡ଼ି
ସୁଣିଣ ଭାନୁବତି ଅର୍ଘ୍ୟକୁ କଚାଡ଼ି ॥୯୭୭୫॥

ବୋଇଲା ଭୋ ସ୍ୱାମି ରଖି ନ ପାରିଲୁଂ ଏକାଇ କୁମର
ଖଳମନ୍ତ୍ରି ବୁଧିରେ ବୁଡ଼ାଇଲୁଂ କୁଳ ॥୯୭୭୬॥
ଭ୍ରାଥ ବନ୍ଧୁ କୁଟୁମ୍ବ ସକଳ ମରାଇଲୁଂ
ଏକାୟେ ବ୍ରତି ମୋତେ କହିତେ ଅଇଲୁଂ ॥୯୭୭୭॥
ଏମନ୍ତ କହି ରାଣି କରଇ ରୋଦନ
ରୋଦନ ନକର ବୋଲି ବୋଇଲା ରାଜନ ॥୯୭୭୮॥
ଏହି ରାତ୍ରେ ଦେଖିଲେ ପାଣ୍ଡେବ ମୋତେ ମାରି
ଆଜ ଜିଇଂଥିଲେ ଗୋ କାଲିଂ ଜେବେ ମୁଂ ନମରି ॥୯୭୭୯॥
ଜେବେ ଆଜ ରଜନି ମୋତେ ରଖିପାରୁ
ତୁହିଂ ମୁହିଂଥିଲେ କାଲିଂ ସମ୍ପଦ ପାଇବୁ ॥୯୭୮୦॥
ଭାନୁବତି ବୋଇଲା ମୋତେ ବୁଧି ଦିସୁନାହିଂ
କି ଅବା ଧାତା ଲେଖନ କରିଛଇ ॥୯୭୮୧॥
ଭାରିଜାକୁ ପ୍ରବୋଧି ବସିଲା କୁରୁସାଇଂ
ଦେଖିଣ ଧୃତିରାଷ୍ଟ୍ର ବାରତା ପୁଛଇ ॥୯୭୮୨॥
ଦୁର୍ଯୋଧନ ବୋଇଲା ହେ ସମସ୍ତେଂ ନାସଗଲେଂ
ରାତ୍ର ପାହିବା ଜାଏ ଲୁଚିବିଂ କାହିଂ ଭଲେ ॥୯୭୮୩॥
ଧୃତିରାଷ୍ଟ୍ର ବୋଇଲେ ଜେବେ ରହିବୁ ମଂଚେ
କହିବେ ସହଦେବ ଜାଣିବେ ଜଗନ୍ନାଥେଂ ॥୯୭୮୪॥
ପଳାଇ ପସନ୍ତୁ ଜାଇ ସପତ ପାତାଳର
ନ ରଖିବ ବାସୁକି ଅର୍ଜୁନର ସସୁର ॥୯୭୮୫॥
ଅମର ପୁରେ ପସନ୍ତୁ ବଞ୍ଚନ୍ତୁ ଅବା ଜାଇ
ଅର୍ଜୁନର ପିତା ସେ ଅଟଇ ସୁରସାଇଂ ॥୯୭୮୬॥
ତିନିପୁରେ ତୋତେ ଠାବ ନାହିଂରେ ସୁତ
ସରଣ ମାଗି ବାବୁ ବ୍ୟାସ ସରୋବରେ ପସ ॥୯୭୮୭॥
ଧୃତିରାଷ୍ଟ୍ର କହନ୍ତେ ପଳାଇ କୁରୁସାଇଂ
ବ୍ୟାସ ସରୋବର ତଟରେ ଜାଇ ହୋଇ ॥୯୭୮୮॥
ଦୃଭାସ୍ୟା ରୁଷିଙ୍କି ନିଉଛାଳି ହେଲା
ସରଣ ରଖ ବୋଲି ମୁଖରେ ଡାକିଲା ॥୯୭୮୯॥
ସେହି ସରୋବରୁ ସବଦ ସୁଭଇ
ନ ପସି ଆଗଭରେ ପସ ପଛୁଆଇ ॥୯୭୯୦॥
ସୁଣିଣ ନୃପତି ଆଗକୁ ପଛକଲା
ସରୋବର ମଧ୍ୟରେ ପ୍ରବେସ ହୋଇଲା ॥୯୭୯୧॥
ଦେଖିଲା ରତ୍ନବେଦି ପରେ ପଡ଼ିଛି ପଲଙ୍କ
ତହିଂରେ ସୟନ କଲା ଅନ୍ଧରାଜା ବାଳେକ[୧] ॥୯୭୯୨॥
ଆପଣେ କମଳଣି ବିଜେ କଲେ ଜାଇ
ବୋଇଲେ ଏତେ ସରି ହୋଇଲୁଂ କୁରୁସାଇଂ ॥୯୭୯୩॥

୧ । ଘ ପୋଥି – ଅନ୍ଧସୁତ

ଜେତେବେଳେ ରୁଧିରେଂ ପଡ଼ିଲୁ ତୁହି ବୁଡ଼ି
ତେତେବେଳେ ତୋର କନ୍ଧରୁ ଗଲିଂ ମୁହିଂ ଛାଡ଼ି ॥୯୭୯୪॥
ଚଉଦ ଭୁବନେ ଭ୍ରମଣ କଲିଂ ଜାଇ
ତୋର ସାଦୃସେ ପୁରୁଷେଂ ନ ଦେଖିଲିଂ କାହିଂ ॥୯୭୯୫॥
ଭିମର ତିନିରଡ଼ି ସହିଂ ପାରୁ ଜେବେଂ
ପଞ୍ଚୁକଟକରେ ନୃପତି ହେବୁ ତେବେଂ ॥୯୭୯୬॥
ଦୁର୍ଯୋଧନ ବୋଇଲା ଭିମର ରଡ଼ି ସତେବାର
ସହିବିଂ କହୁଅଛି ତୋହର ଆଗର ॥୯୭୯୭॥
ଏତେ ବୋଲି ଲକ୍ଷ୍ମିଂ ଜାନୁରେ ଦେଇସିର
ସୋଇଲା ଦୁର୍ଯୋଧନ କହିଲେ ସୁଳଧର ॥୯୭୯୮॥
ଏଥୁ ଅନ୍ୟନ୍ତରେ ଜେ କୋଇନ୍ତା ଧିକାରି
ନ ସହି ଭିମସେନ ଉଠିଲା ସିର ଝାଡ଼ି ॥୯୭୯୯॥
ଚାଲହେ ଜଗନ୍ନାଥେ ଗମିବା ରଣଭୁମି
ମୃତୁ ପିଣ୍ଡ ମେଳରେ ଖୋଜିବା ନୃପମଣିଂ ॥୯୮୦୦॥
ହରିଚକ୍ର କରି[୧] ଆଜ ମାରିବିଂ ରାତ୍ରର
ମାରି ନ ପାରିଲେ ମୁଂ ଆଜ ପସିବି ଅଗ୍ନିଂର ॥୯୮୦୧॥
ଜେବେ ଦୁର୍ଯୋଧନକୁ ଆଜ ମାରି ନ ପାରଇଂ
ମାତୃ ହରଣ ପିତୃ ଦ୍ରୋହିଂ ମୁହିଂ ସେ ଅଟଇଂ ॥୯୮୦୨॥
ଏମନ୍ତ ବୋଲି ନିଅମ କଲା ବିକୋଦର
ଜଗନ୍ନାଥେ ବୋଇଲେ ଆଲୁଅ ବେଗେଂକର ॥୯୮୦୩॥
ସୁଣିଣ ଧାଇଂଲେ ଦ୍ରୋପଦର ବଳା
ସଜଳସଗୁଣ୍ଡିରେ ଭିୟାଇ ଜଗହୋଳା ॥୯୮୦୪॥
ଧାଇଂଲେ ପାଣ୍ଡବେ ପ୍ରବେସ ରଣଭୁମି
ଡାକନ୍ତି କାହିଂ ଲୁଚି ଅଛୁରେ କୁରୁମଣି ॥୯୮୦୫॥
ଦୁତିଅ ପ୍ରହରେ ହୋଇଅଛି ରଜନି
ବହୁତ ମିଳିଛନ୍ତି ଭୁତ ଡାକେଣି ଜୋଗିନି ॥୯୮୦୬॥
ରୁଦ୍ରାୟଣି ଭୌରୋବି କାନ୍ତାୟନି ଚାମଡ଼ା
ପଲପଲ ହୋଇଣ ଖାଉଛନ୍ତି ମଡ଼ା ॥୯୮୦୭॥
ଗଜଙ୍କର କର୍ଣ୍ଣ କେହୁ କରନ୍ତି କାହାଳି
ରଥ ଉପରେ ବସି ଦିଅନ୍ତି ହୁଳହୁଳି ॥୯୮୦୮॥
ସ୍ୱାନ ଜମ୍ବୁକ ଉଲୁକ ସାଗୁଣା
ମାଏସଂ ଭକ୍ଷନ୍ତି ଏହୁ କରନ୍ତି ଗର୍ଜନା ॥୯୮୦୯॥
ଦ୍ୱାଦସ ଯୋଜନ ଏହୁ ଅଟଇ ମହିସ୍ଥଳି
ଏହିରୁପେ ଭକ୍ଷ କରୁଂଅଛନ୍ତି ତହିଂ ମିଳି ॥୯୮୧୦॥
ହସ୍ତିଙ୍କର ଘଣ୍ଟା ବାନ୍ଧିଛନ୍ତି କଟି
ଗମନ କରନ୍ତେ ସେ ବାଜଇ ପ୍ରକଟି ॥୯୮୧୧॥

୧ । ଘ ପୋଥି – ହରି ଚିହ୍ନି କରି

ରାଜାଙ୍କର ମକୁଟ ବାନ୍ଧିଣଛନ୍ତି ସିର
ହୁଅନ୍ତି ବରବେସ ମଣ୍ଡନ୍ତି ଅଳଙ୍କାର ॥୯୮୧୨॥
ଏମନ୍ତେ ପ୍ରେତମାନେ ହୁଅନ୍ତି ହରସ
ଗର୍ଜନ କରନ୍ତି ଯେସନେ ସିନ୍ଧୁଘୋସ ॥୯୮୧୩॥
ସେହି ସମୟରେ ପାଣ୍ଡେବ ମିଳିଜାଇ
ଦୁତିୟ ପ୍ରହର ରଜନି ଅଛି ହୋଇ ॥୯୮୧୪॥
ଗୋଟି ଗୋଟି କରି ଲଉଟାଉଛନ୍ତି ମଡ଼ା
ନ ଦେଖିଲେ ତହିଂରେ ଧୃତିରାଷ୍ଟ୍ର ବଳା ॥୯୮୧୫॥
ଦୁର୍ଯୋଧନକୁ ନଦେଖି ପାଣ୍ଡବେ ବାହୁଡ଼ିଲେ
ଭିସ୍ମଂଠାରେ ଜାଇ ପ୍ରବେସ ହୋଇଲେ ॥୯୮୧୬॥
ଗୋବିନ୍ଦ ପଚାରିଲେ ଦୁର୍ଯୋଧନ କାହିଂ
କିଛି ନକହି ଭିସ୍ମେଂ ରହିଲେ ତୁନିହୋଇ ॥୯୮୧୭॥
ସାଏନ୍ତନୁ ତୁନିରେ ବୋଲନ୍ତି ଗୋବିନ୍ଦ
ତୁହିଂ ଜାଣିଅଛୁ କି କହନି ସହଦେବ ॥୯୮୧୮॥
କହଇ ମନ୍ତ୍ରିବର ସୁଣହେ ଭଗବାନ
ଜେତେବେଳେ ରାଜାର ମଲେ ସେନା ସନ୍ୟ[୧] ॥୯୮୧୯॥
ଡରେ ଘଣ୍ଟ ତଳେ ଲୁଚିଲା କୁରୁମଣିଂ
ଆମ୍ଭେ ବାହୁଡ଼ନ୍ତେ ପଳାଇଲା ପୁଣିଂ ॥୯୮୨୦॥
କୁମ୍ଭର ଉପରେ ବସି ରୁଧିର ନଦି ପାରହେଲା
ଆପଣା ଭୁବନେ ପ୍ରବେସ ହୋଇଲା ॥୯୮୨୧॥
ଦେଖିଣ ଭାନୁମତି ବହୁତ ଗାଳିଦିଲା
ଦୁର୍ଯୋଧନ ତାହାକୁ ପ୍ରମୋଦି କହିଲା ॥୯୮୨୨॥
ଧୃତିରାଷ୍ଟ୍ର ବୋଇଲା ବ୍ୟାସ ସରୋବରେ ପସ ଜା ଜା
ତାହା ଶୁଣି ଦୁର୍ଯୋଧନ ଚଳାଇଣ ଗଲା ॥୯୮୨୩॥
ସରଣ ପସିଲା ବ୍ୟାସ ସରୋବରେ ନୃପମଣିଂ
କହିଲା ସହଦେବ ସୁଣହେ ଚକ୍ରପାଣିଂ ॥୯୮୨୪॥
ସୁଣିଣ ଆନନ୍ଦ ହୋଇଲେ ଭଗବାନ
ରେ ରେ କୌରୋବା ବୋଲି ଧାଇଂଲା ଭିମସେନ ॥୯୮୨୫॥
ସରୋବରେ ଡେଇଂ ପସିବାର ବେଳେଂ
ରହରହ ବୋଲିଣ ବୋଇଲେ ମାଦ୍ରିବାଳେଂ ॥୯୮୨୬॥
ଗୋବିନ୍ଦେ ବୋଇଲେ କିପାଂ ରହ ରହ ଡାକୁ
ବ୍ୟାସ ସରୋବରେ ଭିମସେନ ପସୁ ॥୯୮୨୭॥
ଗୋବିନ୍ଦ ଇଦଂବାକ୍ୟେ ବୋଲଇ ସହଦେବ
ସତ୍ୟ ଯୋଗେ ପ୍ରଜାପତି କଲେ ତହିଂ ଜାଗ ॥୯୮୨୮॥
ଦକ୍ଷ ପ୍ରଜାପତି ଇସ୍ୱରକୁଂ ନ ବରିଲା
ସ୍ୱାମି ଭାଗ ନ ଦେଖି ଓମା ଅଗ୍ନିଂରେ ପସିଲା ॥୯୮୨୯॥

୧ । ଘ ପୋଥି – ସେସ ହେଲେ ସନ୍ୟ

ବିସାଦେଂ କୋପିତ ହୋଇଲେ ସଦାସିବ
ମୋଡ଼ି ପକାଇଲେ ପ୍ରଜାପତିର କନ୍ଧ ॥୯୮୩୦॥
ଯଜ୍ଞ ନାସକରି ବହିଲେ ପାପଭାର
ଏହିଠାରେ ବସି ତପ ଆରମ୍ଭିଲେ ସଙ୍କର ॥୯୮୩୧॥
ସୋକରୁ କାରୁଣ୍ୟେ କୋପରୁ ଅନଳ
ଲୁହ ଅଗ୍ନି ଏଠାରେ ହୋଇଲା ସରୋବର ॥୯୮୩୨॥
ବିଚାରିଲେ ସରୋବରେ ନଆସିବେ କେହିଂ
ନିର୍ଦ୍ୱନ୍ଦ ହୋଇ ତପ କରୁଥିବି ମୁହିଂ ॥୯୮୩୩॥
ଦସ ସହସ୍ର ବରସେ ସରିଲାକ ତପ
ଲିଙ୍ଗେକ ସ୍ଥାପି ବାହାର ହୋଇଲେ ବିଶ୍ୱନାଥ ॥୯୮୩୪॥
ବ୍ୟାସ ଦୁଭାସ୍ୟା ଏଥି ହୋଇଲେ ପରିଛା
ଜେ ସରଣ ପସଇ ତାକୁ କରନ୍ତି ରକ୍ଷା ॥୯୮୩୫॥
ଆଗହୁଂ ଦୁର୍ଯୋଧନ ପସିଛି ସରଣ
ଏବେ ଆମ୍ଭେ ପସିଲେ ହୋଇବା ଦହନ ॥୯୮୩୬॥
ସୁଣି ବିସ୍ମୟେ ହୋଇଲେ ଯୁଧିଷ୍ଟି ମହାରାଜା
କେମନ୍ତେ ଦୁର୍ଯୋଧନକୁ ଆମ୍ଭେ ସେ ମାରିବା ॥୯୮୩୭॥
ଏଥିକି ଉପାଏ କହ ମନ୍ତ୍ରିମଣିଂ
ସହଦେବ ବୋଇଲା ଜେବେ ସିଂହନାଦ ଆଣି ॥୯୮୩୮॥
ଇସ୍ୱର ସିଂହନାଦ ଚୁମ୍ବିବେ ବିକୋଦର
ସୁଣିଣ ଦୁର୍ଯୋଧନ ହୋଇବ ବାହାର ॥୯୮୩୯॥
ଭିମ ବୋଇଲା ମୁଂ ଚୁମ୍ବିତେ ମାଗିବିଂ ସିଂହଂନାଦକୁଂ[୧]
ମୁହିଂ ମାଗିଅଛି ବର ମାରି ବଜ୍ରକପଟକୁଂ[୨] ॥୯୮୪୦॥
ଏତେ ବୋଲି ଭିମ ମାଗିଲା ସିଂହଂନାଦ
କପିଳାସ ପୁରେ ଜାଣିଲେ ସଦାସିବ ॥୯୮୪୧॥
ଜାଅ ବୋଲି ସିଂହକୁ ବୋଇଲେ ତ୍ରିପୁରାରି
ଚଳିଲା ସିଂହନାଦ ହୁଂକାର ନାଦକରି ॥୯୮୪୨॥
ବିକୋଦର ହସ୍ତରେ ହୋଇଲା ପରବେସ
ସିଂହକୁ ଚୁମ୍ବିଲା ସେ ପବନର ସିସ ॥୯୮୪୩॥
କମ୍ପାଇଲା ସିଂହନାଦେ ଚଉଦ ଭୁବନ
ତରସ୍ତ ହୋଇଲେ ସକଳ ଦେବଗଣ ॥୯୮୪୪॥
ପୁରାଣ ପଢୁଥିଲେ ବାର ବିସ୍ୱଦେବା
ପୁରାଣ[୩] ଖସି ଭିମ କନ୍ଧରେ ପଡ଼ିଲା ॥୯୮୪୫॥
ପୁଣି ବିକୋଦର ଚୁମ୍ବିଲା ସିଂହଂନାଦ
ସିର ଝୁଣି ଉଠିଲା ମାନ ଜେ ଗୋବିନ୍ଦ ॥୯୮୪୬॥

୧ । ଘ ପୋଥି – ଭିମ ବୋଇଲା ମୁଂ ମାଗି ଚୁମ୍ବିବି ସିଂହନାଦ
୨ । ଘ ପୋଥି – ବଜ୍ର କପଟକୁ ମାରି ପାଇଅଛି ବର
୩ । ଘ ପୋଥି – ପୁସ୍ତକ

ରହ ରହ ବୋଲିଣ କହିଲେ କମଳଣିଂ
ଆଉ ବେଳେ ସହିଲେ ମୃତ୍ତୁ ନୋହିବୁ କୁରୁମଣିଂ ॥୯୮୪୭॥
ଦୁର୍ଯୋଧନ ବୋଇଲା ଗୋ ଏ ଛାର ଅଟେ ଭିମା
ସେହି ସେ ଡାକୁଅଛି କରିଣ ଗାରିମା ॥୯୮୪୮॥
କ୍ଷତ୍ରି ହୋଇ ଏହା କେମନ୍ତେ ସହିପାରି
ଏତେ ବୋଲି ଲକ୍ଷ୍ମିକି ପକାଇଲେ ଠେଲି ॥୯୮୪୯॥
ପାଣ୍ଡେବଠାରେ ପ୍ରବେସ ହୋଇଲେ ଦୁର୍ଯୋଧନ
ଡାକିଲା ସମରକୁ ଆସ ହେ ଏକ ଜଣ ॥୯୮୫୦॥
ମୁହିଂ ସିନା ନୃପତି ଯୁଧିଷ୍ଟି ନୃପବର
ତାହାର ମୋହର ହୋଇବ ସମର ॥୯୮୫୧॥
ଗୋବିନ୍ଦେ ବୋଇଲେ ଆମ୍ଭର ରାଜା ବିକୋଦର
ମାନଗୋବିନ୍ଦ ବୋଇଲା କରନି ନମସ୍କାର ॥୯୮୫୨॥
ସୁଣିଣ ଚାରି ପାଣ୍ଡବେ ସହିତେ ଭଗବାନ[୧]
ବିକୋଦରକୁ ଚାହିଂ ନମସ୍କାର କଲେ ପୁଣ[୨] ॥୯୮୫୩॥
ଦେଖିଣ ଆଶ୍ଚାର୍ଯ ହୋଇଲେ ଦୁର୍ଯୋଧନ
ପାର୍ବତି ପୁଚ୍ଛା କଲେ ସୁଣହେ ତ୍ରିଲୋଚନ ॥୯୮୫୪॥
ସୁକ୍ଳାମ୍ବର ବିଷ୍ଣୁ ଯୁଧିଷ୍ଟି ଅଟଇ
ତ୍ରୈଲୋକ୍ୟ ଠାକୁର ଦେବକି ତନଇ ॥୯୮୫୫॥
ସେହି ଜେ ଭିମକୁ କଲେକ ନମସ୍କାର
କେମନ୍ତେ ଭିମ ଦେହ ନୋହିଲା ଅଙ୍ଗାର ॥୯୮୫୬॥
ବୋଲନ୍ତି ଦିଗବାସ ସୁଣଗୋ ଗିରିଜା ଭଲା
ଅଷ୍ଟାଦସ ପୁରାଣ ଜେ ଭିମ କନ୍ଧେ ଥିଲା ॥୯୮୫୭॥
ତେଣୁ ଭିମସେନ ନୋହିଲା ଅପ୍ରାଜୟେ
ଦେଖିଣ ବିସାଦ ପାଇଲା କୁରୁରାୟେ ॥୯୮୫୮॥
ଏମନ୍ତେ ବିରବେସ ହୋଇଲା ବିକୋଦର
କନ୍ଧରୁ ପଇତା ତାର ବାନ୍ଧିଲା ବାମଭୁଜର ॥୯୮୫୯॥
ବାନ୍ଧିଲା ଆଣ୍ଟକରି ତ୍ରିକଛ ବସନ
ସେହି ରୁପେ ସଜ ହୋଇଲା ଦୁର୍ଯୋଧନ ॥୯୮୬୦॥
ବେନି ବାଉନଭାର ଗଦା ଘେନିଲା ଭିମସେନ
ଲାଗିଲେଂ ପଞ୍ଝାପଞ୍ଝି ପିଟାପିଟି ରଣ ॥୯୮୬୧॥
ଟକାଟକି ହକାହକି ସବଦ ଗରୁଟାଣ ॥୯୮୬୨॥
ପେଲାପେଲି ଠେଲାଠେଲି ଉଜାଣି ଉତରିଆ[୩]
ତର୍ଜନ୍ତି ଗର୍ଜନ୍ତି ଜେସନେ ସିଙ୍ଘଛୁଆ ॥୯୮୬୩॥

୧ । ଘ ପୋଥି – ଦ୍ରିଯୋଧନ ବଚନେ ହରସ ଭଗବାନ
୨ । ଘ ପୋଥି – ଗୋବିନ୍ଦ ସହିତେ ଯୁଝେଷ୍ଟି କଲେ ମାନ୍ୟ
୩ । ଘ ପୋଥି – ଉଦାଣ୍ଡିଆ

ଗଦାକୁ ଗଦା ବାଜି ଅନଳ ଉଠଇ
ଝମ ଝମ ସବଦେ କମ୍ପମାନ ମହି ॥୯୮୬୪॥
ଦୁର୍ଯୋଧନ ବେନି ଗଦା ଭାଜିଂଗଲା ଜହୁଂ
ରହ ରହ ବୋଲିଣ ଡାକିଲା କୁରୁରାହୁ ॥୯୮୬୫॥
ମୋହର ହସ୍ତ ତୁଚ୍ଛା ତୋହର ହସ୍ତେଂ ଅଛି ଗଦା
ଗଦା ରଖ ଏବେ ହୋ ମାଲଯୁଦ୍ଧ କରିବା ॥୯୮୬୬॥
ଭିମସେନ ବେନି ଗଦା ଜାକିଲା କାଖର
ଧରାଧରି ହୋଇଣ ପଡ଼ିଲେ ମହିର ॥୯୮୬୭॥
ଗଡ଼ାଗଡ଼ି ହୋଇଣ ଲାଗିଲେ ବେନିଜନ
ସମତୁଲ କଲେ ଖଣା ଟିକର ଭୁମିମାନ ॥୯୮୬୮॥
କେ କାହାକୁ ଉପରେ ମାଡ଼ିଣ ବସଇ
ଉପରେ ବସି କେ ବଜ୍ରମୁଥ ପ୍ରହରାଇ ॥୯୮୬୯॥
ଭିମକୁ ଫିଙ୍ଗି ଦିଲା ଗାନ୍ଧାରି କୁମର
ବେନି କୁସରେ ଜାଇ ପଡ଼ିଲା ବିକୋଦର ॥୯୮୭୦॥
ଉଠିଣ ମାନଗୋବିନ୍ଦ ଖରେଣ ପଳାଇ
ଗୋବିନ୍ଦକୁ ଅନାଇ ବୋଲଇ ଧନୁର୍ଜଇ ॥୯୮୭୧॥
ସ୍ୱାମି ନିସତ ହୋଇଲେକି ଠାକୁର ବିକୋଦର
ତୁଣ୍ଡରେ ପସୁଅଛି କଣ୍ଟିଣ ସ୍ରମଝାଳ ॥୯୮୭୨॥
ଦେଖ ଦୁର୍ଯୋଧନ ଜାଉଛି ପଳାଇ
ବ୍ୟାସସରୋବରେ ପସିଲେ ନ ମରଇ ॥୯୮୭୩॥
ଅର୍ଜୁନ ବଚନେ ଦେବ ଭାବଗ୍ରାହି
ତତକ୍ଷଣେ ଭିମ ଦେହେ ବିସ୍ରାମିଲେ ଜାଇ ॥୯୮୭୪॥
ଶ୍ରୀହରି ବଳ ପାଇଣ ସେ ଭିମସେନ
ଆଖି ପିଛା ପ୍ରମାଣେ ସେ କରଇ ଗମନ ॥୯୮୭୫॥
ଏମନ୍ତ କହୁ କହୁ ମିଳିଲା ବିକୋଦର
ଡାକିଲା କିପାଇଂ ପଳାଉଛୁ କୁରୁବର ॥୯୮୭୬॥
ଆରେ ଗାନ୍ଧାରି ଜନ୍ମକଲା ସତେଗୋଟି ପୁତ୍ର
ସମସ୍ତଙ୍କ ପରମାୟୁସ ହେଲା ମୋହର ହସ୍ତ ॥୯୮୭୭॥
ସତାନବେ ଭ୍ରାତକୁ ମାରିଅଛି ମୁହିଂ
ତୋତେ ମାଇଲେରେ କଳଙ୍କ ସରଇ ॥୯୮୭୮॥
କଥା ଏକ ଅଛି ପାରିବୁ ଜେବେ କରି
ତେବେ ତୁ ନାସ ନ ଯିବୁ ଦଣ୍ଡଧାରି ॥୯୮୭୯॥
ଯୁଧିଷ୍ଟି ପାଦେ ଜେବେ ସରଣ ପସିବୁ
ମଣିମା ମଣିମା ବୋଲି ସର୍ବଦା ଡାକୁଥିବୁ ॥୯୮୮୦॥
ତେଣୁ ତୋର ଜିବନ ରଖିବଇଂ ମୁହି
ଦେଖରେ ଦୃଦକ୍ଷ ସରଣ ପସିଛଇ ॥୯୮୮୧॥

ତୁମ୍ଭେ ନାସ ଜାଉଛ ଦେଖୁଅଛି ସେହିଂ
ଜେଣୁ ଆସ୍ରେକଲା ଯୁଧିଷ୍ଠି ଗୋସାଇଂ ॥୯୮୮୨॥
ଏମନ୍ତ ବୋଲି ଜହୁଂ ବୋଇଲା ଭିମସେନ
କୋପେଣ ସିର ଝୁଣି ଉଠିଲା ଦୁର୍ଯୋଧନ[୧] ॥୯୮୮୩॥
ନେଉଟି ଧରାଧରି ମରାମରି ହେଲେ
ଦୁର୍ଯୋଧନଙ୍କୁ ଭିମ ମାଡ଼ି ବସିଲାକ ତଳେ ॥୯୮୮୪॥
ଚାହାନ୍ତେଂ ଠାରିଦିଲେ ଦେବକିର ତନୁ
ଦୁର୍ଯୋଧନଙ୍କୁ ଭିମ ସୁନ୍ୟକୁ କଲା ଜାନୁ ॥୯୮୮୫॥
ବେନି ଜାନୁରେ ଭିମ ପିଟଇ ଗଦାବର
ନୃପତି ବୋଇଲା କେହ୍ନେ ଜାଣିଲୁରେ ବିକୋଦର ॥୯୮୮୬॥
ଯେ କଥା ତୋତେ କହି ଦିଲାକ ଭାବଗ୍ରାହିଂ
କପଟ କରି ମୋର କୁରୁବଂସ ମରାଇଂ ॥୯୮୮୭॥
ଆହେ ହରି ଏହି ରୁପେ ନାସ ଜିବେ ତୋର ବଂସ
ସୁଣିଣ ବଦୟନ୍ତି ଦେବ ଜଗଦିସ ॥୯୮୮୮॥
ଏବେ ବେନି ଗ୍ରାମଂ ଦିଅହେ କୁରୁମଣି
ରହନ୍ତୁ ପାଣ୍ଡବେ ନ ମର ତୁହି ପୁଣି ॥୯୮୮୯॥
ଦୁର୍ଯୋଧନ ବୋଇଲା ନଦେବି ସୁଚିମୁନ
ଗୋବିନ୍ଦେ ବୋଇଲେ ହେ ଦିଅ ଏକ ଗ୍ରାମ ॥୯୮୯୦॥
ସୁଚି ଅର୍ଦ୍ଧେ[୨] ନ ଦେବି ବୋଇଲା ଦୁର୍ଯୋଧନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୯୮୯୧॥
ମାନଗୋବିନ୍ଦ ବୋଇଲା କେତେ ଜିଘାଂସ କରୁ ମୁକୁ
ସୁଚି ମୁନେ ଭୁମି ନଦେବି ପାଣ୍ଡବଙ୍କୁ ॥୯୮୯୨॥
ଏକା ସକୁଂନି ମନ୍ତ୍ରି ମୋର କୁମାର ଲକ୍ଷ୍ମଣ
ଏକ ଭାନୁବତି ରାଣି ଏକଇ ବଚନ[୩] ॥୯୮୯୩॥
କହିଛି ବିନା ସମରେ ନ ଦେବିଂ ସୁଚିମୁନ
ପ୍ରାଣ ଗଲେ ପାଣ୍ଡବେ ନିଅନ୍ତୁ ପଞ୍ଚଗ୍ରାମ ॥୯୮୯୪॥
ଦୁର୍ଯୋଧନ ବଚନେ କୋପିତ ବିକୋଦର
ଗର୍ଜିଣ ବେନି ଗଦା ପିଟିଲା ଜାନୁର ଉପର ॥୯୮୯୫॥
ହୋଇଲା ମସି ଗୁଣ୍ଡା ଦୁର୍ଯୋଧନ ଜାନୁ
ହୋଇଲା ଜାନୁଭଗ୍ନ ଗାନ୍ଧାରିର ତନୁ[୪] ॥୯୮୯୬॥
ଦୁର୍ଭାସ୍ୟାଙ୍କର ସାପ୍ୟ ପଡ଼ିଲା ସେହିକାଳ
ପଡ଼ିଲା ଦୁର୍ଯୋଧନ ଫାଟିଲା ଗୁହ୍ୟଦ୍ୱାର[୫] ॥୯୮୯୭॥

୧ । ଘ ପୋଥି – ଅନେକ କୋପଭର ହୋଇ ଦ୍ରିଯୋଧନ
୨ । ଘ ପୋଥି – ସୁଞ୍ଚିମୁନେ
୩ । ଘ ପୋଥି – ବଦନ
୪ । ଘ ପୋଥି – କେଉଂ ଦୋସେ ଭିମ ଭାଙ୍ଗିଲା ଦ୍ରିଯୋଧନ ଜାନୁ
୫ । ଘ ପୋଥି – ଗୁହିଜ୍ୟଦ୍ୱାର

ବଦୟନ୍ତି ଓମା ସୁଣହେ ତ୍ରିଲୋଚନ
ଦୃଭାସ୍ୟାଏଂ କିମ୍ପା ସାପ୍ୟ ଦିଲେ ଦୁର୍ଯୋଧନ ॥୯୮୯୮॥
ବଦୟନ୍ତି ମହେସ ସୁଣଗୋ ଦେବି ଓମା
ଏକଦିନେ ଦୃଭାସ୍ୟା ପ୍ରବେସ ହସ୍ତିନା ॥୯୮୯୯॥
ଧୃତିରାଷ୍ଟ୍ର ଗାନ୍ଧାରି ଦୁର୍ଯୋଧନଙ୍କୁ ଘେନିଣ
ନେଇଣ ଦିଲେ ସେ ଦୃଭାସ୍ୟା କୋଳେଣ ॥୯୯୦୦॥
ଘେନିଲେକ ମୁନି ପୁତ୍ରକୁ ସ୍ନେହ କରି
ଜାନୁପରେ ମଳମୁତ୍ର କଲା ଦଣ୍ଡଧାରି ॥୯୯୦୧॥
କୋପେଣ ଋଷି ସାପ୍ୟ ତାହାକୁ ଦିଲେ
ଜାନୁଭଗ୍ନ ହୋଇବ ଫାଟିବ ଗୁହ୍ୟଦ୍ୱାରେ ॥୯୯୦୨॥
ତେବେ ତର ମୃତ୍ୟୁ ହୋଇବାକ ଜାଣ
ସାପ୍ୟ ଦେଇ ଦୃଭାସ୍ୟା କଲେକ ଗମନ ॥୯୯୦୩॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ଜାହା ଆମ୍ଭେ କହିଲୁ ହେତୁକରି ସୁଣ ॥୯୯୦୪॥
ସିରରୁ ମକୁଟ ହୁଞ୍ଚିଡ଼ିଲା ଭିମ
ଦେଖି ବଡ଼ ବିସାଦ ପାଇଲା ଦୁର୍ଯୋଧନ ॥୯୯୦୫॥
ତିଥି ଅମାବାସ୍ୟା ଆଦିତ୍ୟ ଉଦୟ ପ୍ରମାଣ
ପଡ଼ିଲା ଗଦା ଯୁଦ୍ଧେ ନୃପତି ଦୁର୍ଯୋଧନ ॥୯୯୦୬॥

## ଅଶ୍ୱସ୍ଥମାଙ୍କଦ୍ୱାରା ପାଣ୍ଡବଙ୍କର ପାଞ୍ଚପୁତ୍ରକୁ ହତ୍ୟା ଓ ଦୁର୍ଯୋଧନଙ୍କ ଦେହତ୍ୟାଗ

ରହିଲା ଦୃଢ଼କ୍ଷ ହୋଇଣ ଜଗୁଆଳି
ପାଣ୍ଡେବଙ୍କୁ ଘେନିଣ ଚଳିଲେ ବନମାଳି ॥୯୯୦୭॥
ବାରୁଣାବନ୍ତେଣ ପ୍ରବେସ ହୋଇଲେ
ଯୁଧିଷ୍ଠି ଚାହିଣ କେସବ ପଚାରିଲେ ॥୯୯୦୮॥
ଚାଲ ସମସ୍ତେ ଦ୍ୱାରିକା ଭୁବନ ଜିବା
ଜୟେ କଲା ଭୁମିରେ ଦଣ୍ଡେ ହେ ନରହିବା ॥୯୯୦୯॥
ପଞ୍ଚାଳ କୁମାର ରହିଲେ ଅନ୍ତପୁର
ଦୃଷ୍ଟଦୃମନ ଶ୍ରୀଖଣ୍ଡି ହୋଇଲେ ଦ୍ୱାରପାଳ ॥୯୯୧୦॥
ଉବୁରା ତିନି କ୍ଷେଉଣି ସନ୍ୟ ରଖାଇ
ଭୈରୋବି ପିତୁଳାକୁ ସିଙ୍ଘଦ୍ୱାରେ ଥୋଇ ॥୯୯୧୧॥
ସୁଭଦ୍ରା ଦ୍ରୋପଦି କୋନ୍ତି ଉତ୍ତରା କୁମାରି
ପଞ୍ଚ ପାଣ୍ଡବ ସହିତେ ଘେନିଲେ ବନମାଳି ॥୯୯୧୨॥
ଦ୍ୱାରିକା ଭୁବନେ ହୋଇଲେ ପ୍ରବେସ
ସୁଣଗୋ ଓମା ବୋଲି ବୋଲନ୍ତି ମହେସ ॥୯୯୧୩॥
ଭିମ ବେଷ୍ଟକାରି ରଖିଥିଲା ବେନିଗୋଟି ଚଢ଼ାଇ
ତାହାଙ୍କର ନାମ ଚକୋଆ ଚକୋଇ ॥୯୯୧୪॥

ଏକଠାବ ହୁଅନ୍ତେ ଫାଟିଲା କାଠପେଡ଼ା
ପଳାଇଲେ ଚଢ଼ାଇ ସବର ଗୋଡ଼ାଇଲା ॥୯୯୧୫॥
ଚଢ଼ାଇ ନିମନ୍ତେ ଦିନେ ପସିଲା ବେଣ୍ଟକାର
ସବରକୁ ଭେଟିଲା ଦ୍ରୋଣଙ୍କ କୁମର ॥୯୯୧୬॥
ଅଶ୍ୱସ୍ତମା ବୋଇଲା ବିକଳ କିପାଂ ହେଉଛୁ ସବର
ସବର ବୋଇଲା ମୁଂ ଭିମର ବେଣ୍ଟକାର ॥୯୯୧୭॥
ଚଢ଼ାଇ ମାରିଦିଏ ଭକ୍ଷଇ ବିକୋଦର
ତାହାଙ୍କ ଆଜ୍ଞାରେ ମୁଂ ବୁଲୁଛି ବନସ୍ତର ॥୯୯୧୮॥
ଅଷ୍ଟାଦସ ଦିବସ ସମର ହେଉଥିଲା
ସମର ସେସେ ଦୁର୍ଯୋଧନ ଜାନୁଭଗ୍ନ ହୋଇଲା ॥୯୯୧୯॥
ବ୍ୟାସ ସରୋବରଠାରେ ପଡ଼ିଛି କୁରୁସାଇଂ
ସବର ବଚନେ ଦ୍ରୋଣସୁତ କୋପ ବହିଂ ॥୯୯୨୦॥
ଧାଇଣ ପ୍ରବେସ ଦୁର୍ଯୋଧନଠାର
ଅସ୍ତ ହେଉଅଛି କସ୍ୟପ କୁମର ॥୯୯୨୧॥
ଦୁର୍ଯୋଧନକୁ ବୋଇଲା ମୋତେ ନକଲୁ ସେନାପତି
ସେନାପତି ହୋଇଥିଲେ କି ପାଣ୍ଡବେ ଥାନ୍ତେ ବ୍ରତି ॥୯୯୨୨॥
ଏବେ ସେନାପତି ହୋଅ ବୋଲି ବୋଇଲା ଦୁର୍ଯୋଧନ
ପଞ୍ଚୁ ପାଣ୍ଡେବଙ୍କର ସିର ତୁ ବେଗେ କାଟି ଆଣ ॥୯୯୨୩॥
ଏତେ ବୋଲି ସେତ ଦୁର୍ବା ଦିଲା ଟେକି
ଦୁର୍ବାର ମକୁଟ ବାନ୍ଧି ଅସ୍ୱସ୍ତମା ଖେପି ॥୯୯୨୪॥
ପାଣ୍ଡେବଙ୍କ ଭୁବନେ ପ୍ରବେସ ହୋଇଲା
ଭୈରୋବି ପିତୁଳା ସଙ୍ଗତେ ଜୁଝିଲା ॥୯୯୨୫॥
ଜିଣି ନପାରିଣ ପାଚେରି ପଡ଼େ ଡେଇଂ
ତିନି କ୍ଷେଉଣି ସନ୍ୟ ଉଗାଳିଲେ ଜାଇ ॥୯୯୨୬॥
କୋପେ ଅଶ୍ୱସ୍ତମା ସମସ୍ତଙ୍କୁ ଛେଦି
ଘୋର ରଣ କଲେ ଦୃଷ୍ଟଦୃମନ ଶ୍ରୀଖଣ୍ଡି ॥୯୯୨୭॥
ବହୁତ ନାରାଜ ବିନ୍ଧିଲେ ଦ୍ରୋଣବଳା
ଘୋର ରଜନିରେ ଆଲୋଳମୟେ କଲା ॥୯୯୨୮॥
ତୋଳାକର୍ଣ୍ଣ ବିଦ୍ୟାରେ ଶ୍ରୀଖଣ୍ଡି ମହାଯୋଧି
ପ୍ରତିସରେ ଅଶ୍ୱସ୍ତମା ତାହା ସର ଛେଦି ॥୯୯୨୯॥
ଦୃଷ୍ଟଦୃମନ ଜେ ବିନ୍ଧିଲା ଲକ୍ଷେ ବାଣ
ପ୍ରତିସରେ ଛେଦିଲା ଦ୍ରୋଣଙ୍କର ନନ୍ଦନ ॥୯୯୩୦॥
ବେନି ଭାଇ ଜୁଝନ୍ତି ଅଶ୍ୱସ୍ତମା ସଙ୍ଗତର
ଧନ୍ୟ ସେ ବେନି ଭାଇ ପଦ୍ମାବତି ବାଳ ॥୯୯୩୧॥
ଏକେ ସେ ଅଶ୍ୱସ୍ତମା ଦ୍ରୋଣଙ୍କ ତନଇ
ନିରଞ୍ଜନ ସେବିଣ ତ୍ରିଜିବି ବରପାଇ ॥୯୯୩୨॥
କୋପିତ ବଦନ ତେଜ ଅନର୍ଗଳା
କାଟି ପକାଇଲେ ଶ୍ରୀଖଣ୍ଡିର ଗଳା ॥୯୯୩୩॥
ଭ୍ରାଥର ନିଧନେ ଦୃଷ୍ଟଦୃମନ ସର ବିନ୍ଧି
କିଞ୍ଚିତ ନାରାଜେ ଅସ୍ୱସ୍ତମା ସର ଛେଦି ॥୯୯୩୪॥
ପିତୃ ବୈରି ବୋଲି ଅସ୍ୱସ୍ତମା ଜାଣିଂ
କୃପାଣେକ ଘେନି ଦୃଷ୍ଟଦୃମନ ସିର ହାଣି ॥୯୯୩୫॥
ସମସ୍ତଙ୍କୁ ହାଣି ପସିଲା ଭିତରେ
ପଲଙ୍କେ ଶୋଇଛନ୍ତି ପଞ୍ଚାଳ କୁମରେ ॥୯୯୩୬॥
ପାଣ୍ଡବ ବୋଲିଣ ପଞ୍ଚୁ କୁମାର ସିର ହାଣି
ମୁଣ୍ଡଭାର କରି ଗମିଲା ସୁତ ଦ୍ରୋଣି ॥୯୯୩୭॥
ଦୁର୍ଯୋଧନଠାରେ ପ୍ରବେସ ହୁଅନ୍ତେଂ
ମୁଣ୍ଡ ଭାର ଦେଖି ହରସ ଗାନ୍ଧାରିର ସୁତେଂ[1] ॥୯୯୩୮॥
ମୁଣ୍ଡ ଭାର ରଖନ୍ତେ ଉଦୟେ ହେଲାଦିନ
ପଞ୍ଚାଳ କୁମାର ମୁଣ୍ଡ ଚିହ୍ନିଲା ଦୁର୍ଯୋଧନ ॥୯୯୩୯॥
ଧିକାରି ଅଶ୍ୱସ୍ତମାକୁ ବହୁତ ଗାଳିଦିଲା
ପୁତ୍ରକୁ ନାସକଲୁ କୁଳ ତ ବୁଡ଼ିଲା ॥୯୯୪୦॥
ମୁହିଂ ଚାଣ୍ଡାଳ ତୋତେ କିପାଂଇ ବୋଇଲିଂ
ପୁତ୍ରଙ୍କ ମରଣ ମୁହିଂ ନୟନେ ଦେଖିଲି ॥୯୯୪୧॥
ଲାଜେଣ ଅଶ୍ୱସ୍ତମା ଗଲାକ ପଳାଇ
ମୁଣ୍ଡ ଗୋଡ଼ାକ ହୃଦରେ ଲଦିଲା କୁରୁସାଇଂ ॥୯୯୪୨॥
ରୋଧିର ଝରଝର ବହୁଣ ଅଛଇ
ସମ୍ପୁର୍ଣ୍ଣ ଚନ୍ଦ୍ରମା ପ୍ରାଏ ବଦନ ଦିସଇ ॥୯୯୪୩॥
କୁମାରଙ୍କ ବଦନ ଚାହିଣ ଦୁର୍ଯୋଧନ
ଡାକିଲା ପିଣ୍ଡରୁ ଛାଡ଼ି ଜାଉ ମୋ ଜିବନ ॥୯୯୪୪॥
ଜାଅ ବୋଲି ବୋଲନ୍ତେ ଶରିରୁ ପ୍ରାଣ ଗଲାଛାଡ଼ି
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି ॥୯୯୪୫॥

## ପରୀକ୍ଷିତ ଜନ୍ମ

ଅଶ୍ୱସ୍ତମା କୃପାଚାର୍ଯେ ହୋଇଲେ ଭେଟ
ପାଣ୍ଡେବଙ୍କୁ ନାସିବାକୁ ପାଞ୍ଚିଲେ କପଟ ॥୯୯୪୬॥
ବିଚାରିଲେ ଅପାଣ୍ଡେବ ହେଉ ଏ ମହି
ତାହାଙ୍କର ବିଚାର ଜାଣିଲେ ଭାବଗ୍ରାହିଂ ॥୯୯୪୭॥
ବିଚାରେ ମଉଳା ଭଣଜାଂ ସଙ୍ଗ ହେଲେ
ଅବସ୍ୟ ପାଣ୍ଡେବଙ୍କୁଂ ପ୍ରମାଦ ଚିନ୍ତିବେ ॥୯୯୪୮॥
ଏତେ ବୋଲି ହରି ବ୍ରାହ୍ମଣ ରୁପ ହୋଇ
କୃପ ଅସ୍ୱସ୍ତମାଠାରେ ପ୍ରବେସ ହେଲେ ଜାଇ ॥୯୯୪୯॥
କୃପ ଅସ୍ୱସ୍ତମାକୁ ପଚାରିଲେ ଭଗବାନ
କାହିଂ ତୁମ୍ଭର ମଠ ତୁମ୍ଭର ଅଟଇ କିସନାମ ॥୯୯୫୦॥

---
୧ । ଘ ପୋଥି – କୁରୁନାଥେ

ସେ ବୋଇଲେ ହସ୍ତିନା ନଗ୍ରେଂ ଆମ୍ଭଘର
ତାଙ୍କ ନାମ ଅଶ୍ୱସ୍ତମା କୃପାଚାର୍ଯ୍ୟ ନାମ ମୋହର ॥୯୯୫୧॥
କିସ ନାମ ତୁମ୍ଭର ସାସନ କେଉଁଠାର
କୃପ ଆଚାର୍ଯ୍ୟ ବଚନେ ବୋଲନ୍ତି ଦାମୋଦର ॥୯୯୫୨॥
ନାମ କୃଷ୍ଣ ପଣ୍ଡା କାସି କ୍ଷେତ୍ରେ ଆମ୍ଭଘର
ତିର୍ଥ ସେବିବାକୁ ବୋଲୁଛୁ ଦେସାନ୍ତର ॥୯୯୫୩॥
ଚାଲ ଯେବେ ପ୍ରୟାଗ ତିର୍ଥକଇ ଯିବା
ଗଦାଧର ଠାକୁରଙ୍କୁ ଦ୍ରସନ କରିବା ॥୯୯୫୪॥
ତୁମ୍ଭେ ଅନ୍ୟାୟେ କରିଛ ତପିବର
ତପି ହୋଇ ହସ୍ତରେ ଧରିଛ ଧନୁସର ॥୯୯୫୫॥
ଗୁପତ ସ୍ଥାନେ ଏହାକୁ ରଖିଣ ଗମିବା
ନେଉଟାଣି ବେଳେ ଗୃହକୁ ଘେନି ଜିବା ॥୯୯୫୬॥
ଗୋବିନ୍ଦ ମାୟାକୁ ସେ ଜାଣି ନପାରିଲେ
ସରୋବର ଜଳେ ଧନୁସହସ୍ର ରଖିଲେ ॥୯୯୫୭॥
କୃପ ଅଶ୍ୱସ୍ତମା ହୋଇଲେ ତୁଚ୍ଛା କର
ଗୋବିନ୍ଦ ସଙ୍ଗତେ ଗମିଲେ ଦେସାନ୍ତର ॥୯୯୫୮॥
ଥୋକାଏକ ଦୁର ଗଲେ ପଥବହିଂ
ରଜନି ହୋଅନ୍ତେ କୃଷ୍ଣବେଣି ତିରେ ରହିଂ ॥୯୯୫୯॥
ତିନିଜଣେ ସୟନେ ରଜନି ହେଲା ଅର୍ଦ୍ଧ
ନିଦ୍ରା ଉପକ୍ଷେଣ ଆଗେଂ ଉଠିଲେ ଗୋବିନ୍ଦ ॥୯୯୬୦॥
ତାହାଙ୍କ ସଙ୍ଗ ଛାଡ଼ି ଗମିଲେ ଦଇତାରି
ଜଳରୁ ଧନୁସର ନିଲେ ଚୋରିକରି ॥୯୯୬୧॥
ରଜନି ଭିତରେ ଦ୍ୱାରିକାରେ ହେଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୯୯୬୨॥
ରଜନି ପାହି ଉଦେ କସ୍ୟପନନ୍ଦନ
ଉଠିଲେ ଅଶ୍ୱସ୍ତମା କୃପ ଆଚାର୍ଯ୍ୟ ବ୍ରାହ୍ମଣ ॥୯୯୬୩॥
ଦେଖିଲେ ସୟନଠାରେ କୃଷ୍ଣପଣ୍ଡା ନାହିଂ
ବିଚାରିଲେ ବେନିଜନେ ସେହି ସେ ଭାବଗ୍ରାହିଂ ॥୯୯୬୪॥
କପଟ କରିଣ ଆମ୍ଭ ସଙ୍ଗରେ ସଙ୍ଗହେଲା
ରାତ୍ରରେ ପଳାଇ ନିକି ଆମ୍ଭ ଧନୁସର ନିଲା ॥୯୯୬୫॥
ଏମନ୍ତେ ବେନିଜନେ ବାହୁଡ଼ିଣ ଗଲେ
ରଖିବା ଠାବରେ ଧନୁସର ନ ପାଇଲେ ॥୯୯୬୬॥
ବୋଇଲେ ବାସୁଦେବ ଆମ୍ଭଙ୍କୁ ମାୟାକଲା
ପାଣ୍ଡବଙ୍କ ନିମନ୍ତେ ଆମ୍ଭ ଧନୁସର ନିଲା ॥୯୯୬୭॥
କେମନ୍ତ ପ୍ରକାରେ ପାଣ୍ଡେବକୁ ରଖେ ସେହିଂ
ପାଣ୍ଡବ ନାମ ଆଜ ନରଖିବି ମହି ॥୯୯୬୮॥

ଏତେ ବୋଲି କୁପିତ ଦ୍ରୋଣ କୁମର
କାଇଂସ ଗୋଟିୟେ ଜେ ଉପାଡ଼ି ଘେନିଲା ହସ୍ତର ॥୯୯୬୯॥
ଫାଳେକ ଧନୁକଲା ଅର୍ଦ୍ଧଫାଳେକ ଗୁଣ
ଅଗ୍ରଖଣ୍ଡି ନାରାଜକଲା ଦ୍ରୋଣଙ୍କ ନନ୍ଦନ ॥୯୯୭୦॥
କାଇଂସିକା ନାରାଜ ଗୁଣରେ ଦେଇ ସନ୍ଧି
ବ୍ରହ୍ମମନ୍ତ୍ର ପଢ଼ିଣ ସେ ଅସ୍ୱସ୍ତାମା ବିନ୍ଧି ॥୯୯୭୧॥
ହୋଇଲା ବ୍ରହ୍ମସର ଘୋଟିଲା ଦସ ଦିସ
ଉଲୁକାପାତ ହୋଇଲା ପୃଥିବି ଆକାସ ॥୯୯୭୨॥
ଦ୍ୱାରିକା ନିକଟେ ହୋଇଲା ଜେତେବେଳେଂ
ଦେଖିଣ ଜଗନ୍ନାଥେଂ ପାଥକୁ ଆଜ୍ଞା ଦିଲେ ॥୯୯୭୩॥
ଅଶ୍ୱସ୍ତମା ଏବେ ପେସିଲା କାଇଂସିକା
ତୁମ୍ଭ ସହିତେ ବାବୁ ନାସିବ ଦ୍ୱାରିକା ॥୯୯୭୪॥
ନାରାଜ ବିନ୍ଧ ଯେବେ ଲେଉଟିଣ ଜାଉ
ଏ ସର ବାହୁଡ଼ିଲେ ସୋମବଂସ ରହୁ ॥୯୯୭୫॥
ସୁଣିଣ ଅର୍ଜ୍ଜୁନ ଗାଣ୍ଡିମ ଧନୁ ଘେନି
ଲକ୍ଷ ଲକ୍ଷ ନାରାଜ ବିନ୍ଧିଲାକ ଟାଣି ॥୯୯୭୬॥
କାଇଂସିକା ସରେ ସବୁ ହୋଇଲା ଦହିଜ
କୋପେଂଣ ପାଥ ବିନ୍ଧିଲା ଅଧାଚନ୍ଦ୍ର ବାଣ ରାଜ ॥୯୯୭୭॥
ବୈଷ୍ଣବା ଚକ୍ର ସୁର୍ଯାବ୍ରତ ଚକ୍ର
ଆଦ୍ରାବଳି କୋବେରା କୌସିକା ସହସ୍ର ॥୯୯୭୮॥
ସୁଚିମୁନା ତିକ୍ଷମୁନା ସାତବର୍ତ୍ତି ତ୍ରିସୁଳ
ବଜ୍ରସକ୍ତି ଶୁଳସକ୍ତି ସହିତେ ଅନିଳ ॥୯୯୭୯॥
ବ୍ରହ୍ମଫାସ ଜଳଫାସ ନାଗଫାସ ମରୁତଫାସ ଆଦି
ଏ ସରମାନ ସବୁ ବିନ୍ଧିଲା ବାସେବି ॥୯୯୮୦॥
କାଇଂସିକା ସରେ ସବୁ ହୋଇଲା ଦହିଯ
ଆସୁଛି କାଇଂସିକା ଅପାଣ୍ଡେବ କରିବ ॥୯୯୮୧॥
ଦେଖିଣ ଗୋବିନ୍ଦେ ଚକ୍ରକୁ ଆଜ୍ଞାଦିଲେ
ଘୋଡ଼ାଇ ରହ ଯାଇ ଉତ୍ତରା ବାଳି ସିରେ ॥୯୯୮୨॥
ଗୋବିନ୍ଦ ଆଜ୍ଞା ପାଇ ହେଲା ସୁଦ୍ରିସେନ
ପଡ଼ିଲା ବ୍ରହ୍ମସର ଉତ୍ତରା ବାଳି ସିରେଣ ॥୯୯୮୩॥
ଚକ୍ରରେ ବାଜି ବ୍ରହ୍ମସର ତେଜଗଲା
ତିଳ ଚୁପା ପ୍ରମାଣେ ଗର୍ଭରେ ପସିଲା ॥୯୯୮୪॥
ଉତ୍ତରା ଗର୍ଭରେ ବାଳେକ ଥିଲା ରହିଂ
ତାହାକୁ ନାସି ବ୍ରହ୍ମସର ବାହୁଡ଼ଇ ॥୯୯୮୫॥
ହତଜ୍ଞାନ ହୋଇ କୁମର ଗର୍ଭୁଂ ପଡ଼ି
ଉତ୍ତରା ନାସଗଲା ଦେଖିଲେ ନରହରିଂ ॥୯୯୮୬॥

୧ । ଘ ପୋଥି – ନରନାରୀ

ଦ୍ରୋପଦି କୁନ୍ତି ଜେ ସୋଭଦ୍ରାର ତୁଲେ
ସମସ୍ତେ ଗୋବିନ୍ଦଙ୍କୁ ଚାହିଁଣ ସୋକ କଲେ ॥୯୯୮୭॥
ଆହେ ଜଗନ୍ନାଥେ ଆମ୍ଭେ ତୁମ୍ଭଙ୍କୁ ଆସ୍ରେକରି
କୁଳ ବୁଡ଼ାଇଲୁ ଦେଖ ହେ ନରହରି ॥୯୯୮୮॥
ଜେବେ କୁମରକୁ ନଦେବୁ ଜିବଦାନ
ତେବେ ଆମ୍ଭ ପିଣ୍ଡରେ ନରହିବ ପ୍ରାଣ ॥୯୯୮୯॥
ଯୁଧିଷ୍ଟି ସହିତେ ମିଶି ବୈକୁଳ ପାଥ
ଦେଖିଣ କୁମରକୁ ଧଇଲେ ଅନନ୍ତ ॥୯୯୯୦॥
ଜିବନ୍ୟାସ ମନ୍ତ୍ର ସେ ପଢ଼ିଲେ ଭଗବାନ
କୁମର ଜିବପାଇ କଲାକ ରୋଦନ ॥୯୯୯୧॥
ଜେଣୁ ପଦ୍ମଲାଭ ବ୍ରହ୍ମମନ୍ତ୍ର ପଢ଼ି ଜିଆଇଲେ
ତେଣୁ କରି ପରିକ୍ଷିତ ନାମ ସେ ପାଇଲେ ॥୯୯୯୨॥
ବହୁତ ଆନନ୍ଦ ସେ ହୋଇଲେ ପାଣ୍ଡବେ
ବାରୁଣା ଜିବା ବୋଲି ବୋଇଲେ ଗୋବିନ୍ଦେ ॥୯୯୯୩॥
ସମସ୍ତେଂ ବାହାର ଗୋବିନ୍ଦ ଆଜ୍ଞାପାଇ
ବାରୁଣାବନ୍ତରେ ପ୍ରବେସ ହେଲେ ଜାଇ ॥୯୯୯୪॥
ଦେଖିଲେ ଭଗନସ୍ତ ହୋଇଛି ନବର
ସନ୍ୟ ସେନା ନାସ ସବୁ ବହୁଛି ରୋଧିର ॥୯୯୯୫॥
ଦ୍ରୋପଦି ବୋଇଲେ ହରି ଆମ୍ଭା ମୋ ବୈକୁଳ
ଡାହାଣ ନୟନ ମୋ ସ୍ଫୁରଇ ଫରହର ॥୯୯୯୬॥
ନିକି ନାସ ଗଲେ ବେନିଗୋଟି ଭାଇ
ପଲଙ୍କେ ସୋଇଥିଲେ ପାଞ୍ଚଗୋଟି ପୋଇ ॥୯୯୯୭॥
ଗୋବିନ୍ଦେ ବୋଇଲେ ଭୈରୋବି ପିତୁଳା ଅଛି ଦ୍ୱାର
ନାସ ଜାଇଛନ୍ତି ବେନି କ୍ଷେଉଣି ସନ୍ୟବଳ ॥୯୯୯୮॥
ଭିତରକୁ ଗଲେ ବୁଝିବା ତାଙ୍କ କଥା
ସେ କଥାକୁ ହୃଦରେ କିପାଂଇ କରୁଚିନ୍ତା ॥୯୯୯୯॥
ଏମନ୍ତେ ଦୁତିୟ ଦ୍ୱାରେଣ ଜାଇ ମିଳିଲେ
ଦୃଷ୍ଟଦ୍ୟୁମନ ଶ୍ରୀଖଣ୍ଡି ମରଣ ଦେଖିଲେ ॥୧୦୦୦୦॥
ତହୁଂ ଅନ୍ତପୁରେ ପ୍ରବେସ ହେଲେ ଜାଇ
ଦେଖିଲେ ପଞ୍ଚାଳ କୁମର ଛନ୍ତି ସୋଇ ॥୧୦୦୦୧॥
ରହିଅଛି ଗଣ୍ଡି କନ୍ଧରେ ନାହି ମୁଣ୍ଡ
ଦେଖିଲେ ଦ୍ରୋପଦି ପଡ଼ିଲେ ମହିଖଣ୍ଡ ॥୧୦୦୦୨॥
କରଇ ରୋଦନ ବେନି କର ତାଡ଼ି
ଅପୁତ୍ରି କରିଣ ମୋତେ ନନ୍ଦନ ଗଲେ ଛାଡ଼ି ॥୧୦୦୦୩॥
ଗୋଟିଏ ଏଥୁଂ ପଳାଇ ନପାରିଲ ବଞ୍ଚି
ଏକାବେଳେ ତୁମ୍ଭକୁ କେହୁ ନିଲା କାଟି ॥୧୦୦୦୪॥
ତୁମ୍ଭେତ କାହାରି ବୈରି ନୋହ ପୁଣି
ନିର୍ଦ୍ଦୋଷି ପ୍ରାଣିକି କେହୁ ନିଲା ହାଣିଂ ॥୧୦୦୦୫॥
ଯୁଧିଷ୍ଟି ବହୁତ କଲେ ସେ ରୋଦନ
ମୁହିଂ ସେ ଅପୁତ୍ରିକ ହୋଇଲିଂ ଭଗବାନ ॥୧୦୦୦୬॥
ଗୋବିନ୍ଦ ପ୍ରତିବାଚ ତୁମ୍ଭେ ଭାରତ ଭିଆଇଲ
ଅପୁତ୍ରିକ ହେଲାକୁ ଏବେ ଚିନ୍ତା ତୁମ୍ଭେ କଲ ॥୧୦୦୦୭॥
କେତେ ରାଜା ଭ୍ରାଥପୁତ୍ର ଘେନି ଆସିଥିଲେ
ଅପୁତ୍ରିକ ହୋଇଣ ଆପଣେ ନାସଗଲେ ॥୧୦୦୦୮॥
ତିନି ପୁତ୍ର ଘେନିଣ ବିରାଟ ଆସିଥିଲା
ସେ ମଲେ ଦ୍ରୋପଦ ବେନି ପୁତ୍ର ମଲା ॥୧୦୦୦୯॥
ବୃକ୍ଷର ଯେସନେ ଛେଦନ ହୁଏ ଡାଳ
ଲେଉଟି କଅଳଇଂ ରହିଥିଲେ ମୂଳ ॥୧୦୦୧୦॥
ତୁମ୍ଭର ପୁତ୍ର ମଲେ ତୁମ୍ଭେ ଅଛ ରହି
ପୁଣି ସମୟକେ ହୋଇବେ ତନଇ ॥୧୦୦୧୧॥
ଜହୁଂ ଅଶ୍ୱସ୍ତମା ହୋଇଲା ମୋହାକୋପି
ପୁତ୍ର ସହିତେ ସେ ତୁମ୍ଭଙ୍କୁ ଜାଆନ୍ତା ନାସି ॥୧୦୦୧୨॥
ଉପାୟେ କରିଣ ମୁ ତୁମ୍ଭଙ୍କୁ ବଞ୍ଚାଇଲି
ବେନି କୁଳ କାରଣେ ଗୋଟିଏ ରଖିଲିଂ ॥୧୦୦୧୩॥
ଏମନ୍ତେ ଶ୍ରୀହରି କହିଲେ ପ୍ରବୋଧି
ସେ ହରି ଚରଣେ ସରଣ ସାରୋଳା ଦାସ କବି ॥୧୦୦୧୪॥

## ଗାନ୍ଧାରିଙ୍କ ଅନ୍ଧପୁଟୁଳି ଖୋଲି ଦୁର୍ଦ୍ଧକ୍ଷର ମୃତ୍ୟୁ ଓ ଲୁହା ଭୀମ ଧ୍ୱଂସ

ବୋଲନ୍ତି ଦୁର୍ଗାୟଣି ସୁଣ ତ୍ରିପୁରାରି
ଦୁର୍ଯୋଧନ ମଲା କେହ୍ନେ
ବାରତା ପାଇଲେ ଧୃତିରାଷ୍ଟ୍ର ଗାନ୍ଧାରି ॥୧୦୦୧୫॥
ଏକଥା ମୋହ ଆଗେ କହହେ ପଶୁପତି
ବୋଲନ୍ତି ସୁଳହସ୍ତ ସୁଣଗୋ ହେମବନ୍ତି ॥୧୦୦୧୬॥
ଦୁର୍ଯୋଧନ ମଲା ବୋଲି ଡଗର ଦେଖିଗଲା
ଗାନ୍ଧାରି ଧୃତିରାଷ୍ଟ୍ର ଅଗ୍ରତେ କହିଲା ॥୧୦୦୧୭॥
ହା ହା ପୁତ୍ର ବୋଲିଣ ରୋଦନ୍ତି ବେନି ପ୍ରାଣି
ଜାଣିଲା ଭାନୁବତି ଦୁର୍ଯୋଧନ ରାଣି ॥୧୦୦୧୮॥
ହୋଇଣ ହତଜ୍ଞାନ କରଇ ରୋଦନ
କେଉଂଠାରେ ପଡ଼ିଲୁଂ ମୁଂ ନ ଦେଖିଲିଂ ବଦନ ॥୧୦୦୧୯॥
ସାଗ୍ରାମୁ ପଳାଇ ଅଇଲୁ ଜେତେବେଳେ
ମୋତେ ବୋଇଲୁ ଜଦି ରହିବି ରାତ୍ରରେ ॥୧୦୦୨୦॥
ରାତ୍ରକ ରହିଲେ ଜେ ମୁହି ନମରିବିଂ
ମୁହିଂ ଚାଣ୍ଡାଳୁଣି ତ ରଖି ନପାରିଲିଂ ॥୧୦୦୨୧॥

ଜେବେ ଏ ନବରେ ଥାଆନ୍ତ ନାଥ ରହିଂ
ଅବଶ୍ୟ ଆସନ୍ତେ ପାଣ୍ଡେବ ପାଞ୍ଚ ଭାଇ ॥୧୦୦୨୨॥
ତୁମ୍ଭ ପାଇଂ ପଡ଼ନ୍ତି ଗୋବିନ୍ଦ ପାଦ ତଳର
ମାଗନ୍ତି ସ୍ୱାମି ଦାନ ଦିଅନ୍ତେ ଚକ୍ରଧର ॥୧୦୦୨୩॥
ପଞ୍ଚୁଗ୍ରାମ ପଛେ ନିଅନ୍ତେ ପାଣ୍ଡବେ
ମାଗିଣ ବାସ୍ତୁ ଖଣ୍ଡିଏ ରହିଥାନ୍ତେ ଆମ୍ଭେ ॥୧୦୦୨୪॥
ଏହା ନ କରି ନାଥ ଗଲ ଜେ ପଳାଇ
ତହିଂକି ପାଣ୍ଡବେ ଗଲେ ଜେ ଗୋଡ଼ାଇ ॥୧୦୦୨୫॥
ଜେଉଂ ପାଣ୍ଡେବଙ୍କୁ ଜଗନ୍ନାଥେଂ ସାହିଂ
ତାହାଙ୍କ ଅଗ୍ରତେ କି ତୁମ୍ଭେ ରହମାନ ହୋଇ ॥୧୦୦୨୬॥
ସଙ୍ଖ ପଦ୍ମ ନିଧି ଥାଇ ବେନି ହସ୍ତର
ସୁବର୍ଣ୍ଣ ହୁଅଇ ହସ୍ତ ଲାଗିଲେ ପଥର ॥୧୦୦୨୭॥
ଅଷ୍ଟଦଳ ପଦ୍ମ ଥାଇ ବେନି ଜେ ପାଦର
ଅନର୍ଘ ମଣି ମକୁଟ ଥାଇ ସୋଭିତ ସିରର ॥୧୦୦୨୮॥
ସର୍ବ ଲକ୍ଷଣ ଦେଖି ହୋଇଲଇଂ ବିଭା
ଆହେ ନାଥ ଏବେ ଛାଡ଼ିଗଲ ହୋଇଲିଂ ବିଧବା ॥୧୦୦୨୯॥
ଜାଉ ଏ ଜିବନ ନ ରହୁ ସରିର
ସ୍ୱାମିର ଯେଉଂ ପଥ ସେହି ପଥ ଧର ॥୧୦୦୩୦॥
ଏତେ ବୋଲି ପ୍ରାଣ ଛାଡ଼ିଲା ଭାନୁମତି
ହସ୍ତିନା ଗୁଞ୍ଜିଗଲେ ଜେତେକ ଜୁବତି ॥୧୦୦୩୧॥
ସମସ୍ତେ ବିଧବା ହୋଇ ସୋକଭର
ଜେସନ ସିନ୍ଧୁଘୋଷ ଆଦ୍ୟ ଆସାଢ଼ର[୧] ॥୧୦୦୩୨॥
ଥୋକାଏ ସ୍ତିରି ଅଗ୍ନି ଖାଇ ନାସ ଗଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୧୦୦୩୩॥
ଗାନ୍ଧାରି ଧୃତିରାଷ୍ଟ୍ର ସଜଂୟେ ବିଦୁର
ପ୍ରବେସ ହେଲେ ଜାଇ ଭାରତ ଭୁମିର ॥୧୦୦୩୪॥
ପୁତ୍ରକୁ ଦେଖିଣ ଗାନ୍ଧାରି ସୋକ କଲେ
ପ୍ରବେସ ହେଲେ ଜାଇ ଦୁର୍ଯୋଧନଠାରେ ॥୧୦୦୩୫॥
ମୃତୁ ପିଣ୍ଡକୁ ଚାହିଂ ଗାନ୍ଧାରି ସୋକକରି
କେହୁ ତୋତେ ପୁତ୍ରରେ କଲା ଏତେସରି ॥୧୦୦୩୬॥
ଏଡ଼େ ନିର୍ଦ୍ଦୟା ବହିଲା ପବନର ତନୁ
ଗଦାରେ ପିଟି ଗୁଣ୍ଡା କଲା ତୋର ଜାନୁ ॥୧୦୦୩୭॥
ବିଚିତ୍ର ମନ୍ଦିର ପଲଙ୍କ ଗଜଦନ୍ତ
ହିରା ନିଳା ମାଣିକ କୁରୁବିନ୍ଦ ଜଡ଼ାଉ ତହିଂରେ ତ ॥୧୦୦୩୮॥
ସେ ପଲଙ୍କ ଉପରେ ସିତଳ ପାଟି ପଡ଼ି
ଜହିଂରେ ଉଠି ଖସି ପଡ଼ନ୍ତି ପିମ୍ପୁଡ଼ି ॥୧୦୦୩୯॥

୧ । ଘ ପୋଥିରେ  ଥୋକାଏ ସ୍ତିରି ଠାରୁ ଗାନ୍ଧାରି
ଶୋକ କଲେ ପର୍ଯ୍ୟନ୍ତ ନାହିଁ

ତହିଂ ଉପରେ ପଡ଼ଇ କମଳ ସେତରଜିଂ
ତହିଂ ଉପରେ ବିଛାଇ ସରୁ ରଜ ନିହାଲି ଖଜିଂ ॥୧୦୦୪୦॥
ତହିଂ ପରେ ସିଞ୍ଚି କର୍ପୁର ଧୁଳି
ସୁକ୍ଳାମ୍ବର ପତନି ତଥିପରେ ପଡ଼ି ॥୧୦୦୪୧॥
ଉପରେ ଚନ୍ଦ୍ରାତପ ମେଘଡମ୍ବର ପାଟ
ପବନ ପସିବାକୁ ନଥାଇ ତହିଂବାଟ ॥୧୦୦୪୨॥
କୋଟି କୋଟି ମାଣିକ୍ୟ ଜଳଇ ଚଉକତି
ହୋଇଥାଇ ଆଲୁଅମଏ ନଥାଇ ତହିଂ ରାତି ॥୧୦୦୪୩॥
ଜେତେବେଳେ ସୟନ କରୁରେ ନନ୍ଦନ
କୋଟିଏ ମୁଦୁସୁଲି ଖଟନ୍ତି ପାଦରେଣ ॥୧୦୦୪୪॥
କେହୁ ପଙ୍ଖାଧରେ କେହୁ ପାଦ ମଞ୍ଚାଳଇ
କେହୁ ତାମ୍ବୁଳ ଦିୟେ କେହୁ ଚନ୍ଦନ ଲିପଇ ॥୧୦୦୪୫॥
ଏମନ୍ତ ପ୍ରକାରେ କରୁରେ ସୟନ
ଏବେ ଆସି ପିଣ୍ଡ ଲୋଟିଲା ସମସାନ ॥୧୦୦୪୬॥
ଜେତେ ମୁଦୁସୁଲିଂ ତୋତେ ଖଟିଥିଲେ
ଏବେ ତୋତେ ଯୋଗ୍ନିଂ ଗଣରେ ବେଢ଼ିଲେ ॥୧୦୦୪୭॥
ଏମନ୍ତେ ଗାନ୍ଧାରି ବହୁତ ସୋକ କରି
ସୁଣଗୋ ଓମା ବୋଲି ବୋଲନ୍ତି ସୁଳଧାରି ॥୧୦୦୪୮॥
ପଞ୍ଚୁ ପାଣ୍ଡେବଙ୍କୁ ଘେନିଣ ଜଗନ୍ନାଥ
ପ୍ରବେସ ହେଲେ ଜାଇ ଜହିଂ ଗାନ୍ଧାରି ଧୃତିରାଷ୍ଟ୍ର ॥୧୦୦୪୯॥
ଗାନ୍ଧାରିକି ଚାହିଣ କରନ୍ତି ସ୍ୟାନ୍ତି ହରି
କିପାଇଂ ସୋକ ଗୋ କରୁଛ ନ ବିଚାରି ॥୧୦୦୫୦॥
ଜେ ପଥ ଧରିଣ ଜେହୁ ଆସିଥିଲା
କାର୍ଯସାରି ସେହୁ ପଥ ବହିଗଲା ॥୧୦୦୫୧॥
ସେ ଗଲା  ପୁଣି ନ ଜିବକି ତୁମ୍ଭେ
ସେ କଥା ନ ଜାଣି ଗୋ ରୋଦନ କରୁ ଏବେ ॥୧୦୦୫୨॥
ଗୋବିନ୍ଦ ବଚନେ କୋପିତ ଗାନ୍ଧାରି
ମୋହର ବଂସ ତ ମରାଇଲୁ ହରି ॥୧୦୦୫୩॥
ଏହି ରୁପେ ତୋର ନାସ ଜିବେ ବଂସ
ସୁଣିଣ ଜଗନ୍ନାଥେ ହୋଇଲେ ହରସ ॥୧୦୦୫୪॥
ଭିମ ଦୃଦକ୍ଷକୁ ଗୋବିନ୍ଦ ଆଜ୍ଞା ଦିଲେ
କାଷ୍ଟ ଆଣି ରାଜାକୁ ଦାହା କର ଏବେ ଭଲେ ॥୧୦୦୫୫॥
ସୁଣିଣ ବେନି ଜନେ କାଷ୍ଟ କରି ରୁଣ୍ଡ
ନୃପତି ଦାହା ନିମନ୍ତେ ଖୋଳିଲେ ଅଗ୍ନିକୁଣ୍ଡ ॥୧୦୦୫୬॥
ଭିମ ବୋଇଲା ହରି ସୁଚି ଭୁଏ ପସିଲା ଯଦ୍ୟରଥ
ଡାକିଲା ଦୁର୍ଯୋଧନ ହୁଅନ୍ତେ ରବି ଅସ୍ତ ॥୧୦୦୫୭॥

ଭାଇଙ୍କୁ ଆଜ୍ଞାଦିଲା କାଷ୍ଟ ଆଣ ବହିଂ
ମରିବ ଅର୍ଜୁନ ଅଗ୍ନିଂରେ ଝାସଦେଇ ॥୧୦୦୫୮॥
ଆମ୍ଭ ପାଇଂ ଏହୁ କାଷ୍ଟ ଆସିଥିଲା
ଏବେ ଏ କାଷ୍ଟରେ ଦହନ ହୋଇଲା ॥୧୦୦୫୯॥
ଏତେ ବୋଲି ଡାହା କଲେକ କୁରୁସାଇଂ
ଦୃଦକ୍ଷ ହସ୍ତରେ ମୁଖାଅଗ୍ନି ଦେଇ ॥୧୦୦୬୦॥
ଡାହା ସାରି ସର୍ବେ ହସ୍ତିନାକୁ ଗଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୧୦୦୬୧॥
ଗାନ୍ଧାରି ବୋଇଲେ ସୁଣରେ ବିକୋଦର
ଫେଡ଼ ଅନ୍ଧପଟଳ ମୁଂ ଦେଖିବି ନୟନର ॥୧୦୦୬୨॥
ଦୃଦକ୍ଷକୁ ଚାହିଂ ବୋଇଲେ ଦଇତାରି
ଯାଅରେ ଜନନିର ଅନ୍ଧପଟଳ ଦିଅ ଫେଡ଼ିକରି ॥୧୦୦୬୩॥
ଦୃଦକ୍ଷ ମାତାର ଅନ୍ଧପଟଳ ଫିଟାଇ
ଚାହାନ୍ତେ ଭସ୍ମକୁଢ଼ ହୋଇଲାକ ସେହି ॥୧୦୦୬୪॥
ଗାନ୍ଧାରି ମୁଖଚାହିଂ ବୋଇଲେ ଗୋବିନ୍ଦ
ପୁତ୍ରକୁ ପୁଣି ତୁହି ପାଞ୍ଚିଲୁ ପରମାଦ ॥୧୦୦୬୫॥
ଯୁଧିଷ୍ଟିରେ ଦୃଦକ୍ଷ ସରଣ ପସିଥିଲା
ତୋ ଅନ୍ଧପଟଳ ଫିଟାନ୍ତେ ନାସଗଲା ॥୧୦୦୬୬॥
ସୁଣିଣ ଗାନ୍ଧାରି ଅଧିକ ସୋକକଲେ
ଡାକଇ ଧୃତିରାଷ୍ଟ୍ର ଭିମକୁ ଆଣ ମୁଂ ଧରଇ କୋଳେଂ ॥୧୦୦୬୭॥
ଭିମକୁ କୋଳକରି ପୁତ୍ରକଷ୍ଟ ମୁଂ ପାସୋରି
ମୋ କୁଳରେ ଭିମ ବସରେ ବେଗକରି ॥୧୦୦୬୮॥
ଧୃତିରାଷ୍ଟ୍ର ଡାକନ୍ତେ ଜାଣିଲେ ଚକ୍ରପାଣିଂ
ଭିମ ବସିଲେ କୋଳେଂ ଭସ୍ମଂ ହୋଇବ ତତକ୍ଷଣି ॥୧୦୦୬୯॥
ଆଖଡ଼ା ସାଳରୁ ଆଣିଲେ ଲୁହା ଭିମ
ଧୃତିରାଷ୍ଟ୍ର କୋଳରେ ଦିଲେ ଭଗବାନ ॥୧୦୦୭୦॥
ଚାପିଲା ଧୃତିରାଷ୍ଟ୍ର ଭାଙ୍ଗିଲା ଲୁହାଭିମ
ଧନ୍ୟ ସେ ଧୃତିରାଷ୍ଟ୍ର ଭିମକୁ ଏଡ଼େ ତମ ॥୧୦୦୭୧॥
ସଙ୍କର ମୁଖ ଚାହିଂ ଗିରିଜା ପଚାରିଲେ
କାହୁଂ ଲୁହା ଭିମ ଗୋବିନ୍ଦ ଆଣି ଦିଲେ ॥୧୦୦୭୨॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
କାଳେମ୍ଭର ଗଦା ଘେନି ନିତ୍ୟେଂ ବୋଲଇ ଭିମସେନ ॥୧୦୦୭୩॥
ଏହି ଗଦାରେ ଧୃତିରାଷ୍ଟ୍ର ପୁତ୍ରଙ୍କୁ ମାରିବି ପୁଣିଂ
ତହିଂକି ଲୁହା ଭିମ ଘଡ଼ିଲା କୁରୁମଣିଂ ॥୧୦୦୭୪॥
ନିତି ଦେହେ ପିଟିଣ କରୁଥାଇ ନିଦା
ବୋଲେ ବାଜି ଉପୁଡ଼ି ପଡ଼ିବ ଭିମଗଦା ॥୧୦୦୭୫॥
ସେ ଲୁହା ଭିମ ଥିଲା ଆଖଡ଼ା ସାଳରେ
ଜାଣି ଜଗନ୍ନାଥେଂ ଧୃତିରାଷ୍ଟ୍ର କୋଳେଂ ଦିଲେ ॥୧୦୦୭୬॥
ଜେତେ ସୋକ କରୁଥଲେ ନରନାରି
ସମସ୍ତଙ୍କୁ ସ୍ୟାନ୍ତି କରାଇ ଦଇତାରି ॥୧୦୦୭୭॥

## ଭୀଷ୍ମଙ୍କର ଯୁଧିଷ୍ଠିଙ୍କୁ ତତ୍ତ୍ୱଜ୍ଞାନ କଥନ ଓ ଦେହତ୍ୟାଗ

ପଞ୍ଚୁ ପାଣ୍ଡେବଙ୍କୁ ସଙ୍ଗତେ ଘେନିଣ
ପ୍ରବେସ ହେଲେ ହରି ଜହିଂରେ ଗଙ୍ଗାନାନ ॥୧୦୦୭୮॥
ଭିସ୍ମଙ୍କ ପାଦତଳେ ପଡ଼ିଲେ ପାଞ୍ଚଭାଇ
ତୁମ୍ଭର ପ୍ରସାଦେ ଦେବ ଜଏ କଲୁଂ ମହିଂ ॥୧୦୦୭୯॥
ଏବେ କିସ ଆଜ୍ଞା ହୋଇବ ତୁମ୍ଭ ମୁଖୁଂ
ତାହା କହି ଜିବ ତୁମ୍ଭଙ୍କୁ ପଚାରୁଅଛୁଂ ॥୧୦୦୮୦॥
ଏତେ ବୋଲି ସମସ୍ତେ ବସିଲେ ମଉନ
ଯୁଧିଷ୍ଟି ମୁଖ ଚାହିଂ ବୋଲନ୍ତି ଗଙ୍ଗାନାନ ॥୧୦୦୮୧॥
ଚିତରେ ଯେଉଁ କଥା ବିଚାରିଥିଲୁ ତୁହିଂ
ସମ୍ପଦ ପାଇଲୁ ଏବେ ସୋଦର ମରାଇ ॥୧୦୦୮୨॥
ଏବେ ପଞ୍ଚୁ କଟକେ ହୁଅତୁ ରାଜନ
ରାଜାପଣ ବାବୁରେ ବଡ଼ଇ କଠିଣ ॥୧୦୦୮୩॥
ପ୍ରଜାଙ୍କୁ ପାଳିବୁ ତୁ ପୁତ୍ରସମ କରି
ବିଶ୍ୱାସି ବ୍ରାହ୍ମଣକୁ ସୁପକାରେ ବରି ॥୧୦୦୮୪॥
ପରଦେସ ବାରତା ଡଗର କହୁଥିବ
ଅଳପ ନଦିଜଳେ ବନ୍ଧ ବନ୍ଧାଇବ ॥୧୦୦୮୫॥
ତୋଳିବୁ ଦେବାଳୟ[1] ଦରିଦ୍ରେଂ ଦେବୁ ଦାନ
ଅପନ୍ତରା ପଥେଂ ରୋପିବୁ ତୋଟାମାନ ॥୧୦୦୮୬॥
ଅଳପ ଦୋସକୁ କୋପ ନକରିବୁ
ପଣ୍ଡିତ ମୁଖରୁ ପୁରାଣ ସୁଣୁଥିବୁ ॥୧୦୦୮୭॥
ବୁଝିବୁ ପ୍ରଜାହାନି ନ କରିବୁ ପିଡ଼ା
ଗୋପଦ ପଥରେ ନ ପକାଇବୁ ଅଡ଼ା ॥୧୦୦୮୮॥
ସିସିର କାଳେଂ ପଥେ ଜାଳିବୁ ହୁତାସନ
ଗ୍ରିସମ କାଳେ ପଥେଂ ଦେବୁ ପାଣିପଣା ଦାନ ॥୧୦୦୮୯॥
ଏତେ ମାର୍ଗେଂ ଥିଲେ ରାଜାପଣ ଦୁର୍ଲଭ
ଛେଦଇ ପାପଭାରା ପୁଣ୍ୟରେ ହୋଏ ସୁଲଭ[2] ॥୧୦୦୯୦॥
ଜେତେକ ଜନ ବାବୁ ମଲେ ଏ ସମରେଂ
ତାହାଙ୍କ ହତ୍ୟାଦୋସ ରହିଲା ତୋହଠାରେ ॥୧୦୦୯୧॥

---

୧ । ଘ ପୋଥି – ଛତ୍ରସାଳ
୨ । ଘ ପୋଥି – ଖେଦ

ପାପ ପୁଣ୍ୟ ବୋଲି ଅଟନ୍ତି ବେନିଭାଇ
ଜେହୁ ରଣେ ମଲେ ସେ ପୁଣ୍ୟଭାଗ ନେଇ ॥୧୦୦୯୨॥
ଜେହୁ ଏ ଜିବନକୁ ରଖିଲା ଆସ କରି
ଭୁଜିଂବ ସମ୍ପଦ ରାଜ୍ୟେଂ ହୋଇବ ଅଧିକାରି ॥୧୦୦୯୩॥
ତାହାର ଭାଗେଂ ପାପପୁରୁଷ ରହିଲା
ମେଣ୍ଟି ନପାରିବେ ବ୍ରହ୍ମା ଚକାଡୋଳା ॥୧୦୦୯୪॥
ଏମନ୍ତ ବୋଲିଣ ଯହୁଂ ବୋଇଲେ ବୈସମ୍ପାୟନ
ସୁଣିଣ ଯୁଧିଷ୍ଟି ଜେ ଅଶୃତ ଲୋଚନ ॥୧୦୦୯୫॥
ପାପକୁ ମୋର ବଡ଼ ଭଏ ଥାଇ
ପୁଣିଂ ତ ପାପ ଦୋସ ଦେଉଛ ଗୋସାଇଂ ॥୧୦୦୯୬॥
କିମ୍ପାଇ ମୁହିଂ ଜେ ସମରେ ନ ମଲିଂ
ମଲାଲୋକ ପାପ ଭୁଜିଂତେ ରହିଲିଂ ॥୧୦୦୯୭॥
ସ୍ୱାମି ମହାଭାରତ ବୋଲିଂ କାହୁଂ ସେ ହୋଇଲା
କେବଣ ଦେବତା ତାହାକୁ ଜାତକଲା ॥୧୦୦୯୮॥
ଏବେ ହୋଇଲା କି ପୁର୍ବେ ହୋଇଥିଲା
ସୋଦରେଂ ସୋଦରେଂ ସେ ମରାମରି ହୋଇଲା ॥୧୦୦୯୯॥
ଯୁଧିଷ୍ଟି ବଚନେ ବୋଲନ୍ତି ଗାଙ୍ଗେବ
ଭାରତକୁ ଜନ୍ମ କରିଛନ୍ତି ବେଦ ॥୧୦୧୦୦॥
ରାମାଏଣ ଭାଗବତ ପୋରାଣ ଭାରତ
ଏମାନେ ବେଦରୁ ହୋଇଛନ୍ତି ଜାତ ॥୧୦୧୦୧॥
ଏଥରୁ ସାହାସ୍ରମାନ ହୋଅନ୍ତି ଜନମ
ବୋଲନ୍ତି ଯୁଧିଷ୍ଟି ସୁଣ ହେ ବୈସମ୍ପାୟନ ॥୧୦୧୦୨॥
ବେଦ ବୋଲି ଜେହୁ ପୁରୁଷ ଅଟଇ
କାହାରଠାରୁ ସେ ଜନ୍ମିଣ ଅଛଇଂ ॥୧୦୧୦୩॥
ବୋଲନ୍ତି ଭିସ୍ମେଂ ସେ ଅଟଇ ଗୋପତ
କେମନ୍ତେ କହିବିଂ ତୁମ୍ଭର ଅଗ୍ରତ ॥୧୦୧୦୪॥
ଆଦି କର୍ତ୍ତା ନାଥ ସଙ୍ଗତେ ଅଛି ବସି
ବେଦଜନ୍ମ କଥା ନଜାଣେ ସେହି କି ॥୧୦୧୦୫॥
ବୋଲନ୍ତି ନାରାୟଣ ମୁଂ ନଜାଣେ ତହିଂ ସନ୍ଧି
ସୁଣିବିଂ ତୁମ୍ଭ ମୁଖୁଂ କହ ହେ ମହିଭେଦି ॥୧୦୧୦୬॥
କହନ୍ତି ଗଙ୍ଗାସୁତ ସୁଣ ହେ ଯୁଧିଷ୍ଟିର
ବେଦଜନ୍ମ ସୁଣି ତୋର ପାତେକ କର ଦୁର ॥୧୦୧୦୭॥
ଜେଉଁକାଳେ ଜଳେ ନାସ ଜାଇ ପୃଥି
ଘୋଟଇ ଅନ୍ଧକାର ନିରାକାର ସୟନ କରନ୍ତି ॥୧୦୧୦୮॥
ସୟନ କରନ୍ତେ ସତର ମନୁ ହୋଏ ସେସ
ତେତେବେଳେ ଛାଡ଼ନ୍ତି ଏକଇ ନିଶାସ ॥୧୦୧୦୯॥
ସେ ନିଶ୍ୱାସ ବାତ ପଡ଼ଇ ଜଳର
ଭୁଡୁକି ଗୋଟିଏ ସେ ହୋଅଇ ଅବତାର ॥୧୦୧୧୦॥
ପୁଣି ସତର ମନୁ ଜାଏ ଜେ ବହି
ନିଶ୍ୱାସ ଛାଡ଼ନ୍ତି ନିଳାଦ୍ରି ଗୋସାଇଂ ॥୧୦୧୧୧॥
ଜଳରେ ପଡ଼ିଣ ଉଠଇ ଭୁଡୁକି
ପୁଣି ସତର ମନୁରେ ନିଶ୍ୱାସ ଛାଡ଼ନ୍ତି ॥୧୦୧୧୨॥
ତିନି ନିଶ୍ୱାସରେ ହୋଅଇ ତିନିବିମ୍ବ
ପୁଣି ସମୟେକେ ହୋଅନ୍ତି ଏକଭାବ ॥୧୦୧୧୩॥
ସେ ବିମ୍ବ ମଧ୍ୟରେ ଅକ୍ଷରେ ବେନିପୁଡ଼ା[1]
ସିରେ ସୁନ ବସିଣ ଓଂକାର ହୋଇଲା ॥୧୦୧୧୪॥
ସମଏ ଜାଆନ୍ତେ ତହୁଂ ପୁରୁଷେଂ ବାହାର
ବିମ୍ବରୁ ଜନ୍ମ[2] ବେଦ ପୁରୁଷ ନାମ ତାର ॥୧୦୧୧୫॥
ଜହୁଂ ସେ ବେଦ ପୁରୁଷ ଜାତ ହୋଇ
ପାହିଲା ରଜନିଂ ଉଠିଲେ ଗୋସାଇଂ ॥୧୦୧୧୬॥
ଆଦିକି ଦେଖିଣ ଖସିଲା କନ୍ଦର୍ପ
ଜନ୍ମିଲେ ହରିହର ତିନିଗୋଟି ପୁତ୍ର ॥୧୦୧୧୭॥
ପୁତ୍ରଙ୍କୁ ଆଜ୍ଞାଦିଲେ ଭିଆଅ ବସୁନ୍ଧରି
ବଦୟନ୍ତି ତିନିଦେବେ ଆମ୍ଭେଂ ଅକ୍ଷର ନାହୁଂ ପଢ଼ି ॥୧୦୧୧୮॥
ଏହିଠାରେ ଜେବେ ବେଦକୁ ପାଇବୁଂ
ବେଦରେ ସିନା ନବସୃଷ୍ଟି ଭିଆଇବୁଂ[3] ॥୧୦୧୧୯॥
ପୁତ୍ରଙ୍କର ବଚନେ ଚାହିଂଲେ ନିରାକାର
ପୁରୁଷେ ରହିଅଛି ଅପୁର୍ବ ଜୋତି ତାର ॥୧୦୧୨୦॥
ବେଦପୁରୁଷକୁ ଠାକୁରେ ଆଜ୍ଞାଦିଲେ
ତୁହି ବେଦ ସିକ୍ଷା ଦିଅ ଏହାଙ୍କଠାରେ ॥୧୦୧୨୧॥
ଠାକୁରଙ୍କର ଆଜ୍ଞାରେ ସେ ପୁରୁଷ ଉଠି
ତ୍ରୟ ଦେବତାଙ୍କୁ ତ୍ରୟ ଅକ୍ଷର ଦିଲାବାଣ୍ଟି ॥୧୦୧୨୨॥
ମନ୍ତ୍ରଦେଇ ସେ ପୁରୁଷ ହୋଇଲା ଅନ୍ତର
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ॥୧୦୧୨୩॥
ଯୁଧିଷ୍ଟି ଅଗ୍ରତେ କହିଲେ ଗାଙ୍ଗେବ
ସେ ତିନି ଦେବ ପାଇଲେ ତିନିବେଦ ॥୧୦୧୨୪॥
ପଢ଼ନ୍ତେ ମେଦାସୁର ଜନମ ହୋଇଲା
ତାହାକୁ ମାରିଣ ପିଣ୍ଡେ ଭିୟାଇଲେ ବସୁଧା ॥୧୦୧୨୫॥
ବିଧାତାକୁ ଚାହିଂଣ ବୋଇଲେ ବାସୁଦେବ
ଆମ୍ଭେ ସମ୍ଭାଳି ନପାରିବୁ ଘେନ ଏହୁ ବେଦ ॥୧୦୧୨୬॥

---

୧ । ଘ ପୋଥି – ହୁଅନ୍ତି ଏକ ପୁଡ଼ା
୨ । ଘ ପୋଥି – ବିନ୍ଦୁରୁ ବାହାର
୩ । ଘ ପୋଥି – ତେବେ ଏ ସଂସାର ସର୍ଜନା କରିବୁ

ବେଦ ଘେନି ମଉନ ଚତୁର ବଦନ
ମନରୁ ଚାରିପୁତ୍ର ହୋଇଲେ ଜନମ ॥୧୦୧୨୭॥
ଦେଖିଣ ବିଧାତା ବହୁତ ଭାଳିଲେ
ତିନିବେଦକୁ ତ ଚାରିପୁତ୍ର ହୋଇଲେ ॥୧୦୧୨୮॥
ତିନିପୁତ୍ରକୁ ଜେବେ ଦେବିଂ ତିନିବେଦ
କନ୍ଦଳ ହୋଇବ ଗୋଟିକି ନଦେଲେ ଭାଗ ॥୧୦୧୨୯॥
ଏତେ ବୋଲି ଅକ୍ଷର ତିନିଭାଗ କଲେ
ରୁକ ଯଯୁ ସାମ ବୋଲିଣ ନାମ ଦିଲେ ॥୧୦୧୩୦॥
ତିନି ବେଦରୁ ସେ କାଢ଼ିଲେ ତିନିଭାଗ
ତାହାର ନାମ ହୋଇଲା ଆଥର୍ବଣ ବେଦ[୧] ॥୧୦୧୩୧॥
କହନ୍ତି ଭିସ୍ମଂଦେବ ସୁଣନ୍ତି ଯୁଧିଷ୍ଟି
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଜଟି ॥୧୦୧୩୨॥
ଓମା ବୋଇଲେ ଭଲ କହିଲ ତ୍ରିଲୋଚନ
ନିଶ୍ୱାସ ପବନରୁ ବେଦ ହୋଇଲା ଜନମ ॥୧୦୧୩୩॥
ଜେତେବେଳେ ପ୍ରଳୟ ହୋଇଲା ବସୁନ୍ଧରି
ଭାନୁ ସସି ସହିତେ ନାସଗଲା ବଜ୍ରଧାରି ॥୧୦୧୩୪॥
ଜଳ ପବନ ଦିଗପାଳ ଆଦି[୨]
ହରିହର ସହିତେ ଗୋପତ ବେଦବାଦି[୩] ॥୧୦୧୩୫॥
ସମସ୍ତେ ନାସଗଲେ ସଂସାର ତୁଛା ହେଲା
ସେ ପ୍ରଳୟ ଜଳ କେଉଠାରେଂ ଥିଲା ॥୧୦୧୩୬॥
କାହାଠାରୁ ଜନ୍ମି ଘୋଟିଲା ସଂସାର
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ॥୧୦୧୩୭॥
ଯୁଧିଷ୍ଟି ଆଗେଂ ଜାହା କହିଲେ ଗଙ୍ଗାନାନ
ତାହା ଆମ୍ଭେ କହିବା କର୍ଣ୍ଣ ପଥେଂ ସୁଣ ॥୧୦୧୩୮॥
ପାତାଳ ସୁତାଳ ଅତିତାଳ ରାସାନ୍ତାଳ
ଦେବତାଳ ମହାତାଳ ନଉତାଳ ସେ ଭୁତାଳ ॥୧୦୧୩୯॥
ସିନ୍ଧୁତାଳ ବିନ୍ଦୁତାଳ ତାଳ ସୁରାସୁରି
ହରିତାଳ କଣୟ ତାଳ ତଡ଼ଉ ତାଳ[୪] ପୁରି ॥୧୦୧୪୦॥
ଗିରିତାଳ ମହୁତାଳ କୁରୁରିହତାଳ ଦେଢ଼ତାଳ
ଦେବିତାଳ ନିଳାତାଳ ଗୋଲେକ ପାତାଳ ॥୧୦୧୪୧॥
ଏମନ୍ତେ ଚଉବିଂସ ପାତାଳ ଗୋସାଇଂ
ସୁକ୍ଲାମ୍ବର ବିଷ୍ଣୁଂ ତହିରେ ଛନ୍ତି ରହିଂ ॥୧୦୧୪୨॥

୧ । ଘ ପୋଥି – ଅଥର୍ବ ସେହୁ ବେଦ
୨ । ଘ ପୋଥି – ଜଳ ପବନ ହରିହର ଗୋପତ ବେଦବାଦି
୩ । ଘ ପୋଥି – ହେ ବିଶ୍ୱନାଥ କହ ଏହି ସନ୍ଧି
୪ । ଘ ପୋଥି – ଦେଢ଼ତାଳ

ସେ ବିଷ୍ଣୁ ନାଭିରୁ ଫୁଟିଛି ପଦ୍ମପୁଷ୍ପ
ଲତାମାନ ବିସ୍ତାରି ଘୋଟିଛି ଜୋଣ ଦସ ॥୧୦୧୪୩॥
ସେ ପଦ୍ମର ଆସନ ହୋଇଅଛି ଛାଇ
ଭ୍ରମର ରାଉ ରାଉ ବସନ୍ତ ବହୁଥାଇ ॥୧୦୧୪୪॥
ନାହିଂ ତାଙ୍କର ବାମା ନାହିଂ ତାଙ୍କର ସ୍ତିରି ସଙ୍ଗ
ନାହିଂ ତାଙ୍କର ରାଗ ନାହିଂ ତାଙ୍କ ହିଂସା ନିସ୍କାଞ୍ଜନ ଅଙ୍ଗ[୧] ॥୧୦୧୪୫॥
ଜେତେବେଳେ ଦେବ ପ୍ରଳୟ ହୋଅଇ
ସମସ୍ତଙ୍କ ଭାରା ସେ ପୁରୁଷକୁ ଲାଗଇ ॥୧୦୧୪୬॥
ଆକାସ ମଞ୍ଚ ଚଉବିଂସ ପାତାଳର ଭାର
ନାଗିଣ ଠାକୁରଙ୍କ ଅଙ୍ଗରୁ ବହେ ଝାଳ ॥୧୦୧୪୭॥
ସେହି ଝାଳ ଚବିଶ ପାତାଳ ଫୁଟଇ
କ୍ଷଣକେ ନବସୃଷ୍ଟି ସେ ଜଳରେ ନାସ ଜାଇ ॥୧୦୧୪୮॥
ବଦୟନ୍ତି ଗିରିଜା ସୁଣହେ ତ୍ରିଲୋଚନ
ତୁମ୍ଭେ ଜେ ବୋଇଲ ନିରାକାର କରନ୍ତି ସୟନ ॥୧୦୧୪୯॥
ସତର ମନୁରେ ଏକ ନିଶ୍ୱାସ ଛାଡ଼ନ୍ତି
ପୁଣି ସୟନରେ ପବନ ସ୍ଥମ୍ଭନ୍ତି ॥୧୦୧୫୦॥
ଏହି ରୁପେଂ କେତେ ଦେବ କରନ୍ତି ସୟନ
ପୁଣି କେତେ କାଳେଂ କରନ୍ତି ସର୍ଜନ ॥୧୦୧୫୧॥
ସୁଣଗୋ ଓମା ବୋଲି ବୋଲନ୍ତି ପସୁପତି
ସୋଳଘଡ଼ି ଦିବସ ସୋଳଘଡ଼ି ରାତି ॥୧୦୧୫୨॥
ଦିବସେ ସର୍ଜନ ସୟନ ସେ ରାତି
ଏହି ରୁପେଂ ସଂସାର ହୁଅଇ ଉତପତି ॥୧୦୧୫୩॥
ସୁଣ ହେ ସିବ ବୋଲି ବୋଲନ୍ତି ସାକାମ୍ଭେରି
କାହାଠାରୁ ଜାତ ହୋଇଲା ତିମିରି ॥୧୦୧୫୪॥
ବଦୟନ୍ତି ରୁଦ୍ର କୁହୁଡ଼ି ଘୋଟିଥାଇ
ସର୍ଜନ କାଳେଂ ପୁଣ ଅର୍ଦ୍ଧେକ ସେସ ହୋଇ ॥୧୦୧୫୫॥
ଅଧେରାତ୍ର ହୋଅଇ ଅଧେ ହୋଅଇ ଦିବସ
ସୁଣଗୋ ଓମା ବୋଲି ବୋଲନ୍ତି ଦିଗବାସ ॥୧୦୧୫୬॥
ତଦନ୍ତେ କିସ ପୁଣ କହିଲେ ଗାଙ୍ଗେବ
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ ॥୧୦୧୫୭॥
ଏମନ୍ତ ଚରିତ୍ର ଯହୁଂ ଯୁଧିଷ୍ଟି ସୁଣିଲେ
ଭିସ୍ମଙ୍କୁ ଜଗନ୍ନାଥ ବହୁତ ପ୍ରସଂସା କଲେ ॥୧୦୧୫୮॥
ଧନ୍ୟ ତୋହର ଜିବନ ଧନ୍ୟ ତୋହର ଗୁଣ
ତୁହି ସେ କହିପାରୁ ଏଡ଼େ କଥା ମାନ ॥୧୦୧୫୯॥
ଭିସ୍ମେଂ ବୋଇଲେ ସ୍ୱାମି ନାହିଂ ମୋ ଭଗତି
ତେଣୁ କରି କଥା ଗୋଟାଏ ମାଗୁଅଛି ॥୧୦୧୬୦॥

୧ । ଘ ପୋଥି – ନିକଳଙ୍କ ଅଙ୍ଗ

ଅବସ୍ୟ ଜିବନ ମୋର ଜିବ ଏହିକ୍ଷଣିଂ
ଅପୁତ୍ରିକ ଦୋସ ମୋତେ ନଦେବୁ ଚକ୍ରପାଣିଂ ॥୧୦୧୬୧॥
ଜେ ରୁପେଂ ସମରେ ମୁଂ ବିନ୍ଧଇ ନାରାଜ
ତୋହର ରୋମେ ରୋମେ ଭେଦଇ ବାସୁଦେବ ॥୧୦୧୬୨॥
ସେହି ରୁପେ ମୋହର ଏହୁ ପଞ୍ଚୁପ୍ରାଣ
ତୁମ୍ଭର ଗର୍ଭ ଭିତରେ ପସୁ ଭଗବାନ ॥୧୦୧୬୩॥
ଜେବେ ମୋତେ ମହିରେ ଜନ୍ମ କରାଇବୁ
ସୋମବଂଶରେ ଜନ୍ମିଂ ନୃପତି ହେବି ବାବୁ ॥୧୦୧୬୪॥
ତୁମ୍ଭେ ଅଳପ ଦିନେ ଦେହଛାଡ଼ି ଗମିବ
ନିଳକନ୍ଦରେ ନିଳମାଧବ ହୋଇବ ॥୧୦୧୬୫॥
ତୁମ୍ଭେ ନିଳମାଧବ ମୁଂ ଗାଲମାଧବ ନାମ ବହିବିଂ
ଦୋହେଂ ଏକାନାମେଣ ଏକାନ୍ତେ ସଙ୍ଗହେବିଂ ॥୧୦୧୬୬॥
ତୁମ୍ଭର ଦ୍ରସନେ ଛଡ଼ାଉଥିବି ପାପମାନନ୍ତ
ସୁଣଗୋ ଓମା ବୋଲି ବୋଲନ୍ତି ସୁଳହସ୍ତ ॥୧୦୧୬୭॥
ବଚନ କହୁଂ କହୁଂ ହୋଇଲେ ହତପ୍ରାଣ
ଗୋବିନ୍ଦ ମୁଖ ଚାହିଂ ହୋଇଲେ ହତଜ୍ଞାନ[୧] ॥୧୦୧୬୮॥
ଡାକିଲେ ପଞ୍ଚୁପ୍ରାଣ ପିଣ୍ଡରୁ ଜାଅ ଛାଡ଼ି
ଜାଅ ବୋଲି ବୋଲନ୍ତେ ପିଣ୍ଡରୁ ପ୍ରାଣ ଗଲା ଉଡ଼ି ॥୧୦୧୬୯॥
ଦେଖିଣ ଯୁଧିଷ୍ଟି ତାଡ଼ନ୍ତି ଭୁଜଦଣ୍ଡ
ଏତେ କାଳେ ହରି ଆମ୍ଭେ ହୋଇଲୁ ଛଉଣ୍ଡ ॥୧୦୧୭୦॥
ଯେଉଁକାଳେ ପଣ୍ଡୁ ଆମ୍ଭର ହୋଇଲେ ନିଧନ
ସେକାଳେଂ ଆମ୍ଭେଂ ହୋଇଥିଲୁ ସାନସାନ ॥୧୦୧୭୧॥
ଗାନ୍ଧାରି ଧୃତିରାଷ୍ଟ୍ର ଅଣଦୟା କଲେ
ଭିସ୍ମଂକ ଆହ୍ଲାଦେଂ ଆମ୍ଭେଂ ଥାଉ ଭଲେ ॥୧୦୧୭୨॥
ଭିସ୍ମଂ ବିଦୁର ବ୍ୟାସେ ଗୋବିନ୍ଦ ଗୁରୁଦ୍ରୋଣ
ଏ ପାଞ୍ଚ ଆସ୍ରେଂ ବଞ୍ଚନ୍ତି ପାଣ୍ଡେବ ପାଞ୍ଚଜଣ ॥୧୦୧୭୩॥
ବନ୍ଧୁ ସୋଦର ସାଖା ଛାଡ଼ିଲେ ସମସ୍ତ ହିଂ ଜେତେ
କେବଳ ହରି ଆସ୍ରେ କରିଅଛୁ ତୋତେ ॥୧୦୧୭୪॥
ଭିମ ବୋଇଲା ହୋ କାଷ୍ଟ ଆଣବହିଂ
ଦାହା କରିବା ଏ କୋଳର ପିତାମହିଂ ॥୧୦୧୭୫॥
ଗୋବିନ୍ଦେ ବୋଇଲେ ହୋ ଦାହା କରିବା କିସ
ପ୍ରାଣ ଗଲା ପିଣ୍ଡ ହୋଇଲାନି ନାସ ॥୧୦୧୭୬॥
ଆମ୍ଭେ ଦେଖୁଂ ଦେଖୁଂ ପିଣ୍ଡ ହୋଇଲା ଅଙ୍ଗାର
ଏଡ଼େ ଲୋକ କାହିଂ ଅଛଇ ସଂସାରର ॥୧୦୧୭୭॥

---

୧ । ଘ ପୋଥି – ମଉନ

## ମେରୁଶୁଳ ଦୈତ୍ୟର କୃଷ୍ଣଙ୍କ ସହ ଯୁଦ୍ଧ ଓ ମୃତ୍ୟୁ

ପଞ୍ଚୁ ପାଣ୍ଡେବଙ୍କୁ ବୋଲନ୍ତି ଦେବହରି
ଚାଲ ସୁଭବେଳେଂ ହସ୍ତିନା ବସମାଡ଼ି ॥୧୦୧୭୮॥
ଏତେ ବୋଲି ସେଠାରୁ ଗମନ କରିଗଲେ
ହସ୍ତିନା ଭୁବନେ ପ୍ରବେସ ହୋଇଲେ ॥୧୦୧୭୯॥
ସୁଭବେଳ ବୁଝି କହିଲା ସହଦେବେ
ଯହିଂରେ ଯୁଧିଷ୍ଟି ଅବିସେକ ହୋଇବେ ॥୧୦୧୮୦॥
ବ୍ୟାସ ମାର୍କଣ୍ଡ ଅଗସ୍ତି ଗୌତମ
ପୁଲହ ପରାସର ବିଭାଣ୍ଡେକ ଚେବନ ॥୧୦୧୮୧॥
ଏହାଙ୍କର ମୁଳେଂ ସାଠିଏ ସହସ୍ର ମୁନି ଜତି
ପ୍ରବେସ ହୋଇ ବେଦ ଅଧ୍ୟୟନ କରନ୍ତି ॥୧୦୧୮୨॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ
ବାରୁଣାରୁ ଘେନି ଗଲେକ ନାରିଗଣ ॥୧୦୧୮୩॥
ବହୁତ ଉଛବ ଜେ ହସ୍ତିନା ଭୁବନ
ବାଜଇ ବିଜିଘୋସ ଟମକ ନିସାଣ ॥୧୦୧୮୪॥
ତିର୍ଥ ଜଳରେ ଯୁଧିଷ୍ଟି କରନ୍ତି ସ୍ନାହାନ
ତଦନ୍ତେ ଗଙ୍ଗାଜଳ ଢାଳିଲେ ବ୍ରାହ୍ମଣ ॥୧୦୧୮୫॥
ତଦନ୍ତେ ପନିର ପାଣି ଦେଲେ ଢାଳି
ଅହିକ ସ୍ତିରିମାନେ ଦିଅନ୍ତି ହୁଳହୁଳି ॥୧୦୧୮୬॥
ନୟନେ କଜ୍ୱଳ କପୋଳେ ଚନ୍ଦନ
ଉତରି ପଇତା ଜେ ସୋଭିତ କନ୍ଧେଣ ॥୧୦୧୮୭॥
ଅସରଳ ସୁତା ବାନ୍ଧିଲେ ହସ୍ତର
ଦ୍ରୋପଦି ବେସ ଜେ ସେହି ପରକାର ॥୧୦୧୮୮॥
ସଙ୍ଖ ବିଣା ବାଦ୍ୟ ଜେ ବାଜଇ ମହୁରି
ବ୍ରାହ୍ମଣଙ୍କ ବେଦ ନାରି ଦିଅନ୍ତି ହୁଳହୁଳି ॥୧୦୧୮୯॥
ଯୁଧିଷ୍ଟିଙ୍କ ଅବିସେକ ଦେଖନ୍ତି ସର୍ବଲୋକ
ଆଗେ ବେତ ଧରି ଉଭା ବେହେରା ବାରିକ ॥୧୦୧୯୦॥
ମଣିମା ମଣିମା ବୋଲି ଖୁଣ୍ଟିଆ ଡାକ ଦେଇ
ଯୁଧିଷ୍ଟି ରାଜା ବୋଲି ଘୋସଣ ସୁଭଇ ॥୧୦୧୯୧॥
ଜହୁଂ ସେ ନୃପତି ଯୁଧିଷ୍ଟି ହୋଇଲେ
ବ୍ରାହ୍ମଣକୁ ବହୁତ ଧନ ସମର୍ପିଲେ ॥୧୦୧୯୨॥
ଭଣ୍ଡାର ମେଲା କଲେ ଦରିଦ୍ରଂ ନିଲେ ବହିଂ
ସନ୍ୟ ସେନାମାନ ଉଭାରିଲେ ଜାଇ ॥୧୦୧୯୩॥
ଯୁଧିଷ୍ଟି ମୁଖ ଚାହିଂ ବୋଲନ୍ତି ଭଗବାନ
ଆମ୍ଭେ ଜାଉଅଛୁ ଆମ୍ଭ ଦ୍ୱାରିକା ଭୁବନ ॥୧୦୧୯୪॥
ଯୁଧିଷ୍ଟି ବୋଇଲେ ଜେବେ ଯିବ ଚଉବାହା
ସୁଣିଅଛ ଭିସ୍ମେ କହିଛନ୍ତି ଯାହା ॥୧୦୧୯୫॥

ଗୋତ୍ରବଧ ପାତେକ ଅର୍ଜିଲି ଗୋସାଇଂ
ଯେଥିକି ପ୍ରତିକାର କହ ହେ ଯଦୁସାଇଂ ॥୧୦୧୯୬॥
ଯୁଧିଷ୍ଠି ବଚନେ କହନ୍ତି ବାସୁଦେବ
ଗୋତ୍ରବଧ ପାତେକକୁ ଅଟଇ ଅଶ୍ୱମେଧ ॥୧୦୧୯୭॥
ଯୁଧିଷ୍ଠି ବୋଇଲେ ତହିଂ କିସ ଲୋଡ଼ା ହୋଇ
ବଦୟନ୍ତି ବାସୁଦେବ ଜାଅ ହେ ବ୍ୟାସେ କହିଂ ॥୧୦୧୯୮॥
ବଦୟନ୍ତି ବ୍ୟାସେ ଲକ୍ଷଣବନ୍ତ ଅଶ୍ୱ ଆଣି
ବସ୍ତ୍ରମାନ ଅଳଙ୍କାର କରିବ ମଣ୍ଡଣି ॥୧୦୧୯୯॥
ବାନ୍ଧିବ ବିରନେତ[1] ତାହାର ମସ୍ତକରେଂ
ସନ୍ୟ ସେନା ଘେନିଣ ଗମିବ ପଛରେଂ ॥୧୦୨୦୦॥
ଜହିଙ୍କି ଇଛା ତହିଂକି ଜାଉଥିବ
ଜେ ବନ୍ଦି କରିଥିବ ତା ସଙ୍ଗେ ସମର କରିବ ॥୧୦୨୦୧॥
ଅଶ୍ୱ ମୁକୁଳିଲେ ସେ ଯଜ୍ଞ ହୁଏ ପୁନ୍ୟ
ବନ୍ଧନ ହୋଇଲେ ଅଶ୍ୱ ଜାଗହୋଏ ଖଣ୍ଡନ ॥୧୦୨୦୨॥
ଶ୍ରୀହରି ବୋଇଲେ ଯଜ୍ଞ କରନ୍ତୁ ଯୁଧିଷ୍ଠି
ଅଶ୍ୱ ରଖିବାକୁ ଜାଉ ହେ କିରଟି ॥୧୦୨୦୩॥
ବରସକେ ଅଶ୍ୱ ଜେ ଆସିବ ଫେରିଣ
ସେହି କାଳେ ଜାଗ ହୋଇବ ସମ୍ପୁର୍ଣ୍ଣ ॥୧୦୨୦୪॥
ଭଣ୍ଡାର ମେଲା ହେବ ଦରିଦ୍ରେ ନେବେ ଧନ
ଏମନ୍ତ କହି ହରି ଦିଆଇ ଘୋସଣ ॥୧୦୨୦୫॥
ସାଧୁଙ୍କ ସଙ୍ଗରେ ପାତେକ ହୋଇବ ମୋଚନ
ଜହିଂ ବୈଷ୍ଣବ ଛନ୍ତି ଆଣିମ ଅର୍ଜୁନ ॥୧୦୨୦୬॥
ସାଜିଲେ ସନ୍ୟ ସେନା ଉଡ଼ଇ ଚିରାଳ
ଅର୍ଜୁନ ସଜ ହୋଇ ବସିଲା ରଥର ॥୧୦୨୦୭॥
ବିଜୟ ସାରଥି ବାହାଇ ବିମାନ
ଅଶ୍ୱକୁ ସଜକରି ଛାଡ଼ିଲେ ଅଗ୍ରତେଣ ॥୧୦୨୦୮॥
ବିରପତ୍ର ମସ୍ତକରେ ଉଡ଼ଇ ଫରହର
ଉତର ଦିଗକୁ ଗମିଲା ଅଶ୍ୱବର ॥୧୦୨୦୯॥
ଯଜ୍ଞ କରିବାକୁ ଯୁଧିଷ୍ଠି ରହିଲେ
ସୁଣଗୋ ଓମା ବୋଲି ସଙ୍କର କହିଲେ ॥୧୦୨୧୦॥
ଦ୍ୱାରିକା ଭୁବନରୁ ମିଳିଲା ଡଗର
ବାସୁଦେବ ଅଗ୍ରତେ କହିଲେ ସମାଚାର ॥୧୦୨୧୧॥
ମହତାସୁର[2] ବୋଲି ଦଇତ୍ୟେ ଅଟଇ
ମୟେ ଦୈଇତ୍ୟ ତାହାର ତନୟ ଜେ ହୋଇ ॥୧୦୨୧୨॥

୧ । ଘ ପୋଥି – ବିରପତ୍ର
୨ । ଘ ପୋଥି – ସିଙ୍ଘିକାସୁର

ଜେ ମୟେସୁର ଜଳାନ୍ଧର ଭୁଅ କଲା
ଅର୍ଜୁନ ହସ୍ତେ ତାକୁ ମରାଇଲୁ ଚକାଡୋଳା ॥୧୦୨୧୩॥
ସେ ମୟେସୁର ପୁତ୍ର ମେରୁସୁଳ ବୋଲିଂ
ଚୌରାସି କୋଟି ସନ୍ୟ ଘେନି ଆସୁଅଛି ପେଲିଂ ॥୧୦୨୧୪॥
ଡଗର ମୁଖରୁ ସେ ବାରତା ଥିଲା ପାଇ
ଗୋବିନ୍ଦ ସିନା ତୋର ପିତାକୁ ମରାଇ ॥୧୦୨୧୫॥
ରହିଅଛି ହରି ଭାରତ ଭୁମିର
ସୁଣିଣ କୋପ ହୋଇଲା ମେରୁସୁଳ ॥୧୦୨୧୬॥
ମୋ ପିତା ବୈରି ଅଟଇ ଚକ୍ରଧର
ଆଗେ ତାହାର ଭୁବନ କରିବଇଂ ଜୁର ॥୧୦୨୧୭॥
ପଛେଂ ପାଣ୍ଡେବଙ୍କୁ ପକାଇବି ମାରିଂ
ଏତେ ବୋଲି କଟକାଇ କଲା ଦ୍ୱାରାବତି ପୁରି ॥୧୦୨୧୮॥
ବହୁତ ପୁରମାନ ଉଜାଡ଼ ସେ କଲା
ଛପନ କୋଟି ଜାଦବରୁ ତିନିକୋଟି ନାସିଲା ॥୧୦୨୧୯॥
ଭ୍ରାଥମାନଙ୍କୁ ଘେନି ଜୁଝନ୍ତି ପଦ୍ମନ
ଗୋବିନ୍ଦେ ବୋଇଲେ କାହିଂଗଲେ ବଳରାମ ॥୧୦୨୨୦॥
ଡଗର ବୋଇଲା ସେ ଜାଇଛନ୍ତି ତିର୍ଥସେବିଂ
ସୁଣିଣ ବିସାଦ ପାଇଲେ ଗୋବିନ୍ଦି ॥୧୦୨୨୧॥
ଭିମକୁ ବୋଇଲେ ନିୟଳସେ ଥିବୁଟିରେ ମାରୁତି
ଜେମନ୍ତେ ପରଥାଟ ନପାରେ ରାଜ୍ୟେ ପସି ॥୧୦୨୨୨॥
ଏତେ କହି ଗରୁଡ଼େ ବସିଲେ ଭଗବାନ
ପ୍ରବେସ ହେଲେ ଜାଇ ଦ୍ୱାରିକା ଭୁବନ ॥୧୦୨୨୩॥
ଦ୍ୱାରିକା ଭୁବନେ ବିକଳ ସକଳ ଜାଦବ
ବୋଲନ୍ତି ଅରକ୍ଷ ଆମେ ହୋଇଲୁ ବାସୁଦେବ ॥୧୦୨୨୪॥
ପ୍ରତାପି ଅସୁରେ କାହୁଂ ସେ ଅଇଲା
ଏଡ଼େ ପୁର ଗୋଟି ଖଳବଳ କଲା ॥୧୦୨୨୫॥
ସୁଣିଣ କୋପିତ ହୋଇଲେ ଚକ୍ରଧର
ସାତ୍ୱିକିକି ବୋଇଲେ ରଥ ସଜକର ॥୧୦୨୨୬॥
ମଣ୍ଡିଲା ମାଧବି ବିମାନ ଗୋଟାଏ
ସାରଙ୍ଗଧନୁ ଧରି ବସିଲେ ଦେବରାଏ ॥୧୦୨୨୭॥
ସଂଗ୍ରାମ ଭୁମିରେ ମିଳି ବାଇଲେ ପଞ୍ଚୁଜନ ସଙ୍ଖ[1]
ଦୈଇତ୍ୟ ଥାଟରେ ପଡ଼ିଲା ଚମକ ॥୧୦୨୨୮॥
ଲକ୍ଷେ ସାଠିଏ ସହସ୍ର ଅଣାସି କୁମର
ଛପନ କୋଟି ଜାଦବେ ଅଛନ୍ତି ସନ୍ୟବଳ ॥୧୦୨୨୯॥
ଗୋବିନ୍ଦ ଭରସାରେ ସମସ୍ତେ ଉଠିଲେ
ଏକ ମୁଖ ହୋଇଣ ନାରାଜ ବିନ୍ଧିଲେ ॥୧୦୨୩୦॥

୧ । ଘ ପୋଥି – ଦେବଦତ୍ତ ସଙ୍ଖ

କୋଟି କୋଟି ଦୈଇତ୍ୟ ନାସନ୍ତି ଦେବହରି
ଗରୁଡ଼ ପକ୍ଷ ଘାତେ ଥୋକାଏ ଗଲେ ଉଡ଼ି ||୧୦୨୩୧||
ଏମନ୍ତେ ରାକ୍ଷାସେ ହୋଇଲେ ଭଗାଣ
ପୟେଡ଼ ପଡ଼ିଲା ସେ ସପତ ଜୋଜନ ||୧୦୨୩୨||
ଗୋଡ଼ାନ୍ତି ଜାଦବେ ପଳାନ୍ତି ରାକ୍ଷସ
ଆସ୍ରେ କଲେ ଜାଇ ମେରୁସୁଳ ପାସ ||୧୦୨୩୩||
ଡାକଇ ଦୈଇତ୍ୟ କିପାଇଂ ଅଇଲ ପଳାଇ
କେହୁ ତୁମ୍ଭର ବୈରି ସେଠାରେ କହ ରହି ||୧୦୨୩୪||
ମୁଇଂ ସେ ରକ୍ଷକ ସଂସାରେ ଅଟେ ମେରୁ
ମୋହର ଉପରେ କି ଅଛଇ ହନ୍ତକାରୁ ||୧୦୨୩୫||
ରାକ୍ଷାସେ ବୋଇଲା ଜେ ତୋ ପିତାକୁ ମରାଇଲା
ସେହି ପୁରୁଷେ ଆସି ସମରେ ବିଜେକଲା ||୧୦୨୩୬||
ଏମନ୍ତ କହୁଂ କହୁଂ ପ୍ରବେସ ଦଇତାରି
ତିନିକୋଟି ନାରାଜ ବିନ୍ଧିଲେ ଓଟାରି ||୧୦୨୩୭||
ତିନିପୁର ଜାକ ଉଲୁକାପାତ ହେଲା
କିଞ୍ଚିତ ନାରାଜରେ ତାହା ଦୈଇତ୍ୟ ଛେଦିଲା ||୧୦୨୩୮||
ରାକ୍ଷାସ ବିନ୍ଧିଲା ନଉ ସହସ୍ର ବାଣ
ଦେବ ବାଣେ ତାହା ଛେଦିଲେ ଭଗବାନ ||୧୦୨୩୯||
ଶ୍ରୀହରି ବୋଇଲେ ରେ ରାକ୍ଷସ ହେଲୁ ବାଇ
ଜେବଣ ଦ୍ୱାରିକାକୁ ଜମ ପସିତ ନପାରଇ ||୧୦୨୪୦||
ସେ ପୁରେ କିପାଇଂ ପସିଲୁରେ ନ ଜାଣି
ଏହିକ୍ଷଣି ତୋତେ ପେସିବି ସଜିଂବନି ||୧୦୨୪୧||
ଶ୍ରୀହରି ବଚନେ ବୋଇଲା ମେରୁସୁଳ
ମୋ ପିତା ବୈରି ଅଟୁ ତୁ ପାମର[୧] ||୧୦୨୪୨||
ଜାହାକୁ ମାରିବାକୁ ମୋ ପିତା ଆସିଥିଲା
ତୁହି ମରାଇଲୁ ସେ ରାଜ୍ୟକୁ ନ ଗଲା[୨] ||୧୦୨୪୩||
ପିତାର ନିଧନେ ମୁଂ କଲିରେ କଟକାଇ
ନାସିବିଂ ତୋତେ ମୁଂ ପିତୃରଣ ସୁଝିବଇଂ ||୧୦୨୪୪||
ଦୈଇତ୍ୟକୁ ମାରି ଦଇତାରି ନାମ ତୋର
ଏହିକ୍ଷଣି ତୋତେ କରିବିଂ ଅଙ୍ଗାର[୩] ||୧୦୨୪୫||
ଆନ ଦାନବ ପ୍ରାଏ ନ ମଣ ମୋତେ ତୁହିଂ
ମୋତେ ଜିଣିଲେ ସିନା ମହିମା ତୋର ରହିଂ ||୧୦୨୪୬||
ମୋହର ନାମ ସେ ଅଟଇ ମେରୁସୁଳ
ନାଗ ଦେବ ମାନବଙ୍କର ମୁହିଂ ଅଟେ କାଳ ||୧୦୨୪୭||

୧ । ଘ ପୋଥି – ପାଣ୍ଡେବ ପାଞ୍ଚଜଣ
୨ । ଘ ପୋଥି – ମୋ ପିତା ନାସ ଗଲା
୩ । ଘ ପୋଥି – ପେସିବି ଯମପୁର

ଏତେ ବୋଲି କୁହୁକା ନାରାଜ ବିନ୍ଧିଲା
ଦିବସରେ ଘୋର ଅନ୍ଧକାର କଲା ||୧୦୨୪୮||
ରଥିକି ସାରଥି ଆଉ ଦିସଇ ନାହିଂ
ସାରଥି ବୋଇଲା ମୋର ରଥଗଲା କାହିଂ ||୧୦୨୪୯||
ନ ଦିସଇ ବିମାନ ନ ଦିସଇ ଚାରି ଅଶ୍ୱ
ନ ଦିସଇ ଭାନୁ ସସି ନ ଦିସେ ଆକାସ ||୧୦୨୫୦||
ଭୁଜକୁ ଭୁଜ ଆଉ ଦିସଇ ଆଉ ନାହିଂ
କରନ୍ତି ଘୋର ରଣ ହଣାହଣି ହୋଇ[୧] ||୧୦୨୫୧||
ନୋହଇ ଚିହ୍ନା ଚିହ୍ନି ପର କି ଅପର
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ||୧୦୨୫୨||
ସୁରସିଙ୍ଘ ନଉସିଙ୍ଘ ଜଜନ ନଉସିରା[୨]
ଜପାସୁର ବିଟଳ ବିଦୁମାଳି ମହାବିରା ||୧୦୨୫୩||
ଯେ ରୁପେଂ ମେରୁସୁଳର ସେନାପତିମାନେ
ତାଙ୍କ ସଙ୍ଗେ ଜୁଝନ୍ତି ଶ୍ରୀକୃଷ୍ଣ ନନ୍ଦନେ ||୧୦୨୫୪||
ଜହୁ ସେ ମେରୁସୁଳ ଅନ୍ଧାର କଲା ସୃଷ୍ଟି
ଅନ୍ଧାରେ ଜାଦେବଙ୍କୁ ଦୈଇତ୍ୟେ ଗଲେ ଘୋଟି ||୧୦୨୫୫||
ଦେଖିଣ ଜଗନ୍ନାଥେ ବିନ୍ଧିଲେ ସୁର୍ଯାସର
ତୁଟିଲା ଅନ୍ଧାର ଘୋଟିଲା ଦିନକର ||୧୦୨୫୬||
ପବନାସରକୁ ମେରୁସୁଳ ବିନ୍ଧିଲା
ଗୋବିନ୍ଦର ରଥ ଗଗନେ ଉଡ଼ିଗଲା ||୧୦୨୫୭||
ଉଡ଼ିଣ ପଡ଼ିଲା ସେ ଚନ୍ଦ ନାମେ ଗିରି
ମସିଗୁଣ୍ଡା ହୋଇ ରଥଗୋଟା ଗଲା ଚୁରି ||୧୦୨୫୮||
ସାତ୍ୱିକି ସହିତେ ଦେବକି ନନ୍ଦନ
କ୍ଷଣକେ ମୋହ ହୋଇ ପାଇଲେ ଚେତନ ||୧୦୨୫୯||
ନବତନ ରଥେ ବସିଣ ରଣ କଲେ
ତିନିଲକ୍ଷ ବାଣ ଦୈଇତ୍ୟକୁ ବିନ୍ଧିଲେ ||୧୦୨୬୦||
ରଥି ସାରଥି ସହିତେ ବିମାନ
ସରେ ସରେ ସନ୍ଧିଲେ ଦେବ ଭଗବାନ ||୧୦୨୬୧||
ତେତେ ସରଜାକ ଉପୁଡ଼ି ପଡ଼ିଲା
ରଥି ସାରଥି ବିମାନରୁ ଗୋଟିଏ ନଟଳିଲା ||୧୦୨୬୨||
ଦେଖିଣ ଜଗନ୍ନାଥ ଆଶ୍ଚାର୍ଯ ହୋଇଲେ
ଏତେ ନାରାଜ ବିନ୍ଧିଲି ବିଅର୍ଥ ଏବେ ହେଲେ ||୧୦୨୬୩||
ଏତେ ବୋଲି କୋପିତ ହୋଇଲେ ଭଗବାନ
ବିନ୍ଧିଲେ ନାରାଜ କୋଟିଏ ହୁତାସନ ||୧୦୨୬୪||

୧ । ଘ ପୋଥି – ଜନ୍ତାଜନ୍ତି ହୋଇ
୨ । ଘ ପୋଥି – ମୁରାସିଂହ ମଧସିଂହ ଜୟାସିଂହ ବିରା

କୋଟିଏ ସିଖା ଧରି ଧାଇଂଲା ଅନଳ
ସପତ ଦିପା ପୃଥି ହୋଇଲା ତରଳ ॥୧୦୨୬୫॥
ସେ ଅନଳ ଜେତେବେଳେ ଦୈଇତ୍ୟଠାରେ ମିଳି
ପାଟି ବିସ୍ତାରିଣ ସରକୁ ଦୈଇତ୍ୟ ଦିଲା ଗିଳି ॥୧୦୨୬୬॥
ଦେଖିଣ ଆଶ୍ଚାର୍ଯ ହୋଇଲେ ଭଗବାନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୧୦୨୬୭॥
ରଥରୁ ଡେଇଂଣ[୧] ଜେ ମେରୁସୁଳ ଧାଇଂ
ବାସୁଦେବ ରଥ ଧରିଣ ମୁଣ୍ଡିଆଇ ॥୧୦୨୬୮॥
ବୁଡ଼ି ମର ବୋଲି ସିନ୍ଧୁ ଜଳକୁ ଫିଙ୍ଗିଦିଲା
ଚୌରାସି କାଠି ଗର୍ଭରେ ବିମାନ ବୁଡ଼ିଗଲା ॥୧୦୨୬୯॥
ମେରୁଠାରୁ ଜେହୁ ବିମାନ ଅଟେ ଭାରି
ନ ଭାସିଲା ଜଳେ ରହିଲା ସେହି ବୁଡ଼ି ॥୧୦୨୭୦॥
ବିମାନ ତେଜି ହରି ସାତ୍ୱିକିକି ଘେନି
ଜଳୁଂ ବାହାରି କୋଳେ ପ୍ରବେସ ଚକ୍ରପାଣି ॥୧୦୨୭୧॥
ସୁମରନ୍ତେ ପ୍ରବେସ ବିନନ୍ତା ନନ୍ଦନ
ଗରୁଡ଼ ପୃଷ୍ଟେ ବସି ବିଜଏ ହେଲେ ନାରାୟଣ[୨] ॥୧୦୨୭୨॥
ଦେଖିଲେ ମେରୁସୁଳ ବିନ୍ଧୁଅଛି ସର
ଜାଦେବ ବଳ ପଡ଼ି ହୁଅନ୍ତି ଅଙ୍ଗାର ॥୧୦୨୭୩॥
ଦେଖିଣ ବାସୁଦେବ ଆଶ୍ଚାର୍ଯ ହୋଇଲେ
ଏଡ଼େ ଭଳି ଦୈଇତ୍ୟ ନଥିଲା କାହିଂ ଭଲେ ॥୧୦୨୭୪॥
ଅଷ୍ଟାଦସ ଲକ୍ଷ ସର ବିନ୍ଧିଲେ ଭଗବାନ
ଉଲୁକାପାତ ହେଲା ଚଉଦଭୁବନ ॥୧୦୨୭୫॥
ଦାନେବ ରହୁବରେ[୩] ପଡ଼ିଲା ଜାଇ ସର
ବିସାସତେ ଜୋଜନ ଅଟଇ ରହୁବର ॥୧୦୨୭୬॥
ସତେକ ସାର୍ଦ୍ଦୁଳ ଟାଣୁଥିଲେ ରଥ
ସେ ରହୁବର ଗୋଟା ହୋଇଲା ଭଗନସ୍ତ ॥୧୦୨୭୭॥
ହୋଇଲା ପାଦଗତି ଦୈଇତ୍ୟ ଅନର୍ଗଳ
ଗରୁଡ଼କୁ ପ୍ରହାରିଲା ଗୋଟାଏକ ସୁଳ ॥୧୦୨୭୮॥
ସୁନ୍ୟକୁ ଡେଇଂଣ ଗରୁଡ଼ ବଂଚାଇ
କୋପେଂ ଦୈଇତ୍ୟ ସିରେ ଥଣ୍ଟ ପ୍ରହାରଇ ॥୧୦୨୭୯॥
କୌମୋଦି ଗଦା ପିଟିଲେ ଦୈଇତାରି
ମେରୁସୁଳ ଉପରେ ବାଜି ପଡ଼ିଲା ଉପୁଡ଼ି ॥୧୦୨୮୦॥
ଡାକଇ ମେରୁସୁଳ ମାନବା ହେଲୁ ବାଇ
ସୁଚିମୁନରେ କି ସୁମେରୁ ଫୁଟଇ ॥୧୦୨୮୧॥

୧ । ଘ ପୋଥି – ଡେଇଂ ପଡ଼ି
୨ । ଘ ପୋଥି – କରନ୍ତି ଗମନ
୩ । ଘ ପୋଥି – ହୃଦରେ

ମୁହିଂ ମେରୁସୁଳ ବଜ୍ରହୁଂ ଅଟେ ଅଙ୍ଗ
ତୋ ଗଦା ତିରଣ ସେ କେମନ୍ତେ ଭେଦିବ ॥୧୦୨୮୨॥
ଏତେ ବୋଲି ବିନ୍ଧିଲା ଲକ୍ଷେକ କତୁରି
ବଞ୍ଚାଇ ନପାରିଲେ ଦେବ ଦୈଇତାରି ॥୧୦୨୮୩॥
ଭେଦିଣ ରୋମେ ରୋମେ ନିକଳିଲା ରୋଧିର
ଦିସଇ ହରି ଦେହ ଜେସନେ ମନ୍ଦାର ॥୧୦୨୮୪॥
ଝାଳ ସଙ୍ଗେ ରୋଧିର ବହଇ ଝରଝର
ଯୁଝନ୍ତି ଅବିସ୍ରାମେ ନାହିଂ ଅପସର ॥୧୦୨୮୫॥
କୋପରେ ଭଗବାନ ପେସିଲେ ସୁଦ୍ରିସେନ
ଚକ୍ରକୁ ଦୈଇତ ବୁଜିଲା ନୟନ ॥୧୦୨୮୬॥
ଗର୍ଜିଣ ସୁଦ୍ରିସେନ ପଡ଼ିଲା କଣ୍ଠର
ବେନି ଖଣ୍ଡ ହୋଇଲା ଦାନେବ ମେରୁସୁଳ ॥୧୦୨୮୭॥
ଲେଉଟି କନ୍ଧରେ ଲାଗିଲାକ ସିର
ଧାଇଂଯାଇ ଗରୁଡ଼କୁ ଧଇଲା ଅସୁର ॥୧୦୨୮୮॥
ଗୋବିନ୍ଦ ସହିତେ ମେରୁସୁଳ ଧରି
ଧାଇଂଲା କୋପଭରେ ଜେସନେ ପକ୍ଷି ଓଡ଼ି ॥୧୦୨୮୯॥
ବିଚାରଇ କେଉଂ କତିକି ଦେବି ଫିଙ୍ଗି
ଜଳେ ଫିଙ୍ଗି ଦିଲି ନ ମଲା ଏହୁ ବୁଡ଼ି ॥୧୦୨୯୦॥
ଏମନ୍ତ ବିଚାରି ଆକାସକୁ ଫିଙ୍ଗିଦିଲା
ଲକ୍ଷେ ଜୋଜନରେ ଜାଇ ଗରୁଡ଼ ପଡ଼ିଲା ॥୧୦୨୯୧॥
ଘଡ଼ିକେ ଚେତନା ପାଇଲେ ଭଗବାନ
ଗରୁଡ଼ ପୃଷ୍ଟେ ବସି କଲେକ ଗମନ ॥୧୦୨୯୨॥
ତେଣେ ମେରୁସୁଳ ନାସଇ ଜେ ସନ୍ୟ
ଦଳଦଳିତ ହୋଇ କମ୍ପଇ ଦ୍ୱାରିକା ଭୁବନ ॥୧୦୨୯୩॥
ଜଗତି ଅଟାଳି ପାଚେରି ତରୁବର
ସମସ୍ତ ଭାଜିଂ ଚୂନା ହୋଇଲା ଦ୍ୱାରିକା ନବର ॥୧୦୨୯୪॥
ସାମ ଗଦ ପଦ୍ମନ ଉଗାଳିଲେ ଜାଇ
ତିନି ଲକ୍ଷ ନାରାଜ ବିନ୍ଧନ୍ତି ତିନି ଭାଇ ॥୧୦୨୯୫॥
ଦୈଇତ ଉପରେ ପଡ଼ିଲା ନାରାଜ
ଫୁ ଫୁ କାର କରି ଓଡ଼ାଇଲା ଦନୁଜ ॥୧୦୨୯୬॥
ଧାଇଂ ତିନିଭାଇକି ଜାକିଲା କାଖର
ସୁକୁମାର ତନୁବୋଲି ବିଚାରେ ମନର ॥୧୦୨୯୭॥
ଏହି ତିନି ଗୋଟିକି ଜେମନ୍ତେଂ ଦେବିଗିଳି
ତେବେ ସେ ପଞ୍ଚୁ ଆତ୍ମା ସନ୍ତୋଷ ମୋହରି ॥୧୦୨୯୮॥
ଏତେ ବିଚାରି ତିନି ଭ୍ରାଥକୁ ଗିଳିଦିଲା
ଆବର ସନ୍ୟକୁ ଖାଇତେ ଗୋଡ଼ାଇଲା ॥୧୦୨୯୯॥

ସେହି ସମୟରେ ପ୍ରବେସ ଆଦିମୁଳ
ଡାକିଲେ ରହ ରହରେ ମେରୁସୁଳ ॥୧୦୩୦୦॥
ରହିଲା ମେରୁସୁଳ ଗୋବିନ୍ଦ ଡାକସୁଣି
କୋପେଣ ଚକ୍ରକୁ ପେସିଲେ ଚକ୍ରପାଣି ॥୧୦୩୦୧॥
କାଟିଲା ଦୈଇତ୍ୟ ସିର ପଡ଼ିଲା ଭୁମିର
ଲେଉଟି ମୁଣ୍ଡଜାଇ ଲାଗିଲା କନ୍ଧର ॥୧୦୩୦୨॥
ଦେଖିଣ ଜଗନ୍ନାଥେ ଆଶ୍ଚାର୍ଯ ହୋଇଲେ
ଭୁମିରେ ପଡ଼ିମୁଣ୍ଡ ଲାଗଇ କନ୍ଧରେ ॥୧୦୩୦୩॥
ରାତ୍ର ଦିବସ ସେ ଅବିସ୍ରାମ ରଣ
ସମସ୍ତ ଦୈଇତ୍ୟଠାରୁ ଅଟଇ ଏହୁ ଟାଣ ॥୧୦୩୦୪॥
ସମର କରନ୍ତେ ବରସେ ଗଲା ବହିଂ
ସୁଣଗୋ ଓମା ବୋଲି ବୋଲନ୍ତି ସୁଳସାଇଂ ॥୧୦୩୦୫॥
ଅଶ୍ୱ ରଖିବାରେ ଜେ ଅର୍ଜୁନ ଜାଇଥିଲା
ଭ୍ରମିଣ ବରସକେ ହସ୍ତିନାରେ ହୋଇଲା ॥୧୦୩୦୬॥
ଯଜ୍ଞ ସମ୍ପୁର୍ଣ୍ଣେ ସେ ଉଠିଲେ ଯୁଧିଷ୍ଟି
ସାଧୁ ଯୁଧିଷ୍ଟି ବୋଲି ଦେବତାଏ ଭାସି ॥୧୦୩୦୭॥
ଅର୍ଜୁନକୁ ଚାହିଂଣ ବୋଇଲେ ଧର୍ମନାନ
ମେରୁସୁଳ ବୋଲିଣ ସେ ମୟେସୁର ନନ୍ଦନ ॥୧୦୩୦୮॥
ଦ୍ୱାରିକା ଭୁବନେ ସେ କଲାଂ ହୁରିଜୁରି
ଡଗର କହନ୍ତେ ଧାଇଂଲେ ଦଇତାରି ॥୧୦୩୦୯॥
ଜଏ କଲେକି ଅଜଏ ହୋଇଲା[୧]
ଜାଅନି ଅର୍ଜୁନରେ ତଥ୍ୟ ବୁଝିବା ଭଲା ॥୧୦୩୧୦॥
ଜିବିଂ ବୋଲି ବୋଇଲା ପାଣ୍ଡେବ ଫାଲଗୁନି
ସୁଣଗୋ ଓମା ବୋଲି ବୋଲନ୍ତି ସୁଳପାଣି ॥୧୦୩୧୧॥
ତିନି କୁମରକୁ ଗିଳିଲା ଦୈଇତ
ସମର କରୁଅଛି ଶ୍ରୀକୃଷ୍ଣ ସଙ୍ଗତ ॥୧୦୩୧୨॥
ଚକ୍ରରେ କଣ୍ଠ ତାର କାଟିଲେ ଚକ୍ରଧର
ପଦ୍ମନ କଣ୍ଠ ବାଟେ ହୋଇଲା ବାହାର ॥୧୦୩୧୩॥
ସାମ ଆସୁ ଆସୁ ସିର ଜାଏ ଲାଗି
ଲେଉଟି ଚକ୍ରକୁ ପେସିଲେ ଗୋବିନ୍ଦି ॥୧୦୩୧୪॥
ଭୁମିରେ ଛିଡ଼ିଣ ପଡ଼ିଲା ଦୈତ୍ୟ ସିର
ଗର୍ଭରୁ ସାମ କୁମର ହୋଇଲା ବାହାର ॥୧୦୩୧୫॥
ଲେଉଟି କନ୍ଧରେ ଲାଗିଲାକ ମୁଣ୍ଡ
ଦାନବ ଗର୍ଜନ୍ତେ କମ୍ପାଇ ବ୍ରହ୍ମାଣ୍ଡ ॥୧୦୩୧୬॥
ସାମ ଡାକିଲା ତାତ ସୁଦ୍ରିସେନ ପେସ ତ
ଦଇତ ଗର୍ଭରେ ଅଛନ୍ତି ଗଦ ଭ୍ରାଥ ॥୧୦୩୧୭॥

୧ । ଘ ପୋଥି - ଅସୁର ନମଲା

ପୁଣି ଚକ୍ରକୁ ପେସିଲେ ଚକ୍ରଧର
ଦୈଇତ ସିର କାଟନ୍ତେ ଗଦ ହୋଇଲା ବାହାର ॥୧୦୩୧୮॥
ଧନ୍ୟରେ ରାକ୍ଷସ ବୋଲି ବୋଇଲେ ଚକ୍ରଧର
କାଟିଲା ସିର ତୋର ଲାଗଇ କନ୍ଧର ॥୧୦୩୧୯॥
ତୋ ସଙ୍ଗେ ତୁଳାଇତେ ନାହିଂ ଯେ ଉପମା
ଧନ୍ୟରେ ମେରୁସୁଳ ତୋହର ମହିମା ॥୧୦୩୨୦॥
ପ୍ରସଂସା କରୁ କରୁ ମେରସୁଳ ଧାଇଂ
ହରି ଗରୁଡ଼କୁ ଆକ୍ରୋସି ଗିଳିଦେଇ ॥୧୦୩୨୧॥
ଦଇତ୍ୟ ଗର୍ଭରେ ପସିଲେ ଭଗବାନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୧୦୩୨୨॥
ଯୁଧିଷ୍ଟିଙ୍କ ଆଜ୍ଞାରେ ଅର୍ଜୁନ ମିଳିଲା
ହରିକିଂ ନ ଦେଖି ପଦ୍ମନକୁ ପଚାରିଲା ॥୧୦୩୨୩॥
ପଦ୍ମନ ବୋଇଲା ଦୈଇତ୍ୟ ପିତାକୁ ଦିଲା ଗିଳି
ଦାନେବ ଗର୍ଭରେ ଅଛନ୍ତି ବନମାଳି ॥୧୦୩୨୪॥
ଗରୁଡ଼ ସହିତେ ଦଇତ୍ୟ ଗର୍ଭେ ଛନ୍ତି
ସୁଣିଣ କୋପିତ ହୋଇଲା ସର୍ବସାଚି ॥୧୦୩୨୫॥
ଲକ୍ଷ ଲକ୍ଷ ସର ବିନ୍ଧିଲାକ ଟାଣିଂ
ଦଇତ ବଳ ସବୁ ଲୋଟିଲେ ଧରଣିଂ ॥୧୦୩୨୬॥
ସନ୍ୟ ହତ ଦେଖି ଧାଇଂଲା ମେରୁସୁଳ
ବେନିକରେ ଧଇଲା ଅର୍ଜୁନ ରହୁବର ॥୧୦୩୨୭॥
ଫିଙ୍ଗିଦେନ୍ତେଂ ନନ୍ଦିଘୋସ ଭୁମିରେ ହାବୋଡ଼ି
ସବଦ କଲା ଜେହ୍ନେ ମେଘ ଘଡ଼ଘଡ଼ି ॥୧୦୩୨୮॥
ନନ୍ଦିଘୋସ ବୋଲି ସେ ସମ୍ଭାଳି ରହିଲା
ଅନ୍ୟରଥ ହୋଇଲେ ହୋଅନ୍ତା ମସିଗୁଣ୍ଡା ଭଲା ॥୧୦୩୨୯॥
ଦେଖିଣ ଆଶ୍ଚାର୍ଯ ହୋଇଲା ଫାଲଗୁନି
କୋଟି କୋଟି ନାରାଜ ବିନ୍ଧୁଅଛି ଟାଣିଂ ॥୧୦୩୩୦॥
କେତେବେଳେ ସତେ କେତେବେଳେ ମଭୁତେକେ
କେତେବେଳେ ପଦ୍ମେଂ କେତେବେଳେଂ ଲକ୍ଷେ ॥୧୦୩୩୧॥
ଏହିରୁପେଂ ଅର୍ଜୁନ ବିନ୍ଧୁଅଛି ସର
ଆସାଢ଼ ମାସରେ ଜେହ୍ନେ ଦ୍ରୋଣ ମେଘ ନିର ॥୧୦୩୩୨॥
ଦୈଇତର ରୋମେ ରୋମେ ନାରାଜ ହୋଏ ଛାଇ
ବରସା ଜଳକୁ ଜେହ୍ନେ ଗୋବଛା ସିର ପାତଇ ॥୧୦୩୩୩॥
ସେହିରୁପେ ମେରୁସୁଳ ଭୁମିକି ମୁଖ କରି ଧାଇଂ
କେବଣ ନାରାଜ ଭାଜିଂଣ ଫିଙ୍ଗିଦେଇ ॥୧୦୩୩୪॥
ଜାଦେବ ସନ୍ୟ ସହିତେ ଶ୍ରୀକୃଷ୍ଣ ନନ୍ଦନ
ଅର୍ଜୁନ ପିଠି ରକ୍ଷା ହୋଇଛି ପଦ୍ମନ ॥୧୦୩୩୫॥

ପଦ୍ମନାଦି ସହିତେ ଅର୍ଜୁନକୁ ଘେନି
ଜୁଝନ୍ତି ଏକମୁଖେଂ ବିନ୍ଧନ୍ତି ସରଟାଣି ॥୧୦୩୩୬॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ଶ୍ରୀକୃଷ୍ଣ ନାଥ ଥିଲେ ଦୈଇତର ଗର୍ଭ ॥୧୦୩୩୭॥
ଗରୁଡ଼କୁ ବୋଇଲେ ଜିବା କେଉଂ କତି
ଆମ୍ଭକୁ ମେରୁସୁଳ ଗିଳିଦେଇ ଅଛିଟି ॥୧୦୩୩୮॥
ଗରୁଡ଼ ବୋଇଲା ନପାରିଲି କଳି
କି ଅବା ଆକାସ କି ଅବା ମହିଆଳି ॥୧୦୩୩୯॥
କି ଅବା ଅଟଇ ସପତ ସାଗର
ବୋଲନ୍ତି ଗିରିଜା ସୁଣ ହେ ଦିଗାମ୍ବର ॥୧୦୩୪୦॥
ସତୋରି ଯୋଜନ ଜେ ଗରୁଡ଼ ଅଟଇ
ତ୍ରୈଲୋକ୍ୟ ଠାକୁର ସେ ପ୍ରଭୁ ଭାବଗ୍ରାହି ॥୧୦୩୪୧॥
ଅନନ୍ତ ବ୍ରହ୍ମାଣ୍ଡକୁ ଘେନିଣ ଗର୍ଭର
ସେ ବେନି ଭାରା କେହ୍ନେ ସହିଲା ଅସୁର ॥୧୦୩୪୨॥
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିପୁରାରି
ଦୈଇତ ଗର୍ଭେ ଅଛନ୍ତି ଗରୁଡ଼ ଦଇତାରି ॥୧୦୩୪୩॥
ସତୋରି ଜୋଜନ ସେ ଦାନେବର ଗର୍ଭ
ସତୋରି ଜୋଣ କାୟା ବିସ୍ତାରିଲେ ପଦ୍ମନାଭ ॥୧୦୩୪୪॥
ତେଡ଼େ ଗର୍ଭ ଗୋଟା ସମ୍ପୁର୍ଣ୍ଣ ହୋଇଲା
ଛାଡ଼ିଲା ଗଣ୍ଠିଛନ୍ଦ ଫାଟିଲା ପଞ୍ଜରା ॥୧୦୩୪୫॥
ବେନି ଫାଳ ହୋଇଲା ଦଇତ୍ୟ ଅନର୍ଗଳା
ବାହାର ହୋଇଲେ ଗରୁଡ଼ ଚକାଡୋଳା ॥୧୦୩୪୬॥
ପ୍ରାଣ ପୁରୁଷ ତାର ଗମିଲା ସ୍ୱର୍ଗଆଳ
ପଡ଼ନ୍ତେ ମେରୁସୁଳ ଆନନ୍ଦ ଦେବବଳ ॥୧୦୩୪୭॥
ଉଶ୍ୱାସ ହୋଇଲା ପୃଥି ଆନନ୍ଦ ଦେବଗଣ
ପୁଷ୍ପ ବୃଷ୍ଟି କଲେ ଗୋବିନ୍ଦ ସିରେଣ ॥୧୦୩୪୮॥
ଚୌରାସି କାଠି ବଳ ଅସୁର ଆସିଥିଲେ
ଜିବନ୍ତା ହୋଇ ଗୋଟିଏ ନ ରହିଲେ ॥୧୦୩୪୯॥
ଜେତେକ ଜାଦବ ଯୁଦ୍ଧରେ ପଡ଼ିଥିଲେ
ଗୋବିନ୍ଦ ପ୍ରସାଦେ ସମସ୍ତେ ଜିଇଂଲେ ॥୧୦୩୫୦॥

## ଶ୍ରୀକୃଷ୍ଣଙ୍କର ପୁତ୍ରମାନଙ୍କୁ ବ୍ରାହ୍ମଣଙ୍କ ସାପ୍ୟ ଓ ପ୍ରଭାସ ତୀର୍ଥକୁ ଯାତ୍ରା ପ୍ରସ୍ତୁତି

ଅର୍ଜୁନ ନମସ୍କାର ଗୋବିନ୍ଦଙ୍କୁ ହେଲା
ପାଥକୁ ହୃଦରେ ଭିଡ଼ିଲେ ଚକାଡୋଳା ॥୧୦୩୫୧॥
ହସ୍ତିନା କଥା ପୁଛିଲେ ଭଗବାନ
ଅର୍ଜୁନ ବୋଇଲେ ଜାଗ ହୋଇଲା ସମ୍ପୁର୍ଣ୍ଣ ॥୧୦୩୫୨॥
ତବ ପ୍ରସାଦେଂ ମୁହିଂ ମହି ରାଜା ଜିଣିଲି
ଲେଉଟି ଅଶ୍ୱ ଆଣି ହସ୍ତିନାରେ କଲି ॥୧୦୩୫୩॥
ସୁଣିଣ ଆନନ୍ଦିତ ହୋଇଲେ ବାସୁଦେବ
ଜେ ଜାହା ଭୁବନକୁ ଗମିଲେ ଜାଦବ ॥୧୦୩୫୪॥
ଅର୍ଜୁନକୁ ଘେନି ହରି ସାରିଲେ ସ୍ନାହାନ
ରକ୍ମଣି ପରସନ୍ତି ଭୁଜିଂଲେ ସେହୁ ଅନ୍ନ ॥୧୦୩୫୫॥
ଏମନ୍ତେ ଅର୍ଜୁନ ରହିଲା ତିନିମାସ
ମେଲାଣି ପାଇ ଗମିଲା ଗୁଜଂଗଳ ଦେସ ॥୧୦୩୫୬॥
ଯୁଧିଷ୍ଟିଙ୍କ ଅଗ୍ରତେ ଆଦିଅନ୍ତ କହି
ସୁଣଗୋ ଓମା ବୋଲି ସଦାସିବ ବୋଲଇ ॥୧୦୩୫୭॥
ତପ କରିବାକୁ ବଳରାମ ଥିଲେ ଜାଇ
ବହୁତ ପୁନ୍ୟ ସ୍ଥାପି ଦ୍ୱାରିକାରେ ହୋଇ ॥୧୦୩୫୮॥
ହରି ବଳରାମ ରାଜା ଉଗ୍ରସେନ
ନନ୍ଦ ଉପନନ୍ଦ ବସୁଦେବ ସହିତେ ଜେତେ ଜନ ॥୧୦୩୫୯॥
ସମସ୍ତେ ଆନନ୍ଦିତ ସତ୍ୟ ବୋଲି ନାହିଂ
ହରି ପ୍ରସାଦେଂ ଭୁଜଂନ୍ତି ସେ ଅକଣ୍ଟେକ ମହି ॥୧୦୩୬୦॥
ଏମନ୍ତ ଶ୍ରୀକୃଷ୍ଣ ସୁତ ଏକ ଦିନେ
ଖେଳୁଥିଲେ ସାଗର ତଟେ ଉପବନେ ॥୧୦୩୬୧॥
ତିସାଳ ବୋଲିଣ ଅଟଇ ଏକ ବଟ
ମାଡ଼ିଛି ଦିର୍ଘପ୍ରତି ଯୋଜନ ଚାଳିସି ତ ॥୧୦୩୬୨॥
ସେ ବଟ ତଳେ କୃଷ୍ଣ କୁମର ମିଳିଲେ
କେହୁ ବୃକ୍ଷେ ଉଠି କେହି ଉକୁଚି ହୋନ୍ତି ଡାଳେ ॥୧୦୩୬୩॥
କେହୁ ବୃକ୍ଷ ମୁଳେଂ ବସନ୍ତି ଆଉଜି
କେହୁ ସହସ୍ରମାନ ଘେନିଣ ସିକଡ଼ମାନ ଖୋଜି ॥୧୦୩୬୪॥
ଖୋଳୁଂ ଖୋଳୁଂ ଲୁହା ଖଣ୍ଡିଏ ଦିସଇ
ଘେନିଣ କୁମରେଂ ଠରାଠରି ହୋଇ ॥୧୦୩୬୫॥
ବଜ୍ରହୁଂ ଆଣ୍ଟଲୁହା ଆଦିତ୍ୟ ତେଜପ୍ରାଏ
ଦେଖିଣ ଆନନ୍ଦିତ ଶ୍ରୀକୃଷ୍ଣ ତନୟେ ॥୧୦୩୬୬॥
ସାମକୁ ନାରିବେସ କରି ଉଦରେ ଲୁହା ଭରି
ସେହି ସମୟରେ ଜାଇ ପ୍ରବେସ ବନଚାରି[୧] ॥୧୦୩୬୭॥
ମୁନିକି ଦେଖିଣ ବୋଲନ୍ତି କୃଷ୍ଣବାଳ
ଏ ଯୁବତି ପ୍ରସବ ହୋଇବ କେଉଂକାଳ ॥୧୦୩୬୮॥
ମୁନି ବୋଇଲେ ଅଳ୍ପଦିନେ ପ୍ରସବିବ
ଏ ଗର୍ଭ ପ୍ରସବ କଲେ ଜଦୁ ବଂସ ନାସ ଜିବ ॥୧୦୩୬୯॥
ଏମନ୍ତ କହିଣ ଗମିଲେ ବ୍ରାହ୍ମଣ
କୁମରେ ପ୍ରବେସ ଆପଣା ଭୁବନ ॥୧୦୩୭୦॥

---

୧ । ଘ ପୋଥି – ବ୍ରହ୍ମଚାରୀ

ଗର୍ଭରୁ ଲୁହାକାଢ଼ି ଭୂମିରେ ଥୋଇଲେ
ଆଦିଅନ୍ତ ଚରିତ ଶ୍ରୀକୃଷ୍ଣଙ୍କୁ କହିଲେ ॥୧୦୩୭୧॥
ସୁଣିଣ ବିସ୍ମଂରିଲେ ଦେବ ହୃସିକେସ
ନିଶ୍ଚୟେ ନାସ ଏବେ ଜିବେ ଯଦୁବଂସ ॥୧୦୩୭୨॥
ପୃଥିର ଭାରା ଜହୁଂ ହୋଇଲା ଖଣ୍ଡଣ
ତେଣୁ ଆସ୍ତକୁ ଲୋଡ଼ା କଲେ ଦେବଗଣ ॥୧୦୩୭୩॥
ଏମନ୍ତ ବିଚାରିଣ ଦେବକି ତନଇ
ଏ ଲୋହ ଘସ ବୋଲି ମାଲଙ୍କୁ ଆଜ୍ଞାଦେଇ ॥୧୦୩୭୪॥
ଶ୍ରୀକୃଷ୍ଣ ଆଜ୍ଞା ପାଇ ମାଲେ ଘେନିଗଲେ
ସିନ୍ଧୁତଟରେ ଲୋହ ଗିରିରେ ଘସିଲେ ॥୧୦୩୭୫॥
ଘସନ୍ତେ କିଛିଦିନ ରହିଲା ଅବସେସ
ଜଳକୁ ଫିଙ୍ଗିଦେଇ ମାଲେ ଗମିଲେ ନିଜ ଦେସ ॥୧୦୩୭୬॥
ଜେବଣ ଲୋହକୁ ସେ ଜଳକୁ ଦିଲେ ଫିଙ୍ଗି
ଆହାର ପ୍ରାଏ ମଣି ରୋହିଂ ଦିଲାଗିଳି ॥୧୦୩୭୭॥
ଲୋହ ଘସନ୍ତେ ତହିଂ ପଡ଼ିଥିଲା ଚୂର୍ଣ୍ଣ
ତହିରୁ ଉପୁଜିଲା ଏରକାର ବନ ॥୧୦୩୭୮॥
ଏଥୁ ଅନନ୍ତରେ ସୁଣଗୋ ଗିରିଜା
ଦ୍ୱାରିକା ଭୁବନେ ଉଲୁକାପାତ ହେଲା ॥୧୦୩୭୯॥
ସଙ୍କର ମୁଖ ଚାହିଂ ପଚାରନ୍ତି ଗୌରି
ବଟ ମୁଳେ କେ ଲୁହା ରଖିଲା ତ୍ରିପୁରାରି ॥୧୦୩୮୦॥
ସୁଣଗୋ ଓମା ବୋଲି ବୋଲନ୍ତି ଦେବରାଜା
ତ୍ରେତୟା ଯୁଗେ ରାମ ବାଳିଙ୍କି ବଧିଲା ॥୧୦୩୮୧॥
ବାଳିକି ନାସି ବାଣ ଗମିଲା ଅନ୍ତରାଳ
ଜାଇଣ ପଡ଼ିଲା ତିସାଳ ବଟମୁଳ ॥୧୦୩୮୨॥
ଭୂମିରେଂ ପଡ଼ି ବାଣ ବଢ଼ିଲା ବଜ୍ରସମ
ସମୟେଂ ଜାନ୍ତେ ପାଇଲେ ଶ୍ରୀକୃଷ୍ଣ ନନ୍ଦନ ॥୧୦୩୮୩॥
ତୁ ଜେ ପଚାରିଲୁ କିମ୍ପେ ଡରିଲେ ବାସୁଦେବ
ଅଦୋସେ ବାଳିକି ରାମ କରିଥିଲେ ବଧ ॥୧୦୩୮୪॥
ସେହି ନାରାଜ ଜଗି ରହିଲା କୃଷ୍ଣକୁ
ତେଣୁ ଭୟେଂ ପାଇଲେ ଗୋବିନ୍ଦ ମନକୁ ॥୧୦୩୮୫॥
ପୁର୍ବ କଥା ଚେତି ଭୟେ ପାଇଲେ ଗୋବିନ୍ଦ
ସୁଣଗୋ ଓମା ବୋଲି ବୋଲନ୍ତି ସଦାନନ୍ଦ ॥୧୦୩୮୬॥
ଦ୍ୱାରିକା ଭୁବନ ଜେ ହୋଇଲା ଉଛନ୍ନ
ନିର୍ମେଘଂ ଆକାସ କରଇ ଗର୍ଜନ ॥୧୦୩୮୭॥
ରୋଧିର ସଙ୍ଗତେ ଜେ ପୁଜ ବରସଇ
ଦସ ଦିଗ ଜାକ ଆମିଷ ଗନ୍ଧ ହୋଇ ॥୧୦୩୮୮॥

୧ । ଘ ପୋଥି – ଏକ କନକା ରୋହି

ଏମନ୍ତ ଉପ୍ତାତ ଦ୍ୱାରିକା ଭୁବନ
ସୁଣଗୋ ଓମା ବୋଲି ବୋଲନ୍ତି ତ୍ରିଲୋଚନ ॥୧୦୩୮୯॥
ଇନ୍ଦ୍ର ସହିତେ ଦସଦିଗପାଳ
ସମସ୍ତ ଦେବତାଏ ଗମିଲେ ରାତ୍ରର ॥୧୦୩୯୦॥
ଶ୍ରୀକୃଷ୍ଣଠାରେ ମିଳି ହୋଇଲେ ନିଉଛାଳି
ଜୟ ତୁ ଜଗନ୍ନାଥ ଜୟ ତୁ ବନମାଳି ॥୧୦୩୯୧॥
ଆତଙ୍ଗନାସନ ହରି ସରଣ ସୋଦର
ଜେ ସରଣ ପସେ ତାକୁ କରୁ ପ୍ରତିକାର ॥୧୦୩୯୨॥
କଂସ ଡରେ ଆମ୍ଭେ ସରଣ ପସିଲୁଂ
ମହିରେ ଜାତହୋଇ କଂସକୁ ମାଇଲୁଂ ॥୧୦୩୯୩॥
ଜେତେକ ଦୈତ୍ୟେ ଥିଲେ ଏ ସଚରାଚର
ସମସ୍ତଙ୍କୁ ନାସିଣ ଖଣ୍ଡିଲୁ ପୃଥିଭାର ॥୧୦୩୯୪॥
ବହୁତ ଭୋଗ ତ କଲ ଭଗବାନ
ଏବେ ନିଳାଞ୍ଚଳକୁ କରହୋ ଗମନ ॥୧୦୩୯୫॥
ବଉଦ ରୁପରେ ବସିବ ନିଳକନ୍ଧ
ବହୁତ ପୁଜାଭୋଗ ପାଇବ ଗୋବିନ୍ଦ ॥୧୦୩୯୬॥
ଦେବତାଙ୍କୁ ବଚନ ବୋଇଲେ ଭଗବାନ
ପୁର୍ବେ ଗୁହାରି କଲ ହୋଇଲଇଂ ଜନ୍ମ ॥୧୦୩୯୭॥
କଂସ କେସି ମୁଳେ ଅନେକ ରାକ୍ଷସ
ଖଣ୍ଡିଲିଂ ତୁମ୍ଭ ଦୁଖ ତାହାଙ୍କୁ କଲି ନାସ ॥୧୦୩୯୮॥
ସେହି ଦୋସ ନିକି ବାଛି ଥାଅ ତୁମ୍ଭେ
ତେଣୁ କରି ତୁମ୍ଭଙ୍କୁଂ କହୁଅଛୁ ଆମ୍ଭେ ॥୧୦୩୯୯॥
ପୁର୍ବେ ରାବଣ ହତ୍ୟା ଦୋସ ଲଗାଇଲ
ସୁଣିଣ ବେଦବର ପଡ଼ିଲେ ହରିପାଦ ॥୧୦୪୦୦॥
ହରି ତୁହି ସେ ବ୍ରହ୍ମା ସିବ ତୁହି ସେ ଦେବଗଣ
ତୁହି ଭାନୁ ସସି ଅନନ୍ତ ତୋର ନାମ ॥୧୦୪୦୧॥
ତୁହି ସେ ସମସ୍ତଙ୍କୁ ଦେଇପାରୁ ଦୋସ
ତୋତେ କେ ବାଛିତେ ଅଛି ପିତବାସ ॥୧୦୪୦୨॥
ମାରଣ ତାରଣ ରକ୍ଷାପାଳଂ ତୁହି
ତୋହର ଆହାଲ୍ଲାଦେଂ ବ୍ରତଇ ଜଗତଇଂ[୧] ॥୧୦୪୦୩॥
ବୌଦ ଅବତାର ଜେବେ ତୁ ନୋହିବୁ
କଳିଯୁଗ ପ୍ରାଣିକୁ କେମନ୍ତେ ନିସ୍ତାରିବୁ ॥୧୦୪୦୪॥
ଏତେ ବୋଲିଂ ବ୍ରହ୍ମା ସହିତେ ଦେବଗଣ
ପ୍ରଣମ୍ୟ[୨] କରି କଲେ ଜେ ଗମନ ॥୧୦୪୦୫॥

୧ । ଘ ପୋଥି – ତୋହର ଆଜ୍ଞାରେ ଦେବ ତିନି ଜଗତଇ
୨ । ଘ ପୋଥି – ପ୍ରଲମ୍ଭ

ରଜନି ପାହାନ୍ତେ ବିଚାରିଲେ ଗୋବିନ୍ଦ
ପୁଛନ୍ତି ଜଣେ ଜଣେ ଡାକନ୍ତି ଜାଦବ ॥୧୦୪୦୬॥
ଦେଖ ଏ ଦ୍ୱାରିକାରେ ହେଉଛି ଉତ୍ପାତ
ଅବସ୍ୟ ଫଳିବ ବ୍ରାହ୍ମଣର ସାପ୍ୟ ॥୧୦୪୦୭॥
ଚାଲ ସେ ପ୍ରଭାସ ତିର୍ଥକଇ ଜିବା
ବ୍ରାହ୍ମଣେ ଦାନଦେଇ ଦୃଗତି ଛଡ଼ାଇବା ॥୧୦୪୦୮॥
ସୁଣିଣ ସର୍ବ ଜାଦବେ ହରସ ହୋଇଲେ
ସକଟ ରହୁବରେ ଦ୍ରବ୍ୟନ୍ତ ଭରିଲେ ॥୧୦୪୦୯॥
ଜେ ଜାହାର ଆୟଧ ଘେନିଣ ହସ୍ତର
ପ୍ରଭାସ ତିର୍ଥକୁ ହୋଇଲେ ବାହାର ॥୧୦୪୧୦॥
ଅକୃର ସାତ୍ୱିକି ଉଗ୍ରସେନ ବସୁଦେବ
ପଦ୍ମନାଦି ସହିତେ ନନ୍ଦ ଉପନନ୍ଦ ॥୧୦୪୧୧॥
ସମସ୍ତ ଜିବାକୁ ଉଦବେଗ ହେଲେ
ଉଦ୍ଧବ ପଡ଼ିଲା ଗୋବିନ୍ଦ ପାଦରେ ॥୧୦୪୧୨॥
ହରି ଏମନ୍ତ ପ୍ରାଏତ ମଣୁଅଛି ମୁହିଂ
ଜାଦେବ ବଳକି ସଂହାରିବୁ ତୁହି ॥୧୦୪୧୩॥
ପ୍ରଥମେ ରାକ୍ଷସ ଦୁତିଏ କୁରୁବଳ
ତୃତିୟେ ନାସିବୁ ଆପଣାର କୁଳ ॥୧୦୪୧୪॥
ତୁହି ଜେବେ ହରି ଏ ଦେହ ଛାଡ଼ିବୁ
କି ରୁପେଂ ମୋତେ କେଉଂଠାବରେ ରଖିବୁ ॥୧୦୪୧୫॥
ତୋହର ସଙ୍ଗତେ ମୋତେ ନେଇଯାଅ ହରି
ଏତେ ବୋଲି ଉଦ୍ଧବ ଗୋବିନ୍ଦ ପାଦ ଧରି ॥୧୦୪୧୬॥
ଉଦ୍ଧବ ବିକଳ ଦେଖିଣ ଭଗବାନ
ବୋଇଲେ ତୁହିଂ ମୋର ଭଗତ ଜିବନ ॥୧୦୪୧୭॥
ସଂସାର ମାୟାରେ ନ ରଖିବିଂ ତୋତେ
ନ ଜିବିଂ ଛାଡ଼ି ନ ନେବଇଂ ସଙ୍ଗତେ ॥୧୦୪୧୮॥
ନିସ୍କାଞ୍ଜନ ଯୋଗି ରୁପ ତୁହି ଧର
ବଦ୍ରିକା ତିର୍ଥରେ ତପ ଜାଇ କର ॥୧୦୪୧୯॥
ଉଦ୍ଧବ କହିଲା ହରି କହୁଛୁ ଭଣ୍ଡାଇ
ତୋତେ ଛାଡ଼ି ମୁହିଂ କାହାକୁ ବସିବି ଧ୍ୟାଇ ॥୧୦୪୨୦॥
ହରି ହେ ଆମ୍ଭର ବୋଲି ଜାଣିଥିଲିଂ ବିଚାରି
ଜେଉଂକାଳେ ଜାହା ମାଗିବିଂ ମୋତେ ଦେବେଂ ହରି ॥୧୦୪୨୧॥
ଏମନ୍ତ ବିଚାରିଣ କାଳେକ ବଞ୍ଚିଲି
ଏବେ ଛାଡ଼ି ଜାଉଛ କେମନ୍ତେ ଛାଡ଼ିଦେବିଂ ବୋଇଲି ॥୧୦୪୨୨॥
ଜେମନ୍ତେ ମାୟା ମୋହ ନ ଲାଗଇ ମୋତେ
ସକଳ ଛଡ଼ାଇଣ ରଖ ତୋ ସଙ୍ଗତେ ॥୧୦୪୨୩॥
ଏତେ ବୋଲି ଉଦ୍ଧବ ପାଦ ନ ଛାଡ଼ଇ
ଉଦ୍ଧବ ମନକଥା ଜାଣିଲେ ଭାବଗ୍ରାହି ॥୧୦୪୨୪॥
ପଦାର୍ଥେ ନ ପାଇଲେ ନ ଛାଡ଼ିବ ମୋତେ
ଏତେ ବୋଲି ପାଦୁକା ଦିଲେ ଜଗନ୍ନାଥେ ॥୧୦୪୨୫॥
ଉଦ୍ଧବକୁ ବୋଇଲେ ପାଦୁକା ତୁ ନିଅ
ଏହାକୁ ସେବାକରି ବଦ୍ରିକାରେ ଥାଅ ॥୧୦୪୨୬॥
ଗୋବିନ୍ଦ ବଚନେ ଉଦ୍ଧବ ଘେନିଲା କଠାଉ
ବଦ୍ରିକା ଆସ୍ରମକୁ ଚଳିଗଲା ସେହୁଂ ॥୧୦୪୨୭॥
ବିପ୍ର ପରମାନନ୍ଦ ଅଧମ ଦ୍ୱିଜଂ ମୁଂ ଅଟଇଂ[1]
ଉଦ୍ଧବ ଚରଣକୁ ଚିତ ରଖ ହେ ଭାବଗ୍ରାହି ॥୧୦୪୨୮॥
ସେ ଉଦ୍ଧବ ଚରଣେ ସରଣ ନରେ ପସ
ସରଣ ପସୁଅଛି ସାରୋଳା ଚଣ୍ଡି ଦାସ ॥୧୦୪୨୯॥

## ଯାଦବମାନଙ୍କର ମୃତ୍ୟୁ ଓ ବଳରାମଙ୍କ ପାତାଳ ପ୍ରବେଶ

ପାଦୁକା ଘେନି ବନକୁ ଗମିଲେ[2] ଉଦ୍ଧବ
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ ॥୧୦୪୩୦॥
ଯହୁଂ ଦ୍ୱାରିକାରେ ହୋଇଲା ଉଛନ୍ନ
ଯାଦେବଙ୍କୁ ସଙ୍ଗତେ ଘେନିଲେ ଭଗବାନ ॥୧୦୪୩୧॥
ବଳରାମ ସହିତେ ପ୍ରଭାସ ତିର୍ଥ ହେଲେ
ଗୋବିନ୍ଦ ମାୟା କେହି ଜାଣି ତ ନ ପାରିଲେ ॥୧୦୪୩୨॥
ଚକ୍ରକୁଟ ବୃଦ୍ଧି ଯାହାର ଅଟଇ
ଯାହାର ମାୟାରେ ସଂସାର ବସ ହୋଇ ॥୧୦୪୩୩॥
ସ୍ଥାବର ଜଙ୍ଗମ କିଟ ପତଙ୍ଗ ଚାରିଖାନି
ଭିଆଣ କରିଅଛି ସେ ପ୍ରଭୁ ଚକ୍ରପାଣି ॥୧୦୪୩୪॥
ସେହି ଚାରିଖାନି ଯାହାର ହୋୟେ ହତ
ଯାଦବେ ଜାଣିବେ କାହୁଂ ତାହାର ଆଦିଅନ୍ତ[3] ॥୧୦୪୩୫॥
ମାରିବାର ଅର୍ଥେ ନିଲାକ କଢ଼ାଇ
ରିଷ୍ଟ ଖଣ୍ଡି ଜାଦେବ ଗୃହକୁ ଯିବା ହୃଷ୍ଟହୋଇ ॥୧୦୪୩୬॥
ଯାଦେବଙ୍କୁ ହରି ଯହୁଂ ଛାଡ଼ିଲେ ମୁହାଂସ
ଅଭୁତେ ହୁରି ପଡ଼ିଲା କୋକୁଆ ଅଛି[4] ବନସ୍ତ ॥୧୦୪୩୭॥
କଦମ୍ବ ବୃକ୍ଷେ ମୁସଳ ପିଟିଲେ ବଳରାମ
ତହୁଂ କ୍ଷିର ବାହାର ଯାଦବେ କଲେ ପାନ ॥୧୦୪୩୮॥

---

୧ । ଘ ପୋଥି – ସେ ଉଦ୍ଧବ ଚରଣକୁ କରଇ ଦଇନି
ବିପ୍ର ହରିହରକୁ ଦୟାକର ହେ ଚକ୍ରପାଣି
୨ । ଖ ପୋଥି – ଚଳିଲା
୩ । ଖ ପୋଥି – ବୃତାନ୍ତ
୪ । ଘ ପୋଥି – ଆସ୍ରୟେ

ହୋଇଲେ ମତୁଆଳ ନ ପାରିଲେ ଚିହ୍ନି
ଯେକକୁ ଆରେକ ଲାଗିଲେ ହଣାହଣି ॥୧୦୪୩୯॥
ସମର କରନ୍ତେ ସରିଲା ସହସ୍ର
ପ୍ରବେସ ହୋଇଲେ ଯେରକାର ବନସ୍ତ ॥୧୦୪୪୦॥
ସନ୍ତରାକାଣ୍ଡରେ ସେ ଲାଗିଲେ ବିନ୍ଧାବିନ୍ଧି
ପଡ଼ିଲେ ଯାଦେବ ସନ୍ୟ ରଣମଝିଂ ॥୧୦୪୪୧॥
ଆପଣେ ଗୋବିନ୍ଦ ଘେନିଣ ସୁଦର୍ସନ
ଛେଦି ପକାଇଲେ ସେ ଆପଣା ନନ୍ଦନ ॥୧୦୪୪୨॥
ପଦ୍ମନକୁ ଚକ୍ର ପେସିଲେ ଚକାଡୋଳା
ପଦ୍ମନକୁ[୧] ନାସି ଚକ୍ର ଅନ୍ତରିକ୍ଷେ ଗଲା ॥୧୦୪୪୩॥
ବଳରାମେ ଦେଖିଲେ ଗୋବିନ୍ଦ ନିର୍ଦ୍ଧୟା
ହୋଇଲେ ସର୍ପରୁପ ଛାଡ଼ିଲେକ କାୟା[୨] ॥୧୦୪୪୪॥
ଯହୁଂ ସେ ଅନନ୍ତ ପସିଲେ ପାତାଳ
ସମସ୍ତେ କ୍ଷୟେଗଲେ ରହିଲେ ଯେକା ନନ୍ଦବାଳ[୩] ॥୧୦୪୪୫॥

## ଶ୍ରୀକୃଷ୍ଣଙ୍କ ମହାପ୍ରୟାଣ ଓ ମୃତପିଣ୍ଡ ଦାହ ବୃତ୍ତାନ୍ତ

ଯହୁଂ ସେ ଛେଦିଲେ ପୃଥିବିର ଭାର
ତେଣୁ ହରି ଦେହରୁ କଣ୍ଟିଲା ସର୍ମଝାଳ ॥୧୦୪୪୬॥
ଅଶ୍ୱସ୍ତ ବୃକ୍ଷମୁଳେ ବସିଲେକ ଯାଇ
ବସନ୍ତ ପବନ ଦେହକୁ ଲାଗୁଛଇ ॥୧୦୪୪୭॥
ସୁଣଗୋ ଓମା ବୋଲି ବୋଲନ୍ତି ସଦାସିବ
ଯେମନ୍ତ ଚରିତ୍ର ଯେ କଲେ ବାସୁଦେବ ॥୧୦୪୪୮॥
ଯେବଣ ସେସ ଲୁହା ଗିଳିଥିଲା ରୋହି
ଗୋବିନ୍ଦଙ୍କ ପାଇଂ ସେ ଲୁହା ଥିଲା ରହି ॥୧୦୪୪୯॥
ଜାଲରେ ପଡ଼ିଲା କୈବ୍ରତ ଘେନିଗଲା
ଜାରା ସବରକୁ ଦରସନି ନେଇ ଦିଲା ॥୧୦୪୫୦॥
ମାଛକୁ କେଳାନ୍ତେ[୪] ଲୁହାକୁ ପାଇଲା ସବର
ଘଡ଼ାଇଣ ତାହାକୁ କଲାକ କାଣ୍ଡଫଳ ॥୧୦୪୫୧॥
ସେହି ସର ଘେନି ମୃଗୟାକୁ ଗଲା
ଗୋବିନ୍ଦ ସୋଇଥିଲେ ପାଦ ଦିସୁଥିଲା ॥୧୦୪୫୨॥
ମୃଗ କର୍ଣ୍ଣ ପ୍ରାୟେ ଦିସୁଥିଲା ପାଦ
ତହିଂକି ସବର ବିନ୍ଧିଲା ନାରାଜ ॥୧୦୪୫୩॥

---

୧ । ଘ ପୋଥି – କୁମାରକୁ
୨ । ଖ ପୋଥି – ପେସିଲେ ପାତାଳେ ଗୁପ୍ତ କଲେ କାୟା
୨ । ଘ ପୋଥି – ହୋଇଲେ ସର୍ପରୂପ ହୋଇଲେ ନିର୍ମାୟା
୩ । ଘ ପୋଥି – ଆଦିମୂଳ
୪ । ଖ ପୋଥି – କାଟନ୍ତେ

ପାଦ ଅଙ୍ଗୁଷ୍ଟିରେ ନାରାଜ ବାଜିଲା
ଧାଇଂ ଯାଇ ସବର ସେଠାରେ ହୋଇଲା ॥୧୦୪୫୪॥
ଦେଖିଲା ପ୍ରଭୁପାଦେ ବାଜିଅଛି ସର
ଧନୁସର ପକାଇ ପଡ଼ିଲା ପାଦର ॥୧୦୪୫୫॥
ନାରାୟଣ ନାରାୟଣ ଓଂ ନମୋ ନାରାୟଣ
ଶ୍ରୀରାମ ରାମନାମ ଅଟଇ ପରଂବ୍ରହ୍ମ ॥୧୦୪୫୬॥
ନଜାଣି ଅପ୍ରାଧ ଅର୍ଜିଲିଂ ଗୋସାଇଂ
ମୃଗକର୍ଣ୍ଣ ବୁଝିଣ ନାରାଜ ବିନ୍ଧିଲଇଂ ॥୧୦୪୫୭॥
କହନ୍ତି ଭଗବାନ ଜାରା ନାହିଂ ତୋର ଦୋସ
ତୋ ପିତା ବାଳିକି ମୁଂ କରିଥିଲିଂ ନାସ ॥୧୦୪୫୮॥
ତେଣୁ ପିତୃ ବଇରି ହୋଇଥିଲିଂ ତୋର
ବିନ୍ଧିଲୁ ବାଣ ଯେବେ ଚଳ ଧାତିକାର ॥୧୦୪୫୯॥
ହସ୍ତିନାରେ ଅଛି ପାଣ୍ଡେବ ଅର୍ଜୁନ
ନକର ବିଳମ୍ବ ଘେନି ଆସ ଏହି କ୍ଷଣ ॥୧୦୪୬୦॥
ସୁଣିଣ ସବର ଗମିଲା ହୋଇଣ ବିସ୍ମୟେ
ହସ୍ତିନାରେ ହୋଇ ଯୁଧିଷ୍ଠିଙ୍କି କହେ ॥୧୦୪୬୧॥
ବୋଇଲା ଅର୍ଜୁନଙ୍କୁ ଡାକନ୍ତି ଭଗବାନ
କିସ ବୋଲି ସହଦେବଙ୍କୁ ପଚାରନ୍ତି ଧର୍ମନାନ ॥୧୦୪୬୨॥
ବ୍ରହ୍ମସାପ୍ୟ ହୋଇଲା ବୋଲି ବୋଇଲେ ସହଦେବ
ଏରକା ବନସ୍ତକୁ ଗମିଲେ ବାସୁଦେବ ॥୧୦୪୬୩॥
ସାତବଂସ ଯାଦବ ପଦ୍ମନ ସହିତେ
ହୋଇଲେ ହଣାହଣି ଏରକାର ବନସ୍ତେ ॥୧୦୪୬୪॥
ଆପଣେ ବଳରାମ ହୋଇଲେ ପାତାଳି
ସ୍ରମେ ଅଶ୍ୱସ୍ତ ମୁଳେ ବସିଲେ ବନମାଳି ॥୧୦୪୬୫॥
ମୃଗକର୍ଣ୍ଣ ପ୍ରାୟେ ଦିସଇ ପଦ୍ମପାଦ
ପାଦକୁ ସବର ଯେ ବିନ୍ଧିଲା ନାରାଜ ॥୧୦୪୬୬॥
ବିକଳ ହେଉଛନ୍ତି ପ୍ରଭୁ ନାରାଜ ଘାତ ପାଇ
ତେଣୁ ଅର୍ଜୁନକୁ ଲୋଡ଼ନ୍ତି ଭାବଗ୍ରାହି ॥୧୦୪୬୭॥
ସୁଣିଣ ଯୁଧିଷ୍ଟି ଯେ ବଇକୁଳ୍ୟ ହେଲେ
ଚାରିଭାଇଙ୍କି ଘେନି ସବର ସଙ୍ଗେ ଗଲେ ॥୧୦୪୬୮॥
ଯେଉଂଠାରେ ହରି କରିଅଛନ୍ତି ସୟନ
ସେଠାରେ ପ୍ରବେସ ପାଣ୍ଡବ ପାଞ୍ଚଜଣ[୧] ॥୧୦୪୬୯॥
ଶ୍ରୀକୃଷ୍ଣ ରୁପ ଦେଖି ପାଣ୍ଡବେ ସୋକ କରି
ହା ହା ଜଗବନ୍ଧୁ ହୋଇଲୁ ଯେତେ ସରି ॥୧୦୪୭୦॥
ଯାହାର ହସ୍ତେ ଥିଲେ ଚକ୍ର ସୁଦର୍ସନ
କ୍ଷଣକେ ସାଧି ହୁଏ ଚଉଦ ଭୁବନ ॥୧୦୪୭୧॥

---

୧ । ଘ ପୋଥି – ସେ ସୟନଠାରେ ମିଳିଲେ ପାଣ୍ଡେବ ପାଞ୍ଚ ଜଣ

ପଦ୍ମବନ ପ୍ରାୟ ଯାହାର ବଂସ ହୋଇ
ସେ ହରି ଅଶ୍ୱସ୍ତ ମୁଳେ ଯେକା ଅଛି ରହିଂ ॥୧୦୪୭୨॥
ଧନ୍ୟରେ ବିଧାତା ତୁହି ବଡ଼ ଜଣ
ଯେଢ଼େ ପ୍ରଭୁ କପୋଳେ ଲେଖିଲୁ ଯେହା ପୁଣ ॥୧୦୪୭୩॥
ଯେତେ ବୋଲି ପାଣ୍ଡବେ କରନ୍ତି ରୋଦନ
ଲଲାଟେ ହସ୍ତ ଦିଲେ ପ୍ରଭୁ ଭଗବାନ ॥୧୦୪୭୪॥
ଅର୍ଜୁନକୁ ଡାକିଲେ କତିକି ମୋର ଆସ ତ
ଗୋବିନ୍ଦ ମାୟା ଜାଣି ନ ପାରିଲା ପାଥ ॥୧୦୪୭୫॥
ଦେଖିଲେ ସରଘାତ କି ରୁପେଂ ହୋଇଅଛି
ଯେତେ ବୋଲି ପଦ୍ମପାଦ ଧଇଲେ ବିବଛିଂ[1] ॥୧୦୪୭୬॥
ନାରାଜ ଘାତ ଦେଖି ଆଉଂସି ଦିଅନ୍ତେ
ସେହିକ୍ଷଣି ପ୍ରାଣ[2] ଛାଡ଼ିଲେ ଜଗନ୍ନାଥେ ॥୧୦୪୭୭॥
ମୃତୁ ପିଣ୍ଡ ଧରିଣ କାନ୍ଦଇ ଅର୍ଜୁନ
ମୋତେ ରଖି ଜଗନ୍ନାଥ ଛାଡ଼ିଲୁ ଜିବନ ॥୧୦୪୭୮॥
ରଥ ବାହୁକ ମୋର ହୋଇଥିଲୁ ତୁହି
ଯେଣିକି ରଥବାହୁ ତେଣିକି ଯାଏ ମୁହିଂ ॥୧୦୪୭୯॥
ତୋହର ବଳେଂ ଲାଖ ବିନ୍ଧି ଆଣିଲିଂ ପାଞ୍ଚାଳି
ଲକ୍ଷେ ରାଜା ମୁଖରେ ଲଗାଇଲିଂ କାଳି ॥୧୦୪୮୦॥
ଉତର ଦିଗକୁ ବିଜେ କଲିଂ ଯେଉଂକାଳେ[3]
ଚାଳିସି ସହସ୍ର ରାଜା ଜିଣିଲି ବାହୁବଳେ ॥୧୦୪୮୧॥
ରାଜୁସି ଯଜ୍ଞରେ ହୋଇଲ ଅନନ୍ତ ପଡ଼ିହାରି
ସୋଭା ପାଉଥାଇ ହସ୍ତରେ ବେତ ଯୋଡ଼ି[4] ॥୧୦୪୮୨॥
ଭାରତ ଯୁଦ୍ଧରେ ରଥ ବାହୁକ ମୋର ହେଲୁ
କୁରୁବଳ ମାରିଣ[5] ପାଣ୍ଡେବଙ୍କୁ ନିସ୍ତାରିଲୁ[6] ॥୧୦୪୮୩॥
ହରି ସବୁଦିନେ ଆମ୍ଭଙ୍କୁ କରିଥାଉ ଆହ୍ଲାଦ
ଯେବେ ତ ଛାଡ଼ିଗଲୁ ଦେଇଣ ଅପବାଦ[7] ॥୧୦୪୮୪॥
କାନ୍ଦଇ ସହଦେବ ନକୁଳ ଭିମସେନ
କେଣେ ଛାଡ଼ିଗଲୁ ପ୍ରଭୁ ପାଣ୍ଡବ ପାଞ୍ଚଜଣ[8] ॥୧୦୪୮୫॥

---

୧ । ଘ ପୋଥି – କିରଟି
୨ । ଘ ପୋଥି – ଦେହ
୩ । ଘ ପୋଥି – ଯେତେବେଳେ
୪ । ଖ ପୋଥି – ସୁବର୍ଣ୍ଣ ବେତଯୋଡ଼ି
୫ । ଖ ପୋଥି – ନିବାରିଣ
୬ । ଘ ପୋଥି – ରଖିଲୁ
୭ । ଘ ପୋଥି – ହୋଇଲୁ ବିଛେଦ
୮ । ଖ ପୋଥି – ସବର ସରେ ପ୍ରଭୁ ଛାଡ଼ିଲୁ ଜିବନ

ଯୁଧିଷ୍ଟି ବୋଇଲେ ହୋଇଲୁ ଭିମ ବାଇ
କାହାର ହସ୍ତରେ କେହୁ ନାସ ଯାଇ ॥୧୦୪୮୬॥
ଚଉଦ ବ୍ରହ୍ମାଣ୍ଡରେ ପ୍ରଭୁ ଅଧିକାରି
ସବର ବଳେ ହୁଅଇ କି ତାକୁ ମାରି ॥୧୦୪୮୭॥
ତାହାର ଇଛାରେଂ ସେ ହୁଅଇ ଅବତାର
ଦେଖଇ ହଟକୁଟ ଖଣ୍ଡଇ ପୃଥିଭାରଂ[1] ॥୧୦୪୮୮॥
ସନ୍ଥ ଜନ ତାରିଣ ଚଳଇ ନିଜ ଧାମ
ଯୁଗକୁ ଯୁଗ ଯେହି ରୁପେ ଆନୁଆନ ॥୧୦୪୮୯॥
ଯାଅରେ ବିକୋଦର ଅଗର କାଷ୍ଟ ଆଣ
ତାହା କରିବାରେ ପ୍ରଭୁ ଭଗବାନ ॥୧୦୪୯୦॥
ଆଜ୍ଞାପାଇ ଭିମ ସବର ଚଳିଗଲେ
ସବର ପଲ୍ଲିରେ ଯାଇ ପ୍ରବେସ ହୋଇଲେ ॥୧୦୪୯୧॥
ଭାର ଭାର କରି ଗବ୍ୟଘୃତ ଘେନିଲା ସବର
ଚନ୍ଦନ ଦାରୁ କନ୍ଧେ ବହିଲା ବିକୋଦର ॥୧୦୪୯୨॥
ଜଗନ୍ନାଥଙ୍କଠାରେ ପ୍ରବେସ ହୋଇଲେ
ଗଦାଘେନିଣ ଭିମ କାଟିଲା ଯେକ ଗାରେ ॥୧୦୪୯୩॥
ଚଉବିଂସ ତାଳ ଗଭିର ହୋଇଲା
ତହିଂରେ ଭିମସେନ କାଷ୍ଟ ରୁଣ୍ଡକଲା ॥୧୦୪୯୪॥
ଜଗନ୍ନାଥଙ୍କ ପିଣ୍ଡକୁ କାଷ୍ଟରେ ଶୁଆଇଲେ
ସଉଚବନ୍ତ କରି ଅଗ୍ନି ଯେ ଲଗାଇଲେ ॥୧୦୪୯୫॥
ଦାରୁକକୁ ଆଜ୍ଞା ଦିଲାକ ଧନୁର୍ଜଇ
ଯାଅ ଦ୍ୱାରିକାରେ ବାରତା କୁହଯାଇ ॥୧୦୪୯୬॥
ଅଷ୍ଟ ପାଟବଂସି ସୋଳସହସ୍ର ନାରି
ସମସ୍ତେ ସଜ ହୋଇ ଆସନ୍ତୁ ବାହାରି ॥୧୦୪୯୭॥
ଯେହିକ୍ଷଣି ଦ୍ୱାରିକା ଜଳରେ ବୁଡ଼ିବ
ପୁର୍ବେ ମୋତେ କହିଅଛନ୍ତି ବାସୁଦେବ ॥୧୦୪୯୮॥
ଆଜ୍ଞାପାଇ ଦାରୁକ ଧାଇଂଲା ରଥବାହି
ଦ୍ୱାରିକାରେ ମିଳିଣ ଆଦିଅନ୍ତ କହି ॥୧୦୪୯୯॥
ସୁଣିଣ ଦେବକି ବସୁଦେବ କାନ୍ଦି
ପୁତ୍ର ପୁତ୍ର ବୋଲିଣ ପିଣ୍ଡରୁ ପ୍ରାଣ ରୁନ୍ଧି[2] ॥୧୦୫୦୦॥
ଶ୍ରୀକୃଷ୍ଣଙ୍କର କନ୍ୟାମାନେ ଯେତେ ଥିଲେ
ଗୋବିନ୍ଦଙ୍କ ନାମଧରି ଅଗ୍ନିରେ ଝାସିଲେ ॥୧୦୫୦୧॥
ଯହୁଂ ସେ ଗୋବିନ୍ଦ ହୋଇଲେ ଅନ୍ତର
ମାୟାବତି ରଥ ଘେନି ପ୍ରବେସ ହୋଇ ସ୍ୱାମିଠାର ॥୧୦୫୦୨॥

---

୧ । ଘ ପୋଥି – ମହିଭାର
୨ । ଘ ପୋଥି – ପ୍ରାଣ ଛାଡ଼ି

ଗଣ୍ଡି ମୁଣ୍ଡ ଯୋଡ଼ିଣ ଜିବନ୍ୟାସ ଦେଇ
ଜିବ ପାଇ ପଦ୍ମନ ଧନୁସର ଧରଇ ॥୧୦୫୦୩॥
ରଥରେ ବିଜେକଲେ ମାୟାବତି ସଏମ୍ବର ଅଇରି
ମାୟା ବିମାନେ ବସି ସ୍ୱର୍ଗପୁର ଯାଇ ଚଳି ॥୧୦୫୦୪॥
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର
ବୁଡ଼ିଲା ଦ୍ୱାରିକା ଘୋଟିଲା ସିନ୍ଧୁଜଳ ॥୧୦୫୦୫॥
ଶ୍ରୀହରି ନିବାସ ଖଣ୍ଡି ମାତ୍ରକ ରହିଲା
ତହିଂର ନୃପତି ଯେ ଅନିରୁଦ୍ଧ ହୋଇଲା ॥୧୦୫୦୬॥
ନନ୍ଦିଘୋଷ ରଥ ଘେନିଣ ଦାରୁକ
ପାଣ୍ଡେବଙ୍କୁ ନ କହି ଗମିଲା ବୈକୁଣ୍ଠ ॥୧୦୫୦୭॥
ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ଜଗନ୍ନାଥ ପିଣ୍ଡରେ ପାଣ୍ଡବେ ଅଗ୍ନିଜାଳି ॥୧୦୫୦୮॥
ପର୍ବତ ସମାନେ ଅଗର ଗଦା କଲେ
ସତେ ସତେ ଭାର ଗବ୍ୟଘୃତ ଅଗ୍ନିରେ ଢାଳିଲେ ॥୧୦୫୦୯॥
ଆକାସ ମାର୍ଗରେ ଯାଇ ଲାଗିଲା ଅଗ୍ନିତେଜ
ଶ୍ରୀଜଗନ୍ନାଥ ପିଣ୍ଡ ସେ ନୋହିଲା ଦହିଜ୍ୟ ॥୧୦୫୧୦॥
ଅଗ୍ନିଂଜାଳି ପାଣ୍ଡବେ ରହିଲେ ଥକିତେ
ସୁବର୍ଣ୍ଣଠାରୁ ଝଳି ଦିସଇ ବାସୁଦେବେଂ ॥୧୦୫୧୧॥
ଯେତେବେଳେ ଥକିତ ହୋଇଲେ ପାଣ୍ଡବ
ଆକାସରେ ଥାଇଂ ଡାକିଲେ ଦେବବୃନ୍ଦ ॥୧୦୫୧୨॥
ଆହେ ପଞ୍ଚୁପାଣ୍ଡବେ ହୋଇଲ ଏଡ଼େ ବାଇ
ଆପୋଡ଼ା ପିଣ୍ଡକୁ ପୋଡ଼ କିସ ପାଇଂ ॥୧୦୫୧୩॥
ଯେଉଂ ପିଣ୍ଡ ଗୋଟି ସଂସାରରେ ସାର
ଅଗ୍ନିରେ ପୋଡ଼ିଲେ କି ହୋଇବ ଅଙ୍ଗାର ॥୧୦୫୧୪॥
ଅଗ୍ନିରୁ କାଢ଼ି ଜଳରେ ଦିଅ ମେଲି
ବଉଦ ରୁପେ ପୁଜା ପାଇବେ ନିଳଗିରି ॥୧୦୫୧୫॥
ଯେମନ୍ତେ ବୋଲି ଦେବଗଣ ଡାକଦିଲେ
ଅଗ୍ନିଂରୁ ହରିପିଣ୍ଡ ପାଣ୍ଡବେ କାଢ଼ିଲେ ॥୧୦୫୧୬॥
ଅଶୃ ଗଦ ଗଦ ହୋଇଲେ ପାଞ୍ଚଭାଇ
ଜଳରେ ପିଣ୍ଡ ଗୋଟି ଦିଲେ ସେ ଭସାଇ[୨] ॥୧୦୫୧୭॥
ସାହେର ଜଳେ ସେ ପିଣ୍ଡ ଭାସିଯାଇ
ଜାହା ସେ ଶ୍ରୀହରି ଅଛନ୍ତି ଭିଆଇ ॥୧୦୫୧୮॥
ବୋଲନ୍ତି ଦିଗବାସ ସୁଣଗୋ ଗିରିଜାଇ ଭଲା
ସାହେର ଜଳେ ଯହୁଂ ପିଣ୍ଡ ଭାସିଗଲା ॥୧୦୫୧୯॥

୧ । ଘ ପୋଥି – ହରି ପିଣ୍ଡେ
୨ । ଘ ପୋଥି – ମେଲିଦେଲେ ନେଇ

ପାଣ୍ଡବେ ସ୍ମକିତ ହୋଇଲେକ ତହିଂ
ହସ୍ତିନା ଯିବା ବୋଲି ସହଦେବ କହି ॥୧୦୫୨୦॥
ବିସ୍ମୟେ ହୋଇ ସେ ପାଣ୍ଡବେ ବାହୁଡ଼ିଲେ
ଆପଣା ଭୁବନରେ ପ୍ରବେସ ହୋଇଲେ ॥୧୦୫୨୧॥
ଦ୍ରୌପଦି କୁନ୍ତିଠାରେ କହିଲେ ବାରତ
ସମସ୍ତେ ସୋକଭର ବୈଇମନ ଚିତ[୧] ॥୧୦୫୨୨॥
ସ୍ନାହାନ ସାରି ସର୍ବେ ସଉଚବନ୍ତ ହେଲେ
ବହୁତ ସୁବର୍ଣ୍ଣ ବ୍ରାହ୍ମଣେ ଦାନ ଦିଲେ ॥୧୦୫୨୩॥

## ବିପ୍ର ଓ ତ୍ରିଷାଣ ଶୂଦ୍ର କଥା

ଏମନ୍ତେ ଯୁଧିଷ୍ଠି ହୋଇଲେ ମଉନ[୨]
ରାଜ୍ୟକୁ ପାଳନ୍ତି କରିଣ ପୁତ୍ରସମ ॥୧୦୫୨୪॥
ଦରିଦ୍ର ବୋଲିଣ ଆଉଜଣେ ତହିଂ ନାହିଂ
ସମସ୍ତେ ଅଚିନ୍ତା ବହୁତ ଧନପାଇ ॥୧୦୫୨୫॥
ଧର୍ମ ପରାୟଣେ ବଞ୍ଚନ୍ତି ପାଞ୍ଚଭାଇ
ପରଦେସ ବାରତା ଡଗର ଦିଅଇ ॥୧୦୫୨୬॥
ବହୁତ ପରବୃତି ଆପଣାର କଲେ
ଯୁଧିଷ୍ଠି ରାଜାବୋଲି ରାଜ୍ୟରେ ଭଣାଇଲେ ॥୧୦୫୨୭॥
ମାନଗୋବିନ୍ଦଠାରୁ ପ୍ରତିଜ୍ଞା ତାଙ୍କର ହୋଇ
ଭିମ ଡରେ ସମସ୍ତେ ବୈସ୍ୟ ବୃତି ରହି ॥୧୦୫୨୮॥
ଏହି ରୁପେ ଦସ ସହସ୍ର ବରସ ଯୁଧିଷ୍ଠି ହେଲେ ରାଜା
ସୁଣଗୋ ଓମା ବୋଲି ବୋଲନ୍ତି ଗିରିଜା ॥୧୦୫୨୯॥
ସୁଜାଣ ବୋଲିଣ ଏକ ସୁଦ୍ରେକ ଅଟଇ
ବ୍ରାହ୍ମଣ ସେବକ ହୋଇ ହଳ ଚସୁଥାଇ ॥୧୦୫୩୦॥
ସବୁଦିନେ ହଳ ଚସୁଥାଇ ତ୍ରିସାଣ[୩]
ଦିନେ ସୁବର୍ଣ୍ଣ ଖଣ୍ଡିଏ ପାଇଲା ଭୁମିରେଣ ॥୧୦୫୩୧॥
ନିଅ ବୋଲି ବ୍ରାହ୍ମଣକୁ ତ୍ରିସାଣ କହଇ
ବ୍ରାହ୍ମଣ ବୋଇଲା ଏହା କି ରୁପେଂ ନେବଇ ମୁହିଂ ॥୧୦୫୩୨॥
ଏମନ୍ତ ବୋଲି ଦୁହେଂ ଉଚବାଚ ହୋଇଲେଂ[୪]
କେହି ନ ନେଇ ସୁବର୍ଣ୍ଣ ନୃପତିଠାରେ କହିଲେ ॥୧୦୫୩୩॥
ଯୁଧିଷ୍ଠିଙ୍କଠାରେ ଗୁହାରି କଲେ ପୁଣିଂ
ବ୍ରାହ୍ମଣ ବୋଇଲା ଏ ଚସୁଥିଲା ଭୁମି ॥୧୦୫୩୪॥
ପାଇଣ ସୁବର୍ଣ୍ଣ ନ ନେଇ ଜାଚେ ମୋତେ
ତ୍ରିସାଣ ବୋଇଲା ମୁଂ ନେବଇ କେମନ୍ତେ ॥୧୦୫୩୫॥

୧ । ଖ ପୋଥି – ବଇକୁଳ୍ୟ ଚିତ୍ତ
୨ । ଖ ପୋଥି – ରାଜନ
୩ । ଘ ପୋଥିର ସର୍ବତ୍ର କ୍ରିସାଣ ବୋଲି ଲେଖାଯାଇଛି
୪ । ଘ ପୋଥି – ନାଗିଲେ ଉଚ୍ଚବାଚ କଳି

ଏହାର ଅର୍ଜିତ ଭୂମି ତ ଅଟଇ
ଜେଉଁ ଦ୍ରବ୍ୟ ମିଳିବ ତାହାର ତ ହୋଇ ॥୧୦୫୩୬॥
କ୍ଷେତ ବିତ ଫଳତ ଅଟଇ ଏହାର
କେବଳ ଦିବସକ ବର୍ତନ ମୋହର ॥୧୦୫୩୭॥
ଏତେ ବୋଲି ସୁବର୍ଣ୍ଣ ରଖିଲା ସଭାର
ବ୍ରାହ୍ମଣ ବୋଇଲା ଏହା ନିଅହେ ନୃପବର ॥୧୦୫୩୮॥
ଏତେ ବୋଲି ସୁବର୍ଣ୍ଣ ତେଜିଲେ ଜଣ ବେନି
ଦେଖିଣ ଆଶ୍ଚାର୍ଯ ଯୁଧିଷ୍ଟି ନୃପମଣିଂ ॥୧୦୫୩୯॥
ଆଶ୍ଚାର୍ଯ ହୋଇ ସହଦେବକୁ ପଚାରିଲେ
ତ୍ରିସାଣ ବ୍ରାହ୍ମଣ ତ ସୁବର୍ଣ୍ଣ ତେଜିଲେ ॥୧୦୫୪୦॥
ଆମ୍ଭେ ତ ଆଉ ପର ପଦାର୍ଥ ନ ନେବା
ଏଡ଼େ ଦ୍ରବ୍ୟ ଗୋଟା ତ ବିଅର୍ଥରେ ଗଲା ॥୧୦୫୪୧॥
ଏଥିକି ସହଦେବ କହନି ବିଚାରି
ସୁଣିଣ ମାଦ୍ରିସୁତ ଫିଟାଇ ଦିଲା କଳି ॥୧୦୫୪୨॥
କଳି ମୁକଳନ୍ତେ ଲାଗିଲା କନ୍ଦଳ
ଧଇଲେ ସୁବର୍ଣ୍ଣକୁ ତ୍ରିସାଣ ବିପ୍ରବର ॥୧୦୫୪୩॥
ବ୍ରାହ୍ମଣ ବୋଇଲା ମୋ କ୍ଷେତରେ ଥିଲା ରହି
ତ୍ରିସାଣ ବୋଇଲା ମୁଂ ଆଣିଅଛି ପାଇ ॥୧୦୫୪୪॥
ଦେଖିଣ ଯୁଧିଷ୍ଟି ହୋଇଲେ ଆଶ୍ଚାର୍ଯ
ଏହିକ୍ଷଣି କିସ କଲୁରେ ସହଦେବ ॥୧୦୫୪୫॥
ସହଦେବ ବୋଇଲା ସୁଣ ହେ ଯୁଧିଷ୍ଟି ଦେବଭ୍ରାଥ[1]
ଯେଉଂଦିନୁ ତୁମ୍ଭେଂ ହୋଇଲ ନୃପନାଥ[2] ॥୧୦୫୪୬॥
ସେହିଦିନୁଂ ସିନା ଦ୍ୱାପର ସରିଲା
କଳିଯୁଗ ଆସି ପ୍ରବେସ ହୋଇଲା ॥୧୦୫୪୭॥
ମୁହିଂ ବିଚାରିଲିଂ ଆମ୍ଭେ ପାଇଲୁ ଏତେ ଦୁଖ
ସୁଖକାଳକୁ କଳି ହୋଇଲା ପ୍ରବେସ ॥୧୦୫୪୮॥
କଳି ଯୁଗେ ତୁମ୍ଭେଂ ନୋହନ୍ତ ରାଜନ
ତେଣୁ କଳିକି ମୁଂ କଲିଟି ବନ୍ଧନ ॥୧୦୫୪୯॥
ଫିଟାଇ ଦିଲିଂ କଳି ଆକ୍ରୋସିଲା ପୁଣିଂ
ତେଣୁ ସୁବର୍ଣ୍ଣକୁ ଲାଗିଲେ ଟଣାଟଣିଂ[3] ॥୧୦୫୫୦॥
ଆଜକୁ ଦସସହସ୍ର ବରସ କଳିହେଲା
ଏମନ୍ତ ବୋଲିଂ ସେ ମନ୍ତ୍ରିବର କହିଲା ॥୧୦୫୫୧॥
ସୁଣିଣ ଯୁଧିଷ୍ଟି ହୋଇଲେ ତାଟଙ୍ଗୀ
ବୋଇଲେ ସହଦେବ ମୋତେ ତୁ କଲୁ ଡକା[4] ॥୧୦୫୫୨॥

୧ । ଘ ପୋଥି – ଠାକୁର
୨ । ଘ ପୋଥି – ନୃପବର
୩ । ଘ ପୋଥି –ହଣାହଣି
୪ । ଘ ପୋଥି – କଳିଯୁଗ ଦେଖିଣ ବହୁତ ହେଲୁଂ ଥକା

ଆରେ କଳିଯୁଗେଂ ଜେହୁ ହୋଇ ନୃପତି
ପୁନ୍ୟ ନାସ କରିଣ ହୋଅଇ ବଡ଼ପାପି ॥୧୦୫୫୩॥
କଳିଯୁଗଂ କଥା ସୁଣିଲି ସ୍ରବଣ
ଦଣ୍ଡେ ନରହିବା ଚାଲରେ ଘୋରବନ ॥୧୦୫୫୪॥
ଗାନ୍ଧାରି ଧୃତିରାଷ୍ଟ୍ର ବିଦୁରକୁ ଘେନି
ରାତ୍ରକାଳେ ବନକୁ ଗମିଲେ ଜଣ ତିନି ॥୧୦୫୫୫॥
ପ୍ରାଣୁ ଅଧିକ ମୋର ସେହି ହୋଇଥିଲେ
ମୋତେ ନ କହି ସେ ବନକୁ ଚଳିଗଲେ ॥୧୦୫୫୬॥
ଜାଅରେ ବିକୋଦର ବ୍ରାହ୍ମଣ ଦିଅ ଡାକି
ପୁନ୍ୟ ନିମନ୍ତେ ଦାନ କିଛି ଦେବା ଟେକି ॥୧୦୫୫୭॥
ସୁଣିଣ ଭିମସେନ ଗମିଲା ସାସନକୁ
ସୁବର୍ଣ୍ଣ ସିଂଘାସନେ ଭେଟିଲା ବ୍ରାହ୍ମଣକୁ ॥୧୦୫୫୮॥
ବସିଛନ୍ତି ବ୍ରାହ୍ମଣେ ଆରମ୍ଭ ଭୋଟା ପଣେଂ
ପଢ଼ନ୍ତି ଚାରିବେଦ ବସିଣ କୁସାସନେ ॥୧୦୫୫୯॥
ଦେଖିଣ ଆଶ୍ଚାର୍ଯ ହୋଇଲା ଭିମସେନ
ଏଡ଼େ ସମ୍ପଦ ପାଇଣ ଅଛନ୍ତି ବ୍ରାହ୍ମଣ ॥୧୦୫୬୦॥
ଏମନ୍ତ ବିଚାରି ପ୍ରବେସ ବ୍ରାହ୍ମଣଙ୍କଠାରଂ[1]
କହିଲେ ତୁମ୍ଭଙ୍କୁ ଡାକୁଛନ୍ତି ଯୁଧିଷ୍ଟି ଠାକୁର ॥୧୦୫୬୧॥
ପୁନ୍ୟ ନିମନ୍ତେ କିଛି ଦାନ ଦେବେ ଠାକୁରେ
ସମସ୍ତ ଦ୍ୱିଜ ତୁମ୍ଭେ ଆସ ମୋ ସଙ୍ଗରେ[2] ॥୧୦୫୬୨॥
ବ୍ରାହ୍ମଣ ବୋଇଲେ ଭିମ ହୋଇଲୁ ତୁ ବାଇ[3]
ଯୁଧିଷ୍ଟି ବୋଲିଣ ସେ କାହାର ତନଇ ॥୧୦୫୬୩॥
କାହାଠାରୁ ଯୁଧିଷ୍ଟି ହୋଇଅଛି ଜାତ
ସେହି ମାହତ୍ମା ଜେ କାହାରଟି ସୁତ ॥୧୦୫୬୪॥
ନ ଜିବୁଂ ତୋର ସଙ୍ଗେ ନ ଘେନିମୁଂ ଦାନ
ସୁଣିଣ କୋପଭରେ ବାହୁଡ଼ିଲା ଭିମ ॥୧୦୫୬୫॥
ଯୁଧିଷ୍ଟି ବସିଛନ୍ତି ସଉଚବନ୍ତ ହୋଇ
ଯୁଧିଷ୍ଟି ପଚାରିଲେ ବିକୋଦର ବ୍ରାହ୍ମଣେଂ ଗଲେ କାହିଂ[4] ॥୧୦୫୬୬॥
ସ୍ୱାମି ତୁମ୍ଭର ଆଜ୍ଞାରେ ବ୍ରାହ୍ମଣ ସାସନରେ ମୁହିଂ ପସିଲିଟି
କି ଅବା ଅଟଇ ଦୁତିଅ ବାରଶ୍ୱତି ॥୧୦୫୬୭॥
ରାଜାଙ୍କଠାରୁ ବଡ଼ ଆରମ୍ଭେଂ ଛନ୍ତି ବସି
ତୁମ୍ଭ ଆଜ୍ଞା କହନ୍ତେ ହୋଇଲେ ବଡ଼ କୋପି ॥୧୦୫୬୮॥

୧ । ଘ ପୋଥି –ବିପ୍ରଠାର
୨ । ଘ ପୋଥି – ତାହାର ପାପଗୋଟା କାହାକୁ ଯିବେ ଦେଇ
୩ । ଘ ପୋଥିରେ ବ୍ରାହ୍ମଣ ବୋଇଲେ ଠାରୁ କାହାରଟି ସୁତ ପର୍ଯ୍ୟନ୍ତ ନାହିଁ
୪ । ଘ ପୋଥି – ଠାକୁରେ ପଚାରନ୍ତି ବିକୋଦରେ କହି

ବୋଇଲେ ଯୁଧିଷ୍ଠିର ପିତା ପ୍ରପିତା କେହୁ ପୁଣିଂ
ଏ ସନ୍ଧି କହିଲେ ଦାନ ଜିବୁଂ ଘେନି ॥୧୦୫୬୯॥
ସ୍ୱାମି ବ୍ରାହ୍ମଣଙ୍କର ପୁଣ ହୋଇଲା ଏଡ଼େ ପଣ
ଆଜ୍ଞାକଲେ ଜୁରକରି ଆଣିବି ସାସନ ॥୧୦୫୭୦॥
ବାନ୍ଧିଣ ଆଣିଦେବିଂ ତୁମ୍ଭର ଆଗର
ଯୁଧିଷ୍ଠି ବୋଇଲେ ଏକଥା ନ କର ବିକୋଦର ॥୧୦୫୭୧॥
ବ୍ରାହ୍ମଣ କୋପରେ ନାସଗଲେ ଜଦୁ ବିର
ଇତର ପ୍ରାଏ ତାକୁ ନ ମଣି ବିକୋଦର[1] ॥୧୦୫୭୨॥
ଜେଉଁ ବ୍ରାହ୍ମଣେ ଦହି ପାରନ୍ତି ନବସୃଷ୍ଟି
ତାହାଙ୍କ ବୋଲ ଆମ୍ଭେ ନ ପାରିବା ମେଣ୍ଟି ॥୧୦୫୭୩॥
ଜେଣୁ ବ୍ରାହ୍ମଣେ ବାବୁ ନ କଲେ ତୋର ବୋଲ
ଏହି କଳିଯୋଗେ ସେ ହୋଇବେ ଦାରିଦ୍ର ॥୧୦୫୭୪॥
ଜେତେକ ଅର୍ଜୁଥିବେ ନ ରହିବ ଧନ
ମାଗିବେ ଭିକ୍ଷା ଭୋଜନକୁ ଗମିବେ ଯୋଜନ ॥୧୦୫୭୫॥
ଏମନ୍ତେ ଯୁଧିଷ୍ଠି ଦ୍ୱିଜଙ୍କୁ ସାପ୍ୟଦେଇ
ପରିକ୍ଷିତକୁ ନୃପ ଆସନେ ବସାଇ ॥୧୦୫୭୬॥
ସନ୍ୟାସ ବେସ ହୋଇଲେ ପାଣ୍ଡେବ ପାଞ୍ଚଭାଇ
ବାହାର ହୁଅନ୍ତେଣ ଦ୍ରୋପଦି ଗୋଡ଼ାଇ ॥୧୦୫୭୭॥
ପଛରେ ପାଞ୍ଚାଳି ବୋଲଇ ବଚନ
ତୁମ୍ଭେ ଛାଡ଼ିଗଲେ ମୁଂ ନ ଛାଡ଼ଇ ପୁଣ ॥୧୦୫୭୮॥

## ସନ୍ନ୍ୟାସ ବେଶରେ ପାଣ୍ଡବମାନଙ୍କର ବନଗମନ ଓ ଯୁଧିଷ୍ଠିରଙ୍କ ହରିସାହୁ ଝିଅ ସହିତ ବିବାହ

ଏମନ୍ତ ବୋଲି ଦେବିଂ ସଙ୍ଗତରେ ଯାଇଂ
ପାଣ୍ଡବଙ୍କ ସଙ୍ଗତେ ଚଳନ୍ତି ମହାମାଇ[2] ॥୧୦୫୭୯॥
ପଶ୍ଚିମେ ଦିଗେ ଯାଇ ପସିଲେ ଘୋର ବନ
ମଣିଭଦ୍ରା ନଦିତିରେ ରହିଲେ ତିନିଦିନ ॥୧୦୫୮୦॥
ତହୁଂ ଯାଇ ପୁଣି ମଣିକର୍ଣ୍ଣିକାରେ ମିଳି
ସେ ତିର୍ଥେ ଅଛନ୍ତି ବହୁତ ତପସାଳି ॥୧୦୫୮୧॥
ତହିଂରେ ସ୍ନାହାନ କଲେ ଛଡ଼ ଜଣ
କୃଷ୍ଣବେଣି ତିରେ ପ୍ରବେସ ଆରଦିନ ॥୧୦୫୮୨॥
ତହୁଂ ଯାଇ ପଞ୍ଚୁବଟି ବନେ ରହି[3]
ତହିଂରୁ ବହୁତ ପଥ ଗଲେ ବହି ॥୧୦୫୮୩॥

୧ । ଘ ପୋଥି - ସେହି ବ୍ରାହ୍ମଣ ସାପ୍ୟକୁ ମୋହର ବଡ଼ ଡର
୨ । ଘ ପୋଥିରେ ଏମନ୍ତ ବୋଲି ଠାରୁ ମହାମାଇ ପର୍ଯ୍ୟନ୍ତ ନାହିଁ
୩ । ଖ ପୋଥି - ବନେ ହୋଇ

ଯେମନ୍ତେ ବହୁତ ପଥ ବନ ଦେସ ଯାଇ
ହରିତ ବୋଲି ଯେକ ଗ୍ରାମ ସେ ଅଟଇ ॥୧୦୫୮୪॥
ହରିସାହୁ ବୋଲିଣ ତହିଂରେ ଏକ ବସ୍ୟ ତ
ସେ ରାଜ୍ୟରେ ସେ ହୋଇଛି ନୃପନାଥ ॥୧୦୫୮୫॥
ପାଣ୍ଡବଙ୍କୁ ଚିହ୍ନି ଗୌରୋବ କଲା
ଭୋଜନ କରିବାକୁ ରୋସଇ ସଞ୍ଚା ଦିଲା ॥୧୦୫୮୬॥
ଦ୍ରୁପଦି ପାକ କଲେ ଭୁଜିଂଲେ ପାଣ୍ଡେବ
ଆଞ୍ଚୋବନ ସାରିଣ ହରସ ମତି ଭାବ ॥୧୦୫୮୭॥
କୃଷ୍ଣାଜଂନେ ବସିଣ କୁସଳ ପଚାରିଲେ
ଦୁହିତା ଗୋଟିଯେତ ଅଛଇ ତୋର ଘରେ ॥୧୦୫୮୮॥
ବିଭା ନ ଦେଇ ଯେ ରଖଇ ଦୁଲଣି[1]
ପାକାଶ୍ରୋତି ହୋଇଲେ ପିତୃ ନ ପାବନ୍ତି ପାଣି[2] ॥୧୦୫୮୯॥
ସୁଣି ହରିସାହୁ ଯୋଡ଼ିଲା ବେନିକର
ଦୋହିତା ଜନ୍ମ ହୋଇ ନ ଥିଲା ମୋହର ଘର ॥୧୦୫୯୦॥
ଅତି ଆକୁଳେ ମୁଂ ସେବିଲିଂ ତ୍ରିଲୋଚନ
ଅପାର ଦିନରେ ମୋତେ ହୋଇଲେ ପ୍ରସନ୍ନ ॥୧୦୫୯୧॥
ବର ଯାଚନ୍ତେ ମୁହିଂ ଦୋହିତା ମାଗିଲଇଂ
ସେହି ବୋଇଲେ ତୋର ଲଲାଟରେ ନାହିଂ ॥୧୦୫୯୨॥
ଯେବେ ବଳକ୍ଲାରେ ଦୋହିତା ଆମ୍ଭେ ଦେବା ପୁଣ
ବିଭାକାଳେ ତାକୁ ବାନ୍ଧି ନେବ ଯମ ॥୧୦୫୯୩॥
ଯେତେ କହି ସିବ ହୋଇଲେ ଅନ୍ତର୍ଦ୍ଧାନ
ପ୍ରବେସ ହେଲି ମୁହିଂ ଆପଣା ଭୁବନ ॥୧୦୫୯୪॥
ଭାରିଯାର ସଙ୍ଗେ କରନ୍ତେ ଶୃଙ୍ଗାର
ଦୁହିତା ଗୋଟିଯେ ଜନ୍ମିଲା ମୋହର ॥୧୦୫୯୫॥
ବିଭାବେଳ ଜାଣି ଯମ ଯିବ ଘେନି
ତେଣୁ ବିଭା ନ ଦେଇ ରଖିଛି ଦୁଲଣି ॥୧୦୫୯୬॥
ତୁମ୍ଭେ ତ ବିବେକ ଧାର୍ମିକ ଗୁଣଗ୍ରାହି
ଦୁହିତା ଗୋଟେ ଯେବେ ତୁମ୍ଭଙ୍କୁ ବିଭାଦେବଇଂ ॥୧୦୫୯୭॥
ଯେବେ ଯେ ଦୁହିତାକୁ ବିଭା ହୁଅ ତୁମ୍ଭେ
କାରଣ ପାଇବିଂ ମୁଂ ତୁମ୍ଭର ପରସାଦେ ॥୧୦୫୯୮॥
ସୁଣିଣ ଅର୍ଜୁନ ମୁଖକୁ ଚାହିଂଲେ ନୃପରାହୁ
ଅର୍ଜୁନ ବୋଇଲା ଆହେ ଯେହୁକଥା ହେଉ ॥୧୦୫୯୯॥
ବିଭାକାଳେ ମୁହିଂ ବସିବି ଧନୁଧରି
ଯମ ଛାର କି କନ୍ୟାକୁ ନେଇପାରି ॥୧୦୬୦୦॥

୧ । ଘ ପୋଥି - ତରୁଣି
୨ । ଖ ପୋଥି - ପାକାଶ୍ରୋଣି ହୋଇଲେ
ପିତୃଲୋକେ ନ ପାବନ୍ତି ପାଣି

ସୁଣି ହରିସାହୁକୁ ବୋଇଲେ ଯୁଧିଷ୍ଠି
ହୋଇବା ବିଭା ସଜ କର ହୋ କନ୍ୟା ଗୋଟି ॥୧୦୬୦୧॥
ସୁଣିଣ ହରିସାହୁ ହରସ ହୋଇଲା
ନବର ମଣ୍ଡାଇଣ କନ୍ୟାକୁ ସଜକଲା ॥୧୦୬୦୨॥
ଆପଣେ ଯୁଧିଷ୍ଠି ବରବେସ ହୋଇଲେ
କନ୍ୟା ସହିତରେ ବେଦିରେ ବସିଲେ ॥୧୦୬୦୩॥
ଗନ୍ଧର୍ବ ବିଧିରେଂ ସେ ହୋଇଲେ ବିଭା
ଝିଅକୁ ହରିସାହୁ ସମର୍ପିଣ ଦେଲା ॥୧୦୬୦୪॥
ଯେଥୁ ଅନ୍ୟନ୍ତରେ ସୁଣଗୋ ଗଉରି
ଅର୍ଜୁନ ବସିଅଛି ଧନୁସର ଧରି ॥୧୦୬୦୫॥
ସେହିକାଳେ ଆସି ପ୍ରବେଶ ଯମଦୁତ
କନ୍ୟାକୁ ନେବେ ବୋଲି ଘେନିଛନ୍ତି ଫାସ ॥୧୦୬୦୬॥
ଦେଖିଣ ସର୍ବସାଚି ପବନାସର ଧରି
ମନ୍ତ୍ର ସୁମରି ନାରାଜ ଧରିଣ କୋପକରି ॥୧୦୬୦୭॥
ଗୁଣରେ ବସାଇଣ ଆଦ୍ୟାନ କରି ସନ୍ଧି
ନାରାଜକୁ ତିଆରି କହଇ ବାସେବି ॥୧୦୬୦୮॥
ଚଳିଲା ନାରାଜ କରିଣ ଗର୍ଜନ
କାଳ ବିକାଳ ଦୁତକୁ କରିଣ ବନ୍ଧନ ॥୧୦୬୦୯॥
ସୁନ୍ୟରେ ଅର୍ଜୁନ ଶର ଘେନିଗଲେ
ପିଡ଼ିପିଡ଼ା[୨] ପର୍ବତରେ କାଳ ବିକାଳ ପଡ଼ିଲେ ॥୧୦୬୧୦॥
ଯେଥୁ ଅନ୍ୟନ୍ତରେ ସରିଲାକ ବିଭା
ସାରିଣ ଲଜା ହୋମ କଲେକ ମହୁସଯ୍ୟା ॥୧୦୬୧୧॥
ରଜନି ପାହାନ୍ତେ ପଚାରଇ ବୈସ୍ୟେ
କନ୍ୟା ବିଭାହେଲା ନଇଲା[୩] ଜନ୍ତୁନାଥ ॥୧୦୬୧୨॥
ସଦାସିବ ବଚନ ତ ବିଅର୍ଥ[୪] ହୋଇଲା
ନଇଲେ ଯମଦୁତ[୫] ହୋଇଲା ଝିଅବିଭା ॥୧୦୬୧୩॥
ଅର୍ଜୁନ ବୋଇଲା ବାଭିଯେ ହୋଇଲକି ବାଇ
ଯେତେବେଳ ଯାଯେ ଝିଅ ତୁମ୍ଭର ନ ଥାନ୍ତା ଯେ ରହି ॥୧୦୬୧୪॥
ଯେତେବେଳେ ହେଉଥିଲା ହସ୍ତ ଯେ ଗ୍ରହଣ
କାଳ ବିକାଳକୁ ଘେନି ପ୍ରବେସ ହେଲା ଯମ ॥୧୦୬୧୫॥
ବାନ୍ଧିଣ ରଖିଅଛି ପର୍ବତ କ୍ରୋଟର
ହରିସାହୁ ବୋଇଲା ମୁଂ ଦେଖିବିଂ ନୟନର ॥୧୦୬୧୬॥

୧ । ଖ ଓ ଘ ପୋଥି – ବେଭାରେ
୨ । ଘ ପୋଥି – ଗିଡ଼ିଗିଡ଼ା
୩ । ଘ ପୋଥି – କି କଲା
୪ । ଘ ପୋଥି – ଅନ୍ୟସ୍ତା
୫ । ଘ ପୋଥି – ଯନ୍ତୁପତି

ସୁଣିଣ ପାଥ ସଙ୍ଗେ ଗଲା ହରିସାହୁ
ପିଡ଼ିପିଡ଼ା ଗିରିରେ ଦେଖିଲାଂ ଯନ୍ତୁ ରାହୁଂ ॥୧୦୬୧୭॥
ଲାଗିଛି ଫାସମାନ ବନ୍ଧନେ ଅଛି ପଡ଼ି
ହରିସାହୁ ବୋଇଲା ହେ ଯେହାକୁ ଦିଅ ଛାଡ଼ି ॥୧୦୬୧୮॥
ଅଦୋସେ କିପାଇଂ ମରିବ ବାପୁଡ଼ା
ଝିଅ ତ ବିଭା ହୋଇଣ ମୋହର ଜିଇଂଲା ॥୧୦୬୧୯॥
ଧନ୍ୟ ତୋହର ଅର୍ଜୁନ ଜାଣିମା ମହିଂମା
ଯମରାଜକୁ ବନ୍ଧାଇ ରୁହାଇଲୁ ସିମାଂ ॥୧୦୬୨୦॥
ଯମକୁ ସର୍ବସାଚି ମୁକୁଳାଇ ଦେଲେ
କାଳ ବିକାଳ ସହିତେଣ ଯେ ପଳାଇଲେ ॥୧୦୬୨୧॥

## ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ

ପୁଣି ସେହିସ୍ଥାନ ତେଜିଲେ ପାଞ୍ଚଭାଇ
ହେମବନ୍ତ ଗିରିରେ ପ୍ରବେଶ ହେଲେ ଯାଇଂ ॥୧୦୬୨୨॥
ଯେବଣ ଗିରିପରେ ସ୍ୱର୍ଗକୁ ଅଛି ବାଟ
ବହୁଅଛି ହେମ କାକର ବତାସ ॥୧୦୬୨୩॥
ଅଗ୍ରରେ ଯୁଧିଷ୍ଠି ପଛରେ ବିକୋଦର
ତଦନ୍ତେ ଅର୍ଜୁନ ତା ପଛେ ନକୁଳ ॥୧୦୬୨୪॥
ସହଦେବ ଅଛଇ ନକୁଳ ପଛର
ତା ପଛେ ଗମନ୍ତି ଦ୍ରୌପଦି ଧିର ଧିର ॥୧୦୬୨୫॥
ଯେରୁପେ ଛଡ଼ଜଣ କରନ୍ତି ଗମନ
ଲାଗଇ ଦେହକୁ ଶିଶିର ବହେ ହେମ[୨] ॥୧୦୬୨୬॥
ଦ୍ରୋପଦି ବୋଇଲେ ମୁଂ ନ ପାରଇଂ ଯାଇ
ଡାକଇ ସହଦେବ ରହ ରହ ଭାଇ ॥୧୦୬୨୭॥
ହେମ ଲାଗିଲା ଯାଇ ନ ପାରେ ପାଞ୍ଚାଳି
ଦଣ୍ଡେକ ରହିଲେ ସେ ଉଠିବ ସମ୍ଭାଳି ॥୧୦୬୨୮॥
ଯୁଧିଷ୍ଠି ବୋଇଲେ ସେ ରହୁ ସେହିଠାର
ଯେ ଆସିଲେ ଆସ ହୋ[୩] ନୋହିଲେ ପଡ଼ି ମର ॥୧୦୬୨୯॥
ଯେତେକ କହି ଯୁଧିଷ୍ଠି କରନ୍ତି ଗମନ
ବସିଲେ ଦ୍ରୋପଦି ମାଡ଼ିଣ[୪] ଆସନ ॥୧୦୬୩୦॥
ସେ ରୁପ ତେଜିଣ ଭୈରୋବି ରୁପ ହେଲେ
କାତି ଖପର ଘେନି ଉର୍ଦ୍ଧକୁ ଦୃଷ୍ଟି ଦିଲେ ॥୧୦୬୩୧॥

୧ । ଘ ପୋଥି – ଜନ୍ତୁପତିଠାରେ ଏଡ଼େକ ଗାରିମା
୨ । ଖ ପୋଥି – ଲାଗଇ ଦେହକୁ କାକର ଜାଡ଼ ହେମ
୩ । ଘ ପୋଥି – ତୁ ଅଇଲେ ଆସ
୪ । ଘ ପୋଥି – ମାଣ୍ଡିଣ

ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର[1]
ଖଣ୍ଡେଦୁର ଗମନ୍ତେ ପଡ଼ିଲା ମନ୍ତ୍ରିବର[2] ॥୧୦୬୩୨॥
ପଡ଼ିଲା ଖପରରେ ସୋଷି ଦିଲେ ଦେବି
ଡାକଇ ନକୁଳ ଯେ ରହ ରହ ବୋଲି ॥୧୦୬୩୩॥
ନକୁଳ ବିକଳେ ଡାକଇ ଧନୁର୍ଜଇ
ରହ ରହ ଠାକୁର ନକୁଳ ପଡ଼ିଛଇ ॥୧୦୬୩୪॥
ନ ଚାହିଂ ଯୁଧିଷ୍ଟି ଯେ କରନ୍ତି ଗମନ
ପଡ଼ିଲା ନକୁଳ ଲାଗିଲା ଜହ୍ନୁଂ ହେମ ॥୧୦୬୩୫॥
ସଙ୍କର ମୁଖ ଚାହିଂ ଗିରିଜା ପଚାରିଲେ
ଯେଡ଼େ ନିର୍ଦ୍ଦୟା କିପାଇଂ ଯୁଧିଷ୍ଟି ହୋଇଲେ ॥୧୦୬୩୬॥
ଯେକ ପଡ଼ିଲେ ସେ ଆରେକ ଡାକ ଦେଇ
ସୁଣିଣ ଯୁଧିଷ୍ଟି କିପାଇଂ ନ ରହଇ ॥୧୦୬୩୭॥
ବୋଲନ୍ତି ସଦାସିବ ସୁଣଗୋ ଗଉରି
ପାଣ୍ଡେବଙ୍କ କଥା ତୋତେ କହିବା ବିସ୍ତାରି ॥୧୦୬୩୮॥
ସହଦେବ ନକୁଳ ଭିମ ସର୍ବସାଚି
ଯେହାଙ୍କର ଦେହେ ମାୟା ଆବୋରିଣ ଅଛି ॥୧୦୬୩୯॥
ତେଣୁ ଯେକ ପଡ଼ିଲେ ଆରେକ ସୋକଭର
ନିସ୍କାଞ୍ଚନ ଦେହ ସେ ଅଟଇ ଯୁଧିଷ୍ଟିର ॥୧୦୬୪୦॥
ଖଣ୍ଡେ ଦୁର ଗମନ୍ତେ ପଡ଼ିଲା ଅର୍ଜୁନ
ଦେଖିଣ ଯୁଧିଷ୍ଟିଙ୍କି ଡାକିଲା ଭିମସେନ ॥୧୦୬୪୧॥
ସ୍ୱାମି ଅର୍ଜୁନ ପଡ଼ିଲା ଦଣ୍ଡେ ରୁହ ତୁମ୍ଭେ
ଯୁଧିଷ୍ଟି ବୋଇଲେ ପଡୁ ତୁହି ଆସ ସଙ୍ଗେ[3] ॥୧୦୬୪୨॥
ତେଡ଼େ ଭ୍ରାତକୁ ଯୁଧିଷ୍ଟି ଛାଡ଼ି ଯାଇ
ସଂସାର ଜନେ ବୋଲନ୍ତି ମୋହର ଭାଇ ଭାଇ ॥୧୦୬୪୩॥
ମାତା ପିତା ଦାରା ଯେ ବନ୍ଧୁ ସହୋଦର
ସମସ୍ତ ଆବୋରିଣ ଥାଅ ଘରଦ୍ୱାର ॥୧୦୬୪୪॥
ଜାଣିଲେ କେହି ସେ ନୋହନ୍ତି କାହାରି
ପଥୁକି ସଙ୍ଗେ ମେଳ ଥାଆନ୍ତି ଆବୋରି ॥୧୦୬୪୫॥
ଯେକାଯେ ଆସିଥାଇ ଗମଇ ସେହି ଯେକା
ସମସ୍ତେ ରହିଥାନ୍ତି କେହି ନୋହନ୍ତି ସାଖା ॥୧୦୬୪୬॥
ଆପଣେ ଯେଉଁ ପୁଣ୍ୟ ଅର୍ଜିଣ ସେ ଥାଇ
ସେହି ସେ ପୁଣ୍ୟ ପଥରେ ସାହି ସଙ୍ଗ ହୋଇ ॥୧୦୬୪୭॥
ଯୁଧିଷ୍ଟି ଦେବ ପୁଣ୍ୟ ସେ ଅର୍ଜି ଥିଲେ
ତେଣୁ ହେମ ପଥରେ ଗମନ୍ତି ସେହୁ ଭଲେ ॥୧୦୬୪୮॥

୧ । ଖ ପୋଥି – ସଦାସିବ
୨ । ଖ ପୋଥି – ସହଦେବ
୩ । ଘ ପୋଥି – ବୋଇଲେ ସେହି ପଡୁ ଆସ ତୁମ୍ଭେ ବେଗେ

ଆହେ ସାଧୁଜନମାନେ ପୁଣ୍ୟ ଆସ୍ରେକର
ଯୁଧିଷ୍ଟି ସମାନେ ତରିବ ତମ ଘୋର ॥୧୦୬୪୯॥
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର
ଯୁଧିଷ୍ଟିଙ୍କ ସଙ୍ଗତେ ଗମଇଂ ବିକୋଦର ॥୧୦୬୫୦॥
ପଞ୍ଚସ୍ତରି ଯୋଜନ ସେ ଗଲେ ପଥ ବହି
ଅଳପ ଦୁରେ ସେ ଅମର ଅଛଇ[1] ॥୧୦୬୫୧॥
ଯୁଧିଷ୍ଟି ପଛକୁ ଯେ ତଲେ କରିଦିଲେ
ଦେଖିଲେ ଭିମସେନ ଆସଇ ପଛରେ ॥୧୦୬୫୨॥
ହଲାଇ ବାମ ଅଙ୍ଗ[2] କରଇ ଗମନ
ଦେଖି ବିଚାରିଲେ ହୃଦେ ଧର୍ମରନନ୍ଦନ ॥୧୦୬୫୩॥
ସ୍ୱର୍ଗକୁ ଗଲେ ଭିମ କରିବ ହୁରିଜୁରି
ହୋଇବ ଅପଯସ କୋପିବେ[3] ବଜ୍ରଧାରି ॥୧୦୬୫୪॥
ଯେତେ ବୋଲି ଯୁଧିଷ୍ଟି ଡାକିଲେ ଭିମକୁ
କ୍ଷତ୍ରି ହୋଇ କିପାଇଂ ପେଲି ଆସୁ ବାମ ଅଙ୍ଗକୁ[4] ॥୧୦୬୫୫॥
ନିର୍ବାଣ କାଳେ ଯେହୁ ନିସତ ହୋଅଇ
ଲଭଇ ଅପଯସ ପୌରୋସ ବୁଡ଼ଇ ॥୧୦୬୫୬॥
ଯେବେ ଡାହାଣ ଅଙ୍ଗ ଭିମ ପେଲି ଆସ
ହେମ ପଥ ଗମିଣ ସ୍ୱର୍ଗପୁରେ ବସ ॥୧୦୬୫୭॥
ଯେମନ୍ତ ବୋଲି ଯହୁଂ ବୋଇଲେ ଯୁଧିଷ୍ଟି
ଯୁଧିଷ୍ଟି କପଟ ଜାଣି ନ ପାରିଲା ମାରୁତି ॥୧୦୬୫୮॥
ଡାହାଣ ଅଙ୍ଗ ପେଲି ଗମିବାର[5] ବେଳେ
ଲାଗିଲା ହେମ ଛିଡ଼ି ପଡ଼ିଲା ମହିତଳେ[6] ॥୧୦୬୫୯॥
ଖପର ପାତି ଦେବି ସୋସିଲେ ରୋଧିର
ସୁଣଗୋ ଓମା ବୋଲି ବୋଲନ୍ତି ସଙ୍କର ॥୧୦୬୬୦॥
ପଡ଼ିଲେ ଚାରିଭାଇ ଯୁଧିଷ୍ଟି ଯେ ଗଲେ
ହେମପଥ ଜିଣି ସେ ସ୍ୱର୍ଗକଇ ଗମିଲେ ॥୧୦୬୬୧॥
ଯୁଧିଷ୍ଟିଙ୍କ ଆଗମ ଜାଣିଣ ନିରଜଂନ
ସତ ବିଡ଼ିବା ନିମନ୍ତେ ହୋଇଲେ ଯେକ ଶ୍ୱାନ ॥୧୦୬୬୨॥
ତାହା ପଛେ ଗୋଡ଼ାଇଲା ଯେକ ବ୍ୟାଘ୍ରେଂ ପୁଣ
ସ୍ୱାନ ପଳାଇଛି ଯୁଧିଷ୍ଟି ସନିଧ୍ୟାନ ॥୧୦୬୬୩॥

୧ । ଘ ପୋଥି – ଅଳପ ଦୁର ଆଉ ସର୍ଗ ପଥ ଅଛଇ
୨ । ଖ ପୋଥି – ବାମ କର
୩ । ଘ ପୋଥି – କମ୍ପିବେ
୪ । ଘ ପୋଥି – କ୍ଷତ୍ରି ହୋଇ କିମ୍ପେ ପେଲୁ ବାମ ଅଙ୍ଗକୁ
୫ । ଖ ପୋଥି – ଆସିବାର
୬ । ଖ ପୋଥି – କ୍ଷିତି ତଳେ

ବ୍ୟାଘ୍ର ବୋଇଲା ଯେ ଶ୍ୱାନକୁ କରିବିଂ ଭୋଜନ
ନ ଭକ୍ଷିଲେ ଶ୍ୱାନକୁ ମୁଂ ଛାଡ଼ିବିଂ ଜୀବନ[୪] ॥୧୦୬୬୪॥
ଶ୍ୱାନକୁ ରଖିଲେଂ ପାଇବୁ ମୋର ହତ୍ୟା
ସୁଣିଣ ଯୁଧିଷ୍ଠି ପାଇଲେ ବଡ଼ ଚିନ୍ତା ॥୧୦୬୬୫॥
ଯୁଧିଷ୍ଠି ରଖ ବୋଲି ଡାକୁଅଛି ଶ୍ୱାନ
ବ୍ୟାଘ୍ର ବୋଲଇ ମୁଂ କରିବିଂ ଭୋଜନ ॥୧୦୬୬୬॥
ଦୁହିଂଙ୍କର ବିକଳେ ଭାଳଇ ଯୁଧିଷ୍ଠି
ଶ୍ୱାନକୁ ସମର୍ପିଲେ ହୋଇବିଂ ବଡ଼ ପାପି ॥୧୦୬୬୭॥
ନ ଭକ୍ଷି ବ୍ୟାଘ୍ର ପ୍ରାଣ ଛାଡ଼ିବ କଳେବର
ତାହାର ହତ୍ୟା ମୁଂ ବହିବି କନ୍ଧର ॥୧୦୬୬୮॥
ଯେତେ ବିଚାରି ଯୁଧିଷ୍ଠି ବ୍ୟାଘ୍ର ଆଗେଂ ହୋଇ
ମୋତେ ଖାଇ ସନ୍ତୋସ କର ତୋର ଦେହି ॥୧୦୬୬୯॥
ଶ୍ୱାନ ଗୋଟି ବ୍ରତିଣ ସୁଖେ ଚଳିଯାଉ
ମୋତେ ଖାଅ ତୋର କ୍ଷୁଧା ହିଂ ନ ଥାଉ ॥୧୦୬୭୦॥
ଯେତେ ବୋଲି ଯୁଧିଷ୍ଠି ହୋଇଲେ ଆଗଭର
ଯୁଧିଷ୍ଠିଙ୍କ ସତ ବିଡ଼ିଲେ ଦିନକର ॥୧୦୬୭୧॥
ଶ୍ୱାନ ରୁପ ତେଜିଣ ନିଜ ରୁପ ହେଲେ
ଧନ୍ୟ ଯୁଧିଷ୍ଠି ବୋଲି ଆଦିତ୍ୟ ପ୍ରସଂସିଲେ ॥୧୦୬୭୨॥
ନିଜ ଦେହ ଘେନିଣ ସ୍ୱର୍ଗକୁ ଅଇଲୁଂ
ଆସ ଆସ ନନ୍ଦନ ସୁଧର୍ମା ସଭାରେ ବସିବୁ ॥୧୦୬୭୩॥
ଯେମନ୍ତ କହୁଂ କହୁଂ ମିଳିଲା ପୁଷ୍ୟଯାନ
ଅପକ୍ଷରା ସହିତେ ଆସନ୍ତି ମଘବାନ ॥୧୦୬୭୪॥
ଯୁଧିଷ୍ଠିଙ୍କି ବିମାନେ ଘେନିଣ ଗନ୍ଧ ଚନ୍ଦନ ଲେପି
ହୁଳହୁଳି ଦେଇଣ ଅପକ୍ଷରିମାନେ ନାଚି ॥୧୦୬୭୫॥
ଗନ୍ଧର୍ବେ ତାଳ ଧରିଣ କରନ୍ତି ଆଳାପ
ଦିସନ୍ତି ଯୁଧିଷ୍ଠି ସ୍ୱର୍ଗର ନାୟକ ॥୧୦୬୭୬॥
ଯେମନ୍ତ ପ୍ରକାରେ ଯୁଧିଷ୍ଠିଙ୍କି ନେଇ
ସଭାରେ ପ୍ରବେସ ହେଲେ ଜନ୍ତୁସାଇଂ[୧] ॥୧୦୬୭୭॥
ରହ ରହ ବୋଲିଣ ସେ ଯୁଧିଷ୍ଠିଙ୍କି ଡାକି
ମଞ୍ଚର ମାନେବ ତୁ ଅଟୁ ଯେ ବଡ଼ପାପି ॥୧୦୬୭୮॥
ପାପପୁଣ୍ୟ ତୋହାର ହୋଇ ନାହିଂଟି ବିଚାର
କେମନ୍ତେ ବସିବୁ ତୁ ସୁଧର୍ମା ସଭାର ॥୧୦୬୭୯॥
ଆଦିତ୍ୟ ସୁରପତି ତେତିସ କୋଟି ଦେବେ ମିଳି
ବୋଇଲେ ଜନ୍ତୁପତି ତୁମ୍ଭେ କହୁଛ ନ ବୁଝି[୨] ॥୧୦୬୮୦॥

୧ । ଖ ପୋଥି – ନ ହେଲେ କ୍ଷୁଧାରେ ଛାଡ଼ିବି ଜିବନ
୨ । ଖ ପୋଥି – ସଭାରେ ପ୍ରବେସ ଜନ୍ତୁପତି ସେ ହୋଇଲେ
୩ । ଘ ପୋଥି – ତୁ କହୁଛୁ ନ ବିଚାରି

ଅପାପି ପୁରୁଷ ଯେ ଅଇଲା ଦେହ ଘେନି
ଯେହାକୁ ପାପି ବୋଲି କହୁଛୁ ଜନ୍ତୁମଣି ॥୧୦୬୮୧॥
ଯମ ବୋଇଲା ତାହା ଜାଣିମା କେମନ୍ତେ
ପତ୍ର ପଢ଼ିଲେ ସିନା ଅପାପି ବୋଲିବା ସମସ୍ତେ ॥୧୦୬୮୨॥
କାଳ ବିକାଳକୁ ଚାହିଂ ଆଜ୍ଞା ଦିଲା ଯମ
ଯୁଧିଷ୍ଠିଙ୍କି ଘେନିଯାଅ ବୁଝିବା ପାପ ପୁଣ୍ୟ ॥୧୦୬୮୩॥
ସୁଣିଣ କାଳ ବିକାଳ ଆକ୍ରୋସି ଘେନିଗଲେ
ସଜିଂବନି ପୁରେ ପ୍ରବେସ ହୋଇଲେ ॥୧୦୬୮୪॥
ଚିତ୍ରଗୋପତକୁ ଆଜ୍ଞା ଦିଲେ ଯମ
ପତ୍ରପଢ଼ି ଯେହାର ବୁଝ ପାପ ପୁଣ୍ୟ[୧] ॥୧୦୬୮୫॥
ସୁଣି ବେନି କରଣେ ପତ୍ରିକା[୨] ପଢ଼ିଲେ
ଯୁଧିଷ୍ଠିଙ୍କର ଆଉ ପାତେକ ନ ଦେଖିଲେ[୩] ॥୧୦୬୮୬॥
ଯମକୁ ଚାହିଂଣ ବୋଇଲେ କରଣ
ପତ୍ର ପଢ଼ିଲୁଂ ଯେହାର ନାହିଂ ପାପ ଜାଣ ॥୧୦୬୮୭॥
କିଞ୍ଚିତ ପାତେକ ଅଛଇ ଯେହାର
ମିଛ କହିଛି ଯେ ଭାରତ ଯୁଦ୍ଧର ॥୧୦୬୮୮॥
ଅଶ୍ୱସ୍ତମା ହତ ବୋଲି ଦ୍ରୋଣେ ପଚାରିଲେ
ନର କି ଗୁଜଂର ବୋଲି ଯୁଧିଷ୍ଠି କହିଲେ ॥୧୦୬୮୯॥
ଗୁଜଂରେ ମରିଥିଲା ଦେଖିଥିଲା ସେହି
ବୋଇଲେ ନର ବୋଲି ତେଣୁ ସେ ପାପି ହୋଇ ॥୧୦୬୯୦॥
ତେଣୁ କିଞ୍ଚିତ ପାପ ହୋଇଲା ଯେହାର
ଅଙ୍ଗୁଷ୍ଠି ଗୋଟିଯେ ନେଇ ପକାଅ ନର୍କର ॥୧୦୬୯୧॥
ଶୁଣିଣ ଡଗରକୁ[୪] କହିଲେ ଧର୍ମପୁଅ
କନିଷ୍ଟ ଅଙ୍ଗୁଷ୍ଠିକି ନର୍କରେ ପକାଅ ॥୧୦୬୯୨॥
ତହୁଂ କାଳ ବିକାଳ ଯୁଧିଷ୍ଠି ବାମ ଅଙ୍ଗ ଧଇଲେ
କନିଷ୍ଠ ଅଙ୍ଗୁଷ୍ଠିକି ନର୍କରେ ବୁଡାଇଲେ ॥୧୦୬୯୩॥
ଜହୁଂ ଅଙ୍ଗୁଷ୍ଠି ନର୍କରେ ବୁଡ଼ିଲା
ଆତ୍ମାଗତେ ଯୁଧିଷ୍ଠି ଧର୍ମପୁରୁଷ ସୁମରିଲା ॥୧୦୬୯୪॥
ନର୍କର ଗନ୍ଧ ଯୁଧିଷ୍ଠି ମୁଖରେ ପଡ଼ିଲା
ନୟନ ବୁଜି ଯୁଧିଷ୍ଠି ଧର୍ମ ସୁମରିଲା ॥୧୦୬୯୫॥
ଯେତେବେଳେ ଯୁଧିଷ୍ଠିଙ୍କ ଅଙ୍ଗୁଷ୍ଠି ନଖ ଲାଗି
ନର୍କର ପାପିମାନେ ହୋଇଲେ ମୋକ୍ଷଭାଗି ॥୧୦୬୯୬॥

୧ । ଘ ପୋଥି – ଯୁଧିଷ୍ଠିଙ୍କି ଘେନି ଆସ ବୁଝିବା ପାପ ପୁଣ୍ୟ
୨ । ଖ ପୋଥି – ପାଞ୍ଜି
୩ । ଘ ପୋଥି – ଯୁଧିଷ୍ଠିଙ୍କ ପାପ ପୁଣ୍ୟ ସେ ବୁଝିଲେ
୪ । ଘ ପୋଥି – କରଣ

ନାସ୍କର[୧] ବୋଇଲା ହେ ଯୁଧିଷ୍ଠିଙ୍କି ଆଣ
ଦେଖୁ ଦେଖୁ ପାତକିମାନେ[୨] ହୋଇଲେ ପୁଣ୍ୟମାନ ||୧୦୬୯୭||
ତହୁଂ କାଳ ବିକାଳ ଯୁଧିଷ୍ଠିଙ୍କି ଗଲେ ଘେନି
ଦେଖିଣ ଆନନ୍ଦ ହୋଇଲେ ଜନ୍ତୁମଣି ||୧୦୬୯୮||
ବହୁତ ପୁଜାବିଧି ଯୁଧିଷ୍ଠିଙ୍କି କଲା
ବିମାନେ ବସାଇ ଅମର ଭୁବନକୁ ନିଲା ||୧୦୬୯୯||
ସୁଧର୍ମା ସଭାରେ ବସିଲେ ଯୁଧିଷ୍ଠି
ବଦୟନ୍ତି ସଦାସିବ ସୁଣଗୋ ବିମ୍ବଓଷ୍ଠି ||୧୦୭୦୦||
ଯେଉଂ ଚାରିଭାଇ ସ୍ୱଦେହ ଛାଡ଼ିଲେ
ଦେବ ଦେହ ଧରିଣ ସୁଧର୍ମା ସଭାରେ ବସିଲେ ||୧୦୭୦୧||
ନକୁଳ ସହଦେବ ଅର୍ଜୁନ ବିକୋଦର
ଯେମାନେ ପ୍ରବେସ ସୁଧର୍ମା ସଭାର[୩] ||୧୦୭୦୨||
ଆନନ୍ଦ ହୋଇ ପାଞ୍ଚଭାଇ ଯେକ ସଙ୍ଗେ ହୋଇଲେ ସେଠାର
ଦେବତା ସମାନେ ପୁଜା ପାଇଲେ ତହିଂର ||୧୦୭୦୩||
ଯେଣୁ ଗୋବିନ୍ଦଙ୍କୁ ଆଶ୍ରେ କଲେ ସେ ଯୁଧିଷ୍ଠି
ନିଜ ଦେହ ଘେନିଣ ସ୍ୱର୍ଗରେ ଯାଇ ବସି ||୧୦୭୦୪||
ଗୋବିନ୍ଦ ସୁମର ନରେ ତରିବ ତମ ଘୋର
ଗୋବିନ୍ଦ ସୁମର ନରେ ବସିବ ଅମର[୪] ||୧୦୭୦୫||
ଗୋବିନ୍ଦ ସୁମର ନରେ ନ ଦଣ୍ଡିବ ଯମ
ଗୋବିନ୍ଦ ସୁମର ନରେ ହୋଇବ ବହୁତ ପୁଣ୍ୟ ||୧୦୭୦୬||
ଗୋବିନ୍ଦ ସୁମର ନରେ ନ ପିଡ଼ିବ ରୋଗ
ଗୋବିନ୍ଦ ସୁମର ନରେ ପାଇବ ଐଶ୍ୱର୍ଯ୍ୟ ଭୋଗ ||୧୦୭୦୭||
ଗୋବିନ୍ଦ ସୁମର ନରେ ଫିଟିବ ଦୃଗତି
ଗୋବିନ୍ଦ ସୁମର ନରେ ପାଇବ ମୋକ୍ଷଗତି[୫] ||୧୦୭୦୮||
ଗୋବିନ୍ଦ ସୁମର ନରେ ଫିଟିବ କାଳ ଫାସ
ଗୋବିନ୍ଦ ପାଦେଂ ସରଣ ସାରୋଳା ଚଣ୍ଡି ଦାସ ||୧୦୭୦୯||

## ଭାରତ ହରିବଂଶ ପାଠର ମାହାତ୍ମ୍ୟ

ଭାରତ ହରିବଂସ ଯେ ଅପୁର୍ବ ରସସାର
ଶ୍ରୋତା ବକତା ନରେ[୬] ବସିବେ ଅମର ||୧୦୭୧୦||

୧ । ଖ ପୋଥି – ସଞ୍ଜିବନି ନାଥ
୨ । ଘ ପୋଥି – ପାପିମାନେ
୩ । ଘ ପୋଥି – ପାଞ୍ଚଭାଇ ସଙ୍ଗ ହୋଇଲେ ସେହିଠାର
୪ । ଘ ପୋଥି – ତରିବ ମାୟାମୋହ ଏ ଭବ ସଂସାର
୫ । ଖ ପୋଥି – ପାଇବ ପୁଣ୍ୟ ବାଟ ହୋଇବ ମୁକତି
୬ । ଖ ପୋଥି – ଶୁଣନ୍ତା ବକତା ଜନେ ବସିବେ ଅମର

ଗୋହତ୍ୟା ସ୍ତିରିହତ୍ୟା ମାତୃହରଣ ଲିଙ୍ଗଭଗ୍ନ ସୁରାପାନ
ଯେହା ସୁଣିଲେ ପାପ ହୋଇବ ଦହନ ||୧୦୭୧୧||
ଗୟା କ୍ଷେତ୍ରେ ଶ୍ରାଦ୍ଧ କପିଳାସେ ଜାଗର
କାସିରେ ଦେଇ ଦାନ ଝାସିବ ସାଗର ||୧୦୭୧୨||
ଯେହୁ ହରିବଂସ ଯେ ଗୁଣିମ ସୁଣିମ
ଯେମାନ ତାହାକୁ ନୋହିବ ସମାନ[୧] ||୧୦୭୧୩||
ପୁରାଣ ଭାଗବତ ଭାରତ ରାମାଏଣ
ଯେମାନ ସୁଣିଲେଂ ଯେତେ ହୋୟେ ପୁଣ୍ୟ ||୧୦୭୧୪||
ଯେ ସାହାସ୍ର ସୁଣିଲେ ତେତେ ପୁଣ୍ୟ ହୋଇ
ପାର୍ବତିଙ୍କ ଆଗରେ ଯେହା ସଙ୍କର ଛନ୍ତି କହି ||୧୦୭୧୫||
ରବିବାର ସିବରାତ୍ରି ଚନ୍ଦ୍ରାୟେଣ ବ୍ରତ
ଯେତେ ପୁଣ୍ୟ ହୋଅଇ ଯେ ସୁଣଇ ହରିବଂଶ ଭାରତ ||୧୦୭୧୬||
ଅପୁତ୍ରିକ ଯେବେ ଯେହା ସୁଣିବ ସମ୍ପୁର୍ଣ୍ଣ
ବରଣ କରି ବ୍ରାହ୍ମଣେ ସମ୍ପୁର୍ଣ୍ଣେ ଦେବ ଧନ ||୧୦୭୧୭||
ଯେମନ୍ତ ବ୍ରାହ୍ମଣ ନୋହିବ ବିମନ
ଅପୁତ୍ରିକ ହୋଇଥିଲେ ହୋଇବ ନନ୍ଦନ[୨] ||୧୦୭୧୮||
ରୋଗାର୍ଥି ସୁଣିଲେଂ ମୋଚନ ହେବ ରୋଗ
ଦୃଗତିରେଂ ସୁଣିଲେ କସଣ ନପଡ଼ିବ ||୧୦୭୧୯||
ଗୋରୁ ବସ୍ତ୍ର କାଞ୍ଚନ ବୃସଭ ଦାନ ଦେବ
ଗଙ୍ଗା ଗୟା ବାରାଣାସି ଗମନ କରିବ ||୧୦୭୨୦||
ନିଳାଞ୍ଚଳ କାସି ଆବର ଦେବଆଳ
ଯେ ସାସ୍ର ପଢ଼ିଲେ ହୁଏ ତେତେ ଫଳ ଠୁଳ ||୧୦୭୨୧||
ଆହେ ସାଧୁଜନେ ଦୋସ ମୋ ନ ଧର
ମୁହିଂ ସିନା ମୁଢ଼ ଅଜ୍ଞାନ ପାମର ||୧୦୭୨୨||
ଯେଣୁ ଜଗନ୍ନାଥେ ଦୟା ମୋତେ କରି
ତେଣୁ ଯେ ସାହାସ୍ର ଲେଖିଲିଂ ବିଚାରି ||୧୦୭୨୩||
ଶ୍ରୀଜଗନ୍ନାଥଙ୍କ ଚରଣେ ମୁଂ ସରଣ ପୁନ ପୁନ
ଅଭୟଗତି ଯେବେ ଦେବ ଭଗବାନ ||୧୦୭୨୪||
ଜିବନ୍ତେ ନଥିବ ରୋଗ ମଲେ ମୋକ୍ଷଗତି
ଯେହିକଥା ଗୋଟା ତୋତେ ମାଗଇଂ ଶ୍ରୀପତି ||୧୦୭୨୫||
ସର୍ବଦା ତୁମ୍ଭ ନାମ ମୋ ତୁଣ୍ଡେ ଆସୁଥିବ
ତୋ ପଦ୍ମପାଦରେ ହରି ଦେବୁ ମୋତ ଠାବ ||୧୦୭୨୬||
ଶ୍ରୀପୁରୁଷୋତ୍ତମବାସି କମଳଲୋଚନ
ଅଭୟ ଗତି ଯେବେ ଦେବାକ ଭଗବାନ ||୧୦୭୨୭||

୧ । ଖ ପୋଥି – ଏ ପୁଣ୍ୟକୁ କେହି ଯେ ସମାନ ନୋହିବ
୨ । ଖ ପୋଥି – କାମଦେବ ସମାନେ ତାର ହୋଇବ ନନ୍ଦନ

ପୁନ ପୁନ ସେବା ମୋ ଥିବ ଶ୍ରୀଚରଣ[1]
ଯେହି ପଦ୍ମପାଦେ ମୁଁ ପସିଲି[2] ସରଣ ॥୧୦୭୨୮॥
ପଡ଼ିଛି ତମ ଘୋରେ ହୋଇଣ ବଡ଼ପାପି
ଯେଥୁ ଉଧର[3] ନାଥ ତୁମ୍ଭେ ଚକାଆଖି ॥୧୦୭୨୯॥
ଶ୍ରୀମହାଭାରତ ହରିବଂସ ହୋଇଲା ସମ୍ପୁର୍ଣ୍ଣ
ସାରୋଳା ଚଣ୍ଡି ଦାସ ପସିଲା ସରଣ ॥୧୦୭୩୦॥

---

୧ । ଘ ପୋଥି - ପୁନ ପୁନ ମନ ମୋର ଥିବ ଶ୍ରୀହରି ଚରଣ
୨ । ଘ ପୋଥି - ପସିବିଂ
୩ । ଘ ପୋଥି - ଉଦ୍ଧାର